# ସହୃଦୟ ସଂହିତା



ସଂପାଦନା

## ଗୌରାଙ୍ଗ ଚରଣ ଦାଶ











# ସହୃଦୟସଂହିତା

## ସମାଲୋଚକମାନଙ୍କ ସଂପର୍କରେ

ସମ୍ପାଦନା
ଗୌରାଙ୍ଗ ଚରଣ ଦାଶ



ଓଡ଼ିଶା ସାହିତ୍ୟ ଏକାଡେମୀ
ଭୁବନେଶ୍ୱର

# ସହୃଦୟସଂହିତା

ସମାଲୋଚକମାନଙ୍କ ସଂପର୍କରେ

ସମ୍ପାଦକ

**ଗୌରାଙ୍ଗ ଚରଣ ଦାଶ**

ପ୍ରଥମ ସଂସ୍କରଣ : ୨୦୧୭

ପ୍ରକାଶକ

**ଓଡ଼ିଶା ସାହିତ୍ୟ ଏକାଡେମୀ,ସଂସ୍କୃତି ଭବନ,**
**ଭୁବନେଶ୍ୱର-୭୫୧୦୧୪**

ମୁଦ୍ରଣ : ଜଗନ୍ନାଥ ପ୍ରୋସେସ୍, କଟକ

**ମୂଲ୍ୟ : ୩୦୦.୦୦(ତିନିଶହ ଟଙ୍କା ମାତ୍ର)**

**SAHRUDYASAHINTA**
Samalochakamanaka Samparka
Edited by
**Gouranga Charana Dash**

First Edition : 2017

**Price :**
*Published by*
**Odisha Sahitya Akademi**
Sanskruti Bhawan, Bhubaneswar-751014

*Printed*
Jagannath Process, Cuttack

Price : 300.00
(Rupees three hundred only)

# ସଂକଳନ ସଂପର୍କରେ

ଏହା ଏକ ଅଲଗା ପ୍ରକାରର ବହି। ଅଲଗା ପ୍ରକାରର ଏଇଥିପାଇଁ ଯେ, ଏଥିରେ ସ୍ଥାନିତ ଲେଖାଗୁଡ଼ିକ ସାହିତ୍ୟ-ସମାଲୋଚକମାନଙ୍କ ଜୀବନ ଓ ବ୍ୟକ୍ତିତ୍ୱ ସଂକ୍ରାନ୍ତ ଚର୍ଚ୍ଚା। ଆମ ଭାଷାରେ କବି-ଜୀବନ ବିଷୟକ ବହି ସଂଖ୍ୟା ସର୍ବାଧିକ। କାରଣ ଆମେ କେଜାଣି କାଇଁକି ଧରି ନେଇଛୁ ଯେ, କବିମାନେ ପ୍ରଥମ ଶ୍ରେଣୀର ସ୍ରଷ୍ଟା, ପ୍ରତିଭାସଂପନ୍ନ ଓ ସେମାନଙ୍କ କୃତିର ଚର୍ଚ୍ଚକାରମାନେ ଦ୍ୱିତୀୟ ଶ୍ରେଣୀର ପ୍ରତିଭା, ମୂଳର ଅନୁଗାମୀ। ଏହି ଅବବୋଧ ପୂର୍ଣ୍ଣତଃ ଭ୍ରମାତ୍ମକ। ଆମେ ଭୁଲିଯାଉଥାଉ ଯେ, ଜଣେ ଚର୍ଚ୍ଚାକାର ସ୍ରଷ୍ଟାଙ୍କଠାରୁ ଅଧିକ ଧୀସଂପନ୍ନ। ସେ ପ୍ରଥମତଃ ସୃଷ୍ଟିକୁ ବୁଝିଥାନ୍ତି, ସୃଷ୍ଟିମାଧ୍ୟମ ଦେଇ ସ୍ରଷ୍ଟାକୁ ବୁଝିଥାନ୍ତି, ସୃଷ୍ଟି ଓ ସ୍ରଷ୍ଟାଙ୍କ ସର୍ଜ୍ଜନଶୀଳତାର ଗୁଣସୂତ୍ରକୁ ବୁଝିଥାନ୍ତି ଏବଂ ତତ୍‌ସହିତ ବୁଝିଥାନ୍ତି ସୃଷ୍ଟିର ଗ୍ରାହକ/ ସହୃଦୟମାନଙ୍କ ମାନସିକତା ଓ ଆବଶ୍ୟକତା। ତେଣୁ ଚର୍ଚ୍ଚାଗ୍ରନ୍ଥ ମଧ୍ୟ ଏକଏକ ମୌଳିକ ଗ୍ରନ୍ଥ, ପ୍ରଥମ ଶ୍ରେଣୀର ପ୍ରତିଭାଙ୍କ ସୃଜନ ଏବଂ କୌଣସି ସ୍ରଷ୍ଟାଙ୍କୁ ହିଁ ସେ ସର୍ବଜନବୋଧ ଓ ସର୍ବଜନଗ୍ରାହ୍ୟ କରିବା ସାମର୍ଥ୍ୟର ଅଧିକାରୀ। ଏତେ ଶକ୍ତିର ଅଧିକାରୀଙ୍କୁ ଆମେ ଦ୍ୱିତୀୟ ବୋଲି କହିବା ଆମ ମାନସିକ ଦୁର୍ବଳତାର କାରଣ।

ବେଳେବେଳେ ଏକଥା ବି ଦେଖାଯାଇଛି, ଜଣେଜଣେ ସମୀକ୍ଷକ ପ୍ରଥମ ଶ୍ରେଣୀର ସ୍ରଷ୍ଟା। ବହୁ ସ୍ରଷ୍ଟା ସମୀକ୍ଷାଶାସ୍ତ୍ର ମଧ୍ୟ ଲେଖିଛନ୍ତି। ଏହି ଗ୍ରନ୍ଥଗୁଡ଼ିକ ସେମାନଙ୍କ ସର୍ଜନ-ଅବବୋଧ, ଅନୁଭବ ଓ ଅଧ୍ୟୟନର ହିଁ ପ୍ରତିଫଳ। ଅନ୍ତର୍ଦୃଷ୍ଟିର ଇସ୍ତାହାର। ତେଣୁ କୁହାଯାଏ, ଯେଉଁ ଭୂମିରେ ସୂକ୍ଷ୍ମଦର୍ଶୀ ସମୀକ୍ଷକମାନଙ୍କର ଆଧିକ୍ୟ ଓ ଆଦର, ସେହି ଭୂମିର ସର୍ଜନାତ୍ମକ ରଚନା ସେତିକି ସମୃଦ୍ଧ। କେହିକେହି କହିବାର ମୁଁ ଶୁଣିଛି - ଓଡ଼ିଶାରେ ସୂକ୍ଷ୍ମଦର୍ଶୀ, ସୁପଠ ଚର୍ଚ୍ଚାକାରମାନଙ୍କ ସଂଖ୍ୟା ଅଙ୍ଗୁଳିମେୟ,

ତେଣୁ, ସର୍ଜନାତ୍ମକ ସାହିତ୍ୟ ସମପରିମାଣରେ ଦୁର୍ବଳ। ଏବଂ, ଏଠାରେ ସ୍ୱୀକୃତି ଓ ପ୍ରସିଦ୍ଧିଲାଭ କରୁଥିବା ଲେଖକମାନଙ୍କ ମଧ୍ୟରେ ସାହିତ୍ୟ ସମୀକ୍ଷକମାନେ ସଂଖ୍ୟାନ୍ୟୂନ।

ଏକଥା ମିଛ ନୁହେଁ। ବିଭିନ୍ନ ଏକାଡେମୀ ଓ ଅନୁଷ୍ଠାନଦ୍ୱାରା ପ୍ରଦତ୍ତ ପୁରସ୍କାର ଗୁଡ଼ିକର ତାଲିକା ଦେଖିଲେ ତାହା ସ୍ପଷ୍ଟ ହୋଇଯାଏ। ମାତ୍ର ଏହା ବୋଲି ଆମ ସମୀକ୍ଷା ଦୃଷ୍ଟି ଯେ ଦୁର୍ବଳ ଏହି ଧାରଣା ଠିକ୍ ନୁହେଁ। ପ୍ରକାଶିତ ଏହି ଗ୍ରନ୍ଥ ତାହାର ଭଲ ଉଦାହରଣ। ଗ୍ରନ୍ଥରେ ଷୋହଳ ଜଣ ସାହିତ୍ୟ-ସମୀକ୍ଷକଙ୍କ ପ୍ରତିଭା ସମ୍ପର୍କରେ ଚର୍ଚ୍ଚା କରାଯାଇଛି। ସେମାନଙ୍କ ମଧ୍ୟରୁ କେତକ ଦିବଙ୍ଗତ ଓ ଅନ୍ୟମାନେ ବର୍ତ୍ତମାନ। କେତେକ ଉଭୟ କବି ଓ କବି-ସମୀକ୍ଷକ ଏବଂ ସେମାନଙ୍କ ବ୍ୟକ୍ତିତ୍ୱାୟନରେ ମଧ୍ୟ ସଂପୃକ୍ତ ରହିଛନ୍ତି କବି ଓ କବି-ସମାଲୋଚକ। ଏହା ଏକ ଅପୂର୍ବ ସଂଯୋଗ ନିଶ୍ଚୟ। ଆମପାଇଁ ଅଧିକ ଆନନ୍ଦର କଥା, ଗ୍ରନ୍ଥାୟିତ ପ୍ରତିଭାମାନଙ୍କ ମଧ୍ୟରୁ ଛଅ ଜଣ ଓଡ଼ିଶା ସାହିତ୍ୟ ଏକାଡେମୀ ପ୍ରଦତ୍ତ ସର୍ବୋଚ୍ଚ ସମ୍ମାନ 'ଅତିବଡ଼ି'ର ପ୍ରାପକ।

ଏହି ଅବକାଶରେ ମୁଁ ଚର୍ଚ୍ଚିତ୍ୱ ବ୍ୟକ୍ତିତ୍ୱ ଓ ବ୍ୟକ୍ତତ୍ୱ-ଚର୍ଚ୍ଚାକାର,ଅର୍ଥାତ୍, ସମାଲୋଚକ ଓ ସାମାଲୋଚକମାନଙ୍କ ସମାଲୋଚକ ଏବଂ ବିଶେଷତଃ,ଗ୍ରନ୍ଥର ସଂପାଦକ ଗୌରାଙ୍ଗଚରଣ ଦାଶଙ୍କୁ ସାଧୁବାଦ ଜଣାଉଛି। ପ୍ରକାଶଥାଉକି, ସମାଲୋଚକମାନଙ୍କ ସଂପର୍କରେ ଗ୍ରନ୍ଥ ପ୍ରକାଶନର ଏହା ଆଦି ଉଦ୍ୟମ। ସମଆଦର୍ଶ - ପୁଷ୍ଟ ଗ୍ରନ୍ଥମାନ ଆମେ ଅବଶ୍ୟ ପରବର୍ତ୍ତୀ କାଳରେ ପ୍ରକାଶନର ଉଦ୍ୟମ କରିବୁ।

ବିଶ୍ୱାସ, ଆମ ଉଦ୍ୟମ ସହୃଦୟମାନଙ୍କ ସ୍ୱୀକୃତିଲାଭ କରିବ।

ଅଶ୍ୱିନ କୁମାର ମିଶ୍ର
ସଚିବ

# ସୂଚିପତ୍ର

# ସହୃଦୟସଂହିତା ସମ୍ପର୍କରେ

## ଏକ

ଭାରତୀୟ ଚିନ୍ତନ କାବ୍ୟଗ୍ରାହକ (ପାଠକ, ଶ୍ରୋତା ଅଥବା ଦର୍ଶକ) ଓ ଚର୍ଚ୍ଚାକାରମାନଙ୍କୁ ସହୃଦୟ, ରସିକ ଓ ଗୁଣୀ ଭାବରେ ବିବେଚିତ କରିଛି। ସହୃଦୟର ଅର୍ଥ-ଆପଣାର ଅନୁଭବ,ପ୍ରଜ୍ଞା,ପଠନ. ବିଚାର ମାଧ୍ୟମରେ କୌଣସି ସୃଷ୍ଟିସହିତ ଅହଂମୁକ୍ତ, ଅର୍ଥାତ୍ ବସ୍ତୁନିଷ୍ଠ ସଂପୃକ୍ତି। ଉପର୍ଯ୍ୟୁକ୍ତ ଅର୍ଥରେ ଅନ୍ୟ ଏକ ଗୁରୁତ୍ୱପୂର୍ଣ୍ଣ ଶବ୍ଦର ପ୍ରୟୋଗ ରହିଛି, ତାହା ମିତ୍ରଦୃଷ୍ଟି। ଅର୍ଥାତ ସହୃଦୟତା ହେଉଛି ସୂର୍ଯ୍ୟବତ୍। ଏହି ଭାବକୁ ଏକ ସ୍ତୋତ୍ରରେ 'ଧ୍ୱାନ୍ତାରି' ବୋଲି ସମ୍ବୋଧନ କରାଯାଇଛି। ସେ ସାର ଓ ଅସାର-ଉଭୟକୁ ଦେଖି ପାରୁଥିବେ। ଅଂଧାରବତ୍ ଅସାରକୁ ଉପେକ୍ଷା ଓ ଆଲୋକବତ୍ ନିର୍ଯ୍ୟାସକୁ ସମୁଦ୍‌ଭାସିତ କରୁଥିବେ। ସେ ଛିଦ୍ରାନ୍ୱେଷୀ କି ମତ୍ସରୀ ହେବେ ନାହିଁ। ମାତ୍ର ଛିଦ୍ର ଓ ମତ୍ସରତାକୁ ଠାବ କରିବାର ସାମର୍ଥ୍ୟ ତାଙ୍କ ଭିତରେ ଥିବ। ଜଣେ ମିତ୍ରର ତାହାହିଁ ଧର୍ମ। ମିତ୍ର ଆପଣା ଓ ଅନ୍ୟର ଅସହାୟତା, ଅସାମର୍ଥ୍ୟକୁ ଜାଣିଥାଏ। ଏବଂ, ଅନ୍ତରର ଗଭୀର ସାମର୍ଥକୁ ହିଁ ସ୍ପଷ୍ଟତର କରେ - ଯାହା ସାଧାରଣ ଆଖିପାଇଁ ଗୂଢ଼ ଓ ଅପ୍ରୀତିକର।

ମାତ୍ର ଏଇଠାରେ ପ୍ରଶ୍ନ। ମିତ୍ର କାହା ସହିତ କଥା ହେବ ? ମିତ୍ରର 'ଜୀବନ', ନା 'ଆଚରଣ' ସହିତ ? 'ଜୀବନ' ଜଣଙ୍କର ଅନ୍ତର୍ଲୋକ ଏବଂ 'ଆଚରଣ' ଜୀବନର ଅଭିବ୍ୟକ୍ତି। ଅନ୍ତର୍ଲୋକ ଅନାଲୋକିତ, ମାତ୍ର ଆଚରଣ ଦୃଶ୍ୟମାନ। ଯାହା ଅଦୃଶ୍ୟ, ତାହାକୁ କ'ଣ ସ୍ପଷ୍ଟତର କରିଦିଆଯାଇପାରିବ ? ଏବଂ, ଯାହା ଦୃଶ୍ୟମାନ, ତାହାକୁ କ'ଣ 'ସତ୍ୟ' ବୋଲି ସ୍ୱୀକାର କରାଯାଇପାରିବ ? ଏସବୁ ଭାରି ଗହନ କଥା। କେହିକେହି କୁହନ୍ତି, ମିତ୍ର ଉଭୟକୁ, ଅର୍ଥାତ୍ ଅନ୍ତର୍ଲୋକ ଓ ଆଚରଣର ରହସ୍ୟ ଖୋଲିଦେବ। କାରଣ, ଏହି 'ଦୁଇଲୋକ' ପରସ୍ପରଠାରୁ ଭିନ୍ନ ନୁହନ୍ତି ? ଏକଦର୍ଶୀ। ମାତ୍ର ଏହା କ'ଣ ସମ୍ଭବ ? କେହି କ'ଣ କେବେ ଆପଣାର ସମଗ୍ରକୁ ନିଜ ଭିନ୍ନ ଅନ୍ୟ କାହା ପାଖରେ ମୁକ୍ତ କରିଦେଇପାରେ ? ନିଜର, ମିତ୍ରର ସମସ୍ୟା ଏଇଠାରେ। ସେ ଆପେ ଏକ ପ୍ରଶ୍ନ ହୋଇଯାଏ, ମିତ୍ରତା ସଂପର୍କିତ ପ୍ରଶ୍ନ। ଗ୍ରହଣ କରିନିଏ ଯେ - ସେ ମିତ୍ରର ଜୀବନକୁ ଜାଣିଛି, ଆଚରଣକୁ ବି ଜାଣିଛି। ମାତ୍ର କାହାକୁ ଆଲୋକିତ କରିବ, ତାହା ତା ମାନସିକତା ଓ ସ୍ଥାନ,କାଳ, ପାତ୍ରନିର୍ଭର। ତେଣୁ ସହୃଦୟ ହେବାର ଅର୍ଥ, କ୍ଷୁର ଧାରରେ ବାଟ ଚାଲିବା - ଠିକ୍ ଆମ ବୈଷ୍ଣବ ଦର୍ଶନର ଲଳିତା ନାମକ ଚରିତ୍ର ପରି। କାରଣ, ମିତ୍ର ନାମରେ ପରିଚିତ 'ଅନ୍ୟ' ସତ୍ତାର ଗ୍ରହଣଶୀଳତା ଉପରେ ତାହା ପୂର୍ଣ୍ଣତଃ

ନିର୍ଭର କରେ। ତେଣୁ ସହୃଦୟତା କହିଲେ ମିତ୍ର ଓ ମିତ୍ର ମଧ୍ୟରେ ଏକ ଅଧ୍ୟାତ୍ମ ଚୁକ୍ତି, ଜୀବନର ସକଳ ଦ୍ୱନ୍ଦ୍ୱାତ୍ମକତା ଭିତରେ ଯାହା ଦ୍ୱନ୍ଦ୍ୱମୁକ୍ତିର ମନ୍ତ୍ର । ଏହା ଏକ ଦର୍ଶନ। ମାତ୍ର ଦର୍ଶନର ପରିପାଳନ- ଏକ ଗୁରୁତ୍ୱପୂର୍ଣ୍ଣ ପ୍ରଶ୍ନ ଅବଶ୍ୟ।

ଦୁଇ

ପ୍ରସ୍ତୁତ ଗ୍ରନ୍ଥ ମାତ୍ର କେତେଜଣ ଓଡ଼ିଆ ସାହିତ୍ୟ-ସମାଲୋଚକଙ୍କ ଜୀବନ ଓ ବ୍ୟକ୍ତିତ୍ୱର ମୂଲ୍ୟାୟନ। ସେମାନଙ୍କ ମଧ୍ୟରୁ ଅଧିକ ସଂଖ୍ୟକ ଏବେ ଅବର୍ତ୍ତମାନ ଓ ଅଳ୍ପ କେତେଜଣ ସାଧାନମଗ୍ନ। ଏପରି ଏକ ଚର୍ଚ୍ଚାଗ୍ରନ୍ଥର ବାସ୍ତବତଃ କୌଣସି ଆବଶ୍ୟକତା ରହିଛି କି ? ଅଧ୍ୟାୟୀ-ଶୁଶ୍ରୂଷାଜନିତ କିମ୍ଭୂତ ମାନସିକତାର ଏହା ଏକ ଉଚ୍ଚାଙ୍ଗ ଉଦାହରଣ ମଧ୍ୟ ହୋଇପାରେ। ଅନୁରୂପ ଅପବାଦକୁ ମୁଁ ଆଦୌ ଭିତ୍ତିହୀନ ବୋଲି କହିବି ନାହିଁ। କାରଣ ଉତ୍ତରଆଧୁନିକ ଦର୍ଶନ ଅନେକ ବିଚାରର ମୃତ୍ୟ, ଯଥା – 'ତତ୍ତ୍ୱର ମୃତ୍ୟୁ', 'ଦର୍ଶନର ମୃତ୍ୟୁ', 'ଇତିହାସର ମୃତ୍ୟୁ', 'ସାହିତ୍ୟର ମୃତ୍ୟୁ', 'ସଂଗୀତର ମୃତ୍ୟୁ' ଘୋଷଣା କରିସାରିଲାଣି। ମୃତ୍ୟୁ ତାଲିକାରେ ସମାଲୋଚନା ଓ ସମାଲୋଚକମାନେ ବି ଅଛନ୍ତି (Lucy, Naily : 2014, pp,42-62, 104-121, 163-183)। କେବଳ ଯାହା 'ମୃତ୍ୟୁର ମୃତ୍ୟୁ' ଘୋଷଣା ବାକି ଅଛି। ଆମେ ଅଧ୍ୟାତ୍ମ ଦର୍ଶନରେ ଅବଶ୍ୟ ଆତ୍ମାକୁ 'ମୃତ୍ୟୁଞ୍ଜୟୀ' ବୋଲି ଯୁକ୍ତି କରିଆସୁଛୁ। ଏବେ, କେବଳ ଯାହା ପ୍ରମାଣ ଓ ପରୀକ୍ଷାର ଅପେକ୍ଷା। ସେହି ନ୍ୟାୟରେ, ସମାଲୋଚନାର ମୃତ୍ୟୁଘଣ୍ଟି ଯେତେବେଳେ ବାଜିସାରିଲାଣି, ସମାଲୋଚକମାନଙ୍କର ଚାଟୁ କରିବା ଏକ ମାନସିକ ବିକୃତି ନୁହେଁ କି ? ଅନୁରୂପ ଅପବାଦକୁ ମୁଁ ଅଦୌ ଭିତ୍ତିହୀନ କହିବି ନାହିଁ। ମାତ୍ର ଏକଥା ଅବଶ୍ୟ ସ୍ୱୀକାର କରିବି (ମୁଁ ନୁହେଁ, ଅନେକ ସ୍ୱୀକାର କରିବେ) ଆମେ ଯେଉଁ ବ୍ୟକ୍ତି ଓ ବିଚାରକୁ କାଳ-କବଳିତ, ଅର୍ଥାତ୍, ମୃତ୍ୟୁ ନିଶ୍ଚିତ ବୋଲି ଘୋଷଣା କରୁଛୁ, ସେହି ବ୍ୟକ୍ତି ଓ ତାଙ୍କ ବିଚାରଭୂମିରେ କାଳମୁକ୍ତିର ସଂକେତ ରହିଛି। କାଳମୁକ୍ତିର ଅର୍ଥ ପୁନର୍ଜନ୍ମ, ଅବର୍ତ୍ତମାନମାନଙ୍କର ବିବର୍ତ୍ତିତ ପ୍ରଜନ୍ମ ବା ଅଭିଲେଖ। ଯିଏ ମୃତ୍ୟୁକୁ ସ୍ୱୀକାର କରୁଥାଏ, ସେ ଏକ ବିକଳ୍ପ ଜୀବନର ସ୍ୱପ୍ନ ବି ଦେଖୁଥାଏ। ଉପର୍ଯ୍ୟୁକ୍ତ ଭାବାଦର୍ଶ ଆଧାରରେ ଆମେ, ଏକଥା, ତେଣୁ କହିପାରିବା, ଜଣେ ସମାଲୋଚକ ଅବଶ୍ୟ ଅବର୍ତ୍ତମାନ ହୋଇଯାଆନ୍ତି, ମାତ୍ର ତାଙ୍କ ବିଚାର/ସମାଲୋଚନା ସତତ କ୍ରିୟାଶୀଳ ଥାଏ ଭବିଷ୍ୟତମାନଙ୍କ ଅବବୋଧରେ। ଅର୍ଥାତ୍ ଅବର୍ତ୍ତମାନରେ ବି ସେ ବର୍ତ୍ତମାନ ଥାଆନ୍ତି। ଏହି ସଂକଳନ ସେହି ଅବର୍ତ୍ତମାନଙ୍କର ବର୍ତ୍ତମାନାୟନ। ଚର୍ଚ୍ଚାପ୍ରବନ୍ଧଗୁଡ଼ିକ ସେମାନଙ୍କର ଚାଟୁ ନୁହେଁ, ସେମାନଙ୍କ ମଧ୍ୟସ୍ଥ-ମାନସିକତାର ସୂକ୍ଷ୍ମ ଓ ପୁନଃଅବଲୋକନ।

ତିନି

ଏହି ପ୍ରସଙ୍ଗରେ ଏକ ଗୁରୁତ୍ୱପୂର୍ଣ୍ଣ ପ୍ରଶ୍ନ, ସ୍ରଷ୍ଟା ଓ ଭୋକ୍ତାଙ୍କ ମଝିରେ ଉଦୟ ହୋଇଥିବା କିଏ ଏହି ଚରିତ୍ରମାନେ ? କେଉଁ ବିଶେଷ ଆବଶ୍ୟକତାରୁ ସେମାନଙ୍କର ଉଦୟନ ଓ

ପରିବ୍ରାଜନ। ଅଳ୍ପରେ, ସେମାନଙ୍କର ପରିଚୟ ଏତିକି। ସେମାନେ ଆମ ଗହଣରେ, ଆମ ଭିତରେ ବଞ୍ଚୁଥିବା ଏକ ବିଶେଷ କାଟର ଜୀବ, ଯେଉଁମାନେ ସ୍ରଷ୍ଟାର ଭାବକୁ ବୁଝିଥାନ୍ତି, ଭୋକ୍ତାମାନଙ୍କର ଅଭାବକୁ ବି ବୁଝିଥାନ୍ତି। ଭାବ ସହିତ ଅଭାବ ଓ ଅଭାବ ସହିତ ଭାବକୁ ଯୋଡ଼ି ଦେଉଥାନ୍ତି। ଅର୍ଥାତ୍, ଆପେ ଭାବ ଓ ଅଭାବର ଏକ ମହାଦ୍ୱନ୍ଦ୍ୱରେ ରୂପାନ୍ତରିତ ହୋଇଯାଉଥାନ୍ତି। ଉଭୟଙ୍କ ମଝିରେ କେବଳ ଦୃଶ୍ୟମାନ ହେଉଥାନ୍ତି ସେ, ସତେଯେପରି ଦୁଇ 'ଅନ୍ୟ'ଙ୍କର ଏକ 'ଅନ୍ୟାଅନ୍ୟ' ସତ୍ତା। ଦ୍ୱନ୍ଦ୍ୱରୁ ମୁକ୍ତିପାଇଁ ସେ ବହୁ ମାଧ୍ୟମକୁ ମିତ୍ର କରିନେଇଥାନ୍ତି। କଥା, ଗୀତ, ଚିତ୍ର, ଅଭିନୟ - ନାନା ମାଧ୍ୟମ। ସେମାନଙ୍କ ଜନ୍ମ ଶ୍ରୁତିଯୁଗରେ। ଶୁଣୁଥିଲେ, ମନେରଖୁଥିଲେ, କହୁଥିଲେ। ସ୍ରଷ୍ଟାମାନଙ୍କୁ ନିଜ ଭିତରକୁ ଆଣୁଥିଲେ। ଏବଂ, ଅନ୍ୟ ସ୍ରଷ୍ଟା ଓ ଅନ୍ୟ (ଗ୍ରାହକ)ମାନଙ୍କ ପାଖରେ  ନିଜକୁ ବି କହିଦେଉଥିଲେ। ସେମାନେ ଆପଣା ଭୂମିରୁ ଅନ୍ୟ ଭୂମିକୁ ଯାଉଥିଲେ। ଫଳତଃ, ସେମାନଙ୍କ (ମଧ୍ୟସ୍ଥମାନଙ୍କର) ମାଧ୍ୟମରେ ଗୋଟିଏ ଭୂମିର ଭାବ, ଅନୁଭବ ଓ ବିଦ୍ୟା ଅନ୍ୟଭୂମିରେ ସଂଚରି ଯାଉଥିଲା।(Wellek, Rene: 1963-pp,2-3)

ଆମେ ଶ୍ରୁତିରୁ ସ୍ମୃତିଯୁଗକୁ ଆସିଛୁ। ମୁଖନିଃସୃତ କଥା ଏବେ ଲିପିକୃତ, ଅକ୍ଷରାୟିତ। ଉଭୟ ଚିତ୍ରିତ ଓ ଖୋଦିତ। ଅନୁଭବ ଓ ବିଚାର ଆଉ ପବନରେ ଉଡ଼ିଯିବ ନାହିଁ। କୌଣସି ଏକ ଶକ୍ତ ମାଧ୍ୟମରେ ଲାଖି ରହିବ। ମାଧ୍ୟମର ରୂପ ପରିବର୍ତ୍ତିତ ହୋଇଛି। ତାହା କାଳକ୍ରମେ ମଧ୍ୟସ୍ଥମାନଙ୍କ ଆଚରଣକୁ ମଧ୍ୟ ନିୟନ୍ତ୍ରଣ କରିଛି। ଏବେ ସେମାନଙ୍କର ଦ୍ୱୈତକର୍ମ - କଥନ ଓ ଲିଖନ। ମୁକ୍ତ ମାନସିକତା ଅବଶ୍ୟ ଶୃଙ୍ଖଳିତ ଓ ସଂହତ ହେଉଛି, ମାତ୍ର ମୁକ୍ତିବୋଧକୁ ପୂର୍ଣ୍ଣତଃ ଅସ୍ୱୀକାର କରିପାରୁନାହିଁ। କଥନ ଓ ଲିଖନ କର୍ମରେ ସେମାନେ ନିଜନିଜକୁ କେତେ ଯତନରେ ଖଞ୍ଜି ଦେଉଛନ୍ତି। କାରଣ ଶ୍ରୋତା ଅପେକ୍ଷା ପାଠକ ଓ ଲିଖନକାରମାନେ ସଂଖ୍ୟାନ୍ୟୂନ। ଏବଂ, ବାସ୍ତବତଃ, କଥନକାଳରେ ସ୍ରଷ୍ଟା ଓ ଭୋକ୍ତାଙ୍କ ମଝିରେ ସେମାନଙ୍କର ଚତୁରତା ମାୟାରୂପରେ ଉଭା ହେଉଛି। ସତେଯେପରି ମଧ୍ୟସ୍ଥ ଏକ ବିଚିତ୍ର ମୁଖାଧାରୀ ସମ୍ମୋହନ। ସେ କାହାର ବୁଝିହେଉ ନାହିଁ। ବେଳେବେଳେ ତ ଲାଗୁଛି, ସେ ନିଜଠାରୁ ବିଚ୍ଛିନ୍ନ ଏକ ରହସ୍ୟମୟ ସତ୍ତା।

ଲିଖନଯୁଗରୁ ଆମେ ଅନେକ ଦୂରକୁ ଆସିଗଲୁଣି। ମୁଦ୍ରଣ ଯୁଗ। ଲିପିକାର/ ଲିଖନକାରମାନେ ଏବେ ଉପେକ୍ଷିତ ଓ ଅନାବଶ୍ୟକ। ସେମାନଙ୍କ ସ୍ଥାନ ପୂରଣକରୁଛି ଯନ୍ତ୍ର। ଯନ୍ତ୍ର ବାସ୍ତବତଃ ବୁଦ୍ଧିପ୍ରସୂତ ଏକ ଅହଂକାର। ତାହା ଘୋଷଣା କରୁଛି, ମଧ୍ୟସ୍ଥମାନଙ୍କ ଚତୁରତା ଓ ଔଦ୍ଧତ୍ୟ ଏବଂ ସ୍ରଷ୍ଟା ଓ ଭୋକ୍ତଙ୍କ ପ୍ରତି ପ୍ରତାରଣା ଆଉ କାଟୁ କରିବ ନାହିଁ। ସ୍ରଷ୍ଟାମାନଙ୍କୁ  ପ୍ରକ୍ଷିପ୍ତ ଓ ବିକୃତ ହେବାର ଦୟନୀୟତାରୁ ଅବଶ୍ୟ ମୁକ୍ତ କରିବ। ତେଣୁ ଯନ୍ତ୍ର ହେଉଛି, ମଧ୍ୟସ୍ଥମାନଙ୍କର ହତ୍ୟାକାରୀ। ମାତ୍ର ଚତୁର ମଧ୍ୟସ୍ଥମାନେ ଯନ୍ତ୍ର-ଦାନବର ଅହଂକାରକୁ ମଧ୍ୟ ଚୁନୌତି ଦେଉଛନ୍ତି। ବଦଳି ଯାଉଛି ସେମାନଙ୍କ ରୂପ ଓ ଅନ୍ତଃରୂପ। ସ୍ରଷ୍ଟାର ଅବବୋଧ /ଭାବାଦର୍ଶକୁ ସେମାନେ ଆପଣା ମାନଦଣ୍ଡରେ ବ୍ୟାଖ୍ୟା କରୁଛନ୍ତି

ଏବଂ ଏଥିପାଇଁ ଯନ୍ତ୍ରକୁ ମଧ୍ୟ ମାଧ୍ୟମ କରୁଛନ୍ତି । ଆଜି ଆମେ ଏମିତି ଏକ କାଳଖଣ୍ଡରେ ବଞ୍ଚୁଛୁ-ଯେଉଁଠି ଶ୍ରୁତି,ସ୍ମୃତି, ତତ୍ତ୍ୱ, ଚର୍ଚ୍ଚା ଓ ବ୍ୟାଖ୍ୟାନ ଆଦି ନାନା ପ୍ରସଙ୍ଗ ଦୃଶ୍ୟ ଓ ଶ୍ରବ୍ୟ ରୂପରେ ଇଲେକଟ୍ରୋନିକ୍‌ସ ମାଧ୍ୟମରେ ତତ୍‌କାଳ ଇନ୍ଦ୍ରିୟମାନଙ୍କୁ ଅବହିତ ଓ ଉତ୍ତେଜିତ କରୁଛି । ଦୃଶ୍ୟ ବା ଘଟଣା ଗୋଟିଏ । ମାତ୍ର ଅବଲୋକନଗତ ମାଧ୍ୟମ ଅନେକ । ପ୍ରତ୍ୟେକ ସ୍ୱତନ୍ତ୍ର ଓ ସ୍ୱାଧୀନ । ଶ୍ରୁତି, ସ୍ମୃତି, ତତ୍ତ୍ୱ ଓ ଚର୍ଚ୍ଚା - ସକଳର ଯୋଡଣ ଏପରି ଏକ ବିଚିତ୍ର ପରିମଣ୍ଡଳ ସୃଷ୍ଟି କରୁଛି ଯେ, ସତ୍ୟର ସ୍ୱରୂପ ଉଦ୍‌ଘାଟନ "ଜଟିଳତା" ଭିତରେ "ରହସ୍ୟପିଣ୍ଡିତ" ହୋଇଯାଉଛି । ତେଣୁ ମଧ୍ୟସ୍ଥଙ୍କୁ ଆମେ ଦ୍ୱୈତକର୍ମ ବା ଦୈତ୍ୟକର୍ମ - କେଉଁ ଭାବରେ ବିଚାର କରିବା ? ଏବଂ, ମଧ୍ୟସ୍ଥମାନଙ୍କ ସ୍ୱରୂପ ଉଦ୍‌ଘାଟନ, ବାସ୍ତବତଃ ଏକ ଗୁରୁତ୍ୱପୂର୍ଣ୍ଣ ପ୍ରଶ୍ନ ।

## ଚାରି

ମଧ୍ୟସ୍ଥଙ୍କ ସ୍ୱରୂପ ସଂକ୍ରାନ୍ତରେ ଅନ୍ୟ ଏକ ଗୁରୁତ୍ୱପୂର୍ଣ୍ଣ ବିଚାର ରହିଛି, ତାହା-ଆମେ ଯାହାଙ୍କୁ ସ୍ରଷ୍ଟାର ମାନ୍ୟତା ଦେଉ, ସେ ମଧ୍ୟ ଜଣେ ମଧ୍ୟସ୍ଥ । ସ୍ରଷ୍ଟା, ସେ ପୁଣି ମଧ୍ୟସ୍ଥ ? - ଅନୁରୂପ ମନ୍ତବ୍ୟ କିମ୍ଭୂତ ନିଶ୍ଚୟ । ସ୍ରଷ୍ଟା ସଂପର୍କରେ କୁହାଯାଏ -- ସେ ଅନେକଙ୍କ ମଧ୍ୟରେ ଜଣେ 'ସ୍ୱତନ୍ତ୍ର ବ୍ୟକ୍ତିତ୍ୱ'; ମାତ୍ର ଶୂନ୍ୟସମ୍ଭୂତ, କି କେଉଁ ଅଦୃଶ୍ୟ-ଶକ୍ତି-ପ୍ରେରିତ ନୁହନ୍ତି । ସେ ଆପଣାର ପ୍ରତିଭା ବା ସର୍ଜ୍ଜନଶକ୍ତି ବଳରେ ଯେକୌଣସି ଦୃଶ୍ୟ ବା ଘଟଣାର ସମ୍ଭାବ୍ୟ ଗୋତ୍ର ବା କାରଣ ନିରୂପଣ କରିପାରନ୍ତି, ଅଥବା, ଆପଣା ଅବବୋଧ ଓ ଚେତନାରେ ଉଦିତ ଏକ (ଏକାଧିକ) ଭାବ/ପ୍ରଶ୍ନ/ସମ୍ଭାବନା/ଧାରଣାକୁ କୌଣସି ଏକ ମାଧ୍ୟମରେ ପ୍ରକାଶ କରିପାରନ୍ତି । ତେଣୁ ଆମେ କହିପାରିବା, ଭାବଦର୍ଶ ବା ଧାରଣା ଆବଷ୍ଟ୍ରାକ୍ଟ ଜଗତର ଅନୁଭବ ଏବଂ ଦୃଶ୍ୟ ବା ଘଟଣା ହେଉଛି ଆବଷ୍ଟ୍ରାକ୍ଟର ପ୍ରତ୍ୟୟମାନ୍ୟତା । ଉଦାହରଣ ସ୍ୱରୂପ, ପାପ-ପୁଣ୍ୟ, ପ୍ରେମ-ପ୍ରତାରଣା, ଭୋଗ-ନିର୍ଲିପ୍ତତା - ଏହି ସକଳ ଧାରଣା ଆବଷ୍ଟ୍ରାକ୍ଟ ଜଗତର କଥା । ସବୁ ସମାଜ, ସବୁ ଭୂମି ଓ ସବୁ ମଣିଷଙ୍କ ଭିତରେ ଏଗୁଡ଼ିକର ସ୍ୱରୂପ ଭିନ୍ନ ଭିନ୍ନ, ଏକ ନୁହେଁ । ଆମେ ଜାଗତିକ/ସଂସାରିକ ଜୀବନରେ ସେଗୁଡ଼ିକର ପ୍ରୟୋଗକାରୀ ଓ ପରୀକ୍ଷକ । ଏବଂ, ପ୍ରୟୋଗ ମାଧ୍ୟମରେ ଘୋଷଣା କରିଦେଉ ଯେ, ଏହା ହିଁ ବାସ୍ତବତା । ଥରେ ଏହି 'କଳ୍ପିତ ବାସ୍ତବତା' ବା ଭାବଦର୍ଶ ଅନ୍ୟମାନଙ୍କଦ୍ୱାରା ସ୍ୱୀକୃତି ପାଇଗଲେ, ତାହା ଆବଶ୍ୟକତା, ସତ୍ୟ ଓ ବିଧିରେ ରୂପାନ୍ତରିତ ହୋଇଯାଏ । ତାହାକୁ ଅଦୃଶ୍ୟର ଇଚ୍ଛାଶକ୍ତି ବା ଇଙ୍ଗିତ ବୋଲି କୁହାଯାଏ ଏବଂ ଧାରଣାକୁ ମାନଦଣ୍ଡ ବା ଆଧାର କରି ଆମେ ଦୃଶ୍ୟ ବା ଘଟଣାଗୁଡ଼ିକର ବ୍ୟାଖ୍ୟା କରିଥାଉ । ତେବେ ପୃଥିବୀରେ ପ୍ରତ୍ୟେକ ଜନଗୋଷ୍ଠୀ ଏହାର ସାମାଜିକ, ସଂସ୍କୃତିକ ଓ ଆର୍ଥନୀତିକ ବ୍ୟବସ୍ଥାରେ ଯେଉଁ ଆଚରଣଗୁଡ଼ିକୁ "କଳ୍ପନାର ଦୃଶ୍ୟରୂପ" ନିୟାମକ ବା ବିଧିବୋଲି ମାନିନେଉଥାଏ, ତାହା ବ୍ୟକ୍ତିର ଧାରଣା-ସମ୍ଭୂତ ଓ ଗୋଷ୍ଠୀ-ସ୍ୱୀକୃତ ବ୍ୟତୀତ ଅନ୍ୟକିଛି ନୁହେଁ । ତେଣୁ ମାନବବିଦ୍ୟାଶୃଙ୍ଖଳାର ଯେକୌଣସି ପ୍ରାରୂପ (ଦର୍ଶନ, ଭାଷା, ସାହିତ୍ୟ, ସଂଗୀତ, ନୃତ୍ୟ, ଚିତ୍ର, ସ୍ଥାପତ୍ୟ, ମନସ୍ତତ୍ତ୍ୱ ଓ

ପ୍ରାକୃତିକବିଜ୍ଞାନ)ର ଗୋତ୍ର ହେଉଛି ଭାବଦର୍ଶ ବା ଧାରଣା। ସ୍ରଷ୍ଟା (ପ୍ରତିଭା କୁହାଯାଇପାରେ) ସେହି ଭାବଦର୍ଶର ମାଧ୍ୟମ ଏବଂ ଅନୁଷ୍ଠାନଗୁଡ଼ିକ ଧାରଣାର ଗ୍ରାହକ ବା ଭୋକ୍ତା ଏବଂ ପ୍ରସାରକ।

ଆମେ ଏଠାରେ ଯେଉଁ ମାଧ୍ୟମ ବା ମଧ୍ୟସ୍ଥମାନଙ୍କ ସଂପର୍କରେ ଚର୍ଚ୍ଚା କରୁଛେ, ସେମାନଙ୍କୁ ଭାବାଦର୍ଶର ମାଧ୍ୟମ (ସ୍ରଷ୍ଟା) ଓ ଭୋକ୍ତମାନଙ୍କ ମଧ୍ୟରେ ଯୋଗସୂତ୍ରକାରୀ ବା ସଂଯୋଜକ 'ସେତୁ' ମଧ୍ୟ କୁହାଯାଇପାରେ। ମାତ୍ର ଏହି ଗୋତ୍ରର ବ୍ୟକ୍ତିମାନେ କିଛି କମ୍ ଶକ୍ତିଶାଳୀ ନୁହନ୍ତି। ବେଳେବେଳେ ଲାଗେ, ଭୋକ୍ତା ଓ ସ୍ରଷ୍ଟାଙ୍କଠାରୁ ବହୁ ଭାବରେ ଅଧିକ। କିପରି ? ପ୍ରଥମତଃ, ସେ (ସେମାନେ) ଜଣେ ବ୍ୟକ୍ତି। ସେହି ନ୍ୟାୟରେ ଅନ୍ୟ ବ୍ୟକ୍ତିମାନଙ୍କଠାରୁ ଅବଶ୍ୟ ସ୍ୱତନ୍ତ୍ର। ମାତ୍ର ବିଚ୍ଛିନ୍ନ ନୁହନ୍ତି। ତାଙ୍କର ସ୍ୱାତନ୍ତ୍ର୍ୟ ହେଉଛି, ସାଧାରଣ ବ୍ୟକ୍ତିର ଆଖି ଓ ଅବବୋଧ କୌଣସି ସୃଷ୍ଟି/ଦୃଶ୍ୟ/ବିଧିର ଦୃଶ୍ୟଧର୍ମ ଉପରେ କେନ୍ଦ୍ରିଭୂତ ଥିବାବେଳେ, ସେ ଦୃଶ୍ୟର ଅନ୍ତର୍ଜଗତରେ ବିଚରଣ କରୁଥାନ୍ତି। ଅର୍ଥାତ୍, ଆବସ୍ତ୍ରାକ୍ଟକୁ ବୁଝିବା ପାଇଁ ତାଙ୍କ ଚେତନାରେ ପ୍ରଶ୍ନ ନିରନ୍ତର କ୍ରିୟାଶୀଳ ଥାଏ। ସେ ଜାଣିଥାନ୍ତି, କୌଣସି ସୃଷ୍ଟିର ସଂରଚନା-ପ୍ରକ୍ରିୟା, ଯାହା ଦୁଶେ (ସେ ଯାହା କୁହନ୍ତି, ତାହା ସତ ନୁହେଁ), ତାହା ନୁହେଁ। ଜଟିଳ ଓ ବହୁ -ପ୍ରସ୍ତୀୟ। ଅନ୍ୟପକ୍ଷରେ, ସୃଷ୍ଟିର ସକଳ ଭୋକ୍ତା ମଧ୍ୟ ସମଗୋତ୍ରୀୟ ନୁହନ୍ତି। କେତେକଙ୍କ ଚିତ୍ତ ପ୍ରଶ୍ନମୟ ଓ ଦ୍ୱନ୍ଦ୍ୱାତ୍ମକ। ତାଙ୍କୁ ଉଭୟ ପକ୍ଷଙ୍କୁ ନିୟନ୍ତ୍ରଣ କରିବାକୁ ପଡ଼ିବ। ସେଥିପାଇଁ, ଅର୍ଥାତ୍, ଆପଣାର ଉଦ୍ଦେଶ୍ୟ ପୂରଣପାଇଁ ସେ ସୃଷ୍ଟିର ଗୋତ୍ର ଖୋଜୁଥାନ୍ତି। ରୂପକୁ ବାରମ୍ବାର ପ୍ରଶ୍ନ କରୁଥାନ୍ତି। ପ୍ରଶ୍ନରୁ ସମ୍ଭାବ୍ୟ ତତ୍ତ୍ୱ ସ୍ପଷ୍ଟ ହୋଇଯାଉଥାଏ। ପ୍ରଶ୍ନ ଭିତରେ ଥାଏ ଅଧ୍ୟୟନ, ପର୍ଯ୍ୟବେକ୍ଷଣ ଓ ମନନ, ଅନ୍ତର୍ଦୃଷ୍ଟି ଏବଂ ସର୍ବୋପରି ଆବସ୍ତ୍ରାକ୍ଟ ଅବବୋଧ – ଅଭିନିବେଶତା।

ଉପର୍ଯ୍ୟୁକ୍ତ ପ୍ରସଂଗରେ ଅନ୍ୟ ଏକ ଗୁରୁତ୍ୱପୂର୍ଣ୍ଣ ପ୍ରଶ୍ନ, ଜଣେ ମାତ୍ର ବ୍ୟକ୍ତି ପକ୍ଷରେ ଦୃଶ୍ୟର ଅର୍ନ୍ତଅବଲୋକନ ଅର୍ଥାତ୍ ରହସ୍ୟ ଅନାବରଣ ସମ୍ଭବ କି ? କାରଣ କୌଣସି ଭାବଦର୍ଶର ଭ୍ରୂଣ ମଧ୍ୟ ସମକାଳୀନ ସାମାଜିକ, ରାଜନୀତିକ ଓ ସଂସ୍କୃତିକ ପରିମଣ୍ଡଳ ନିୟନ୍ତ୍ରିତ। ତେଣୁ ଜ୍ଞାନଶୃଙ୍ଖଳାର ପ୍ରାରୂପ ଅବହିତ ସହିତ କାଳର 'ସ୍ୱର' ଅନୁଭବ ମଧ୍ୟ "ବାସ୍ତବତା"ଅବବୋଧପାଇଁ ଗୁରୁତ୍ୱପୂର୍ଣ୍ଣ। ସେଥିପାଇଁ କୁହାଯାଏ, ଯେକୌଣସି ସର୍ଜନକର୍ମର ସ୍ୱଷ୍ଟ ପରିଚର୍ଚ୍ଚା ପାଇଁ ଜଣେ ମାତ୍ର ନୁହନ୍ତି, ବହୁ ସଂଖ୍ୟକ ଅବଲୋକନକାରୀଙ୍କ ଆବଶ୍ୟକତା ରହିଛି।

କୌଣସି ଜଣେ ସ୍ରଷ୍ଟା ଏବଂ ତାଙ୍କ ରଚନା (ଗୁଡ଼ିକ)ର ଆଲୋଚନା ପଢ଼ିବାବେଳେ, ସମ୍ୟକ-ଅବଲୋକନକାରୀମାନଙ୍କ ଅବବୋଧଗତ ଭିନ୍ନତା ଆମ ପାଖରେ ସ୍ୱଷ୍ଟ ହୋଇଯାଏ। ବେଳେବେଳେ ସେମାନଙ୍କ 'ସମ୍ୟକଦୃଷ୍ଟି' ଆମକୁ ଆତଙ୍କିତ ଓ ଚକିତ କରେ। ଏହା କାହିଁକି ? – ଏକ ଗୁରୁତ୍ୱପୂର୍ଣ୍ଣ ପ୍ରଶ୍ନ। ପ୍ରଶ୍ନର କୌଣସି ଉତ୍ତର ମଧ୍ୟ ସନ୍ତୋଜନକ ହେବ ନାହିଁ। ମାତ୍ର ସାମ୍ଭାବ୍ୟ ଉତ୍ତର, ସେ ଜଣେ ବ୍ୟକ୍ତି। ତାଙ୍କର ପରିଚୟ ରହିଛି।

ପରିଚୟ କହିଲେ - ତାଙ୍କ ନାଁ, ଗୋତ୍ର, ବଂଶ, ଜାତି, ଭାଷା, ଧର୍ମ ଓ ଅନ୍ୟାନ୍ୟ। ସେ କେଉଁ ଅଞ୍ଚଳ ଓ ରାଜନୀତିକ ଆୟତନର ମଣିଷ। ଆଉ ଟିକିଏ ଭିତରକୁ ଗଲେ, ସେ କେତେ ସୁପଠ, ଜ୍ଞାନବିଜ୍ଞନାର ନାନା ପ୍ରାରୂପ - ଧର୍ମ, ଦର୍ଶନ, ସମାଜବିଜ୍ଞାନ, ମନସ୍ତତ୍ତ୍ୱ, ମାନବବିଦ୍ୟା, ଭାଷା, ସାହିତ୍ୟ, ଇତିହାସ ଓ ଇତିହାସବିଦ୍ୟା, ଭୂଗୋଳ ଓ ପ୍ରାକୃତିକ ବିଜ୍ଞାନ ଆଦି କେତେକେତେ ଭୂମିରେ ତାଙ୍କାର ଗତାଗତ। ଯଦି ଆମେ ସାହିତ୍ୟ କ୍ଷେତ୍ରକୁ ଆସିବା, ତାଙ୍କୁ ପୁଣି କେତେ ମାର୍ଗ, ଯଥା- ଭାଷାତାତ୍ତ୍ୱିକ, ନନ୍ଦନତାତ୍ତ୍ୱିକ, ଶୈଳୀତାତ୍ତ୍ୱିକ, ତୁଳନାତ୍ମକ, ସର୍ଜନାତ୍ମକ, ସମାଜତାତ୍ତ୍ୱିକ, ନୃତାତ୍ତ୍ୱିକ ଓ ଆନ୍ତର୍ବିଦ୍ୟାଭିତ୍ତିକ, ବିଚାର-ଅବଗାହୀ ହେବାକୁ ପଡିବ। ସର୍ବୋପରି, ଯାହାଙ୍କର ସଂପର୍କ ସମୂହ ସହିତ, ସେ ନିରପେକ୍ଷ, ନା ପକ୍ଷଭୁକ୍ତ--କେଉଁ କୂଳରେ ହେବେ, ଏହା ମଧ୍ୟ ଏକ ଗୁରୁତ୍ୱପୂର୍ଣ୍ଣ ପ୍ରଶ୍ନ। ବ୍ୟକ୍ତି ପକ୍ଷରେ ପକ୍ଷମୁକ୍ତ ହେବା କ'ଣ ସମ୍ଭବ ? ପକ୍ଷଭୁକ୍ତତା ବ୍ୟକ୍ତିତ୍ୱର ଅଳଂକାର, ନିରପକ୍ଷତା ଏକ ଛଳନା। ସ୍ୱତନ୍ତ୍ର ଯାହା ଲାଗେ, ତାହା କେବଳ ମାତ୍ରାରେ। ସେ କେଉଁ କୂଳରେ ହେବେ, ସିଦ୍ଧାନ୍ତ କେଉଁ ମାର୍ଗବିଶ୍ୱସ୍ତ ହେବ, ତାହା ତାଙ୍କ ବିଚାରନିର୍ଭର। ଅବଶିଷ୍ଟମାନେ ଗ୍ରାହକମାତ୍ର। ମଜାକଥା, ବେଳେବେଳେ ଏକଥା ମଧ୍ୟ ଲକ୍ଷ୍ୟ କରାଯାଏ, ଜଣେ ବ୍ୟକ୍ତି ବିଭିନ୍ନ ସମୟ ଓ ସ୍ଥାନରେ ଏକ ନିର୍ଦ୍ଦିଷ୍ଟ ସୃଷ୍ଟି ସଂପର୍କରେ ଭିନ୍ନଭିନ୍ନ ମତ ପୋଷଣ କରିଥାନ୍ତି। ଏହି ଭିନ୍ନତା ପୂର୍ବମତର ବିପରୀତ, ପଲ୍ଲବନ ଅଥବା ସଂଶୟାତ୍ମକ ମଧ୍ୟ ହୋଇପାରେ। ଏହାର କାରଣ ମୁଖ୍ୟତଃ ଦୁଇଟି। ପ୍ରଥମ, ତାଙ୍କ ମାନସିକତାର ପରିବର୍ତ୍ତନ, ଏବଂ ଦ୍ୱିତୀୟ, ସ୍ଥାନ ଓ କାଳଗତ ଆବଶ୍ୟକତା। ମାନସିକ ପରିବର୍ତ୍ତନର କାରଣ, ନୂତନ ତଥ୍ୟର ଆବିଷ୍କରଣ, ଅଥବା, ତଥ୍ୟ ବିଶ୍ଳେଷଣଗତ ପ୍ରମାଦର ଉପଲବ୍ଧି। ଏହା ସୁସ୍ଥ ବିଚାରର ଲକ୍ଷଣ। ତେଣୁ ସ୍ୱାଗତଯୋଗ୍ୟ। ସେମାନଙ୍କୁ ବିବେକୀ ଓ ବିଜ୍ଞାନଦୃଷ୍ଟିସଂପନ୍ନ କହିପାରିବା। ମାତ୍ର ଦ୍ୱିତୀୟ ଗୋତ୍ରର ବ୍ୟକ୍ତିତ୍ୱମାନେ ସୁବିଧାବାଦୀ, ଚତୁର। ବିଚାରବିଶ୍ୱସ୍ତ ନୁହନ୍ତି, ଭୀରୁ ଓ ଆତ୍ମପ୍ରଶସ୍ତିପ୍ରିୟ। ତେଣୁ ବିପଦ୍‌ଜନକ - ନିଜପାଇଁ, ସମୂହପାଇଁ, ବର୍ତ୍ତମାନ ଓ ଭବିଷ୍ୟତପାଇଁ।

ମଧ୍ୟସ୍ଥମାନଙ୍କୁ ଆମେ ତିନିଗୋଟି ଗୋତ୍ରର କହିପାରିବା। ପ୍ରଥମ ଗୋତ୍ରର ବ୍ୟକ୍ତିତ୍ୱ କୌଣସି ବ୍ୟକ୍ତି ଓ ଗୋଷ୍ଠୀ ସ୍ୱୀକୃତି ବିଚାର, ଆଦର୍ଶ ଓ ମୂଲ୍ୟବୋଧ; ଦ୍ୱିତୀୟ ଗୋତ୍ର - ସଂରଚନାର ଗଠନ ରୀତି ଏବଂ ତୃତୀୟ ଗୋତ୍ର, ସଂରଚନାର ବ୍ୟାଖ୍ୟାକାର। ପ୍ରଥମ ଗୋଷ୍ଠୀର ମଧ୍ୟସ୍ଥମାନେ ମୁଖ୍ୟତଃ ପକ୍ଷଭୁକ୍ତ। କୌଣସି ବ୍ୟକ୍ତି ଅଥବା ଗୋଷ୍ଠୀସୃଷ୍ଟ ଓ ସ୍ୱୀକୃତ ପ୍ରତିଷ୍ଠିତ ବିଚାର, ଭାବଦର୍ଶ ଓ ମୂଲ୍ୟବୋଧକୁ ସେମାନେ ଅବଶିଷ୍ଟମାନଙ୍କ ପାଖରେ ପ୍ରଚାର କରନ୍ତି। ପୃଥିବୀର ପ୍ରତ୍ୟେକ ଧର୍ମ ଓ ଦର୍ଶନର ପ୍ରଚାରକ/ବ୍ୟାଖ୍ୟାକାରମାନେ ଏହି ଗୋତ୍ରର। ତେଣୁ ସେମାନେ ପକ୍ଷଭୁକ୍ତ। ଦ୍ୱିତୀୟ ଗୋଷ୍ଠୀର ମଧ୍ୟସ୍ଥମାନେ କୌଣସି ସଂରଚନା-ସୂତ୍ରର ହିଁ ବ୍ୟାଖ୍ୟାକାର, ସେମାନେ ବହୁଭାବରେ ବ୍ୟାକରଣନିର୍ଭର। ଗ୍ରନ୍ଥ (ଚିତ୍ର, ଦର୍ଶନ, ସ୍ଥାପତ୍ୟ ଓ ସଂଗୀତ- ଯେକୌଣସି ବିଦ୍ୟାକୁ ଗ୍ରନ୍ଥ କୁହାଯାଇପାରିବ)କୁ ପଢ଼ନ୍ତି। ଶବ୍ଦର ଆଭିଧାନିକ ଓ ବ୍ୟାକରଣିକ ଅର୍ଥ ବୁଝନ୍ତି। ବାକ୍ୟ/ପଦକୁ ପଢ଼ନ୍ତି। ଶବ୍ଦ ଓ ପଦର ବ୍ୟାଖ୍ୟା ମାଧ୍ୟମରେ

ଅର୍ଥକୁ ସ୍ପଷ୍ଟ କରିଦିଅନ୍ତି । ଆମ ଭାଷ୍ୟ ଓ ଟୀକାଗ୍ରନ୍ଥଗୁଡ଼ିକ ଏହି କାଟର । ସଂସ୍କୃତ ସାହିତ୍ୟରେ ଶ୍ରୀଧର ସ୍ୱାମୀ ଓ ମଲ୍ଲୀନାଥ ଏବଂ ଓଡ଼ିଆ ସାହିତ୍ୟରେ କବିରତ୍ନ ମିଶ୍ର (ଶିଶୁଶଙ୍କରଙ୍କ **ଉଷା ଅଭିଳାଷର** ଟୀକାକାର) ଓ ଲୋକନାଥ (ଉପେନ୍ଦ୍ର ଭଞ୍ଜଙ୍କ *ବୈଦେହୀଶବିଳାସ, ପ୍ରେମସୁଧାନିଧି* ଓ *ସୁଭଦ୍ରାପରିଣୟର* ଟୀକାକାର) ଉପର୍ଯ୍ୟୁକ୍ତ ଗୋଷ୍ଠୀର ଉଦାହରଣ । ମାତ୍ର ଏହି କାର୍ଯ୍ୟ ଆଦୌ ସହଜ ନୁହେଁ । ଶବ୍ଦ ଓ ପଦନିହିତ ଅର୍ଥର ସ୍ପଷ୍ଟ ବ୍ୟାଖ୍ୟାନ ଗଭୀର ପାଣ୍ଡିତ୍ୟର ଅପେକ୍ଷା ରଖିଥାଏ । ଏମାନେ ପକ୍ଷଭୁକ୍ତ ନୁହନ୍ତି । ତୃତୀୟ ଶ୍ରେଣୀର ମଧ୍ୟସ୍ଥ ହେଉଛନ୍ତି ବ୍ୟାଖ୍ୟାକାର । ସେମାନେ ଗ୍ରନ୍ଥର ଅର୍ଥକୁ ଅବଶିଷ୍ଟମାନଙ୍କ ପାଖରେ ସ୍ପଷ୍ଟ କରିଦିଅନ୍ତି । ଆବଶ୍ୟକ ସ୍ଥଳେ ଟୀକାକାରମାନଙ୍କର ସାହାଯ୍ୟ ନେଇଥାନ୍ତି ଅଥବା ଟୀକାକାରଙ୍କ ଧର୍ମ ପାଳନ କରୁଥାଆନ୍ତି । ଏମାନେ ଗ୍ରନ୍ଥ ମୂଲ୍ୟାୟନରେ ପକ୍ଷଭୁକ୍ତ ଅଥବା ପକ୍ଷନିରପେକ୍ଷ ମଧ୍ୟ ହୋଇପାରନ୍ତି । ତାହା ସେମାନଙ୍କ ମାନସିକତା ନିର୍ଭର । ପ୍ରଥମ ଦୁଇଗୋତ୍ରର ବ୍ୟକ୍ତିତ୍ୱମାନଙ୍କଠାରୁ ତୃତୀୟ ଗୋତ୍ରର ବ୍ୟକ୍ତିତ୍ୱମାନେ ଅଧିକ ବିପଦଜନକ । ସେମାନେ ସଂରଚନାର ବ୍ୟାକରଣ ଓ ଭାବ – ଉଭୟର ଅବଗାହୀ । ବହୁ ବିଦ୍ୟା-ବିଶାରଦ ଏବଂ, ସେମାନଙ୍କର ବୈଶିଷ୍ଟ୍ୟ ହେଉଛି, ନିଜ ଓ ଅନ୍ୟମାନଙ୍କ ବିଚାର, ଅବବୋଧ, ମାନସିକତା ଓ ମେଧା ସଂପର୍କରେ ସଚେତନତା । ଅର୍ଥାତ୍, ସୃଷ୍ଟି ଓ ସ୍ରଷ୍ଟା ଏବଂ ଗ୍ରାହକ ଓ ସମୀକ୍ଷକ – ଉଭୟ ଗୋଷ୍ଠୀର ମାନସିକତା ଓ ସାମର୍ଥ୍ୟକୁ ଭେଦିପାରି ନଥିଲେ, ଉପହସିତ ହେବା ହିଁ ସେମାନଙ୍କର କପାଳ ଲିଖନ ହୋଇଯାଏ । ତେଣୁ କୁହାଯାଏ, ସୃଷ୍ଟିପ୍ରତି ସମ୍ୟକ ଦୃଷ୍ଟି ସବୁକାଳରେ କୌଣସି ବ୍ୟକ୍ତି ପକ୍ଷରେ ଉଭୟ ପ୍ରୀତିପ୍ରଦ ଓ ବିପଦ୍‌ଜନକ ଅଧ୍ୟାସ । ମାନବବିଦ୍ୟାର ଯେକୌଣସି ପ୍ରାରୂପ ଚର୍ଚ୍ଚାରେ ଆମେ ଉପର୍ଯ୍ୟୁକ୍ତ ଭାବାଦର୍ଶକୁ ପ୍ରୟୋଗ କରିପାରିବା ।

## ପାଞ୍ଚ

ଏବେ ଆମେ ଓଡ଼ିଆ ସାହିତ୍ୟରେ ସମ୍ୟକ ଅବଲୋକନକାରୀମାନଙ୍କ ପାଖକୁ ଆସିବା । ସେମାନେ ସୁଦୂର ଅତୀତରେ ନାନା ରୂପରେ ଥିଲେ । ମୁଖ୍ୟତଃ ଦୁଇଟି ଗୋଷ୍ଠୀ । ପୁରାଣପଣ୍ଡା ଓ କଳାକାର । ପୁରାଣପଣ୍ଡାମାନେ ଗାଁର ଚୌପାଢ଼ୀ, ଭାଗବତଘର, ସାଆନ୍ତଙ୍କ ପିଣ୍ଡା ଅଥବା ଉଆସରେ ବସି ଭାଗବତ, ରାମାୟଣ, ହରିବଂଶ ଓ ନୃସିଂହପୁରାଣ ଆଦି ଗ୍ରନ୍ଥ ପଢୁଥିଲେ ।ନିରକ୍ଷରମାନଙ୍କ ପାଖରେ ଅକ୍ଷରବ୍ରହ୍ମଙ୍କୁ ପହଞ୍ଚାଉଥିଲେ । ଶ୍ରୋତା ଓ ପାଠକ-- ଉଭୟଙ୍କ ପାଇଁ କବିମାନେ ଥିଲେ ଦେବଦେବୀ ପ୍ରେରିତ ଓ ଗ୍ରନ୍ଥ ଅଦୃଷ୍ଟବାଣୀ । ତେଣୁ ଗ୍ରନ୍ଥସ୍ଥ ବାର୍ତ୍ତା ବା ଉପଦେଶ ଅବଶ୍ୟ ଗ୍ରହଣୀୟ, ସୁସ୍ଥ ସମାଜ ଗଠନ ଓ ବ୍ୟକ୍ତିକ ମୁକ୍ତି ପାଇଁ । କଳାକାରମାନେ ଅଭିନୟ କରୁଥିଲେ କଥା, ଗୀତ, ନାଚ ଓ ବାଜାର ସଂହତ ଯୋଡ଼ଣ ମାଧ୍ୟମରେ । ମୂଲ୍ୟବୋଧ ପ୍ରତିଷ୍ଠା ହିଁ ସେମାନଙ୍କର ଆଭିମୁଖ୍ୟ । ଅନ୍ୟ ଗୋଷ୍ଠୀଟି ଟୀକାକାର । ସଂଖ୍ୟାରେ ଅଳପ । ମାତ୍ର ଏମାନଙ୍କ ଅବଲୋକନ ସମ୍ୟକ ନଥିଲା । ବିଂଶ ଶତାବ୍ଦୀର ପ୍ରଥମ ଦଶକରେ ଆମେ ବାସ୍ତବତଃ ଏକ ନୂତନ ଗୋଷ୍ଠୀରେ ସ୍ୱାତନ୍ତ୍ର୍ୟ ଅନୁଭବ କଲୁ । ଏହି ଗୋଷ୍ଠୀର ଉଦୟନ ବାସ୍ତବତଃ ଉନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ । ଗୋଷ୍ଠୀର

ଚେତନାରେ ଉଦୟନକାଳୀନ ଦ୍ୱନ୍ଦ୍ୱ ବା ସଂଘାତ ଅବଶ୍ୟ ରହିଛି। ଏହା ସ୍ୱାଭାବିକ। ଦ୍ୱନ୍ଦ୍ୱ ନଥିଲେ ମୁକ୍ତିପାଇଁ ଅଭୀପ୍ସା ତୀବ୍ରତର ହୁଏ ନାହିଁ। ଶ୍ରୀ ଶ୍ୟାମସୁନ୍ଦର ରାଜଗୁରୁ ଏହି ଦ୍ୱନ୍ଦ୍ୱମୁକ୍ତ ଯାତ୍ରାର ପ୍ରଥମ ସ୍ପଷ୍ଟ ଓ ନିର୍ଭୀକ ଯାତ୍ରୀ। ସେ ସମ୍ୟକ ଓ ବସ୍ତୁନିଷ୍ଠ ଗୋତ୍ରର। ମାତ୍ର ଜଣେ (ଏକ ଗୋଷ୍ଠୀ ମଧ୍ୟ ହୋଇପାରେ) ସ୍ରଷ୍ଟା ଓ ସୃଷ୍ଟିର ମୂଲ୍ୟାୟନ କାଳରେ ମୋହମୁକ୍ତ ହୋଇ ପାରିବେ କି? ସ୍ରଷ୍ଟା ଓ ସୃଷ୍ଟିର ଆବିଷ୍କାର ଓ ମୂଲ୍ୟାୟନ ଯଦି ମଧ୍ୟସ୍ଥଧର୍ମ, ଏହି ପ୍ରକ୍ରିୟାକୁ ମଧ୍ୟସ୍ଥମାନଙ୍କ ଜାତି, ଧର୍ମ, ଅଧ୍ୟୟନ ଓ ଜନ୍ମଭୂମି ବହୁ ଭାବରେ ନିୟନ୍ତ୍ରଣ କରିଥାଏ। ଏହି ଉପସର୍ଗଗୁଡ଼ିକର ଉର୍ଦ୍ଧ୍ୱରେ, ଚେତନାରେ ବଦ୍ଧମୂଳ ଧାରଣା ବା ଭାବାଦର୍ଶ ମଧ୍ୟ ରହିଛି। ଓଡ଼ିଆ ସାହତ୍ୟ ଇତିହାସରେ ଅନ୍ୟତମ କ୍ରାନ୍ତିକାରୀ ସ୍ରଷ୍ଟା ସାରଳା ଦାସଙ୍କ ବ୍ୟକ୍ତିତ୍ୱ କିପରି ମଧ୍ୟସ୍ଥ ଅହଂ-ସଂକ୍ରମିତ, ତତ୍‌ସମ୍ପର୍କରେ ଏଠାରେ ଚର୍ଚ୍ଚା କରାଯାଇ ପାରିବ। ଏହି ଚର୍ଚ୍ଚା ଏକ ଉଦାହରଣ ମାତ୍ର। ପ୍ରକାଶ ଥାଉ କି, ପ୍ରସ୍ତୁତ ସଂକଳନରେ ଯେଉଁ ସମାଲୋଚକମାନଙ୍କ ବ୍ୟକ୍ତିତ୍ୱର ତର୍କଣା କରାଯାଇଛି ଏବଂ ଯେଉଁମାନେ ତର୍କଣା କରିଛନ୍ତି, ସେମାନଙ୍କ ମଧ୍ୟରୁ ଅଧିକ ସଂଖ୍ୟକ ସାରଳା ମୂଲ୍ୟାୟନ କ୍ଷେତ୍ରରେ ଜଣେ ଜଣେ ଦିଗ୍‌ଗଜ ଏବଂ ଅନ୍ୟମାନଙ୍କର ସ୍ୱତନ୍ତ୍ର ମତ ମଧ୍ୟ ରହିଛି।

ଉନବିଂଶ ଶତାବ୍ଦୀରେ ସାରଳା ଚର୍ଚ୍ଚାର ଚରିତ୍ର ନୁହନ୍ତି। ଚର୍ଚ୍ଚାର ଚରିତ୍ରମାନେ ମୁଖ୍ୟତଃ ଉପେନ୍ଦ୍ର ଓ ମଧ୍ୟକାଳୀନ କବି। ଦୀନକୃଷ୍ଣ, ଅଭିମନ୍ୟୁ ଓ ବିଶ୍ୱନାଥ ସେମାନଙ୍କ ମଧ୍ୟରେ ପ୍ରମୁଖ। ହଣ୍ଟର 'ଓରିଶା' (୧୮୭୨) ଓ ବୀମ୍‌ସ The Indigenous Literature of Orissa(୧୮୭୨) ରେ ପ୍ରଦତ୍ତ କବି ଓ ସେମାନଙ୍କ ରଚନାର ତାଲିକାରେ ଶାରଳା ଦାସ ଓ **ମହାଭାରତ** ସ୍ଥାନ ପାଇଛି। ଓଡ଼ିଆ ସାହତ୍ୟ ସମ୍ପର୍କରେ ବୀମ୍‌ସଙ୍କ ମନ୍ତବ୍ୟ

They are all of enordinate length; secondly , they are mere repititions, more or less embelished of the old fables of Brahmanical religion-, reachauffles of the Puranas and Mahabharat, thirdly, they are all, in verse. ଏତିକି। (Beams, J., 2007, p III)

ବାସ୍ତବତଃ ଶୂଦ୍ରମୁନି ସାରଳା ଦାସଙ୍କ **ମହାଭାରତ** କେବେ ଅବିକୃତ ରୂପରେ ପ୍ରକାଶ ପାଇଛି, ତାହା ସ୍ପଷ୍ଟ ହେଉନାହିଁ। **ବିଚିତ୍ର ଭାରତ** ଶୀର୍ଷକରେ ଆଦ୍ୟପର୍ବ, ପ୍ରଥମ ଖଣ୍ଡ, ବାଲେଶ୍ୱର ପ୍ରିଣ୍ଟିଂ କମ୍ପାନୀଦ୍ୱାରା ୧୮୭୯/୧୮୮୦ ମସିହାରେ ପ୍ରକାଶିତ ହେବାର ସୂଚନା ମିଳୁଛି। ଏହା (ଉତ୍କଳ ଦୀପିକା: ୨୫ ସେପ୍ଟେମ୍ବର, ୧୯୮୦) ସାରଳାଙ୍କ ରଚନା ନୁହେଁ। ୧୮୯୯ ମସିହାରେ ଶୂଦ୍ରମୁନି ସାରଳା ଦାସଙ୍କ **ମହାଭାରତ**ର ମୁଦ୍ରଣ ଶେଷ ହୋଇଛି। (ପ୍ରାପ୍ତିସ୍ଥାନ: କଟକ ପ୍ରିଣ୍ଟିଂ କମ୍ପାନୀ, ମୂଲ୍ୟ ୧୬ ଟଙ୍କା ୧୫ ଅଣା,**ଉତ୍କଳ ଦୀପିକା:**୨୩ ସେପ୍ଟେମ୍ବର ୧୯୯୯)। ସେହି ବର୍ଷ ଏପ୍ରିଲ ମାସରେ **ବିଲଙ୍କା ରାମାୟଣ**(ଦୀପିକା: ତା ୧.୪ .୧୮୯୯) ଏବଂ ଏହାର ଯଥେଷ୍ଟ ପୂର୍ବରୁ ଭାଗୀରଥି ଷାଠିଆଙ୍କଦ୍ୱାରା କୃଷ୍ଣ ସିଂହଙ୍କ ମହାଭାରତ ( ଉତ୍କଳ ଦୀପିକା: ତା -୮.୧.୧୮୮୭) ପ୍ରକାଶପାଇଛି। ଏବଂ, ମଜାକଥା,

କୃଷ୍ଣ ସିଂହ ଓ ସାରଳା ଦାସଙ୍କ ମହାଭାରତ ପୂର୍ବରୁ ଫକୀରମୋହନଙ୍କ ଅନୂଦିତ ମହାଭାରତ ବଜାରକୁ ଆସିଛି, ବାଲେଶ୍ୱରରେ, ଦେଙ୍କ ପ୍ରେସରୁ। ଓଡ଼ିଆ ଭାଷାରେ **ମହାଭାରତ** ଓ **ରାମାୟଣ** ଗ୍ରନ୍ଥ ଥାଉଁଥାଉଁ ସଂସ୍କୃତ ଗ୍ରନ୍ଥର ପୁନଃ ଅନୁବାଦର ଆବଶ୍ୟକତା ସମ୍ପର୍କରେ ଅବଶ୍ୟ ଚର୍ଚ୍ଚା ହୋଇଛି। ମାତ୍ର ଫକୀରମୋହନ ନିଜ ଆଦର୍ଶରୁ ଓହରି ଯାଇନାହାନ୍ତି। ତାଙ୍କ ମନ୍ତବ୍ୟ ଏହିପରି :

ମୂଳ ସଂସ୍କୃତ ମହାଭାରତର ମୂଳ ପଦ୍ୟାନୁବାଦ
'ଯାହା ନାହିଁ ଭାରତରେ, ତାହା ନାହିଁ ଭାରତରେ'।

"ସଂପ୍ରତି ଏ ଦେଶରେ ଯେଉଁ ତାଳପତ୍ର ଲିଖିତ ମହାଭାରତ ନାମକ ପୁସ୍ତକ ମିଳୁଅଛି, ତାହା କେବଳ ମହାଭାରତର ଛାୟାମାତ୍ର। ଭାରତୀୟ ନାୟକନାୟିକାଙ୍କ ନାମ ଭିନ୍ନ ଅନ୍ୟ ସବୁ ବିଷୟରେ ମୂଳଗ୍ରନ୍ଥ ସହିତ ଏହି ଗ୍ରନ୍ଥ ଏତେ ପୃଥକ୍, ଆଖ୍ୟାୟିକାମାନ ଏତେ ଅସଂଲଗ୍ନ ଓ ବିଶୃଙ୍ଖଳ ଏବଂ ଗ୍ରାମ୍ୟ ଭାଷାରେ ପରିପୂର୍ଣ୍ଣ ଯେ, ଏହାକୁ ମହାଭାରତ ବୋଇଲେ ମୂଳ ଭାରତକୁ ନିତାନ୍ତ ଅବମାନନା କରିବାକୁ ହୁଏ। ମୂଳ ଗ୍ରନ୍ଥରେ ଯେଉଁ ବିଷୟକ ଧର୍ମ ଓ ନୀତି ବିଷୟକ ମହାମୂଲ୍ୟ ଉପଦେଶମାନ ଅଛି, ଉତ୍କଳ ଭାରତରେ ତାହାର ଗନ୍ଧ ମାତ୍ର ନାହିଁ ବୋଇଲେ ଅତ୍ୟୁକ୍ତି ହେବ ନାହିଁ। ମଧ୍ୟ ଅଶିକ୍ଷିତ ଲୋକମାନଙ୍କ ହାତରେ ପଡ଼ି ପଦ୍ୟଗୁଡ଼ିକ ଏପରି କଦର୍ଯ୍ୟ ଓ ଅସଂଲଗ୍ନ ଓ ଭାଷା ଏମନ୍ତ ଅପାଠ୍ୟ ହୋଇପଡିଛି ଯେ, ତାହା କେବେ ପାଠର ଯୋଗ୍ୟ ହୋଇନପାରେ। ଗ୍ରାମ ଗ୍ରାମକେ କେବଳ ଦୁଇ/ଏକ ଜଣ ଲେଖାଏଁ ଲମ୍ବଳ ପୋଥି ପଢ଼ିବାର ଲୋକ ଥା'ନ୍ତି। ସେମାନଙ୍କର ସାହାଯ୍ୟ ବିନା ଭାରତ ଶୁଣିବାର ଉପାୟ ନାହିଁ। ଆଜିକାଲି ଶିକ୍ଷିତ ଲୋକ ଭାରତ ସୀମା ସ୍ପର୍ଶ କରିବାକୁ ନିତାନ୍ତ ଅନିଚ୍ଛୁକ। ମାତ୍ର ସେଥିପାଇଁ ଆମ୍ଭେମାନେ ସେମାନଙ୍କୁ ଦୋଷୀ କରିନପାରୁ। କାରଣ ୪୦-୫୦ ଟଙ୍କା ବ୍ୟୟ କରି ଏପରି କଦର୍ଯ୍ୟ, ଅପାଠ୍ୟ, ଅଶୁଦ୍ଧ, ଅର୍ଦ୍ଧଶକଟ ପରିମିତ ତାଳପତ୍ର କିଣି କାହାର ବା ପଢ଼ିବାକୁ ପ୍ରବୃତ୍ତି ଜନ୍ମିବ ? ଆମ୍ଭେମାନେ ଉତ୍କଳ ଦେଶର ଏହି ମହତ ଅଭାବଟି ପୂର୍ଣ୍ଣ କରିବାକୁ ମାନସ କରିଅଛୁ। ଆମ୍ଭମାନଙ୍କ ସଂକଳ୍ପ ମାନସ ମାତ୍ର। କାର୍ଯ୍ୟ ସଂପାଦନର ଭାର ଦେଶୀୟ ଶିକ୍ଷିତ ଲୋକମାନଙ୍କ ହାତରେ ରହିଲା।"

ଫକୀରମୋହନ, ଅନୁବାଦକ। (ବାଲେଶ୍ୱର ସମ୍ବାଦବାହିକା, ତା ୨୪.୧୧.୧୮୮୫)

ଏହାର କାରଣ କ'ଣ ବା ହୋଇପାରେ? ସମ୍ଭବତଃ, ସାରଳା ଦାସ ନବ- ଶିକ୍ଷତ ଗୋଷ୍ଠୀର ଅଭିଜାତ ମାନସିକତାର ଶିକାର ହୋଇଛନ୍ତି। ତାଙ୍କ ସର୍ଜନକର୍ମ ବିରୋଧରେ ଅଭିଯୋଗ ଦୁଇଟି; ପ୍ରଥମ, ରଚନାଶୈଳୀ ଦ୍ୱିପଦୀ, ମାତ୍ର ପ୍ରତ୍ୟେକ ପାଦରେ ବିଷମ ଅକ୍ଷର। ଗାନଧର୍ମରହିତ। ଦ୍ୱିତୀୟ, କାହାଣୀ ଓ ଭାବପ୍ରସ୍ଥ। ଏହା ବ୍ୟାସକୃତ ମହାଭାରତ ନୁହେଁ। ଚରିତ୍ର ଚିତ୍ରଣ ଓ କାହାଣୀ ସଂଯୋଜନରେ ଉଭୟ ମଧ୍ୟରେ ଭୟଙ୍କର ବୈସାଦୃଶ୍ୟ।

ଯାବତୀୟ ବିକୃତି। କେତେକ ସ୍ଥଳରେ ବର୍ଣ୍ଣନା ଅତ୍ୟନ୍ତ ଅପାଠ୍ୟ ଓ ଅଶ୍ଳୀଳ। ଶବ୍ଦଗୁଡ଼ିକ ପୁଣି ଗ୍ରାମ୍ୟ, ଲୋକତୁଣ୍ଡ ଅନୁରୂପ ଓ ଅମାର୍ଜିତ। ଭାରତର ଅନ୍ୟତ୍ର ଏହି ରୀତି ପ୍ରାୟତଃ ଅନୁପସ୍ଥିତ। ତେଣୁ ରଚନା ରୀତି ବଦଳାଇବାକୁ ପଡ଼ିବ। ଅର୍ଥାତ୍ ଗାନଧର୍ମୀ କରିବାକୁ ହେବ। ଗ୍ରାମ୍ୟ ଶବ୍ଦକୁ ତତ୍ସମ ରୂପ ଦେବାକୁ ପଡ଼ିବ। ଆବଶ୍ୟକ ସ୍ଥଳେ କାହାଣୀକୁ ମଧ୍ୟ ଖଣ୍ଡନମଣ୍ଡନ କରାଯାଇପାରେ। ଆମକୁ ପ୍ରମାଣ କରିବାକୁ ହେବ ଯେ, ଏହା ଆଦୌ ଏକ ଗ୍ରାମ୍ୟ ମହାଭାରତ ନୁହେଁ, ଶାସ୍ତ୍ରୀୟ। ପଣ୍ଡିତମାନେ ଲାଗି ପଡ଼ୁଛନ୍ତି ଗ୍ରନ୍ଥର ପରିଶୋଧନରେ। ବିଷମ ଅକ୍ଷରବିଶିଷ୍ଟ ପଦକୁ ଚଉଦ ଅକ୍ଷରି କରିଦେଇଛନ୍ତି। ଅକ୍ଳାନ୍ତ ଶ୍ରମ। କପିଳେଶ୍ୱର ବିଦ୍ୟାଭୂଷଣ ନେତୃତ୍ୱ ନେଇଛନ୍ତି। ଏତେ ଶ୍ରମ କରିବାର ପ୍ରଧାନ କାରଣ, ମହାଭାରତ ଆମ ଜାତୀୟ ଅସ୍ମିତାର ଅନ୍ୟତମ ଉଦାହରଣ। ଆମେ ଏହି ପରବର୍ତ୍ତନକୁ ନବଶିକ୍ଷିତମାନଙ୍କ ରୁଚିସମ୍ପନ୍ନ ମାନସିକତା ବୋଲି କହିପାରିବା।

ସାରଳା ଦାସ ମହାଭାରତ ସମ୍ପର୍କରେ ପ୍ରଥମ ଚର୍ଚ୍ଚାକାର ମନମୋହନ ଚକ୍ରବର୍ତ୍ତୀ। ତାହା ପୁଣି ଇଂରାଜୀରେ। ତାଙ୍କ ଭାଷାରେ ' He was a Cudra by caste, and while he professed to be a Vaishanava and speaks devoutly of Jagannath, he was at heart a worshipper of goddess Chandi xx. The (goddess) Hingula Chandi. Sarala dwells at Jakhemraputra. x x x She is my Tulsi (Ocymun) garland that swings over the breast x x at the fit of Cri-Cundi, the resident of Jakheimapura, the Cudra ascetic Sarala Dasa seeks refuge' x x x

It is impossible at present to find out the precise date of this work. It must be older than the 3rd Anca of Ramachandra Deva, Mithuna 21st, on which date the oldest manuscript I have seen was copied. The 3rd Anca Ramachandra Deva second, falls in 1723- 3 A.D. How much older he was there was no means of knowing. But from it's popularity and veneration from its uneven vercification, and peculiar forms of several of its words and grammatical terminations I infer that the work cannot be later than 16th century A.D. and might before to its first half. Like the Sanskrit original it forms a gigantic undertaking and takes of about two thousands folios, It does not pretend to any literary finish and the verse often rhyme unequally. But it has the marits of having superseded the Sanskrit *Mahabharata* among the common mass .

ସେ ପୁଣି କହିଛନ୍ତି, ଲୋକେ କୁହନ୍ତି, ସାରଳାଙ୍କ ଘର ଝଙ୍କଡ ପ୍ରଗଣାର କାଳିନାଗ ଗାଁ। ଜାତିରେ ଚଷା। ତାଙ୍କର ଅନ୍ୟ ତିନି ଭାଇ ଥିଲେ। ସକଳଙ୍କ ମଧ୍ୟରେ ସେ ନିର୍ବୋଧ। ମାତ୍ର ଝଙ୍କଡ଼ର ଇଷ୍ଟଦେବୀ ଶାରଳାଙ୍କ କୃପାରୁ ତାଙ୍କର କବିତ୍ୱ ପ୍ରାପ୍ତ ହୋଇଥିଲା। ଦେବୀ ତାଙ୍କୁ ମହାଭାରତ ଲେଖିବାପାଇଁ କହିଲେ। ସେ ଲେଖିଲେ। ମାତ୍ର  କବି ଦେବୀଙ୍କୁ କହିଲେ, ଭଲ ଆଉ ଖରାପ ପଦ ମଧ୍ୟରେ ପାର୍ଥକ୍ୟ ଜାଣିବା ତାଙ୍କ ସାମର୍ଥ୍ୟ ବାହାରେ। ଦେବୀଙ୍କ ପରାମର୍ଶ ଥିଲା - ଯାହା ତୋ ମନକୁ ଆସିବ, ତାଳପତ୍ରରେ ଲେଖିବୁ। ଅଶ୍ୱସ୍ତି ଲାଗିଲେ ଲେଖାପତ୍ରର ବିଡ଼ାକୁ ନେଇ ଚନ୍ଦ୍ରଭାଗା ନଈକୂଳକୁ ଯିବୁ।  ପାଣିରେ ଭସେଇ ଦେବୁ। ଯେଉଁ ପତ୍ରଗୁଡ଼ିକ ଭାସିଉଠିବ, ସେଗୁଡ଼ିକୁ ସଜାଡ଼ି ବାନ୍ଧିଦେବୁ। ତାହା ହେବ ମହାଭାରତ। ଚନ୍ଦ୍ରଭାଗାର ଅନ୍ୟ ନାମ ବୁଢ଼ାନଈ। ଝଙ୍କଡ଼ ପ୍ରଗଣାରେ ତେନ୍ତୁଳିପଦା ଗାଁ ପାଖ ଦେଇ ବହିଯାଉଛି।

ମହାଭାରତର ଲେଖା ସରିଛି। କବି ପୋଥିବିଡ଼ା ଧରି ପୁରୀ ଯାଇଛନ୍ତି। ପଣ୍ଡିତମାନଙ୍କ ସ୍ୱୀକୃତି ଆଶା କରିଛନ୍ତି। ମାତ୍ର ପୁରସ୍କାର ମିଳିଛି ଉପହାସ। ରାତିରେ କିନ୍ତୁ ଜଗନ୍ନାଥ ରାଜାଙ୍କୁ ସ୍ୱପ୍ନରେ ସାରଳାଙ୍କ ଗ୍ରନ୍ଥକୁ ସ୍ୱୀକାର କରବା ପାଇଁ ପରାମର୍ଶ ଦେଇଛନ୍ତି। ତାଙ୍କ ଆଦେଶକ୍ରମେ ପଣ୍ଡିତମାନେ ଗ୍ରନ୍ଥର ପରୀକ୍ଷା କରିଛନ୍ତି। ଏଥିରେ ସ୍ୱୀକୃତିର ମୋହର ବାଜିଛି। ରାଜା ଖୁସିହୋଇ ଝଙ୍କଡ଼ ସହିତ ଅନ୍ୟ ତିନିଗୋଟି ପ୍ରଗଣା ଜାଗିରି ଭୋଗ ପାଇଁ କବିଙ୍କୁ ନିର୍ଦ୍ଦେଶ ଦେଇଛନ୍ତି। ସାରଳାଙ୍କ ବଂଶଧରମାନେ କାଳିନାଗ, ତେନ୍ତୁଳିପଦା ଓ ପାଖ ଗ୍ରାମରେ ରହୁଛନ୍ତି। ବର୍ତ୍ତମାନ ସେମାନେ କରଣ ଜାତି ରୂପରେ ପରିଚିତ। ମାତ୍ର ଗୁରୁତ୍ୱପୂର୍ଣ୍ଣ ପ୍ରସଙ୍ଗ, ମନମୋହନ ଭାଗବତକାର ଜଗନ୍ନାଥ ଓ ରାମାୟଣକାର ବଳରାମଙ୍କୁ ସାରଳାଙ୍କ ପୂର୍ବବର୍ତ୍ତୀ ବ୍ୟକ୍ତିତ୍ୱ ବୋଲି ଅନୁମାନ କରିଛନ୍ତି।(Chakravarty,M.1898,pp346-349) ପ୍ରକାଶ ଥାଉ କି, ମନମୋହନ ବଙ୍ଗାଳୀ। ରେଭେନ୍ସା କଲେଜରେ ବି.ଏ ପର୍ଯ୍ୟନ୍ତ ପଢ଼ିଛନ୍ତି। ମାଜିଷ୍ଟ୍ରେଟ ଚାକିରୀ କରିଛନ୍ତି।ଅନ୍ୟ କେତେକ ବଙ୍ଗାଳୀଙ୍କ ପରି ଜାତିପ୍ରୀତିବୋଧରେ ସାମାନ୍ୟ ଅହଂକାର ତାଙ୍କ ଭିତରେ ନାହିଁ। ତାଙ୍କ ଆଲୋଚନା ତଥ୍ୟଭିତ୍ତିକ, ବିଶ୍ଳେଷଣାତ୍ମକ, ଅନ୍ତର୍ଦୃଷ୍ଟିସମ୍ପନ୍ନ ଓ ମୋହମୁକ୍ତ।

ବିଂଶ ଶତାବ୍ଦୀରେ ପ୍ରଥମ ଦଶକରେ, ବାସ୍ତବତଃ ଶ୍ରୀ ଶ୍ୟାମସୁନ୍ଦର ରାଜଗୁରୁ (୧୮୬୨-୧୯୦୯) ଆମକୁ କବି ଜୀବନୀ ସଂରଚନା ଓ ସାହିତ୍ୟ ସମୀକ୍ଷଣର ବିଜ୍ଞାନଦୃଷ୍ଟି ଦେଇଛନ୍ତି। ସେ ଦକ୍ଷିଣ ଓଡ଼ିଶାର ପ୍ରଥମ ସ୍ନାତକ(୧୮୯୨), ପାରଳାଖେମଣ୍ଡିରେ ରାଜଶିକ୍ଷକ, ରାଜନେତା ଓ ସଂଗଠକ। ତାଙ୍କ ଦୃଷ୍ଟିରେ ଶାରଳା ଏହି ପରି -- 'ଝଙ୍କଡ଼ ପ୍ରଗନାସ୍ଥ ଶାରଳା ଦେବୀଙ୍କ ପୀଠ ନିକଟରେ କୌଣସି ଗ୍ରାମରେ ଜନ୍ମ', 'ସାରଳାଦେବୀଙ୍କ ଠାରେ ଏହାଙ୍କର ପ୍ରଗାଢ଼ ଭକ୍ତି ଓ ବିଶ୍ୱାସ  ଥିବାରୁ ଶାରଳା ଦାସ ନାମ ଧାରଣ କରଛନ୍ତି", 'କେବଳ ମୁନି କହିଲେ ଆତ୍ମପୌତି ସୂଚିତ ହେବ, ଏହି ଭୟରେ ଶୂଦ୍ର ଶବ୍ଦ ଆଗରେ ରଖି କବି ସୌଜନ୍ୟର ପରାକାଷ୍ଠା ଦେଖାଛନ୍ତି', 'କବି ବର୍ଣ୍ଣରେ ଶୂଦ୍ର, ଜାତିରେ ମୁନି। ଏ

ପ୍ରଦେଶରେ ମୁନି ବୋଲି ଏକ ଜାତି ଅଛନ୍ତି। ଓଡ଼ିଶାରେ ମଧ୍ୟ ଥିବା ସମ୍ଭାବନା। ରାଉଳମାନଙ୍କ ପରି ଠାକୁରାଣୀ ସେବା ଏମାନଙ୍କର ପ୍ରଧାନ ବୃତ୍ତି', 'ସଂସ୍କୃତ ମହାଭାରତ ରଚୟିତା ବ୍ରହ୍ମମୁନି ଥିଲେ ବୋଲି ପ୍ରାକୃତ ମହାଭାରତ ରଚୟିତା ଆପଣାର ଟେକ ରଖିବା ନିମନ୍ତେ ବର୍ଣ୍ଣର ନାମ ଓ ଜାତିର ନାମ ଏକତ୍ର କରି ଶୂଦ୍ରମୁନି ଉପାଧି ଧାରଣ କରିଥିଲେ', 'ଓଡ଼ଶାର ରାଜା କପିଳେନ୍ଦ୍ର ଦେବଙ୍କ ରାଜତ୍ୱ ସମୟରେ ଶାରଳା ଦାସ ମହାଭାରତ ରଚନା କରିଥିଲେ', 'ନ ପଢ଼ିଲି ଅକ୍ଷର ମୁଁ, ନୁହ ଶାସ୍ତ୍ରବାଦୀ ବୋଲି କବି ଲେଖିଥିଲେ ମଧ୍ୟ ତାହାଙ୍କ ଭାରତ ପଢ଼ିଲେ ସ୍ପଷ୍ଟ ବୋଧହୁଏ, ଅବଶ୍ୟ ତାହାଙ୍କର ସଂସ୍କୃତ ପଢ଼ା ଥିଲା', 'ନିଜର ଅକିଞ୍ଚନତା ଦେଖାଇବା ସକାଶେ କବିମାନେ ମୁଁ ମୂର୍ଖ, ଦୀନହୀନ ଅଜ୍ଞାନ ଅପଣ୍ଡିତ ବୋଲି ଲେଖିଥାନ୍ତି', 'ଶାରଳା ଦାସ ଜ୍ୟୋତିଷ ଶାସ୍ତ୍ର ମଧ୍ୟ ଜାଣିଥିଲେ', 'ମହାଭାରତ ମୂଳ ସଂସ୍କୃତାନୁଯାୟୀ ନୁହେଁ, ଏଥିରେ ଅନେକ ମୂଳ ବଷୟ ପରିବର୍ତ୍ତିତ ଓ କେତେକ କଳ୍ପିତ ବିଷୟ ସଂଯୋଜିତ', 'ଶାରଳାଙ୍କ ଭାଷା ଅତି ସରଳ ଓ ସୁନ୍ଦର, ବର୍ଣ୍ଣନା ସ୍ୱାଭାବିକ, ଆଡ଼ମ୍ବରଶୂନ୍ୟ ଅଥଚ ଭାବପୂର୍ଣ୍ଣ', 'ଯେଉଁ କଳ୍ପନା ଶକ୍ତି ସ୍ୱଚ୍ଛନ୍ଦ ଭାବରେ ପରିଚାଳନ କରିଛନ୍ତି x x ଅତ୍ୟନ୍ତ ସୁଶ୍ରାବ୍ୟ ଓ ମନୋହର', 'ଶାରଳା ଦାସଙ୍କ ଛନ୍ଦରେ ଶେଷାକ୍ଷର ମିଳନ ଭିନ୍ନ କୌଣସି ଶୃଙ୍ଖଳା ବା ନିୟମ ଲକ୍ଷିତ ହୁଏ ନାହିଁ, ୧୨ ରୁ ୨୪ ଅକ୍ଷର ଡେଇଁ ଯାଇଛନ୍ତି', ' ଅନୁସନ୍ଧାନ କରି ଦେଖିଲେ ଅନୁମାନ ହୁଏ, ଓଡ଼ିଆ ଢଗ ଢମାଳି ତାହାଙ୍କ ଏକମାତ୍ର ଆଦର୍ଶ ଥିଲା। ଅନେକ ଓଡ଼ିଆ ଢଗରେ ଅନ୍ତ୍ୟମେଳ ଭିନ୍ନ ଅକ୍ଷର ନିୟମ ଦୃଷ୍ଟ ହୁଏନାହିଁ', x x ଯେଉଁ ଧାରାରେ ଭାରତ ତଥା ରାମାୟଣ ଗାନ କରାଯାଏ, ତାହାକୁ ବୋଲା ବା ପଢ଼ା କୁହନ୍ତି। ଢ଼ଗବୃତ୍ତ ନୀଚବୃତ୍ତ ନୁହେଁ', 'ଏହି ଢଗ ଓ ଆଧୁନିକ ଘଣ୍ଟାରବ ସମାନ, ଶାରଳା ଦାସଙ୍କ ଛନ୍ଦ ଢଗ ଢମାଳିର ଅନୁକରଣ। ଚଣ୍ଡୀପୁରାଣ ଶାରଳା ଦାସଙ୍କ ଅନ୍ୟତମ ଗ୍ରନ୍ଥ' (ଉତ୍କଳ ସାହିତ୍ୟ: ୭ମ ବର୍ଷ, ୪ର୍ଥ ସଂଖ୍ୟା (୧୯୦୪-ଏପ୍ରିଲ)। ଏକଥା ଉଲ୍ଲେଖ କଲେ ଆଦୌ ଅତିରଞ୍ଜନ ହେବ ନାହିଁ ଯେ, ରାଜଗୁରୁଙ୍କ ଦୃଷ୍ଟିରେ ସାରଳା ହେଉଛନ୍ତି ଆଦି କବି ପରବର୍ତ୍ତୀକାଳୀନ ପ୍ରତ୍ୟେକ ସାରଳା-ସାହିତ୍ୟ-ସମାଲୋଚକଙ୍କପାଇଁ ରଚନା ଦିଗବାରେଣୀ ତୁଲ୍ୟ।

ଏହି ଲେଖା ପ୍ରକାଶିତ ହେବାର ମାତ୍ର ଦୁଇ ମାସ ପରେ ମଧୁସୂଦନ ଦାସ (ଶିକ୍ଷକ ଓ ଗବେଷକ) **ଉତ୍କଳସାହିତ୍ୟ** ପତ୍ରିକାରେ *ଓଡ଼ିଆ ଭାଷା ଓ ପ୍ରାଚୀନ ଓଡ଼ିଆ ସାହିତ୍ୟ* ଶୀର୍ଷକରେ ଆଲୋଚନା ଲେଖିଛନ୍ତି। ସେ ପ୍ରାଚୀନ ଓଡ଼ିଆ ସାହିତ୍ୟକୁ ପୁରାଣ, କାବ୍ୟ ଓ ବିବିଧ ଭେଦରେ ତିନି ଭାଗରେ ବିଭକ୍ତ କରିଛନ୍ତି। ସାରଳା ଦାସଙ୍କ ରଚନା ପୁରାଣ ଗୋତ୍ରର। ମାର୍କଣ୍ଡ ଦାସ, ନାରାୟଣ ପୁରୋହିତ ଓ ହଳଧର ଦାସ ତାଙ୍କ ପୂର୍ବଜ। ସେ କବି ନୀଳାମ୍ବର ଦାସ ଓ ରାଜା କପିଳେନ୍ଦ୍ର ଦେବଙ୍କ ସମକାଳୀନ। ମଧୁସୂଦନ ସାରଳାଙ୍କ ସମ୍ପର୍କରେ ଗୋଟିଏ ମାତ୍ର ପାରାଗ୍ରାଫ୍ ଲେଖିଛନ୍ତି, ତାହାର କେତୋଟି ଧାଡ଼ି ଏହିପରି

'କଟକ ଜିଲ୍ଲା ଅନ୍ତର୍ଗତ ଝଙ୍କଡ଼ ପରଗଣାର ତେନ୍ତୁଲିପଦା ନାମକ ଗ୍ରାମରେ ଶାରଳା

ଦାସ ଜନ୍ମ ଗ୍ରହଣ କରିଥିଲେ। ତାହାଙ୍କ ବଂଶଧରମାନେ ଆଜିକାଲି କରଣ ବୋଲି ପରିଚୟ ଦିଅନ୍ତି। ମାତ୍ର ସେମାନେ ପ୍ରକୃତରେ ଖଣ୍ଡାଏତ। ସେମାନଙ୍କର ସଂଜ୍ଞା ପରିଜା ଅଟେ। ସେ ସମୁଦାୟ ମହାଭାରତର ବିବରଣ ଓଡ଼ିଆ ଭାଷାରେ ଅନୁବାଦ କରି ଯାଇ ଅଛନ୍ତି, ମାତ୍ର ଏହାଙ୍କ ମହାଭାରତକୁ ଅନୁବାଦ ବୋଲି କହିବା ଉଚିତ ନୁହେଁ। କାରଣ ମୂଳ ସଂସ୍କୃତ ଗ୍ରନ୍ଥ ସବୁଠାରେ ଅନୁସୃତ ହୋଇ ନାହିଁ। କବି ସମ୍ଭବତଃ ଜ୍ୟୋତିଷ ଜାଣୁଥିଲେ। .. ଭାଷା ଅତି ସରଳ ଓ ସ୍ଥାନେ ସ୍ଥାନେ ଅତ୍ୟନ୍ତ ଓଜସ୍ୱିନୀ, ଛନ୍ଦରେ ଶେଷାକ୍ଷର ମିଳନ ଛଡ଼ା ଅନ୍ୟ କୌଣସି ଶୃଙ୍ଖଳା ଦେଖାଯାଏ ନାହିଁ। ଶେଷାକ୍ଷର ମିଳାଇବାକୁ ଯାଇ କବି ତୁକୁ, ମୁକୁ, ସବୁନ୍ତି, ବୈତ୍ରଣୀ ପ୍ରଭୃତି କେତେଗୁଡ଼ିଏ ଅପ୍ରଚଳିତ ଶବ୍ଦ ବ୍ୟବହାର କରିଛନ୍ତି। **ଚଣ୍ଡି ପୁରାଣ** ନାମକ ଆଉ ଖଣ୍ଡିଏ ଗ୍ରନ୍ଥ ଏହାଙ୍କ ରଚିତ ଏବଂ ଏହାର ଭାଷା ମଧ୍ୟ ଅତ୍ୟନ୍ତ ତେଜସ୍ୱିନୀ। ଯେଉଁଠାରେ ବୀରରସ ବିଷୟ ଅଛି, ସେଠାରେ କବିଙ୍କ ଲେଖନୀର ତେଜସ୍ୱୀତା ଦେଖିଲେ ହୃଦୟ ନାଚିଉଠେ। ଯେତେବେଳେ ଓଡ଼ିଶାର ପୂର୍ଣ୍ଣ ସ୍ୱାଧୀନତା ବିରାଜମାନ ଥିଲା, ତେତେବେଳେ ଏ ମହାତ୍ମା ଜନ୍ମିଥିଲେ। (*ଉତ୍କଳସାହିତ୍ୟ* : ଆଶ୍ୱିନ, ୧୩୧୧ ସାଲ୍ ,ପୃ. ୧୮୬)।

କବିଙ୍କ ସଂକ୍ରାନ୍ତରେ ମଧୁସୂଦନଙ୍କ ନୂତନ ସଂଯୋଜନା- ସେ ଚଷା କି କରଣ ନୁହନ୍ତି, 'ଖଣ୍ଡାଏତ' , 'ମହାତ୍ମା' ଓ ରଚନା ଅଧିକତର ବୀରରସାତ୍ମକ ଏବଂ ନାଁ 'ଶାରଳା' ନୁହେଁ 'ସାରଳା'।

ଓଡ଼ିଆ ଭାଷାରେ ଲିଖିତ ଓଡ଼ିଆ ସାହିତ୍ୟର ପ୍ରଥମ ଇତିହାସ ବହି ତାରିଣୀ ଚରଣ ରଥଙ୍କ *ଉତ୍କଳ ସାହିତ୍ୟର ଇତିହାସ* (୧୯୧୬) ବହିରେ ସାରଳା ଦାସଙ୍କ ସମ୍ପର୍କରେ ମାତ୍ର ୧୩ ଧାଡ଼ି ରହିଛି । ଏଥିରେ ନୂତନତା କିଛି ନାହିଁ। ମାତ୍ର ବଡକଥା, ସେ ସାହିତ୍ୟରେ ଯୁଗ ବିଭାଜନ କରିଛନ୍ତି ଏବଂ ଆଦି ଯୁଗରେ ସ୍ଥାନ ପାଇଛନ୍ତି ସାରଳା ଦାସ ( ୧୦୦୦-୧୫୦୦)। ସାରଳାଙ୍କ ପୂର୍ବର କବି ତାଲିକାରେ ନୂତନ ଭାବରେ ଦୁଇଟି ନାଁ ସଂଯୋଜିତ: ବଳଭଦ୍ର ଭଞ୍ଜ(ଗୁମୁସର: ୧୦୨୭-୧୦୫୭ *ଭାବବତୀ*ର କବି)ଏବଂ *ହାରାବତୀ* କାବ୍ୟର କବି ରାମଚନ୍ଦ୍ର ପଟ୍ଟନାୟକ। ରଥଙ୍କର ଏକ ଗୁରୁତ୍ୱପୂର୍ଣ୍ଣ ପ୍ରଶ୍ନ ମଧ୍ୟ ରହିଛି -- ଉତ୍କଳର ପ୍ରଥମ କବି କିଏ? ଉତ୍ତର ସ୍ପଷ୍ଟ, ଆମେ ଜାଣିନାହୁଁ। ଛୋଟ ଛୋଟ ରଚନା ଅବଶ୍ୟ ଥିବ, ମାତ୍ର ସାରଳା ଦାସଙ୍କ ପର୍ଯ୍ୟନ୍ତ ଅନ୍ୟ କୌଣସି କବି **ମହାଭାରତ** ପରି ଏଡ଼େ ପ୍ରକାଣ୍ଡ ଗ୍ରନ୍ଥ ଲେଖିନାହାନ୍ତି । ( ତାରିଣୀ ଚରଣ ଗ୍ରନ୍ଥାବଳୀ: ୧୯୮୦, ପୃ.୨୯୧)

ସାରଳାଙ୍କ କବି ପ୍ରତିଭା ପଣ୍ଡିତ ମୃତ୍ୟୁଞ୍ଜୟ ରଥଙ୍କୁ ମୁଗ୍ଧ ଓ ଚକିତ କରିଛି। ଏହାର ଅଭିବ୍ୟକ୍ତି **ଶାରଳାଚରିତ**। (୧୯୧୧) ମୁଗ୍ଧଭାବ ତାଙ୍କୁ କବିଙ୍କର ଜୀବନୀ ତିଆରି ପାଇଁ ଉତ୍ସାହିତ କରିଛି। ତାଙ୍କ ପାଖରେ ମନମୋହନ ଚକ୍ରବର୍ତ୍ତୀ, ଶ୍ୟାମସୁନ୍ଦର ରାଜଗୁରୁ ଓ ପୁରାଣ ପ୍ରକାଶନ କମ୍ପାନୀ ପ୍ରକାଶିତ ମହାଭାରତ ଗ୍ରନ୍ଥ। ଜଣେ ମହାନ୍ କବିଙ୍କ ଜୀବନୀ ଗଢଣପାଇଁ ଏତିକି ଉପାଦାନ ଯଥେଷ୍ଟ ନୁହେଁ। ତେଣୁ ସେ ତାଙ୍କ କୃତିତ୍ୱ ଭିତରକୁ ଯାଇଛନ୍ତି।

ଏବଂ, ନିଶ୍ଚିତ ହୋଇଯାଇଛନ୍ତି ଯେ, କବିଙ୍କ ଘର ଶାରଳା ଚଣ୍ଡୀଙ୍କ ପୀଠ ନିକଟସ୍ଥ ଝଙ୍କଡ଼ ପ୍ରଗଣାସ୍ଥ କୌଣସି ଏକ ଗାଁ। ଜନ୍ମ ସମୟ କପିଳେନ୍ଦ୍ର ଦେବଙ୍କ ଶାସନ କାଳ (୧୪୩୫-୭୯) ୧୪୧୫ ଖୀଷ୍ଟାବ୍ଦ ନିକଟବର୍ତ୍ତୀ। ଏବଂ, ମହାଭାରତ ରଚନାକାଳ ୧୪୬୫ ଖ୍ରିଷ୍ଟାବ୍ଦ। ମହାଭାରତର ଭାଷା ଓ ସମକାଳର ସାଂସ୍କୃତିକ, ରାଜନୀତିକ ପରିମଣ୍ଡଳ ଆଧାରରେ ସେ ଏପରି ଏକ ସିଦ୍ଧାନ୍ତରେ ପହଞ୍ଚିଛନ୍ତି। ଏହି ପ୍ରସଙ୍ଗରେ ଯାହା ଗୁରୁତ୍ୱପୂର୍ଣ୍ଣ, ସେ ଝଙ୍କଡ଼ ଯାଇଛନ୍ତି-, କବିଙ୍କ ବଂଶଧର ଓ ସେହି ଅଞ୍ଚଳରେ ଲୋକମୁଖରେ ଜୀବନ୍ତ କବି - ଜୀବନୀ ସକ୍ରାନ୍ତ ତଥ୍ୟ ସଂଗ୍ରହ କରିଛନ୍ତି। ତାଙ୍କ ଶବ୍ଦରେ , 'ମହାଭାରତ'ଉତ୍କଳର ଆଦିମ ସାହିତ୍ୟ। ତହିଁରେ ପ୍ରକୃତି-ଜନ-ସୁଲଭ ବର୍ଣ୍ଣନା, ଅନ୍ଧବିଶ୍ୱାସ, ସତ୍ୟର ଅପଳାପ, ଅତିରଞ୍ଜନ, ଅବ୍ୟାକରଣିକ ପ୍ରୟୋଗ ନିରଙ୍କୁସତା ଏବଂ ଅଶ୍ଳୀଳତା ବା ଗ୍ରାମ୍ୟ ଭାବାଦିରେ ଯଥେଷ୍ଟ ପରିଚୟ ପାଇ ଆମ୍ଭେମାନେ ଦୃଢ଼ ଭାବରେ କହିପାରୁ, ଏହା ଆଦିମ ସାହିତ୍ୟ ଲକ୍ଷଣାକାନ୍ତ। (ମୃତ୍ୟୁଞ୍ଜୟ ଗ୍ରନ୍ଥାବଳୀ : ୧୯୮୯, ପୃ.୨୮୩)

ଏଥର ମୃତ୍ୟୁଞ୍ଜୟ କବିଙ୍କ ପାରିବାରିକ, ଦାମ୍ପତ୍ୟ ଜୀବନ, ଶିକ୍ଷା, ବୃତ୍ତି ଆଦି ନାନା ପ୍ରସଙ୍ଗ କିମ୍ବଦନ୍ତୀ ଆଧାରରେ ତିଆରି କରିଛନ୍ତି। କହିବାକୁ ଋହୁଁଛନ୍ତି, କବି ଧୀସମ୍ପନ୍ନ ଥିଲେ। ଶାରଳାଙ୍କ କରୁଣାରୁ କବିତ୍ୱର ଅଧିକାରୀ ହୋଇଛନ୍ତି। ଏତେବଡ଼ ଗ୍ରନ୍ଥ ରଚନା ପୂର୍ବରୁ କବିତା ଓ ଗୀତ ଛୋଟଛୋଟ ଆକାରରେ ଲେଖିଛନ୍ତି। ଗୀତଟିଏ **କାଳୀକର୍ପୂର** ହୋଇପାରେ। କବିତ୍ୱମୁଗ୍ଧ ଦେବୀ ତାଙ୍କ ହାତରେ ଲେଖନୀଟିଏ ଧରେଇଦେଇ *ମହାଭାରତ* ଲେଖିବାକୁ ଆଦେଶ ଦେଇଛନ୍ତି। କଞ୍ଚବଟ ତାଙ୍କ ଆଶ୍ରମ ହୋଇଛି। x x ସେ ଜାତିରେ ଓଡ଼ଚଷା। ଋଷ କରୁଥିଲେ। ତାଙ୍କର ପାଠଶାଠ ବେଶି ନଥିଲା। ବାପା ଓ ବିଦ୍ୱାନ ପଣ୍ଡିତମାନଙ୍କ ପାଖରୁ ନାନାଦି ପୁରାଣ ଶୁଣି ମନେରଖି ଦେଉଥିଲେ। ଆଜି ଯାହା ଶୁଣୁଥିଲେ, ମନେରଖି, ନିଜ ଶୈଳୀରେ ଲେଖିଦେଉଥିଲେ। ମହାଭାରତକୁ ସେ କେବଳ ନିଜ ଗ୍ରାମରେ ଲେଖିନାହାନ୍ତି, ପୁରୀ, କୋଣାର୍କ, କଟକ ଆଦି ନାନା ସ୍ଥାନରେ ତାହା ଲେଖାଯାଇଛି। ବୁଢ଼ୀନଈ, ଚନ୍ଦ୍ରଭାଗା କୂଳ, ଶ୍ରୀକ୍ଷେତ୍ରର ବଡ଼ଦାଣ୍ଡ, କଞ୍ଚବଟ, ପ୍ରତ୍ୟେକ ସ୍ଥାନ ତାଙ୍କ ଭାରତ ରଚନାକୁ ଦେଖିଛି। ଏପରିକି ଶ୍ରୀକ୍ଷେତ୍ରରେ ତାଙ୍କୁ ଗ୍ରନ୍ଥର ବିଶେଷତାର ପରୀକ୍ଷା ଦେବାକୁ ପଡ଼ିଛି। ଜଗନ୍ନାଥ ଓ ବ୍ରାହ୍ମଣ୍ୟବାଦ ତାଙ୍କୁ ସ୍ୱୀକାର କରିଛି। ନାନା କଥା। ମୃତ୍ୟୁଞ୍ଜୟଙ୍କ ଅନୁରୂପ ମନ୍ତବ୍ୟ ପଢ଼ିବାବେଳେ ତାଙ୍କ ଅନୁମାନକୁ ପ୍ରଶଂସା କରିବାକୁ ହୁଏ। ଏକଥା ସେ ମନରୁ ନୁହେଁ, ମହାଭାରତ ବର୍ଣ୍ଣିତ ସ୍ଥାନଗୁଡ଼ିକ ଆଧାରରେ କହୁଛନ୍ତି। ଚନ୍ଦ୍ରଭାଗା, ପୁରୀ, କୋଣାରକ,ବିଡ଼ାନାଶୀ ସମ୍ପର୍କରେ ଯେଉଁ ବର୍ଣ୍ଣନା ରହିଛି , ତାହା ଚାକ୍ଷୁଶ। ଅର୍ଥାତ ଜୀବନ୍ତ। ଅନୁଭୂତିସିଦ୍ଧ ନହେଲେ, ବର୍ଣ୍ଣନା ଜୀବନ୍ତ ହୁଏ ନାହିଁ। ପୁଣି ମହାଭାରତର ଜୀବନ୍ତ ଚରିତ୍ରମାନଙ୍କ ଆଚରଣକୁ ସୂତ୍ରକରି ଆୟୁର ପ୍ରଥମାର୍ଦ୍ଧ କୃଷି, ଦ୍ୟୁତ, ଶକଟ ଓ ଅଧିକାଂଶ କାଳ ଶାରଳା ସେବାରେ ଏବଂ ମହାଭାରତ ରଚନା ପୂର୍ବରୁ ଗାର୍ହ୍ୟସ୍ଥଜୀବନ ତ୍ୟାଗକରି ସନ୍ୟାସ ପନ୍ଥାର ଅବଲମ୍ବନ କରିଥିବେ ବୋଲି ଉଲ୍ଲେଖ ରହିଛି। ଦ୍ୟୁତ ଶକଟ କ୍ରୀଡ଼ାରେ

ମତ ରହିବାର କାରଣ, ତାଙ୍କ ଶବ୍ଦ ପ୍ରୟୋଗ ମାଧ୍ୟମରେ ସ୍ପଷ୍ଟ ହୋଇଯାଉଛି। କବିଙ୍କ ଆର୍ଥିକ ସ୍ଥିତି ଭଲ ନଥିଲା। ଜାତିରେ ସେ ଓଡ଼ଚଷା ଥିଲେ। ପରିବାରଟି ବଡ଼ ଥିଲା। ଗୋଟିଏ ଭାଇର ନାମ ଥିଲା ପରଶୁରାମ ଓ ତାଙ୍କ ପିତୃଦତ୍ତ ନାଁ ଥିଲା ସିଦ୍ଧେଶ୍ୱର। ବଡ଼ଭାଇ ଚନ୍ଦ୍ରଭାଗା ନଦୀରେ ନୌକା ନବାଆଣିବା କରି ଧନୀ ହୋଇଛନ୍ତି। ଜୀବନର ଶେଷ କାଳ ମହାଭାରତ ରଚନାନ୍ତେ,ବୃଦ୍ଧ ନଦୀ ତୀରବର୍ତ୍ତୀ ତେନ୍ତୁଳିପଦା ଗ୍ରାମରେ ଆଶ୍ରମ ତିଆରି କରି ଧ୍ୟାନ ଧାରଣାରେ ସେ ଶେଷକାଳକୁ ଅପେକ୍ଷା କରିଛନ୍ତି। ଲୋକେ ତାଙ୍କୁ ମୁନି ଗୋସାଇଁ ଓ ମଠକୁ ମୁନି ଗୋସାଇଁ ମଠ କହିଛନ୍ତି। ଏବଂ, ମାଘସପ୍ତମୀ ତାଙ୍କ ମହାଯାତ୍ରାର କାଳ। (ମୃତ୍ୟୁଞ୍ଜୟ : ସାରଳା ଚରିତ, ମୃତ୍ୟୁଞ୍ଜୟ ଗ୍ରନ୍ଥାବଳୀ : ପୃ. ୨୨୧)।

ଚରିତଗ୍ରନ୍ଥର ଶେଷରେ ମୃତ୍ୟୁଞ୍ଜୟ ମହାଭାରତ ସମ୍ପର୍କରେ ଚର୍ଚ୍ଚା କରିଛନ୍ତି। ବ୍ୟାସ ଓ ସାରଳାଙ୍କ ସର୍ଜନ ଦୃଷ୍ଟିର ବିଶେଷତାକୁ ମଧ୍ୟ ସେ ସ୍ପଷ୍ଟ କରିଦେଇଛନ୍ତି। ମୂଳ ଗ୍ରନ୍ଥର କେତେକ ଅଂଶ ପରିତ୍ୟକ୍ତ ଓ ଅବାନ୍ତର, ଅଶ୍ଳୀଳ ଓ ଅପ୍ରାକୃତ କଥାର ଭଣ୍ଡାର ବୋଲି କହିଛନ୍ତି। ଅଶ୍ଳୀଳତା ଓ ଅପ୍ରାକୃତିକତା ସତେଯେପରି କବିଙ୍କ ବିଶେଷତା। କବିଙ୍କର ସମଗ୍ର ଜୀବନ ମହାଭାରତର ପରିକଳ୍ପନାରେ ଅଭିବ୍ୟକ୍ତ। ଏକଥା ଅଳ୍ପରେ ଖୋଲି ଦେଇଛନ୍ତି। ତାହା ଏହିପରି -

'ଦେଖାଯାଏ ବାଳକ ସଦା ଚଞ୍ଚଳ, ଅସ୍ପଷ୍ଟଭାଷୀ ଏବଂ କଳ୍ପିତ ଗଳ୍ପପ୍ରିୟ। ଆଉ ଶିଶୁ ମଧ୍ୟ ସଦା ଉଲଗ୍ନ ଥାଇ ଅଶ୍ଳୀଳ ଭାବକୁ ଅଙ୍ଗୀକୃତ କରିଥାଏ ଏବଂ ଯାହା ଇଚ୍ଛା ତାହା କରେ। ଯେଉଁମାନେ ଏହି ମହାଭାରତ ଗ୍ରନ୍ଥର ପ୍ରଥମ ଭାଗ ପାଠ କରିବେ, ସେମାନେ ଦେଖିପାରିବେ ଯେ, ଏଥିରେ ଉକ୍ତ ବାଲ୍ୟସୁଲଭ କ୍ରିୟାଗୁଡ଼ିକ ଅଛି। ଏଥିର ଭାଷା ସେହିପରି ଚାଞ୍ଚଲ୍ୟକର, ନବବନ୍ଧ, ଅସ୍ପଷ୍ଟ ବା ଅବୋଧ୍ୟ। ଗ୍ରାମ୍ୟ ବର୍ଣ୍ଣନା ତାଦୃଶ୍ୟ ଅଶ୍ଳୀଳ ଏବଂ ଲେଖା ବା ଲିଖିତ ବିଷୟ ସେହିପରି ବିଚାରଶୂନ୍ୟ ଓ ଅସଙ୍ଗତ। ବିଷୟ ବୀରରସରେ ଓଜସ୍ୱଳ, ଭାଷା ମଧ୍ୟ ସେହିପରି ଓଜସ୍ୱିନୀ, x x ଶେଷଭାଗର ଲେଖା ବାର୍ଦ୍ଧକ୍ୟରେ, ତେଣୁ ଭାଷାରେ ଓଜ ନାହିଁ। ଲେଖାରେ କ୍ରମ ନାହିଁ। ଅଛି ବାର୍ଦ୍ଧକ୍ୟ ଓ କେତେକ ଧର୍ମ କଥା। (ମୃତ୍ୟୁଞ୍ଜୟ, ୧୯୮୯, ପୃଷ୍ଠା. ୨୩୬)।

'କୁନ୍ତୀ ଓ ଦ୍ରୌପଦୀଙ୍କ ଚରିତ୍ରଚିତ୍ରଣ ଆଦୌ ପ୍ରିୟ ନୁହେଁ। ସେମାନେ କାମୁକୀ ଓ ଉଗ୍ରା। ଏହି ଅଂଶଗୁଡ଼ିକ ବାଦଦେଇ ତହିଁରୁ ଉତ୍କୃଷ୍ଟ ଅଂଶମାନ ଗ୍ରହଣ ପୂର୍ବକ ଆଧୁନିକ ରୁଚିସମ୍ପନ୍ନ ଗ୍ରନ୍ଥମାନ ଆମକୁ ପ୍ରଣୟନ କରିବାକୁ ହେବ।' (ମୃତ୍ୟୁଞ୍ଜୟ: ୧୯୮୯, ପୃ. ୨୩୨)।

ପ୍ରାୟ ୫୦୦ବର୍ଷ ଅତୀତର ଜଣେ ମଣିଷର ଜୀବନୀ ଗଢ଼ଣ ଆଦୌ ସହଜ ନୁହେଁ, ମାତ୍ର ସମ୍ଭବ। ମୃତ୍ୟୁଞ୍ଜୟ ଏହା ପ୍ରମାଣ କରିଛନ୍ତି। ଆପଣାର ସିଦ୍ଧାନ୍ତକୁ ସେ ଆନୁମାନିକତାର ସମପର୍ଯ୍ୟାୟୀ ଶବ୍ଦରେ ଶୁଣାଇଛନ୍ତି। ଏହା ଚତୁରତା ନିଶ୍ଚୟ। ସଚେତନ ଚତୁରତା। ପ୍ରତ୍ୟେକ ଅନୁମାନକୁ ଅବଶ୍ୟ ଜଣେ ପ୍ରଶ୍ନ କରିପାରିବ। ପରବର୍ତ୍ତୀ କାଳର ଗବେଷକମାନେ ତାହାହିଁ

କରିଛନ୍ତି। ମାତ୍ର ମଜାକଥା, କୌଣସି ଜଣେ ଗବଷକ ମୃତ୍ୟୁଞ୍ଜୟଙ୍କ ମାନସିକତାକୁ ପ୍ରଶ୍ନ କରିନାହାନ୍ତି। ବରଂ ଅଧିକ ସଂଖ୍ୟକ ମାନିନେଇଛନ୍ତି।

ସାରଳା ସାହିତ୍ୟ ସମାଲୋଚକମାନଙ୍କ ମଧ୍ୟରେ ଜଣେ ଅନତିକ୍ରମଣୀୟ ପ୍ରତିଭା ପଣ୍ଡିତ ଗୋପୀନାଥ ନନ୍ଦଶର୍ମା। ଜନ୍ମ: ପାରଳାଖେମଣ୍ଡି, ରାଜନୀତିକ ଓଡ଼ିଶାର ଦକ୍ଷିଣ ଉପାନ୍ତ। ଚର୍ଚ୍ଚା କରୁଛନ୍ତି ଉପକୂଳର କବି ସାରଳାଙ୍କ ସମ୍ପର୍କରେ। ଏଣେ ତେଲୁଗୁ, ବଙ୍ଗଳା, ପ୍ରାକୃତ, ସଂସ୍କୃତ ଓ ଇଂରାଜୀ ଭାଷାବିଜ୍ଞ। ବ୍ୟାକରଣକାର ଓ ଅଭିଧାନତତ୍ତ୍ୱବିତ୍। ତାଙ୍କ ଅବଲୋକନକୁ ଆମେ ଅଧ୍ୟୟନ, ମେଧା ଓ ଅନ୍ତର୍ଦୃଷ୍ଟିର ସମୀକରଣ କହିପାରିବା। **ଉତ୍କଳ ସାହିତ୍ୟ** ପତ୍ରିକାର ୧୫ଶ ଭାଗ, ଦ୍ୱିତୀୟ ସଂଖ୍ୟା /ଜାନୁଆରି ୧୯୧୧ ରୁ ୧୮ଶ ଭାଗ, ଚତୁର୍ଥ ସଂଖ୍ୟା ମଧ୍ୟରେ, ୩୦ଗୋଟି ଅଧ୍ୟାୟରେ, ତାଙ୍କ ବିଚାର ପ୍ରକାଶପାଇଛି। ୧୮୯୯ ମସିହାରେ ପୁରାଣ ପ୍ରକାଶନ କମ୍ପାନୀ ପ୍ରକାଶିତ **ମହାଭାରତ**ର ବିକୃତ ରୂପ ତାଙ୍କୁ ଦିଅଁ ଗଢୁ ଗଢୁ ମାଙ୍କଡ଼ ପରି ବୋଧ ହୋଇଛି। ତେଣୁ ଆପଣା ବିଚାର ଉପସ୍ଥାପନପାଇଁ ସେ ପୋଥିନିର୍ଭର ହୋଇଛନ୍ତି। ମୂଳଲେଖା ଓ ମୁଦ୍ରିତଗ୍ରନ୍ଥ ମଧ୍ୟରେ ଥିବା ଭେଦକୁ ସ୍ପଷ୍ଟ କରିଦେଇଛନ୍ତି। ଏବଂ, ସବୁଠାରୁ ଗୁରୁତ୍ୱପୂର୍ଣ୍ଣ କଥା, ସେ ନିଜମତେ କବିଙ୍କ ବ୍ୟକ୍ତିତ୍ୱ ଓ ରଚନାକୁ ତିଆରି କରିଛନ୍ତି। ଏକ ଅନୁପମ ସର୍ଜନ। ବ୍ୟାସଙ୍କ ଠାରୁ ଆପଣା ପ୍ରିୟ କବିଙ୍କ ଆନୁବଂଶିକ ଦୂରତାକୁ ଆନୁମାନିକ ରୁପ ଦେଇଛନ୍ତି। ଫଳତଃ, ତାଙ୍କ ଚର୍ଚ୍ଚା ତୁଳନାତ୍ମକ, କାଳକୈନ୍ଦ୍ରିକ; ଇତିହାସବୋଧ, ସୌନ୍ଦର୍ଯ୍ୟତାତ୍ତ୍ୱିକ, ଭାଷାତାତ୍ତ୍ୱିକ ଓ ଜୀବନୀମୂଳକ ଆଦି ନାନା ପଦ୍ଧତି ଆଧାରିତ ହୋଇପଡ଼ିଛି। ବସ୍ତୁତଃ, ଏହି ସୂତ୍ରକୁ ସେ ପାଇଛନ୍ତି ଆପଣା ଭୂମିର ସୂକ୍ଷ୍ମଦର୍ଶୀ ସମାଲୋଚକ ଶ୍ରୀ ଶ୍ୟାମସୁନ୍ଦରଙ୍କ ପାଖରୁ।

ନନ୍ଦଶର୍ମା କବିକୁ ଦେଖିଛନ୍ତି – 'ସ୍ୱଳ୍ପ ସ୍ମରଣଶକ୍ତିସମ୍ପନ୍ନ ଜନୈକ ଶୂଦ୍ରଙ୍କର ସାନପୁଅ। ନାଁ, ସିଦ୍ଧେଶ୍ୱର; ଗାଁ, କନକବତୀ ପାଟଣା/ କନକପୁର'। "ସ୍ୱଳ୍ପ ସ୍ମରଣଶକ୍ତି ଥିବାଯୋଗୁଁ ବାପା ତାଙ୍କୁ ମୂର୍ଖ ବୋଲି ଭର୍ତ୍ସନା କରିଛନ୍ତି"। ବାପାଙ୍କ କଥା ବାଧିଛି। ତେଣୁ ଶାରଳା ଦେବୀଙ୍କ ସରଣାପନ୍ନ ହୋଇଛନ୍ତି। ଦେବୀଙ୍କ ପ୍ରସାଦରୁ ବହୁ "ଜନ୍ମାର୍ଜିତ ସୁପୁଣ୍ୟ-ସଂଚିତ ବାସନା ଦେବୀଙ୍କ ଅନବସାଦ ମହାପ୍ରସାଦ ଲାଭରୁ ଜାଗ୍ରତ ହୋଇଛି"। ସେ ଏବେ "ମହନୀୟ ହୃଦୟବତ୍ତା, ସୌଜନ୍ୟବୋଧ, ଅଗାଦଶକ୍ତିଶାଳୀ ପାଣ୍ଡିତ୍ୟ, ଅସୀମଶକ୍ତିମତ୍ତା ଓ ବିଦ୍‌ବତ୍ତାର ଅଧିକାରୀ"। ଜନ୍ମନେଇଛି ମହାଭାରତ ପରି ଏକ ମନୋହର କାବ୍ୟକୃତି। "ତାଙ୍କ ସାଂସାରିକ ଜୀବନ କିନ୍ତୁ ସୁସ୍ଥ ନଥିଲା"। ଥିଲା "ଦୁର୍ଭାବାପନ୍ନ"। ସେ କାଳେ ତାଙ୍କ ସାମସମୟିକ ରାଜା କପିଳେନ୍ଦ୍ର ଦେବଙ୍କ ସୈନ୍ୟବାହୀନିର ସଦସ୍ୟ ଥିଲେ, ଦାକ୍ଷିଣାତ୍ୟ ବୁଲିଥିଲେ ଏବଂ ମହାଭାରତର ଭୀମ ଚରିତ୍ରଙ୍କୁ ଆପଣା ରାଜା "ଭୀମକର୍ମା କପିଳେନ୍ଦ୍ରଙ୍କ ଅନୁରୂପ ତିଆରି କରିଦେଇଥିଲେ । ମାତ୍ର ସେ କେଉଁକେଉଁ ଜନ୍ମରେ କ'ଣ ଥିଲେ ବୋଲି ମହାଭାରତରେ ଯାହା ମୁଦ୍ରିତ, ଗୋପୀନାଥ ସେଗୁଡ଼ିକୁ ପ୍ରକ୍ଷିପ୍ତ ବୋଲି କହିଛନ୍ତି। ଏବଂ, କହିଛନ୍ତି – "ଶାରଳା ଆଦିମ ମହାକବି"।

ନନ୍ଦଶର୍ମ୍ମଙ୍କ ଧାରାବାହିକ *ସାରଳା ମହାଭାରତର ସମାଲୋଚନା,* ବହି ରୂପରେ **ଶ୍ରୀଭାରତଦର୍ପଣ** ଶୀର୍ଷକରେ ୧୯୨୭ ମସିହାରେ ପ୍ରକାଶ ପାଇଛି। ଏହା ସୁପରିକଳ୍ପିତ ଓ ନଅ ଅଧ୍ୟାୟବିଶିଷ୍ଟ। ବ୍ୟାସ ଓ ସାରଳା - ଦୁଇ ପ୍ରତିଭାଙ୍କ ସଂରଚନାର ଭାବାଦର୍ଶଗତ ଗାଠନିକ ବିଷମତାକୁ ଆଲୋଚକ ଫେଡ଼ି ଦେଇଛନ୍ତି। ଏକ "ଅନୁସୃତ କୃତିରେ ମୂଳଗ୍ରନ୍ଥର ପାରିତ୍ୟକ୍ତ, ପ୍ରକ୍ଷିପ୍ତ, ସଂକ୍ଷିପ୍ତ, ଅନ୍ୟତ୍ର ନିକ୍ଷିପ୍ତ, ଅଯଥା ବିସ୍ତୃତ ଓ ଅନ୍ୟଥାକୃତ ଅଂଶଗୁଡ଼ିକୁ ସ୍ପଷ୍ଟ କରିଦେଇଛନ୍ତି"। କବିଙ୍କ ନୂଆ ଗ୍ରନ୍ଥ ସମ୍ପର୍କରେ ତାଙ୍କ ମନ୍ତବ୍ୟଗୁଡିକ ବେଶ ତାତ୍ପର୍ଯ୍ୟପୂର୍ଣ୍ଣ। ସେଗୁଡ଼ିକ, "କବି ବହୁପୌରାଣିକ ଓ ଚରିତ୍ରବେତ୍ତା, ଏହା ମନୋଧର୍ମାନୁସାରେ କିମ୍ବା ଅନୁଭୂତି ଅନୁସାରେ ଲିଖିତ", "ଯଥାଯଥ ଲେଖିଛନ୍ତି, ମାତ୍ର ଅଙ୍ଗ ପ୍ରତ୍ୟଙ୍ଗ ସ୍ୱରୂପ ବିଷୟାଂଶକୁ ବୈଷମ୍ୟରେ ପକାଇଛନ୍ତି", "ସେ ମୂଳ ମହାଭାରତରେ ପ୍ରଗାଢ଼ ଶୁଶ୍ରୂଷାଦ୍ୱାରା ଘଟଣାମାନଙ୍କରେ ସ୍ଥୁଳ ସନ୍ନିଧାନାଂଶମାନ ଅବିପ୍ଳୁତ ପ୍ରତିପତ୍ତିରେ ସ୍ୱକୀୟ ସ୍ମୃତିକୋଷରେ ରଖି ଅସାମାନ୍ୟ କଳ୍ପନା ଶକ୍ତିଦ୍ୱାରା କେତେକ ଭିନ୍ନ ପ୍ରକାରର କରିଥିଲେ ହେଁ ଅନେକ ସ୍ଥଳରେ ଅତି ସୂକ୍ଷ୍ମାଂଶ ଘଟନାମାନଙ୍କୁ ମଧ୍ୟ ଯଥାଯଥ ଲେଖିଅଛନ୍ତି।" ସବୁଠାରୁ ମଜାକଥା , ନନ୍ଦ ମହାଶୟ ସାରଳାଙ୍କ ଗଙ୍ଗା, ଗାନ୍ଧାରୀ-ଧୃତରାଷ୍ଟ୍ର, ଶ୍ରୀକୃଷ୍ଣ-ଦୂତୀକା ସମ୍ପର୍କକୁ ଆଦୌ ଗ୍ରହଣ କରିପାରିନାହାନ୍ତି। ତାଙ୍କ ଭାଷାରେ "ଶାରଳା ଗଙ୍ଗାଙ୍କର ପତ୍ନୀଭାବକୁ କଳୁଷିତ ଓ କୁତ୍ସିତ କରିଛନ୍ତି, ଗାନ୍ଧାରୀ ଧୃତରାଷ୍ଟ୍ରଙ୍କ ବିବାହ ପ୍ରସଙ୍ଗ କୁତ୍ସିତ, ଏବଂ ଶ୍ରୀକୃଷ୍ଣ ଦୂତୀକାଙ୍କ ଶାରୀରିକ ସମ୍ପର୍କ, କବିଙ୍କ "କୁସଙ୍ଗ ସମ୍ପର୍କଜନିତ" ଅଭିବ୍ୟକ୍ତି। ଏପରି ସମୀକ୍ଷାଦୃଷ୍ଟି ପୂର୍ଣ୍ଣତଃ ସମାଲୋଚକଙ୍କ ମାନସିକତା , ସାମାଜିକ ରୁଚିବୋଧ ଓ ଧର୍ମବିଶ୍ୱାସକୈନ୍ଦ୍ରିକ। ଉପର୍ଯ୍ୟୁକ୍ତ ମନ୍ତବ୍ୟରୁ କବିଙ୍କ ବ୍ୟକ୍ତିତ୍ୱକୁ ଅନୁଭବ କରାଯାଇପାରିବ। ପୁନଶ୍ଚ ମହାଭାରତର ଛନ୍ଦ ନିୟମ ଓ ଭାଷା ସକ୍ରାନ୍ତ ଚର୍ଚ୍ଚା ଆମକୁ ପଞ୍ଚଦଶ ଶତାବ୍ଦୀର ଓଡ଼ିଆ ଭାଷା ଓ ସଙ୍ଗୀତ ପରମ୍ପରାକୁ ସ୍ମରଣ କରାଇଦିଏ। ଏବଂ, ତାଙ୍କ ବିଚାରକୁ ଭିତ୍ତିକରି ପରବର୍ତ୍ତୀକାଳରେ ଧନେଶ୍ୱର ମହାପାତ୍ର *ଶାରଳା ଦାସଙ୍କ ମହାଭାରତର ଭାଷାତାତ୍ତ୍ୱିକ ଅନୁଶୀଳନ* ଶୀର୍ଷକ ଗବେଷଣା ନିବନ୍ଧ ରଚନା କରିଛନ୍ତି। ଜଣେ ପ୍ରିୟତମ ବ୍ୟକ୍ତିତ୍ୱକୁ ଆପଣା ଅନୁଭବ, ବିଚାର ଓ ବୋଧଶକ୍ତିରେ କିପରି ବ୍ୟବଚ୍ଛେଦ କରାଯାଇପାରେ, ନନ୍ଦଙ୍କ **ଶ୍ରୀ ଭାରତଦର୍ପଣ** ତାହାର ଏକ ଉଦାହରଣ। ନନ୍ଦଙ୍କ ଶାରଳା-ବ୍ୟକ୍ତିତ୍ୱ ସଂକ୍ରାନ୍ତ ମନ୍ତବ୍ୟର ଯଥାର୍ଥ ଉତ୍ତର ପ୍ରତିଧ୍ୱନିତ୍ୱ ହୋଇଛି ନୀଳକଣ୍ଠ ଦାସ, ସୁରେନ୍ଦ୍ର ମହାନ୍ତି ଓ ଚିତ୍ତରଂଜନ ଦାସଙ୍କ ସାରଳା-ଚର୍ଚ୍ଚାଗ୍ରନ୍ଥଗୁଡ଼ିକରେ।

ବିଜୟ ଚନ୍ଦ୍ର ମଜୁମଦାରଙ୍କ Typical Selections from Oriya Literature (1921) ଗ୍ରନ୍ଥରେ ପ୍ରଦତ୍ତ ସାରଳାଚର୍ଚ୍ଚା ମନମୋହନଙ୍କ ବିଚାରର ପ୍ରତିରୂପ। ମୁଖବନ୍ଧରେ କବିମାନଙ୍କ ରଚନାକୁ ସେ କାଳକ୍ରମରେ ସୁସଜ୍ଜିତ କରିଛନ୍ତି ଏବଂ ସାରଳାଙ୍କୁ ଅବସ୍ଥାପିତ କରିଛନ୍ତି ମାର୍କଣ୍ଡ ଦାସ, ଭୀମା ଧୀବର, ବଳରାମ ଦାସ ଓ ଜଗନ୍ନାଥ ଦାସଙ୍କ ଉତ୍ତରସୂରୀ

ଏବଂ କପିଳେନ୍ଦ୍ର ଦେବ (୧୪୩୫-୬୯)ଙ୍କ ସମକାଳୀନ ରୂପରେ। ସାରଳାଙ୍କ ଜୀବନ-ଗଢ଼ଣ ପ୍ରସଙ୍ଗରେ ତାଙ୍କ ବକ୍ତବ୍ୟ-- କବି-ପୂଜିତା ସାରଳା ଦେବୀ ହିଙ୍ଗୁଳାଙ୍କ ଆଦ୍ୟରୂପ, ମୁଣ୍ଡାରୀ ସଂପ୍ରଦାୟ ପୂଜିତ। ସେହି ନ୍ୟାୟରେ କବି ଶୂଦ୍ର, ମାତ୍ର ଓଡ଼ଚଷା। କେଜାଣି କାହିକି ବିଜୟ ଚନ୍ଦ୍ର ସାରଳାଙ୍କ ବିକ୍ତିତ୍ୱକୁ ଏତେ ଗୁରୁତ୍ୱ ଦେଇନାହାନ୍ତି। ଏହା ତାଙ୍କ ବ୍ରାହ୍ମ-ମାନସିକତାର ଅଭିବ୍ୟକ୍ତି ନୁହେଁତ? କାରଣ ସାରଳାଙ୍କ ଭାଷା 'ଗାଳାଗୁଳି' ଓ ଭାବ ଅଶ୍ଳୀଳ। ଏବଂ, ରଚନାଶୈଳୀ ସଂକାନ୍ତରେ, ଛାନ୍ଦକୁ, ମନମୋହନଙ୍କ ପରି rustic metre, rustic tune, genuine Oriya meter କହିଛନ୍ତି। (Majumdar, B.C., 1921, p XXVII)

ସାରଳା ଦାସଙ୍କୁ ବିନାୟକ ମିଶ୍ର ଓଡ଼ିଆ **ସାହିତ୍ୟର ଇତିହାସ** (୧୯୨୭) ଗ୍ରନ୍ଥର ତୃତୀୟ ସୋପାନରେ ପଞ୍ଚଦଶ ଶତାବ୍ଦୀର ବ୍ୟକ୍ତି ବୋଲି କହିଛନ୍ତି। ସେ "କେଶବ କୋଇଲିର ରଚୟିତା ମାର୍କଣ୍ଡ ଦାସ (ପୁରୀର ଅଧିବାସୀ ଓ ବ୍ରାହ୍ମଣ)ଙ୍କ ସମକାଳୀନ x x କବି ମୁନି ଶ୍ରେଣୀର, ସାରଳା ଦେବୀ ସେବକ, ବୋଧହୁଏ ସଂସ୍କୃତ ମହାଭାରତ ପଢ଼ିନଥିଲେ। ଶୁଣି ଶୁଣି ଲେଖିଛନ୍ତି। x x କିମ୍ବଦନ୍ତୀଙ୍କୁ ସନ୍ନିବେଶିତ କରିଛନ୍ତି x x ରଚନା କୃତ୍ରିମ ନୁହେ। x x ହୃଦୟରୁ ଆପେ ଆପେ ଝରି ଉଚ୍ଛୁଳି ପଡୁଛି। ତେଣୁ ତାହା ଅତିଶୟ ସୁଖପାଠ୍ୟ ଓ କୌତୁହଳ-ଉଦ୍ଦୀପକ। ସେ ଅବଶ୍ୟ ଦେବଦେବୀ, ବ୍ରାହ୍ମଣଙ୍କ କ୍ଷମତା ବିରୋଧରେ ଲେଖିଥିଲେ। ଦେବୀଙ୍କ ମହାତ୍ମା ଭୟରେ କବିଙ୍କ ରଚନାକୁ କେହି ସମାଲୋଚନା କରିପାରୁନଥିଲେ। ବାସ୍ତବତଃ ସେ ଥିଲେ ଜାତୀୟ କବି।" ଭାଷାକୁ ଆଧାର କରି ସାହିତ୍ୟ ଇତିହାସର କାଳ ନିରୂପଣ ମାନସିକତାକୁ ବିନାୟକ ସମର୍ଥନ କରିନାହାନ୍ତି। ତାଙ୍କ ବକ୍ତବ୍ୟ, "କୌଣସି ରଚନାର କେବଳ ଭାଷା ବିବେଚନା କରି ତାହାର ସମୟ ନିରୂପଣ କରିବା ଯୁକ୍ତିଯୁକ୍ତ ନୁହେ। ସବୁକାଳରେ, ସବୁଦେଶରେ ଶିକ୍ଷିତ-ଅଶିକ୍ଷିତ ଓ ଉଚ୍ଚ-ନୀଚ ସମାଜର ଲୋକଙ୍କ ଭାଷା ମଧ୍ୟରେ ପ୍ରଭେଦ ଥାଏ। ସାରଳା ଦାସ ଶୂଦ୍ର ଥିଲେ ବୋଲି ତାହାଙ୍କର ଭାଷା *କେଶବ କୋଇଲିର* ଭାଷାଠାରୁ ଅମାର୍ଜିତ ଅଟେ।" (ମିଶ୍ର, ବିନାୟକ : ୧୯୨୭, ପୃ - ୧୯-୨୫) ବିନାୟକଙ୍କ ଏହି ମନ୍ତବ୍ୟ କେବଳ ସାରଳା ନୁହନ୍ତି, ଅନ୍ୟ ଯେକୌଣସି କାଳର କବିଙ୍କ କୃତି-ଚର୍ଚ୍ଚାର ମାନକ ଭାବରେ ଗ୍ରହଣ କରାଯାଇପାରିବ।

ସାରଳାଙ୍କ ସଂପର୍କରେ ଜଗବନ୍ଧୁ ସିଂହଙ୍କ ବିଚାର ଓ ମନ୍ତବ୍ୟକୁ ଅନୁଦାର କୁହାଯାଇପାରିବ। ତାଙ୍କ ମନ୍ତବ୍ୟର ସାରକଥା ଏହିପରି। କ. ସାରଳାଙ୍କ ରଚନାରେ ବ୍ୟାସଙ୍କ ମହାଭାରତ ବିକୃତାକାର ଧରଣା କରିଛି, ଖ. ମହାଭାରତର ଉପମା ସ୍ଥୁଳତଃ ସ୍ୱାଭାବିକ ଓ ଆଡ଼ମ୍ବରଶୂନ୍ୟ। ଉପମା ସାମାନ୍ୟ ପଦାର୍ଥରୁ ଗୃହୀତ, ଗ. ସେ ପ୍ରାୟ ତିନିଶହ ବର୍ଷ ତଳର କବି, ଭଞ୍ଜଙ୍କ ସମକାଳୀନ, ଘ. ସଂସ୍କୃତ ପ୍ରଭାବିତ ମାତ୍ର ସଂସ୍କୃତ-ମୁକ୍ତ।" ଇତ୍ୟାଦି। ମାତ୍ର ପ୍ରସଙ୍ଗକ୍ରମେ ସେ କବିଙ୍କ 'ଉପମା ଓଜସ୍ୱିନୀ, ପଦବିନ୍ୟାସ ନିଃସର୍ଗସୁନ୍ଦର' ବୋଲି କହିଛନ୍ତି। ଜଗବନ୍ଧୁ ସିଂହ ସାରଳାଙ୍କୁ ଗ୍ରହଣ କରିନପାରିବାର ପ୍ରଧାନ କାରଣ, କବିଙ୍କର ଜଗନ୍ନାଥଙ୍କ ବ୍ୟକ୍ତିତ୍ୱର ଚିତ୍ରଣ। ଶ୍ରୀକୃଷ୍ଣ ଓ ଜଗନ୍ନାଥଙ୍କୁ ସମୀକୃତ କରି ସାରଳା ତାଙ୍କୁ ନାରୀଲୋଭୀ,

କାମପାଗଳ, କୂଟନିତୀଜ୍ଞ ଓ ଅଂହକାରୀ ବୋଲି ପ୍ରମାଣ କରିଛନ୍ତି ଏବଂ ତାଙ୍କ ଶରୀର ଅପୋଡ଼ା ରହିବାର କାରଣ ମଧ୍ୟ ସ୍ପଷ୍ଟ କରିଦେଇଛନ୍ତି। ଜଗବନ୍ଧୁଙ୍କର ସାରଳାବୋଧ ମାନସିକତାରେ ସାହିତ୍ୟର ଆଦର୍ଶବାଦ ଓ ଜାତୀୟତାବାଦ ପ୍ରସଙ୍ଗ ଅବଶ୍ୟ କ୍ରିୟାଶୀଳ। ମାତ୍ର ଗୁରୁତ୍ୱପୂର୍ଣ୍ଣ ପ୍ରସଙ୍ଗ, ସେ ପୁରୀର ମଣିଷ। ତେଣୁ ଜଗନ୍ନାଥମନସ୍କ। ତାଙ୍କ ପାଇଁ ସାରଳା ଦାସ ନୁହନ୍ତି, ଭାଗବତକାର ଜଗନ୍ନାଥ ଏବଂ ରାମାୟଣକାର ବଳରାମ ଦାସ ଶକ୍ତିଶାଳୀ କବି ଏବଂ ସାରଳାଙ୍କ ପୂର୍ବସୂରୀ। ଅଧିକ ମଜାକଥା , ସାରଳାବିମୁଖ ଜଗବନ୍ଧୁ କବିଙ୍କ ପାଇଁ ମାତ୍ର ଗୋଟିଏ ପୃଷ୍ଠା ଖର୍ଚ୍ଚ କରିଛନ୍ତି। (ସିଂହ, ଜଗବନ୍ଧୁ: ୧୯୬୪, ପୃ. ୧୩୫-୬)

ପରମାନନ୍ଦ ଆଚାର୍ଯ୍ୟ ( ୧୮୯୩-୧୮୭୧) ସାରଳା ଦାସଙ୍କ ସମ୍ପର୍କରେ ଦୁଇଟି ନୂଆ କଥା କହିଛନ୍ତି। ତାଙ୍କ ବକ୍ତବ୍ୟ, ' ମହାଭାରତ ମୂଳ ସଂସ୍କୃତରୁ ଅନୁବାଦିତ ନୁହେଁ। କବି ମହାଭାରତର କଥା ପଢ଼ି ବା ଶୁଣି ଓଡ଼ିଆରେ ୧୮ ପର୍ବଯାକ ଲେଖିଅଛନ୍ତି। ସାରଳା ଦାସଙ୍କ ଶାନ୍ତିପର୍ବରେ ଆଦୌ ସଂସ୍କୃତ ମହାଭାରତ କଥା ନାହିଁ କହିଲେ ଚଳେ। ଏକ ବିରାଟ ଗ୍ରନ୍ଥରେ ଓଡ଼ିଶାର ଅନେକ କିମ୍ବଦନ୍ତୀ ସ୍ଥାନ ପାଇଛି। ଏହା ସତ୍ୱେ ସାରଳା ଦାସଙ୍କ ମହାଭାରତକୁ କବିକଳ୍ପନାମୂଳକ ଗ୍ରନ୍ଥ ବୋଲି ଧରାଯାଇପାରେ।(ଆଚାର୍ଯ୍ୟ ପରମାନନ୍ଦ : ୧୯୬୯, ପୃ. ୪୩୨)

ନୀଳକଣ୍ଠ ଆପଣାର *ଓଡ଼ିଆ ସାହିତ୍ୟର କ୍ରମପରିଣାମ* ଗ୍ରନ୍ଥରେ ସ୍ପଷ୍ଟ କରିଦେଇଛନ୍ତି ଯେ, ସାରଳା ଆପଣା କାଳ(ପଞ୍ଚଦଶ ଶତାବ୍ଦୀ)ର ସାଂସ୍କୃତିକ ପରିମଣ୍ଡଳରେ ଜଣେ ସ୍ପଷ୍ଟ କଳାତ୍ମକ ଅଭିବ୍ୟକ୍ତି। କବି ବୌଦ୍ଧ ସହଜଯାନୀ । ତନ୍ତ୍ରପୀଡ଼ିତ ବୌଦ୍ଧଧର୍ମ ଓ ଅନ୍ୟ ଧର୍ମ ଗୋଷ୍ଠୀଗୁଡ଼ିକ ମଧ୍ୟରେ ସଂଘର୍ଷ ଓ ମାନବୀୟ ପ୍ରବୃତ୍ତିର ଅନ୍ୟତମ ଚର୍ଚ୍ଚାକାର। ଏବଂ ଜଣେ ସୁସ୍ଥ ସମାଜ ବ୍ୟବସ୍ଥାର ସ୍ୱପ୍ନଦର୍ଶୀ ସ୍ରଷ୍ଟା। ତାଙ୍କ ବିଚାରର ମର୍ମ୍ମ ଏହିପରି।

ଏକ ଗୁରତ୍ୱପୂର୍ଣ୍ଣ ସନ୍ଧିକ୍ଷଣରେ ପ୍ରପୀଡ଼ିତ ଜାତୀୟ ସଂସ୍କୃତିର ବିଦ୍ରୋହମୂଳକ ଅଭ୍ୟୁଦବେଳେ ସାରଳା ଦାସଙ୍କ ସାହିତ୍ୟର ଆବିର୍ଭାବ। ବ୍ୟାସଙ୍କ ମହାଭାରତ ପ୍ରଚାର କରବା ଉଦ୍ଦେଶ୍ୟରେ  ସେ ପୁରାଣ ଲେଖିନଥିଲେ। ଲୋକକଥାରେ ତାଙ୍କ ନିଜ ଲୋକଙ୍କ ଭାବଧାରା ଜ୍ଞାତ ଓ ଅଜ୍ଞାତ ଭାବରେ ପୁନଃ ପ୍ରକଟିତ ହୋଇଥିଲା। ଏହା ଜୈନସଭ୍ୟତା, ସାହିତ୍ୟ ଓ ତହିଁର ବିକ୍ଷୋଭର ଫଳ। କିମ୍ବଦନ୍ତୀଗୁଡ଼ିକ ସେକାଳର ପଲ୍ଲୀର ବାୟୁମଣ୍ଡଳରେ ଖେଳୁଥିଲା। ଭାକ୍ତିକ ମିଥ୍ୟାଜଡ଼ିତ କିମ୍ବଦନ୍ତୀ। ସେହି କିମ୍ବଦନ୍ତୀଗୁଡ଼ିକ ପୁରାଣରେ ରୂପାନ୍ତରିତ ହୋଇଛି। ପୁରାଣର ମିଥ୍ୟାରେ ଅସହିଷ୍ଣୁତା ଜାଗ୍ରତ ହୁଏ ନାହିଁ। କ୍ରମେ ସେ ସବୁ ସତ୍ୟର ଖୋଳପା ପରି ରୁହେ। ଖୋଳପା ଭିତରୁ ସତ୍ୟ ଖୋଜିବା ଗବେଷକମାନଙ୍କର ଧର୍ମ। ଏହି ଧର୍ମକୁ ଆଧାର କରି ଜାତିର ସମାଜ, ଧର୍ମ, ସଂସ୍କୃତି ଓ ରାଜନୀତିର ଇତିହାସ ଲେଖାଯାଇପାରିବ। କାରଣ ଉପର୍ଯ୍ୟୁକ୍ତ ବିଚାରକୈନ୍ଦ୍ରିକ ସାହିତ୍ୟ ଏକ ଜାତୀୟ ସାହିତ୍ୟ, ଅର୍ଥାତ୍ ଜାତୀୟଜୀବନର ଦର୍ପଣ ପରି। ଆମ ସମାଲୋଚକମାନେ ତାଙ୍କ ସାହିତ୍ୟ ଭିତରେ ଜୀବନ୍ତ ସକଳ ବାସ୍ତବତା ଉନ୍ମୋଚନ ପାଇଁ ସେ ଉଦ୍ୟମି ହୋଇନାହାନ୍ତି। ସେ ଜଣେ

କବିଙ୍କୁ ଓଡ଼ିଶାର ବ୍ୟାସଦେବ, ଖାଣ୍ଟି ଓଡ଼ିଆ କହୁଛନ୍ତି ।

ନୀଳକଣ୍ଠ ଅବଶ୍ୟ ସାରଳାଙ୍କ କୃତିରୁ ଓଡ଼ିଆତ୍ୱ ଖୋଜିଛନ୍ତି । ସାରଳାଙ୍କୁ ଜୈନ୍ୟ, ବୌଦ୍ଧ ପରମ୍ପରା ସହିତ ଯୋଡୁଛନ୍ତି, ଓଡ଼ିଶା ଭୂମିକୁ ବ୍ରହ୍ମଚର୍ଯ୍ୟ ଓ ଯୌନସଂଜମର କ୍ଷେତ୍ର କହୁଛନ୍ତି ଏବଂ କବିଙ୍କୁ ଧର୍ମ ନାମରେ ଜାବତୀୟ ବ୍ୟଭିଚାରବିରୋଧୀ ମାନସିକତାର ପ୍ରତୀକ ବୋଲି ସ୍ୱୀକାର ବି କରିଛନ୍ତି । ମାତ୍ର ତାଙ୍କୁ ଅଧିକତର ପୀଡ଼ା ଦେଇଛି ମୂଳ ମହାଭାରତର ଦାଣ୍ଡିବୃତ୍ତର ଚଉଦଅକ୍ଷରି ରୂପାନ୍ତର । ତାଙ୍କ ଭାଷାରେ ଏହା ଏକ 'ଦୁଷ୍କର୍ମ' । ବିଂଶ ଶତାବ୍ଦୀର ନୂଆ ଓଡ଼ିଆ ମହାଭାରତ । ଏଥିରେ ଗାରିମା ନାହିଁ, କି କାବ୍ୟ କଳାର ମହତ୍ୱ ନାହିଁ । ପଣ୍ଡିତ ମହାଶୟଙ୍କ ଅନୁରୂପ ବିଚାର ଗୋପୀନାଥ ଏବଂ ବିନାୟକ ମିଶ୍ରଙ୍କ ବିଚାରର ପ୍ରତିଧ୍ୱନି । ଏବଂ, ସେ ସାରଳାକୃତ ମହାଭାରତ ପ୍ରକାଶନର ସ୍ୱପ୍ନ ଦେଖିଛନ୍ତି । ମାତ୍ର ନୀଳକଣ୍ଠ କବିଙ୍କ ବ୍ୟକ୍ତିତ୍ୱ ସଂପର୍କରେ ଖଞ୍ଜିଦେଇଥିବା ନୂଆ ମାତ୍ରା- ସାରଳାଙ୍କୁ ଶୂଦ୍ରମୁନି କହିବାର କାରଣ, ସେ ସିଦ୍ଧିକାମୀ ମୁନି । ଏହି ମୁନି - ଜୈନ ସଭ୍ୟତା ଓ ସାହିତ୍ୟର ଅଭିବ୍ୟକ୍ତି । (ଦାସ, ନୀଳକଣ୍ଠ : ୧୯୭୭, ପୃଷ୍ଠା . ୫୦୯-୬୧)

ସାରଳାଙ୍କୁ ସୂର୍ଯ୍ୟନାରାୟଣ ଦାସ କପିଳେନ୍ଦ୍ର ଦେବଙ୍କ ସମକାଳୀନ ଓ 'ଉତ୍କଳର ବ୍ୟାସ' ଆଖ୍ୟା ଦେଇଛନ୍ତି । କହିଛନ୍ତି, ସିଦ୍ଧେଶ୍ୱର କିଛି ସଂସ୍କୃତ ଶିକ୍ଷା କରିଛନ୍ତି ଓ ଦେବୀଙ୍କ ବରପ୍ରସାଦରୁ କବିତ୍ୱ ପ୍ରାପ୍ତି ହୋଇଛନ୍ତି । ସେ ମହାଭାରତ ଯେଉଁ ନୀଳକଳ୍ପବଟ ତଳେ ବସି ଲେଖିଥିଲେ, ତାହା ଶ୍ରୀମନ୍ଦିର କଳ୍ପବଟ ନୁହେ, ସାରଳା ଦେବୀଙ୍କ ପୀଠସ୍ଥ ନୀଳକଳ୍ପବଟ ଓ ତାଙ୍କ ମହାଭାରତ ସ୍ୱକଳ୍ପିତ ମହାଭାରତ (ଦାସ, ସୂର୍ଯ୍ୟନାରାୟଣ : ୧୯୬୩, ପୃ- ୨୫୯-୨୬୦)

ସୁରେନ୍ଦ୍ରଙ୍କ ସାରଳାଦୃଷ୍ଟି ତୁଳାନାତ୍ମକ, ସମାଜତାତ୍ତ୍ୱିକ ଓ ମନସ୍ତାତ୍ତ୍ୱିକ ଗବେଷଣା ପଦ୍ଧତି ଆଧାରିତ । କବିଙ୍କ ଜବନୀଗଢ଼ଣରେ ସେ ଅନ୍ୟ କେତୋଟି ମାତ୍ରା ବି ଖଞ୍ଜିଛନ୍ତି । ଯଥା , ସେ ଆଜନ୍ମ ପିତୃମାତୃହୀନ, ତେଣୁ ଦେବୀ ସାରଳାଙ୍କୁ ମାତୃଜ୍ଞାନ କରିଛନ୍ତି । ଶୂଦ୍ରମାନେ ଦେବୀଙ୍କର ଆଦ୍ୟ ପୂଜକ, ସେହି ନ୍ୟାୟରେ ସାରଳା ଦେବୀଙ୍କର ପୂଜକ ଥିଲେ । ଗୋପୀନାଥଙ୍କ ପ୍ରଦତ୍ତ ସାରଳା ଓ ବ୍ୟାସକୈନ୍ଦ୍ରିକ ତୁଳନା ଦୃଷ୍ଟିକୁ ସୁରେନ୍ଦ୍ର ପଶ୍ଚିମ ଦିଗନ୍ତକୁ ପ୍ରସାରିତ କରିଛନ୍ତି । କହିଛନ୍ତି, ସାରଳା ଓଡ଼ିଶାର ଚସର । ଚସର ଫରାସୀ ଭାଷା କବଳରୁ ଇଂରେଜ ଭାଷାକୁ ମୁକ୍ତ କରିଥିଲା ପରି , ସାରଳା ସଂସ୍କୃତ ବନ୍ଧନରୁ ମୁକ୍ତ କରିଛନ୍ତି ଓଡ଼ିଆ ଭାଷାକୁ ଏବଂ ଉଭୟଙ୍କ କାହାଣୀ ପରିକଳ୍ପନା ମଧ୍ୟରେ ରହିଛି ଭାବ ଓ ବିଚାରଗତ ସାଦୃଶ୍ୟ । ନାରୀର ପୌରୁଷ ଓ ସୌନ୍ଦର୍ଯ୍ୟ ପ୍ରତି ଆସକ୍ତି, ପୁରୁଷର ବହୁ ନାରୀଭୋଗୀ ମାନସିକତା, ପ୍ରେମପ୍ରତ୍ୟାଖ୍ୟାତା ନାରୀର ପ୍ରତିକ୍ରିୟା, ସପତ୍ନୀ-ଅସହିଷ୍ଣୁତା ଏବଂ ବ୍ୟକ୍ତିର ଅଂହବୋଧର କାରୁଣ୍ୟ ଆଦି ସୂକ୍ଷ୍ମ ମନବୋଧକୁ ସାରଳା ଜଣେ ଶକ୍ତିଶାଳୀ ମନୋବିଜ୍ଞାନୀ ପରି କାହାଣୀ ପରିକଳ୍ପନା ମାଧ୍ୟମରେ ମୁକ୍ତ କରିଦେଇଛନ୍ତି । ବିଶେଷତଃ, ଦୁର୍ଯ୍ୟୋଧନର ରକ୍ତନଦୀ ସନ୍ତରଣ ଉପାଖ୍ୟାନ ସମ୍ପର୍କରେ ସୁରେନ୍ଦ୍ରଙ୍କ ବିଚାର ତାଙ୍କ ସର୍ଜନଶୀଳ ବ୍ୟକ୍ତିତ୍ୱର ସୂଚନା ଦିଏ ।

ବ୍ୟକ୍ତ- ବ୍ୟକ୍ତି ମଧ୍ୟରେ ଆନୁବଂଶିକ ସମ୍ପର୍କ ଯେ ସମ୍ପର୍କର ନିୟାମକ, ଏହା ରକ୍ତନଦୀ ସନ୍ତରଣ କାହାଣୀର ମର୍ମକଥା । ସାରଳା ବ୍ୟାସସୃଷ୍ଟ ଚରିତ୍ରମାନଙ୍କୁ ଏତେ ବିକୃତ କରିବାର କାରଣ କଣ ହୋଇପାରେ ? - ସୁରେନ୍ଦ୍ର ଏହାକୁ ପଞ୍ଚଦଶ ଶତାବ୍ଦୀରେ ଉତ୍କଳର ସାମାଜିକ ଓ ଆଧ୍ୟାତ୍ମିକ ପରିମଣ୍ଡଳର କଳାରୂପ ବୋଲି କହିଛନ୍ତି । ଶ୍ରୀକୃଷ୍ଣ - ସହଜିୟା କାହ୍ନୁ, ଦୂତୀକା - ସହଜସୁନ୍ଦରୀ /କୁଟିନୀ- ଏମାନେ ଅଭିଚାର ବିଦ୍ୟାର ସାଧକ ଓ ସାଧିକା । ଭୀମଙ୍କର ଖାଦ୍ୟଲୋଭ ମାନସିକତା ପିଣ୍ଡବ୍ରହ୍ମାଣ୍ଡ ତତ୍ତ୍ୱର ଅଭିବ୍ୟକ୍ତି । ସାରଳାଙ୍କ ବିଚାରରେ ସହଜସାଧନା ବ୍ୟଭିଚାରର ଅଭିବ୍ୟକ୍ତି । ଏହା ଅବଶ୍ୟ ପରିତ୍ୟଜ୍ୟ । ସାରଳାଙ୍କ ବ୍ୟକ୍ତିତ୍ୱ ସଂକ୍ରାନ୍ତ ପୂର୍ବୋକ୍ତ ବିଚାରର ଖଣ୍ଡନ କରି ସୁରେନ୍ଦ୍ର କହିଛନ୍ତି - ମହାଭାରତରେ କାହାଣୀଗତ ପ୍ରକ୍ଷେପ ଓ ବୈଷମ୍ୟ ସ୍ୱେଚ୍ଛାକୃତ, ମୂର୍ଖତାପ୍ରସୂତ ନୁହେ, ଏବଂ, ମହାଭାରତ ଓ ସାରଳାଙ୍କ ଅନ୍ୟ ରଚନା (**ବିଲଙ୍କାରାମାୟଣ , ଚଣ୍ଡିପୁରାଣ**)ର ଲୋକପ୍ରିୟତାର ପ୍ରଧାନ କାରଣ, ତାଙ୍କ ସର୍ଜନ-ବ୍ୟକ୍ତିତ୍ୱର ରସବୋଧ,ସୌନ୍ଦର୍ଯ୍ୟଦୃଷ୍ଟି ଏବଂ କାହାଣୀ ସଂରଚନାରେ ନାଟକୀୟତା, ସଂଳାପଧର୍ମିତା, ବର୍ଣ୍ଣନାବୈଚିତ୍ର୍ୟ ଓ ଭାଷାବୋଧ । କବି ସଚେତନ ଭାବରେ କଳ୍ପିତ ଆଦର୍ଶ ଚରିତ୍ରମାନଙ୍କୁ ସାଧାରଣ ମଣିଷରେ ରୂପାନ୍ତର କରିଦେଇଛନ୍ତି । (ମହାନ୍ତି, ସୁରେନ୍ଦ୍ର : ୨୦୦୪, ୧୯୬୪, ପୃ. ୧୦୨-୯୬) ।

ମାୟାଧର ମାନସିଂହଙ୍କର ଅନ୍ୟତମ ପ୍ରିୟକବି ସାରଳା ଦାସ । ତାଙ୍କ ମୁଗ୍ଧଦୃଷ୍ଟି ଏହି ପ୍ରିୟ ମଣିଷଙ୍କ ବ୍ୟକ୍ତିତ୍ୱ ଓ ତାଙ୍କ ମହାଭାରତକୁ ବହୁ ଚମତ୍କାର ବିଶେଷଣରେ ହୃଦ୍ୟ କରିଛି । କବିଙ୍କ ସଂପର୍କରେ ତାଙ୍କ ବକ୍ତବ୍ୟ, ସେ ଅକ୍ଷର ଜାଣି ନ ଥିଲେ ବା ବିଦ୍ୟାବନ୍ତ ନଥିଲେ - ସେ ପୁଣି ଆଉ ଏକ ଆଶୀର୍ବାଦ, ପାଣ୍ଡିତ୍ୟ ଓ ସୃଜନ ଶକ୍ତିର ପରିଚୟ ଏବଂ ତାହା ଯାଦୁକ୍ରିୟା ପରି ବିସ୍ମୟକର । ସେ ଜାଣିଶୁଣି ମୂଳର ନାୟକ ନାୟିକା, ଗଳ୍ପ ଉପାଖ୍ୟାନ, ଚରିତ୍ର ଚିତ୍ରଣର ସମସ୍ତଙ୍କୁ ଭାଙ୍ଗିଛନ୍ତି ଓ ଓଲଟା ପାଲଟ କରି ଏକ ମୌଳିକ ଗ୍ରନ୍ଥ ଠିଆ କରାଇଛନ୍ତି । x x ଏକ ଅର୍ଦ୍ଧଶିକ୍ଷିତ କୃଷକ ମାତ୍ର । କୃଷକ-ପାଇକ । ତାଙ୍କ ସମଗ୍ର ରଚନାରେ . କୌଣସି ଚିହ୍ନ ଦେଖିବାକୁ ମିଳେନାହିଁ ଯେ, ସେ ସଂସ୍କୃତ ଭାଷା ହିଁ ଜାଣିଥିଲେ । ତାଙ୍କର ସେହି ମହତ୍ତ୍ୱ ଭାଷାରେ ବିଖ୍ୟାତ କାବ୍ୟ ଶାସ୍ତ୍ରାଦିର ଅଧୀତ ଜ୍ଞାନଥିବା ତେତିକି ଆଉ, କିନ୍ତୁ ଏକ ବିଦ୍ୟା - ସଂସ୍କୃତିବନ୍ତ ଶାସ୍ତ୍ରାଧ୍ୟୟନର କଠୋରତା ଦେଇ ସଂଯମିତ ଓ ସୁଗଠିତ ବୁଦ୍ଧି ଓ ବ୍ୟକ୍ତିତ୍ୱ ନିକଟରୁ ଆମେ ଯେଉଁ ଜ୍ଞାନ, ଜିଜ୍ଞାସା ଓ ଦର୍ଶନ ଆଶା କରିବା, ଦାସଙ୍କ କାବ୍ୟରେ ଆମେ ତାହା ପାଉନା, ପାଇବାର ଆଶା କରିବା ବି ନୁହେଁ, x x ଅତିବିଚକ୍ଷଣ ଗ୍ରାମ୍ୟକଥକ, 'ସେ ଶିଶୁ ମନର ସ୍ତରରେ ଥିବା ଓଡ଼ିଶାର ନିରକ୍ଷର ଜନତା ଉପରେ ସଂସ୍କୃତ ମହାଭାରତର ରାଜନୀତି, ଧର୍ମନୀତି, ଦର୍ଶନ, ଅନୁଶାସନ ସହିତ ସମସ୍ତ ବିପୁଳତାକୁ ଲଦି ଦେଇ ନାହାନ୍ତି, ଶିଶୁମନ କୋମଳ ଗଳ୍ପ ଚାହେଁ, କିଂଚିତ ଅତିରଞ୍ଜନର ପ୍ରକ୍ଷେପ ଦେଲେ ମୁଗ୍ଧ ହୋଇଉଠେ, ସାରଳା ଦାସ ଜନତା ଚିତ୍ତରେ ଏହି ସବୁ ଲକ୍ଷଣ ଉତ୍ତମ ରୂପେ ଜାଣିଥିଲେ, ତେଣୁ ନିଜକୁ ଓ ମହାଭାରତକୁ ନେଇ ଆସିଛନ୍ତି, ଜାଣି ଜାଣି ଓଡ଼ିଶାର ଗାଁକୁ

ଓ ଗାଁ ମଣିଷର ବୌଦ୍ଧିକ ସ୍ତରକୁ, ସାଧାରଣ ତଳସ୍ତରର ମଣିଷ ଓ ଆଦିବାସୀଙ୍କ କଥା କହିଛନ୍ତି।' ଏବଂ, 'ଶୂଦ୍ରକବି, ଶୂଦ୍ରଜନର ଭାଷାରେ ଶୂଦ୍ରଜନତା ପାଇଁ ଏ ମହାମାନବମାନଙ୍କୁ ଟାଣି ଆଣିଛନ୍ତି ଓଡ଼ିଶାର ଗୋହିରୀ ଦାଣ୍ଡର ଧୂଳି ଓ ଧାନବିଲର କାଦୁଅକୁ, ଯେପରିକି ଓଡ଼ିଶାର ଅଶିକ୍ଷିତ ଜନତା ଏମାନଙ୍କୁ ନିଜର ବୋଲି ମନେ କରିବେ, ଖାଦ୍ୟ, ବସନ, କଥାବାର୍ତ୍ତା, ସାମାଜିକ ବିଧିବ୍ୟବସ୍ଥା, ଧର୍ମ, ସଂସ୍କୃତି ସବୁକିଛି ଓଡ଼ିଆମାନଙ୍କର' ଇତ୍ୟାଦି। ମାନସିଂହଙ୍କ ଦୃଷ୍ଟିରେ ମହାଭାରତ - 'ବୈଶ୍ୟ-ଶୂଦ୍ରର ସାହିତ୍ୟ। ମୌଳିକ ରଚନା, ଲୋକ ମହାକାବ୍ୟ, ଓଡ଼ିଆଜାତିର ପ୍ରକୃତ ଓ ପ୍ରକୃଷ୍ଟ ଜାତୀୟ ମହାକାବ୍ୟ। ଛଅଶହ ବର୍ଷ ତଳର ଓଡ଼ିଶାର ଏକ ଅକଳ୍ପନୀୟ ମୌଳିକ ଗ୍ରନ୍ଥ, ସଂସ୍କୃତ ମହାଭାରତ ଅପେକ୍ଷା ଅଧିକତର ସମରକାବ୍ୟ, ଆଦିମ ଶୈଳୀର ରଚନା' - ଇତ୍ୟାଦି। ଗ୍ରନ୍ଥ ସଂପର୍କରେ ଗୋପୀନାଥ ମହାନ୍ତିଙ୍କ ବିଚାର - 'ଏହା ଏକ ଜଙ୍ଗଲ'କୁ ମଧ୍ୟ ସେ ସ୍ୱୀକାର କରିଛନ୍ତି।

ନିଜ ବକ୍ତବ୍ୟ ଓ ବିଚାରକୁ ପ୍ରତିଷ୍ଠା କରିବା ପାଇଁ ମାନସିଂହ ସାରଳା-ସୃଷ୍ଟ ଚରିତ୍ରମାନଙ୍କ ଆଚାର ଓ ମନର ରହସ୍ୟ ଅନାବରଣ-ପ୍ରୟାସୀ ହୋଇଛନ୍ତି। ଗଙ୍ଗା, କୁନ୍ତୀ, ଗାନ୍ଧାରୀ,ଦ୍ରୌପଦୀ, ଯୁଧିଷ୍ଠିର, ଭୀଷ୍ମ, ଭୀମ, ଅର୍ଜୁନ ଆଦି ଚରିତ୍ରଙ୍କୁ ଉଦାହରଣ କରିଛନ୍ତି। ବ୍ୟକ୍ତି କିପରି ସ୍ଥାନ ଓ କାଳ ନିୟନ୍ତ୍ରିତ, ମନ କିପରି ନିରନ୍ତର ମୁକ୍ତି-ଅନ୍ୱେଷୀ ଏବଂ ସାମାଜିକ ବିଧିନିୟନ୍ତ୍ରିତ ମନ ଓ ବିଧିମୁକ୍ତ ମନ ମଧ୍ୟରେ ଦ୍ୱନ୍ଦ୍ୱର ଚିତ୍ର ବି ଆଙ୍କିଛନ୍ତି। ଏହି ଚିତ୍ରାତ୍ମକ ଅଭିବ୍ୟକ୍ତିକୁ ଆମେ ଜଣେ କବି-ସମୀକ୍ଷକଙ୍କ ଅନ୍ତର୍ବୋଧ କହିପାରିବା। ମାତ୍ର ଗୁରୁତ୍ୱପୂର୍ଣ୍ଣ କଥା, ସାରଳାଙ୍କୁ ମାଟିର ମହାକବି ଆଖ୍ୟା ଦେଇଥିବା ମାନସିଂହ ଆପେ ଶାସ୍ତ୍ରୀୟତା ଓ ଲୌକିକତା ମଧ୍ୟରେ ସଂଘାତ ଓ ଦ୍ୱନ୍ଦ୍ୱାତ୍ମକ-ଅବବୋଧରୁ ମୁକ୍ତ ହୋଇପାରିନାହାନ୍ତି। ସାରଳାଙ୍କୁ ଅର୍ଦ୍ଧ-ଶିକ୍ଷିତ, ସଂସ୍କୃତ-ଅବଜ୍ଞାତ କହିଛନ୍ତି, ଏବଂ ଅନ୍ୟ ଯେଉଁ ଶବ୍ଦମାନ ପ୍ରୟୋଗ କରିଛନ୍ତି, ସେଥିରୁ ସ୍ପଷ୍ଟ ବୁଝିହେଉଛି ଯେ, ତାଙ୍କ ପ୍ରିୟ କବି ଗ୍ରାମ୍ୟ (ହଳୁ, ମଫୁ ମଧ୍ୟ କୁହାଯାଇପାରେ), ବ୍ୟାସଙ୍କ ପରି ଉଚ୍ଚ ନୈତିକ ମୂଲ୍ୟବୋଧ ଅବଜ୍ଞାତ, ଅମାର୍ଜିତ ପ୍ରତିଭା। 'ଏକ ବିଦ୍ୟା ସଂସ୍କୃତିମନ୍ତ, ଶାସ୍ତ୍ରାଧ୍ୟାୟନର କଠୋରତା ଦେଇ ସଂଯମିତ ଓ ସୁଗଠିତ ବୁଦ୍ଧି ଓ ବ୍ୟକ୍ତିତ୍ୱ ନିକଟରୁ ଆମେ ଯେଉଁ ଜ୍ଞାନ, ଜିଜ୍ଞାସା ଓ ଦର୍ଶନ ଆଶା କରିବା , ଦାସଙ୍କ କାବ୍ୟରେ ଆମେ ତାହା ପାଉନାହୁଁ, ପାଇବାର ଆଶା କରିବା ଉଚିତ ବି ନୁହେଁ। କୌଣସି ଦେଶ ବା କାଳରେ ଏହି ଅର୍ଦ୍ଧଶିକ୍ଷିତ ଚଷା ଯେତେ ପ୍ରତିଭାଶାଳୀ ହେଉପଛେ, ସଂସ୍କୃତ ମହାଭାରତରେ ଉଦଯୋଗ ପର୍ବରେ ବିଦୂର-ସଞ୍ଜୟ ଓ ନାରଦ-ଯୁଧିଷ୍ଠିର ସମ୍ବାଦ ବା ଶାନ୍ତିପର୍ବ ସୃଷ୍ଟି କରିନପାରେ ( ମାନସିଂହ: ୧୯୫୮, ପୃ. ୬୭-୮)।

ଏବଂ, ଅନୁରୂପ ମନ୍ତବ୍ୟ ପରେ ପରେ ସେ ପୁଣି କହିଛନ୍ତି - 'କବି ଜଣେ ଆଦର୍ଶବାଦୀ , ଶାନ୍ତିପ୍ରିୟ କୃଷକ, ସମକାଳୀନ ରାଜନୀତିକ ବ୍ୟବସ୍ଥା ବିରୋଧୀ ଓ ପରୀକ୍ଷିତଙ୍କ ପରି ଜଣେ ଆଦର୍ଶ ରାଜା ଖୋଜୁଥିବା ସଚେତନ ପ୍ରଜା ଏବଂ ସର୍ବୋପରି ଆପଣା କାଳରେ ସାମାଜିକ,

ସାଂସ୍କୃତିକ ଓ ରାଜନୀତିକ ଇତିହାସର ପ୍ରତ୍ୟକ୍ଷ-ଅନୁଭବି ପ୍ରତିଭା।' x x ' ବିଚକ୍ଷଣ ଗ୍ରାମ୍ୟ କଥକ, ଏଣୁ ବହୁ ସମୟରେ ଆଲିଗୋରିକାଲ୍ ଏବଂ ତାଙ୍କ ମହାଭାରତ ଖାଣ୍ଟି ଓଡ଼ିଆ ଭାଷାରେ ରାଷ୍ଟ୍ରିୟ ଗନ୍ତାଘର। ସେ ଅବଶ୍ୟ ମାଟିର କଥା କହିଛନ୍ତି। ମାତ୍ର ମାଟିରେ ନିମ୍ନ ଉପତ୍ୟକାରୁ ଉପରେ ଥିବା ସଂସ୍କୃତିର ଓ ନିର୍ମଳ ଆଧ୍ୟାତ୍ମିକତାର ସ୍ୱର୍ଣ୍ଣ ଉପତ୍ୟକାକୁ ବାଟ ଦେଖାଇଗଲେ ନାହିଁ (ମାନସିଂହ: ୧୯୫୮, ପୃ.୫୭)। ଉପର୍ଯ୍ୟୁକ୍ତ ମନ୍ତବ୍ୟ, ମାୟାଧର ତାଙ୍କ ପ୍ରିୟ କବିଙ୍କୁ କିପରି ଅନୁଭବ କରିଛନ୍ତି' ତାହାର ସ୍ପଷ୍ଟ ଉଦାହରଣ।

ବାସ୍ତବତଃ ଊନବିଂଶ ଶତାବ୍ଦୀର ପଞ୍ଚମ ଓ ଷଷ୍ଠ ଦଶକରେ ସମାଲୋଚକମାନଙ୍କଦ୍ୱାରା ସାରଳାଙ୍କ ବ୍ୟକ୍ତିତ୍ୱ ଅଧିକ ରହସ୍ୟମୟ ହୋଇପଡିଛି। ତାଙ୍କ ପରିଚୟ ଓ ରଚନାକୁ କେନ୍ଦ୍ରକରି ଏହି ରହସ୍ୟମୟତାର ସର୍ଜନା। ଏହାର ନେତୃତ୍ୱ ନେଇଛନ୍ତି ହରେକୃଷ୍ଣ ମହତାବ ନାମକ ଜଣେ ସୁପ୍ରତିଷ୍ଠିତ ସାହିତ୍ୟ ଓ ରାଜନୀତିର ସମୀକୃତ ବ୍ୟକ୍ତିତ୍ୱ। କ୍ଷେତ୍ରଟି ତାଙ୍କ ପ୍ରତିଷ୍ଠିତ ପ୍ରଜାତନ୍ତ୍ର ପ୍ରଚାର ସମିତି। ତାଙ୍କ ଉଦ୍ୟମରେ ଖଣ୍ଡିଏ ବହି ପ୍ରକାଶ ପାଇଛି *ଶାରଳା ସ୍ମରଣିକା* (୧୯୫୪)। ଶାରଳାଙ୍କ ପରିଚୟ, ଧର୍ମଦୃଷ୍ଟି, ଇତିହାସବୋଧ, ସମାଜବୋଧ, ଚରିତ୍ରଚିତ୍ରଣ ଏବଂ ସର୍ଜନସ୍ୱାତନ୍ତ୍ର୍ୟ ଆଦି ନାନା ପ୍ରସଙ୍ଗର ଏହା ଏକ କମ୍ପେନଡିଅମ୍। ଏଥିରେ ପ୍ରକାଶିତ ଆଲୋଚନାଗୁଡ଼ିକ ମଧ୍ୟରେ ବେଶ୍ ସ୍ୱତନ୍ତ୍ର ଦିଶେ ଆର୍ତ୍ତବଲ୍ଲଭ ମହାନ୍ତିଙ୍କର ବିଚାର। ସାରଳାଙ୍କ ବ୍ୟକ୍ତିତ୍ୱରେ ସେ ଦୁଇଟି ମାତ୍ରା ଯୋଡ଼ି ଦେଇଛନ୍ତି। କବି ଦେବୀ ଶାରଳାଙ୍କ ବିଦ୍ୟାପୁତ୍ର, ତେଣୁ , ଲେଖିବେ ବୋଲି ପଢ଼ିବା ପାଇଁ ସେ ଆଦୌ ବାଧ୍ୟ ନୁହନ୍ତି। ଶକ୍ତି କରୁଣା କଲେ ମହାମୂର୍ଖ ବି ମହାନ ପଣ୍ଡିତ ହୋଇପାରିବେ। ଏକଥା ପ୍ରମାଣ ପାଇଁ ସେ ଦୁଇ ଜଣଙ୍କୁ ଉଦାହରଣ କରୁଛନ୍ତି। ଜଣେ ଇସଲାମ୍ ଧର୍ମର ପ୍ରବର୍ତ୍ତକ ମହମ୍ମଦ ଏବଂ ଅନ୍ୟ ଜଣକ ଅଧ୍ୟାତ୍ମବାଦୀ କାଳୀସାଧକ ବଙ୍ଗଳାର ରାମକୃଷ୍ଣ ପରମହଂସ। କବି ନିଶ୍ଚିତ ଭାବରେ କୃଷିକାରୀ ଶୂଦ୍ର, ମାତ୍ର ସୂର୍ଯ୍ୟବଂଶୀ ରାଜା କପିଳେନ୍ଦ୍ର ଦେବ ନୁହନ୍ତି, ଗଙ୍ଗବଂଶୀ କପିଳ ନରସିଂହ ଦେବ, ଦ୍ୱିତୀୟ (୧୩୨୮-୫୭)ଙ୍କ ସମକାଳୀନ। ଅର୍ଥାତ୍ ଚତୁର୍ଦ୍ଦଶ ଶତାବ୍ଦୀର ମଧ୍ୟଭାଗ। ଏବଂ, ଆର୍ତ୍ତବଲ୍ଲଭଙ୍କ ଭାଷାରେ କବିଙ୍କ ଭାଷା ସହଜ, ସରଳ ଓ ପ୍ରାକୃତିକ 'ସଂସ୍କୃତମୂର୍ଚ୍ଛିତ ନୁହେଁ। ପ୍ରାଚୀନ ଉତ୍କଳରେ ପ୍ରଚଳିତ ପ୍ରାକୃତର ବିକାଶ - ସମ୍ଭୂତ (ମାହାନ୍ତି ଆର୍ତ୍ତବଲ୍ଲଭ: ୧୯୫୪)

କବିଙ୍କ ଜନ୍ମକାଳ ଓ ଜନ୍ମଭୂମିକୈନ୍ଦ୍ରିକ ପୂର୍ବର ସକଳ ବିଚାରକୁ, ଏଥର, ସମ୍ପୂର୍ଣ୍ଣ ଅସ୍ୱୀକାର କରୁଛନ୍ତି କଥାକାର ଗୋପୀନାଥ ମହାନ୍ତି, ତାହା ପୁଣି, ତାଙ୍କ ସଂଗୃହୀତ ପୋଥି ଆଧାରରେ। କବିଙ୍କ ଜନ୍ମ କାଳେ ନବମ/ଦଶମ ଶତାବ୍ଦୀ, କପିଳ ନରସିଂହ ଦେବଙ୍କ ସମକାଳୀନ ଏବଂ ଜନ୍ମ ସ୍ଥାନ ଝଙ୍କଡ ନୁହେଁ , କାକଟପୁର ପାଖାପାଖି କଣିଆ ନାମକ ଗାଁ (ମହାନ୍ତି ଗୋପୀନାଥ : ୧୯୫୬,) ଏହି ଲେଖା ପ୍ରକାଶିତ ହେବାର ଛ' ମାସ ପରେ, ଐତିହାସିକ କୃଷ୍ଣଚନ୍ଦ୍ର ପାଣିଗ୍ରାହୀ ଆପଣାର *ସାରଳା ମହାଭାରତର ରଚନା କାଳ ଓ ଐତିହାସିକ ଚିତ୍ର* ପ୍ରବନ୍ଧରେ ଗୋପୀନାଥ ମହାନ୍ତିଙ୍କ ପ୍ରତି ବେଶ୍ ଆକ୍ରମଣାତ୍ମକ ଆଭିମୁଖ୍ୟ

ପ୍ରକାଶ କରିଛନ୍ତି। ତାଙ୍କର ଯୁକ୍ତି, ସାରଳାଙ୍କ ଭାଷା ନବମ ଶତାବ୍ଦୀର ଭାଷା ନୁହେଁ, ଏବଂ ଓଡ଼ିଶାର ରାଜନୀତିକ ଇତିହାସରେ କପିଳ ନରସିଂହଦେବ କାଳ୍ପନିକ ନାଁ। ଗୋପୀନାଥ ନା ଭାଷାବିଜ୍ଞାନୀ, କି ଐତିହାସିକ। ଅନୁରୂପ ବ୍ୟକ୍ତବ୍ୟ ଅନେକଙ୍କ ମଗଜକୁ ବାଧିଛି। ଗୋପୀନାଥଙ୍କ ତିନୋଟି ଲେଖା ଝଙ୍କାରରେ ପ୍ରକାଶ ପାଇଛି(ମହାନ୍ତି, ଗୋପୀନାଥ ୧୯୫୬:) ପାଣିଗ୍ରାହୀ କିନ୍ତୁ ନଛୋଡ଼ବନ୍ଧା। ସେହି ଝଙ୍କାର ପୃଷ୍ଠାରେ ଧାରାବାହିକ ଭାବରେ ସେ *ସାରଳା ମହାଭରତର ରଚନା କାଳ ଓ ଐତିହାସିକ ଚିତ୍ର* ଶୀର୍ଷକରେ ନିଜ ବିଚାରକୁ ପ୍ରତିଷ୍ଠା କରିଛନ୍ତି। ଏହି ଧାରାବାହିକ ଗ୍ରନ୍ଥରୂପ ନେଇଛି *ସାରଳା ମହାଭାରତରେ ଐତିହାସିକ ଚିତ୍ର* ଶୀର୍ଷକରେ, ୧୯୭୬ ମସିହାରେ ।

ପାଣିଗ୍ରାହୀଙ୍କ ମହାଭାରତର ଭାଷାକୈନ୍ଦ୍ରିକ ବିଚାର , ସମକାଳରେ, ଅନେକଙ୍କୁ ଆହତ କରିଛି। ଆପଣା ଆଲୋଚନା ପ୍ରସ୍ତୁତିରେ ସେ ରାଧାରମଣ ପୁସ୍ତକାଳୟ ମୁଦ୍ରିତ ଗ୍ରନ୍ଥ ବ୍ୟବହାର କରିଛନ୍ତି। ତାଙ୍କ ବିରୋଧୀମାନଙ୍କ ଯୁକ୍ତି -- କୌଣସି ରଚନାର ଚର୍ଚ୍ଚା କାଳରେ ଏହାର ଅପସମ୍ପାଦିତ ରୂପର ବ୍ୟବହାର ସମ୍ପୂର୍ଣ୍ଣ ଅନୁଚିତ ଓ ଅବୈଜ୍ଞାନିକ। ପାରିଗ୍ରାହୀ କିନ୍ତୁ ନିଜ ଭ୍ରାନ୍ତ ଅଂହକାରରେ ଅଟଳ। ସେ ଘୋଷଣା କରୁଛନ୍ତି, ସାରଳା ମହାଭାରତର ଶୁଦ୍ଧ ସଂସ୍କରଣ ଚଉଦ ଅକ୍ଷରରେ ହେବା ଉଚିତ। କାରଣ ଦାଣ୍ଡିବୃତ୍ତକୁ ଲୋକେ ଗାଇବା ଭୁଲି ଗଲେଣି। ଏହା ପାଠାଗାରରେ ରହିବ। (ପାଣିଗ୍ରାହୀ: ୨୦୦୩, ପୃ. ୧୯-୪୧) ସମକାଳରେ ଅନ୍ୟତମ ତରୁଣ ଗବେଷକ ବଂଶୀଧର ମହାନ୍ତି ଆବିର୍ଭୂତ ହୋଇଛନ୍ତି। ସେ ପୂର୍ଣ୍ଣତଃ ଆର୍ତ୍ତଭକ୍ତ, ଅତି ଉତ୍ସାହର ସହିତ ସେ ସାରଳାଙ୍କ କୃତିରେ ଅନ୍ୟ ଏକ ମାତ୍ରା ଯୋଡ଼ିଦେଉଛନ୍ତି। ତାହା *ଲକ୍ଷ୍ମୀନାରାୟଣୀ ବଚନିକା*, ଦାଣ୍ଡିବୃତ୍ତର ରଚନା( ମହାନ୍ତି, ବଂଶୀଧର: ପୃ. ୧୬୦-୬୨)। ଏହି ମାତ୍ରା ସମକାଳୀନ ଅନ୍ୟ ଜଣେ ତରୁଣ ଗୌରୀକୁମାର ବ୍ରହ୍ମାଙ୍କୁ କ୍ଷୁବ୍ଧ କରିଛି। ସେ ସେହି ଝଙ୍କାର ପୃଷ୍ଠାରେ ବଂଶୀଧରଙ୍କୁ ରୀତିମତ ବିବସ୍ତ୍ର କରୁଛନ୍ତି। (ବ୍ରହ୍ମା, ଗୌରୀକୁମାର : ୧୯୫୮) କହିବାକୁ ଚାହୁଁଛନ୍ତି , ଏହା ଛଳ-ସାରଳା ସଂରଚନା।

ସାରଳାଙ୍କ ସମ୍ପର୍କରେ ଉପର୍ଯ୍ୟୁକ୍ତ ବ୍ୟକ୍ତିତ୍ୱମାନଙ୍କର ବିଚାରକୁ ଅନୁଶୀଳନ କଲାବେଳେ ସ୍ପଷ୍ଟ ହୋଇଯାଏ ଯେ , ଜଣେ ପ୍ରତିଭା ଅଂହ-ସଂକ୍ରମିତ ସମୀକ୍ଷକମାନଙ୍କ ଅତିଉତ୍ସାହୀ ଅସ୍ତ୍ରରେ କେବଳ ଆହତ ହୋଇଛନ୍ତି। ସେମାନେ ଜାତିବାଦ, ଜାତୀୟତାବାଦ, ଆଞ୍ଚଳିକତାବାଦ, ପାଣ୍ଡିତ୍ୟ ଓ ନିଜ ନିଜ ଭାବାଦର୍ଶ-ପୀଡ଼ିତ ଜଣେ ଜଣେ ଅହଂକାରୀ। କବିଙ୍କ ସର୍ଜନପ୍ରତିଭା ନୁହେଁ : ଜନ୍ମକାଳ, ଭୂମି, ଜାତି, କୁଳ, ଗୋତ୍ର ଓ ବୃତ୍ତି ନିରୂପଣରେ ସକଳ ଗବେଷକ ରୀତିମତ ଧନ୍ଦି ହେଉଛନ୍ତି। ଏବଂ, ଏହି ମାନସିକତାକୁ ଉତ୍ସାହିତ କରୁଛନ୍ତି ଅନ୍ୟତମ କ୍ଷତ୍ରିୟ ମହତାବ, ପୁଣି ଆପଣା ବୌଦ୍ଧିକ ଡିହରେ, ସେ ପାଣିଗ୍ରାହୀଙ୍କ ପରି ବ୍ରହ୍ମାସ୍ତ୍ରକୁ ମଧ୍ୟ ଅନ୍ୟମାନଙ୍କ ନିପାତନପାଇଁ ଖଞ୍ଜି ଦେଉଛନ୍ତି।

ସାରଳା ବ୍ୟକ୍ତିତ୍ୱ-ସମରର ଅନ୍ୟତମ ବୌଦ୍ଧିକ ଯୋଦ୍ଧା ଅ-ଶିକ୍ଷାବିତ ସଚ୍ଚିଦାନନ୍ଦ ମିଶ୍ର, ବିଜ୍ଞାନ ଛାତ୍ର ଓ ଆଇନବିଦ୍ୟାବିତ୍। ସେ ଅନ୍ୟତମ ସଚେତନ ବ୍ୟକ୍ତିତ୍ୱ, ଯିଏ ପୋଥି-

ସାରଳା ଓ ମୁଦ୍ରିତ-ସାରଳା ପଢ଼ିଛନ୍ତି। ବିଜ୍ଞାନ ଓ ଆଇନ ଦୃଷ୍ଟି (ବ୍ରାହ୍ମଣ ଦୃଷ୍ଟିରେ ନୁହେଁ) ରେ କବିଙ୍କୁ ବୁଝିବାକୁ ଚେଷ୍ଟା କରିଛନ୍ତି। ତାଙ୍କ ବୋଧନପ୍ରକ୍ରିୟା ସ୍ୱୟଂ ସାରଳା ଓ ସମୀକ୍ଷକମାନଙ୍କୁ ପ୍ରଶ୍ନମାନ ପଚାରିଛି। ସମ୍ଭାବ୍ୟ ଉତ୍ତର ଖୋଜିଛି ଏବଂ ସମ୍ଭାବନା ସମ୍ପର୍କରେ ଚର୍ଚ୍ଚାପାଇଁ ଅନ୍ୟମାନଙ୍କୁ ପ୍ରଚୋଦିତ କରିଛି। ସେହି ନ୍ୟାୟରେ ତାଙ୍କୁ ଜଣେ ଭାବପ୍ରବଣତାମୁକ୍ତ ସାରଳାପ୍ରେମୀ କୁହାଯାଇପାରିବ। ତାଙ୍କ ସାରାଳା ପ୍ରୀତିଗାଥା *ଝଙ୍କାର* ଓ *ପାଞ୍ଚଜନ୍ୟ* ଆଦି ପତ୍ରିକା ପୃଷ୍ଠାରେ ପ୍ରଥମେ ଓ ପରେ ଗ୍ରନ୍ଥାକାରରେ *ଶାରଳାଦାସ ; ଏକ ଅଧ୍ୟୟନ* ଶୀର୍ଷକରେ, ୨୦୦୬ ମସିହାରେ ପ୍ରକାଶ ପାଇଛି। ବହିର ମୁଖବନ୍ଧରେ ସେ କେତୋଟି ଗୁରୁତ୍ୱପୂର୍ଣ୍ଣ କଥା କହିଚନ୍ତି : ତାହା - ୧. ତାଙ୍କ ଅଧ୍ୟୟନ ସର୍ବମୁଖ ନୁହେଁ, ୨. ସାରଳା ସୃଷ୍ଟି ସଂସାରଜନହିତେ ଥିଲା, ମାତ୍ର କାଳକ୍ରମେ ତାହାର ହିତାଧିକାରୀ ସଂସାରଜନଙ୍କ ପରିବର୍ତ୍ତେ ସାହିତ୍ୟ-ସଂସ୍କୃତି-ବିଚାର -ଦକ୍ଷ ସ୍ୱଭାଷା ସାହିତ୍ୟାଭିମାନେ ରହିଲେ, ୩. ସାରଳାଙ୍କ ଲେଖାରେ ସାଢ଼େପାଞ୍ଚଶହ ବର୍ଷରୁ ଅଧିକ କାଳରେ ବହୁବିଧ ବିଷୟ--- ଅର୍ଥନୀତି, ସମାଜ ନୀତି, ରାଜନୀତି, ଇତିହାସ , ଭୂଗୋଳ, ଧର୍ମଧାରଣା, ଦର୍ଶନ ଆଦି ରହିଛି। ତାହା ଏକପ୍ରକାର ଶବ୍ଦମୟ ଯାଦୁଘର। ସେ ସଂସ୍କୃତରୁ ଅନୁବାଦ କରିଥିଲେ ଏହି ଯାଦୁଘର ତିଆରି କରିପାରିନଥାନ୍ତେ। ଏବଂ, ସାରଳା ଦାସଙ୍କ ରଚନା ମନ୍ଦିରରେ ପ୍ରବେଶ କରିବା ପରେ ପାଠକମାନେ ସାଢ଼େପାଞ୍ଚଶ ବର୍ଷ ତଳର ସଂସାରଜନ ସ୍ତରକୁ ଯିବାକୁ ହିଁ ହେବ, ଅନ୍ୟଥା ସେ ସାରଳା ଦାସଙ୍କ ଇପ୍‌ସିତ ଶ୍ରୋତା ହୋଇପାରିବେ ନାହିଁ।" ଇତ୍ୟାଦି। ସଚ୍ଚିଦାନନ୍ଦଙ୍କ ଚର୍ଚ୍ଚା ପଢ଼ିଲେ ଲାଗେ, ସେ ସଚ୍ଚିଦାନନ୍ଦ ନୁହନ୍ତି , ସ୍ୱୟଂ ସାରଳାଙ୍କ ଅସ୍ତିତ୍ୱ।

ସଚ୍ଚିଦାନନ୍ଦଙ୍କ ଗ୍ରନ୍ଥରେ ଅଠର ଗୋଟି ଅଧ୍ୟାୟ ରହିଛି। ୧୮ ପର୍ବ ବିଶିଷ୍ଟ ମହାଭାରତ ପରି। ଚୁମ୍ବକରେ ତାଙ୍କ ନିଷ୍କର୍ଷ ଏହିପରି।

କ. ସାରଳା ଦାସଙ୍କ ପିତୃମାତୃଦତ୍ତ ନାମ ସିଦ୍ଧେଶ୍ୱର ଦାସ। ମହାଭାରତ ରଚନା ପୂର୍ବରୁ ସେ ଆପଣାକୁ ସାରୋଳା ଦାସ ; ସାରଳାଚଣ୍ଡିଦାସ ନାମରେ ପରିଚିତ କରାଇଛନ୍ତି। ସିଦ୍ଧେଶ୍ୱର ନାମ ଭଣିତା ଥାଇ ତାଙ୍କ ପ୍ରଥମ ରଚନା *ବିଚିତ୍ରରାମାୟଣ* (ମିଶ୍ର ସଚ୍ଚିଦାନନ୍ଦ: ୨୦୦୬, ପୃ. ୩)

ଖ. କବିଙ୍କ ଜନ୍ମସ୍ଥାନ ଜଗତସିଂହପୁର ଜିଲ୍ଲା ଅନ୍ତର୍ଗତ ତିର୍ତୋଲ ଥାନାଭୂକ୍ତ ଝଙ୍କଡ଼ ପ୍ରଗଣା ନୁହେଁ, ଏହା କନକାବତୀପାଟଣା ପାଖ ସାରୋଳା ଗାଁ, ଚନ୍ଦ୍ରଭାଗା ନଈ କୂଳରେ ଅବସ୍ଥିତ। ସ୍ଥାନଟି କୋଣାର୍କ କ୍ଷେତ୍ର ପାଖାପାଖି। ବୃଦ୍ଧମାତା ନଈ ବି ଚନ୍ଦ୍ରଭାଗା ପାଖରେ । ଏହି ଗାଁ ଉତ୍ତରାଷ୍ଟ୍ରମଣ୍ଡଳ ଅନ୍ତର୍ଗତ। ଅର୍ଥାତ୍ ଆଧୁନିକ କେନ୍ଦ୍ରାପଡ଼ା, ଯାଜପୁର ଓ ପୁରୀ ଅଞ୍ଚଳ। ଗାଁଟି କୋଣାର୍କ ଯିବା ରାସ୍ତାରେ ପଡ଼େ, ଆଧୁନିକ ଶାରୋଡ଼ା। (ମିଶ୍ର ସଚ୍ଚିଦାନନ୍ଦ: ୨୦୦୬, ପୃ. ୩୩)

ଗ. ସାରଳା ସୂର୍ଯ୍ୟବଂଶୀ କପିଳେନ୍ଦ୍ରଦେବଙ୍କ ସମକାଳୀନ। ପ୍ରଥମ ରଚନା ସିଦ୍ଧେଶ୍ୱର ଦାସ ନାମ ଭଣିତା ଥାଇଁ *ବିଚିତ୍ରରାମାୟଣ।* ଯୁବକାବସ୍ଥାରେ, ମହାଭାରତର ଆରମ୍ଭ ଓ

ଶେଷ ପୌଢ଼ାବସ୍ଥାରେ। ପରିଣତ ବୟସର ରଚନା ଚଣ୍ଡୀପୁରାଣ, ଗଜପତି ପୁରୁଷୋତ୍ତମ ଦେବଙ୍କ ଶାସନକାଳରେ। ଗ୍ରନ୍ଥଗୁଡ଼ିକର ରଚନା କାଳ ପ୍ରାୟ ୧୪୪୦ ରୁ ୧୪୮୦ ମସିହା।

ଘ. ସାରଳା ଦାସ ଆଦିକବି ଓ ମହାଭାରତ ଏକ ମୌଳିକ ପୁରାଣ।

ଙ. ସାରଳା ମୁନି ଜାତିର ବ୍ୟକ୍ତି ନୁହନ୍ତି, ମୁନିଅଂଶ, କବିତ୍ୱ ଶକ୍ତିର ଅଧିକାରୀ। ସେ ଶୂଦ୍ର ଗୋଷ୍ଠୀଭୁକ୍ତ ବିଭିନ୍ନ ଜାତି ମଧ୍ୟରେ କୌଣସି ଏକ ଜାତିର , କୃଷି ତାଙ୍କର କୁଳବୃତ୍ତି। ସେ ସଂସାରଜନହିତେ କାବ୍ୟ ରଚନା କରୁଥିଲେ। ଓଡ଼ିଶାରେ ବର୍ଣ୍ଣବିଭାଗ ସୃଷ୍ଟି ହୋଇନଥିବାରୁ , ବ୍ରାହ୍ମଣ ବ୍ୟତୀତ ଅନ୍ୟ ସମସ୍ତେ ଶୂଦ୍ର।

ଚ. ସାରଳାଙ୍କ ରଚନା ଶୈଳୀକୁ ଦାଣ୍ଡୀବୃତ୍ତ ଆଖ୍ୟାଦେବା ଅନୁପଯୁକ୍ତ, ଅସମାକ୍ଷର ଅସମମାତ୍ରିକ ପଦ୍ୟ ରଚନାର ନାମ ପ୍ରାଚୀନ ସଂଗୀତ ଗ୍ରନ୍ଥରେ ଦାଣ୍ଡୀ କୁହାଯାଇନାହିଁ। ଗୋବିନ୍ଦ ରଥ ରାମାୟଣର ନାମକରଣରେ ପ୍ରଥମେ ଦାଣ୍ଡୀ ଶବ୍ଦ ପ୍ରୟୋଗ କରିଛନ୍ତି। ଦଣ୍ଡେ ମାତ୍ର ବିଳମ୍ବ ନକରି ଅବିରାମଦ୍ୱାରା ଏକ ଦାଣ୍ଡରେ ଲେଖା - ଗାନ ଚାଲିଥାଏ। ମାତ୍ର ଏହା କଣ ସମ୍ଭବ ? ସୁରେନ୍ଦ୍ର ମହାନ୍ତି, ଏହି ରଚନା ଦାଣ୍ଡର ଲୋକଙ୍କପାଇଁ ଲେଖା ଯାଉଥିବାରୁ ରଚନା ଦାଣ୍ଡୀ ହୋଇଥିବ ବୋଲି ଅନୁମାନ କରିଛନ୍ତି। ମାୟାଧର ମାନସିଂହ ଆଉ ପାଦେ ଆଗେଇ ଯାଇ କହିଛନ୍ତି ' ଦୁଇଶାଳା ଘରମାନଙ୍କ ମଧ୍ୟରେ ଥିବା ଫାଙ୍କା ଜାଗାକୁ ଓଡ଼ିଆରେ ଦାଣ୍ଡ କୁହାଯାଏ। ଦାଣ୍ଡ ସାଧାରଣତଃ ଲମ୍ବା । ଦାଣ୍ଡୀବୃତ୍ତର ତାତ୍ପର୍ଯ୍ୟ ସମ୍ଭବତଃ ଏହି ଦାଣ୍ଡ ରୂପକରୁ ଆସିଅଛି' ଯେଉଁଠି ଲକ୍ଷ୍ୟ ସ୍ୱଚ୍ଛନ୍ଦ ବିହାର କରିପାରେ। (ମାନସିଂହ: ୧୯୬୭, ପୃ. ୮୯) ବାନାମ୍ବର ଆଚାର୍ଯ୍ୟ ଦଣ୍ଡା ବା ବାଡ଼ି ଖେଳରୁ ଦାଣ୍ଡୀର ପରିକଳ୍ପନା ବୋଲି କହିଛନ୍ତି। ବଂଶୀଧର ମହାନ୍ତି, ଏହା ସଂସ୍କୃତ ଦଣ୍ଡକବୃତ୍ତରୁ ଜାତ ଓ *ପ୍ରାକୃତପିଙ୍ଗଳ*ରେ ଏହି ବୃତ୍ତର ସୂଚନା ରହିଥିବା କଥା ପ୍ରମାଣ କରିଛନ୍ତି। ଏହି ବୃତ୍ତର ନାମ ଦାଣ୍ଡୀ ନୁହେଁ, ଦିଣ୍ଡୀ ; ଏହା ଚାରିପାଦ ବିଶିଷ୍ଟ ଓ ପାଦର ମାତ୍ରା ସଂଖ୍ୟା ୧୯। ପ୍ରାକୃତ ଓ ଅପଭ୍ରଂଶ ବୃତ୍ତ ସହିତ ଏହାର କିଛି ସମ୍ପର୍କ ନାହିଁ। ତେଣୁ ଏହାକୁ ଦାଣ୍ଡୀବୃତ୍ତ ପରିବର୍ତ୍ତେ ଦାଣ୍ଡୀ ଶୈଳୀ କହିବାକୁ ହେବ।

ସଚ୍ଚିଦାନନ୍ଦ ଦାଣ୍ଡୀଶୈଳୀଙ୍କୁ ଶିବ (ଦାଣ୍ଡୀ)ଙ୍କ ସହିତ ଯୋଡ଼ିଛନ୍ତି ଏବଂ ସ୍ପଷ୍ଟ କରିଦେଇଛନ୍ତି ଯେ, ଦାଣ୍ଡୀଶୈଳୀରେ ରଚିତ ପଦ୍ୟରେ ଗୋଟିଏ ଅଭିବ୍ୟକ୍ତି ଗୋଟିଏ ପଦରେ (କିମ୍ବା ତାହାର ଗୋଟିଏ ଚରଣରେ) ବ୍ୟକ୍ତ ହୁଏ। ଆଧୁନିକ ଗଦ୍ୟର ବାକ୍ୟପରି ଦାଣ୍ଡୀର ପଦ। x x ମୁଖ୍ୟତଃ ଏହି ନିୟମକୁ ଧରିବାକୁ ପ୍ରକାଶିତବ୍ୟ ଭାବର ଆବଶ୍ୟକତାର ଅନୁରୋଧରେ ଚରଣର ଦୈର୍ଘ୍ୟରେ ତାରତମ୍ୟ ରହିଥିଲା ଓ କ୍ୱଚିତ ତିନିଚରଣରେ ଗୋଟିଏ ପଦ ହେଉଥିଲା। x x ମିତ୍ରାକ୍ଷର ନିୟମ ପାଳନ କରୁଥବା ଗଦ୍ୟ ଓଡ଼ିଆ ସାହିତ୍ୟରେ ଊନବିଂଶ ଶତାବ୍ଦୀ ପର୍ଯ୍ୟନ୍ତ ଚଳିଆସୁଥିଲା। x x ସାରଳା ଦାସ ତାଙ୍କ ପୁରାଣଗୁଡ଼ିକର ପ୍ରଚାର ପାଇଁ ଉପଯୋଗୀ ହେବ ବୋଲି ଦାଣ୍ଡୀ ଶୈଳୀଟିକୁ ନିଜେ ଗଢ଼ିଥିବା ଅନୁମାନ କରାଯାଇପାରେ। ସେ

ଥିଲେ ଗ୍ରାମ୍ୟ ସମାଜର ଶୂଦ୍ର କୃଷକ। x x ଯେଉଁମାନେ ପ୍ରାଚୀନ ଢ଼ଙ୍ଗର ଗଦ୍ୟପାଠ ଶୁଣିଥିବେ, ସେମାନେ ଗଦ୍ୟ ମଧ୍ୟ କିପରି ସ୍ୱରଲହର ଦେଇ ଗାନ କରାଯାଇପାରେ, ତାହା ଜାଣିଥିବେ। x x ଦାଣ୍ଡୀ ଅନ୍ୟ କୌଣସି ରଚନା ଶୈଳୀର ଜନକ ନହେଲେ ହେଁ ସବୁର ଅଗ୍ରଜ। x x ଦାଣ୍ଡୀ ଓଡ଼ିଆର ନିଜସ୍ୱ,ସ୍ୱକୀୟ। ତେଣୁ ଦାଣ୍ଡୀରେ ରଚିତ ମୌଳିକ ଓଡ଼ିଆ ପୁରାଣ ଓ ସଂସ୍କୃତରୁ ଭାଷାନ୍ତରିତ ଓଡ଼ିଆ ପୁରାଣ ମଧ୍ୟରେ ବିରୋଧ ସ୍ୱାଭାବିକ।

ଛ. ସିଦ୍ଧେଶ୍ୱର ଦାସଙ୍କ ନାମରେ ଭଣିତ *ବିଚିତ୍ର ରାମାୟଣ* ସାରଳାଙ୍କ ପ୍ରଥମ ଓ ଯୁବକ ବୟସର ରଚନା। ଏହାର ଭାଷା ମହାଭାରତର ଭାଷା ଠାରୁ ପ୍ରାଚୀନ। ରଚନା ରୀତି ବିଚିତ୍ର। ସ୍ତୁତି କଥନ ରୀତି ଓ ଦାଣ୍ଡୀଶୈଳୀ। ଗ୍ରନ୍ଥର ପାଞ୍ଚ ଛ ଗୋଟି ଭାଷାନ୍ତର ତେଲୁଗୁ ଭାଷାରେ ରହିଛି। ପୁଣି କବିଙ୍କୁ *ମହାଭାରତ* ପୂର୍ଣ୍ଣ କରିବା ପାଇଁ ଯୌବନରୁ ବାର୍ଦ୍ଧକ୍ୟ ପର୍ଯ୍ୟନ୍ତ ଦୀର୍ଘକାଳ ବ୍ୟୟ କରିବାକୁ ପଡ଼ିଛି। ଏହାର କାରଣ ସମ୍ପର୍କରେ ସଚ୍ଚିଦାନନ୍ଦଙ୍କ ମନ୍ତବ୍ୟ , ‘ ଭାରତର ଆଦ୍ୟଭାଗ ଓ ପ୍ରାନ୍ତଭାଗ ମଧ୍ୟରେ ଅମେଳର ମାତ୍ରା ଆଧିକ ଓ ଆଧିକ୍ୟର କାରଣ, କବିଙ୍କର ବୟସର ବ୍ୟବଧାନ। ଯୌବନରେ ଯାହା ସେ କହିଥିଲେ, ବାର୍ଦ୍ଧକ୍ୟରେ ତାହାକୁ ଅବିକଳ ସ୍ମରଣ କରିହେଲା ନାହିଁ।’ ଏବଂ, କବିଙ୍କ ନାମରେ ଭଣିତ ଓ ମୁଦ୍ରିତ *ବିଲଙ୍କାରାମାୟଣ* କୌଣସି ଛଳ- ସାରଳାଙ୍କ ସର୍ଜନା।

ଉପର୍ଯ୍ୟୁକ୍ତ ବିଚାର ବ୍ୟତୀତ ସଚ୍ଚିଦାନନ୍ଦ ସାରଳାଙ୍କର ଭାଷାବୋଧ, ଚରିତ୍ରଚିତ୍ରଣଗତ ବିଶେଷତା, ସମାଜନିଷ୍ଠ ମାନସିକତା ଓ କଥକତା ଆଦି ନାନା ପ୍ରସଙ୍ଗରେ ନିଜର ମନ୍ତବ୍ୟ ଦେଇଛନ୍ତି। ସ୍ଥଳ ବିଶେଷରେ, ଅନ୍ୟ ଗବେଷକମାନଙ୍କ ପ୍ରତି ବେଶ ଆକ୍ରମଣାତ୍ମକ ହୋଇଛନ୍ତି। ଏହାର ପ୍ରଧାନ କାରଣ, କବିଙ୍କ ସକଳ ରଚନାକୁ ‘ଅକ୍ଷରମୂଳିଆ’ ପଢ଼ିଛନ୍ତି। ଏହି ପଠନ, ଗ୍ରନ୍ଥ ଅବବୋଧ ଶୂନ୍ୟତା ପରିପୂରଣରେ ସହାୟକ ହୋଇଛି। ଫଳତଃ ତାଙ୍କ ବିଶ୍ଳେଷଣ ହୋଇଛି ପଲ୍ଲବଗ୍ରାହୀତାମୁକ୍ତ ଓ ଅନ୍ତର୍ଭେଦୀ। ଆପେ *ବିଚିତ୍ରରାମାୟଣ* ଗ୍ରନ୍ଥ ମଧ୍ୟ ସମ୍ପାଦନା କରିଛନ୍ତି। (ମିଶ୍ର , ସଚ୍ଚିଦାନନ୍ଦ : ୧୯୮୪ ) ମାତ୍ର ତାଙ୍କ ଚର୍ଚ୍ଚାର ସ୍ପଷ୍ଟ ଦୁର୍ବଳତା, ଜଣେ ପ୍ରତିଭାଙ୍କ ନନ୍ଦନବୋଧ ପ୍ରତି ଅନାସକ୍ତି।

ସାରଳା ସାହିତ୍ୟଚର୍ଚ୍ଚା କ୍ଷେତ୍ରରେ ଅନ୍ୟତମ ସ୍ମରଣୀୟ ବ୍ୟକ୍ତିତ୍ୱ କୃଷ୍ଣଚନ୍ଦ୍ର ପାଣିଗ୍ରାହୀ। ଜଣେ ଇତିହାସବିତ୍। ସେ ଅନ୍ୟ ଭାରତୀୟ ଐତିହାସିକମାନଙ୍କ ପରି ବିଶ୍ୱାସ କରିଛନ୍ତି -- ଏକ ଜାତିର ଇତିହାସ ରଚନାରେ ମହାଗ୍ରନ୍ଥ , ଧର୍ମଶାସ୍ତ୍ର, ସ୍ମୃତିଶାସ୍ତ୍ର, ଦର୍ଶନଶାସ୍ତ୍ର ଏକ ଏକ ଗୁରୁତ୍ୱପୂର୍ଣ୍ଣ ଉପାଦାନ। କାରଣ କୌଣସି ଅକ୍ଷରକର୍ମର ଭୂମି ତୁଚ୍ଛା କଳ୍ପନା ବା ଅତିକଳ୍ପନା ନୁହେଁ, କିମ୍ବା, ଏହାର ସୃଜନ ଆଭିମୁଖ୍ୟ କେବଳ ପାଠକମାନଙ୍କୁ ଆନନ୍ଦ ଦାନ, ଚିତ୍ତ-ପ୍ରସାଦନ, ଚେତନା ଉନ୍ମୀଳନ ଓ ସମାଜଶୋଧନ ମଧ୍ୟ ନୁହେଁ -- ରାଜନୀତିକ, ସାମାଜିକ ଓ ସାଂସ୍କୃତିକ ଇତିହାସର ଉଦ୍‌ଭାସନ। କୃଷ୍ଣଚନ୍ଦ୍ର ଉପର୍ଯ୍ୟୁକ୍ତ ଭାବାଦର୍ଶର ଯାତ୍ରୀ ହୋଇଛନ୍ତି। ମହାଭାରତ ବର୍ଣ୍ଣିତ ସ୍ଥାନ ଓ ବ୍ୟକ୍ତିଙ୍କ ନାମ, ଘଟଣା ଏବଂ ଓଡ଼ିଶା ନାମକ ରାଜନୀତିକ, ଭୌଗୋଳିକ ଆୟତନର ବିଭିନ୍ନ ସ୍ଥାନ ଓ କ୍ଷମତା-ନିୟନ୍ତ୍ରକ ( ରାଜା, ମହାରାଜା, ମନ୍ତ୍ରୀ,

ପଣ୍ଡିତ; ନଦୀ, ପର୍ବତ ଇତ୍ୟାଦି) ମାନଙ୍କ ନାମ ସାଦୃଶ୍ୟକୁ ଭିତ୍ତି କରି ସ୍ୱୟଂ କବି-ଜୀବନୀ ଓ ଜାତି-ଜୀବନୀ ନିର୍ମାଣ କରିଛନ୍ତି। ଇତିହାସ ରଚନାର ଏହି ପଦ୍ଧତିକୁ ଅବଶ୍ୟ ପ୍ରଶ୍ନ କରାଯାଇଛି, ଅବୈଜ୍ଞାନିକ ମଧ୍ୟ କୁହାଯାଇଛି, ମାତ୍ର ପୂର୍ଣ୍ଣ ଅସ୍ୱୀକାର କରାଯାଇନାହିଁ। ଏହା ଏକ ଭିନ୍ନ ପ୍ରସଙ୍ଗ। ମାତ୍ର ଯେ କୌଣସି ଜନସମୁଦାୟର ରାଜନୀତିକ, ସାମାଜିକ ଓ ସାଂସ୍କୃତିକ ଅନୁଭବର ସୂକ୍ଷ୍ମ ଓ କଳାତ୍ମକ ସଂରଚନା ଯେ ସାହିତ୍ୟ ଏବଂ ଏହି ସଂରଚନାର ଅଣୁବୀକ୍ଷଣାତ୍ମକ ଅନୁଶୀଳନ ମାଧ୍ୟମରେ ଇତିହାସ - ବାସ୍ତବତାକୁ ଇନ୍ଦ୍ରିୟଗ୍ରହ୍ୟ କରାଯାଇପାରିବ, ଏହି ବିଚାର ଭିତ୍ତିହୀନ ନୁହେଁ। ସାହିତ୍ୟ ଓ ଇତିହାସ ଶୂନ୍ୟଫଳ ନୁହନ୍ତି। ସେଗୁଡ଼ିକ ବ୍ୟକ୍ତି-ଜୀବନ ଓ ବ୍ୟକ୍ତି-ଚେତନାଭୂମି ସମୁଦ୍‌ଗତ।

ମାତ୍ର ଏହା ଆଦୌ ଏକ ସହଜ ଓ ସରଳ କର୍ମ ନୁହେଁ। ଏଥିପାଇଁ ପ୍ରଥମ ଆବଶ୍ୟକତା ଏକ ପ୍ରକୃତ ଗ୍ରନ୍ଥର ଆବିଷ୍କାର। ମୁଦ୍ରଣଯନ୍ତ୍ର ଉଦ୍‌ଭାବନ ପୂର୍ବରୁ ଭାରତବର୍ଷରେ ଅକ୍ଷରକର୍ମ ଶ୍ରୁତିରେ ଥିଲା। ଲିପି ଉଦ୍ଭାବନ ପରେ ତାହା ତାଳପତ୍ର , ଭୂର୍ଜପତ୍ରରେ ଅଙ୍କିତ ହୋଇଛି। ମୂଳରୂପର ପ୍ରତିରୂପ (ପ୍ରତିଲିପି) ପ୍ରସ୍ତୁତ ହୋଇଛି। ଏବଂ, କାଳକ୍ରମେ ତାହା ପ୍ରତିଲିପିକାର ଅଥବା କ୍ଷମତା/ସାମନ୍ତ ଓ ଧର୍ମାଧ୍ୟକ୍ଷମାନଙ୍କ ଇଚ୍ଛାରେ ବିକୃତାୟିତ ହୋଇଛି। ଏହାକୁ ଆମେ ଅନ୍ତଃହୀନ ବିକୃତାୟନ କହିପାରିବା । ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ପ୍ରସଙ୍ଗ, ମୁଦ୍ରଣଯନ୍ତ୍ର ଉଦ୍ଭାବନ ପରେ ମଧ୍ୟ ପ୍ରାଚୀନ ଶୈଳୀର ରଚନାଗୁଡ଼ିକୁ ସର୍ବଜନବୋଧ୍ୟ କରିବା ପାଇଁ ସମକାଳିକ ଶୈଳୀରେ ରୂପାନ୍ତର କରିଦିଆଯାଇଛି। ଏହା ମୂଳର ପ୍ରକ୍ଷିପ୍ତ ରୂପର ପୁନଃପୁନଃ ବିକୃତାୟନ। ତେଣୁ ଗବେଷକମାନଙ୍କର ପ୍ରଥମ ଓ ପ୍ରଧାନ କାର୍ଯ୍ୟ, କୌଣସି ଗ୍ରନ୍ଥର ଆପତଃ ଶୁଦ୍ଧରୂପ ପ୍ରସ୍ତୁତି ଏବଂ ଦ୍ୱିତୀୟ କାର୍ଯ୍ୟ, ଏହି ଶୁଦ୍ଧରୂପ ଆଧାରରେ ଗ୍ରନ୍ଥର ରଚନା କାଳ ଓ ଏହାର ରାଜନୀତିକ, ସାମାଜିକ ଓ ସାଂସ୍କୃତିକ ହେତୁ ନିରୂପଣ। ମାତ୍ର କୃଷ୍ଣଚନ୍ଦ୍ରଙ୍କ ସାରଳା ସାହିତ୍ୟରେ ଐତିହାସିକ ଚିତ୍ର ଅଙ୍କନର ପ୍ରଧାନ ସମସ୍ୟା, ଆପଣା ବିଚାରର ପ୍ରତିଷ୍ଠାପାଇଁ ସେ ମହାଭାରତର ସୁସମ୍ପାଦିତ ରୂପ ପରିବର୍ତ୍ତେ ଲୋକପ୍ରିୟ ସଂସ୍କରଣ (ରାଧାରମଣ ପୁସ୍ତକାଳୟଦ୍ୱାରା ପ୍ରକାଶିତ) କୁ ଆକର ଗ୍ରନ୍ଥ ଭାବରେ ଗ୍ରହଣ କରିଛନ୍ତି। ଏହା ନିଶ୍ଚିତ ଭାବରେ ଜଣେ ଗବେଷକଙ୍କପାଇଁ ଅପକାର୍ଯ୍ୟ। କୃଷ୍ଣଚନ୍ଦ୍ର ଏହି ବାସ୍ତବତାକୁ ଅନୁଭବ କରିଛନ୍ତି। ମାତ୍ର ଭ୍ରମକୁ ପ୍ରତିଷ୍ଠାପାଇଁ ଘର୍ମାକ୍ତ ଓ ବୌଦ୍ଧିକ ସମରରେ ଲିପ୍ତ ରହିଛନ୍ତି। ସମକାଳରେ ଆପଣା ଅପକର୍ମପାଇଁ ତାଙ୍କୁ ଗୋପୀନାଥ ମହାନ୍ତି, ଗୌରୀକୁମାର ବ୍ରହ୍ମା, ସଚ୍ଚିଦାନନ୍ଦ ମିଶ୍ର ଓ ଗଗନେନ୍ଦ୍ରନାଥ ଦାସଙ୍କ ଦ୍ୱାରା ସମାଲୋଚିତ ହେବାକୁ ପଡ଼ିଛି। ଅଧିକ ଆଶ୍ଚର୍ଯ୍ୟର କଥା, ନିଜର ଭ୍ରମକୁ ଅନୁଭବ କରିଥିଲେ ସୁଦ୍ଧା ଜୀବଦ୍ଦଶାରେ ଆପଣାକୁ ଶୋଧନ କରିବା ଲାଗି ଧାପେ ବି ଉଦ୍ୟମ କରିନାହାନ୍ତି। ଫଳତଃ, *ସାରଳା ମହାଭାରତର ଐତିହାସିକ ଚିତ୍ର* ଓଡ଼ିଶା ଇତିହାସ ନିର୍ମାଣ ଉଦ୍ୟମରେ ଏକ ବିଭଙ୍ଗ ଦର୍ପଣରେ ରୂପାନ୍ତରିତ ହୋଇଯାଇଛି।

ସାରଳା ସାହିତ୍ୟ ଚର୍ଚ୍ଚାର ଏବେ ଗୁରୁତ୍ୱପୂର୍ଣ୍ଣ ପ୍ରସଙ୍ଗକୁ ଆସିବା। ତାହା କବିଙ୍କ ରଚନାବଳୀର ଶୁଦ୍ଧରୂପ ନିର୍ମାଣ। ଏହାକୁ 'ମୂଳରୂପ' ମଧ୍ୟ କୁହାଯାଇପାରିବ। ଆମେ ଜାଣୁ, କୌଣସି ପ୍ରାଚୀନ ସର୍ଜନ-କର୍ମର ମୂଳରୂପ-ନିର୍ମାଣ ପୂର୍ଣ୍ଣତଃ ଅସମ୍ଭବ। ମାତ୍ର ମୂଳର ପ୍ରକ୍ଷିପ୍ତାୟନ ଭିତରୁ ଏକ ସମ୍ଭାବ୍ୟ ଶୁଦ୍ଧରୂପ ପରିକଳ୍ପନା କରାଯାଇପାରେ। ଏହି ରୂପ ନିର୍ମାଣର ପ୍ରଧାନ ଉଦ୍ଦେଶ୍ୟ, ରୂପକୁ ଭୂମିକରି ଗ୍ରନ୍ଥର ରଚନା କାଳ ଏବଂ କାଳ ଆଧାରରେ କୌଣସି ଜନସମୁଦାୟର ରାଜନୀତି, ସଂସ୍କୃତି ଓ ସମାଜ ବ୍ୟବସ୍ଥାର ସୂକ୍ଷ୍ମ ଚିତ୍ର ଅଙ୍କନ। ଆବଶ୍ୟକତାର ଅନୁରୋଧରେ ଆମ ବିଦ୍ୱାନମାନେ କବିଙ୍କ ଦାଣ୍ଡୀଶୈଳୀର ରଚନାକୁ ଚଉଦଅକ୍ଷରିରେ ରୂପାନ୍ତର କରିଦେଇଛନ୍ତି। ଏହି ମାନସିକତା ମହାଭାରତସ୍ଥ ମୂଳ ଶବ୍ଦଗୁଡ଼ିକର ତାତ୍କାଳିକୀକରଣର କାରଣ। ଏବଂ, ଯାହା ଅଧିକ ବିପଦଜନ, ତାହା ରୁଚି ଓ ଭାବାଦର୍ଶ ଆଧାରରେ କବି-କଳ୍ପିତ କାହାଣୀ ଓ ଚରିତ୍ର-ନିର୍ମାଣ ମାନସିକତାର ରୂପାନ୍ତର ଓ ବିଲୋପନ। ପୁରାଣ ପ୍ରକାଶନ କମ୍ପାନୀ ପ୍ରକାଶିତ ଏହି ବିଚିତ୍ର ରୂପାନ୍ତରଣକୁ ପ୍ରଥମେ ଶ୍ୟାମସୁନ୍ଦର ରାଜଗୁରୁ ଓ ପରବର୍ତ୍ତିକାଳରେ ପଣ୍ଡିତ ଗୋପୀନାଥ ନନ୍ଦଶର୍ମ୍ମା , ମୃତ୍ୟୁଞ୍ଜୟ ରଥ, ବିନାୟକ ମିଶ୍ର (ମିଶ୍ର, ବିନାୟକ : ୧୯୨୭, ଓଡ଼ିଆ ସାହିତ୍ୟର ଇତିହାସ), ସୂର୍ଯ୍ୟନାରାୟଣ ଦାସ, (ଦାସ, ସୂର୍ଯ୍ୟନାରାୟଣ : ୧୯୬୪, ଓଡ଼ିଆ ସାହିତ୍ୟର ଇତିହାସ), ନୀଳକଣ୍ଠ ଦାସ, (ଦାସ, ନୀଳକଣ୍ଠ : ୧୯୪୭, ଓଡ଼ିଆ ସାହିତ୍ୟର କ୍ରମପରିଣାମ) ଆଦୌ ଗ୍ରହଣ କରିପାରିନାହାନ୍ତି। ଆର୍ତ୍ତବଲ୍ଲଭ ମହାନ୍ତି ଆପଣାର ତିନିଗୋଟି ରଚନା, **ସଭାପତି ଅଭିଭାଷଣ** (୧୯୩୬, ଉତ୍କଳ ସାହିତ୍ୟ ସମାଜର ବାର୍ଷିକ ଅଧିବେଶନରେ ପ୍ରଦତ୍ତ ଓ ଉତ୍କଳ ସାହିତ୍ୟରେ ପ୍ରକାଶିତ), ଓଡ଼ିଆ ସାହିତ୍ୟରେ ବିକାଶଧାରା : **ପୂର୍ବ ଓ ମଧ୍ୟକାଳୀନ** (୧୯୫୮, ରାଷ୍ଟ୍ରଭାଷା ସୁବର୍ଣ୍ଣଜୟନ୍ତୀ ବିଶେଷାଙ୍କ), **ସାରଳା ଦାସ** (୧୯୫୪, ସାରଳା ସ୍ମରଣିକା)ରେ କ୍ଷୋଭ ପ୍ରକାଶ କରିଛନ୍ତି। ସେଥିପାଇଁ ସେ ଓଡ଼ିଆମାନଙ୍କୁ କାପୁରଷ ମଧ କହିଛନ୍ତି। ମହାଭାରତର ଶୁଦ୍ଧରୂପ ପ୍ରକାଶନପାଇଁ ଉଦ୍ୟମ ହୋଇଛି। ଏହା ଆପାତତଃ ଦୁରୂହ କାର୍ଯ୍ୟ। ସଂପାଦନ ପାଇଁ ସରକାରଙ୍କ ଶ୍ରଦ୍ଧାହାତ ତାଙ୍କ ପାଖକୁ ଲମ୍ବି ଆସିଛି। ସଂପାଦନା କାର୍ଯ୍ୟ ୧୯୫୯ ମସିହାରେ ଆରମ୍ଭ ହୋଇଛି। ପାଖରେ ୨୧ ଖଣ୍ଡ ପୋଥି ଓ ୧୧ ଜଣ ସହଯୋଗୀ। ଏକ ସମୟରେ ସଂପାଦନା ଓ ମୁଦ୍ରଣ କାର୍ଯ୍ୟ ଚାଲିଛି। ସ୍ୱର୍ଗାରୋହଣ ପର୍ବର ସଂପାଦନା ପରେପରେ ଆର୍ତ୍ତବଲ୍ଲଭ ସ୍ୱର୍ଗବାସୀ ହୋଇଛନ୍ତି। ଏହା ୧୯୬୩ ମସିହାର ଘଟଣା। ଗ୍ରନ୍ଥଟି ଓଡ଼ିଶା ସରକାରଙ୍କ ସଂସ୍କୃତି ବିଭାଗଦ୍ୱାରା ପ୍ରକାଶିତ ହୋଇଛି ୧୯୬୪ (?) ମସିହାରେ। ଜଣାପଡ଼ିଯାଇଛି ଯେ, ଆର୍ତ୍ତବଲ୍ଲଭ ସତେଯେପରି ଏକ ଜାତୀୟ କାର୍ଯ୍ୟ ସଂପାଦନ ପାଇଁ ଅନୁପ୍ରେରିତ ଦିବ୍ୟଦୂତ।

ମହାଭାରତର ସଂପାଦିତ ରୂପ ଅବଶ୍ୟ ପ୍ରକାଶ ପାଇଛି। ମାତ୍ର ପ୍ରକାଶନ ପରବର୍ତ୍ତିକାଳୀନ ଦୃଶ୍ୟପଟ୍ଟ ବେଶ ଉପଭୋଗ୍ୟ। ପ୍ରଶ୍ନ ଉଠିଛି -- ଏହା ବାସ୍ତବତଃ ଏକ ସୁସଂପାଦିତ ଗ୍ରନ୍ଥ କି? - ଯଦି ନୁହେ, ଏହାକୁ ଆମେ ସାରଳାଙ୍କ କୃତି ବୋଲି ଗ୍ରହଣ କରିବୁ କାହିକି? ସଂପାଦନାଗତ ତ୍ରୁଟି ସଂପର୍କରେ ଗବେଷକମାନେ ଆମକୁ ବିଶଦ ଅବହିତ କରିଛନ୍ତି।

ସେମାନଙ୍କ ମଧ୍ୟରେ ସଚ୍ଚିଦାନନ୍ଦ ମିଶ୍ର ଓ କୃଷ୍ଣଚରଣ ସାହୁ ଅଗ୍ରଗଣ୍ୟ । (ମିଶ୍ର, ସଚ୍ଚିଦାନନ୍ଦ ୨୦୦୬ ପୃ - ୨୬୪-୩୦୭ ଏବଂ ସାହୁ କୃଷ୍ଣଚରଣ) ମାତ୍ର ଆର୍ତ୍ତବଲ୍ଲଭ ଓ ଅନ୍ୟମାନଙ୍କ ମହାଭାରତ ସଂପର୍କରେ ଅଳ୍ପରେ ଏତିକି କୁହାଯାଇପାରିବ, ଅନ୍ୟମାନଙ୍କ ମହାଭାରତରେ ସାରଳାଙ୍କ ଆତ୍ମା ଅବର୍ତ୍ତମାନ, ଏବଂ, ଆର୍ତ୍ତବଲ୍ଲଭଙ୍କ ମହାଭାରତରେ ତାହା ବିକୃତ ଓ ଆହତ। ତେଣୁ ପ୍ରାୟ ପ୍ରତ୍ୟେକ ଗବେଷକ ଆର୍ତ୍ତବଲ୍ଲଭଙ୍କ ସାରଳାଙ୍କୁ ନିଜର ମଣିବାକୁ ବାଧ୍ୟ ହୋଇଛନ୍ତି। ଅଧିକ ଉଦ୍‌ବେଗର ବିଷୟ, ସାରଳାଙ୍କ ନାମରେ ପ୍ରତିଷ୍ଠିତ ଏକ ସାହିତ୍ୟ ସଂସଦ ଆର୍ତ୍ତବଲ୍ଲଭଙ୍କ ଆହତ ମହାଭାରତକୁ ଅତ୍ୟନ୍ତ ଅମାନୁଷିକ ଭାବରେ ପୁନଃମୁଦ୍ରିତ କରିଛନ୍ତି ୨୦୦୭ ମସିହାରେ। ଏହାର କାରଣ ଅସ୍ପଷ୍ଟ। ମାତ୍ର ସ୍ପଷ୍ଟ ଏତିକି ଯେ, ଆମେ ସାରଳା ସେବକମାନେ ତାଙ୍କ ଆତ୍ମାକୁ ବୁଝିବା ପାଇଁ ତଥାପି ଅସମର୍ଥ। ଅଯୋଗ୍ୟ ଉତ୍ତରାଧିକାରୀମାନଙ୍କର ଏହା ଅତିଲାଜୁକତା ଅଥବା ଅତି ଅଲାଜୁକତାର ବିଲକ୍ଷଣ। ଶ୍ରୀମତୀ ସ୍ନେହଲତା ପଟ୍ଟନାୟକ ଅବଶ୍ୟ କବିଙ୍କ **ବିଲଙ୍କା ରାମାୟଣ** ଓ କୃଷ୍ଣଚରଣ ସାହୁ **ଚଣ୍ଡିପୁରାଣ** ସଂପାଦନା କରିଛନ୍ତି। ମାତ୍ର ଏଗୁଡ଼ିକ ସଂପାଦିତ ନୁହନ୍ତି, ଖଣ୍ଡିଏ ଖଣ୍ଡିଏ ପୋଥିର ମୁଦ୍ରିତ ରୂପ। ସେହି ନ୍ୟାୟରେ ଆମେ ସାରଳାଙ୍କୁ ଜଣେ ଉପେକ୍ଷିତ ବ୍ୟକ୍ତିତ୍ୱ କହିଲେ ଅଯଥାର୍ଥ ହେବ ନାହିଁ।

ସାରଳା ଦାସଙ୍କ ସମ୍ପର୍କରେ ସଚ୍ଚିଦାନନ୍ଦ ରାଉତରାୟଙ୍କର ନିଜସ୍ୱ ମନ୍ତବ୍ୟ ରହିଛି। କବିଙ୍କ ଜନ୍ମ ଓ କୃତି ସମ୍ପର୍କରେ ତାଙ୍କ ମନ୍ତବ୍ୟ ସୁରେନ୍ଦ୍ର ଓ ମାୟାଧରଙ୍କ ସମଗୋତ୍ରୀୟ। ତାଙ୍କ ଭାଷାରେ 'ଆଦିକବି', 'ତାଙ୍କ ସାହିତ୍ୟ ସରଳତା', 'ସ୍ୱାଭାବିକତା' ଓ 'ନିରଳଙ୍କାରିତା', 'ସଂସ୍କୃତ କାବ୍ୟ କବିତାର ସଜ୍ଜୀକରଣ ତଥା ଶୈଳୀକରଣ (stylisation)ରୁ ମୁକ୍ତ'।

> ଶୈଳୀରେ ପାଉଁ ଏକ ସ୍ୱଚ୍ଛନ୍ଦ ଶ୍ରୋତମୟତା ଯାହା, ଓଡ଼ିଆ ପ୍ରାକୃତର ସ୍ୱାଭାବିକ ସ୍ତର ବିନ୍ୟାସକରି ରସଧ୍ୱନି ସହ ପାଠକ ଆଗରେ ଏକ ଏକ ନିତ୍ୟଅଭିନବତ୍ୱର ଚିତ୍ର ଖୋଲିଧରେ। ତାଙ୍କ ଶବ୍ଦଗୁଡ଼ିକ ମନେହୁଏନ୍ତି ଯେପରି ଓଡ଼ିଶାର ବଣ ଜଙ୍ଗଲ ନଈ ନାଳ ଘେରା ଅନ୍ଧକାରର ହସ, ଯାହା ଏକ ଦିଗନ୍ତରୁ ବାହାରି, ବହୁ ପଦା ଅପନ୍ତରା ଡେଇଁ ଅନ୍ୟ ଦିଗନ୍ତରେ ମଳାଇ ଯାଏ। ମଝିରେ ଛାଡ଼ିଯାଏ କେତେ ଯୁଗ ଯୁଗର ଅଲିଭା କାହାଣୀ, କେତେ ସ୍ମୃତି, ଉପକଥା ଏବଂ ଭୁଲା ଅଭୁଲା ଚଳଣିର ଡେଣାଝରା ପର ଆଉ ଛିଣ୍ଡା ଲୋମର ଅଂଶ। ଲୋକାୟତରୁ ବାହାରି ସେମାନେ ଲୋକାତୀତକୁ ଛୁଇଁବାପାଇଁ ଚାହାନ୍ତି। ଶବ୍ଦକୁ ଛାଡ଼ି ଦେଲେ ସାରଳା ଦାସଙ୍କର ଆଉ ଯାହା ରହିଲା ତାହା ହେଉଛି ଏକ ରୁଢ଼, କଠିନ ଆଖ୍ୟାନ ଭାଗ। ବାସ୍ତବ, ଅର୍ଦ୍ଧବାସ୍ତବ, ନାନା ଚିହ୍ନା ଅଚିହ୍ନା ମୁହଁର ଭିଡ଼। x x ଯେଉଁମାନେ ଆଧୁନିକ ଓଡ଼ିଆ କବିତାର ଗଦ୍ୟଧର୍ମୀ ବାକ୍‌ଛନ୍ଦକୁ ଦେଖି ନାକ ଟେକନ୍ତି ଏବଂ ପାଶ୍ଚାତ୍ୟରୁ ଆମଦାନୀ କରାଯାଇଛି ବୋଲି କୁହନ୍ତି।

ସେମାନେ ସାରଳାଦାସଙ୍କ ପ୍ରବର୍ତ୍ତିତ ଦାଣ୍ଡିବୃତ୍ତର ଐତିହ୍ୟ ସମ୍ବନ୍ଧରେ କିଛି ଜାଣନ୍ତି ନାହିଁ। (ସଚ୍ଚି ରାଉତରାୟ:୧୯୭୪: ପୃ.୨୨୯-୩୧)

ମାତ୍ର ଏକଥା ମଧ୍ୟ ସତ୍ୟ, ସାରଳା ଓଡ଼ିଶାରେ ଅନ୍ୟତମ ବହୁ ଚର୍ଚ୍ଚିତ ପ୍ରତିଭା। ବହୁ ଗବେଷକ ସାରଳାଙ୍କ ମହାଭାରତ ଓ ଅନ୍ୟାନ୍ୟ ରଚନା ସଂପର୍କରେ ମହାନିବନ୍ଧ ଓ ସ୍ୱତନ୍ତ୍ର ଗ୍ରନ୍ଥମାନ ରଚନା କରିଛନ୍ତି। ସେଗୁଡ଼ିକ ମଧ୍ୟରୁ କେତୋଟି - **ସାରଳା ସାହିତ୍ୟରେ ରାଜନୈତିକ ଚିତ୍ର, ସାରଳା ସାହିତ୍ୟରେ ସମାଜ ଚିତ୍ର, ସାରଳା ମହାଭାରତର ଭାଷାତାତ୍ତ୍ୱିକ ଅନୁଶୀଳନ, ସାରଳା ସାହିତ୍ୟରେ ନାରୀ, ସାରଳାଙ୍କ କଥାକାରିତା** --- ଏପରି ଅନେକ। ସାରଳାଙ୍କ ଚରିତ୍ର ସୃଷ୍ଟି ଓ କାହାଣୀ ସଂରଚନା ବୈଶିଷ୍ଟ୍ୟ ସଂପର୍କରେ ଗ୍ରନ୍ଥମାନ ମଧ୍ୟ ସଂପାଦିତ ହୋଇଛି। ଓଡ଼ିଆ ସାହିତ୍ୟର ଇତିହାସ ଚର୍ଚ୍ଚାକାରମାନେ କବିଙ୍କ ପାଇଁ ବହୁ ପୃଷ୍ଠା ଖର୍ଚ୍ଚ କରିଛନ୍ତି। ବିନାୟକ ମିଶ୍ର ଓ ସୂର୍ଯ୍ୟନାରାୟଣ ଦାସଙ୍କ ଇତିହାସରେ ସାରଳା ବ୍ୟକ୍ତିତ୍ୱର ଅବଲୋକନଗତ ସ୍ୱାତନ୍ତ୍ର୍ୟ ରହିଛି। ଚିତ୍ତରଂଜନ ଦାସ ଆପଣାର ତିନୋଟି ଗ୍ରନ୍ଥ (*ଓଡ଼ିଆ ସନ୍ଥ (ଭକ୍ତି) ସାହିତ୍ୟ*, **ଓଡ଼ିଆ ସାହିତ୍ୟର ସାଂସ୍କୃତିକ ବିକାଶଧାରା, ଓଡ଼ିଆ ସାହିତ୍ୟର ଇତିହାସ : ସାମାଜିକ ଓ ସଂାସ୍କୃତିକ**)ରେ ସାରଳା ସାହିତ୍ୟର ସମାଜତାତ୍ତ୍ୱିକ ଚର୍ଚ୍ଚା କରିଛନ୍ତି, ତାଙ୍କୁ ବିପ୍ଳବୀ ଓ ପ୍ରତିବାଦୀ କହିଛନ୍ତି। ପ୍ରତ୍ୟେକ ଆଲୋଚକ ସାରଳାଙ୍କ କୃତିଗୁଡ଼ିକ କେଉଁ କେଉଁ ବିଶେଷ ବିଭବରେ ପରିପୂର୍ଣ୍ଣ, ତତ୍‌ସଂପର୍କରେ ଅବଶ୍ୟ ଚର୍ଚ୍ଚା କରିଛନ୍ତି। ମାତ୍ର କୌଣସି ଜଣେ ବିଦ୍ୱାନ କବିଙ୍କ ସୌନ୍ଦର୍ଯ୍ୟଦୃଷ୍ଟି, ଏବଂ ତାଙ୍କ ସାହିତ୍ୟର ସମାଜତାତ୍ତ୍ୱିକ, ରାଜନୀତିକ,ଇତିହାସକୈନ୍ଦ୍ରିକ, ଭାଷାତାତ୍ତ୍ୱିକ, ଧର୍ମ ଓ ଧର୍ମାଚାରକୈନ୍ଦ୍ରିକ ଏବଂ କବିଙ୍କ କଥନତା ଓ ଚରିତ୍ର ନିର୍ମାଣର ଗୁମର ଖୋଲିଦେଇନାହାନ୍ତି। 'ର' ଏବଂ 'ରେ' ମଧ୍ୟରେ ଥିବା ଅବବୋଧଗତ ଅସ୍ୱଚ୍ଛତା ଏହାର କାରଣ। ଅଧିକ ମଜାକଥା, ସାରଳାଙ୍କ ନାଁରେ ପୀଠ ଓ ଅନୁଷ୍ଠାନମାନ ଗଢ଼ାଯାଇଛି। କବିଙ୍କ ଛବି ବି ଅଙ୍କା ଯାଇଛି। କେଉଁଠି ଦିଶୁଛନ୍ତି ହଳୁ ତ, ଆଉ କେଉଁଠି ବ୍ରାହ୍ମଣ ଆଚାର୍ଯ୍ୟ ପରି। ଜଣେ ମଣିଷର ରୂପ - କଳ୍ପନାରେ ଏତେ ବୈଶାଦୃଶ୍ୟ ବାସ୍ତବତଃ କୌତୁକାବହ। ଅଧିକ ମଜାକଥା, ବହୁ ଗବେଷକ ମୂଳଗ୍ରନ୍ଥ ନ ପଢ଼ି ଆଲୋଚନା ଗ୍ରନ୍ଥ ଆଧାରରେ ନିଜ ନିଜର ମହାମହା ନିବନ୍ଧ ଓ ଆଲୋଚନାମାନ ପ୍ରସ୍ତୁତ କରିଛନ୍ତି। ଏବଂ, ଘୋର ପରିତାପର ବିଷୟ, ଜଣେ କବିଙ୍କ ଅସଂପାଦିତ (କଳ୍ପିତ ରଚନା କୁହାଯାଇପାରିବ) ରଚନାକୁ ଆଧାର କରି ବହୁ ଗବେଷକ ତାଙ୍କ ପ୍ରମୂର୍ତ୍ତାୟନର ହିମ୍ମତ ଦେଖାଇଛନ୍ତି। ଏହିପରି ଦୁଃସାହସ କେବଳ ବୀର ଜାତିର ଭଦ୍ରମାନେ ହିଁ କରିପାରନ୍ତି।

## ଛଅ

- ଆରମ୍ଭରେ କହିଥିଲି, ଅବଲୋକନ ଏକ ଜଟିଳ ପ୍ରକ୍ରିୟା। ସମ୍ୟକ ଅବଲୋକନ ଜଟିଳତର। ପୂର୍ଣ୍ଣଅବଲୋକନ ଅସମ୍ଭବ। ଅର୍ଥାତ୍ ସକଳ ଅବଲୋକନ କେବଳ ସମ୍ଭାବନା ମାତ୍ର। ଏବେ ପ୍ରଶ୍ନ, କେଉଁ ବ୍ୟକ୍ତିଙ୍କୁ ଆମେ ସମ୍ୟକ ଅବଲୋକକାରୀ କହିପାରିବା।

ସେହିପରି ବ୍ୟକ୍ତିଙ୍କ ଅସ୍ତିତ୍ୱ କଣ ପରିକଳ୍ପନୀୟ।

ପ୍ରସ୍ତୁତ ଗ୍ରନ୍ଥକୁ ଉଦାହରଣ କରି ପ୍ରଶ୍ନଗୁଡ଼ିକର ସମ୍ଭାବ୍ୟ ସିଦ୍ଧାନ୍ତ ପାଖକୁ ଆସିବା। ସାରଳା ଦାସ ଏକ ନିର୍ଦ୍ଦିଷ୍ଟ କାଳଖଣ୍ଡର ମଣିଷ। ସେ ଅନ୍ୟ ସମକାଳୀନମାନଙ୍କ ଗହଣରେ ଜଣେ। ମାତ୍ର ସ୍ୱତନ୍ତ୍ର। ଆପଣାର ଇନ୍ଦ୍ରିୟ ଓ ଅବବୋଧ ମାଧ୍ୟମରେ ଅନୁଭୂତ ସମ୍ଭାବ୍ୟ ବାସ୍ତବତାକୁ ବ୍ୟକ୍ତ କରିବାର ସାମର୍ଥ୍ୟ ଓ ସାହସ ତାଙ୍କର ଥିଲା। ଅର୍ଥାତ୍, ସେ ହିଁ ସତ୍ୟର ସମ୍ୟକ ଅବଲୋକନକାରୀ। ତାଙ୍କ ସର୍ଜନା ହେଉଛି ଅବଲୋକନର ଅଭିବ୍ୟକ୍ତି। ସେ ଅନ୍ୟମାନଙ୍କୁ (ପାଠକ, ସ୍ରୋତା) ତାଙ୍କ ମାଧ୍ୟମରେ ବାସ୍ତବତା ଅବଲୋକନ ପ୍ରତି ଆହ୍ୱାନ ଦେଇଛନ୍ତି। ଅଭିମନ୍ତ୍ରିତ କରିଛନ୍ତି। ନିଜ ନିଜକୁ ଦେଖିବାପାଇଁ ଅନ୍ୟମାନଙ୍କୁ ଆଖି ଦେଇଛନ୍ତି। ପରବର୍ତ୍ତୀ କାଳରେ ଆମେ ନିଜନିଜ ଆଖିରେ ସାରଳାଙ୍କୁ ଦେଖିବାକୁ ଚାହିଁଛୁ। ଏବେ ଆମେ ସାରଳା-ସମାଲୋଚକ, ସାରଳା ନୋହୁ। ଏହିଠାରେ ଏକ ଗୁରତ୍ୱପୂର୍ଣ୍ଣ ପ୍ରଶ୍ନ, ସାରଳାଙ୍କୁ ଆପଣାରେ ରୂପାନ୍ତରିତ କରିଦେଇନପାରିଲେ, ତାଙ୍କର ଯଥାର୍ଥ ମୂଲ୍ୟାୟନ କ'ଣ ସମ୍ଭବ? ଆମେ ତାଙ୍କ ସଂପର୍କରେ ହଜାର କଥା କହୁଛୁ। କହୁଛୁ ସେ, ସକଳ ବୈଚିତ୍ର୍ୟରେ ପରିପୂର୍ଣ୍ଣ। ଏହାର କାରଣ - ଆମେ ସାରଳାଙ୍କୁ ତିଆରି କରିବାକୁ ଚାହୁଁଛୁ। ତିଆରିପାଇଁ ଆବଶ୍ୟକ ଉପାଦନ ଖୋଜୁଛୁ। ମାତ୍ର ସମ୍ଭବ ହୋଇଛି କି? ଫକୀରମୋହନଙ୍କ ପାଖରୁ ଆରମ୍ଭ କରି ଭବିଷ୍ୟତର ସାରଳା-ପ୍ରିୟମାନଙ୍କୁ ଏହି ପ୍ରଶ୍ନ ପଚରାଯାଇପାରିବ। ଏହା ପ୍ରଥମ ନଖରାମି।

ଆମ ଦ୍ୱିତୀୟ ନଖରାମି, ସାରଳାଙ୍କୁ ଦେଖିଛନ୍ତି ବୋଲି ଦାବି କରୁଥିବା ବ୍ୟକ୍ତିମାନେ, କେମିତି ଦେଖିଛନ୍ତି ସେମାନଙ୍କ ସଂପର୍କରେ କହୁଛୁ। ଅର୍ଥାତ୍ ସମାଲୋଚକମାନଙ୍କ ବିଚାରର ସମାଲୋଚନା। ଏ ପୁଣି କି କଥା? ଜଣେ ଅନ୍ୟଜଣଙ୍କୁ ଦେଖୁଛି, ସେ ଦ୍ୱିତୀୟ। ଏଥର ଅନ୍ୟ ଜଣେ, ଅର୍ଥାତ୍ ତୃତୀୟ କହୁଛନ୍ତି ଦ୍ୱିତୀୟର ପ୍ରଥମଙ୍କ ସଂପ୍ରର୍କିତ ଧାରଣାର କଥା। ଏଥିରୁ ଗୋଟିଏ କଥା ସ୍ପଷ୍ଟ ଯେ, ତୃତୀୟ ଜଣକ ପ୍ରଥମକୁ ଦେଖିନଥିଲେ, ଦ୍ୱିତୀୟଙ୍କର ପ୍ରଥମ ସଂକ୍ରାନ୍ତ ଧାରଣାକୁ ସେ କ'ଣ ସ୍ପଷ୍ଟ କରିଦେଇପାରିବେ? ମୁଁ ତିଆରି ଥିବା ପ୍ରଶ୍ନକୁ ଖୋଲି କହିଲେ, ଉତ୍ତର ଏହା ହେବ ଯେ, ଗୋପୀନାଥ ନନ୍ଦଶର୍ମା ସାରଳା ଦାସଙ୍କୁ କିପରି ଦେଖିଛନ୍ତି, ଏକଥା ସୁଦର୍ଶନ ଆଚାର୍ଯ୍ୟ କହିବେ। ଏବଂ, ଶେଷକୁ ମୁଁ ଏହି ବହିର ସଂପାଦକ କହିବି - ସୁଦର୍ଶନ ଆଚାର୍ଯ୍ୟ ଅଥବା ଗୋପୀନାଥ ମହାନ୍ତି ସାରଳାଙ୍କୁ କିପରି ଦେଖିଛନ୍ତି। ମୁଁ ଯେହେତୁ ଜଣେ ବ୍ୟକ୍ତି, ଅନ୍ୟ (ଅନ୍ୟମାନଙ୍କୁ) କୁ କହିଲାବେଳେ ମୋ ଅସ୍ମିତା (ନାମ, ଧନ, ବୃତ୍ତି, ପ୍ରବୃତ୍ତି, ଅଧ୍ୟୟନ ଓ କାଳ) ଓ ମାନସିକତା ସ୍ୱତଃ ଖୋଲି ଯାଇଛି। ମୁଁ କଣ ବାସ୍ତବତଃ ସହୃଦୟ ହୋଇପାରୁଛି?

ଖୋଲାଖୋଲି କହିଲେ - ଏସବୁ ବାଜେକାମ। ତଷ୍ଟୁକୁଟା ଧନ୍ଦା। ସମ୍ୟକ ଅବଲୋକନ ମାନସିକତାକୁ ମୁଁ ବାଜେକଥା କହିବି ଏବଂ ଅବଲୋକନକାରୀମାନଙ୍କ ଅବଲୋକନ - ଆଗ୍ରହ ପ୍ରତି କିପରି ବିଶେଷଣ ପ୍ରୟୋଗ କରାଯିବ, ନିର୍ଦ୍ଦିଷ୍ଟ କରାଯାଇ ପାରିବ ନାହିଁ ଅବଶ୍ୟ। ତେବେ, ବାଜେତମ କୁହାଯାଉ।

ମାତ୍ର ବାଜେତମ ହେବାର ହିଁ ମଜା। ଆନନ୍ଦ। ଓଡ଼ିଆ ସାହିତ୍ୟ ଏକାଡେମୀର ସହୃଦୟ କର୍ତ୍ତୃପକ୍ଷ (ମାନେ) ଏପରି ଏକ ଆନନ୍ଦମୟ, ମାତ୍ର ବାଜେତମ ଅନୁଭବରେ ମତେ ସିକ୍ତ କରିଥିବାରୁ ସାଧୁବାଦ ଜଣାଉଛି ଏବଂ, ଶେଷରେ ବାଦର ଉର୍ଦ୍ଧକୁ ଯିବାଲାଗି ଛିଦ୍ରାନ୍ୱେଷୀ ପାଠକମାନଙ୍କୁ ସଶ୍ରଦ୍ଧ ଅନୁରୋଧ।

**ଆକର ସୂଚୀ**


ଆଚାର୍ଯ୍ୟ, ପରମାନନ୍ଦ ।୧୯୬୪। *ଓଡ଼ିଶାର ପ୍ରତ୍ନତତ୍ତ୍ୱ ଓ ଅନ୍ୟାନ୍ୟ ପ୍ରବନ୍ଧ* - ପ୍ରଥମ ଭାଗ, ଭୁବନେଶ୍ୱର, ଓଡ଼ିଶା ସାହିତ୍ୟ ଏକାଡେମୀ।

ଚୌଧୁରୀ, କୃଷ୍ଣପ୍ରସାଦ ।୧୮୯୬। ଅଗଷ୍ଟ ୧୨, ସମ୍ବଲପୁରହିତୈଷିଣୀ।

ଦାଶ, ଗଗନେନ୍ଦ୍ର ନାଥ ।୨୦୧୩। *ବିକଳ୍ପ ଆଧୁନିକତା:ସାରଳା ମହାଭାରତର ଏକଲବ୍ୟ ଉପାଖ୍ୟାନ*, ଝଙ୍କାର ୬୫।୧,୨।

ଦାଶ, ଗଗନେନ୍ଦ୍ରନାଥ ।୨୦୦୫। *ନିର୍ବାଚିତ ପ୍ରବନ୍ଧ ସଂକଳନ*, କଟକ, ବିଦ୍ୟାପୁରୀ।

ଦାଶ, ମଧୁସୂଦନ ।୧୯୦୩। *ଓଡ଼ିଆ ଭାଷା ଓ ପ୍ରାଚୀନ ସାହିତ୍ୟ*, ଉତ୍କଳ ସାହିତ୍ୟ, ସପ୍ତମ ଭାଗ, ଷଷ୍ଠ ସଂଖ୍ୟା।

ଦାସ, ନୀଳକଣ୍ଠ ।୧୯୭୭,୧୯୪୮। *ଓଡ଼ିଆ ସାହିତ୍ୟର କ୍ରମପରିଣାମ*, କଟକ, ନିଉ ଷ୍ଟୁଡେଣ୍ଟସ ଷ୍ଟୋରସ।

ଦାସ, ସୂର୍ଯ୍ୟନାରାୟଣ ।୧୯୬୩। *ଓଡ଼ିଆ ସାହିତ୍ୟର ଇତିହାସ* - ପ୍ରଥମ ଭାଗ, କଟକ, ଗ୍ରନ୍ଥମନ୍ଦିର।

ଦେବୀ, ସରଳା ।୧୯୫୨। *ସାରଳା ମହାଭାରତରେ ନାରୀ ଚରିତ୍ର*, କଟକ, ଉତ୍କଳ ବିଶ୍ୱବିଦ୍ୟାଳୟ।

ନନ୍ଦଶର୍ମା, ଗୋପୀନାଥ ।୧୯୬୪,୧୯୮୮। *ଶ୍ରୀଭାରତଦର୍ପଣ*, କଟକ, ଓଡ଼ିଶା ସାହିତ୍ୟ ଏକାଡେମୀ।

ନାୟକ, ରାଘବାନନ୍ଦ।୧୯୯୫। *ସାରଳା ମହାଭାରତରେ ଧାର୍ମିକ ପରମ୍ପରା*, କଟକ, ଓଡ଼ିଶା ବୁକ୍ ଷ୍ଟୋର।

ପାଣିଗ୍ରାହୀ, କୃଷ୍ଣଚନ୍ଦ୍ର ।୨୦୦୩। *ସାରଳା ଦାସଙ୍କ ଘର କେଉଁଠି, ସାରଳା ମହାଭାରତର ଶୁଦ୍ଧ ସଂସ୍କରଣ*, ଅନ୍ତର୍ଭୁକ୍ତ, *କୃଷ୍ଣଚନ୍ଦ୍ର ପାଣିଗ୍ରାହୀଙ୍କ ନିର୍ବାଚିତ ପ୍ରବନ୍ଧ*, କଟକ, କିତାବ ମହଲ।

ସାରଳା ମହାଭାରତରେ ଐତିହାସିକ ଚିତ୍ର : ୧୯୭୬ କଟକ, ପ୍ରଜାତନ୍ତ୍ର ପ୍ରଚାର ସମିତି।

ବ୍ରହ୍ମା, ଗୌରୀକୁମାର ।୧୯୫୮। *ସାରଳା ସାହିତ୍ୟ ଆଲୋଚନା*, ଝଙ୍କାର, ୯ମ ବର୍ଷ, ଦ୍ୱାଦଶ ସଂଖ୍ୟା।

ମହାନ୍ତି, ଆର୍ତ୍ତବଲ୍ଲଭ ।୧୯୩୬। *ଅଭିଭାଷଣ*, ଉତ୍କଳ ସାହିତ୍ୟ, ୩୮ଭାଗ, ୧୦ମ ସଂଖ୍ୟା

।୧୯୫୪। *ସାରଳା ଦାସ*, ଅନ୍ତର୍ଭୁକ୍ତ, ସାରଳା ସ୍ମରଣିକା, କଟକ, ପ୍ରଜାତନ୍ତ୍ର ପ୍ରଚାର ସମିତି।

।୧୯୫୮। *ଓଡ଼ିଆ ସାହିତ୍ୟ : ପୂର୍ବ-ମଧ୍ୟକାଳୀନ*, ଅନ୍ତର୍ଭୁକ୍ତ, କଟକ, ରାଷ୍ଟ୍ରଭାଷା ସୁବର୍ଣ୍ଣ ଜୟନ୍ତୀ ବିଶେଷାଙ୍କ

।୧୯୬୪। *ସାରଳା ମହାଭାରତ* (ସଂ), ଭୁବନେଶ୍ୱର, ସଂସ୍କୃତି ବିଭାଗ, ଓଡ଼ିଶା ସରକାର

ମହାନ୍ତି, ଉପେନ୍ଦ୍ର (ସମ୍ପାଦନା)।୧୯୮୫। *ବିପ୍ଳବୀ କବି ସାରଳା ଦାସ*, ଟିଟିଲାଗଡ଼, ଡିଏଭି କଲେଜ।

ମହାନ୍ତି, ଗୋପୀନାଥ ।୧୯୫୫। *ସାରଳା ଦାସଙ୍କ ଘର କେଉଁଠି*, ଝଙ୍କାର : ୮ମ ବର୍ଷ, ୨ୟ ସଂଖ୍ୟା।

।୧୯୫୬। *ସାରଳା ଦାସଙ୍କ ସମୟ ଓ ସଭାପର୍ବ*, ଝଙ୍କାର, ୯ମ ବର୍ଷ : ୪ର୍ଥ,୫ମ ଓ ୬ଷ୍ଠ ସଂଖ୍ୟା।

ମହାନ୍ତି, ଧନେଶ୍ୱର ।୧୯୯୪। *ସାରଳା ମହାଭାରତର ଭାଷାତ୍ତ୍ୱିକ ଅନୁଶୀଳନ*, କଟକ, ଫ୍ରେଣ୍ଡସ ପବ୍ଲିଶର୍ସ।

ମହାନ୍ତି, ବଂଶୀଧର ।୧୯୫୭। *ଲକ୍ଷ୍ମୀନାରାୟଣୀ ବଚନିକା*, ଝଙ୍କାର, ୯ମ ବର୍ଷ, ୧ମ ସଂଖ୍ୟା।

ମହାନ୍ତି, ସୁରେନ୍ଦ୍ର ।୨୦୦୪, ୧୯୬୪। *ଓଡ଼ିଆ ସାହିତ୍ୟର ଆଦିପର୍ବ*, କଟକ, କଟକ ଷ୍ଟୁଡେଣ୍ଟସ ଷ୍ଟୋର।

ମାନସିଂହ, ମାୟାଧର ।୧୯୭୧,୧୯୫୮। *ମାଟିର ମହାକବି ସାରଳା ଦାସ*, କଟକ, ଦାସ ବ୍ରଦର୍ସ।

ମିଶ୍ର, ବିନାୟକ ।୧୯୨୭। *ଓଡ଼ିଆ ସାହିତ୍ୟର ଇତିହାସ*, କଟକ।

ମିଶ୍ର, ସଚ୍ଚିଦାନନ୍ଦ ।୨୦୦୬। *ସାରଳା ଦାସ : ଏକ ଅଧ୍ୟୟନ*, କଟକ, ଗ୍ରନ୍ଥମନ୍ଦିର।

ରଥ, ତାରିଣୀ ଚରଣ ।୧୯୧୬। *ଉତ୍କଳ ସାହିତ୍ୟର ଇତିହାସ*, ବ୍ରହ୍ମପୁର।

ରଥ, ଦୀନବନ୍ଧୁ ।୧୯୭୪। *ସାରଳା ମହାଭାରତରେ ସମାଜଚିତ୍ର*, କଟକ, ଗ୍ରନ୍ଥମନ୍ଦିର।

ରଥ, ମୃତ୍ୟୁଞ୍ଜୟ ।୧୯୧୧। *ସାରଳା ଚରିତ*, ଅନ୍ତର୍ଭୁକ୍ତ, ମୃତ୍ୟୁଞ୍ଜୟ ଗ୍ରନ୍ଥାବଳୀ, (୧୯୮୯),କଟକ, କଟକ ଷ୍ଟୁଡେଣ୍ଟସ ଷ୍ଟୋରସ।

ରାଉତରାୟ, ସଚ୍ଚି । ୧୯୭୪। ସାହିତ୍ୟରେ ମୂଲ୍ୟବୋଧ, କଟକ, ଗ୍ରନ୍ଥମନ୍ଦିର।

ରାଜଗୁରୁ, ଶ୍ୟାମସୁନ୍ଦର ।୧୯୬୪,୧୯୧୭। *ପ୍ରବନ୍ଧାବଳୀ*, ଭୁବନେଶ୍ୱର, ଓଡ଼ିଶା ସାହିତ୍ୟ

ଏକାଡେମୀ ।

ସାହୁ, କୃଷ୍ଣଚରଣ (?), *ଶୁଦ୍ଧପାଠ ନିର୍ଣ୍ଣୟ ସମସ୍ୟା : ପ୍ରାମାଣିକ ସାରଳା ମହାଭାରତ*, ଅନ୍ତର୍ଭୁକ୍ତ, *କୃଷ୍ଣଚରଣ ରଚନା ସମ୍ଭାର* (୫ମ ଭାଗ), ଭୁବନେଶ୍ୱର ।

ସେନାପତି, ଫକୀରମୋହନ ।୧୮୮୫ । *ମୂଳ ସଂସ୍କୃତ ମହାଭାରତର ମୂଳ ପଦ୍ୟାନୁବାଦ*, ବାଲେଶ୍ୱର ସମ୍ବାଦବାହିକା, ତା-୨୦ ନଭେମ୍ବର ।

ସିଂହ, ଜଗବନ୍ଧୁ ।୧୯୬୪, ଦ୍ୱିତୀୟ ସଂ । *ପ୍ରାଚୀନ ଉତ୍କଳ*, ଭୁବନେଶ୍ୱର, ଓଡ଼ିଶା ସାହିତ୍ୟ ଏକାଡେମୀ ।

ସ୍ୱାଇଁ, ପ୍ରଭାକର ।୧୯୮୭ । *ସାରୋଳ କଥା ସରିତ* (ସଂ), ସାରଳା ସାହିତ୍ୟ ସଂସଦ ।

ସିଂହ, ଜଗବନ୍ଧୁ ।୧୯୬୪ । *ପ୍ରାଚୀନ ଉତ୍କଳ*, ଭୁବନେଶ୍ୱର, ଓଡ଼ିଶା ସାହିତ୍ୟ ଏକାଡେମୀ ।

ହରିଚନ୍ଦନ, ନୀଳାଦ୍ରିଭୂଷଣ (ସଂକଳକ) ।୨୦୦୮ । *ସାରଳା ଦାସ ସଂଚୟନ*, ନୂଆଦିଲ୍ଲୀ, ସାହିତ୍ୟ ଏକାଡେମୀ ।

Beams, J. (1872). *The Idigenous Literature of Odisha*, in, *John Beams and Orissa* (ed), Lalatendu Das Mohapatra (2007), Rourkela, Pragati Utkal Sangha.

Chakravarty, Monmohan, (1897-98), *Notes on the Language and Literature of Orissa*,in, Jornal of Asiatic Society of Bengal- Vol. LXVI and XVIII.

Lucy, Niall, (2014,1997), *Post Modern Literary Theory*, New Delhi, Wiley Blackwell.

Mazumdar, B.C. (1921), *Typical Selections from Oriya Literature*, Calcutta, University of Calcutta.

Wellek, Rene, (1963), *Concepts of Criticism*, London, Yele University Press.

ଗୌରାଙ୍ଗର ରଚଣ ଦାସ

୩୧ ଜୁଲାଇ, ୨୦୧୭



୧୩ ଜୁଲାଇ, ୧୮୩୮–୭ ମାର୍ଚ୍ଚ, ୧୯୧୭

## ଗୌରୀଶଙ୍କର ଓ ଓଡ଼ିଆ ସାହିତ୍ୟଚର୍ଚ୍ଚା

ଦେବେନ୍ଦ୍ର କୁମାର ଦାଶ

ଏକ

> ବାସ୍ତବରେ ରାଜକୀୟ ଓ ସାମାଜିକ ନିୟମମାନଙ୍କର ମୂଳ ଉଦ୍ଦେଶ୍ୟ ଧର୍ମରକ୍ଷା ଏବଂ ସେ ସମସ୍ତର ଉନ୍ନତି ସଙ୍ଗେ ଧର୍ମର ଉନ୍ନତି ଜଡ଼ିତ ଅଛି। ଏକ ସାହିତ୍ୟଚର୍ଚ୍ଚାରେ ଧର୍ମ ଉନ୍ନତି ସମ୍ଭବ ଅନ୍ୟ କାହିଁରେ ନାହିଁ ଏ କଥା ଆମ୍ଭମାନଙ୍କ ମନକୁ ଆସୁ ନାହିଁ। ଅତଏବ ଯେମନ୍ତ ସାହିତ୍ୟଚର୍ଚ୍ଚା ତେମନ୍ତ ରାଜକୀୟ ଓ ସାମାଜିକ ଚର୍ଚ୍ଚାରେ ଲୋକମାନଙ୍କର ମନୋଯୋଗୀ ହେବା ଉଚିତ।[୧]

୧୮୯୬ ମସିହା ଜୁନ ମାସରେ କୃଷ୍ଣପ୍ରସାଦ ଚୌଧୁରୀ ଓଡ଼ିଆ ସାହିତ୍ୟର ଇତିହାସ ସଙ୍କଳନର ପ୍ରସ୍ତାବ ଦେଇ ଯେଉଁ ପତ୍ର ଲେଖିଥିଲେ। ଉପରୋକ୍ତ ଉଦ୍ଧୃତି ଥିଲା ସେହି ପତ୍ରର ପ୍ରତିକ୍ରିୟା। କୃଷ୍ଣପ୍ରସାଦ ଲେଖିଥିଲେ :

> ସାହିତ୍ୟାଲୋଚନାହିଁ ସଭ୍ୟ ଜାତିର ସଭ୍ୟତା ବୃଦ୍ଧିର ସର୍ବୋତ୍‌କୃଷ୍ଟ ଉପାୟ। ଏହି ସାହିତ୍ୟାଲୋଚନ ନାନା ପ୍ରକାରରେ ସାଧିତ ହୋଇଥାଏ। ... ସାହିତ୍ୟର ଇତିହାସ (History of Literature) ଆମ୍ଭମାନଙ୍କ ଦେଶରେ ନାହିଁ। ପୃଥିବୀର ଅନ୍ୟାନ୍ୟ ସଭ୍ୟ ଦେଶରେ ତାହା ଅଛି ଏବଂ ତଦ୍ଧେତୁରୁ ସେହି ସେହି ଦେଶ କ୍ରମଶଃ ସଭ୍ୟତାର ଉଚ୍ଚତର ସୋପାନରେ ଆରୂଢ଼ ହେଉଅଛି।.... ଏଥିଦ୍ୱାରା ଦେଶ ଓ ସମାଜର ଯେ କେତେ ଉପକାର ସାଧିତହୁଏ ତାହା କାହାରିକୁ ବୁଝାଇ ଦେବାକୁ ହେବ ନାହିଁ।[୨]

କୃଷ୍ଣପ୍ରସାଦ ସାହିତ୍ୟ-ଚର୍ଚ୍ଚା ଉପରେ ଅତ୍ୟଧିକ ଗୁରୁତ୍ୱ ଦେଇ ପରୋକ୍ଷରେ ଅନ୍ୟାନ୍ୟ ବିଦ୍ୟା ଓ ବିଷୟର ଭୂମିକାକୁ ଗୌଣ କରି ଦେଇଛନ୍ତି। ଗୌରୀଶଙ୍କର ରାଜନୀତି ଓ ସାମାଜିକ ନୀତି ନିୟମକୁ ସମାଜ ବା ସଭ୍ୟତାବିକାଶ ସହ ସଂପୃକ୍ତ ନ କରି ଧର୍ମ ବିକାଶ ସହିତ ସଂପୃକ୍ତ କରିଛନ୍ତି। ସାମାଜିକ ନୀତିନିୟମ ଓ ରାଜନୀତି ଅପେକ୍ଷା ସାହିତ୍ୟଚର୍ଚ୍ଚାର ଭୂମିକାକୁ ସେ ଉଚ୍ଚତର ଆସନ ଦେଇପାରି ନାହାନ୍ତି। କାରଣ ସମାଜବିକାଶରେ ଧର୍ମ, ରାଜନୀତି ଓ ସାମାଜିକ ନୀତିନିୟମ ଯେଉଁ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରେ, ସାହିତ୍ୟ ତାହା କରେ ନାହିଁ; ସାହିତ୍ୟ ହେଉଛି ବିକଶିତ ସମାଜର ଉଦବୃତ୍ତ ଫଳ। ରାଧାନାଥ ଓ ମଧୁସୂଦନ ପ୍ରମୁଖ କବି ଓ ଶିକ୍ଷା-ପ୍ରଶାସକଙ୍କ ଦୃଷ୍ଟିକୋଣ ଦ୍ୱାରା ଆକ୍ରାନ୍ତ ହୋଇ ଓ ସମାଜ ଜୀବନରେ ସେମାନଙ୍କର ଭୂମିକାକୁ ସର୍ବଶ୍ରେଷ୍ଠ ଗୌରବ ଦେବାକୁ ଯାଇ ତାଙ୍କର ଅନୁଗତମାନଙ୍କ ଦ୍ୱାରା ଯେଉଁ ଅପଚେଷ୍ଟାସବୁ କରାହୋଇଥିଲା, ଗୌରୀଶଙ୍କର କୃଷ୍ଣପ୍ରସାଦଙ୍କ ପତ୍ରକୁ ଉପଲକ୍ଷ୍ୟ

କରି ସେହି  ସମସ୍ତ ଅପଚେଷ୍ଟା ବିରୋଧରେ ଆପଣାର ସ୍ୱାଭାବିକ ପ୍ରତିକ୍ରିୟା ବ୍ୟକ୍ତ କରିଛନ୍ତି। ଉପରୋକ୍ତ ମନ୍ତବ୍ୟରେ ଗୌରୀଶଙ୍କର ପ୍ରାଚୀନ ମତାଦର୍ଶକୁ ଅନୁସରଣ କରି ଧର୍ମକୁ ବ୍ୟକ୍ତି ଓ ସମାଜର କୈନ୍ଦ୍ରିକ ପରିଚାଳକ-ଶକ୍ତି ରୂପେ ବିବେଚନା କରିଛନ୍ତି। ଆଧୁନିକ ଜୀବନର ମୁଖ୍ୟଭୂମି ରାଜନୀତି, ସମାଜନୀତି; ସାହିତ୍ୟଚର୍ଚ୍ଚା ତା'ର ସହଯୋଗୀ। ଏଗୁଡ଼ିକ ମଧ୍ୟରେ ସାହିତ୍ୟଚର୍ଚ୍ଚାର ସ୍ଥାନ ଗୌଣ। ଗୌରୀଶଙ୍କର ଜ୍ଞାନ-ବିଶ୍ୱରେ ସାହିତ୍ୟ ଚର୍ଚ୍ଚା କିଭଳି ଆସନ ପାଇଥିଲା, ଉପରୋକ୍ତ ମତାମତ ତାହାର ଦୃଷ୍ଟାନ୍ତ। ପ୍ରଥମ ଚାଳିଶ ବର୍ଷର **ଉତ୍କଳ-ଦୀପିକା** ଗୌରୀଶଙ୍କରଙ୍କ ମତାମତକୁ ସ୍ପଷ୍ଟ କରେ। ସେ ନିଜ ଚିନ୍ତାରେ ସାହିତ୍ୟଚର୍ଚ୍ଚାକୁ ଯେଭଳି କେନ୍ଦ୍ରସ୍ଥାନ ଦେଇନାହାନ୍ତି, ଠିକ୍ ସେହିଭଳି ତାଙ୍କ ସଂପାଦିତ **ଉତ୍କଳ-ଦୀପିକା**ରେ ସାହିତ୍ୟଚର୍ଚ୍ଚା ମଧ୍ୟ କେନ୍ଦ୍ରସ୍ଥାନ ପାଇନାହିଁ।

ଗୌରୀଶଙ୍କର ନିଜେ ସାହିତ୍ୟିକ ନ ଥିଲେ ବା ସାହିତ୍ୟଚର୍ଚ୍ଚା ସଚେତନ ଭାବରେ ତାଙ୍କ ଆଲୋଚନାର କେନ୍ଦ୍ରିକ ବିଷୟ ନ ଥିଲା। କିନ୍ତୁ ପରିସ୍ଥିତିର ଚାପରେ, ସାମାଜିକ ଦାୟିତ୍ୱବୋଧର ଆହ୍ୱାନରେ ଓ ଓଡ଼ିଶାର ନବଜାଗରଣର ପ୍ରମୁଖ ପୁରୁଷ ହିସାବରେ କେବଳ ତାଙ୍କୁ ସେଥିରେ ଅଂଶଗ୍ରହଣ କରିବାକୁ ପଡ଼ି ନ ଥିଲା-ସମକାଳର ସାହିତ୍ୟଚର୍ଚ୍ଚାରେ ତାଙ୍କୁ ମଙ୍ଗୁଆଳର ଭୂମିକା ନେବାକୁ ବାଧ କରିଥିଲା। ପ୍ରଥମ ପ୍ରତିଷ୍ଠିତ ସମ୍ବାଦପତ୍ରର ସମ୍ପାଦକ ଭାବରେ, ପ୍ରଥମ ସମାଜସଚେତନ ଲେଖକ ହିସାବରେ ତଥା ଓଡ଼ିଆ ଜାତୀୟଚେତନାର ଅଗ୍ରସୂରୀ ଭାବରେ ଓଡ଼ିଆ ସାହିତ୍ୟର  ଆଲୋଚନା ତାଙ୍କୁ କରିବାକୁ ହୋଇଥିଲା। ଫଳରେ ଗୌରୀଶଙ୍କରଙ୍କ ହାତରେ ଓଡ଼ିଆ ସାହିତ୍ୟରେ 'ସମାଲୋଚନା'ର ଉଦ୍‌ଭବ ହୋଇଥିଲା ତଥା ଓଡ଼ିଆ ସାହିତ୍ୟର ପରିଚର୍ଚ୍ଚାରେ ମୂଲ୍ୟମାନର ପ୍ରୟୋଗ କରିବା ଦ୍ୱାରା ସେ ସାହିତ୍ୟ ଆଲୋଚନାର ଜଗତକୁ ସାଂପ୍ରତିକତା ଭିତରେ ସୀମାବଦ୍ଧ ନକରି ଐତିହାସିକ ପ୍ରେକ୍ଷାପଟ ଆଡ଼କୁ ସଂପ୍ରସାରିତ କରି ପାରିଥିଲେ।

## ଦୁଇ

ଓଡ଼ିଆ ସାହିତ୍ୟ ସହ ସମ୍ପର୍କର ସ୍ମୃତିଚାରଣ କରି 'ଉତ୍କଳ ସାହିତ୍ୟ ସମାଜ'ର ଦ୍ୱାଦଶ ବାର୍ଷିକ ଅଧିବେଶନର ନିମନ୍ତ୍ରିତ ସଭାପତି ଅଭିଭାଷଣରେ ଗୌରୀଶଙ୍କର କହିଥିଲେ:

> ମୋର ସାହିତ୍ୟ ଆଲୋଚନା ଏତେ ଅଳ୍ପ ଯେ, ସେଥିର ପୁଷ୍ଟି ଓ ଅଗ୍ରଗତି ସମ୍ବନ୍ଧରେ ସୁପରାମର୍ଶ ଦେବାକୁ ସାହସ ହେଉ ନାହିଁ।  .....ମୁଁ ଜଣେ ସୁବକ୍ତା ବା ଲେଖକ ନ ହେଲେ ହେଁ ଉତ୍କଳ ସାହିତ୍ୟ ପ୍ରତି ମୋର ଆନ୍ତରିକ ଅନୁରାଗ ଅଛି ଏବଂ ଏହାର ରକ୍ଷଣ ଓ ସଂପ୍ରସାରଣର ସେତୁବନ୍ଧ ନିର୍ମାଣରେ ଗୁଣ୍ଡୁଚି ମୂଷାପରି ଯୋଗ ଦେବାକୁ ତ୍ରୁଟିକରି ନାହିଁ।
>
> ମୁଁ କହିଅଛି ଯେ, ଉତ୍କଳ ସାହିତ୍ୟ ମୋତେ ଅତ୍ୟଳ୍ପ ଜଣା। ଶିଶୁ ଅବସ୍ଥାରେ ଚାଟଶାଳୀରେ ରାସ,ଗୋପଭାଷାଦି ଯାହା ପଢ଼ିଥିଲି ତାହା କେବଳ ଅକ୍ଷର ଫିଟିବା ନିମନ୍ତେ। ଅର୍ଥ  ବୁଝିବା କ୍ଷମତା ଅଥବା ବୁଝାଇବା ରୀତି

ତେତେବେଳେ ନ ଥିଲା, ପରେ ଇଂରାଜୀ ସ୍କୁଲରେ ମୋର ଓଡ଼ିଆ ଶିକ୍ଷା ମିସନ ଛାପାଖାନାର ମୁଦ୍ରିତ ନୀତିକଥା, ହିତୋପଦେଶ ପ୍ରଭୃତି ସୀମାକୁ ଡେଇଁ ନ ଥିଲା। ସୁତରାଂ ଉତ୍କଳ ସାହିତ୍ୟର ପରିଚୟ ଆଦୌ ପାଇ ନ ଥିଲି ବୋଲିବା ଅତ୍ୟୁକ୍ତି ନୁହେଁ। ସ୍କୁଲ ଛାଡ଼ି ସରକାରୀ କାର୍ଯ୍ୟ ପାଇ କେତେଜଣ କଚେରି ବନ୍ଧୁଙ୍କ ଠାରୁ ବୈଦେହୀଶ ବିଳାସ ପ୍ରଭୃତି ଦୁଇ ଏକ ପଦ ଅର୍ଥ ସହିତ ଶୁଣି ସେ ଦିଗକୁ ମନ ଧାଇଁଲା ଏବଂ କେତେଜଣ ଅତି ପ୍ରିୟ ବନ୍ଧୁ ଯଥା - ସ୍ୱର୍ଗୀୟ ବନମାଳୀ ସିଂହ, ରାଧାମୋହନ ପଟ୍ଟନାୟକ, ଜଗମୋହନ ଲାଲ, ପ୍ୟାରୀମୋହନ ସେନ ଆଦି ମିଶି ନିତ୍ୟ ସନ୍ଧ୍ୟା ବେଳେ ଅନ୍ତତଃ ଏକଘଣ୍ଟା ପ୍ରେମସୁଧାନିଧି, ଲାବଣ୍ୟବତୀ ପ୍ରଭୃତି ପାଠ କରି ଉତ୍କଳ ସାହିତ୍ୟର ସ୍ୱାଦ ପାଇଲି ....।[୩]

ଏହି ସ୍ମୃତିଚାରଣରେ ଗୌରୀଶଙ୍କର ପ୍ରାଚୀନ ସାହିତ୍ୟ ସହ ତାଙ୍କର ସମ୍ପର୍କ ପ୍ରସଙ୍ଗ ହିଁ ଉପସ୍ଥାପନ କରିଛନ୍ତି। ଗୌରୀଶଙ୍କରଙ୍କ ଜୀବନର ମଧ୍ୟ ପର୍ଯ୍ୟାୟରେ ଆଧୁନିକ ଓଡ଼ିଆ ସାହିତ୍ୟର ସୃଷ୍ଟି। ସାହିତ୍ୟକୁ ଉପଭୋଗ କରିବାର ଚିତ୍ତବୃତ୍ତି ତେଣୁ ସେ ଆହରଣ କରିଥିଲେ ପ୍ରାଚୀନ ଓ ମଧ୍ୟକାଳୀନ ଓଡ଼ିଆ ସାହିତ୍ୟରୁ। ଆଧୁନିକ ବଙ୍ଗଳା ସାହିତ୍ୟ ତାଙ୍କର ସମକାଳରେ ବିକଶିତ ହୋଇଥିଲା ଓ ଇଂରାଜୀ ସାହିତ୍ୟ ସହ ତାଙ୍କର ଘନିଷ୍ଠ ପରିଚୟ ନ ଥିଲା। ଫଳରେ ସାହିତ୍ୟ ସମ୍ପର୍କରେ ତାଙ୍କର ଧାରଣା ଭଞ୍ଜ ପ୍ରମୁଖ ମଧ୍ୟଯୁଗୀୟ ଓଡ଼ିଆ କବିଙ୍କ କାବ୍ୟକୃତି-ଆଶ୍ରିତ। ସମୟ କ୍ରମେ ଏହି ଧାରଣାର ସମ୍ପ୍ରସାରଣ ଘଟିଛି, ଖଣ୍ଡନ ମଣ୍ଡନ ମଧ୍ୟ ହୋଇଛି; କିନ୍ତୁ ତାଙ୍କର ମୌଳ ପ୍ରତ୍ୟୟରେ ପରିବର୍ତ୍ତନ ଘଟିନାହିଁ। ଏହି ଆଭିମୁଖ୍ୟ ଭିତ୍ତିରେ **ଉତ୍କଳ ଦୀପିକା**ରେ ସେ ପ୍ରାଚୀନ ଓ ସମକାଳୀନ ଓଡ଼ିଶା ସାହିତ୍ୟର ଆଲୋଚନା କରିଯାଇଛନ୍ତି। ସାହିତ୍ୟଚର୍ଚ୍ଚା ସମ୍ପର୍କରେ ଗୌରୀଶଙ୍କରଙ୍କର ସ୍ୱୀକାରୋକ୍ତି ସାହିତ୍ୟ-ପାଠକ ହିସାବରେ ତାଙ୍କର ସୀମାବଦ୍ଧତାକୁ ଯେଉଁ ପରିମାଣରେ ସୂଚିତ ନ କରେ, ତା ଅପେକ୍ଷା ତାଙ୍କ ମନୋଭୂମିର ପ୍ରାଥମିକ ପରିଚୟ ହିଁ ଅଧିକ ଭାବରେ ପ୍ରଦାନ କରେ। ତାଙ୍କର ସମକାଳରେ ସୃଷ୍ଟି ହୋଇଥିବା ଓଡ଼ିଆ ସାହିତ୍ୟକୁ ତା ବୋଲି ସେ ପ୍ରତ୍ୟାଖ୍ୟାନ କରି ନାହାନ୍ତି କିନ୍ତୁ ତାହାକୁ ସର୍ବଶ୍ରେଷ୍ଠ ବୋଲି ମଧ୍ୟ ଗ୍ରହଣ କରିନାହାନ୍ତି। ଏଭଳିକି ଉପନ୍ୟାସ ଓ ନାଟକ ଭଳି ଆଧୁନିକ ସାହିତ୍ୟରୂପ ଗୌରୀଶଙ୍କରଙ୍କ ଦ୍ୱାରା ପ୍ରଶଂସିତ ଓ ଆଲୋଚିତ।

ଗୌରୀଶଙ୍କରଙ୍କ ସାହିତ୍ୟପ୍ରତ୍ୟୟ ଥିଲା ମଧ୍ୟଯୁଗୀୟ ଓଡ଼ିଆ ସାହିତ୍ୟକେନ୍ଦ୍ରିକ। ସମକାଳରେ ସାହିତ୍ୟସମାଲୋଚନାର ଭୂମିକାକୁ ସେ ଅସ୍ୱୀକାର କରିପାରି ନଥିଲେ। ଉଭୟ ମଧ୍ୟରେ ଥିବା ଭାବଦ୍ୱନ୍ଦ୍ୱକୁ ବି ସେ ସ୍ପଷ୍ଟତଃ ଅନୁଭବ କରି ପାରି ନଥିଲେ। ସାହିତ୍ୟକୁ ଯେବେ ଆହ୍ଲାଦପ୍ରଧାନ ବୋଲି ଗ୍ରହଣ କରାଯାଏ ତେବେ ସାହିତ୍ୟକୃତିର ଭଲ ଓ ମନ୍ଦର ବିଚାର ସେତେବେଳେ ଅନାବଶ୍ୟକ। ଆଉ ଭଲ ଓ ମନ୍ଦର ବିଚାର କଲାବେଳେ କେବଳ ଆନନ୍ଦାନୁଭୂତି ନୁହେଁ,କୌଣସି ସାହିତ୍ୟକୃତିର ସାମାଜିକ ଆବଶ୍ୟକତା ଅସଚେତନ

ଭାବରେ ବିଚାରଦୃଷ୍ଟିକୁ ଆଚ୍ଛନ୍ନ କରେ। 'ବାକ୍ୟଂ ରସାତ୍ମକଂ କାବ୍ୟମ୍'-ବିଶ୍ୱନାଥ କବିରାଜଙ୍କର ଏହି ଅତି ପରିଚିତ କାବ୍ୟସଂଜ୍ଞାକୁ ସେ ଗ୍ରହଣ କରି ନେଇଛନ୍ତି। ଶୃଙ୍ଗାର ରସ ବା ଆଦିରସ ଅଂଳକାରଶାସ୍ତ୍ରରେ ରସରାଜ ଭାବରେ ଅନେକ ସମୟରେ ଗୃହୀତ ହୋଇଥିବାରୁ ଆଦିରସପ୍ରଧାନ କାବ୍ୟକୁ ସେ ଶ୍ରେଷ୍ଠ କାବ୍ୟର ଗୌରବ ଦେଇଛନ୍ତି। ତେଣୁ ଭଞ୍ଜ କାବ୍ୟକୁ ଯେଉଁମାନେ ବିରୋଧ କରନ୍ତି ସେମାନଙ୍କର ସାହିତ୍ୟ ଜ୍ଞାନ ହୁଏତ କଞ୍ଚା, ନହେଲେ ବୈଷୟିକ ଆବଶ୍ୟକତାରୁ ସେହି ବିରୋଧଭାବ ଉତସାରିତ ଏହିଭଳି ଏକ ସିଦ୍ଧାନ୍ତରେ ସେ ପହଞ୍ଚିଛନ୍ତି। ଏ ପ୍ରସଙ୍ଗରେ ସେ ଲେଖିଛନ୍ତି - " ରସାତ୍ମକ ବାକ୍ୟର ନାମ କାବ୍ୟ ଓ ଆଦିରସ ଗୋଟିଏ ରସ ଅଟଇ। ସୁତରାଂ ଆଦିରସ ଘଟିତ କାବ୍ୟକୁ କାବ୍ୟ ବୋଲିବା ଅନ୍ୟାୟ ନୁହଇ ବୋଲି ସହଜ ଜ୍ଞାନରେ ପ୍ରତୀତ ହେଉଅଛି।"[୪] ଯେଉଁମାନେ ଗୌରୀଶଙ୍କରଙ୍କ ସାହିତ୍ୟଧାରଣାକୁ ପ୍ରତ୍ୟାଖ୍ୟାନ କରୁଥିଲେ, ସେମାନଙ୍କ ଦୃଷ୍ଟିରେ ମଧ୍ୟ ବିଶ୍ୱନାଥଙ୍କ ଉକ୍ତି ଥିଲା ଗୃହୀତ ସତ୍ୟ; ଏକ ମାତ୍ର କାବ୍ୟସଂଜ୍ଞା। ସମଗ୍ର ଊନବିଂଶ ଶତକର ସାହିତ୍ୟଚର୍ଚ୍ଚା ବିଶ୍ୱନାଥଙ୍କ କାବ୍ୟସଂଜ୍ଞାର ବୃତ୍ତାକାର କକ୍ଷପଥରେ ଘୂରିବା ପାଇଁ ବାଧ୍ୟ ହୋଇଥିଲା।

'ରସ' ସହିତ ସାହିତ୍ୟର ଅନ୍ୟାନ୍ୟ ବିଭାବ ଭାବରେ ସେ ନୀତିଉପଦେଶ ଓ ଅଳଂକାରସଂଯୋଜନାକୁ ଗ୍ରହଣ କରିଅଛନ୍ତି। ଭଞ୍ଜଙ୍କ ମହତ୍ତ୍ୱ ପ୍ରତିପାଦନ ପ୍ରସଙ୍ଗରେ ସେ ଲେଖିଅଛନ୍ତି : " ତାହାଙ୍କର ରଚନା ଗୁଡ଼ାକ କ'ଣ ଖାଲି ଆଦିରସରେ ଲଟପଟ ଏମନ୍ତ ନୋହେ। ତହିଁରେ ସ୍ଥାନେ ସ୍ଥାନେ ଭଲ କଥା ଅଛି, ଭଲ ଭାବ ଅଛି। ଦେଶରୀତି ଅନୁସାରେ ଦେହଯାକରେ ଅଳଂକାର ଝଣ୍ ଝଣ୍ ହେଉଥିଲେ ହେଁ ସୌନ୍ଦର୍ଯ୍ୟରେ ଊଣା ହୋଇ ନାହିଁ ବରଂ ଅଧିକ ହୋଇଛି।"[୫]ଏଠାରେ ଭାବ, ନୀତି ଉପଦେଶ ଓ ସୌନ୍ଦର୍ଯ୍ୟ ପ୍ରକାଶ ସାହିତ୍ୟର ଲକ୍ଷ୍ୟ ଭାବରେ ଗୃହୀତ। କିନ୍ତୁ ନୀତିଉପଦେଶ କିଭଳି ଦିଆଯିବ,ଭାବ ଓ ସୌନ୍ଦର୍ଯ୍ୟ କହିଲେ କ'ଣ ବୁଝାଯାଏ-ତାହା ସେ ଆଦୌ ସ୍ପଷ୍ଟ କରି ନାହାନ୍ତି। ଫଳରେ ରସ,ଭାବ, ସୌନ୍ଦର୍ଯ୍ୟ ଆଦି ପ୍ରତ୍ୟୟସୂଚକ ଶବ୍ଦାବଳୀ ଗୌରୀଶଙ୍କର ଅବିଚାରିତ ଭାବେ ତାଙ୍କ ଆଲୋଚନାଗୁଡ଼ିକରେ ବ୍ୟବହାର କରିଛନ୍ତି।

'ସମାଲୋଚନା' ଶବ୍ଦଟି ସାହିତ୍ୟଆଲୋଚନା ଅର୍ଥରେ ପ୍ରଥମେ ଗୌରୀଶଙ୍କରଙ୍କ ଦ୍ୱାରା ବ୍ୟବହୃତ। **ବୋଧୋଦାୟିନୀ** ପତ୍ରିକାରେ **ଭ୍ରମରଞ୍ଜନ** କାବ୍ୟର ଯେଉଁ ବିରୋଧୀ ଓ ନିନ୍ଦାମୂଳକ ଆଲୋଚନା ପ୍ରକାଶିତ ହୋଇଥିଲା, ତାହାର ଉତ୍ତର ଦେବାକୁ ଯାଇ ସେ ଲେଖିଥିଲେ : " ପୁସ୍ତକର ସମାଲୋଚନା କରିବା ଅତି ଗୁରତର କାର୍ଯ୍ୟ ଅଟେ, ତହିଁରେ ଦୋଷ ଗୁଣ ଉତ୍ତମ ରୂପେ ବିବେଚନା କରି ଉଭୟର ସମୁଚିତ ବର୍ଣ୍ଣନା ପୂର୍ବକ ପୁସ୍ତକ ପ୍ରତି ମତପ୍ରକାଶ କରିବାକୁ ହୁଏ କେବଳ ଦୋଷ ଦେଖାଇବାର ସମାଲୋଚନାର ମର୍ମ ନୁହେଁ।"[୬] ସମ୍ୟକ ବା ସାମଗ୍ରିକ ଆଲୋଚନାକୁ ସେ 'ସମାଲୋଚନା' ଅର୍ଥରେ ଗ୍ରହଣ କରିଛନ୍ତି ଓ ସେଥିପାଇଁ ସମାଲୋଚକଙ୍କର କାର୍ଯ୍ୟକୁ ଗୁରୁତର ଓ କଠିନ ବୋଲି ସେ କହି। ଏହାର

ଅଭାବରେ ସମାଲୋଚକ ସ୍ୱଧର୍ମରୁ ଭ୍ରଷ୍ଟ ହୁଅନ୍ତି। "ସମାଲୋଚକର କାର୍ଯ୍ୟ ବଡ କଠିନ ଅଟଇ। ସମସ୍ତ ଦିଗ ବିବେଚନା ନ କରି ଏକାବେଳକେ ଅପ୍ରକୃତ ବୋଲି ପରିତ୍ୟାଗ କରିବା ଉଚିତ ନୁହଇ।"[୭] ସମାଲୋଚନା ଆଲୋଚକଙ୍କ ପାଣ୍ଡିତ୍ୟର ଇସ୍ତାହାର ନୁହେଁ ବା ଆତ୍ମପ୍ରକାଶର ମାଧ୍ୟମ ମାତ୍ର ନୁହେଁ। ସାହିତ୍ୟ ଭଳି ଏହାର ସମାଜଗଠନାତ୍ମକ ଭୂମିକା ରହିଛି। ସମାଲୋଚକ ଲେଖକ ଓ ପାଠକଙ୍କର ଉପକାର କରେ-ଜଣଙ୍କୁ ସଚେତନ କରେ ଓ ଅନ୍ୟ ଜଣଙ୍କୁ ଗଠନମୂଳକ ଆଲୋଚନା ମାଧ୍ୟମରେ ଭବିଷ୍ୟତ ପାଇଁ ପଥ ନିର୍ଦ୍ଦେଶ କରେ। ସେଥିପାଇଁ ସମାଲୋଚକଙ୍କର ପ୍ରଥମ ଆବଶ୍ୟକତା ସମାଲୋଚ୍ୟ ବିଷୟର ସ୍ପଷ୍ଟ ପ୍ରତୀତି ଓ ଅଧ୍ୟୟନ :

> ସମାଲୋଚନା ଦୂଷଣୀୟ ନୁହେଁ। କିନ୍ତୁ ଜ୍ଞାନିଲୋକଙ୍କ ଦ୍ୱାରା ନ ହେଲେ ତାହା ବାଚାଳତା ବୋଲି ପରିଗଣିତ ହୁଏ, ଯେଉଁ ସମାଲୋଚନା ଦ୍ୱାରା ଲେଖକ, ପାଠକ ବା ସମାଲୋଚକ କାହାରି ଉପକାର ସମ୍ଭବ ନୁହେଁ, ସେ ରୂପ ସମାଲୋଚନା ଦ୍ୱାରା ସାଧାରଣ ହିତବ୍ରତୀ ସମ୍ବାଦ ପତ୍ରର କଳେବରର ଏକ ଅଂଶ ହରଣ କରିବା ଅନୁମୋଦନୀୟ ନୁହଇ।[୮]

ସାହିତ୍ୟର ସ୍ୱରୂପ ସମ୍ପର୍କରେ ଗୌରୀଶଙ୍କରର ସାଧାରଣ ଧାରଣା ମାତ୍ର ଥିଲା, ତତ୍ତ୍ୱଗତ ସ୍ପଷ୍ଟତା ନ ଥିଲା। କିନ୍ତୁ ସାହିତ୍ୟ ସମାଲୋଚନାର ଭୂମିକା ସମ୍ପର୍କରେ ତାଙ୍କର ଧାରଣା ଥିଲା ଅନେକାଂଶରେ ସ୍ୱଚ୍ଛ ଓ ସନ୍ତୁଳିତ। ଜଣେ ସମାଲୋଚକଙ୍କର କର୍ତ୍ତବ୍ୟ କ'ଣ ହେବା ଉଚିତ, ଆପଣା ସମୟର ଆବଶ୍ୟକତାରୁ ତାହା ସେ ଶିକ୍ଷା ଲାଭ କରିଥିଲେ। ଓଡ଼ିଆ ସାହିତ୍ୟ ସମ୍ପର୍କିତ ତାଙ୍କର ଆଲୋଚନାରେ ତାଙ୍କର ଏହି କର୍ତ୍ତବ୍ୟ ବୋଧହିଁ ପ୍ରକାଶିତ।

## ତିନି

**ଉତ୍କଳଦୀପିକା**ର ପ୍ରକାଶ ବେଳକୁ ଓଡ଼ିଆ ସାହିତ୍ୟ ଆଲୋଚନାର ପରଂପରା ସୃଷ୍ଟି ହୋଇ ନ ଥିଲା। ରେଭରେଣ୍ଡ ଜେମସ ଲଙ୍ଗ ଦଶଦିନ ପାଇଁ ଓଡ଼ିଶା ବୁଲିଆସି, ନିଜର ପରିଦର୍ଶନର ଯେଉଁ ବିବରଣୀ ଦେଇଥିଲେ ତଥା ରଙ୍ଗଲାଲ ବନ୍ଦୋପାଧ୍ୟାୟ ଦୀନକୃଷ୍ଣ ଓ ଉପେନ୍ଦ୍ର ଭଞ୍ଜଙ୍କ ସଂପର୍କରେ ଯେଉଁ ପରିଚୟାତ୍ମକ ପ୍ରବନ୍ଧ ଦୁଇଟି ରହସ୍ୟ-ସନ୍ଦର୍ଭ ପତ୍ରିକାରେ ଲେଖିଥିଲେ-ତାହା ଥିଲା ଓଡ଼ିଆ ସାହିତ୍ୟ ସମ୍ପର୍କରେ ପ୍ରାଥମିକ ଉଲ୍ଲେଖ ଓ ଆଲୋଚନା।[୯] ବଙ୍ଗଳା ସାହିତ୍ୟରେ ବି ସାହିତ୍ୟଚର୍ଚ୍ଚାର ତାହା ଥିଲା ପ୍ରାରମ୍ଭିକ ପର୍ବ। ଈଶ୍ୱର ଗୁପ୍ତ, ରାଜେନ୍ଦ୍ରଲାଲ ମିତ୍ର, ଈଶ୍ୱରଚନ୍ଦ୍ର ବିଦ୍ୟାସାଗର ଓ ରଙ୍ଗଲାଲ ବନ୍ଦୋପାଧ୍ୟାୟ ବଙ୍ଗଳାରେ ସାହିତ୍ୟ ଆଲୋଚନାର ନେତୃତ୍ୱ ନେଇଥିଲେ। ପୁଣି ଏମାନଙ୍କ ମଧ୍ୟରୁ ଈଶ୍ୱରଚନ୍ଦ୍ର ବିଦ୍ୟାସାଗରଙ୍କୁ ଛାଡ଼ିଦେଲେ ଅନ୍ୟ କାହାରି ପ୍ରସାରିତ ଦୃଷ୍ଟିକୋଣ ମଧ୍ୟ ନ ଥିଲା। ବସ୍ତୁତଃ ମାଇକେଲ ମଧୁସୂଦନଙ୍କ ଆବିର୍ଭାବ ପର୍ଯ୍ୟନ୍ତ ବଙ୍ଗଳା ସାହିତ୍ୟଚର୍ଚ୍ଚାରେ ଆଧୁନିକ ଦୃଷ୍ଟି ପରିସ୍ଫୁଟ ହୋଇ ନ ଥିଲା।[୧୦] ସାହିତ୍ୟତତ୍ତ୍ୱ ସମ୍ପର୍କରେ ପରିଚ୍ଛନ୍ନ ଅବବୋଧର ଅଭାବ ଓ ସାହିତ୍ୟର ମୂଲ୍ୟଗତ ଅବଧାରଣାରେ ଅସମର୍ଥ ଥିଲେ ବି ସେ ସମୟର ବଙ୍ଗଳା

ସମ୍ବାଦପତ୍ରଗୁଡ଼ିକ ସାହିତ୍ୟ ଓ ଅସାହିତ୍ୟ ନିର୍ବିଶେଷରେ ସମସ୍ତ ପ୍ରକାଶିତ ପୁସ୍ତକର ସ୍ଥୁଳ ବିବରଣୀ ଦେବାରେ ଅବହେଳା କରୁ ନ ଥିଲେ। ପୁଣି ପୁସ୍ତକର ଭାଷା ତଥା ବଙ୍ଗଳା ବନାମ ଇଂରାଜୀ ଓ ସଂସ୍କୃତ ଭାଷା ସମ୍ପର୍କିତ ବିବାଦ ୧୮୩୫ମସିହା ପରବର୍ତ୍ତୀ ଅଧିକାଂଶ ବଙ୍ଗୀୟ ସମ୍ବାଦପତ୍ର ଆକ୍ରାନ୍ତ କରିଥିଲା। ବଙ୍ଗଳାର ପ୍ରତିଷ୍ଠିତ ସମ୍ବାଦ ପତ୍ର **ସମ୍ବାଦ ପ୍ରଭାକର,** ଓ **ସମାଚାର ଦର୍ପଣ** ସମାଚାର ଚନ୍ଦ୍ରିକା ପ୍ରମୁଖଙ୍କୁ ଅନୁସରଣ କରି ନୂତନ ପୁସ୍ତକର ବିଜ୍ଞାପନ ଓ ପ୍ରାପ୍ତ ପୁସ୍ତକର ଆଲୋଚନା ଉତ୍କଳ ଦୀପିକା ର ପରିଚିତ ସ୍ତମ୍ଭରେ ପରିଣତ ହୋଇଥିଲା। ସମ୍ବାଦ ପତ୍ର ପୃଷ୍ଠାରେ ହେଉଥିବା ଅନୁରୂପ ସାହିତ୍ୟ ସମାଲୋଚନାକୁ ନଟବର ସାମନ୍ତରାୟ କହିଛନ୍ତି 'ବାର୍ତ୍ତାମୁଖୀ ସମାଲୋଚନା ସାହିତ୍ୟ' [୧୧] :"ଭାଷା ଓ ସାହିତ୍ୟ ସମ୍ପର୍କୀୟ ଲେଖା ବ୍ୟତୀତ ଅନ୍ୟାନ୍ୟ ସ୍ଥଳରେ କେବଳ ବାର୍ତ୍ତାପରିବେଷଣ କରିବା ଏମାନଙ୍କର ମୁଖ୍ୟଲକ୍ଷ୍ୟ ଥିଲା"। [୧୨] ତାଙ୍କ ମତରେ ଏହି ବାର୍ତ୍ତାମୁଖୀ ସମାଲୋଚନାର ମୂଳି ଭିତ୍ତି ଉପରେ ଆଧୁନିକ ସାହିତ୍ୟର ଯଥାର୍ଥ ସମାଲୋଚନା ଛିଡା ହୋଇଛି। ଗୌରୀଶଙ୍କରଙ୍କ ପୁସ୍ତକ ସମାଲୋଚନା ପ୍ରାଥମିକ ସନ୍ଦିଗ୍ଧତା ଓ ଆଲୋଚନା ଅସ୍ପଷ୍ଟତାକୁ ଅତିକ୍ରମ କରି ଶେଷରେ-ସାହିତ୍ୟସମାଲୋଚନାର କୋଟୀକୁ ଉନ୍ନୀତ ହୋଇପାରିଥିଲା। ଏହି ପୁସ୍ତକ ସମାଲୋଚନା ସ୍ତମ୍ଭରେ ଗୌରୀଶଙ୍କରର ଓଡ଼ିଆ ସାହିତ୍ୟଚର୍ଚ୍ଚାକୁ ଭାଷା ଓ ବହିରଙ୍ଗ ଆଲୋଚନାରୁ ମୂଲ୍ୟବିଚାର ଆଡ଼କୁ ଟାଣିନେଇଥିଲେ। ସାହିତ୍ୟଚର୍ଚ୍ଚା ଯେତେବେଳେ ମୂଲ୍ୟବିଚାରକୁ ଆପଣେଇପାରେ ଓ ଆଲୋଚକ ନିର୍ଦ୍ଦିଷ୍ଟ ମେଦିନୀଦୃଷ୍ଟିକୁ ଅଭିବ୍ୟକ୍ତି ଦେବାରେ ସାମର୍ଥ୍ୟ ହାସଲ କରନ୍ତି, ସେତେବେଳେ ସେହି ସାହିତ୍ୟଚର୍ଚ୍ଚା ଯଥାର୍ଥ ସାହିତ୍ୟ-ସମାଲୋଚନା ସ୍ତରକୁ ଉତ୍ତୀର୍ଣ୍ଣ ହୁଏ। ଗୌରୀଶଙ୍କରଙ୍କ ପୁସ୍ତକ ସମାଲୋଚନା ୧୮୯୦ର ପରବର୍ତ୍ତୀ କାଳରେ ତୁଚ୍ଛା ସମାଲୋଚ୍ୟ ବିଷୟର ଚର୍ବିତ ଚର୍ବଣ ନ ଥିଲା ବା କୌଣସି ବହିର ବିଷୟବସ୍ତୁର ଫେନାୟିତ ବର୍ଣ୍ଣନା ମାତ୍ର ନ ଥିଲା-ତାହା ଥିଲା ଗୌରୀଶଙ୍କରଙ୍କର ମୌଳିକ ଦୃଷ୍ଟିକୋଣର ଅଭିବ୍ୟକ୍ତି।

ଗୌରୀଶଙ୍କରଙ୍କର ପ୍ରଥମ ପୁସ୍ତକସମାଲୋଚନା ପ୍ରକାଶିତ ହୋଇଥିଲା ଦୀପିକାର ଦ୍ୱିତୀୟ ବର୍ଷ ନବମ ସଂଖ୍ୟାରେ, 'କସ୍ୟଚିତ ବିଚାରଳସ୍ୟ' ଛଦ୍ମନାମରେ। ଫକୀରମୋହନଙ୍କ ଦ୍ୱାରା ଅନୂଦିତ ବିଦ୍ୟାସାଗରଙ୍କ **ଜୀବନଚରିତ** ପୁସ୍ତକର ଆଲୋଚନା କରିବାକୁ ଯାଇ ଏଥିରେ ମୁଖ୍ୟତଃ ତା'ର ଭାଷା ଉପରେ ଗୁରୁତ୍ୱ ଆରୋପ କରାଯାଇଥିଲା। ଫକୀରମୋହନୀ ଭାଷା ଉପରେ ବଙ୍ଗଳାର ଅପପ୍ରଭାବ ଏଥିରେ ବିଶେଷ ଭାବେ ସମାଲୋଚିତ :

> ଉପରି ନିର୍ଦ୍ଦିଷ୍ଟ କତିପୟ ଅଶୁଦ୍ଧି ଛଡ଼ା ଗ୍ରନ୍ଥର ଆମୂଳାଗ୍ର ବହୁପ୍ରକାର ବିଭକ୍ତି ଦୋଷ ଥିବାରୁ ସୁତରାଂ ଶ୍ରୁତିକଟୁବୋଧ ହେଉଅଛି। ଏଥିରୁ ଉତ୍ତମରପେ ଜଣାଯାଉଅଛି ଯେ ଅଳ୍ପ ବୟସ୍କ ଭଦ୍ରସନ୍ତାନମାନଙ୍କୁ ଏ ପ୍ରକାର ଗ୍ରନ୍ଥ ପଢ଼ାଇ ଭାଷାରେ ବିଜତୀୟ ଜ୍ଞାନ କରାଇ ଦେବଠାରୁ ତାଙ୍କୁ ନ ପଢ଼ାଇବା ଶ୍ରେୟସ୍କର।[୧୩]

ବଙ୍ଗଳା ଭାଷାରୁ ଅନୁବାଦ କରିବାକୁ ଯାଇ ଓଡ଼ିଆ ଲେଖକମାନେ ବଙ୍ଗଳାର ବ୍ୟାକରଣଗତ ପ୍ରୟୋଗକୁ ଲଦି ଦେଇଛନ୍ତି, ଉପରୋକ୍ତ ଆଲୋଚନାରେ ଏହା ପ୍ରଦର୍ଶିତ । **ଜୀବନଚରିତ** ଏକ ପାଠ୍ୟପୁସ୍ତକ ଓ ଏହି ଆଲୋଚନାକୁ ଖୁବ୍ ବେଶିରେ ସାହିତ୍ୟ ପୁସ୍ତକର ଭାଷା-ଚର୍ଚ୍ଚା ବା ସାହିତ୍ୟ ସମ୍ପର୍କିତ ଚର୍ଚ୍ଚା କୁହାଯାଇ ପାରେ କିନ୍ତୁ 'ସାହିତ୍ୟସମାଲୋଚନା' ନୁହେଁ । ବଂଶୀଧର ମହାନ୍ତି ଓଡ଼ିଆ ସମାଲୋଚନାର ଆଦିରୂପ ଭାବରେ ଏହି ଆଲୋଚନାକୁ ଗ୍ରହଣ କରିଛନ୍ତି । [୧୪]

**ଭ୍ରମଭଞ୍ଜନ** ଆଧୁନିକ ଓଡ଼ିଆ ସାହିତ୍ୟର ପ୍ରଥମ ପ୍ରକାଶିତ କାବ୍ୟ । ଜଗନମୋହନ ଲାଲ ପ୍ରାଚୀନ କାବ୍ୟରୀତି ସହ ସମନ୍ୱୟ ରକ୍ଷା କରି ପାର୍ଣ୍ଣେଲଙ୍କ **ହରମିଟ** ଖଣ୍ଡକାବ୍ୟର ଓଡ଼ିଆ ଭାଷାରେ ମୁକ୍ତ ଅନୁବାଦ କରି ତାର ଶୀର୍ଷ ଦେଇଛନ୍ତି **ଭ୍ରମଭଞ୍ଜନ । ଭ୍ରମ ଭଞ୍ଜନ** ଆଲୋଚନାକୁ, ଗୌରୀଶଙ୍କରଙ୍କର ଯଥାର୍ଥ ସାହିତ୍ୟ ପୁସ୍ତକର ପ୍ରଥମ ସମାଲୋଚନା ଭାବରେ ଗ୍ରହଣ କରାଯାଇପାରେ । 'ନୂତନ ପୁସ୍ତକର ସମାଲୋଚନା' ଶୀର୍ଷକରେ ସେ ଲେଖିଛନ୍ତି ;

> ଏହି ନାମରେ ଏକଖଣ୍ଡି ଉତ୍କଳ ପୁସ୍ତକ ଆମ୍ଭେମାନେ ପ୍ରାପ୍ତ ହୋଇଅଛୁଁ । ଗ୍ରନ୍ଥ ରଚକର ନାମ ବାବୁ ଜଗନ୍ମୋହନ ଲାଲ, କଟକ ପ୍ରିଣ୍ଟିଂକୁମ୍ପାନୀର ଯନ୍ତ୍ରାଳୟରେ ମୁଦ୍ରିତ ଏବଂ ସୁବିଖ୍ୟାତ ଇଂରାଜୀ କବି ପାର୍ଣେଲ ସାହେବଙ୍କ ସନ୍ନାସି ନାମକ କବିତାରୁ ଏଥିର ବିଷୟ ଗ୍ରହଣ ହୋଇ ଉତ୍କଳ ଦେଶ ପ୍ରଚଳିତ ନାନା ପ୍ରକାର ଛାନ୍ଦଗୀତରେ ରଚନା ହୋଇଅଛି ।
>
> ଆମ୍ଭେମାନେ ଏ ଗ୍ରନ୍ଥକୁ ଅତି ସମାଦାର ସହିତ ଗ୍ରହଣ କରିଅଛୁଁ । ସମ୍ପ୍ରତି ଉତ୍କଳ ଦେଶର ହିତାକାଂକ୍ଷିମାନେ ସାଧାରଣ ବିଦ୍ୟାଲାଭ ଓ ବାଳକଙ୍କ ଶିକ୍ଷାନିମିତ୍ତ ଅନେକ ପୁସ୍ତକ ରଚନା କରୁଅଛନ୍ତି । ମାତ୍ର ଦୁଃଖର ବିଷୟ ଯେ ଦୁଇ ଏକ ଖଣ୍ଡ ପୁସ୍ତକ ଭିନ୍ନ ଆଉ ସମସ୍ତ ବଙ୍ଗ ପୁସ୍ତକର ଅବିକଳ ଅନୁବାଦ ଅଟଇ । ବଙ୍ଗଳା ସଙ୍ଗେ ଉତ୍କଳର ପ୍ରକାଶ୍ୟ ବିଭିନ୍ନତା ଅଳ୍ପ ଜଣାଯିବାରୁ ଅନୁବାଦ ପୁସ୍ତକର କର୍ତ୍ତାମାନେ ଏହିରୂପ ପୁସ୍ତକ ରଚନାର ଉପାୟ ସହଜ ଜ୍ଞାନ କରି ସେଥିରେ ପ୍ରବୃତ୍ତ ହେଉଅଛନ୍ତି ଏବଂ ବସ୍ତୁତଃ ଅବିକଳ ଅନୁବାଦ ଯେ କେତେ କଠିନ ତାହା ସେମାନେ ଜ୍ଞାନ କରନ୍ତି ନାହିଁ । ଏଥିରୁ ପ୍ରତିଫଳ ହୋଇଅଛି ଯେ ପ୍ରତିଦିନ ଉତ୍କଳ ଭାଷା ବଙ୍ଗଳାର ଭାବଭଙ୍ଗିକୁ ପ୍ରାପ୍ତ ହୋଇ ଏକ ପ୍ରକାର ନୂତନ ଭାଷା ସୃଜନା ହେଉଅଛି । ଗ୍ରନ୍ଥକର୍ତ୍ତାମାନେ ବଙ୍ଗଳା ଭାଷାରେ ଶିକ୍ଷାପ୍ରାପ୍ତ ହୋଇ ବଙ୍ଗଳା ଭାଷାଗ୍ରନ୍ଥ ଅନୁବାଦ କରିବା ସମୟରେ ଅନେକ ବଙ୍ଗଳା ଶବ୍ଦ ଓ ଭାବପ୍ରକାଶର ନିୟମକୁ ଉତ୍କଳ ମନେକରି ସେ ସମସ୍ତର ପ୍ରତିଶବ୍ଦ ଲୋଡନ୍ତି ନାହିଁ; ସୁତରାଂ ତଦ୍ଦ୍ୱାରା ଉତ୍କଳ ଭାଷାର ଅନେକ କ୍ଷତି ହେଉଅଛି । ଯେବେ ଅନୁବାଦ ନ କରି କେବଳ ବିଷୟ ଗ୍ରହଣପୂର୍ବକ ଅନୁବାଦ କର୍ତ୍ତାମାନେ ପୁସ୍ତକ ରଚନାର ପ୍ରବୃତ୍ତିକୁ ତୃପ୍ତ କରନ୍ତ ତେବେ ବହୁତ

ବଙ୍ଗଳା ମିଶ୍ରିତ ଓଡ଼ିଆ ପୁସ୍ତକ ଦେଖାଯାନ୍ତା ନାହିଁ। ଯାହା ହେଉ 'ଭ୍ରମଭଞ୍ଜନ' ଏ ଦୋଷରୁ ମୁକ୍ତି ପାଇଅଛି। କେବଳ ବଙ୍ଗ ପୁସ୍ତକର ଅନୁବାଦ ନୁହଇ ବୋଲି ଯେ ଏହା ଭଲ ହେଲା ଏମନ୍ତ ନୁହେଁ ମାତ୍ର ଗ୍ରନ୍ଥକର୍ତ୍ତା ଅବିକଳ ଅନୁବାଦକୁ ଉତ୍ତମ ଜ୍ଞାନ ନ କରି ଜାଣିଶୁଣି ତ୍ୟାଗ କରିବାର ଏ ରୂପ ଗ୍ରନ୍ଥ ହୋଇଅଛି। ଏ ପୁସ୍ତକର ଅନ୍ୟାନ୍ୟ ଯେ କିଛି ଦୋଷ ଥାଉ ଓ ଦୋଷ ଶୂନ୍ୟ ଅଟଇ ବୋଲି ଆମ୍ଭେମାନେ କହୁନାହୁଁ। ଏହାର ଗୋଟିଏ ଗୁଣ ଏହି ଯେ ଉତ୍କଳର ପୂର୍ବାପର କବିତାରୀତିକୁ ଅନୁସରଣ କରିଅଛି। ଯଦ୍ୟପି କି ଆମ୍ଭମାନଙ୍କ ମତରେ ଉତ୍କଳର ପୂର୍ବ ରଚିତ କବିତା ସମସ୍ତ ରକ୍ଷା କରିବା ଉଚିତ ଅଟଇ ଓ ସେସବୁ ନୂତନ କବିତା ଠାରୁ ମହାନ ଅଟଇ ଏବଂ ନୂତନ କବିତା ଅପେକ୍ଷା ପୁରାତନ କବିତାମାନ ଉଦ୍ଧୃତ କରି ବାଳକଙ୍କୁ ଶିକ୍ଷା ଦେବା ଉତ୍ତମ ଅଟଇ ତଥାପି ଆମ୍ଭେମାନେ ଏ ପୁସ୍ତକକୁ ବିଦ୍ୟାଳୟ ପାଠ୍ୟ ପୁସ୍ତକ କରିବାର ଅନୁରୋଧ କରୁଅଛୁଁ କାରଣ ଏପରି କବିତାମାନ ପାଠକଲେ ବାଳକମାନେ କ୍ରମେ ଉପେନ୍ଦ୍ର ଭଞ୍ଜାଦିଙ୍କର କବିତାର ମର୍ମଗ୍ରହଣ କରିବାକୁ ସକ୍ଷମ ହେବେ।[୧୫]

ଏହି ଆଲୋଚନାରେ **ଭ୍ରମଭଞ୍ଜନ** ମୌଳିକ ନା ଅନୁବାଦ, ଅନୁବାଦର ପ୍ରକୃତି ତଥା ପ୍ରାଚୀନ ସାହିତ୍ୟ ସହ ଏହାର ଘନିଷ୍ଠତା ଆଲୋଚିତ। **ଭ୍ରମଭଞ୍ଜନ** କାବ୍ୟ ହିସାବରେ କେତେ ସଫଳ ଓ କାହିଁକି ସଫଳ, ଏ ପ୍ରସଙ୍ଗ ଆଲୋଚନାଟିରେ ଆଦୌ ଉପସ୍ଥାପିତ ହୋଇନାହିଁ। ବସ୍ତୁତଃ, **ଭ୍ରମଭଞ୍ଜନ** ସାହିତ୍ୟମୂଲ୍ୟର ଉଦଘାଟନ ପ୍ରଚେଷ୍ଟା ଏହି ଆଲୋଚନାରେ ହୋଇନାହିଁ। ବିଦ୍ୟାଳୟର ପାଠ୍ୟପୁସ୍ତକ ହେବାପାଇଁ ଆଲୋଚ୍ୟ ପୁସ୍ତକର ଯୋଗ୍ୟତା କେଉଁ ପରିମାଣରେ ରହିଛି, ଏଥିରେ ତାହାହିଁ ମୁଖ୍ୟଭାବେ ଅବତାରିତ। ଆଲୋଚନାର ଉପସଂହାର ଅଂଶରେ ପ୍ରାଚୀନ କାବ୍ୟ ପ୍ରତି ତାଙ୍କର ପକ୍ଷପାତ ସ୍ପଷ୍ଟ। **ଭ୍ରମଭଞ୍ଜନ** ଆଧୁନିକ ଓଡ଼ିଆ କାବ୍ୟଧାରାର ଯେ ଉପୋଦ୍‌ଘାତ କରିଥିଲା, ଗୌରୀଶଙ୍କର ସେଥିନେଇ ସଚେତନ ମଧ୍ୟ ନ ଥିଲେ। ବଙ୍ଗଳା ଅନୁସରଣ ପ୍ରତି ବିଦ୍ୱେଷଭାବ ତାଙ୍କ ଆଲୋଚନାର ବହୁ ଅଂଶ ଅଧିକାର କରିଛି। ପ୍ରାଚୀନ କବିତା ଓ ଆଧୁନିକ କବିତା ମଧ୍ୟରେ ଥିବା ମୌଳିକ ପାର୍ଥକ୍ୟ ସମ୍ପର୍କରେ ସଚେତନତାର ଅଭାବ-ଏହି ଆଲୋଚନାର ଅନ୍ୟ ଏକ ମୌଳିକ ଦୁର୍ବଳତା। ନଟବର ସାମନ୍ତରାୟ ଗୌରୀଶଙ୍କରଙ୍କ ଅଭିମତ ଅର୍ଦ୍ଧ-ସତ୍ୟ ଓ ଅସତ୍ୟ ଉପରେ ପ୍ରତିଷ୍ଠିତ ବୋଲି କହିଛନ୍ତି।[୧୬] କିନ୍ତୁ ଏହି ଆଲୋଚନାର ସବୁଠାରୁ ବଡ କୃତିତ୍ୱ ହେଲା ପ୍ରାଚୀନ କାବ୍ୟଧାରା ଠାରୁ ବିଚ୍ଛିନ୍ନ ନ କରି ଏକ ଅଖଣ୍ଡ କାବ୍ୟଧାରା ଭିତ୍ତିରେ ଆଧୁନିକ କାବ୍ୟର ବିଚାର କରିବା ଓ ସମକାଳୀନ କବିଙ୍କ ପାଇଁ କେଉଁ ଆଦର୍ଶ ସର୍ବୋତ୍ତମ, ସେଥିନେଇ ଆପଣାର ମନୋଭାବ ସ୍ପଷ୍ଟ କରିବା। **ଉତ୍କଳ ଦୀପିକା** ପୁସ୍ତକ ସମାଲୋଚନାର ଯେଉଁ ପରମ୍ପରା ଆରମ୍ଭ କରିଥିଲା, ତାହା ଅନ୍ୟ ସମ୍ବାଦପତ୍ର ସବୁ ଅନୁସରଣ କରିଥିଲା। ବାଲେଶ୍ୱରରୁ ପ୍ରକାଶିତ **ବୋଧଦାୟିନୀର** ଭ୍ରମଭଞ୍ଜନ ଆଲୋଚନା ଏହାର ଦୃଷ୍ଟାନ୍ତ।[୧୭]

ବହୁ ଦିନ ପର୍ଯ୍ୟନ୍ତ **ଉତ୍କଳ ଦୀପିକା** ପୃଷ୍ଠାରେ ପାଠ୍ୟପୁସ୍ତକକୁ ଆଦର୍ଶ କରି ପୁସ୍ତକ ସବୁର ଆଲୋଚନା କରାଯାଇଛି। ତେଣୁ କୌଣସି ପୁସ୍ତକର ସାମଗ୍ରିକ ଆଲୋଚନା ଅପେକ୍ଷା ତା'ର ଭାଷାଗତ ଆଲୋଚନା ଉତ୍କଳ ଦୀପିକାରେ ପ୍ରମୁଖ ସ୍ଥାନ ଅଧିକାର କରିଛି। ୧୮୭୭ ମସିହା ବେଳକୁ ଗୌରୀଶଙ୍କରଙ୍କ ଆଲୋଚନାରେ ଆଭିମୁଖ୍ୟଗତ ପରିବର୍ତ୍ତନ ଆସିଛି। **ବାବାଜୀ ନାଟକର** ସମାଲୋଚନା ଏହାର ଦୃଷ୍ଟାନ୍ତ।[୮] ୧୮୯୦ ବେଳକୁ ସାହିତ୍ୟ ସମାଲୋଚନା କେବଳ ପୁସ୍ତକ ଉପରେ ମନ୍ତବ୍ୟ ପ୍ରକାଶ ନୁହେଁ, ତା'ର ଭଲ ଓ ମନ୍ଦଗୁଣର ଆଲୋଚନାର ପରିଣତ ହୋଇଇଥିଲା। ଗୌରୀଶଙ୍କରଙ୍କ ପୁସ୍ତକ ସମାଲୋଚନା ୧୮୯୦ ବେଳକୁ କିଭଳି ଉନ୍ନତ ହୋଇ ସାରିଥିଲା, ତାହାର ଉଦାହରଣ ସ୍ୱରୂପ ରାଧାନାଥଙ୍କ **ପାର୍ବତୀ** କାବ୍ୟର ଦୀର୍ଘ ସମାଲୋଚନାକୁ ଅବତାରଣା କରାଯାଉଛି:

> ଶୀର୍ଷାଙ୍କିତ ପୁସ୍ତକ ଖଣ୍ଡିଏ ଆମ୍ଭେମାନେ ବାମଣ୍ଡାର ପଣ୍ଡିତ ନୀଳମଣି ବିଦ୍ୟାରତ୍ନଙ୍କ ନିକଟରୁ ସମାଲୋଚନାର୍ଥ ପ୍ରାପ୍ତ ହୋଇଅଛୁଁ। ଏହା ଆଧୁନିକ ଉତ୍କଳୀୟ କବି ରାଧାନାଥଙ୍କ ରସମୟୀ ଲେଖନୀରୁ ବିନିଃସୃତ। ଗ୍ରନ୍ଥଖଣ୍ଡି ବାରପେଜୀ ପୃ ୧୦୩ଷ୍ଠା ଅଧିକାର କରିଥିଲେ ହେ ଅସମ୍ପୂର୍ଣ୍ଣ ଭାବରେ ରହିଅଛି ଏମନ୍ତ କି ସର୍ବଶେଷରେ ସେମିକୋଲନ ଭିନ୍ନ ପୂର୍ଣ୍ଣଚ୍ଛେଦର ଅବସ୍ଥାନ ହୋଇନାହିଁ ଏବଂ ରତ୍ନପୁର ରାଜଜେମା ଅନ୍ନପୁର୍ଣ୍ଣାଙ୍କ ଉକ୍ତି ହେଉଁ ହେଉଁ ବନ୍ଦ ରହିଅଛି। ଏପରି ଅବସ୍ଥାରେ ପୁସ୍ତକସମାଲୋଚନା କରିବା ବିଡମ୍ବନା ମାତ୍ର। ଭୂମିକାରୁ ଜଣାଯାଏ ରାଧାନାଥ ବାବୁ ଯେତିକି ରଚନା କରିଥିଲେ ସେତିକି ପ୍ରକାଶିତ ହୋଇଅଛି। ପୁତ୍ରର ଅସୁସ୍ଥତା ହେତୁ ସେ ନିତାନ୍ତ ଦୁଃଖିତ ଥିବାରୁ ଅବିଶିଷ୍ଟାଂଶ ଶୀଘ୍ର ରଚିତ ହେବାର ଆଶା ନାହିଁ। ଯେତକ ରଚିତ ହୋଇଅଛି ତହିଁରେ "କବିଙ୍କର କାରିଗିରିର ଯଥେଷ୍ଟ ପରିଚୟ ମିଳୁଥିବାରୁ ଅପାତତଃ ଅସମ୍ପୂର୍ଣ୍ଣ ଭାବରେ" ପୁସ୍ତକ ଖଣ୍ଡି ପ୍ରକାଶିତ କରିଥିବାର ପଣ୍ଡିତ ମହାଶୟ ବ୍ୟକ୍ତ କରି ଏଥିରୁ ବୋଧହୁଏ କାରିଗିରି କିପରି ହୋଇଅଛି କେବଳ ସେହି ସମ୍ବନ୍ଧରେ ଆମ୍ଭମାନଙ୍କର ମତାମତ ଜାଣିବା ପଣ୍ଡିତ ମହାଶୟଙ୍କ ଅଭିପ୍ରାୟ କିନ୍ତୁ କାରିଗିରି ମଧ୍ୟରେ ବିଷୟ ଓ ରଚନା ଉଭୟ ଆସୁଥିବାରୁ ସମୁଦାୟ ଆଲୋଚନା କରିବା ଆବଶ୍ୟକ ହେଲା।
>
> ବିଷୟ : ଉତ୍କଳର ସୁବିଖ୍ୟାତ ସମରପ୍ରିୟ ପରାକ୍ରମଶାଳୀ ନୃପତି ଗଙ୍ଗେଶ୍ୱର ଦେବ ସ୍ୱୀୟ କନ୍ୟା ସହବାସ ଜନିତ ଯେଉଁ ମହାପାପରେ ଲିପ୍ତ ହୋଇଥିଲେ ସେହି ବିଷୟ ଘେନି ଏ ବିଷୟ ଲିଖିତ ହୋଇଅଛି। ଗଙ୍ଗାବଂଶୀୟ ରାଜାଙ୍କ ପକ୍ଷେ ଏହା ଗୌରବର ବିଷୟ ନୁହଇ କିମ୍ବା ସେହିଭଳି ବିଷୟ ଚିରସ୍ମରଣୀୟ ହୋଇ ରହିବାର ଉପଯୁକ୍ତ ନୁହଇ। ରାଧାନାଥ ବାବୁ କେଉଁ ଉଦ୍ଦେଶ୍ୟ ସାଧନାର୍ଥ ବୀରପସୂ ଓଡ଼ିଶାର ବିସ୍ତୀର୍ଣ୍ଣ ଇତିହାସରୁ ଏହି ଜଘନ୍ୟ

ପାପମୟ ବିଷୟ ଉଦ୍ଧାର କରି କବିତାମୟୀ ପୁସ୍ତିକାରେ ଲିପିବଦ୍ଧ କରିବାକୁ ପ୍ରୟାସ ପାଇଅଛନ୍ତି ତାହା ଆମ୍ଭେମାନେ ଅନୁମାନ ସୁଦ୍ଧା କରି ପାରୁନାହୁଁ, ଆମ୍ଭେମାନେ କେବଳ ଏତିକି କହିବୁଁ ଯେ ଏଭଳି ବିଷୟ ଲିପିବଦ୍ଧ କରିବାକୁ ଯାଇ ତାଙ୍କର ସୁନ୍ଦର ଲେଖନୀ କଳଙ୍କିତ ହୋଇଅଛି।

ରଚନା : ରାଧାନାଥ ବାବୁଙ୍କର ରଚନା ଶକ୍ତିର ପରିଚୟ ଆମ୍ଭେମାନେ ତାଙ୍କ ପ୍ରଣୀତ ପୂର୍ବ ପୂର୍ବ କବିତାମୟୀ ପୁସ୍ତିକାରୁ ପାଇଅଛୁଁ ଏବଂ ପାର୍ବତୀରୁ ତାହା କେବଳ ଦୃଢ଼ୀଭୂତ ହୋଇଅଛି। ପାର୍ବତୀର ରଚନା ବଡ ସୁନ୍ଦର ହୋଇଅଛି। ପୁଣି ସ୍ଥାନେ ସ୍ଥାନେ କବିତା ଏତେ ସୁକୋମଳ ଏବଂ ରମଣୀୟ ହୋଇଅଛି ଯେ ବାସ୍ତବରେ ପାଠକେ ତହିଁରେ ବିମୋହିତ ହୋଇଯିବେ। ଏଭଳି ରଚନାକୁ ବିଷୟଟି ବଡ ନିକୃଷ୍ଟ ଥିବାର ଦେଖି ବାସ୍ତବରେ ଆମ୍ଭମାନଙ୍କର ଦୁଃଖ ହୋଇଅଛି। ଉପମା ଗୁଡ଼ିକ ଯଥାଯୋଗ୍ୟ ଏବଂ ସ୍ଥାନେ ସ୍ଥାନେ ଅତୀବ ଉପଯୁକ୍ତ ହୋଇ ମନୋହରଣ କରୁଅଛି। ଗୁଣଭାଗ ଏଥିରେ ଏତେ ଅଧିକ ଯେ ଦୋଷଭାଗ ଧର୍ତ୍ତବ୍ୟ ନୁହଇ। କେବଳ ସୁନ୍ଦର ଶୁକ୍ଳ ବସ୍ତ୍ରରେ ଠାବେ ଠାବେ ଇଷତ୍ ମଶି ଦାଗ ସୁଦ୍ଧା ବାରି ହୋଇ ପଡିଲା ପରି ଜଣା ଯାଉଥିବାରୁ ତହିଁ ମଧ୍ୟରୁ କେତେ ଗୁଡ଼ିକର ଆମ୍ଭେମାନେ ଉଲ୍ଲେଖ କଲୁଁ, ଯଥା: "କେଭେ ପୁଷ୍ପେ କେଭେ ପର୍ଣ୍ଣେ" ଏ ସ୍ଥାନରେ "କେଭେ" ସ୍ଥାନରେ 'କେବେ' ହେବା ଉଚିତ। "ଆନ କଥା ଥାଉ ଯତି ଜନମନ ହୋଇଅଛି ଆଜ ଅଥୟ, ଦେଖୁଥିଲେ ଯେହୁ ବ୍ରହ୍ମମୟ ବିଶ୍ୱ ଦେଖନ୍ତି ସେ ନାରୀମୟ" -କବିମାନେ ସୁନ୍ଦରୀଙ୍କି ଦେଖି ଯତିମନ ଟଳିବାର ବର୍ଣ୍ଣନ କରିଅଛନ୍ତି ମାତ୍ର ଏତେ ସରିକି ଯିବାଟା ଅନ୍ୟାୟ। "ମଦନ ଶତଘ୍ନୀ ଦ୍ୱିଜସୀମନ୍ତିନୀ" ପଢ଼ି ଭଟ୍ଟିକାବ୍ୟ ମନେ ପଡ଼ିଗଲା। ଏହା ସୁରୁଚି ସଙ୍ଗତ କିମ୍ୱା ସରଳ ପାଠ୍ୟ ହୋଇନାହିଁ। "ସବଳେ ରାସିନୀ ନୀତି ଆଚରଣ ଦାଶନୀ ନୀତି ଦୁର୍ବଳେ।" 'ରାସନୀ' ଓ 'ଦାଶନୀ' ଶବ୍ଦ ବ୍ୟାକରଣ ସଙ୍ଗତ ବୋଲି ଆମ୍ଭମାନଙ୍କୁ ସନ୍ଦେହ ହେଉଅଛି। 'ମାରିବ ଚିଲା' ନିତାନ୍ତ ଗ୍ରାମ୍ୟଭାଷା। ଏଭଳି ଗ୍ରାମ୍ୟ ପ୍ରୟୋଗ ଏ ପୁସ୍ତକର ଅନେକ ସ୍ଥଳରେ ଦେଖାଯାଏ। ସ୍ଥାନେ ସ୍ଥାନେ ଭାବମାନ ଟିକିଏ ଜଟିଳ ହୋଇଯାଇଅଛି ଏବଂ ଏକ ଏକ ସ୍ଥାନରେ ଭାବ ଗ୍ରହଣ କରିବା କଠିନ ହୋଇଅଛି। ଏସବୁ ଦୋଷ ଛାଡ଼ି ଦେଲେ ବାକ୍ୟ ବିନ୍ୟାସ କରିବାରେ ରାଧାନାଥ ବାବୁ ଏ ଗ୍ରନ୍ଥରେ କାରିଗିରିର ଉତ୍ତମ ପରିଚୟ ପ୍ରଦାନ କରି ଅଛନ୍ତି। ଗ୍ରନ୍ଥ ଖଣ୍ଡିକ ଶେଷ ନ ହେଲେ ବିଷୟ ବିକାଶରେ କାରିଗିରି କେତେଦୂର ହୋଇଅଛି ବୋଲାଯାଇ ନ ପାରେ। କୌଶଲ୍ୟାର ପ୍ରେତଆତ୍ମା ଛାୟାମୟ ରୂପ ଧାରଣ କରି ପାର୍ବତୀଙ୍କ ସମ୍ମୁଖରେ ଉପସ୍ଥିତ ହୋଇ ନିଜ କାହାଣୀ

ବ୍ୟକ୍ତ କରିବା ନିହାତି ଅସ୍ୱାଭାବିକ ଓ ଅସମ୍ଭବ ହୋଇଅଛି। ଯେବେ ପାର୍ବତୀ ଆଗହୁଁ ରାଜାଙ୍କର ଏତାଦୃଶ ପାପକଥା ଜାଣିଥାନ୍ତେ ତାହୋହେଲେ ଏହା ନିତାନ୍ତ ସ୍ୱାଭାବିକ ଓ ସମ୍ଭବଯୋଗ୍ୟ ହୋଇଥାନ୍ତା। ଏଭଳି ବର୍ଣ୍ଣନା ପଢ଼ି ସେକ୍ଷପିୟରଙ୍କ 'ହାମଲେଟ' ମନେ ପଡ଼ିଗଲା। ହାମଲେଟର ମୃତ ପିତା ଭୂତ ରୂପେ ହାମଲେଟ ସମକ୍ଷରେ ଆବିର୍ଭୂତ ହୋଇ ହାମଲେଟ ଯେ ବିଷୟରେ ଚିନ୍ତାନ୍ୱିତ ଓ ଚେଷ୍ଟିତ ସେହି ବିଷୟରେ କଥା କହିବା ଅତୀବ ସ୍ୱାଭାବିକ ଓ ସମ୍ଭବଯୋଗ୍ୟ ହୋଇଅଛି ମାତ୍ର ପାର୍ବତୀରେ ତଦ୍‌ବିପରୀତ। ତେବେ ଜଗନ୍ନାଥଙ୍କ ମାୟାରେ ସବୁ ହୋଇପାରେ। ତଥାପି ଏଭଳି ଅସମ୍ଭବ ଓ ଅସ୍ୱାଭାବିକ ଘଟନା ଘଟାଇବାରେ ଜଗନ୍ନାଥଙ୍କର ବିଶେଷ କୌଣସି ଉଦ୍ଦେଶ୍ୟ ସଫଳ ହେଉ ନଥିବାରୁ ତାହା ସଙ୍ଗତ ବୋଲି ବୋଲାଯାଇ ନ ପାରେ। ପାର୍ବତୀ ଏ ବିଷୟ ଆଗହୁଁ ଜାଣିଥିଲେ ଜଗନ୍ନାଥଙ୍କ ଆଜ୍ଞା ଓ ଏ ରୂପ ବର୍ଣ୍ଣନା ଅତୀବ ସ୍ୱାଭାବିକ ଓ ରମଣୀୟ ହୋଇଥାନ୍ତା। ପାର୍ବତୀର ପ୍ରଧାନ ବିଷୟ ରାଜାଙ୍କ ନିଜ ଦୁହିତା ସହିତ ସହବାସ। ମାତ୍ର କବି ପାର୍ବତୀର ଏହି ଅଂଶ କୌଶଲ୍ୟାର କଥାରେ ଭଲ ରୂପେ ଚିତ୍ରିତ କରିପାରି ନାହାନ୍ତି। ଏମନ୍ତ କି ରାଜା ପ୍ରଥମେ ଆସି କୌଶଲ୍ୟାକୁ ପ୍ରଶ୍ନ କରିବା ଠାରୁ "ପାପ ପରିପାକ" ଯାଏ ଘଟନାବଳୀ ପରସ୍ପର ନିତାନ୍ତ ବିରୋଧୀ ହୋଇ ପଡିଅଛି। କବିତାର ପ୍ରଧାନ ବିଷୟ ଏପରି ଦୋଷରେ ଦୂଷିତ ହେବା ମହତ୍ ଦୋଷ। ଏହି ଦୁଇ ବିଷୟରେ କବିଙ୍କର "କାରିଗିରି" ଆମ୍ଭମାନଙ୍କୁ ଭଲ ଲାଗିନାହିଁ। ଏ ଛଡ଼ା ପ୍ରାକୃତିକ ବର୍ଣ୍ଣନା ଇତ୍ୟାଦିରେ କବିଙ୍କର କାରିଗିରି ଉତ୍ତମ ହୋଇଅଛି।

ଆମ୍ଭେମାନେ ଉପରେ ଯେଉଁ ଦୋଷସବୁ ଦେଖାଇଲୁଁ ତାହା କେବଳ ଉତ୍କଳ ଶିକ୍ଷା ବିଭାଗର ଶୀର୍ଷ ସ୍ଥାନୀୟ କବିଙ୍କ ଉଚିତ ନୁହେଁ ବୋଲି ବ୍ୟକ୍ତ କଲୁଁ। ଏହାଙ୍କ ଲେଖା ଯେପରି ବିଶଦ ଓ ରସମୟ ତହିଁକି ଉପରୋକ୍ତ ଦୋଷମାନେ ନ ଥିଲେ 'ପାର୍ବତୀ' ଉତ୍କଳ ସାହିତ୍ୟର ଗୋଟିଏ ଅତି ଉତ୍କୃଷ୍ଟ ଗ୍ରନ୍ଥ ହୋଇଥାନ୍ତା ସନ୍ଦେହ ନାହିଁ।[୧୯]

**ଭ୍ରମଭଞ୍ଜନ**ର ସମାଲୋଚନା ଠାରୁ **ପାର୍ବତୀ**ର ସମାଲୋଚନା ପର୍ଯ୍ୟନ୍ତ ସାହିତ୍ୟ-ସମୀକ୍ଷକ ଗୌରୀଶଙ୍କରଙ୍କ ପାଇଁ ଏକ ଦୀର୍ଘ ଯାତ୍ରାପଥ। ଏହି ରାସ୍ତାକୁ ସେ ନିଜେ ତିଆରି କରିଛନ୍ତି ଓ ଭବିଷ୍ୟତ ପାଇଁ ପରିଷ୍କାର ମଧ୍ୟ ରଖି ଯାଇଛନ୍ତି। ଛାନ୍ଦ, ଚଉପଦୀ ଭିତର ଦେଇ ଆପଣା ସାହିତ୍ୟପ୍ରତ୍ୟୟର ଭୂମି ତିଆରି କରିଥିବା ଗୌରୀଶଙ୍କର ଆଧୁନିକ ସାହିତ୍ୟର କାରିଗରୀ ସମ୍ପର୍କରେ କେତେ ସଚେତନ ହୋଇ ପାରିଥିଲେ, ତାହାର ନିଦର୍ଶନ ସ୍ୱରୂପ ଏହି ଦୀର୍ଘ ଆଲୋଚନା ସମ୍ପୂର୍ଣ୍ଣ ଓ ଅବିକଳ ଭାବେ ଉଦ୍ଧୃତ। ଅସମ୍ପୂର୍ଣ୍ଣ କାବ୍ୟ ଆଲୋଚନାରେ ତା'ର ପ୍ରକାଶଭଙ୍ଗୀହିଁ ମୁଖ୍ୟ ଆଲୋଚ୍ୟ। ପୁଣି କୌଣସି କାବ୍ୟର ପ୍ରକାଶଭଙ୍ଗୀ (କାରିଗରୀ) ଆଲୋଚନା ଭିତରେ, ତାହାର ବିଷୟ ଓ ରଚନା ଶୈଳୀ, ଉଭୟ ଅନ୍ତର୍ଭୁକ୍ତ-

ଗୌରୀଶଙ୍କରଙ୍କର ଏଭଳି ସଚେତନତା କାଳ ଦୃଷ୍ଟିରୁ ଦେଖିଲେ ନୂତନ। ଅବଶ୍ୟ ଜାତୀୟପ୍ରତିକୁ ସେ ସାହିତ୍ୟ ସମାଲୋଚନା ଠାରୁ ବିଚ୍ଛିନ୍ନ କରି ପାରିନାହାନ୍ତି ତଥାପି ଆଲୋଚନାର ଶେଷକୁ ବିଷୟ ସଂଯୋଜନାରେ ରାଧାନାଥଙ୍କ ଦୁର୍ବଳତା ଦେଖାଇବାକୁ ସେ ଚେଷ୍ଟା କରିଛନ୍ତି। **ହାମଲେଟ** ନାଟକର ପ୍ରେତ ଓ **ପାର୍ବତୀ**ର ପ୍ରେତ ଚରିତ୍ର ମଧ୍ୟରେ ଥିବା ପାର୍ଥକ୍ୟ ତାଙ୍କ ଆଲୋଚନାରେ ସ୍ପଷ୍ଟତଃ ପ୍ରଦର୍ଶିତ। ହାମଲେଟର ପ୍ରେତ ଚରିତ୍ରର ସ୍ୱାଭବିକତା କିଭଳି **ପାର୍ବତୀ**ରେ ଥିବା ପ୍ରେତ ଚରିତ୍ରରେ ନାହିଁ, ତୁଳନାତ୍ମକ ରୀତିରେ ତାହା ଗୌରୀଶଙ୍କର ଦେଖାଇବାକୁ ଚେଷ୍ଟା କରିଛନ୍ତି। **ଭ୍ରମଭଞ୍ଜନ**ର ଆଲୋଚନା ଅନୁବାଦର ଆଦର୍ଶ ଓ ଭାଷାର ଯଥାଯଥ ପ୍ରୟୋଗ ମଧ୍ୟରେ ସୀମାବଦ୍ଧ ଥିଲା ବେଳେ ପାର୍ବତୀର ଆଲୋଚନା ସଂପୃକ୍ତ କାବ୍ୟର ବିଭିନ୍ନ ଦିଗନ୍ତକୁ କେବଳ ସ୍ପର୍ଶ କରିବାକୁ ଚାହିଁ ନାହିଁ, କାବ୍ୟ ସମ୍ପର୍କରେ କେତେକ ମୌଳିକ ପ୍ରଶ୍ନର ମଧ୍ୟ ସମ୍ମୁଖୀନ ହୋଇଛି।

ଉପରେ ଅବତାରଣା କରାଯାଇଥିବା ଆଲୋଚନାଗୁଡ଼ିକ ପୁସ୍ତକସମାଲୋଚନା ବା ବୁକ୍ ରିଭ୍ୟୁ। ସାହିତ୍ୟସମୀକ୍ଷା କ୍ଷେତ୍ରରେ ବୁକ୍ ରିଭ୍ୟୁ ଈଷତ୍ ନିନ୍ଦା ଅର୍ଥରେ ପ୍ରାୟତଃ ବ୍ୟବହୃତ। ପୁସ୍ତକ ସମାଲୋଚନାର ଏକ ଉଚ୍ଚାଙ୍ଗ ରୂପ ରହିଛି ଓ ସାହିତ୍ୟସମାଲୋଚନାର ଏକ ରୂପଭେଦ ଅକାରରେ ତାହା ମଧ୍ୟ କେତେକ ତଦ୍‌ବିଦମାନଙ୍କ ଦ୍ୱାରା ସ୍ୱୀକୃତ। [୨୦] ତୁଚ୍ଛାର୍ଥରେ ବୁକ୍ ରିଭ୍ୟୁ ସମାଲୋଚ୍ୟ ପୁସ୍ତକର ବିଷୟବସ୍ତୁର ସଂକ୍ଷିପ୍ତ ବା ତରଳୀକୃତ ବର୍ଣ୍ଣନା-ନିଛକ ପାରାଫ୍ରେଜ। କଥାବସ୍ତୁର ସରଳୀକରଣ ଓ କାହାଣୀର ପୁନରାବୃତ୍ତି ଏହାର ଏକମାତ୍ର ଲକ୍ଷ୍ୟ। ବର୍ଣ୍ଣନା-ପ୍ରଧାନ ପୁସ୍ତକସମାଲୋଚନାକୁ ଯଥାର୍ଥ ସାହିତ୍ୟସମାଲୋଚନା କୁହାଯାଇ ପାରିବନାହିଁ-ସାହିତ୍ୟଚର୍ଚ୍ଚାର ଅସ୍ପଷ୍ଟ ବଳୟର ତାହା ଅନ୍ତର୍ଭୁକ୍ତ। ଗୌରୀଶଙ୍କରଙ୍କ ପ୍ରାଥମିକ ଅବସ୍ଥାର ବୁକ ରିଭ୍ୟୁ ଏହି ସାହିତ୍ୟଚର୍ଚ୍ଚାର ଅନ୍ତର୍ଭୁକ୍ତ। **ପାର୍ବତୀ** କାବ୍ୟର ଆଲୋଚନାରେ ସାମ୍ବାଦିକ ଗୌରୀଶଙ୍କର ସାହିତ୍ୟ-ସମୀକ୍ଷକ ହେବା ପାଇଁ ଉଦ୍ୟମ କରିଛନ୍ତି। ଏହି ଉଦ୍ୟମ ଓଡ଼ିଆ ସାହିତ୍ୟ-ଚର୍ଚ୍ଚାର ଦିଗ୍‌ବଳୟକୁ ସଂପ୍ରସାରିତ କରିଛି।

## ଚାରି

ଉନବିଂଶ ଶତକର ଦ୍ୱିତୀୟାର୍ଦ୍ଧରେ ଶାସକ ଇଂରେଜମାନଙ୍କର ଜୀବନଯାତ୍ରା ସଂପର୍କରେ ଆସି ଆମ ଭିତରେ ଗ୍ଲାନି ଓ ଆତ୍ମ-ହୀନମଣ୍ୟ ଭାବ ସୃଷ୍ଟି ହୋଇଥିଲା। ଆମର ଭଲ ଲାଗିବା ନ ଲାଗିବା ଠାରୁ ଆରମ୍ଭ କରି ଅଧାସ-ଦୃଷ୍ଟି ପର୍ଯ୍ୟନ୍ତ-ସବୁ କିଛିକୁ ଆମେ ପୁଣି ଥରେ ପରୀକ୍ଷା କରିଥିଲୁ, ଶାସକମାନଙ୍କ ମାନଦଣ୍ଡରେ ତଉଲିଥିଲୁ। 'ରୁଚି' ସଂପର୍କିତ ଆଲୋଚନା ସେହି ଆତ୍ମ-ସଚେତନତାର ଫଳ। ଔପନିବେଶିକ ଶାସନରେ ରହି ଆମେ ନିଜର କଳା, ସଂସ୍କୃତି ଓ ନୀତିବୋଧକୁ କିପରି ଘୃଣା କରିବାକୁ ଆରମ୍ଭ କରିଥିଲୁ 'ରୁଚି' ସଂପର୍କିତ ନାନା ଆଲୋଚନା ତାହାର ସଂକେତ । **ଉତ୍କଳ ଦୀପିକା** ପୃଷ୍ଠାରେ ପ୍ରକାଶିତ କେତେକ ଆଲୋଚନା ଓ ପ୍ରାଥମିକ ମନ୍ତବ୍ୟରୁ ଗୌରୀଶଙ୍କରଙ୍କର ଏହି ବିଷୟ ସଂପର୍କରେ ଥିବା ଦୃଷ୍ଟିକୋଣର ପରିଚୟ ମିଳିଥାଏ।

୧୮୬୯ ମସିହା ଏପ୍ରିଲ ଚବିଶ ତାରିଖରେ 'ଚମତ୍କାର ଉତ୍କଳ କବିତା' ଶୀର୍ଷକରେ ଗୌରୀଶଙ୍କର ଅନ୍ୟତ୍ର ପ୍ରକାଶିତ ଏକ ପ୍ରକୃତିବର୍ଣ୍ଣନାତ୍ମକ କବିତାରୁ ଚାରୋଟି ପାଦ ଉଦ୍ଧାର କରି, ସେହି ପତ୍ରିକାର ସଂପାଦକ ଭଞ୍ଜଙ୍କୁ ଯେଭଳି ନିନ୍ଦା କରିଥିଲେ, ତା'ର ପ୍ରତ୍ୟୁତ୍ତର ଦେଇଛନ୍ତି। ମେ ମାସ ପନ୍ଦର ତାରିଖ 'ସପ୍ତାହିକ ସମ୍ବାଦ'ରେ ପୁନର୍ବାର ଏଇ ପ୍ରସଙ୍ଗ ଅବତାରଣା କରି ସେ ମନ୍ତବ୍ୟ ଦେଇଛନ୍ତି: "ସମସ୍ତ ଲୋକର ରଚି ଏକପ୍ରକାର ନୁହଇ।"[୨୧] ଭଞ୍ଜଙ୍କ କବିତାକୁ ଅନ୍ୟମାନେ ଆଦର ନ କରିବାର କାରଣ ସେମାନଙ୍କର ରୁଚିଭିନ୍ନତା। ଗୌରୀଶଙ୍କର ରୁଚିକୁ ଦେଶ କାଳ ସାପେକ୍ଷ ବୋଲି ଗ୍ରହଣ କରିଛନ୍ତି। ଯେଉଁମାନେ ଓଡ଼ିଶାର ପାଣି ପବନରେ ବଢ଼ି ନାହାନ୍ତି ବା ଭଞ୍ଜ ସାହିତ୍ୟ ସହ ଏକାତ୍ମ ହୋଇ ପାରିନାହାନ୍ତି, ସେମାନେ ଯେ ଭଞ୍ଜସାହିତ୍ୟର କାବ୍ୟସୌନ୍ଦର୍ଯ୍ୟ ଗ୍ରହଣରେ ଅସମର୍ଥ ହେବେ-ତାଙ୍କ ଦୃଷ୍ଟିରେ ଏଥିରେ କୌଣସି ବୈଚିତ୍ର୍ୟ ନାହିଁ।

ରୁଚିକୁ ବ୍ୟକ୍ତି, ସମାଜ ଓ କାଳ ସାପେକ୍ଷ ବୋଲି ଗ୍ରହଣ କଲେ ବି ଏଥିରେ ସେ ମାର୍ଜିତ-ଅମାର୍ଜିତ, ଉଚ୍ଚ-ନୀଚ ଭେଦ ସ୍ୱୀକାର କରିଛନ୍ତି। ସାମାଜିକ ବର୍ଗ ଅନୁସାରେ ଏହାର ଭେଦଭାବ। ସାମାଜିକ ସ୍ତରଭେଦରେ ଉଚ୍ଚତମ ପାହାଚରେ ଥିବା ଲୋକମାନଙ୍କ ରୁଚି ସବୁଠାରୁ ମାର୍ଜିତ-ଏହିଭଳି ଏକ ଅନ୍ତର୍ନିହିତ ଧାରଣାରୁ ଗୌରୀଶଙ୍କର ମୁକ୍ତ ନ ଥିଲେ। ୧୮୭୮ ମସିହା ମାର୍ଚ୍ଚ ମାସ ନଅ ତାରିଖରେ ଏକ ଦେଶୀୟ ମଜଲିସର ବର୍ଣ୍ଣନା ପ୍ରସଙ୍ଗରୁ ତାଙ୍କର ଏଭଳି ଧାରଣା ସ୍ପଷ୍ଟ। ଇଂରେଜମାନେ ଥିଲେ ଶାସକ; ତେଣୁ ସେମାନଙ୍କ ରୁଚି ସବୁଠାରୁ ମାର୍ଜିତ ଏହିଭଳି ଏକ ଧାରଣା ତାଙ୍କ ମନ୍ତବ୍ୟରୁ ସୃଷ୍ଟି ହୁଏ:

> ଅଭିନୟ ଶେଷରେ ସାହେବ ମହୋଦୟ ଓ ଅନ୍ୟାନ୍ୟ ସାହେବ ମେମେମାନେ ଜଳପାନାଦି କରି ଅଭିନୟ ଇତ୍ୟାଦିରେ ଅତି ସନ୍ତୁଷ୍ଟ ହୋଇଥିବାର କହି ପ୍ରସ୍ଥାନ କଲେ। ଦୁଇ ଏକ ବଙ୍ଗଦେଶୀୟ ଦର୍ଶକ ଅଭିନୟକୁ ତୁଚ୍ଛ କରି ନିନ୍ଦା କଲେ ମାତ୍ର ସେମାନେ ବୃଥା ଅହଙ୍କାରୀ ଓ ଅନ୍ୟର କାର୍ଯ୍ୟକୁ ନିନ୍ଦା କରିବାର ସେମାନଙ୍କ ସ୍ୱଭାବ ବୋଲିବାକୁ ହେବ କାରଣ ଅନ୍ୟ ବଙ୍ଗାଳିଙ୍କ ମୁଖରୁ ପ୍ରଶଂସା ଶୁଣିଥିଲୁଁ। ଯେଉଁ ମହାପୁରୁଷଙ୍କ ପାଇଁ ଏତେ କାଣ୍ଡ ହୋଇଥିଲା ସେ ଯେବେ ଆନ୍ତରିକ ସନ୍ତୋଷ ପ୍ରକାଶ କଲେ ତେବେ ସେପରି ନିନ୍ଦୁକ ଲୋକକୁ କିଏ ପଚାରେ।[୨୨]

ରୁଚି ବିଚାରରେ ଉଚ୍ଚ-ନୀଚ ଓ ମାର୍ଜିତ-ଅମାର୍ଜିତ ଭେଦକୁ ସ୍ୱୀକାର କରିନେବା ଦ୍ୱାରା ରୁଚି କିଭଳି ମାର୍ଜିତ ହୋଇପାରେ ସେ ପ୍ରସଙ୍ଗ ମଧ୍ୟ **ଉତ୍କଳ ଦୀପିକା** ପୃଷ୍ଠାରେ ବାରମ୍ବାର ଅବତାରଣା କରାଯାଇଛି। ରୁଚି ବ୍ୟକ୍ତିର ସହଜାତ ମଧ୍ୟ ନୁହେଁ। ଅଭ୍ୟାସ ଓ ଅନୁଶୀଳନ ଫଳରେ ତାହାର ଉଦ୍‌ଭବ-ଚିତ୍ତାକର୍ଷଣରୁ ଏହାର ସୃଷ୍ଟି। ସାହିତ୍ୟ ସହ ରୁଚିର ସଂପର୍କ ଘନିଷ୍ଠ। ସାହିତ୍ୟର ସୃଷ୍ଟିଠାରୁ ଉପଭୋଗ ପର୍ଯ୍ୟନ୍ତ ସର୍ବତ୍ର ସାହିତ୍ୟ ସହ ରୁଚିର ସଂପର୍କ ଅଚ୍ଛେଦ୍ୟ। ସାହିତ୍ୟ ପୁସ୍ତକ ତଥା ସାହିତ୍ୟପତ୍ର ରୁଚି ସୃଷ୍ଟି କରେ ଓ ତାହାକୁ ସୁମାର୍ଜିତ ମଧ୍ୟ କରେ।

ଉତ୍କଳ ଦର୍ପଣ ମାସିକ ସାହିତ୍ୟପତ୍ରିକାର ଆଲୋଚନା ପ୍ରସଙ୍ଗରେ ଏଭଳି ମତାମତ ପ୍ରଦତ୍ତ:

> ଯେବେ ଏହି ସବୁ ପତ୍ରିକା ସମସ୍ତେ ଏକାବାଟରେ ନ ଚାଲି ସାହିତ୍ୟର ଉତ୍କର୍ଷ ପ୍ରତି କେହି କେହି ଦୃଷ୍ଟି ରଖନ୍ତେ ତେବେ ଅନୁମାନ ହୁଅଇ ମାସିକ ପତ୍ରିକାଠାରୁ ଏସବୁ ପତ୍ରିକା ଦ୍ୱାରା ଅଧିକ ଉପକାର ହେବ। କାରଣ ତହିଁରେ ଉଭୟ ପ୍ରକାର ରୁଚି ଜାତ ଓ କ୍ରମଶଃ ସୁମାର୍ଜିତ ହେବାର ସମ୍ଭାବନା ।[୨୩]

୧୮୭୫ ମସିହା ଜାନୁଆରୀ ମାସ ତିରିଶ ତାରିଖରେ'ଓଡ଼ିଆଙ୍କ ରୁଚି' ଶିରୋନାମାରେ ଓଡ଼ିଆମାନଙ୍କ ରୁଚିର ସ୍ଥୂଳତା ସଂପର୍କରେ ସେ ଆଲୋକପାତ କରିଛନ୍ତି। ତାଙ୍କ ମତରେ ଓଡ଼ିଶାର ଭବିଷ୍ୟତ ବିକାଶ ସହ ରୁଚିସଂସ୍କାରର ଘନିଷ୍ଠ ସଂପର୍କ ରହିଛି :

> ଆପଣା ଆପଣା ରୁଚିକୁ ଯେତେଦିନ ଏଠାଲୋକେ ଉନ୍ନତ କରିବାକୁ ଚେଷ୍ଟା କରି ନାହାନ୍ତି ତେତେଦିନଯାଏ ଏଠାଲୋକଙ୍କୁ ଦୁରବସ୍ଥା ମୋଚନ ହେବାର ଆଶା ବିଫଳ ଅଟଇ। ଅତଏବ ଆମ୍ଭେମାନେ ଏଠାରେ ଭଦ୍ରମଣ୍ଡଳୀଙ୍କୁ ଅନୁରୋଧ କରୁଅଛୁ ଯେ ରୁଚିପରିବର୍ତ୍ତନ ପକ୍ଷରେ ଯତ୍ନବାନ ହେଉନ୍ତୁ।[୨୪]

ଓଡ଼ିଆମାନେ ସଭ୍ୟ ଓ ଶିକ୍ଷିତ ହୋଇ ନ ଥିବାରୁହିଁ ସେମାନଙ୍କର ରୁଚି ଅମାର୍ଜିତ। ପରେ କବି ମଧୁସୂଦନଙ୍କ ଠାରୁ ଆରମ୍ଭ କରି ବହୁ କବି ଓ ପ୍ରାବନ୍ଧିକ ଓଡ଼ିଆମାନଙ୍କର 'ରୁଚି' ଆଲୋଚନା ପ୍ରସଙ୍ଗରେ ତା'ର ମାର୍ଜନା ଉପରେ ଗୁରୁତ୍ୱ ଆରୋପ କରିଛନ୍ତି। ବସ୍ତୁତଃ ଗୌରୀଶଙ୍କରଙ୍କର ରୁଚି-ପ୍ରତ୍ୟୟ ତତ୍‌କାଳୀନ 'ରୁଚି' ସମ୍ପର୍କିତ ଧାରଣା ଠାରୁ ଦୂରବର୍ତ୍ତୀ ନ ଥିଲା। କାରଣ ବ୍ୟକ୍ତି, ଜାତି ଓ କାଳ ଅନୁସାରେ ରୁଚି ଭିନ୍ନ ହେଲେବି ଏଗୁଡ଼ିକ ଭିତରେ ଗୁଣଗତ ତାରତମ୍ୟ ଓ ମାର୍ଜିତ ଅମାର୍ଜିତ ଭେଦ କଳ୍ପନାକୁ ସେ ଗ୍ରହଣ କରିଛନ୍ତି ଓ ଏହା ସହଜାତ ନୁହେ ବୋଲି ସ୍ପଷ୍ଟ ସ୍ୱୀକାର କରିଛନ୍ତି। ସାମାଜିକ ସ୍ତର ଅନୁସାରେ 'ରୁଚି' ର ସ୍ତରଭେଦ ରହିଛି। ତେଣୁ ଉଚ୍ଚବର୍ଗର ଅନୁସରଣରେ ନିମ୍ନବର୍ଗର ରୁଚି ପରିବର୍ତ୍ତନକୁ ସେ ସ୍ୱାଗତ କରିଛନ୍ତି। ରୁଚି ସାମାଜିକ ଓ ସାଂସ୍କୃତିକ କର୍ତ୍ତୃତ୍ୱର (hegemony) ଅଭିବ୍ୟକ୍ତି। ଗୌରୀଶଙ୍କର ଉଚ୍ଚବର୍ଗର ସାମାଜିକ ଓ ସାଂସ୍କୃତିକ କର୍ତ୍ତୃତ୍ୱକୁ ସାଧାରଣ ବର୍ଗ ପାଇଁ ଅତ୍ୟାବଶ୍ୟକ ବିଚାର କରୁଥିବାରୁ ସେମାନଙ୍କର 'ରୁଚି'କୁ ସଂସ୍କୃତିର ପ୍ରତୀକ ରୂପରେ ଗ୍ରହଣ କରିଛନ୍ତି।

'ରୁଚି'ର ଆବଶ୍ୟକତା ସ୍ୱୀକାର କରିନେଲା ପରେ ବି ସାହିତ୍ୟ ଭଳି ବିଭିନ୍ନ ସାଂସ୍କୃତିକ ପ୍ରକାଶକ୍ଷେତ୍ରକୁ 'ରୁଚି' ଦୃଷ୍ଟିରୁ ଆଲୋଚନା କଲାବେଳେ ସେ ଆତ୍ମଦ୍ୱନ୍ଦର ସମ୍ମୁଖୀନ ହୋଇଛନ୍ତି। 'ଯାତ୍ରା' ଭଳି ଜନସାଧାରଣଙ୍କ ଉପଭୋଗ୍ୟ ସାଂସ୍କୃତିକ ପ୍ରକାଶ ଉପରେ ଆଲୋଚନା କଲାବେଳେ ସେ ଲେଖିଛନ୍ତି:

> ସଂପ୍ରତି ଓଡ଼ିଶାରେ ଯାହା 'ଯାତ୍ରା'ନାମରେ ଖ୍ୟାତ ହୋଇଅଛି ଓ ଯାହାକୁ ନିରୁପାୟ ହୋଇ ଭଦ୍ରଲୋକମାନେ ପର୍ବ ବିଶେଷରେ ଦେଖିବାକୁ ବାଧ୍ୟ ହୁଅନ୍ତି ତାହା ଅତ୍ୟନ୍ତ ଘୃଣିତ ଓ ତହିଁରେ ଓଡ଼ିଶାର ରୁଚିର ନିତାନ୍ତ କୁତ୍ସିତ ପରିଚୟ

> ପ୍ରାପ୍ତ ହୁଅଇ। ବଙ୍ଗଭାଷାରେ ହେଉ ପଛକେ ବାଲେଶ୍ୱରର ଓଡ଼ିୟାମାନେ ଯେ ଏ ବ୍ୟବସାୟରେ ପ୍ରବୃତ୍ତହୋଇ ଅଛନ୍ତି ଏହାକୁ ଆମ୍ଭେମାନେ ଗୋଟିଏ ଶୁଭ ଲକ୍ଷଣ ବୋଲି ଅତ୍ୟନ୍ତ ଆଦର କରୁଅଛୁଁ। ଆମ୍ଭେମାନେ ଭରସା କରୁଁ ଯେ ଓଡ଼ିଶାବାସୀମାନେ ଏହାକୁ ପ୍ରଚୁର ପରିମାଣରେ ଉତ୍ସାହିତ କରିବେ ଓ ସ୍ୱଦେଶାନୁରାଗୀ ମହାଶୟମାନେ ଏହାକୁ ସତ ପରାମର୍ଶ ଦେଇ ଓଡ଼ିୟା ଯାତ୍ରା କରିବାକୁ ପ୍ରବୃତ୍ତ କରାଇବେ। ଶିକ୍ଷିତ ଓ ହିତୈଷି ଲୋକଙ୍କ ସାହାଯ୍ୟ ବିନା ଏ ସବୁ ବ୍ୟପାର ସାଧନ ହୋଇ ନ ପାରେ।[୨୫]

ଏହି ସମ୍ବାଦରେ କେତେଗୁଡ଼ିଏ ଶବ୍ଦ, ଶବ୍ଦଗୁଚ୍ଛ ଓ ବାକ୍ୟାଂଶ ସମ୍ପର୍କରେ ସଚେତନ ହେଲେ ଗୌରୀଶଙ୍କରଙ୍କ ଶ୍ରେଣୀକର୍ତ୍ତୃତ୍ୱ ଭିତ୍ତିକ ସାଂସ୍କୃତିକ ପ୍ରତ୍ୟୟଗୁଡ଼ିକ ବିଷୟରେ ସ୍ୱଷ୍ଟ ପ୍ରତୀତି ଆସେ। 'ଯାହା ଯାତ୍ରା ନାମରେ ଖ୍ୟାତ ହୋଇଅଛି', 'ନିରୂପାୟ ହୋଇ ଭଦ୍ରଲୋକମାନେ ପଙ୍ଗ ବିଶେଷରେ ଦେଖିବାକୁ ବାଧ ହୁଅନ୍ତି', 'ତାହା ଅତ୍ୟନ୍ତ ଘୃଣିତ', 'ଓଡ଼ିଶାର ରୁଚି', 'କୁତ୍ସିତ ପରିଚୟ' ଇତ୍ୟାଦି ପ୍ରୟୋଗ ଭିତରେ ଦେଇ ନିମ୍ନବର୍ଗର ଲୋକମାନଙ୍କର ଶବ୍ଦବ୍ୟବହାର, ତଥା ନିମ୍ନବର୍ଗର ସାଂସ୍କୃତିକ ପ୍ରକାଶ ସମ୍ପର୍କରେ ତାଙ୍କର ହେୟ ଓ ତାଚ୍ଛଲ୍ୟ ମନୋଭାବ ଅଭିବ୍ୟକ୍ତ। ଅପର ପକ୍ଷରେ, ନିମ୍ନବର୍ଗର ସଂସ୍କୃତି ସଂପର୍କରେ ଆସିଲେ ଉଚ୍ଚବର୍ଗର ସାଂସ୍କୃତିକ ସତୀତ୍ୱ ନଷ୍ଟ ହେବାର ସମ୍ଭାବନା ନେଇ ସେ ଆତଙ୍କିତ। ସାଧାରଣ ଲୋକଙ୍କ ରୁଚି ଓ ସଂସ୍କୃତି ଓଡ଼ିଶାର ରୁଚି ଓ ସଂସ୍କୃତି ରୂପରେ ପରିଚିତ ହେଲେ କିଭଳି 'ଓଡ଼ିଆ ରୁଚିର' ଏକ ' କୁତ୍ସିତ ପରିଚୟ' ମିଳିବ, ସେଥିନେଇ ସେ ଆମକୁ ସତର୍କ କରିଦେଇଛନ୍ତି। ତାଙ୍କ ମତରେ ଓଡ଼ିଆମାନଙ୍କର ରୁଚିର ଏକ ସୁନ୍ଦର ପରିଚୟ ଦେବାକୁ ହେଲେ ଶିକ୍ଷିତ ଓ ଉଚ୍ଚବର୍ଗର ରୁଚିକୁ ଓଡ଼ିଆମାନଙ୍କର ଏକମାତ୍ର ରୁଚି ରୂପେ ପ୍ରତିଷ୍ଠିତ ଓ ପରିଚିତ କରେଇବାକୁ ହେବ। ସାଧାରଣ ଲୋକମାନଙ୍କ ଠାରେ ସଙ୍ଗୀତ ଓ ଅନ୍ୟାନ୍ୟ ଚାରୁକଳାର ସୌନ୍ଦର୍ଯ୍ୟକୁ ଉପଭୋଗ କରିବାନେଇ ସାମର୍ଥ୍ୟର ଘୋର ଅଭାବ ରହିଛି। ସ୍ଥୁଳତା ଓ ଗ୍ରାମ୍ୟ କୁତ୍ସିତତା ସେମାନଙ୍କ ସଂସ୍କୃତିର ବଡ ପରିଚୟ। ସେମାନଙ୍କ ଯାତ୍ରା ମଧ୍ୟ ସଙ୍ଗୀତରୁ ବଞ୍ଚିତ ଓ ଗ୍ରାମ୍ୟ ଦୋଷରେ ଦୁଷ୍ଟ:

> ଆମ୍ଭେମାନେ ଯେତେଦୂର ଦେଖିଅଛୁଁ କୌଣସି ଯାତ୍ରାରେ ସଙ୍ଗୀତର ବାସନା ମଧ୍ୟ ପାଇନାହୁଁ ଏବଂ ଆମ୍ଭମାନଙ୍କ ବିଶ୍ୱାସ ଏହି ଯେ ସଙ୍ଗୀତ କାହାକୁ ବୋଲାଯାଏ ଯାତ୍ରାବାଲାମାନେ ଜାଣନ୍ତି ନାହିଁ। କେବଳ ସଜବେଶ ହୋଇ ଗୁଡ଼ାଏ ପୋଥି ବୋଲନ୍ତି ଓ ଅଶ୍ଳୀଳ ବାକ୍ୟ ଉଚ୍ଚାରଣ କରି ଦର୍ଶକମାନଙ୍କୁ ସନ୍ତୁଷ୍ଟ କରନ୍ତି।[୨୬]

ଯାତ୍ରା ଜନସାଧାରଣଙ୍କର ଓ ନିମ୍ନ ବର୍ଗର ସଂସ୍କୃତି। ତେଣୁ ତାହାର ଆଲୋଚନା କଲାବେଳେ 'ଅଶ୍ଳୀଳ' କହି ଉପେକ୍ଷା ମନୋଭାବ ପ୍ରଦର୍ଶନ କରାଯାଇଛି।

'ରୁଚି' ଓ 'ଅଶ୍ଳୀଳତା', ଗତ ଶତାବ୍ଦୀର ସାହିତ୍ୟଆଲୋଚନାରେ ଏହି ଦୁଇଟି କେନ୍ଦ୍ରିକ ପ୍ରତ୍ୟୟ ଥିଲା। ଏହି ଉଭୟ ଉପରେ ଅତ୍ୟଧିକ ଗୁରୁତ୍ୱ ଆରୋପ କରି ଦୁଇଗୋଷ୍ଠୀର ଶିକ୍ଷିତ ଓଡ଼ିଆ ମଧ୍ୟବିତ୍ତ ଆପଣାର ଗୋଷ୍ଠୀସ୍ୱାର୍ଥର ଦ୍ୱନ୍ଦ୍ୱକୁ କିଭଳି ସାହିତ୍ୟିକ କନ୍ଦଳରେ ପରିଣତ

କରିଥିଲେ, ତାହା ଜଣାଶୁଣା ପ୍ରସଙ୍ଗ। କିନ୍ତୁ ସବୁଠାରୁ ମଜାର ବିଷୟ ହେଉଛି ଉଭୟ ଗୋଷ୍ଠୀ ଚିନ୍ତା ଚେତନାରେ ପରସ୍ପର ଠାରୁ ବିଶେଷ ଦୂରବର୍ତ୍ତୀ ନ ଥିଲେ। ଉଭୟ ଗୋଷ୍ଠୀ ସାଧାରଣ ଜନତାର ଭାଷା, ସାହିତ୍ୟ ଓ ସାଂସ୍କୃତିକ ଅଭିବ୍ୟକ୍ତିଙ୍କୁ ହେୟ ଦୃଷ୍ଟିରେ ଦେଖୁଥିଲେ। ଅତୀତର ସାଂସ୍କୃତିକ ପ୍ରକାଶର ମୂଲ୍ୟାୟନରୁ ହିଁ ଏହି ଦ୍ୱନ୍ଦ୍ୱର ସୃଷ୍ଟି। ଦଳେ ମଧ୍ୟବିତ୍ତ ଇଂରେଜମାନଙ୍କୁ ଅନୁସରଣକରି ଶିଳ୍ପ, ସ୍ଥାପତ୍ୟ,ଭାସ୍କର୍ଯ୍ୟ ଓ ସଂସ୍କୃତ ସାହିତ୍ୟକୁ ଦେଶର ଗୌରବ କହି ସାମୟିକ 'ରୁଚି' ଠାରୁ ସେଗୁଡ଼ିକୁ ଅସଂପୃକ୍ତ କଲାବେଳେ ପ୍ରାଚୀନ ଓଡ଼ିଆ ସାହିତ୍ୟକୁ ବର୍ତ୍ତମାନ 'ରୁଚି'ର ମାନଦଣ୍ଡରେ ମାପିଛନ୍ତି। ସ୍ଥାପତ୍ୟ, ଭାସ୍କର୍ଯ୍ୟ ଓ ସଂସ୍କୃତ ସାହିତ୍ୟ ଭଳି ଅତୀତର ଓଡ଼ିଆ କାବ୍ୟ ସାହିତ୍ୟ ମଧ୍ୟ ଥିଲା ସାମନ୍ତ ସମାଜ ଓ ଉଚ୍ଚବର୍ଗର ସୃଷ୍ଟି। ସମକାଳର ରାଜନୀତିକ ଚେତନା ଓ ଆବଶ୍ୟକତା ଦ୍ୱାରା ପ୍ରଲୁବ୍ଧ ହୋଇ ପ୍ୟାରୀମୋହନ ଆଚାର୍ଯ୍ୟ,ମଧୁସୂଦନ ରାଓ ପ୍ରମୁଖ ବୃଦ୍ଧିଜୀବୀମାନେ ମଧ୍ୟଯୁଗୀୟ ଓଡ଼ିଆ କାବ୍ୟ ସାହିତ୍ୟକୁ ଏକ ସଭ୍ୟ ଓ ସଂସ୍କୃତ ସମାଜର ସୃଷ୍ଟି ବୋଲି ସ୍ୱୀକାର କରୁ ନ ଥିଲେ। ଗୌରୀଶଙ୍କରର ମାନସିକ ସ୍ତରରେ ଅତୀତର ସାମନ୍ତ ସମାଜ ଓ ସାହିତ୍ୟ ସହ ସାଯୁଜ୍ୟ ଥିଲା। ତେଣୁ ପ୍ରାଚୀନ ସାହିତ୍ୟକୁ, ବିଶେଷତଃ ଭଞ୍ଜ ସାହିତ୍ୟକୁ, ବର୍ତ୍ତମାନର ରୁଚିରେ ତଉଲିବାକୁ ସେ ଚାହୁଁନଥିଲେ। ୧୮୭୮ ମସିହା ଜାନୁଆରୀ ଛବିଶ ତାରିଖରେ 'ଉତ୍କଳ ସଭା'ର ବିବରଣୀ ଯେଉଁଭଳି ଭାବେ ସେ ଉପସ୍ଥାପନ କରିଛନ୍ତି, ସେଥିରୁ ତାଙ୍କ ବିଚାରଧାରା ସ୍ପଷ୍ଟ। ଭଞ୍ଜସାହିତ୍ୟର ନିନ୍ଦୁକମାନଙ୍କ ସହ ତାଙ୍କ ପାର୍ଥକ୍ୟ କାହିଁକି ଓ କେଉଁଠି ଏହି ବିବରଣୀରେ ତାହା ସେ ସୃଷ୍ଟି କରିଛନ୍ତି :

> ବକ୍ତା ଥପ୍ୟାରୀମୋହନ ଆଚାର୍ଯ୍ୟଧ ପ୍ରଥମେ କହିଲେ ଯେ ପ୍ରାଚୀନ ଶିଳ୍ପକାର୍ଯ୍ୟ ଓ ଭାଷା ସକାଶେ ଓଡ଼ିଶାର ଗୌରବ ରହିଅଛି; ଶିଳ୍ପକାର୍ଯ୍ୟର ପରିଚୟ ଭୁବନେଶ୍ୱର ପୁରୀର ମନ୍ଦିରମାନ ଓ ଭାଷାର ପରିଚୟ ପ୍ରାଚୀନ ଗ୍ରନ୍ଥମାନ। ମନ୍ଦିରମାନଙ୍କ ଅଶ୍ଳୀଳ ମୂର୍ତ୍ତିର କଥା ବିସ୍ମୃତ ହେବାରେ ସେ ସମସ୍ତର ଗୌରବ ରହିଗଲା ନୋହିଲେ ମନ୍ଦିରମାନଙ୍କର କି ପର୍ଯ୍ୟନ୍ତ ହଟହଟା ହୋଇଥାନ୍ତା ଆମ୍ଭେମାନେ କହି ନ ପାରୁଁ। କିନ୍ତୁ ସେଇ ଅଶ୍ଳୀଳତାର ଅପରାଧରେ ପ୍ରାଚୀନ ସାହିତ୍ୟର ଏତେ ନିନ୍ଦା ହେଲା ଯେ ବୁଝିବା ଲୋକ ନିଶ୍ଚୟ ମନରେ କରିଥିବେ ଯେ ସେସବୁ ଯଥାର୍ଥରେ ଆମ୍ଭମାନଙ୍କର କଳଙ୍କ ଅଟଇ। ସବୁ ଗ୍ରନ୍ଥକାର ଅପେକ୍ଷା ଉପେନ୍ଦ୍ରଭଞ୍ଜ ଓ ସବୁଗ୍ରନ୍ଥ ଅପେକ୍ଷା ଲାବଣ୍ୟବତୀ ଅଧିକ ଗାଳି ଖାଇଲେ। ଆମ୍ଭେମାନେ ସଭ୍ୟ ଓ ଶିକ୍ଷିତ ସମ୍ପ୍ରଦାୟଙ୍କୁ ଅନୁରୋଧ କରୁଅଛୁଁ ଯେ ସେମାନେ ଶ୍ରମ ସ୍ୱୀକାର ପୂର୍ବକ ପ୍ରାଚୀନ କାବ୍ୟମାନ ପାଠ କରି ତହିଁର ଦୋଷଭାଗ ପରିତ୍ୟାଗ ପୂର୍ବକ ଗୁଣଭାଗକୁ ଗ୍ରହଣ କରନ୍ତୁ। [୨୭]

ଗୌରୀଶଙ୍କର ପ୍ୟାରୀମୋହନଙ୍କ ବକ୍ତବ୍ୟରେ ଥିବା ସ୍ୱବିରୋଧକୁ ଉଦ୍‌ଘାଟିତ କଲେ ବି ତାଙ୍କର ଅଶ୍ଳୀଳତା ଧାରଣାକୁ ସମ୍ପୂର୍ଣ୍ଣ ଭାବେ ପ୍ରତ୍ୟାଖ୍ୟାନ କରିନାହାନ୍ତି। ପ୍ରୟୋଗ ଓ ତାରତମ୍ୟ ବିଚାର କ୍ଷେତ୍ରରେ ହିଁ ଉଭୟଙ୍କ ମଧ୍ୟରେ ବିରୋଧ। ଭଞ୍ଜସାହିତ୍ୟ ଯେ ଅଶ୍ଳୀଳ ଓ କେତେକାଂଶରେ ବର୍ତ୍ତମାନ ରୁଚି ଦୃଷ୍ଟିରୁ ଉଚ୍ଚ ସାହତ୍ୟ ରୂପେ ବିବେଚିତ ହେବାପାଇଁ ଅଯୋଗ୍ୟ-ଏ କଥା ଅନ୍ୟତ୍ର ଗୌରୀଶଙ୍କର ମଧ୍ୟ ସ୍ୱୀକାର କରିଛନ୍ତି: " ଆମ୍ଭେମାନେ

ସ୍ୱୀକାର କରୁଁ କି ଯେ ସମୟରେ ଉକ୍ତ ପୁସ୍ତକମାନ ରଚିତ ହୋଇଥିଲା ସେ କାଳର ରୁଚିଠାରୁ ବର୍ତ୍ତମାନ ରୁଚି ଅନେକ ଉନ୍ନତ ହୋଇଅଛି ଅତଏବ ସେସବୁ ପୁସ୍ତକର ଅନେକାଂଶ ପକ୍ଷରେ ଅଶ୍ଳୀଳତାର ଆପତ୍ତି ଯଥାର୍ଥ ଅଟଇ।"[୨୮] ତେଣୁ ଗୌରୀଶଙ୍କରଙ୍କର ମତଭିନ୍ନତା ରୁଚି ଓ ଅଶ୍ଳୀଳତାର ପ୍ରତ୍ୟୟ ସମ୍ପର୍କରେ ନୁହେ, କୌଣସି କଳାକୁ ରୁଚି ଓ ଅଶ୍ଳୀଳତାର ମାନଦଣ୍ଡରେ ଗ୍ରହଣ ଓ ପ୍ରତ୍ୟାଖ୍ୟାନକୁ ନେଇ। ପ୍ୟାରୀମୋହନ ପ୍ରମୁଖ 'ରୁଚି'କୁ ମାନଦଣ୍ଡ କରି ପ୍ରାଚୀନ ସାହିତ୍ୟ, ଯାତ୍ରା ଓ ସଙ୍ଗୀତକୁ ପରିତ୍ୟାଗ କଲାବେଳେ ସ୍ଥାପତ୍ୟ ଓ ଭାସ୍କର୍ଯ୍ୟ ସମ୍ପର୍କରେ ନିରବ ରହିଛନ୍ତି। ଆଉ ଗୌରୀଶଙ୍କର ଯାତ୍ରା ଓ ଆଧୁନିକ ସାହିତ୍ୟକୁ ନିନ୍ଦା କଲାବେଳେ ସ୍ଥାପତ୍ୟ, ଭାସ୍କର୍ଯ୍ୟ, ପ୍ରାଚୀନ କାବ୍ୟ ସଙ୍ଗୀତକୁ ଗ୍ରହଣ କରିଛନ୍ତି। ପ୍ୟାରୀମୋହନ ଓ ମଧୁସୂଦନ ପ୍ରମୁଖ ସୁରୁଚି ସହ ସୁନୀତିକୁ ଏକତ୍ର ବିଚାର କଲାବେଳେ ଗୌରୀଶଙ୍କର ସ୍ଥଳ ବିଶେଷରେ ଉଭୟକୁ ପରସ୍ପର ଠାରୁ ସ୍ୱତନ୍ତ୍ର କରିଛନ୍ତି। 'ସୁରୁଚି ଓ ସୁନୀତି' ଶୀର୍ଷକରେ **ବାଲେଶ୍ୱର ସମ୍ବାଦବାହିକା**ରେ ପ୍ରକାଶିତ ଏକ ବେନାମି ପତ୍ରର ସମାଲୋଚନାକରି ଓ ବାଈନାଚର ଗ୍ରହଣଯୋଗ୍ୟତା ସପକ୍ଷରେ ଓକିଲାତି କରିବାକୁ ଯାଇ ସେ ଲେଖିଥିଲେ :

> ବାଈନାଚ ଆମ୍ଭମାନଙ୍କର ଚିରନ୍ତନ ପ୍ରଚଳିତ ପ୍ରଥା ଏବଂ ସେ ପ୍ରଥା ଚିରକାଳ ବିଦ୍ୟମାନ ଥାଇ ସୁଦ୍ଧା ଆମ୍ଭମାନଙ୍କ ଦେଶରେ ସୁନୀତି ପରାୟଣ ଲୋକଙ୍କର ଆଦୌ ଅଭାବ ନାହିଁ ଏବଂ ଧର୍ମଶାସ୍ତ୍ରର ଆଲୋଚନା ବା ଧର୍ମଚର୍ଚ୍ଚା ସେଥିସକାଶେ ଊଣା ହୋଇ ନାହିଁ। ଆଜି କାଲିର ଅଳ୍ପ ଶିକ୍ଷିତ ଅପରିଣାମଦର୍ଶୀ ସୁନୀତ ଓ ସୁରୁଚିର ଅକିଞ୍ଚିତକର ଧ୍ୱଜାଧାରୀ ନୀତି ଓ ରୁଚିର ଅର୍ଥ ବୁଝି ନ ପାରି ନାନା କଥା କହି ପାରନ୍ତି....ଯେଉଁ ଲୋକର ମନ ନିତାନ୍ତ ଦୁର୍ବଳ ସେ କେବଳ ମନ୍ଦ ଦଶା ଆଶା କରଇ।[୨୯]

ସାହିତ୍ୟ ଆଲୋଚନାରେ ସମୟକାଳରେ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଅଧିକାର କରିଥିବା ରୁଚିକୁ ଗୌରୀଶଙ୍କର ସ୍ୱୀକାର କରିଥିଲେ ବି ସମୟ ଓ ସମାଜିକ ବର୍ଗ ଭେଦରେ ତାହାର ପ୍ରୟୋଗ ଭିନ୍ନ କରିଛନ୍ତି।

## ପାଞ୍ଚ

'ଅଶ୍ଳୀଳ ପୁସ୍ତକ' ଶିରୋନାମରେ ଗୌରୀଶଙ୍କର, ବଙ୍ଗଳା **ବଙ୍ଗବାସୀ** ପତ୍ରିକାରେ ପ୍ରକାଶିତ ଭାରତଚନ୍ଦ୍ରଙ୍କ ବିଦ୍ୟାସୁନ୍ଦର ବାକ୍ୟ ଆଲୋଚନାର ସାରମର୍ମ ଉପସ୍ଥାପନ କରି ସାରିଲା ପରେ, ଲେଖିଛନ୍ତି:

> ଦେଶର ସାହିତ୍ୟ ସମଗ୍ର ସମାଜର ସମ୍ପତ୍ତି , ବର୍ତ୍ତମାନ ସମାଜର ଓ ଭବିଷ୍ୟତ ସମାଜର। ଲୋକ ବିଶେଷରେ ସମ୍ପତ୍ତି ନୁହଇ। ସୁତରାଂ ସେ ପ୍ରକାର ପୁସ୍ତକ ଖଣ୍ଡିଆ କରିବା ତୁମ୍ଭ ଆମ୍ଭର ଅଧିକାର ନୁହଇ। ଯେଉଁ କବି ଯେ ରୂପେ ପ୍ରକାଶ ହୋଇ ଅଛନ୍ତି ତାହାଙ୍କୁ ସେହିରୂପେ ରଖିବା ହିଁ ଉଚିତ୍; ଇଚ୍ଛାମତେ ତାହାଙ୍କୁ ଚିତ୍ର କରି ସୁଆଙ୍ଗ ସଜାଇବା ଉଚିତ୍ ନୁହେଁ।[୩୦]

ଗୌରୀଶଙ୍କର କୌଣସି ପ୍ରାଚୀନ ସାହିତ୍ୟ-କୃତିକୁ ଦେଶ ଓ କାଳ ଭିତରେ ସୀମିତ କରି ରଖିବା ପାଇଁ ଚାହାନ୍ତି ନାହିଁ। କୌଣସି ରଚନା 'ସାହିତ୍ୟ' ବୋଲି ସ୍ୱୀକୃତ ହେଲା ପରେ ତାହା ଆଉ କୌଣସି ବ୍ୟକ୍ତି ବିଶେଷର ସମ୍ପତ୍ତି ହୋଇ ରହେନାହିଁ ବା ବ୍ୟକ୍ତିଗତ

ରୁଚି ଓ ନୀତିର ମାନଦଣ୍ଡରେ ତାହା ମପାଯାଇ ପାରିବ ନାହିଁ। ତାହା ଏକ ଜାତୀୟ ସମ୍ପତ୍ତି ରୂପେ ପରିଗଣିତ ହୁଏ। ଅନୁଷ୍ଠାନ ବିଶେଷର ମହତ୍ତ୍ୱ, ପ୍ରତିଷ୍ଠା ଓ ସାର୍ବଜନୀନତା ତାହା ଦାବି କରେ ତଥା ପବିତ୍ର ବସ୍ତୁରୂପେ ବିବେଚିତ ହୁଏ। ପ୍ରାଚୀନ ସାହିତ୍ୟକୁ, ବିଶେଷତଃ ଭଞ୍ଜ ସାହିତ୍ୟକୁ, ସାଂପ୍ରତିକ ମୂଲ୍ୟମାନର ନିକିତିରେ ତଉଲିବାର ପ୍ରଚେଷ୍ଟାକୁ ସେ ଆଦୌ ଅନୁମୋଦନ କରିପାରି ନାହାନ୍ତି। ସନ୍ତାନମାନଙ୍କର ପ୍ରଶ୍ନୋର୍ଦ୍ଧ ବଶମ୍ବଦତା ଓ ଭକ୍ତି ପିତାଙ୍କର ଯେଭଳି ପ୍ରାପ୍ୟ, ସେହିଭଳି କୌଣସି ଦେଶର ଅଧିବାସୀଙ୍କ ଠାରୁ ନିସର୍ତ୍ତ ସମ୍ମାନ ସେ ଦେଶ ସାହିତ୍ୟର ପ୍ରାପ୍ୟ। ସାହିତ୍ୟ ଜାତୀୟ ସମ୍ପତ୍ତି ହୋଇଥିବାରୁ ତାହାର ଉପଯୁକ୍ତ ସଂରକ୍ଷଣ ପ୍ରତ୍ୟେକ ନାଗରିକର କର୍ତ୍ତବ୍ୟ : "ପୈତୃକ ସମ୍ପତ୍ତିର ସଂରକ୍ଷଣ ଏବଂ ପରିବର୍ଦ୍ଧନ ଏବଂ ତଦ୍ଦ୍ୱାରା ସାଧାରଣ ହିତ ସାଧନ ସତ ପୁତ୍ରର ଲକ୍ଷଣ। ପୂର୍ବ ପୁରୁଷଙ୍କ ଠାରୁ ଉତ୍ତରାଧିକାରୀ ସୂତ୍ରରେ ପ୍ରାପ୍ତ ଅମୂଲ୍ୟ ସାହିତ୍ୟ ଧନର ବ୍ୟବହାର ନ କଲେ ଆମ୍ଭେମାନେ ସୁପୁତ୍ର ଆଖ୍ୟାର ଯୋଗ୍ୟ ହେବୁ ନାହିଁ।" [୩୧] ଗୌରୀଶଙ୍କରଙ୍କ ସମଗ୍ର ଜୀବନର ସାହିତ୍ୟଚର୍ଚ୍ଚା ଜଣେ ସୁପୁତ୍ର ଆଖ୍ୟା ପାଇବା ଆକାଂକ୍ଷାର ପରିଣାମ। ଫଳରେ ସାହିତ୍ୟର ମୂଲ୍ୟବିଚାର କଲାବେଳେ ଗୌରୀଶଙ୍କର ଜାତୀୟତାବାଦ ଦ୍ୱାରା ଆକ୍ରାନ୍ତ। ବସ୍ତୁତଃ ତାଙ୍କର ଓଡ଼ିଆ ସାହିତ୍ୟ ଆଲୋଚନା ଓଡ଼ିଆ ଜାତୀୟତାର ପରିଚର୍ଚ୍ଚା।

ବେନେଡିକ୍ଟ ଆଣ୍ଡରସନ ତାଙ୍କର Imagined Communities : On the Origin and Spread of Nationalism ପୁସ୍ତକରେ ଦେଖାଇଛନ୍ତି, ଜାତି ବା ଦେଶ ନାମରେ କୌଣସି ଅପୌରଷେୟ ଓ ସ୍ୱାଭାବିକ ସତ୍ତା ନାହିଁ। ପ୍ରତ୍ୟେକ ଦେଶ ବା ଜାତି ମାନବକ କଳ୍ପନା ଦ୍ୱାରା ସଂଗଠିତ ଓ ଗୃହୀତ ଏକ ସତ୍ତା। ଜାତୀୟତାବାଦ ଜାତିର ଆତ୍ମ-ସଚେତେନତାର ଜାଗରଣ ନୁହେଁ, ଏହା ସ୍ଥିତିହୀନ ଜାତି ସତ୍ତାକୁ ଉଦ୍ଭାବନ ଓ କଳ୍ପନା କରେ।[୩୨] ରାଜନୈତିକ ଉଦ୍ଦେଶ୍ୟରେ ଅତୀତର ସାଂସ୍କୃତିକ ଭୂମି ଜାତିର ଭିତ୍ତି ରୂପେ ଗୃହୀତ ହୋଇଥାଏ। ଏହି ଗ୍ରହଣ, ଉଦ୍ଭାବନ ଓ କଳ୍ପନାରେ ସଂପୃକ୍ତ ଭୂମିଖଣ୍ଡର ବା ସାମାଜିକ-ଗୋଷ୍ଠୀର ବୁଦ୍ଧିଜୀବୀମାନେ ହିଁ ପ୍ରମୁଖ ଭୂମିକା ନେଇଥାନ୍ତି। ଏହି ବୁଦ୍ଧିଜୀବୀମାନେ ମୁଦ୍ରଣ-ପୁଞ୍ଜିବାଦ(Print-capitalram)କୁ ଅସ୍ତ୍ରକରି ଜାତିର କଳ୍ପନା ଓ ପ୍ରତିଷ୍ଠା କରିଥାନ୍ତି। ଏକ ଉନବିଂଶ ଶତକର ଷଷ୍ଠ ଦଶକରେ ଏହିଭଳି ବୁଦ୍ଧିଜୀବୀ ସମ୍ପ୍ରଦାୟର ଅଭ୍ୟୁଦୟ ହୋଇଥିଲା ଯେଉଁମାନେ ଓଡ଼ିଆ ଜାତୀୟତାବାଦର ନିର୍ମାଣରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ନେଇଥିଲେ। ଗୌରୀଶଙ୍କର ରାୟ, ଗୋବିନ୍ଦଚନ୍ଦ୍ର ପଟ୍ଟନାୟକ ଓ ଫକୀର ମୋହନ ସେନାପତି ପ୍ରମୁଖ ଥିଲେ ଏହି ବୁଦ୍ଧିଜୀବୀମାନଙ୍କ ମଧ୍ୟରେ ଅଗ୍ରଗଣ୍ୟ। ଏମାନଙ୍କ ଭିତରେ ଗୌରୀଶଙ୍କର ହିଁ **ଉତ୍କଳ ଦୀପିକା** ମାଧ୍ୟମରେ ଓଡ଼ିଆ-ଜାତି ଗଠନରେ ବିଶିଷ୍ଟତମ ଭୂମିକା ନେଇଥିଲେ। ଜାତୀୟତାବାଦର ବିକାଶରେ ରାଜନୈତିକ ଉଦ୍ଦେଶ୍ୟପ୍ରଣୋଦିତ ସାଂସ୍କୃତିକ ପୁନଃନିର୍ମାଣ ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ନେଉଥିବାରୁ ଓଡ଼ିଆମାନଙ୍କୁ ଏକ ଜାତୀୟ ସତ୍ତା ରୂପେ ସଙ୍ଗଠିତ କରିବା ପାଇଁ ଗୌରୀଶଙ୍କର ସଚେତନ ଭାବରେ ଓଡ଼ିଆ ଭାଷା ଓ ସାହିତ୍ୟକୁ ଭିତ୍ତି ରୂପେ ଗ୍ରହଣ କରିଛନ୍ତି। ୧୮୬୬ ମସିହାକୁ ସେ ଓଡ଼ିଆ ଜାତୀୟ ଚେତନାର ଅଭ୍ୟୁଦୟ ସମ୍ବତ୍ସର ଭାବରେ ଗ୍ରହଣ କରିଛନ୍ତି। ବିଶିଷ୍ଟ ଚିନ୍ତାନାୟକ ଆନ୍ତୋନିଓ ଗ୍ରାମଚି ଅନ୍ୟ ଏକ

ପ୍ରସଙ୍ଗରେ ତାଙ୍କର Prison Notebooks ରେ ଲେଖିଛନ୍ତି-ସମାଜର ସାଧାରଣ ମଣିଷ ନିଜ ଜୀବନ ଓ ସଂସ୍କୃତିକୁ ଅନୁଭବ କରିପାରନ୍ତି କିନ୍ତୁ ବୁଝି ବା ଜାଣି ପାରନ୍ତି ନାହିଁ; ଅଥଚ ବୁଦ୍ଧିଜୀବୀମାନେ ତାହାକୁ ଜାଣନ୍ତି କିନ୍ତୁ ପ୍ରାୟତଃ ବୁଝନ୍ତି ନାହିଁ ଓ କେବେ ବି ଅନୁଭବ କରି ପାରନ୍ତି ନାହିଁ ।[୩୩] ଫଳରେ ଜାତୀୟ ସଂସ୍କୃତି କହି ଜନସାଧାରଣଙ୍କ ଉପରେ କୌଣସି ଅର୍ଦ୍ଧ-କଳ୍ପିତ ସଂସ୍କୃତି ଲଦିଦେଲେ ଜନସାଧାରଣ ତାହା ବୁଝି ବା ଜାଣି ପାରନ୍ତି ନାହିଁ ଆଉ ନିଜେ ଅନୁଭବ କରୁ ନଥିବାରୁ ଲଦୁଥିବା ବୁଦ୍ଧିଜୀବୀମାନେ ପ୍ରଚଳିତ ସଂସ୍କୃତିର ତିରୋଧାନରେ ଦୁଃଖ ପ୍ରକାଶ କରନ୍ତି ନାହିଁ । ବଙ୍ଗଳା ଓ ଓଡ଼ିଶାରେ ଜାତୀତାବାଦର ଉନ୍ମେଷ ଉଭୟ ଅଞ୍ଚଳର ଜନସାଧାରଣଙ୍କ ମନରେ ବିଦ୍ୱେଷ ଭାବ ସୃଷ୍ଟି କରିଥିଲେ ହେଁ ବୁଦ୍ଧିଜୀବୀମାନଙ୍କ ଭିତରେ ପାରସ୍ପରିକ ବିଦ୍ୱେଷ ନ ଥିଲା; ହୁଏତ ସ୍ୱାର୍ଥ ଦ୍ୱନ୍ଦ୍ୱ ଥିଲା । ଜାତୀୟତାବାଦର ଉନ୍ମେଷ ପାଇଁ ସେମାନେ ଯେତେବେଳେ ସଂସ୍କୃତିକୁ ଏକ ମାଧ୍ୟମ ଭାବରେ ଗ୍ରହଣ କରନ୍ତି, ସେତେବେଳେ ସେହି ସଂସ୍କୃତିର ପ୍ରାଣସ୍ପନ୍ଦନକୁ ଅନୁଭବ ନ କରି ତା'ର ପ୍ରଚାର ଓ ପ୍ରସାର ପାଇଁ ଲାଗି ପଡିଥାନ୍ତି । ସଂସ୍କୃତିର ବାହ୍ୟ ରୂପଟି ହିଁ ସେମାନଙ୍କ ଜ୍ଞାନ-ଦୃଷ୍ଟିରେ ଧରା ପଡିଥାଏ । ଗୌରୀଶଙ୍କର ସେଥିପାଇଁ ଓଡ଼ିଆ ସଂସ୍କୃତିକୁ ଅନୁଭବ କରି ନଥିବାରୁ ଓ ବୁଝିବାକୁ ଚେଷ୍ଟା କରି ନଥିବାରୁ ଉଚ୍ଚବର୍ଗର ସାଂସ୍କୃତିକ ପ୍ରକାଶ ଓଡ଼ିଆ କାବ୍ୟ ସାହିତ୍ୟକୁ ଓଡ଼ିଆ ସଂସ୍କୃତିର ପରିମାପକ ଓ ପ୍ରାଣଶକ୍ତି ରୂପେ ଗ୍ରହଣ କରିଛନ୍ତି । **ଉତ୍କଳ ଦୀପିକା**ର ପ୍ରଥମ ବର୍ଷରୁ ହିଁ ଓଡ଼ିଆ ସ୍ୱାଭିମାନ ଓ ବୁଦ୍ଧିମତ୍ତାର ପ୍ରତୀକ ହିସାବରେ ଉପେନ୍ଦ୍ର ଭଞ୍ଜଙ୍କ ପ୍ରସଙ୍ଗ ଆସିଛି । 'ଓଡ଼ିଆମାନେ ସ୍ୱଭାବତଃ ନିର୍ବୋଧ' ଏଭଳି ଅଭିଯୋଗର ଉତ୍ତର ଦେବାକୁ ଯାଇ ଓଡ଼ିଆ ଜାତୀୟତାବାଦକୁ କେବଳ ଏକ ଭାବାଦର୍ଶଗତ (ସୟରକ୍ଷ-କ୍ଷକ୍ଷଶସମବକ୍ଷ) ଗଢ଼ଣ ଦିଆଯାଇ ନାହିଁ, ସେହି ଗଢ଼ଣ ଭିତରେ ଓଡ଼ିଆ ସାହିତ୍ୟକୁ, ବିଶେଷତଃ ଭଞ୍ଜ ପ୍ରମୁଖଙ୍କ କାବ୍ୟଧାରାକୁ, ମୁଖ୍ୟ ସ୍ଥାନ ଦିଆଯାଇଛି । ଓଡ଼ିଆ ଜାତି ଅତୀତରେ ଉନ୍ନତ ଥିଲା, ତାହାର ପ୍ରମାଣ ଓଡିଆର କାବ୍ୟକୀର୍ତ୍ତି । ସାଂପ୍ରତିକ କାଳରେ ରାଜପୃଷ୍ଠପୋଷକତାର ଅଭାବ ଓ ଅନ୍ୟାନ୍ୟ ସହଯୋଗୀ କାରଣ ପାଇଁ ଓଡ଼ିଆ ଜାତିର ଅସ୍ତିତ୍ୱ ବିପନ୍ନ ହୋଇଛି । ଏଠାରେ ଓଡ଼ିଆ ଜାତୀୟତାର ଉଦ୍ଭାବନ ପାଇଁ ତାହାର କଳ୍ପିତ ଦୋଷ ସବୁକୁ ଅନ୍ୟ ମୁଣ୍ଡରେ ଲଦି ଦିଆହୋଇଛି । ମଧୁର ସ୍ୱପ୍ନକୁ ଆଧାର କରି ପୁନଃନିର୍ମିତ ହୋଇଛି ଅତୀତ । ବଙ୍ଗଳା ଜାତୀୟତାର ପ୍ରତିପକ୍ଷରେ ଓ ତା' ସହ ପ୍ରତିଦ୍ୱନ୍ଦ୍ୱିତା କରି ଓଡ଼ିଆ ଜାତୀୟତାର ବିକାଶ । ଏହି ପ୍ରତିଦ୍ୱନ୍ଦ୍ୱିତା ଏକ ଐତିହାସିକ ଆବଶ୍ୟକତା ହୋଇଥିବାରୁ ଓଡିଆ ସାହିତ୍ୟ ସହ ବଙ୍ଗଳା ସାହିତ୍ୟର ଏକ ତୁଳନାତ୍ମକ ବିଶ୍ଲେଷଣ ଓ ବିଚାର ସଂପୃକ୍ତ ଉତ୍ତରରେ ଉପସ୍ଥାପିତ :

ଏହି ବଙ୍ଗାଳି ଭାଷାର ଉନ୍ନତ କାରଣ କି ପର୍ଯ୍ୟନ୍ତ ନା ଯତ୍ନ କରାଯାଉଅଛି । ତଥାପି ଉତ୍କଳୀୟ କବିମାନେ ଯେ ସକଳ କାବ୍ୟଗ୍ରନ୍ଥ ରଚନା କରି ଯାଇଅଛନ୍ତି ତାହାର ସହିତ ତୁଳନା ଦେବାପାଇଁ ଆଜି ପର୍ଯ୍ୟନ୍ତେ ଖଣ୍ଡେ ମଧ୍ୟ କାବ୍ୟ ବଙ୍ଗଳା ଭାଷାରେ ପ୍ରକାଶ

ହୋଇନାହିଁ। ଏକଥା ଯଥାର୍ଥ ଅଟେ ଯେ କି ସାହିତ୍ୟ କି ଗଣିତ କି ଭୂଗୋଳ କି ପ୍ରାକୃତିକ ବିଦ୍ୟା ଉକ୍ତ ବିଷୟରେ ବଙ୍ଗଳାରେ ଭୂରି ଭୂରି ଗ୍ରନ୍ଥ ପ୍ରକାଶ ହୋଇଅଛି ମାତ୍ର ଏହି ସକଳ ପୁସ୍ତକ ଅନୁବାଦିତ ଅପହୃତ, ସ୍ୱାଧୀନ ପୁସ୍ତକ କେତେ ଖଣ୍ଡ ଅଛି ? ସ୍ୱାଧୀନ ଗ୍ରନ୍ଥ ମଧ୍ୟରୁ ବଙ୍ଗାଳିମାନେ ବିଦ୍ୟାସୁନ୍ଦରକୁ ସୁପ୍ରସିଦ୍ଧ ପୁସ୍ତକ ବୋଲି ଗଣନ୍ତି ଓ ଏହି ଗ୍ରନ୍ଥ ରଚନା କରି ସ୍ୱର୍ଗତ ଭାରତ ଚନ୍ଦ୍ର ରାୟ ବଙ୍ଗଳା ଦେଶରେ ବିଖ୍ୟାତ ହୋଇଅଛନ୍ତି।

ବିଦ୍ୟାସୁନ୍ଦର ରଚନାର ଅନେକ ବର୍ଷ ପୂର୍ବରେ ଦୀନକୃଷ୍ଣ ଦାସ ଯେ ରସକଲ୍ଲୋଳ ନାମକ ପୁସ୍ତକ ରଚନା କରିଅଛନ୍ତି ତାହାର ସହିତ ତୁଳନା କରି ଦେଖିଲେ ବିଦ୍ୟାସୁନ୍ଦର ଅତି ଅପକୃଷ୍ଟ ବୋଧହୁଏ। କି ରଚନା ଚାତୁର୍ଯ୍ୟ କି ସ୍ୱଭାବ ବର୍ଣ୍ଣନା କି ଶ୍ଳେଷ ଓ ଯମକ ରଚନା ସମସ୍ତ ବିଷୟରେ ଦୀନକୃଷ୍ଣ ଭାରତ ଚନ୍ଦ୍ରଙ୍କ ଠାରୁ ଅଧିକ ପରାକାଷ୍ଠା ଲାଭ କରିଅଛନ୍ତି। ତଥାପି ଦେଖ ବିଦ୍ୟାସୁନ୍ଦର ଆଜି କି ପର୍ଯ୍ୟନ୍ତ ବିଦ୍ୱାନମଣ୍ଡଳୀରେ ସମାଦୃତ ହେଉଅଛି। ମାତ୍ର ରସକଲ୍ଲୋଳ ପ୍ରତି କେହି ଦୃଷ୍ଟିପାତ କରିବାକୁ ନାହିଁ। ରସକଲ୍ଲୋଳ ଆଦିରସ ଘଟିତ କୁତ୍ସିତ ଭାବାଶ୍ରିତ ବୋଲି ଯେ ଯାହା କହନ୍ତୁ ସେଥିରେ ଆମ୍ଭର ବକ୍ତବ୍ୟ ନାହିଁ। ମାତ୍ର ରସକଲ୍ଲୋଳ ଯେ ସର୍ବ ବିଷୟରେ ବିଦ୍ୟାସୁନ୍ଦର ଠାରୁ ଉତ୍କୃଷ୍ଟ ଗ୍ରନ୍ଥ ତାହାର ସନ୍ଦେହଭାବ।

ଏହି ବାକ୍ୟର ଦୃଢତା କାରଣ ପ୍ରମାଣ ଦର୍ଶାଇବା ବାହୁଲ୍ୟ ମାତ୍ର। ଯେ ସୁହୃଦୟ ବ୍ୟକ୍ତି ଏହି ଗ୍ରନ୍ଥଦ୍ୱୟ ପାଠ କରିଅଛନ୍ତି ସେହି ଏହି ଗ୍ରନ୍ଥଦ୍ୱୟର ଉତ୍କର୍ଷାପକର୍ଷ ବିଷୟ ହୃଦୟଙ୍ଗମ କରିଅଛନ୍ତି। ଦୀନକୃଷ୍ଣଙ୍କୁ ଛାଡ଼ି ଆହୁରି ମଧ୍ୟ ଅନେକ କବି ଅନେକ ବିଷୟରେ ଅନେକ ଗ୍ରନ୍ଥ ରଚନା କରିଅଛନ୍ତି। ମୁଦ୍ରାଯନ୍ତ୍ର ଅଭାବରେ ଅନେକ ଗ୍ରନ୍ଥ ଲୋପ ହୋଇଅଛି। ଓଡ଼ିଶାର କବିକୁଳ କେଶରୀ ଉପେନ୍ଦ୍ର ଭଞ୍ଜ ୫୨ ଖଣ୍ଡ ଗ୍ରନ୍ଥ ରଚନା କରନ୍ତି ମାତ୍ର ଇଦାନିଂ ପ୍ରଶଂସିତ କବି ରଚିତ ୨୦/୨୫ ଖଣ୍ଡ ଗ୍ରନ୍ଥରୁ ଅଧିକ ମିଳୁନାହିଁ।

କି ଆଦିରସ କି ବୀରରସ କି ଭକ୍ତିରସ କି କରୁଣରସ ସକଳ ବିଷୟ ରଚନାରେ ଉପେନ୍ଦ୍ର ଭଞ୍ଜ ଅଦ୍ୱିତୀୟ କବିତ୍ୱ ଶକ୍ତି ପ୍ରକାଶ କରିଯାଇ ଅଛନ୍ତି ବିଶେଷରେ ଯମକ ଓ ଶ୍ଳେଷ ପଦ ରଚନାରେ ଯେପରି ନିପୁଣତା ଦେଖାଇ ଅଛନ୍ତି, ଆମ୍ଭେ ସାହାସ କରି କହିପାରୁଁ ଯେ ସଂସ୍କୃତ ଭିନ୍ନ ଭାରତ ବର୍ଷୀୟ ଏମନ୍ତ ଭାଷାର କାବ୍ୟକାର ନାହାନ୍ତି ଯେ ତାହାଙ୍କ ସହିତ ତୁଳଣା ଦିଆଯାଇ ପାରେ, ଉପେନ୍ଦ୍ର ଭଞ୍ଜକୃତ ବୈଦେହୀଶ ବିଳାଶରେ ରାମ ରାବଣର ଯୁଦ୍ଧ ଅରଣ୍ୟେରେ ରାମ ଦ୍ୱାରା ସୀତାର ପ୍ରବୋଧ ଋଷିଶୃଙ୍ଗର ଆଶ୍ରମ ବର୍ଣ୍ଣନା ଅନ୍ୟତର ପୁସ୍ତକରେ ଲାବଣ୍ୟବତୀର ସଖିମାନଙ୍କ ସହିତ କ୍ରୀଡ଼ା ଏହି ସକଳ ସ୍ଥାନ ପାଠ ସମୟରେ ରଚୟିତାକୁ ପ୍ରକୃତ ବୋଲି ସ୍ୱିକାର କରିବାକୁ ସଂକୋଚ ବୋଧ ହୁଏ।

ହାୟ: ଏହି ସକଳ ଗ୍ରନ୍ଥର, ଏପରି ହତାଦାର ଦେଖି ହୃଦୟ ଏକାବେଳେକେ ବିଦୀର୍ଣ୍ଣ ହୋଇଯାଏ। ହାୟ ଏମନ୍ତ କି ସମୟ ଆମ୍ଭେମାନେ ଦେଖିବାକୁ ପାଇବୁ ଯେ ଏହି ସକଳ ଗ୍ରନ୍ଥର ଯଥାର୍ଥ ମର୍ଯ୍ୟାଦା ରକ୍ଷାହୋଇଅଛି।

ସଭ୍ୟତା ଗ୍ରୀସ ଓ ରୋମ ରାଜ୍ୟର ପତନ ଇଂଲଣ୍ଡର ଉନ୍ନତି ଓ ଭାରତର ଅଧୋଗତି ଦେଖିଲେ ପ୍ରତୀୟମାନ ହୁଏ ଯେ ଅବନୀ ମଣ୍ଡଳରେ କିଛି ହିଁ ସ୍ଥାୟୀ ନୁହଇ। କାଳରେ ସକଳ ପରିବର୍ତ୍ତନ ହୋଇଅଛି। ଆହୁରି ଦେଖ ଯେ କଲିକତା ନଗର କିଛିଦିନ ପୂର୍ବରେ କଣ୍ଟକମୟୀ ଅରଣ୍ୟ ତରୁରେ ଆବୃତ ଓ ଶଶକ ଶୃଗାଳାଦିର କେଳି ଭୂମି ରପେ ପରିଣତ ଥିଲା ସେହି କଲିକତା ନଗର ସମସ୍ତ ଭାରତର ରାଜଧାନୀ ହୋଇ ରାଜକୀୟ ସେନା ଶ୍ରେଣୀ ରାଜପୁରୁଷ ଅସଂଖ୍ୟ ବିଦ୍ୱାନ ମଣ୍ଡଳୀ ଗଗନସ୍ପର୍ଶୀ ସୌଧମାଳାରେ ପରିବୃତ୍ତ ହୋଇଅଛି ଏହିପରି କେତେ ଜନପୂର୍ଣ୍ଣ ବୃଦ୍ଧିଶୀଳ ନଗର ଭୂମିସାତ ଓ କେତେ ଜନଶୂନ୍ୟ ଅରଣ୍ୟ ସମୃଦ୍ଧିଶାଳୀ ନଗର ହେଉଅଛି। ଏହିପରି ମନୁଷ୍ୟ ଜାତିର ଅବସ୍ଥା ମଧ୍ୟ ପରିବର୍ତ୍ତନଶୀଳ। ଦେଖ ଯେ ଇଂରେଜ ଜାତି ପୂର୍ବରେ ଅସଭ୍ୟ ଅରଣ୍ୟକାମୀ ଥିଲେ ସେହି ଇଂରେଜ ଜାତି ବର୍ତ୍ତମାନ ଧରାତଳ ବ୍ୟାପୀ ହୋଇ ଅସଂଖ୍ୟ ଦେଶରେ ଆପଣମାନଙ୍କର ବାହୁବଳ ଓ ଜ୍ଞାନ ବଳର ପ୍ରମାଣ ସ୍ୱରୂପ କୀର୍ତ୍ତି ପତାକା ଉଡ଼ାଇ ଅଛନ୍ତି। ଫଳେ ପୃଥିବୀ ମଧ୍ୟରେ ଏମନ୍ତ ନଦୀ ସାଗର ଉପସାଗର ଅପ୍ରସିଦ୍ଧ ଯହିଁରେ ଇଂଲଣ୍ଡୀୟ ବଣିକ ତରଣୀ ଭାସମାନ ନ ହେଉଅଛି ତେବେ ଯେ ଉତ୍କଳୀୟମାନେ ଏକଦା ସ୍ୱକୀୟ ବାହୁବଳରେ ଉତ୍ତରେ ହୁଗୁଳୀ ନଦୀ ଦକ୍ଷିଣେ କୁମାରିକା ଅନ୍ତରୀପ ପର୍ଯ୍ୟନ୍ତ ରାଜ୍ୟବିସ୍ତାର କରିଥିଲେ। ସେମାନେ ସମ୍ପ୍ରତି ଦୁର୍ବଳ, ଅଳସ ଓ ଯେ ଉତ୍କଳିୟମାନଙ୍କ ମଧ୍ୟରେ ଉପେନ୍ଦ୍ର ଭଞ୍ଜ ଓ ଜଗନ୍ନାଥ ଦାସ ପ୍ରଭୃତି ମହା ମହା କବି ଆବିର୍ଭୂତ ଥିଲେ ସେହି ଓଡ଼ିଆମାନେ ସମ୍ପ୍ରତି ଅଜ୍ଞ ଓ ବର୍ବର ବୋଲି ଅପରିଣାମଦର୍ଶୀ ବିଦେଶୀୟଙ୍କ ଦ୍ୱାରା ଅଭିହିତ ହେବେ ଆଶ୍ଚର୍ଯ୍ୟ କି। ମାତ୍ର ‘ ଓଡ଼ିଆମାନେ ସ୍ୱଭାବତଃ ନିର୍ବୋଧ’ ଏକଥା ଯେମାନେ କହନ୍ତି ସେମାନଙ୍କୁ ନିତାନ୍ତ ଅଜ୍ଞ ଓ ଅଦୂରଦର୍ଶୀ ଭିନ୍ନ ଆଉ କି କୁହାଯାଇପାରେ କେବଳ ଓଡ଼ିଆମାନେ ପୃଥିବୀରେ ଏମନ୍ତ ଜାତି ନାହାନ୍ତି ଯେ ସେ ସେମାନଙ୍କୁ ସ୍ୱଭାବତଃ ଅଜ୍ଞାନୀ ବୋଲି କୁହାଯାଇ ପାରେ।[୩୪]

ପରବର୍ତ୍ତୀ ଚାଳିଶ ବର୍ଷରେ ବିଭିନ୍ନ ପ୍ରସଙ୍ଗରେ ଦୀପିକା ପୃଷ୍ଠାରେ ଏହି ମତାମତକୁ ପ୍ରତିଧ୍ୱନିତ କରାଯାଇଛି କେବଳ। ଓଡ଼ିଆମାନେ ଯେ ଏକ ଜାତି, ଜଗନ୍ନାଥ ଦାସ ଓ ଉପେନ୍ଦ୍ର ପ୍ରମୁଖ ତାଙ୍କର ସାଂସ୍କୃତିକ ବିକାଶର ସଂକେତ, ଦିଗବିଜୟ ତା'ର ଐତିହ୍ୟ-ଆମର ଜାତୀୟତାବାଦୀ ପରିଚର୍ଚ୍ଚାରେ ଏଭଳି ବକ୍ତବ୍ୟକୁ ଏପର୍ଯ୍ୟନ୍ତ ମଧ୍ୟ ଦୋହରେଇ ଆସିଛୁ। କିନ୍ତୁ ଦିଗବିଜୟ

କରିଥିବା ଲୋକମାନେ ଯେ ସବୁବେଳେ ଓଡ଼ିଆ ନ ଥିଲେ ଓ ଏକ ଜାତିର ମୁଖପାତ୍ର ଭାବରେ ଜଗନ୍ନାଥ ଦାସ ବା ଉପେନ୍ଦ୍ର ଭଞ୍ଜ ସାହିତ୍ୟ ସୃଷ୍ଟି କରି ନଥିଲେ, ଆମେ ସଚେତନ ଭାବରେଏହା ଅନୁଭବ କରିନାହୁଁ, ବୁଝିବାକୁ ଚେଷ୍ଟା ମଧ୍ୟ କରିନାହୁଁ। ଗୌରୀଶଙ୍କର **ଦୀପିକା** ମାଧ୍ୟମରେ ଓଡ଼ିଆ ଜାତୀୟତାର ମିଥ୍ୟାସବୁ ସୃଷ୍ଟି କରିବାରେ ସମର୍ଥ ହୋଇଥିଲେ। ପ୍ରଥମ ବର୍ଷର **ଦୀପିକା** ଓ କଟକ ପ୍ରିଣ୍ଟିଂ କମ୍ପାନୀର କୃତିତ୍ୱ ବିଷୟ ଉଲ୍ଲେଖ କରି **ଉତ୍କଳଦୀପିକାର** ଦ୍ୱିତୀୟ ବର୍ଷ ଦ୍ୱିତୀୟ ସଂଖ୍ୟାରେ କୁହାଯାଇଛି:

> ଉତ୍କଳ ଦେଶସ୍ଥ ପୁରାତନ କବିମାନଙ୍କର ଚିରସ୍ମରଣୀୟ ନାମ ଆମ୍ଭମାନଙ୍କ ଅଯୋଗ୍ୟତାରୁ ଏତାବତ୍କାଳ ଦେଶାନ୍ତରରେ ପ୍ରଚାର ହେବା ଦୁସ୍ତର ଥିଲା। ଏ ବର୍ଷ ତାହା ଖଣ୍ଡନାମାରେ କେତେକ ଲୋକ ଯତ୍ନବାନ ହୋଇ ଅଛନ୍ତି ଓ ଯେ ରୂପ ସୃଷ୍ଟି ପୂର୍ବରେ କେବଳ ଜଳମୟ ଥିଲା ଓ ତହିଁରୁ ସମସ୍ତ ବସ୍ତୁର ଉଦ୍ଭବ ହେଲା ସେହିପରି ଉତ୍କଳ ସାହିତ୍ୟର ପୁନଃ ସୃଷ୍ଟି ନିମିତ୍ତ ପ୍ରଥମେ ପ୍ରେମ ସୁଧାନିଧିର ସଞ୍ଚାର ହୋଇଅଛି। [୩୫]

ଓଡ଼ିଆ ଭାଷାଭାଷୀ ଜନସାଧାରଣଙ୍କୁ ଏକ ରାଜନୈତିକ ଜନଗୋଷ୍ଠୀ ବା ଜାତିରେ ପରିଣତ କରିବାର ଆକାଂକ୍ଷା ଗୌରୀଶଙ୍କରଙ୍କ ବୁଦ୍ଧିଜୀବୀ ପ୍ରାଣରେ ଔପନିବେଶିକ ଶାସନ ଫଳରେ ସମ୍ଭବ ହୋଇଥିଲା। ବିଭିନ୍ନ ଉପଗୋଷ୍ଠୀରେ ବିଭକ୍ତ ଆମର ମଧ୍ୟବିତ୍ତବର୍ଗ ଆପଣାର ରାଜନୈତିକ ମତବାଦକୁ ମୁକ୍ତ ଭାବରେ ପ୍ରକାଶ କରିବାକୁ ଅସମର୍ଥ ଥିଲେ। ତା' ସହିତ ଆପଣା ବ୍ୟକ୍ତିସ୍ୱାର୍ଥ ଓ ଗୋଷ୍ଠୀଗତ ଦୃଷ୍ଟିକୋଣ ହେତୁ ସେମାନେ ବହୁ ବିରୋଧୀ ଉପଗୋଷ୍ଠୀରେ ବିଭକ୍ତ ଥିଲେ। ନବ କଳ୍ପିତ ଓ ଜାଗ୍ରତ ଓଡ଼ିଆ ଜାତୀୟବାଦ ସେମାନଙ୍କ ଅଧ୍ୟାସଦୃଷ୍ଟିର ଫଳଶ୍ରୁତି ହୋଇଥିବାରୁ ତାହା ବିଭକ୍ତ ରୂପ ନେଇଥିଲା। ଗୌରୀଶଙ୍କରଙ୍କ ପରି ଅନେକ ଭାଷା ଓ ସାହିତ୍ୟକୁ ଜାତି ଗଠନ ଓ ଜାତିର କଳ୍ପିତ ଅତୀତର ସର୍ବଶ୍ରେଷ୍ଠ ସ୍ମାରକୀ ବୋଲି ପ୍ରତିଷ୍ଠା କରିବାକୁ ଚାହୁଁଥିଲା ବେଳେ ପ୍ୟାରୀମୋହନ, ମଧୁସୂଦନ ରାଓ, ବୈକୁଣ୍ଠନାଥ ଦେ ଓ ବ୍ରହ୍ମାନନ୍ଦ ଦାସ ପ୍ରମୁଖ ଓଡ଼ିଆ କାବ୍ୟ ସାହିତ୍ୟକୁ ଓଡ଼ିଆ ଜାତିର ସାଂସ୍କୃତିକ ପ୍ରତୀକ ଭାବରେ ଗ୍ରହଣ କରିବାକୁ ଥିଲେ ପରାଙ୍ମୁଖ। ଏକେତ ଏହି ସଂସ୍କୃତି ସହିତ ମାନସିକ ସ୍ତରରେ ସେମାନଙ୍କର ସାଯୁଜ୍ୟ ନ ଥିଲା। ତା' ସହିତ ଅନୁଭବ, ଅବବୋଧ ଓ ଜ୍ଞାନ-ପ୍ରାଚୀନ ସାହିତ୍ୟ ସମ୍ପର୍କରେ ସେମାନଙ୍କର କୌଣସିଟି ନ ଥିଲା। ସାମନ୍ତ ପରିବେଶ ଓ ମଧ୍ୟଯୁଗର ବିଦ୍ୱତ ସମାଜରୁ ସୃଷ୍ଟି ହେଲେବି ଦୀନକୃଷ୍ଣ ଓ ଭଞ୍ଜ ପ୍ରମୁଖଙ୍କ କାବ୍ୟର ଆବେଦନ ରାଜସଭା ଓ ବିଦ୍ୱତ ସମାଜ ମଧ୍ୟରେ ସୀମିତ ନ ଥିଲା। ଜନସାଧାରଣଙ୍କ ସାହିତ୍ୟ ଓ ସାଂସ୍କୃତିକ ପ୍ରକାଶ ପ୍ରତି ଆମର ଦଳେ ନୂତନ ବୁଦ୍ଧିଜୀବୀ ଔପନିବେଶିକ ପ୍ରଭୁଙ୍କ ପ୍ରଭାବରେ ବୀତସ୍ପୃହ ଥିଲେ। ଲୋକମାନଙ୍କର ଚିତ୍ତ ବିନୋଦନର ମାଧ୍ୟମଗୁଡ଼ିକୁ ଅଶ୍ଳୀଳ, କୁତ୍ସିତ ଓ ଘୃଣିତ କହି ସରକାରୀ ନିୟମକାନୁନ ଦ୍ୱାରା ଚପେଇ ଦେବାର ଚେଷ୍ଟା ଊନବିଂଶ ଶତକର ସାଂସ୍କୃତିକ ଜୀବନକୁ ଦ୍ୱିଧା ବିଭକ୍ତ କରିଥିଲା। [୩୬]

ଉପେନ୍ଦ୍ର ଭଞ୍ଜଙ୍କର **ବା ଚଉତିଶା** ଓ ବିଶ୍ୱନାଥଙ୍କର **ବିଚିତ୍ର ରାମାୟଣ**କୁ ଅଶ୍ଳୀଳ ପୁସ୍ତକ କହି ସ୍କୁଲମାନଙ୍କରୁ ନିର୍ବାସନ ଦେବା ପାଇଁ ରାଧାନାଥଙ୍କ ଘନିଷ୍ଠ ବନ୍ଧୁ ରାଜା ବୈକୁଣ୍ଠନାଥ ଦେ ଛୋଟଲାଟଙ୍କୁ ଆବେଦନ କରିଥିଲେ। ବୈକୁଣ୍ଠନାଥଙ୍କ ଅର୍ଥବଳ ଓ ରାଧାନାଥଙ୍କ ସମର୍ଥନ ଫଳରେ **ବା ଚଉତିଶା** ଓ **ବିଚିତ୍ର ରାମାୟଣ** ଆଦି ପୁସ୍ତକ ସରକାଙ୍କ ଦ୍ୱାରା ଅଶ୍ଳୀଳ ରୂପେ ଗୃହୀତ ହୋଇଥିଲା।[୩୭] ଆମର ନୂତନ ମଧ୍ୟବିତ୍ତଗଣ ଭଞ୍ଜ ଓ ଦୀନକୃଷ୍ଣଙ୍କ ରଚନାର ଗଣ ଆବେଦନ ହେତୁ ସେସବୁକୁ ପରିତ୍ୟାଗ କରିବାକୁ ଚାହିଁଥିଲେ। ଦ୍ୱିତୀୟତଃ ସୋମନାଥ ସିଂହ ଜଗଦେବ (ଅନୁଗୁଳର ରାଜା) ଓ ଗୋପାଳକୃଷ୍ଣଙ୍କ ଭଳି ଓଡ଼ିଆ କବିମାନେ ଥିଲେ ଇଂରେଜ ବିରୋଧୀ। ପୁଣି ଭଞ୍ଜ ରାଜବଂଶ ଦୋହରା ବିଷୋୟୀ, ଚକ୍ରା ବିଷୋୟୀ ବିଦ୍ରୋହ ସହିତ ସଂଶ୍ଳିଷ୍ଟ ଥିଲା। ଅଷ୍ଟାଦଶ ଶତକର ଦ୍ୱିତୀୟାର୍ଦ୍ଧରୁ ଉନବିଂଶ ଶତକର ପ୍ରଥମାର୍ଦ୍ଧ ପର୍ଯ୍ୟନ୍ତ ଦକ୍ଷିଣ ଓଡ଼ିଶା, ବିଶେଷତଃ ଘୁମୁସର ଥିଲା ଇଂରେଜ ବିରୋଧୀ ସଂଗ୍ରାମର ପୀଠଭୂମି। ସେହି ବଂଶର ଉପେନ୍ଦ୍ର ଭଞ୍ଜଙ୍କୁ ଓଡ଼ିଆ ଜାତୀୟତାର ପବିତ୍ର ପ୍ରତୀକ ହିସାବରେ ଗ୍ରହଣ କରିବାକୁ ସେମାନେ ଚାହିଁ ନ ଥିଲେ। ଫଳସ୍ୱରୂପ, ନବସୃଷ୍ଟ ସାହିତ୍ୟକୁ ଏମାନେ ଅଭ୍ୟୁତଥିତ ଜାତୀୟ ଚେତନାର ପ୍ରତୀକ ଭାବରେ ପ୍ରତିଷ୍ଠା ଦେବାକୁ ଚାହିଁଥିଲେ। ଏହି ଭୂଇଁଫୋଡ ମଧ୍ୟବିତ୍ତ ଗୋଷ୍ଠୀର ମତକୁ ଖଣ୍ଡନ ଓ ଉଦ୍ୟମକୁ ପ୍ରତିଷ୍ଠିତ କରିବା ପାଇଁ ଗୌରୀଶଙ୍କରଙ୍କୁ ଦୀର୍ଘଦିନ ଧରି ସଂଗ୍ରାମ କରିବାକୁ ହୋଇଛି। **ଇନ୍ଦ୍ରଧନୁ** ଓ **ବିଜୁଳି**ରେ ଏହି ବିବାଦ ଚରମ ରୂପ ଧାରଣ କରି ଶେଷରେ ଭଞ୍ଜ ଓ ପ୍ରାଚୀନ ସାହିତ୍ୟ ସପକ୍ଷରେ ପରିସମାପ୍ତି ଲାଭ କରିବା ପର୍ଯ୍ୟନ୍ତ ଗୌରୀଶଙ୍କରଙ୍କୁ ବାରମ୍ବାର ସାମ୍ବାଦିକର ନୈର୍ବ୍ୟକ୍ତିକ ଭୂମିକା ପରିତ୍ୟାଗ କରି ସାହିତ୍ୟଚର୍ଚ୍ଚା କ୍ଷେତ୍ରରେ ଅବତୀର୍ଣ୍ଣ ହୋଇ ପକ୍ଷଭୁକ୍ତ ହେବାକୁ ପଡ଼ିଛି। ସେଥିପାଇଁ **ଉତ୍କଳ ଦୀପିକା**ର ପୃଷ୍ଠା ଅପର୍ଯ୍ୟାପ୍ତ ହେବାରୁ ତାଙ୍କୁ ଇନ୍ଦ୍ରଧନୁ ସାମୟିକପତ୍ର ପ୍ରକାଶ କରିବାକୁ ହୋଇଛି। ଗୌରୀଶଙ୍କର, ଉତ୍କଳଗୌରବ ମଧୁସୂଦନ ଦାସ , ଗୋପାଳବଲ୍ଲଭ, ଗୋବିନ୍ଦ ରଥଙ୍କ ନିକଟରେ ରାଧାନାଥଙ୍କ ଗୋଷ୍ଠୀ ପରାଜୟ ସ୍ୱୀକାର କରିବାକୁ ବାଧ୍ୟ ହୋଇଛି। ଏ ସବୁର ପଶ୍ଚାତରେ ବ୍ୟକ୍ତିଗତ ବ୍ୟବସାୟିକ ତାଡ଼ନା ଯେ ନାହିଁ, ତାହା ମଧ୍ୟ ନୁହେଁ। ମାସିକ ସାହିତ୍ୟ ପତ୍ର **ପ୍ରଦୀପ**ର ପ୍ରଥମ ବର୍ଷ ଦ୍ୱିତୀୟ ସଂଖ୍ୟାରେ ପ୍ରକାଶିତ 'ଜାତୀୟ ସାହିତ୍ୟ' ପ୍ରବନ୍ଧର ଆଲୋଚନା କରି ବିରୋଧୀମାନଙ୍କ ଯୁକ୍ତିର ସ୍ୱବିରୋଧିତା ଓ ଅସାରତା ଦେଖେଇବାକୁ ଚେଷ୍ଟା କରି ସେ ଲେଖିଛନ୍ତି:

ଅନ୍ୟ ସ୍ଥାନରେ ଲେଖା ଅଛି 'ଆମ୍ଭମାନଙ୍କ ଜାତୀୟ ସାହିତ୍ୟ ନିତାନ୍ତ ଅନୁନ୍ନତ' ଏବଂ ତହିଁ ପଛେ ପଛେ ବୋଲାଯାଇଛି 'ଆମ୍ଭମାନଙ୍କର ଜାତୀୟତା ନାହିଁ ଅତଏବ ସାହିତ୍ୟ ନାହିଁ।' ପରିଶେଷରେ ' ନୂତନ ଭାବ ପ୍ରବର୍ତ୍ତିତ ଓ ପ୍ରଚ୍ଚରିତ କରିବା ଜାତୀୟ ସାହିତ୍ୟର ଗୌରବ ଲକ୍ଷଣ' ଭାବରେ ନିର୍ଦ୍ଦେଶ କରି ଅଛନ୍ତି। ଯେ ସ୍ଥଳେ ପ୍ରାଚୀନ ସାହିତ୍ୟରେ ଶୋଭାନୁଭାବକତା ଓ ଭକ୍ତି ପରାୟଣତା ପ୍ରଦର୍ଶିତ ହୋଇଅଛି ସେ ସ୍ଥଳେ ତାହାକୁ ଜାତୀୟ ସାହିତ୍ୟ ବୋଲା ନ ଯିବ କାହିଁକି ଆଉ ଯେବେ ଜାତୀୟ ସାହିତ୍ୟ ଆଦୌ ନାହିଁ ତେବେ ତହିଁର ଅନୁନ୍ନତ ଅବସ୍ଥା କି ରୂପେ ସମ୍ଭବ ହୋଇପାରେ। ପ୍ରଥମେ ଜାତୀୟତା ଓ ଜାତୀୟ

ସାହିତ୍ୟର ଲକ୍ଷଣ ଚିହ୍ନାଇ ଦେଇଥିଲେ ବୋଧହୁଏ ତାହାଙ୍କ ମତ ବୁଝିବାରେ କଷ୍ଟ ହୁଅନ୍ତା ନାହିଁ। ଆମ୍ଭେମାନେ ଦେଖୁଅଛୁଁ ଯେ ଏକ ସମୟରେ ଓଡ଼ିଶାରେ ସାହିତ୍ୟର ଚର୍ଚ୍ଚା ବିଲକ୍ଷଣ ଥିଲା ଓ ନାନା ବିଷୟରେ ଲୋକେ ଗ୍ରନ୍ଥ ରଚନା କରିଯାଇ ଅଛନ୍ତି। ସେ ସମସ୍ତ ଆଦୌ ଜାତୀୟ ସାହିତ୍ୟ ମଧ୍ୟରେ ପରିଗଣିତ ହୋଇ ନ ପାରେ ଏଥିର ଯୁକ୍ତି ଆମ୍ଭେମାନେ ଘଟାଇ ପାରୁନାହୁଁ। [୩୮]

କେବଳ ପ୍ରାଚୀନ ସାହିତ୍ୟକୁ ନୁହେଁ, ଆଧୁନିକ ସାହିତ୍ୟକୁ ମଧ୍ୟ ସେ ଜାତୀୟ ସାହିତ୍ୟର ସଂପ୍ରାସାରଣ ଭାବରେ ଗ୍ରହଣ କରିଛନ୍ତି। ତେଣୁ ପ୍ରତ୍ୟେକ ସୁଲିଖିତ କାବ୍ୟ ଓ ନୂତନ ସାହିତ୍ୟରୂପର ପୁସ୍ତକକୁ ସେ ସାଦରେ ଅଭିନନ୍ଦନ ଜଣେଇଛନ୍ତି। ଜଗନ୍ମୋହନ ଲାଲଙ୍କ ନାଟକ, ରାମକୃଷ୍ଣ ସାହୁଙ୍କ କାବ୍ୟ ଓ ଉମେଶଚନ୍ଦ୍ରଙ୍କ ଉପନ୍ୟାସର ଆଲୋଚନା ଏହାର ଦୃଷ୍ଟାନ୍ତ। ଗୌରୀଶଙ୍କର ଓଡ଼ିଆ ସାହିତ୍ୟର ଆଲୋଚନା, ପ୍ରତ୍ୟାଲୋଚନା ମଧ୍ୟଦେଇ ଓଡ଼ିଆ ଜାତୀୟତାବାଦର ପ୍ରତିଷ୍ଠା ଓ ଜାତୀୟ ସାହିତ୍ୟର ପ୍ରଚାରହିଁ କରିଛନ୍ତି।

### ଛଅ

ଗୌରୀଶଙ୍କର ଥିଲେ, ଆଧୁନିକ କାଳରେ, ଓଡ଼ିଆ ଭାଷାରେ, ଓଡ଼ିଆ ସାହିତ୍ୟର ଆଦି ସମୀକ୍ଷକ। ଜାତୀୟ ଚେତନା ଥିଲା ତାଙ୍କ ସାହିତ୍ୟଚର୍ଚ୍ଚାର ପ୍ରେରଣାଭୂମି। ଓଡ଼ିଆ ଭାଷା, ପ୍ରାଚୀନ ସାହିତ୍ୟ ଓ ଓଡ଼ିଶାର ଇତିହାସ ପ୍ରତି ଐକାନ୍ତିକ ଅନୁରାଗରେ ତାଙ୍କର ସମୀକ୍ଷକଦୃଷ୍ଟି ଥିଲା ଆଚ୍ଛନ୍ନ। ସମକାଳୀନ ସାହିତ୍ୟର ସେ ଚର୍ଚ୍ଚା କରିଥିଲେ ସାମ୍ବାଦିକର କର୍ତ୍ତବ୍ୟବୋଧରୁ, ରୁଚି ଓ ନୀତିର ଆଦର୍ଶକୁ ଭିତ୍ତି କରି। ସାହିତ୍ୟ ଓ ସାହିତ୍ୟିକଙ୍କୁ ପରିଚୟ କରେଇବା ତାଙ୍କ ଉତ୍କଳ ପ୍ରୀତିର  ଥିଲା ଅନ୍ୟ ଏକ ବିଭାଗ। ରଘୁନାଥ ପରିଛା ଆଦି ସମକାଳୀନ ନାଟ୍ୟକାରଙ୍କ ପରିଚୟ ପ୍ରଦାନ [୩୯], ଏହି କର୍ତ୍ତବ୍ୟବୋଧରୁ ହିଁ ସେ କରିଥିଲେ। ତାଙ୍କ ସାହିତ୍ୟବିଚାରରେ ସାହିତ୍ୟର ବିଶୁଦ୍ଧ ନାନ୍ଦନିକ ମୂଲ୍ୟ କେବେ ବି ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଅଧିକାର କରି ନ ଥିଲା। କେଉଁ ପ୍ରାଚୀନ ରଚନାଗୁଡିକ ସାହିତ୍ୟ ଓ ଅନ୍ୟ କେଉଁ ଗୁଡ଼ିକ ସାହିତ୍ୟେତର, ତାଙ୍କର ଆଲୋଚନାରୁ ଏ ସବୁ କେବେ ବି ସ୍ପଷ୍ଟ ହୁଏ ନାହିଁ। ପୁଣି ସାହିତ୍ୟ ପୁସ୍ତକ ଗୁଡିକର ଆଲୋଚନା କଲାବେଳେ ସେ ନିର୍ଦ୍ଦିଷ୍ଟ ପଦ୍ଧତି ମଧ୍ୟ ଅନୁସରଣ କରିନାହାନ୍ତି।  ତାଙ୍କ ଜ୍ଞାନବିଶ୍ୱରେ ସାହିତ୍ୟର ଗୌଣ ଆସନ ଏହାର କାରଣ ହୋଇପାରେ। ପ୍ରତିବେଶୀ ବଙ୍ଗଳା ସାହିତ୍ୟରେ ଈଶ୍ୱରଚନ୍ଦ୍ର ଗୁପ୍ତ, ରାଜେନ୍ଦ୍ରଲାଲ ମିତ୍ର ଓ ରଙ୍ଗଲାଲ ବନ୍ଦ୍ୟୋପାଧ୍ୟାୟ ପ୍ରମୁଖ ସାହିତ୍ୟ ଆଲୋଚନାର ଯେଉଁ ପରମ୍ପରା ସୃଷ୍ଟି କରିଥିଲେ ଓ ସମକାଳୀନ ବଙ୍ଗଳା ସାମୟିକ ପତ୍ର ପୃଷ୍ଠାରେ ସାହିତ୍ୟ ଚର୍ଚ୍ଚାର ଯେଉଁଭଳି ବିବର୍ତ୍ତନ ହୋଇଥିଲା, ତାଙ୍କର ସମକାଳୀନ ଅନ୍ୟ ଓଡ଼ିଆ ବୁଦ୍ଧିଜୀବୀ ଓ ପତ୍ରିକାସମ୍ପାଦକଙ୍କ ଭଳି ସେସବୁ ସଂପର୍କରେ ଗୌରୀଶଙ୍କର ମଧ୍ୟ ଆସିଥିଲେ। କିନ୍ତୁ ସମକାଳୀନ ଓଡ଼ିଆ ସାହିତ୍ୟପତ୍ର ଓ ସମ୍ବାଦପତ୍ରର ଅନ୍ୟ ସମ୍ପାଦକମାନଙ୍କ ତୁଳନାରେ ତାଙ୍କ ପୁସ୍ତକ ସମୀକ୍ଷାକୁଡିକ ଯେ ଅଧିକ ସନ୍ତୁଳିତ ଓ ତାଙ୍କର ସାହିତ୍ୟଦୃଷ୍ଟି ଆପେକ୍ଷିକ ଭାବରେ ଅଧିକ ସ୍ୱଚ୍ଛ ଥିଲା – ଏହା ତୁଳନାତ୍ମକ ଦୃଷ୍ଟି ନେଇ

ଆଲୋଚନା କଲେ ସ୍ପଷ୍ଟ ହୁଏ। [୪୦] ସାହିତ୍ୟତତ୍ତ୍ୱ ସମ୍ପର୍କରେ ଅଗଭୀର ଜ୍ଞାନ, ଆପଣା ଜ୍ଞାନବିଶ୍ୱରେ ସାହିତ୍ୟଚର୍ଚ୍ଚା ପାଇଁ ସ୍ୱଳ୍ପ ସ୍ଥାନ ଥିବା ସତ୍ତ୍ୱେ ଗୌରୀଶଙ୍କର ଓଡ଼ିଆ ସାହିତ୍ୟ ଚର୍ଚ୍ଚାର ଭିତ୍ତି କେବଳ ସ୍ଥାପନ କରାଯାଇ ନାହାନ୍ତି, ଉନବିଂଶ ଶତାବ୍ଦୀର ଶେଷ ଚାଳିଶ ବର୍ଷରେ ଓଡ଼ିଆ ସାହିତ୍ୟସମୀକ୍ଷାର ନେତୃତ୍ୱ ମଧ୍ୟ ନେଇଛନ୍ତି। ସମୟର ପ୍ରଭାବରେ ସେଇ ନେତୃତ୍ୱର ଦୀପ୍ତି ମଳିନ ପଡ଼ିନାହିଁ।

**ପ୍ରାନ୍ତଟୀକା :**

୧. **ଉତ୍କଳ ଦୀପିକା** ୩୧/୪୩ (୨୪.୧୦.୧୮୯୬) ପୃ. ୩୩୯।

୨. ଏକ୍ସ ୩୧/୨୬ (୨୬ . ୬. ୧୮୯୬) ପୃ. ୨୦୬।

୩. **ଅଭିଭାଷଣ** (ସଂ. ବଂଶୀଧର ମହାନ୍ତି) ପୃ. ୧୦ ; କଟକ: ଷ୍ଟୁଡ଼େଣ୍ଟସ ଷ୍ଟୋରସ୍ (୧୯୭୮) ଦ୍ୱିତୀୟ ସଂସ୍କରଣ। ସ୍ୱର୍ଗତ ମହାନ୍ତି ଗୌରୀଶଙ୍କରଙ୍କ ଭାଷଣର ସମୟ ଦେଇଛନ୍ତି ୧୯. ୧୨.୧୯୧୬ (ପୃ .୧୫)। ମୃତ୍ୟୁଞ୍ଜୟ ରଥ କିନ୍ତୁ ଏହି ଭାଷଣର ସମୟ ଦେଇଛନ୍ତି ୧୬.୧୨.୧୯୧୬(**ମୃତ୍ୟୁଞ୍ଜୟ ଗ୍ରନ୍ଥାବଳୀ**, ପୃ ୩୫୪)। ଏହି ଉଭୟ ଭିତରୁ ମୃତ୍ୟୁଞ୍ଜୟଙ୍କ ପ୍ରଦତ୍ତ ସମୟ ହିଁ ଠିକ୍। (ଦ୍ରଷ୍ଟବ୍ୟ,ସାମନ୍ତରାୟ, ନଟବର **ଆଧୁନିକ ଓଡ଼ିଆ ସାହିତ୍ୟରେ ସମୀକ୍ଷା ଓ ସଂଗ୍ରହ** ପୃ. ୨୮୦, ଭୁବନେଶ୍ୱର (୧୯୭୭)।

୪. **ଉତ୍କଳ ଦୀପିକା** ୧୪/୨୬ (୨୮.୬.୧୮୭୯) ପୃ. ୧୦୧।

୫. ଏକ୍ସ ୧୩/୪ (୨୬.୧.୧୮୭୮) ପୃ. ୧୬।

୬. ଏକ୍ସ ୪/୧୫ (୧୦.୪.୧୮୬୯) ଅତିରିକ୍ତ। ପ୍ରେରିତ ପତ୍ର ବିଭାଗରେ ପ୍ରକାଶିତ ହୋଇଥିବାରୁ ଏହା ଗୌରୀଶଙ୍କରଙ୍କର ନିଜସ୍ୱ ମତାମତ ନୁହେଁ ବୋଲି ଯୁକ୍ତି କରାଯାଇପାରେ। ଗୌରୀଶଙ୍କର ନିଜେ ଛଦ୍ମନାମରେ 'ପ୍ରାପ୍ତ' ଶିରୋନାମାରେ ଲେଖୁଥିବା ଦୃଷ୍ଟାନ୍ତ ରହିଛି ଓ ସେଥିପାଇଁ ସେ ବିଚାରାଳୟର ସମ୍ମୁଖୀନ ହୋଇଥିବା ଜଣାଶୁଣା କଥା। ଭାଷା ଓ ବିଚାରଧାରାର ସମଧର୍ମିତା ହେତୁ ଏହାକୁ ଗୌରୀଶଙ୍କରଙ୍କର ମତାମତ ବୋଲି ଗ୍ରହଣ କରାଯାଇପାରେ।

୭. ଏକ୍ସ ୧୪/୩୭ (୧୩.୯.୧୮୭୯) ପୃ. ୧୪୭।

୮. ଏକ୍ସ ୨୭/୨ (୯.୧.୧୮୯୨) ପୃ. ୧୪। ଏହା ଅବଶ୍ୟ 'ପ୍ରେରିତ ପତ୍ର' ଶିରୋନାମାରେ ଜଣେ ପାଠକର ମତାମତ ରୂପେ ପ୍ରକାଶିତ।

୯. (i) Long Rev.James "Notes and Querries Suggested by a visit to Orissa in January, 1859" **Journal of Asiatic Society of Bengal**, Vol. xxviii, No. 3

(ii) **ରଙ୍ଗଲାଲ ଗ୍ରନ୍ଥାବଳୀ** ପୃ.୧୦୪-୧୧, କଲିକତା : ଦତ୍ତ ଚୌଧୁରୀ ଆଣ୍ଡ ସନ୍‌ସ (୧୯୪୭)।

୧୦. ସେନଗୁପ୍ତ, ସୁବୋଧଚନ୍ଦ୍ର **ବାଂଲା ସମାଲୋଚନା ପରିଚୟ** ପୃ.୫୦-୬୫, କଲିକତା

:ଏ. ମୁଖାର୍ଜୀ ଆଣ୍ଡ କୋମ୍ପାନୀ ପ୍ରାଇଭେଟ୍ ଲିମିଟେଡ (୧୯୭୦)।

୧୧. ସାମନ୍ତରାୟ, ନଟବର **ଓଡ଼ିଆ ସାହିତ୍ୟର ଇତିହାସ** (୧୮୦୩ - ୧୮୨୦)ପୃ. ୪୮୮, ଭୁବନେଶ୍ୱର (୧୯୮୩)।

୧୨. ଏକ୍ସ, ପୃ. ୪୮୯।

୧୩. **ଉତ୍କଳ ଦୀପିକା** ୨/୯ (୨.୩.୧୮୬୭) ପୃ. ୩୫।

୧୪. ମହାନ୍ତି, ବଂଶୀଧର "ଆଦି ସମାଲୋଚନା ଓ ସମୀକ୍ଷକ" ଅନ୍ତର୍ଭୁକ୍ତ, **ସାହିତ୍ୟପତ୍ର** ପୃ. ୭, କଟକ : ଓଡ଼ିଆ ସାହିତ୍ୟ ବିଭାଗ, ରେଭେନସା କଲେଜ (୧୯୮୦) ।

୧୫. **ଉତ୍କଳ ଦୀପିକା** ୪/୭ (୧୩.୨.୧୮୬୯) ପୃ. ୨୮।

୧୬. ସାମନ୍ତରାୟ, ନଟବର - ପୂର୍ବୋକ୍ତ, ପୃ. ୫୬୫ - ୬୭।

୧୭. **ଉତ୍କଳ ଦୀପିକା** ୪/୧୫ (୧୦.୪. ୧୮୬୯) ଅତିରିକ୍ତ। ପ୍ରେରିତ ପତ୍ର ଆକାରରେ ଲିଖିତ।

୧୮. ଏକ୍ସ ୧୨/୪୩ (୩.୧୧.୧୮୭୭) ପୃ.୧୭୧।

୧୯. ଏକ୍ସ ୨୬/୪୦ (୩.୧୦.୧୮୯୧) ପୃ. ୩୧୬-୧୭।

୨୦. Said, Edward W. **The World, The Text and the Critic** p 1-2 ; London: faber & faber (1984).

୨୧. **ଉତ୍କଳ ଦୀପିକା** ୪/୨୦ (୧୫.୫.୧୮୬୯) ପୃ. ୭୯।

୨୨. ଏକ୍ସ ୧୩/୧୦ (୯.୩.୧୮୭୮) ପୃ. ୩୮।

୨୩. ଏକ୍ସ ୧୦/୪ (୨୩.୦୧.୧୮୭୫) ପୃ. ୧୩।

୨୪. ଏକ୍ସ ୧୦/୫ (୩୦.୦୧.୧୮୭୫) ପୃ. ୧୯।

୨୫. ଏକ୍ସ ୧୦/୪୬ (୨୮.୧୧.୧୮୭୫) ପୃ. ୧୮୩।

୨୬. ଏକ୍ସ ୧୧/୪୩ (୨୮.୧୦.୧୮୭୬) ପୃ. ୧୬୯।

୨୭. ଏକ୍ସ ୧୩/୪ (୨୬.୦୧.୧୮୭୮) ପୃ.୧୪-୧୫।

୨୮. ଏକ୍ସ ୧୨/୩୯ (୨୯.୦୯.୧୮୭୭) ପୃ. ୧୫୫।

୨୯. ଏକ୍ସ ୩୦/୪ (୨୬.୦୧.୧୮୯୫) ପୃ.୨୭-୨୮।

୩୦. ଏକ୍ସ ୨୧/୧୦ (୦୬.୦୩.୧୮୮୬) ପୃ. ୭୬।

୩୧. **ଅଭିଭାଷଣ** ପୃ.୧୨।

୩୨. Anderson, Banedict **Imagined Communities : Reflections on the Origin and Spread of Nationalsim** p. 15, London : Verso (1983)

୩୩. Gramsci, Antonio **Selections from Prison Notebooks** (edited & translated by Q. Hoare and G.N. Smith) p..418, London: Lawrence and Wishart (1971).

୩୪. ଉତ୍କଳ ଦୀପିକା ୧/୫(୧.୯.୧୮୬୬) ପୃ.୧୯ ଓ ୧/୧୨ (୨୦.୧୦.୧୮୬୬) ପୃ.୪୬-୪୭।

୩୫. ଏକ୍କ ୨/୨ (୧୨.୧.୧୮୬୭) ଅତିରିକ୍ତ।
୩୬. Banerjee, Sumanta "Bogey of the Bawdy" in **Economic and Political Weekly**, Vol. XXII No. 29 p. 1204 -1205, July 18, 1987
୩୭. **ଉତ୍କଳ ଦୀପିକା** ୨୦/୩୦ (୨୫.୦୭୧୮୮୫) ପୃ. ୨୩୪।
୩୮. ଏକ୍କ ୨୦/୯ (୦୧.୦୩.୧୮୮୫) ପୃ. ୬୬।
୩୯. ଏକ୍କ ୬/୩ (୨୧.୧.୧୮୭୧) ପୃ.୧୦-୧୧।
୪୦. ଦାଶ, ଦେବେନ୍ଦ୍ର କୁମାର "ପଦ୍ମମାଳୀ : ସମକାଳୀନ ଚିନ୍ତାବୃତ୍ତ" ଅନ୍ତର୍ଭୁକ୍ତ, **ପ୍ରଥମ ଓଡ଼ିଆ ଉପନ୍ୟାସ ଓ ଔପନ୍ୟାସିକ** (ସଂ.ଶ୍ରୀଚରଣ ମହନ୍ତି) ପୃ. ୧-୨୦ ; ରାଉରକେଲା: ପ୍ରଗତି ଉତ୍କଳ ସଂଘ (୧୯୮୯)।



୧୮୭୨-୧୯୦୯

## ସାହିତ୍ୟ-ସମାଲୋଚକ ଶ୍ରୀ ଶ୍ୟାମସୁନ୍ଦର

ଦାଶରଥି ଦାସ

୧୮୯୭ - ୯୮ ରେ ଶ୍ରୀ ମନମୋହନ ଚକ୍ରବର୍ତ୍ତୀ ଇଂରାଜୀରେ 'Notes on Language and Literature of Oriya' ଶୀର୍ଷକ ଏକ ଦୀର୍ଘ ପ୍ରବଂଧ ପ୍ରକାଶ କରନ୍ତି । ( Journal of the Asiatic Society of Bengal 1897 and 1898) ଓଡ଼ିଆ ଭାଷା ଓ ସାହିତ୍ୟ ବୋଲି ଏତେ ବଡ଼ କୀର୍ତ୍ତିଟିଏ ଅଛି ବୋଲି ସ୍ପଷ୍ଟ ଜଣାପଡ଼େ । ଶ୍ରୀ ଚକ୍ରବର୍ତ୍ତୀଙ୍କ ଗବେଷଣାତ୍ମକ ଦୃଷ୍ଟିଭଙ୍ଗୀ ଓ ପରିଶୀଳତ ସାହିତ୍ୟବୋଧକୁ ଆଜି ମଧ୍ୟ ପ୍ରଶଂସା କରିବାକୁ ହୁଏ । ପ୍ରବଂଧଟିର ସ୍ଥାୟିମୂଲ୍ୟ ଅପେକ୍ଷା ଐତିହାସିକ ମୂଲ୍ୟ ଅବଶ୍ୟ ଅଧିକ । ତାହା ସେଦିନ ଓଡ଼ିଆଙ୍କପାଇଁ ଆହ୍ୱାନଟିଏ ଉପସ୍ଥିତ କରାଏ । ଓଡ଼ିଆଏ କ'ଣ ଓଡ଼ିଆ ସାହିତ୍ୟକୁ  ଚିହ୍ନି ଚିହ୍ନାଇ ପାରିବେ ନାହିଁ ? ସୁବିଶାଳ ଓଡ଼ିଆ ସାହିତ୍ୟର ଇତିହାସ ପ୍ରସ୍ତୁତ କରିପାରିବେ ନାହିଁ ? ରେସପନସ୍ (ହ୍ୱରଷ୍ପକ୍ତୁକ୍ଭଷ୍ପର) ମିଳେ କେବଳ ପାରଳାଖେମୁଣ୍ଡିରୁ । କଠିନ ପ୍ରଶ୍ନଟିର ସମ୍ମୁଖୀନ ହୁଅନ୍ତି ଶ୍ରୀ ଶ୍ୟାମସୁନ୍ଦର ରାଜଗୁରୁ (୧୮୬୨-୧୯୦୯); ସଦୁଦ୍ୟମ ଆରମ୍ଭ କରନ୍ତି ଓ ଲେଖନ୍ତି ୧୩ଟି ପ୍ରବନ୍ଧ, ୧୪ ଜଣ ପ୍ରାଚୀନ ଓଡ଼ିଆ କବିଙ୍କ କୃତି ଓ କୃତିତ୍ୱ ସମ୍ବନ୍ଧରେ । ତାଙ୍କ କବି ତାଲିକାରେ ଏକପକ୍ଷରେ ଯେପରି ସାରଳା ଦାସ, ବଳରାମ ଦାସ, ଦୀନକୃଷ୍ଣ ଦାସ, ଧନଞ୍ଜୟ ଭଞ୍ଜ ଓ କୃଷ୍ଣ ସିଂହଙ୍କ ନାମୋଲ୍ଲେଖ ଅଛି; ଅନ୍ୟପକ୍ଷରେ ସେପରି ବିଭିନ୍ନ କାଳର ଦ୍ୱାରକା ଦାସ, ହଳଧର ଦାସ, ଗୋପାଳ କବି, ଦାଶରଥି ଦାସ, କୃପାସିନ୍ଧୁ ଦାସ ଓ ରାମ ଦାସ ଆଦି ଅପ୍ରଧାନ କବିଙ୍କ ଆଲୋଚନା ରହିଛି । ନିର୍ବାଚନ ବୋଧହୁଏ ଯଦୃଚ୍ଛ ନୁହେଁ । ଓଡ଼ିଆ ସାହିତ୍ୟ ଇତିହାସ ରଚନାର ବିରାଟ ପରିକଳ୍ପନା ହାତରେ ରଖି ସେ ଅଗ୍ରସର ହୋଇଛନ୍ତି । ସେ ହୁଏତ ସାରଳା ଦାସ ଓ ବଳରାମ ଦାସଙ୍କଠାରୁ ଆରମ୍ଭ କରିବାକୁ ଚାହିଁଛନ୍ତି । କିନ୍ତୁ ଯେଉଁ ପଦ୍ଧତିରେ ସେ ବିଚାର ବିଶ୍ଳେଷଣ ଆରମ୍ଭ କରିଛନ୍ତି, ସେହି ପଦ୍ଧତିର ଉପଯୁକ୍ତ ଉପାଦାନ ଓ ଉପକରଣ ସବୁ କବିଙ୍କ ସମ୍ବନ୍ଧରେ କ୍ରମାନ୍ୱୟରେ ଉପଲବ୍ଧ ହୋଇନାହିଁ । ତେଣୁ ତାଙ୍କ ହାତପାଖରେ ଯେଉଁମାନଙ୍କ ଜନ୍ମକାଳ ଓ ରଚନା ସଂପର୍କରେ ଉପଯୁକ୍ତ ନିର୍ଭରଯୋଗ୍ୟ ପ୍ରମାଣ ବର୍ତ୍ତମାନ, କେବଳ ସେମାନଙ୍କ ସମ୍ପର୍କରେ ସେ କ୍ରମଶଃ ଲେଖିଛନ୍ତି । ଇତିହାସର କ୍ରମ ଓ ପରିଣାମ ଅନୁପସ୍ଥିତ । ୧୯୦୩ ଜୁଲାଇରୁ ୧୯୦୪ ମେ ମାସ ମଧ୍ୟରେ ସେ ପ୍ରବଂଧଗୁଡ଼ିକ ଲେଖିଛନ୍ତି ଓ 'ଉତ୍କଳ ସାହିତ୍ୟରେ' ପ୍ରକାଶ କରିଛନ୍ତି । ମୃତ୍ୟୁର ଚାରି/ପାଞ୍ଚ ବର୍ଷ ପୂର୍ବରୁ ସେ କୌଣସି କାରଣରୁ ଲେଖାଲେଖି ବନ୍ଦ ରଖିଛନ୍ତି । ୧୯୦୯ ରେ ତାଙ୍କର ଅକାଳ ମୃତ୍ୟୁ ଘଟିଛି । ସଦୁଦ୍ୟମଟିରେ ପୂର୍ଣ୍ଣଚ୍ଛେଦ ପଡିଛି । ଶ୍ୟାମସୁନ୍ଦରଙ୍କ ପ୍ରଚେଷ୍ଟା ଅଚରିତାର୍ଥ ନିଶ୍ଚୟ, କିନ୍ତୁ

ବ୍ୟର୍ଥ କି ବିଡ଼ମ୍ବିତ ନୁହେଁ ବୋଲି ଆଲୋଚକମାନେ କହିଛନ୍ତି। ସଦୁଦ୍ୟମ ମାତ୍ରେ ସ୍ୱତଃ ସାର୍ଥକ; ହେଉନା ପଛେ ତାହା ଯେତେ ଅପୂର୍ଣ୍ଣ ଓ ଅଚରିତାର୍ଥ। ଶ୍ୟାମସୁନ୍ଦରଙ୍କ ଉଦ୍ୟମ ଉଦ୍ୟମସ୍ତରରେ ରହିଯାଇଛି, କିନ୍ତୁ ବ୍ୟର୍ଥ ହୋଇନାହିଁ। ଓଡ଼ିଆ ସମାଲୋଚନା କ୍ଷେତ୍ରରେ ସେ ଯେଉଁ ଯୁକ୍ତିପ୍ରବଣ ବିଚାରଶୀଳ ଆଧୁନିକ ମାନର ସୂତ୍ରପାତ କରିଛନ୍ତି, ଇତିହାସ-ସଚେତନ ଗବେଷଣାତ୍ମକ ଦୃଷ୍ଟିଭଙ୍ଗୀ ସହିତ ଯେପରି ସୂକ୍ଷ୍ମ ସାହିତ୍ୟବୋଧର ସଂଯୋଗ ଘଟାଇଛନ୍ତି; ସେସବୁର ସୁଦୂରପ୍ରସାରୀ ପ୍ରଭାବ ବିଦ୍ୟମାନ। ସାହିତ୍ୟ ସମାଲୋଚନା କ୍ଷେତ୍ରରେ ଯେଉଁ ଐତିହାସିକ ପଦ୍ଧତି ଅଛି, ଓଡ଼ିଆ ସାହିତ୍ୟବିଚାର କ୍ଷେତ୍ରରେ ତାହାର ପରିଶ୍ରମୀ ପ୍ରବର୍ତ୍ତକ ସେ। ଅଧିକନ୍ତୁ ସେଠାରେ ଭାବାଳୁତାଶୂନ୍ୟ ଉତ୍ତରସୂରୀ ଭାବରେ ନଟବର ସାମନ୍ତରାୟଙ୍କୁ ଚିହ୍ନିତକଲେ ଭୁଲ ହେବନାହିଁ। (ଡଃ ନଟବର ସାମନ୍ତରାୟଙ୍କ ‘ ମୁଁ କିପରି ଗବେଷଣା କଲି’ ଗ୍ରନ୍ଥରେ ‘ସାହିତ୍ୟ ସାଧକ ଶ୍ରୀ ଶ୍ୟାମସୁନ୍ଦର’ ଶୀର୍ଷକ ୨ଟି ପ୍ରବନ୍ଧ ଅଛି। ସେଥିରେ ସେ ଶ୍ୟାମସୁନ୍ଦରଙ୍କ ବିଚାର ଓ ଦୃଷ୍ଟିଭଙ୍ଗୀର ଭୂୟସୀ ପ୍ରଶଂସା କରିଛନ୍ତି। ସେ ଦୁଇଟି ପ୍ରବନ୍ଧ ପଢ଼ିଲେ ଏପରି ମନ୍ତବ୍ୟର ଯଥାର୍ଥତା କଳି ହେବ)। ତାଙ୍କର ସେହି ଅଳ୍ପ କେତୋଟି ପ୍ରବନ୍ଧରୁ ଯେବେ ଭବିଷ୍ୟତରେ ଗୋଟିଏ ନଟବର ସାମନ୍ତରାୟ ଭୂମିଷ୍ଠ ହୋଇ ପାରନ୍ତି, ତାହା କିଛି କମ୍ କଥା ନୁହେଁ। ଦୁହେଁ Scholar - Critic.

ଶ୍ରୀ ଶ୍ୟାମସୁନ୍ଦର ରାଜଗୁରୁ ୧୮୯୨ ଖ୍ରୀଷ୍ଟାବ୍ଦରେ ରାଜମହେନ୍ଦ୍ରି କଲେଜରୁ ବି.ଏ. ପାସ୍ କରନ୍ତି। ଗଞ୍ଜାମ ଜିଲ୍ଲାର ପ୍ରଥମ ଗ୍ରାଜୁଏଟ ସେ । ହୁଅନ୍ତି ଓଡ଼ିଶାର ପ୍ରଥମ ଗବେଷକ ଓ ସମାଲୋଚକ -Scholar-Critic । ଭଲ ଛାତ୍ର ଥିଲେ ସେ, ପରିଶ୍ରମୀ ବି। ରାଜପୃଷ୍ଠପୋଷକତା ବଳରେ ସେ ପାରଳାଖେମୁଣ୍ଡିରେ ଉନ୍ନତ ମାନର ଗ୍ରନ୍ଥାଳୟଟିଏ ସ୍ଥାପନ କରି ପାରିଥିଲେ ଓ ଇଂରାଜୀ ତଥା ସଂସ୍କୃତ ଭାଷାର ଭଲ ବହି ପଢ଼ିବାକୁ ପାଇଥିଲେ। ଇଂରାଜୀ ଭାଷା ଓ ସାହିତ୍ୟରେ ତାଙ୍କର ଗଭୀର ପ୍ରବେଶ ବି ଥିଲା। ‘ ଞଷର ଏବଭହବଞ୍ଚ ଘରଙ୍ଗଷ୍ପ’ ଇଂରାଜୀ ପତ୍ରିକାର ସଂପାଦକ ଥିଲେ ସେ। ‘ ଧ୍ରୁବ ନାଟକ’ ର ଭାଷା ପକ୍ଷ ସମର୍ଥନ କରିବାକୁ ସେ ଗବଙ୍ଘ ଗଙ୍କକ୍ଷକ୍ଷବଞ୍ଚ (*Science of Language*), Whitney (*Life and Growth of Language*) ଓ ବିମସ୍ ( *Comparative Grammar : Vol. II* ) ଆଦି ପାଶ୍ଚାତ୍ୟ ବିଦ୍ୱାନଙ୍କ ବିଚାର ଉପସ୍ଥାପନ କରିଛନ୍ତି। ଏଥିରୁ ମନେହୁଏ ପାଶ୍ଚାତ୍ୟ ସମାଲୋଚନା ସାହିତ୍ୟ ସହିତ ସେ ଅପରିଚିତ ନଥିବେ। ଐତିହ୍ୟଏଷଣା ଓ ଇତିହାସଚେତନା ସଙ୍ଗେ ସେ ପାଶ୍ଚାତ୍ୟ ସାହିତ୍ୟଚିନ୍ତା ଓ ରୁଚିବିଶ୍ୱାସକୁ ମିଳାଇ ଘେନିଛନ୍ତି। ଓଡ଼ିଆ ସାରସ୍ୱତ କୃତିର କାଳ ଓ କଳା ବିଚାର କରିଛନ୍ତି। କଳା ସହିତ କାଳର ସଂପର୍କ ଅବଶ୍ୟ ଅଛି। Hippolyte A. Taine (1828 - 93) ସେଦିନ *History of English Literature* ଲେଖନ୍ତି। ତାଙ୍କ ସମୟର ଦୃଷ୍ଟିକୋଣ ଥିଲା ବୈଜ୍ଞାନିକ ଦୃଷ୍ଟିକୋଣ। ଧର୍ମ ଓ ମନନଠାରୁ ଆରମ୍ଭ କରି ସମାଜନୀତି ପର୍ଯ୍ୟନ୍ତ ସବୁକିଛିକୁ ବୈଜ୍ଞାନିକ ଦୃଷ୍ଟିକୋଣରୁ ବ୍ୟାଖ୍ୟା କରିବାର ପ୍ରବଣତା ସମୁଦ୍ୟତ ରହିଥିଲା। ତେଇନେ ସମୟର ପ୍ରାଣସ୍ପନ୍ଦନକୁ ବୁଝିଥିଲେ ଓ ସାହିତ୍ୟ-ସମାଲୋଚନାକୁ ଅବୈଜ୍ଞାନିକ ଭାବାଳୁତା ହାତରୁ ମୁକ୍ତକରି

କାର୍ଯ୍ୟକାରଣ-ସୂତ୍ର-ଘଟିତ ବୈଜ୍ଞାନିକ ବୁଦ୍ଧିବିଚାରର ଭିତ୍ତି ଉପରେ ସ୍ଥାପନ କରିଥିଲେ; ଗଢ଼ିଥିଲେ ବି ଅନୁଧାବନୀୟ ସୂତ୍ର ତିନୋଟି; ରେସ୍, ମିଲିଉ ଓ ମୋମେଣ୍ଟ (Race, Milleu I Moment) । ସ୍ରଷ୍ଟା ସୃଷ୍ଟିର ସବୁ କୃତିତ୍ୱ ପାଇ ନପାରନ୍ତି; ସେ ଯେଉଁ ଦେଶ, କାଳ ଓ ପରିବେଶରେ ସାହିତ୍ୟ ସୃଷ୍ଟି କରିଛନ୍ତି, ସେ ସବୁର ପରୋକ୍ଷ ଭୂମିକା ସେଥିରେ ବର୍ତ୍ତମାନ। ରେସ୍, ମିଲିଉ ଓ ମୋମେଣ୍ଟ ଅବଶ୍ୟ ତାଙ୍କୁ ସ୍ରଷ୍ଟାଭାବରେ ଗଢ଼ିବାରେ ସହଯୋଗିତା କରିଛନ୍ତି। ସାହିତ୍ୟ ବିଚାରର ଏହି ଐତିହାସିକ ପଦ୍ଧତି ବିଷୟ-ବିଶ୍ଳେଷଣ କରିବାକୁ ପ୍ରଥମେ ଲେଖକର ସଂଧାନ ରଖେ, ଲେଖକଙ୍କୁ ବିଚାର କରିବାକୁ ଯାଇ ତାଙ୍କ ଆବିର୍ଭାବ କାଳ ନିରୂପଣ କରେ; ତାଙ୍କ ଜାତି, ଚରିତ୍ର ଓ ଦେଶର ପରିଚୟ ଖୋଜେ; ଯଦିଚ ବିଷୟ-ପ୍ରାଧାନ୍ୟ ଏହି ପଦ୍ଧତିର ମୁଖ୍ୟ ଲକ୍ଷଣ। ଏହି ପଦ୍ଧତିରେ ବିପଦ ଅଛି; ସାହିତ୍ୟ ସୃଷ୍ଟିକୁ ଦେଶ, କାଳ, ପାତ୍ରର ପ୍ରତିବିମ୍ବ ବୋଲି ଭାବିବାର ଯାନ୍ତ୍ରିକତାରେ ପଡ଼ିଗଲେ ଏହି ବିପଦ ଦେଖାଦିଏ। କିନ୍ତୁ ସେଥିରୁ ଆତ୍ମରକ୍ଷା କରି ପାରିଲେ ଯଥେଷ୍ଟ ସୁଫଳ ମିଳେ। ତେଇନେଙ୍କ ସମସାମୟିକ ସ୍ୟାଁତ୍ ବୁଭଙ୍କଠାରୁ ଆରମ୍ଭ କରି ଆମ ସମୟର ଲିଓନେଲ ଟ୍ରିଲିଂଙ୍କ ପର୍ଯ୍ୟନ୍ତ ଅନେକ ସମାଲେଚକ ଏହି ପଦ୍ଧତିକୁ ପ୍ରକାରାନ୍ତରେ ସମର୍ଥନ ଜଣାଇଛନ୍ତି। ଆମ ପ୍ରତିବେଶୀ ବଙ୍ଗଳା ସାହିତ୍ୟରେ ଗତ ଶତାବ୍ଦୀରେ ବଙ୍କିମଚନ୍ଦ୍ର ଏହି ପଦ୍ଧତିର ବଶବର୍ତ୍ତୀ ହୋଇ ସାହିତ୍ୟକୁ ଦେଶ, କାଳ ଓ ଜାତୀୟ ଚରିତ୍ରର ' ପ୍ରତିବିମ୍ବ ମାତ୍ର' ବୋଲି କହିବାକୁ ଦ୍ୱିଧା କରି ନଥିଲେ। ଶ୍ୟାମସୁନ୍ଦର ରାଜଗୁରୁ ସମୟର ପ୍ରାଣସ୍ପନ୍ଦନ ( zeitgeist) କୁ ବୁଝିପାରିଛନ୍ତି। ତେଇନେଙ୍କ *History of English Literatur*ର ସେ ପଢିଥାଇ ପାରନ୍ତି। ତାହାର ଇଂରାଜୀ ଅନୁବାଦ ପ୍ରକାଶ ପାଇଥିଲା ୧୮୮୬ ରେ, ନିୟୁଅର୍କରୁ। ତେଣୁ ଓଡ଼ିଆ ସାହିତ୍ୟ ଇତିହାସ ପ୍ରଣୟନ ଉଦ୍ଦେଶ୍ୟରେ ସେ ଯେଉଁ ଆୟୋଜନ କରିଥିଲେ, ତାହା ମୂଳରୁ ଥିଲା ସେଦିନର ନବ୍ୟପଦ୍ଧତିନିଷ୍ଠ। ବେଶ୍ ବିସ୍ମୟର କଥା। ଆଜି ସମାଲୋଚନାରେ ଅନେକ ନବ୍ୟପଦ୍ଧତି ପ୍ରଚଳିତ ଅବଶ୍ୟ, କିନ୍ତୁ କେଉଁ ଓଡ଼ିଆ ସମାଲୋଚକ ପଦ୍ଧତିନିଷ୍ଠ ବିଚାର କରୁଛନ୍ତି ? ନବ୍ୟ-ପଦ୍ଧତିର ସୀମା ଓ ସମ୍ଭାବନା ବୁଝିଛନ୍ତି ? ସମୟର ଆହ୍ୱାନ ଶୁଣୁଛନ୍ତି ? ଏପରିକି ଅନେକେ ଆଜି ମଧ୍ୟ ଶ୍ୟାମସୁନ୍ଦରଙ୍କୁ ବୁଝିବାକୁ ସମର୍ଥ ନୁହନ୍ତି। ଏଇଥିପାଇଁ ଶ୍ୟାମସୁନ୍ଦରଙ୍କୁ ଶ୍ରଦ୍ଧା ଓ ସମ୍ମାନ ଜ୍ଞାପନ କରିବାକୁ ହୁଏ ଯେ, ଊନବିଂଶ ଶତାବ୍ଦୀରେ ଯେଉଁ ଓଡ଼ିଆ ସାହିତ୍ୟ ସମାଲୋଚନାର ସୂତ୍ରପାତ ହୋଇଥିଲା, ତାହାରି ରୋମନ୍ଥନରେ ସେ ଶକ୍ତିକ୍ଷୟ କରିନାହାନ୍ତି; ସେଦିନ ସେ ବାଦବିସମ୍ବାଦର ଊର୍ଦ୍ଧ୍ୱକୁ ଉଠିଛନ୍ତି। ସମାଲୋଚନା ସହିତ ଗବେଷଣାକୁ ଯୋଡ଼ିଛନ୍ତି। ବିଦଗ୍ଧସାହିତ୍ୟ ଆଲୋଚନାରେ ଲୋକସାହିତ୍ୟର ବଳିଷ୍ଠ ଭୂମିକାକୁ କଳିଛନ୍ତି। ଭାବପ୍ରବଣତାକୁ କେଉଁଠି ସେ ପ୍ରଶ୍ରୟ ଦେଇନାହାନ୍ତି ମଧ୍ୟ। ଅଧିକନ୍ତୁ ଯାହାକୁ ଆଜି textual criticism କହୁଛନ୍ତି, ସେ ତାହାର ସୂତ୍ରପାତ କରିଛନ୍ତି। ଆଲୋଚ୍ୟ ଗ୍ରନ୍ଥର ମୂଳପାଠ ଖୋଜିଛନ୍ତି। ପୋଥି ସଂଗ୍ରହ କରିଛନ୍ତି। ବିଭିନ୍ନ ସଂଗ୍ରହାଳୟର ଦ୍ୱାରସ୍ଥ ହୋଇଛନ୍ତି। ଆଉ ମଧ୍ୟ ନିର୍ଭରଯୋଗ୍ୟ ପ୍ରମାଣ ସଂଗ୍ରହ

କରିବାକୁ ରେକର୍ଡ଼ପତ୍ର ଘାଣ୍ଟିଛନ୍ତି, ମୂଳସହିତ ମିଳାଇ ଘେନି ଅନୁବାଦର କୃତିତ୍ୱ ସେ ହିଁ ପ୍ରଥମେ ବୁଝାଇଛନ୍ତି। ଏସବୁ ଦୃଷ୍ଟିରୁ 'ପ୍ରବଂଧାବଳୀ'ତାଙ୍କର ମହତ ସମ୍ଭାବନାକୁ ମନେ ପକାଇ ଦେଉଥିବ ଓ ସମକାଳୀନ ସମାଲୋଚନା ସାହିତ୍ୟରେ ତାଙ୍କ ଅଭାବବୋଧକୁ ନିରନ୍ତର ସମୁଦ୍ୟତ ରଖିଥିବ। କୀର୍ତ୍ତି ଅପ୍ରଚୁର, କିନ୍ତୁ ଉଜ୍ଜ୍ୱଳ ଓ ସମ୍ଭାବନାମୟ।

ଶ୍ୟାମସୁନ୍ଦରଙ୍କ ପାଇଁ ସମାଲୋଚନାର ପ୍ରଥମ ଓ ପ୍ରଧାନ କାର୍ଯ୍ୟ -କଳାସୃଷ୍ଟିର କାଳ ନିରୂପଣ। ଏଥିପାଇଁ ସେ ଲେଖକଙ୍କ ଜନ୍ମକାଳ ନିରୂପଣ କରିବାକୁ ଉଦ୍ୟମ କରିଛନ୍ତି ସର୍ବତ୍ର। ଅବଲମ୍ବନ ଅନୁମାନ ନୁହେଁ, କି କଳ୍ପନା ନୁହେଁ। ଏକମାତ୍ର ଅବଲମ୍ବନ ଐତିହାସିକ ତଥ୍ୟ ଓ ମୂଳପାଠରୁ ଉପଲବ୍ଧ ଅଭିଜ୍ଞାନ। ଯେଉଁଠି ତଥ୍ୟ କି ପ୍ରମାଣ ଅନୁପସ୍ଥିତ,ସେଠାରେ ସେ ନୀରବ ରହନ୍ତି। 'ରସକଲ୍ଲୋଳ' ପ୍ରଣେତା ଦୀନକୃଷ୍ଣଙ୍କ କାଳନିରୂପଣରୁ ସେ ନିବୃତ୍ତ ରହିଛନ୍ତି। ମାତ୍ର ବିନା ପ୍ରମାଣରେ ଲେଖକଙ୍କ ଆବିର୍ଭାବ କାଳକଥା ଚିନ୍ତା କରିପାରନ୍ତିନାହିଁ, କି ଲେଖାର ଆଲୋଚନା କରନ୍ତିନାହିଁ।ଐତିହାସିକ ସମାଲୋଚନା ପଦ୍ଧତିର ଦୁର୍ବଳତା ଏଇଠି - ଏଇ relativism । ସିଧା ସୃଷ୍ଟି ପାଖରେ ପହଞ୍ଚିବାକୁ ତା'ର ସଙ୍କୋଚ। ଆଗେ ଡ଼କୁମେଣ୍ଟ, ପଛେ ମନୁମେଣ୍ଟ। ଆଗେ ଦଲିଲ୍ ଦସ୍ତାବିଜ, ପଛେ କୀର୍ତ୍ତିକଥା। ସାହିତ୍ୟ-ସମାଲୋଚନା କିନ୍ତୁ ଆଗେ ମନୁମେଣ୍ଟକୁ ଦେଖେ। କାରଣ ଡ଼କ୍ୟୁମେଣ୍ଟ ସବୁବେଳେ ସତ୍ୟସିଦ୍ଧ ହୋଇଥିବ ବୋଲି କିଏ ପ୍ରତିଶ୍ରୁତି ଦେବ ? ନିର୍ଭରଶୀଳ ବୋଲି କିଏ କହିବ ? ଓଡ଼ିଶାରେ ଯେଉଁଠି ' ସାହିତ୍ୟିକ ଶଠତା' ପ୍ରବଳ ଓ ପ୍ରକ୍ଷିପ୍ତପାଠର ପ୍ରାଦୁର୍ଭାବ ପ୍ରଶସ୍ତ,ସେଠାରେ ତଥାକଥିତ ପ୍ରମାଣ ଉପରେ ନିର୍ଭର କରିବା ବିପଦଜନକ। କିନ୍ତୁ ଶ୍ୟାମସୁନ୍ଦରଙ୍କ ପ୍ରବନ୍ଧର ବିଚାର ବେଳେ ତାଙ୍କ ବୈଜ୍ଞାନିକ ଦୃଷ୍ଟିକୋଣର ଭାବାବେଗ ବର୍ଜିତ ସ୍ଥୈଯତାକୁ ପ୍ରଶଂସା କରିବାକୁ ହୁଏ। ସେ ଭୁଲ ନ କରିଛନ୍ତି ନୁହେଁ, ପ୍ରମାଦରେ ନ ପଡ଼ିଛନ୍ତି ନୁହେଁ; ସେ ଭୁଲ କରିଛନ୍ତି ଓ ପ୍ରମାଦରେ ପଡ଼ିଛନ୍ତି। ନଟବର ସାମନ୍ତରାୟ ଏ ବିଷୟରେ ତାଙ୍କ "ସମୀକ୍ଷକ ଶ୍ୟାମସୁନ୍ଦର" ପ୍ରବଂଧରେ ପୁଙ୍ଖାନୁପୁଙ୍ଖ ଆଲୋଚନା କରିଛନ୍ତି। ରୋମନ୍ଥନ ଅନାବଶ୍ୟକ। ସେ କିପରି **ଅଧ୍ୟାତ୍ମରାମାୟଣର** ଅନୁବାଦକ ହଳଧର ଦାସ ଓ ରାଜକବି ଧନଞ୍ଜୟ ଭଞ୍ଜଙ୍କ ସମୟ ନିର୍ଦ୍ଧାରଣରେ ଜଟିଳତା ସୃଷ୍ଟି କରିଥିଲେ, କିପରି **ବ୍ରଜବିହାର** ପ୍ରଣେତା କୃପାସିନ୍ଧୁ ଓ **ଦାର୍ଢ୍ୟତାଭକ୍ତିରସାମୃତର** ଲେଖକ ରାମଦାସଙ୍କ ଆବିର୍ଭାବ ସମୟ ନିରୂପଣ ବେଳେ ପ୍ରମାଦରେ ପଡ଼ିଥିଲେ; ସେସବୁ କଥା ସାମନ୍ତରାୟ ଫେଡ଼ି ଦେଖାଇଛନ୍ତି ଓ ଶ୍ରୀ କେଦାରନାଥ ମହାପାତ୍ର କିପରି ସେଗୁଡ଼ିକୁ ସଂଶୋଧନ କରି ଦେଇଛନ୍ତି, ତାହାର ବିଚାର ବି କରିଛନ୍ତି। ଅଧିକନ୍ତୁ ସେ **ଜଗମୋହନରାମାୟଣ** ପ୍ରଣେତା ବଳରାମ ଦାସ ଓ **ଛତିଶଗୁପ୍ତଗୀତାର** ଲେଖକ ବଳରାମ ଦାସଙ୍କୁ ଏକ ଓ ଅଭିନ୍ନ ବ୍ୟକ୍ତି ବୋଲି ସିଦ୍ଧାନ୍ତ କରି ଓଡ଼ିଆ ସାହିତ୍ୟ ଇତିହାସରେ ଯେଉଁ ଗୁରୁତର ପ୍ରମାଦ ସୃଷ୍ଟି କରିଥିଲେ, ତାହା ବି ସାମନ୍ତରାୟ ଆଲୋଚନା କରିଛନ୍ତି। ତାହା ଦୂରହୋଇଛି ଆର୍ତ୍ତବଲ୍ଲଭଙ୍କଦ୍ୱାରା, ବହୁକାଳ ପରେ। ପୂର୍ବସୂରୀଙ୍କ ଏପରି ତ୍ରୁଟିବିଚ୍ୟୁତ ଓ ଭ୍ରମପ୍ରମାଦ ଦେଖାଇ ଦେବା ସହଜ, ତଦ୍ଦ୍ୱାରା

ଶ୍ୟାମସୁନ୍ଦରଙ୍କ ବ୍ୟକ୍ତିତ୍ୱ କି ବିଚାର ଖର୍ବ ହେଉନାହିଁ। ବରଂ ସେଦିନ ସେ ଯେ ଏପରି ଭ୍ରମପ୍ରମାଦରେ ପଡ଼ିଥିଲେ, ତାହାହିଁ ତାଙ୍କର କୃତିତ୍ୱ ଓ ବିଶେଷତ୍ୱ। ଭୁଲ କରାଯାଇପାରେ, କିନ୍ତୁ ଉପସ୍ଥିତ ତଥ୍ୟ କି ପ୍ରମାଣକୁ ଅବମାନନା କରାଯାଇ ନପାରେ। ପରେ ଅଧିକରୁ ଅଧିକ ପ୍ରମାଣ ମିଳିଛି। ତ୍ରୁଟି ସଂଶୋଧିତ ହୋଇଛି। ସାରଳା ଦାସ, **ଜଗମୋହନରାମାୟଣ** ପ୍ରଣେତା ବଳରାମ ଦାସ, ଦାଶରଥି ଦାଶ, କୃଷ୍ଣସିଂହ, ହରେକୃଷ୍ଣ ଓ ନିଶଙ୍କରାୟ ରାଣୀଙ୍କ ଆବିର୍ଭାବ  କାଳ ସେ ଠିକ୍ ଭାବରେ ନିରୂପଣ କରିଛନ୍ତି। ତାଙ୍କ ସିଦ୍ଧାନ୍ତ ଏବେ ସ୍ୱୀକୃତ ଓ ଶିରୋଧାର୍ଯ୍ୟ। ତାଙ୍କଦ୍ୱାରା ନିରୂପିତ କାଳକୁ ଆମେ ଇଂରାଜୀ ସାଲରେ ପରିଣତ କରିଛୁ ମାତ୍ର। **ରସକଲ୍ଲୋକାର** ଦୀନକୃଷ୍ଣ ଓ **ରସବିନୋଦ**କାର ଦୀନକୃଷ୍ଣ ଯେ ଏକ ଓ ଅଭିନ୍ନ ବ୍ୟକ୍ତି ନୁହନ୍ତି, ତାଙ୍କର ଏ ସିଦ୍ଧାନ୍ତକୁ ନାନା ବାଦବିସମ୍ବାଦ ପରେ ଆଜି ବି ମାନିବାକୁ ହୁଏ। ରଚନାଶୈଳୀ ଭିନ୍ନ। ବ୍ୟକ୍ତିଭେଦ ଅନସ୍ୱୀକାର୍ଯ୍ୟ।

ଶ୍ୟାମସୁନ୍ଦରଙ୍କ ବିଚାର କେବଳ ଯୁକ୍ତିଶୀଳ ନୁହେଁ, ସୂକ୍ଷ୍ମ ସାରସ୍ୱତ ମଧ୍ୟ। ମୂର୍ଖକୁ ସ୍ତୁତିକରିବା ଅପେକ୍ଷା ଛାତିରେ କାତି ମାରିବାକୁ ଯେ ଶ୍ରେୟ ମଣନ୍ତି, ସେହି ଦୀନକୃଷ୍ଣ 'ନାମରତ୍ନଗୀତା' ରେ ଦିବ୍ୟସିଂହ ଦେବଙ୍କୁ କୁରୁବଂଶର ଯୁଧିଷ୍ଠିର ବୋଲି ପ୍ରଶଂସା କରିବେ କିପରି ? **ରସବିନୋଦନ**କାର ଯାହାର ଲୁଣ ଖାଆନ୍ତି, ତାହାର ଗୁଣ ଗାଆନ୍ତି। ସେ ବଳରାମ ସାମନ୍ତରାୟଙ୍କ ଅନ୍ନବସ୍ତ୍ରରେ ଚଳିଛନ୍ତି ଓ ତାଙ୍କର ଗୁଣଗାନ କରିଛନ୍ତି ଯଥେଷ୍ଟ। ଜଣେ ବିଶିଷ୍ଟ କବିଙ୍କ ନାମରେ ଗୁଡାଏ ଲେଖା ଦେଖିବାକୁ ଓଡ଼ିଆଏ ବଡ଼ ଆଗ୍ରହୀ, ହେଉ ନା ପଛେ ସେ ଲେଖା ଯେତେ  ବାଜେ ଓ କବିତ୍ୱ ସଂସ୍ରବହୀନ। ତେଣୁ ଷୋଡ଼ଶ ଶତାବ୍ଦୀର ବଳରାମ ଦାସ ଓ ଜଗନ୍ନାଥ ଦାସ ଆଜି ବି ଗୀତା, ସଂହିତା ଓ ଛାନ୍ଦ ଚଉପଦୀ ଲେଖୁଛନ୍ତି, (ଦିନେ କୁଆଡେ ସେମାନେ ଅନନ୍ତ, ଅଚ୍ୟୁତ ଓ ଯଶୋବନ୍ତଙ୍କ ସହିତ ମିଶି' ବାସନ୍ତୀ' ଉପନ୍ୟାସ ଷ୍ଟାଇଲରେ କବିତାଟିଏ ଲେଖି ପକାଇଲେ!) ଉପେନ୍ଦ୍ର ଭଞ୍ଜ ମଧ୍ୟ ମଝିରେ ମଝିରେ **ସୀତାଚିଟାଉ** ଓ **ରାମଚିଟାଉ** ଲେଖି ଛାପୁଛନ୍ତି; ଆଉ ଅଚ୍ୟୁତାନନ୍ଦ! ସାରଳା ଦାସଙ୍କ ପୂର୍ବରୁ ଲେଖୁଥିଲେ, ପରବର୍ତ୍ତୀ ଶତାବ୍ଦୀରେ ବି ଲେଖିବେ। ଭାଣ୍ଡାମିର ଚୂଡ଼ାନ୍ତ। ସେଇଥିପାଇଁ ସେଦିନ ଶ୍ୟାମସୁନ୍ଦର ରାଜଗୁରୁ ଷୋଡ଼ଶ ଶତାବ୍ଦୀର ବଳରାମ ଦାସ ଓ ମୁକୁନ୍ଦଦେବଙ୍କ ସମୟର ଦ୍ୱାରକା ଦାସଙ୍କୁ ଅପୃଥକ ବ୍ୟକ୍ତିତ୍ୱ ବୋଲି ଭୁଲ କହିବାକୁ କୁଣ୍ଠିତ ହୋଇନାହାନ୍ତି। ଯୁଗେ ଯୁଗେ ଏପରି ଅଖ୍ୟାତ କବିଏ ସତକବିଙ୍କ ନାମରେ ଭଣି ବଞ୍ଚିବାକୁ ଚାହାନ୍ତି। ଏ କ୍ଷେତ୍ରରେ ଅଗାବଗାଖଗାଙ୍କ ଉତ୍ପାତ ବେଶି। ସେମାନଙ୍କର ଲେଖାକୁ ଘେନି ଉତ୍ସାହିତ ହେବା ସାହିତ୍ୟବୋଧର ପରିଚାୟକ ନୁହେଁ। ସେଦିନ ରାଜଗୁରୁ ବିଭ୍ରାନ୍ତ ହେବା ସ୍ୱାଭାବିକ। ପ୍ରଚଳିତ ଧାରଣାର ବଶବର୍ତ୍ତୀ ହୋଇ ବିନା ପ୍ରମାଣରେ ସେ କେବଳ ବଳରାମ ଦାସଙ୍କ ଗ୍ରନ୍ଥ ସଂଖ୍ୟା ବଢ଼ାଇଛନ୍ତି। ସେଦିନ ଅବଶ୍ୟ ତାହା ଥିଲା ମାତ୍ର ୧୧ ଟି, ଏବେ ବଢ଼ି ବିଂଶାଧିକ ହେଲାଣି – ଶଠତାକୁ ଉତ୍ସାହିତ କଲେ ଗ୍ରନ୍ଥସଂଖ୍ୟା ଆହୁରି ବଢ଼ିବ। ଉପେନ୍ଦ୍ରଙ୍କ ଲେଖା ଏବେ ଶହେକୁ ଛୁଇଁଲାଣି।

ଆବିର୍ଭାବ କାଳ ନିରୂପଣ ପରେ କବିଙ୍କ ଜୀବନୀ ବିଚାର। ଇତିହାସ ନିର୍ଭର ସାହିତ୍ୟ-ସମାଲୋଚନା ପ୍ରାୟ ଲେଖକ ଜୀବନ-ଭିତ୍ତିକ-ସମାଲୋଚନା (Biographical criticism) ଆଡ଼କୁ ଢଳିଥାଏ। ଶ୍ୟାମସୁନ୍ଦର ଦେଶ-କାଳ ପ୍ରେକ୍ଷାପଟରେ କବିମାନଙ୍କ ଜାତି ଓ ଚରିତ୍ରର ସଂଧାନ ରଖିଛନ୍ତି। ଏ କ୍ଷେତ୍ରରେ ଅବଶ୍ୟ ସେ ତାଙ୍କର ସୀମାବଦ୍ଧତା ଜାଣନ୍ତି। ପାଠ (text) ରେ ଯେତିକି ଉପାଦାନ ସୁଲଭ, ସେତିକିରେ ସେ ସନ୍ତୁଷ୍ଟ। ବରଂ ଯେଉଁ ପାଠ ବିଶ୍ୱାସଯୋଗ୍ୟ ନୁହେଁ, କି ନିର୍ଭରଯୋଗ୍ୟ ନୁହେଁ, ତାହାକୁ ସେ ' ସାହିତ୍ୟ ଶଠଙ୍କ ଅପକୀର୍ତ୍ତି' ବୋଲି ତ୍ୟାଗ କରନ୍ତି। କିମ୍ବଦନ୍ତୀ ଓ ଭାବପ୍ରବଣତାକୁ ସେ ବିଶେଷ ପ୍ରଶ୍ରୟ ଦିଅନ୍ତି ନାହିଁ। କେବଳ ବଳରାମ ଦାସଙ୍କ ଜୀବନୀ ବିଚାର କ୍ଷେତ୍ରରେ ସେ 'ଦାର୍ଢ୍ୟତାଭକ୍ତିରସାମୃତ' ପାଲରେ ପଡ଼ିଛନ୍ତି। ସେଠାରେ ବଳରାମ ଦାସଙ୍କ ଚରିତ୍ର କଳୁଷିତ ଥିବାର ଯେଉଁ ପ୍ରମାଣ ଥିଲା, ତାହାକୁ ସେ କେବଳ ସ୍ୱୀକାର କରିନାହାନ୍ତି, **ଜଗମୋହନ ରାମାୟଣ**ରେ ସ୍ତ୍ରୀବର୍ଣ୍ଣନା ପ୍ରସଙ୍ଗ ଉଠାଇ ତାକୁ ସମର୍ଥନ ଜଣାଇଛନ୍ତି, " କବିଙ୍କ ଚରିତ୍ର ମନ୍ଦ ଥିବାର ସ୍ପଷ୍ଟ ଉପଲକ୍ଷରେ ଜଣାଯାଏ।" ନାରୀ ବର୍ଣ୍ଣନା ଦୃଷ୍ଟିରୁ ଦେଖିଲେ କେଉଁ ଓଡ଼ିଆ କବିଙ୍କ ଚରିତ୍ର ଭଲ ଥିବ ବୋଲି ବିଶ୍ୱାସ କରିବା ? ବ୍ୟତିକ୍ରମ ଜଣେ କି ଦୁଇଜଣ ନଥିବେ। ନାରୀ ତ ଓଡ଼ିଆ ସାହିତ୍ୟର ମୁଖ୍ୟ ଉପାଦାନ। ତାଙ୍କ ରୂପ ବର୍ଣ୍ଣନା ହିଁ କବିତ୍ୱ। ଶ୍ୟାମସୁନ୍ଦର ଅବଶ୍ୟ ଅନ୍ୟତ୍ର ଏପରି ଯୁକ୍ତିହୀନ ସିଦ୍ଧାନ୍ତରେ ଉପନୀତ ହୋଇ ନାହାନ୍ତି। ଆମେ କିନ୍ତୁ ତାଙ୍କ ସତ୍ୟଶୀଳ ତଥ୍ୟ-ଭୂମିଷ୍ଠ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀଦ୍ୱାରା ଦୀକ୍ଷିତ ନ ହୋଇ ଏଇ ଥରକର ଦୁର୍ବଳତାକୁ ବଡ଼ କରି ଦେଖିଛୁ। ଯେତେ ଯେଉଁଠି ଶ୍ଲୀଳ-ଅଶ୍ଲୀଳ ଓ ଅବିଶ୍ୱାସ କିମ୍ବଦନ୍ତୀ ଅଛି, ସେଗୁଡ଼ିକୁ ସଂଗ୍ରହ କରି ପ୍ରାଚୀନ ଓଡ଼ିଆ କବିଙ୍କୁ ତଦ୍ଦ୍ୱାରା ଭୂଷିତ କରି ଚାଲିଛୁ। କିମ୍ବଦନ୍ତୀଦ୍ୱାରା ଯେ ସବୁବେଳେ କବିଙ୍କ ମର୍ଯ୍ୟାଦା ବଢ଼େ ନାହିଁ - ଏହି କଥାଟିକୁ ବୁଝି ପାରିନାହୁଁ। ଶ୍ୟାମସୁନ୍ଦର କିନ୍ତୁ ଅନ୍ୟତ୍ର କିମ୍ବଦନ୍ତୀ କି ନିଛକ ଭାବକଳ୍ପନାର ଆଶ୍ରୟରେ କିଛି ଲେଖିନାହାନ୍ତି। ସେ ବରଂ ସେଦିନ ଯଥେଷ୍ଟ ସଂସ୍କାରମୁକ୍ତ ସତ୍ୟାନ୍ୱେଷୀ ଆଧୁନିକ ମନର ଅଧିକାରୀ ଥିଲେ। କବିଙ୍କ ଶାଶ୍ୱତ ଜୀବନୀ ତାଙ୍କର ଧ୍ୟେୟ। ଏହି ସୂତ୍ରରେ ଆଲୋଚ୍ୟ କବିଙ୍କ ଜନ୍ମସ୍ଥାନ,ବାସସ୍ଥାନ, ପିତାମାତା ଓ ରଚନାବଳୀର ନାମୋଲ୍ଲେଖରେ ହିଁ ତାଙ୍କ ବିଚାର ସୀମିତ ରହିଛି। ଏସବୁ ପାଇଁ ତାଙ୍କ ବିଚାର ବୈତଥ୍ୟ ହୋଇନାହିଁ।

କେବଳ ଇତିବୃତ୍ତ ରଚନା ବା ଗ୍ରନ୍ଥତାଲିକା ପ୍ରଣୟନରେ ଶ୍ୟାମସୁନ୍ଦରଙ୍କ ପ୍ରବଂଧ ସମାପ୍ତ ନୁହେଁ; ସେଥିରେ ସାହିତ୍ୟସୃଷ୍ଟିର ମୂଲ୍ୟାୟନ ଅଛି। ରାଜଗୁରୁ ମହାଶୟ ଗବେଷକ ମାତ୍ର ନୁହନ୍ତି, ବିଦଗଧ୍ ରସବୋଧସଂପନ୍ନ ସମାଲୋଚକ ମଧ୍ୟ। ତାଙ୍କର ନିର୍ବାଚନ ଅଛି। ସିଦ୍ଧାନ୍ତମୁଖୀ ସାରସ୍ୱତ ମୂଲ୍ୟାୟନ ଅଛି। ସେ ଏକାଧାରରେ ଗବେଷକ ଓ ସମାଲୋଚକ। ଏଠାରେ ମନେ ରଖିବାକୁ ହୁଏ ଯେ, ଗବେଷଣା ସମାଲୋଚନାର ବିକଳ୍ପ ନୁହେଁ,ପରିପୋଷକ ମାତ୍ର। ସମାଲୋଚନା ବିନା ବରଂ ଗବେଷଣା ନିଷ୍ପ୍ରାଣ। ତେବେ ସମାଲୋଚନା ବି ଗବେଷଣା ବ୍ୟତିରେକେ ସୁସ୍ଥ ରହିପାରେ ନାହିଁ। ଏଲିୟଟ୍ ସ୍ପଷ୍ଟ କହନ୍ତି

" a critic must have a very highly developed sense of facts, " ତେଣୁ ସମାଲୋଚକ ଯେବେ ଗବେଷକ ହୋଇଥାନ୍ତି, ଫଳ ଭଲ ହୁଏ। ବିଚାର ଓ ଅନୁସଂଧାନ ହାତ ଧରାଧରି ହୋଇ ଚାଲନ୍ତି। କ୍ୱଚିତ କିନ୍ତୁ ଦକ୍ଷ ଗବେଷକ - ସମାଲୋଚକ ଦେଖିବାକୁ ମିଳନ୍ତି। ଶ୍ୟାମସୁନ୍ଦର ସେହି ବିରଳ ବ୍ୟକ୍ତିତ୍ୱ ମଧ୍ୟରୁ ଅନ୍ୟତମ। ତାଙ୍କ ଉଦ୍ୟମ ଅବଶ୍ୟ ପ୍ରାଥମିକ ସ୍ତରର, କିନ୍ତୁ ସୁସ୍ଥ ଓ ବ୍ୟବସ୍ଥିତ। ସେଦିନ ସେ କେବଳ ସତ୍ୟ ଓ ତଥ୍ୟ ଅନ୍ୱେଷଣରେ ଶକ୍ତିକ୍ଷୟ କରିନାହାନ୍ତି। ସାହିତ୍ୟ ବିଚାରକର ଭୂମିକାରେ ବି ଅବତୀର୍ଣ୍ଣ ହୋଇଛନ୍ତି। ଓଡ଼ିଆ ଭାଷା ଓ ସାହିତ୍ୟ ପ୍ରତି ତାଙ୍କର ଗଭୀର ଶ୍ରଦ୍ଧା ଓ ଅନୁରାଗ ଥିଲା। କିନ୍ତୁ ସେହି ଶ୍ରଦ୍ଧା ଅନୁରାଗ ବଶତଃ ସେ କେଉଁଠୁ ଓଡ଼ିଆ ସାହିତ୍ୟର ଐତିହ୍ୟକୁ ଅକାରଣରେ ଗୌରବଦୀପ୍ତ କରିବାକୁ ଚାହିଁନାହାନ୍ତି। ଅଧିକନ୍ତୁ ସେ ଧର୍ମୀୟ ମନୋଭାବଦ୍ୱାରା ବି ଚାଳିତ ହୋଇନାହାନ୍ତି। ଶ୍ରୀଜଗନ୍ନାଥ କି ରାଧାକୃଷ୍ଣଙ୍କ ନାମୋଲ୍ଲେଖ ଦେଖି ଅତ୍ୟୁତ୍ସାହ ପ୍ରକାଶ କରିନାହାନ୍ତି। ସବୁଠି ଦୃଷ୍ଟିଭଙ୍ଗୀ ହୋଇଛି ଭାବପ୍ରବଣତାରହିତ ଓ ନିରପେକ୍ଷ। ଆଞ୍ଚଳିକ ଭାଷାକୁ ସାହିତ୍ୟିକ ମର୍ଯ୍ୟାଦା ଦେବାକୁ ସେ ଅକୁଣ୍ଠିତ, କିନ୍ତୁ ସାହିତ୍ୟ-ବିଚାରରେ ସେ ଆଞ୍ଚଳିକତାକୁ ପ୍ରଶ୍ରୟ ଦେଇପାରନ୍ତିନାହିଁ। ତାଙ୍କ କାବ୍ୟବିଚାରର ସ୍ପଷ୍ଟ ଏକ ପରିଶୀଳତ ମୂଲ୍ୟବୋଧ ଥିଲା - ଯାହା ବଳିଷ୍ଠ ଆତ୍ମପ୍ରତ୍ୟୟରେ ଆମୂଳାନ୍ତ ସମୁଦ୍ଭାସିତ ରହିଛି। ତାଙ୍କ ବେଳକୁ ଶିକ୍ଷିତ ଓଡ଼ିଆଙ୍କ ସାହିତ୍ୟରୁଚିରେ ପରିବର୍ତ୍ତନ ଦେଖା ଦେଇଛି। ଏହି ରୁଚି ପରିବର୍ତ୍ତନର ପରିଚୟ ରହିଛି ଉଭୟ ସଂସ୍କୃତ ସାହିତ୍ୟ ଓ ପ୍ରାଚୀନ ଓଡ଼ିଆ କାବ୍ୟକବିତା ପ୍ରତି ଇଂରାଜୀ ଶିକ୍ଷାପ୍ରାପ୍ତ ଓଡ଼ିଆଙ୍କ ପ୍ରତିକ୍ରିୟାର ପ୍ରକ୍ରିୟାରେ। ନୂତନ ରୁଚି ମାଘ, ଭାରବୀ,ଶ୍ରୀହର୍ଷ ଓ ଜୟଦେବଙ୍କୁ ଶ୍ରଦ୍ଧା କରିପାରିନାହିଁ। ଶ୍ରଦ୍ଧା କରିଶିଖିଛି କାଳିଦାସଙ୍କୁ,ଯିଏ ଅପାଂକ୍ତେୟ ହୋଇ ରହିଯାଇଥିଲେ। ଗେଟେଙ୍କ ଶକୁନ୍ତଳା ପ୍ରଶସ୍ତି ଓଡ଼ିଆଙ୍କର ଅଜ୍ଞାତ ରହିନାହିଁ। ରାଧାନାଥ ଓ ଗଙ୍ଗାଧର କାଳିଦାସଙ୍କୁ ଉତ୍ତପ୍ତ ଅଭିନନ୍ଦନ ଜଣାନ୍ତି, ତାଙ୍କୁ ପ୍ରଥମରେ ଅନୁବାଦରେ ପାଇବାକୁ ଉଦ୍ୟମ କରନ୍ତି। ପରିମାଣତଃ, ଏହି ନୂତନ ରୁଚି ଓ ସାହିତ୍ୟବୋଧ ଦୃଷ୍ଟିରେ କବି ଉପେନ୍ଦ୍ରଭଞ୍ଜ ନିଷ୍ପ୍ରଭ ଦିଶନ୍ତି। ରାଧାନାଥ ରାୟ ୧୮୯୫ ରେ ଗଙ୍ଗାଧରଙ୍କୁ ଲେଖନ୍ତି, "ପ୍ରକୃତ ସାହିତ୍ୟ ଜ୍ଞାନ ସମୟ ସାପେକ୍ଷ ଅଟେ, ବିଶେଷତଃ ଓଡ଼ିଶାରେ। ଓଡ଼ିଶାରେ କାଳିଦାସଙ୍କ ସହିତ ଭଂଜଙ୍କ ପରି କବି ସମାନ ଆସନ ପାଆନ୍ତି, ହିମାଳୟ ସହିତ କପିଳାସ ତୁଳିତ ହୁଏ। ଏପରି ଦେଶରେ ସାହିତ୍ୟ ଜ୍ଞାନ ଲାଭ ସହଜ କଥା ନୁହେଁ। ସାହିତ୍ୟାନୁରାଗ ମୋର ବହୁ ଦିନରୁ ଥିଲା, ମାତ୍ର ଉଚ୍ଚ ସାହିତ୍ୟ କ'ଣ ସେ ଜ୍ଞାନ ବହୁ ବିଳମ୍ବରେ ଲାଭହେଲା। (କବିଲିପି, ଦେବୀପ୍ରସନ୍ନ ପଟ୍ଟନାୟକ, ପୃଷ୍ଠା ୭୦)। ଓଡ଼ିଆଙ୍କର ବି ସାହିତ୍ୟାନୁରାଗ ଥିଲା, କିନ୍ତୁ ଉଚ୍ଚ ସାହିତ୍ୟ କଅଣ, ତାହା ଏବେ ବୁଝିଲେ। କାଳିଦାସଙ୍କୁ ଶ୍ରଦ୍ଧା କରି ଶିଖିଲେ ଭଞ୍ଜଙ୍କୁ କ'ଣ ଆଉ ପୂର୍ବପରି ଭଲ ପାଇହୁଏ? କାଳିଦାସଗିରାଂ ସାରଂ। ଶବ୍ଦ ଓ ଅର୍ଥ ସେଠାରେ ଗୋଟିଏ ଦେବତା ପାର୍ବତୀ - ପରମେଶ୍ୱର, ଏକାଧାରରେ ଚମତ୍କାର ଓ ମନୋହର। ସୁପ୍ରଯୁକ୍ତ ଉପମା ଓ ପ୍ରସାଦଗୁଣର ବାହୁଲ୍ୟ ଅନାୟାସରେ ଲକ୍ଷ୍ୟ।

ଉପମାଅଲଙ୍କାରକୁ ସଶ୍ରଦ୍ଧ ଅଭିନନ୍ଦନ ଜ୍ଞାପନ କରନ୍ତି। ଧନଞ୍ଜୟ ଭଞ୍ଜଙ୍କ 'ରାଘବବିଳାସ' ବିଶ୍ଳେଷଣରେ ସେ ଫେଡ଼ି ଦେଖାଇ ଦେଇଛନ୍ତି ସରସ ଓ ରସହୀନ ରଚନାର ପାର୍ଥକ୍ୟ। ଧନଞ୍ଜୟ ଓଡ଼ିଆ ସାହିତ୍ୟ ଇତିହାସର ଏକ ସନ୍ଧିକ୍ଷଣରେ କାବ୍ୟ ଲେଖନ୍ତି, ତେଣୁ ତାଙ୍କ 'ରାଘବବିଳାସ' ରେ ଗୋଟିଏ ଯୁଗ ଅସ୍ତ ଭଜୁଛି; ଯୁଗାନ୍ତର ଉଦିତ ହେଉଛି। ଏକ ପକ୍ଷରେ ଅଛି "ନୈସର୍ଗିକ ଶୋଭାପୂର୍ଣ୍ଣ ଜୀବନ୍ତ ଭାଷା" ଏବଂ ଅନ୍ୟ ପକ୍ଷରେ ରହିଛି "ସଂସ୍କୃତ ଅଳଙ୍କାରରେ ଭୂଷିତ ସାର ନିପୀଡ଼ିତ ଯତକିଞ୍ଚିତ୍ ନିର୍ଜୀବ ଭାଷା"। "ସରସତା ଓ ଉଦ୍ଦୀପନା" ସାଙ୍ଗକୁ ସମାନ୍ତରାଳ ଭାବରେ ବିଦ୍ୟମାନ କରୁଛି "ଶବ୍ଦାଡମ୍ବର ଓ ପାଣ୍ଡିତ୍ୱ"। ଓଡ଼ିଆ କାବ୍ୟର ଗୋଟିଏ ଅଧ୍ୟାୟ ଶେଷ ହେଉଛି, ଆରମ୍ଭ ହେଉଛି ଅନ୍ୟ ଅଧ୍ୟାୟର – ଅତୀତ "ସରସ ଓ ଉତ୍ତେଜନାପୂର୍ଣ୍ଣ", ଭବିଷ୍ୟତ "ରସହୀନ ଓ ନିର୍ଜୀବ"। ଶ୍ୟାମସୁନ୍ଦର *ରାଘବବିଳାସ*ର ନିର୍ଜୀବ ଓ ରସହୀନ ଛତ୍ରଗୁଡ଼ିକ ଚିହ୍ନାଇ ଦେଇ ରାଗଦ୍ୱେଷବିବର୍ଜିତ ଭାଷାରେ ମନ୍ତବ୍ୟ କରିଛନ୍ତି ଯେ, "ଏଥିଦ୍ୱାରା କବି ଯେ କେବଳ ଆପଣାର ପାଣ୍ଡିତ୍ୟ ଦେଖାଇ ଅଛନ୍ତି ଏମନ୍ତ ନୁହେଁ। ଭାବୀ ଭଞ୍ଜୀୟ ଯୁଗର ସୂତ୍ରପାତ କରିଦେଇ ଅଛନ୍ତି।" (ପ୍ରବଂଧାବଳୀ, ପୃଷ୍ଠା ୭୬)

ଭଞ୍ଜ ସାହିତ୍ୟ ପ୍ରତି ତାଙ୍କର ମନୋଭାବ ସ୍ୱଷ୍ଟ, ଅଥଚ ସେଥିରେ ଅଶ୍ରଦ୍ଧା କି ଅସମ୍ମାନ ପ୍ରଦର୍ଶନର କୌଣସି ସଙ୍କେତ ନାହିଁ। ଇତିହାସର ଧାରାଟିକୁ ଠିକ୍ ଭାବରେ ଚିହ୍ନି ଚିହ୍ନାଇ ଦେବା ଦାୟିତ୍ୱ, ବିଦ୍ୱିଷ୍ଟ କି ବିରକ୍ତ ହେବାର କାରଣ କାହିଁ? ସେ ସତ୍ୟାନ୍ୱେଷୀ ମାତ୍ର। **ମହାଭାରତ** ପ୍ରଣେତା ସାରଳା ଦାସ ଓ **ଜଗମୋହନରାମାୟାଣ** ଲେଖକ ବଳରାମ ଦାସଙ୍କୁ ସେ ପ୍ରଶଂସା କରନ୍ତି। ଯେଉଁ ରଚନାର "ଭାଷା ସରଳ ଓ ସୁନ୍ଦର, ବର୍ଣ୍ଣନା ସ୍ୱାଭାବିକ, ଆଡ଼ମ୍ବରଶୂନ୍ୟ ଅଥଚ ଭାବପୂର୍ଣ୍ଣ" ସେହି ରଚନା ଉଚ୍ଚକୋଟୀର। ସେଥିରେ ସ୍ୱଚ୍ଛନ୍ଦ କଳ୍ପନାଶକ୍ତିର ଭୂମିକା ଅଛି, ବକ୍ତବ୍ୟର ସ୍ଥାନ ଅଛି। ଏପରିକି ପଦଲାଳିତ୍ୟ, ବାକ୍ୟପଲ୍ଲବନ ଓ ବର୍ଣ୍ଣନାସୌନ୍ଦର୍ଯ୍ୟର ଅବର୍ତ୍ତମାନରେ ବି ସରଳ, ସହଜବୋଧ, ପରିପକ୍ୱ ଓ ଅନାଡମ୍ବର ରଚନା ଗ୍ରହଣଯୋଗ୍ୟ। ସେଥିପାଇଁ ସେ *ରସବିନୋଦ*କାର ଦୀନକୃଷ୍ଣ ଦାସଙ୍କୁ 'ଯଥାଯୋଗ୍ୟ ଭକ୍ତି' ଜଣାଇଛନ୍ତି। ସରଳ ଭାବ ଓ ସୁଖବୋଧ ଭାଷା ପ୍ରୀତିକର; କିନ୍ତୁ ପାଣ୍ଡିତ୍ୟ ଓ ଶବ୍ଦାଡ଼ମ୍ବର କ୍ଳାନ୍ତିକର। ସେ ଲୋକସାହିତ୍ୟକୁ ଶ୍ରଦ୍ଧାକରି ଜାଣନ୍ତି। "ଢଗବୃତ୍ତ ନୀଚ ନୁହେଁ", ବୋଲି ଘୋଷଣା କରନ୍ତି। ପ୍ରାଚୀନ ଓଡ଼ିଆ କବିଏ କେବଳ ଢ଼ଗବୃତ୍ତକୁ ନୁହେଁ, ଲୋକସାହିତ୍ୟକୁ ବି ବ୍ୟବହାର କରି ଶିଖିଥିଲେ। ନିଶଙ୍କରାୟ ରାଣୀ ତାଙ୍କ 'ପଦ୍ମବତୀଅଭିଳାଷ'ରେ ପିଲାଦିନେ ଶୁଣିଥିବା କାହାଣୀଗୁଡ଼ିକୁ ଯେପରି ଗୁମ୍ଫନ କରିଛନ୍ତି, ତାହାକୁ ସେ ପ୍ରଶଂସା ନ କରି ରହିପାରିନାହାନ୍ତି। ରାଣୀଙ୍କୁ ସେ ଅନ୍ୟ ଏକ ଭିନ୍ନ କାରଣରୁ ଅଭିନନ୍ଦନ ଜଣାଇଛନ୍ତି। ଯେଉଁଠି ସେ କବି, ସେଠାରେ ଉପେନ୍ଦ୍ରଙ୍କୁ ଅତିକ୍ରମ କରି ଶୁଦ୍ଧ ଓ ପ୍ରାଞ୍ଜଳ ଭାଷାରେ ବିଷୟ ବର୍ଣ୍ଣନା କରିଛନ୍ତି, ସେଠାରେ ତାଙ୍କ ରଚନା ପରିପକ୍ୱ ଓ ଉପାଦେୟ ହୋଇ ଉଠିଛି। 'ପଦ୍ମାବତୀଅଭିଳାଷ' ବା 'ମଧୁମାଳତୀଚରିତ' ଶ୍ୟାମସୁନ୍ଦରଙ୍କର ଅପୂର୍ବ ଆବିଷ୍କାର। କୁଆଡ଼େ

ଗଲା ତାର ପାଣ୍ଡୁଲିପି ? ସେଗୁଡିକୁ ସଂଗ୍ରହ କରିବା ଗବେଷକମାନଙ୍କର ପ୍ରତ୍ୟାଶିତ କର୍ତ୍ତବ୍ୟ। ଉପେନ୍ଦ୍ରଙ୍କ ପରବର୍ତ୍ତୀ କାଳରେ କାବ୍ୟରଚନା କରି ଅଷ୍ଟାଦଶ ଶତାବ୍ଦୀର ଶେଷ ଭାଗରେ ଓଡ଼ିଆ ନାରୀଟିଏ କୃତିତ୍ୱ ଲାଭ କରିଛନ୍ତି। ଏହା କିଛି କମ୍ ସାରସ୍ୱତ ଗୌରବ ନୁହେଁ। ତାଙ୍କ ରଚନାକୁ ଶ୍ୟାମସୁନ୍ଦର 'କୋମଳମନୋହରବ୍ରତତୀ' ଅଭିଧାରେ ଚିହ୍ନିତ କରି ବିଶେଷ କିଛି ଅତ୍ୟୁକ୍ତି କରିନାହାନ୍ତି।

ଶ୍ୟାମସୁନ୍ଦରଙ୍କ ସାରସ୍ୱତ ମୂଲ୍ୟାୟନର ଅନ୍ୟ ଏକ ଦିଗ ଆଲୋଚନା ନକଲେ ବିଚାର ଅସଂପୂର୍ଣ୍ଣ ରହିବ। ସାହିତ୍ୟ ଇତିହାସରେ ଅନେକ କବିଙ୍କୁ ସ୍ମରଣ କରିବାକୁ ହୁଏ। କିନ୍ତୁ କୌଣସି ରଚନାର ଐତିହାସିକ ମୂଲ୍ୟ ଓ ସ୍ଥାୟିମୂଲ୍ୟ ସମାର୍ଥବୋଧକ ନୁହେ। ଅନେକ ସମାଲୋଚକ ଏହି ଦୁଇ ମାନଦଣ୍ଡର ସ୍ୱରୂପ ଓ ପାର୍ଥକ୍ୟ ମନେ ରଖନ୍ତି ନାହିଁ। ତେଣୁ ପ୍ରାଚୀନ ଓଡ଼ିଆ କବି ମାତ୍ରେ ତାଙ୍କୁ ବଡ଼ ଦିଶନ୍ତି। ଶ୍ୟାମସୁନ୍ଦର କିନ୍ତୁ ଏ କ୍ଷେତ୍ରରେ ବଡ଼ ଅନାର୍ଦ୍ର, ଶଙ୍କାହୀନ ଭାବରେ ସ୍ୱଶାସିତ ମଧ୍ୟ। ଇତିହାସରେ କାହାକୁ ସେ ହେୟଜ୍ଞାନ କରିବେ ନାହିଁ ସିନା, କିନ୍ତୁ ମୂଲ୍ୟାୟନ ବେଳେ ଯଥାର୍ଥ କଥା କହିବେ। ଦ୍ୱାରକା ଦାସଙ୍କ ସମ୍ବନ୍ଧରେ ସେ ସିଧା ଆରମ୍ଭ କରିଛନ୍ତି, "ଦ୍ୱାରକା ଦାସ ଜଣେ ନିମ୍ନସ୍ତରର କବି।" ଗ୍ରନ୍ଥଲେଖି ସେ ଓଡ଼ିଆ ଭାଷାକୁ ଚଳପ୍ରଚଳ ରଖିପାରିଥାନ୍ତି, କିନ୍ତୁ କବିତ୍ୱ କାହିଁ? ଆମେ କ'ଣ ଶ୍ୟମସୁନ୍ଦରଙ୍କଠାରୁ କିଛି ଶିଖିବା ନାହିଁ? ଧର୍ମଫର୍ମ ବିଷୟରେ ହଯବରଲ ଲେଖିଥିବା ଲୋକଙ୍କୁ ଉଚ୍ଚକୋଟିର କବି ବୋଲି କହୁଥିବା (?) ଅନନ୍ତ, ଯଶୋବନ୍ତ; **ଶୂନ୍ୟସଂହିତାର** ଲେଖକ ଅଚ୍ୟୁତାନନ୍ଦ, **ବିଲଙ୍କାରାମାୟଣ** ପ୍ରଣେତା ସାରଳା ଦାସ, ଦିବାକର ଦାସ କି ହାଡ଼ିଦାସ ଆଦିଙ୍କୁ ନିମ୍ନସ୍ତରର କବି ବୋଲି କହି ପାରିବାନାହିଁ। ବଳରାମ, ଜଗନ୍ନାଥ ଓ ଅଚ୍ୟୁତାନନ୍ଦଙ୍କ ନାମରେ ଭଣି ଚାଲିଥିବା ଲେଖକଙ୍କୁ ଅଶ୍ରଦ୍ଧା ଜ୍ଞାପନ କରି ଶିଖିବା ନାହିଁ? ବୈଷ୍ଣବ ପାଣିଙ୍କୁ ଓଡ଼ିଶାର ସେକସପିଅର କହୁଥିବା, ଚରମ ଦୁର୍ଭାଗ୍ୟ। ଅଧିକାଂଶ କ୍ଷେତ୍ରରେ ସମାଲୋଚନା ଆଜି ପଣ୍ୟ ନ ହେଲେ ସାହିତ୍ୟବୋଧହୀନ ଭାବରେ ଭାବପ୍ରବଣ। ତେଣୁ ଏଠାରେ ଶ୍ୟାମସୁନ୍ଦରଙ୍କ ଭଳି ନିଷ୍କାମ, ନିର୍ମମ, ନିଷ୍କପଟ ସମୀକ୍ଷକଙ୍କୁ ଶ୍ରଦ୍ଧା ଓ ସମ୍ମାନ ଜଣାଇବାକୁ ଆହୁରି କିଛିକାଳ ଅପେକ୍ଷା କରିବାକୁ ହେବ।

ଶ୍ୟାମସୁନ୍ଦରଙ୍କ ସମାଲୋଚନା ଅନେକତ୍ର ତୁଳନାଶୀଳ। **ରସକଲ୍ଲୋଳ** ଓ **ରସବିନୋଦକାରଙ୍କ** ନାମସାମ୍ୟରୁ ସେ ଦୁହିଁଙ୍କୁ ତୁଳି ଦେଖିଛନ୍ତି, ପୃଥକ୍ ବ୍ୟକ୍ତିତ୍ୱ ବୋଲି ଚିହ୍ନାଇଛନ୍ତି। ଅନ୍ୟ ପକ୍ଷରେ, ଦାଶରଥି ଦାଶ ଓ କୃପାସିନ୍ଧୁ ଦାସ ଗୋଟିଏ ନାମରେ ଦୁଇଟି ଗ୍ରନ୍ଥ ଲେଖିଛନ୍ତି : **ବ୍ରଜବିହାର**। ତେଣୁ ଦୁହିଁଙ୍କ ସମୟ, ରଚନା ଶୈଳୀ ଓ ଭାବବସ୍ତୁର ତୁଳନାତ୍ମକ ବିଶ୍ଳେଷଣ କରିବାକୁ ପଡିଛି, ସାମ୍ୟ ଓ ବୈଷମ୍ୟରେ ଦୁହିଙ୍କୁ ସ୍ୱଷ୍ଟ ଓ ସ୍ୱତନ୍ତ୍ର ଭାବରେ ଦେଖାଇ ଦିଆଯାଇଛି। ଅଧିକନ୍ତୁ, ନିଶଙ୍କରାୟ ରାଣୀଙ୍କ ରଚନାରେ ଭଞ୍ଜୀୟ ପ୍ରଭାବ ଅନୁସଂଧାନ କରାଯାଇଛି, ଅନୂଦିତ ଗ୍ରନ୍ଥଗୁଡ଼ିକୁ ମୂଳଗ୍ରନ୍ଥ ସହିତ ମିଳାଇ ଦେଖାଯାଇଛି। କିନ୍ତୁ ଆପ୍ରୋଚ (approch) ସବୁଠି ଆନାଲିଟିକାଲ (analytical) - ବିଶ୍ଳେଷଣି ରୀତି-ସଂପନ୍ନ। ସଂସ୍କୃତ ଆଲଙ୍କାରିକମାନେ ଏହି ରୀତିର ପ୍ରବର୍ତ୍ତକ, ଗ୍ରନ୍ଥର ଭଲଭଲ ଅଂଶ ଉଦ୍ଧାର କରି ସେମାନେ ପାଠକଙ୍କୁ ଦେଖାନ୍ତି। କିନ୍ତୁ ତଦ୍ଦ୍ୱାରା ଗ୍ରନ୍ଥର

ଗୁଣାଗୁଣ ବୁଝି ହୁଏକି ? ସେଦିନ ବଙ୍କିମଚନ୍ଦ୍ର 'ଉତ୍ତରରାମଚରିତ' ପ୍ରବନ୍ଧରେ ଏହି ରୀତିର ତ୍ରୁଟି ଦେଖାଇଥିଲେ, "ଏକ ଏକ ଖାନି ପ୍ରସ୍ତର ପୃଥକ ପୃଥକ କରିୟା ଦେଖିଲେ ତାଜମହଲର ଗୌରବ ବୁଝିତେ ପାରାଯାୟାନା। ..... ସେଇ ରୂପ କାବ୍ୟଗ୍ରନ୍ଥର ଏଇ ସ୍ଥାନ ଭାଲ ରଚନା, ଏଇ ସ୍ଥାନ ମନ୍ଦ ରଚନା - ଏଇ ରୂପ ତାହାର ସର୍ବାଂଶର ପର୍ଯ୍ୟାଲୋଚନା କରିଲେ, ପ୍ରକୃତ ଗୁଣାଗୁଣ ବୁଝିତେ ପାରାଯାୟାନା, ଯେମନ ଅଟ୍ଟାଳିକାର ସୌନ୍ଦର୍ଯ୍ୟ ବୁଝିତେଗେଲେ ସମୁଦାୟ ଅଟ୍ଟାଳିକାଟି ଏକକାଲେ ଦେଖିତେ ହଇବେ, ସାଗର ଗୌରବ ଅନୁଭୂତ କରିତେ ହଇଲେ ତାହାର ଅନନ୍ତ ବିସ୍ତାର ଏକକାଲେ ଚକ୍ଷେ ଗ୍ରହଣ କରିତେ ହଇବେ, କାବ୍ୟନାଟକ ସମାଲୋଚନା ଓ ସେଇ ରୂପ"। ଆଲୋଚ୍ୟ ଗ୍ରନ୍ଥର ଯେଉଁ ଯେଉଁ ଅଂଶ ଶ୍ୟାମସୁନ୍ଦରଙ୍କୁ ଭଲ ଲାଗିଛି, ସେହି ସେହି ଅଂଶକୁ ସେ ପୃଥକ୍ ପୃଥକ୍ କରି ପାଠକ ଆଗରେ ଉପସ୍ଥାପନ କରିଛନ୍ତି। ବିଚାର ଅବଶ୍ୟ ଯୁକ୍ତିନିର୍ଭର ଓ ରସଗ୍ରାହୀ, ନିଶ୍ଚିତ ଭାବରେ ପ୍ରାସଙ୍ଗିକ ଓ ଯୁକ୍ତିଯୁକ୍ତ, କିନ୍ତୁ ଆଦୌ ସାମଗ୍ରିକ, କି ଅଖଣ୍ଡ ନୁହେଁ। ତେବେ ମନେ ରଖିବାକୁ ହୁଏ ଯେ, ଏପର୍ଯ୍ୟନ୍ତ ଓଡ଼ିଆ ସମାଲୋଚନା ସାହିତ୍ୟରେ ସଂଶ୍ଳେଷଣ - ରୀତି ପ୍ରବର୍ତ୍ତିତ ହୋଇ ନାହିଁ; ବରଂ ଆମେ ଶ୍ୟାମସୁନ୍ଦରଙ୍କୁ ଅନୁସରଣ କରି ଚାଲିଛୁ, ଏପରିକି ଯେଉଁ ଯେଉଁ ଅଂଶ ସେ ବାଛିଛନ୍ତି, ସେତିକି ମାତ୍ର ଉଦ୍ଧାର କରି ବିଜ୍ଞତାର ପରିଚୟ ଦେଉଛୁ। ତେଣୁ ଆମେ ତାଙ୍କର ଦୋଷ ଦେଖାଉ ନାହୁଁ, ତାଙ୍କ ରସଦୃଷ୍ଟିର ଅସଂପୂର୍ଣ୍ଣତା ଲକ୍ଷ୍ୟ କରୁଛୁ ମାତ୍ର, ତଦ୍ଦ୍ୱାରା ହୁଏତ ଆମେ ଆମ ଅସଂପୂର୍ଣ୍ଣତା ଘେନି ସଚେତନ ହୋଇପାରିବୁ। ସମାଲୋଚନାର ରସଦୃଷ୍ଟି ସାମଗ୍ରିକ ହେବା ବିଧେୟ। ସଂଶ୍ଳେଷଣି ରୀତିସଂପନ୍ନ ସମାଲୋଚନା ଶ୍ରେୟସ୍କର।

ସେଦିନ ଆଧୁନିକ ମନ ଘେନି ଶ୍ୟମସୁନ୍ଦର ପ୍ରାଚୀନ ସାହିତ୍ୟ ବିଚାରରେ ପ୍ରବୃତ୍ତ ହୋଇଥିଲେ। ସେ ନୀତିଜ୍ଞାନ କି ଧର୍ମଭାବନାକୁ କାବ୍ୟରେ ଗୁରୁତ୍ୱ ଦିଅନ୍ତିନାହିଁ। ସୌନ୍ଦର୍ଯ୍ୟ ସୃଷ୍ଟିକୁ କାବ୍ୟ କବିତାର ଶେଷସୀମା ବୋଲି ବୁଝନ୍ତି। ସେଠାରେ ଶାସ୍ତ୍ରଜ୍ଞାନର ଭୂମିକା ଅଛି ନିଶ୍ଚୟ। କିନ୍ତୁ ସୌନ୍ଦର୍ଯ୍ୟ ସୃଷ୍ଟିର ଚରମୋତ୍କର୍ଷରେହିଁ କାବ୍ୟକବିତାର ଚରିତାର୍ଥତା। କଳ୍ପନାର ଚାକଚକ୍ୟ ନଥିଲେ ଚଳେ। କିନ୍ତୁ ଭାବ ଓ ଭାଷାର ସରଳ, ସହଜ ଓ ସୌନ୍ଦର୍ଯ୍ୟ ସୃଷ୍ଟି ଅବଶ୍ୟ ପ୍ରୟୋଜନୀୟ। ଆଡମ୍ବରର ଆତିଶଯ୍ୟ ଅବସାଦକର। ତେଣୁ ବୁଝିବାକୁ ହୁଏ, ଶ୍ୟାମସୁନ୍ଦରଙ୍କର ଆଦର୍ଶ ଥିଲା, ବୋଧ ଥିଲା, ବିଚାର ଥିଲା, ଥିଲା ବି ମୂଲ୍ୟାୟନ।

ପ୍ରକାଶଭଙ୍ଗୀ ସ୍ୱଚ୍ଛନ୍ଦ ଓ ସୁସଙ୍ଗତ। ତାହାରି ଉଲ୍ଲେଖଯୋଗ୍ୟ ଗୁଣ ସୁସ୍ପଷ୍ଟତା ଓ ଯୁକ୍ତିଧର୍ମିତା। ଭାଷା ସ୍ୱଚ୍ଛ ଓ ଶୁଦ୍ଧ। ସୁଚିନ୍ତିତ ଓ ସୁନିର୍ଣ୍ଣୀତ ତତ୍ତ୍ୱସାମଗ୍ରୀ ତେଣୁ ସର୍ବତ୍ର ସରଳ ଓ ସହଜ ଭାବରେ ବ୍ୟାଖ୍ୟାତ। ରଚନାଶୈଳୀ ଅବଶ୍ୟ ମନୋଜ୍ଞ ଓ ଚିତ୍ତାକର୍ଷକ ନୁହେଁ, କିନ୍ତୁ ସମାଲୋଚନାର ବକ୍ତବ୍ୟକୁ ସୁବିନ୍ୟସ୍ତ ଭାବରେ ବ୍ୟକ୍ତ କରିବାକୁ ସଂପୂର୍ଣ୍ଣ କ୍ଷମ। ଶ୍ୟାମସୁନ୍ଦରଙ୍କ ସହଜ ଭାଷାଭଙ୍ଗୀ ଓ ସିଦ୍ଧାନ୍ତମୁଖୀ ମାନସିକତା ଆଜି ବି ଓଡ଼ିଆ ସମାଲୋଚନାର ଦିଗଦର୍ଶନ ହୋଇ ରହିଛି। ଲେଖା ସ୍ୱଚ୍ଛ। କିନ୍ତୁ ତଦ୍ଦ୍ୱାରା ଓଡ଼ିଆ ସମାଲୋଚନା ସାହିତ୍ୟର ଭିତ୍ତିଭୂମି ସୁଦୂର ବିସ୍ତୃତ ଓ ସୁଦୃଢ଼।

**ଶ୍ୟାମସୁନ୍ଦର ରାଜଗୁରୁଙ୍କ ପ୍ରକାଶିତ ରଚନାବଳୀ**

**ପ୍ରତିବାଦପତ୍ର** : ଉତ୍କଳସାହିତ୍ୟ, ୬ଷ୍ଠ ଭାଗ/୬ଷ୍ଠ ସଂଖ୍ୟା, ୧୯୦୨

**ଓଡ଼ିଆ ଭାଷାର ଆଦର୍ଶ** : ଉତ୍କଳସାହିତ୍ୟ, ୬ଷ୍ଠ ଭାଗ/୮ମ ସଂଖ୍ୟା,୧୯୦୨

**ଶୂଦ୍ରମୁନି ସାରଳା ଦାସ** : ଉତ୍କଳସାହିତ୍ୟ, ୭ମ ଭାଗ/୪ର୍ଥ ସଂଖ୍ୟା, ୧୯୦୩

**ଦୀନକୃଷ୍ଣ ଦାସ** : ଉତ୍କଳସାହିତ୍ୟ, ୭ମ ଭାଗ/୫ମ ସଂଖ୍ୟା, ୧୯୦୩

**ବଳରାମ ଦାସ** : ଉତ୍କଳସାହିତ୍ୟ, ୭ମ ଭାଗ/୭ମ ସଂଖ୍ୟା, ୧୯୦୩

**ଦ୍ୱାରିକା ଦାସ** : ଉତ୍କଳସାହିତ୍ୟ, ୭ମ ଭାଗ/୭ମ ସଂଖ୍ୟା, ୧୯୦୩

**ଓଡ଼ିଆ ଛନ୍ଦ (ଏକ)** : ଉତ୍କଳସାହିତ୍ୟ, ୭ମ ଭାଗ/୭ମ ସଂଖ୍ୟା, ୧୯୦୩

**ଧନଂଜୟ ଭଞ୍ଜ** : ଉତ୍କଳସାହିତ୍ୟ, ୭ମ ଭାଗ/୮ମ ସଂଖ୍ୟା, ୧୯୦୪

**ନିଶଂକରାୟ ରାଣୀ** : ଉତ୍କଳସାହିତ୍ୟ, ୭ମ ଭାଗ/୮ମ ସଂଖ୍ୟା, ୧୯୦୪

**ଓଡ଼ିଆ ଛନ୍ଦ (ଦୁଇ)** : ଉତ୍କଳସାହିତ୍ୟ, ୭ମ ଭାଗ/୧୦ମ ସଂଖ୍ୟା, ୧୯୦୪

**ଗୋପାଳ କବି** : ଉତ୍କଳସାହିତ୍ୟ, ୭ମ ଭାଗ/୧୦ମ ସଂଖ୍ୟା, ୧୯୦୪

**ଓଡ଼ିଆ ଛନ୍ଦ (ତିନି)** : ଉତ୍କଳସାହିତ୍ୟ, ୭ମ ଭାଗ/୧୧ଶ ସଂଖ୍ୟା, ୧୯୦୪

**କୃଷ୍ଣସିଂହ** : ଉତ୍କଳସାହିତ୍ୟ, ୭ମ ଭାଗ/୧୨ଶ ସଂଖ୍ୟା, ୧୯୦୪

**ଦାସରଥି ଦାସ ଓ କୃପାସିନ୍ଧୁ ଦାସ** : ଉତ୍କଳସାହିତ୍ୟ, ୭ମ ଭାଗ/୧୨ଶ ସଂଖ୍ୟା, ୧୯୦୪

**କବି ହରେକୃଷ୍ଣ** : ଉତ୍କଳସାହିତ୍ୟ, ୮ମ ଭାଗ/୧ମ ସଂଖ୍ୟା, ୧୯୦୪

**ରାମ ଦାସ** : ଉତ୍କଳସାହିତ୍ୟ, ୮ମ ଭାଗ/୨ୟ ସଂଖ୍ୟା, ୧୯୦୪

**ଓଡ଼ିଆ ବିଭକ୍ତି** : ଉତ୍କଳସାହିତ୍ୟ, ୮ମ ଭାଗ/୪ର୍ଥ ସଂଖ୍ୟା, ୧୯୦୫

**ଓଡ଼ିଆ ସର୍ବନାମ** : ଉତ୍କଳସାହିତ୍ୟ, ୯ମ ଭାଗ/୮ମ ସଂଖ୍ୟା, ୧୯୦୫

**ଓଡ଼ିଆ ଅବ୍ୟୟ** : ଉତ୍କଳସାହିତ୍ୟ, ୯ମ ଭାଗ/୯ମ ସଂଖ୍ୟା, ୧୯୦୫

**ପ୍ରବନ୍ଧାବଳୀ** (୧୯୧୭), ପାରଳାଖେମଣ୍ଡି

(୧୯୬୪) ଭୁବନେଶ୍ୱର : ଓଡ଼ିଆ ସାହିତ୍ୟ ଏକାଡେମି



୨୧ ସେପ୍ଟମ୍ବର, ୧୮୬୯-୧୪ ଜାନୁଆରି, ୧୯୨୪

## ସାହିତ୍ୟସାଧକ

## ପଣ୍ଡିତ ଗୋପୀନାଥ ନନ୍ଦଶର୍ମ୍ମା

ସୁଦର୍ଶନ ଆଚାର୍ଯ୍ୟ

## ଏକ

୧୮୬୯ ଜୁଲାଇ ପ୍ରଥମ ସପ୍ତାହରେ ବାବୁ ଉମାଚରଣ ହାଲଦଦାରଙ୍କ 'ବଙ୍ଗ ଅକ୍ଷରରେ ଉତ୍କଳ ଭାଷା ଲେଖିବା' ପ୍ରସ୍ତାବ,[୧] ରାଜକୃଷ୍ଣ ବୋଷଙ୍କୁ ଆକ୍ଷେପ କରି ତା ୧୫.୦୭.୧୮୬୯ରେ ଶ୍ରୀରଙ୍ଗ ପଞ୍ଚାନନ ଲେଖିଥିବା ବ୍ୟଙ୍ଗାତ୍ମକ ପତ୍ର[୨] **ଉତ୍କଳଦୀପିକା** ପତ୍ରିକାର ସଂପାଦକଙ୍କ ବିରୋଧରେ ରାଜକୃଷ୍ଣ ବୋଷଙ୍କ ମାନହାନି ମକଦ୍ଦମା ଏବଂ ତା ୦୪.୦୮.୧୮୬୯ ରେ ସଂପାଦକ ଗୌରୀଶଙ୍କର ରାୟ କର୍କୁଡ଼୍ ସାହେବଙ୍କ ରାୟ,[୩] ତା ୧୪.୦୮.୧୮୬୯ 'ଦୀପିକାରେ' ସଂସ୍କୃତ ଭାଷା ଓ ଅକ୍ଷର ପ୍ରବର୍ତ୍ତନ ପାଇଁ ରଙ୍ଗଲାଲ ବନ୍ଦ୍ୟୋପାଧ୍ୟାୟଙ୍କ ପ୍ରସ୍ତାବ (ହୁଗୁଳିରୁ ତା ୦୫.୦୮.୧୮୬୯), [୪] ପ୍ରଭୃତି ଫଳରେ ଓଡ଼ିଆ ଭାଷା-ବିଲୋପ ଆନ୍ଦୋଳନ ୧୮୬୯ ମସିହା ଜୁଲାଇ ମାସବେଳକୁ ଚରମସୀମାରେ ଉପନୀତ ହୋଇ ଅଗଷ୍ଟ ମାସ ମଧ୍ୟଭାଗ ବେଳକୁ ଲକ୍ଷ୍ୟ ସିଦ୍ଧିପୂର୍ବକ ସ୍ତିମିତ ହୋଇ ପଡ଼ିଅଛି। ଏ ସଂପର୍କରେ ଆଉ କୌଣସି ବାଦାନୁବାଦ ପ୍ରକାଶ ପାଇବନାହିଁ ବୋଲି ସଂପାଦକ ଗୌରୀଶଙ୍କର **ଉତ୍କଳଦୀପିକା**ର ତା ୧୪.୦୮.୧୮୬୯ ସଂଖ୍ୟାରେ ଘୋଷଣା ଏବଂ ଗୋପାନାଥ ନନ୍ଦଙ୍କ ଜନ୍ମ ଦିବସରେ ଏହି ପତ୍ରିକାର ଯେଉଁ ସଂଖ୍ୟା ପ୍ରକାଶ ପାଇଛି ( ଭା ୪/୩୪, ତା ୨୧.୦୮.୧୮୬୯) ସେଥିରେ ଭାଷା ବିବାଦଭିତ୍ତିକ କୌଣସି ସମ୍ବାଦ ପ୍ରକାଶ ପାଇଥିବା ଦେଖିବାକୁ ମିଳେନାହିଁ।

ଓଡ଼ିଶାର ଜାତିପ୍ରାଣ ବୁଦ୍ଧିଜୀବୀ ଏବଂ ସହୃଦୟ ହିତାକାଂକ୍ଷୀ ବନ୍ଧୁମାନଙ୍କ ଆନ୍ତରିକ ଉଦ୍ୟମରେ ଓଡ଼ିଆ ଭାଷା ବିଲୁପ୍ତିର କରାଳଗର୍ଭରୁ ରକ୍ଷା ପାଇଗଲା, କିନ୍ତୁ ଚକ୍ରାନ୍ତକାରୀ ବିରୋଧୀଗୋଷ୍ଠୀଠାରୁ ଏହାକୁ ସଂପୂର୍ଣ୍ଣ ମୁକ୍ତ କରିବା ପାଇଁ ଏହି ଭାଷାର ସ୍ୱାତନ୍ତ୍ର୍ୟ ପ୍ରତିପାଦନ ଥିଲା ସେତେବେଳର ପ୍ରଥମ ଆବଶ୍ୟକତା। ଏଥିପାଇଁ ଭାଷାତତ୍ତ୍ୱବିତ୍ ଜନ୍ ବୀମସ୍, କାନ୍ତିଚନ୍ଦ୍ର ଭଟ୍ଟାଚାର୍ଯ୍ୟଙ୍କ 'ଉଡ଼ିୟା ସ୍ୱତନ୍ତ୍ର ଭାଷା ନହେ' ପୁସ୍ତକ ସଂପର୍କରେ ପ୍ରତିକ୍ରିୟା ପ୍ରକାଶ କରି ଲେଖିଥିଲେ,

> ଏପରି ପୁସ୍ତକ (ଓଡ଼ିଆ ଭାଷା ଉପରେ ଏକ ସ୍ୱତନ୍ତ୍ର ପୁସ୍ତକ) କେବଳ ଏ ଦେଶର ଜଣେ ଅଧିବାସୀ ଲେଖିପାରିବ, କାରଣ ଏ ସଂପର୍କରେ ଏ ଦେଶରେ କୌଣସି ସୁନ୍ଦର ବ୍ୟାକରଣ ପୁସ୍ତକ କିମ୍ବା ଅଭିଧାନ ଏ ପର୍ଯ୍ୟନ୍ତ ଲେଖା ଯାଇନାହିଁ। କାନ୍ତିବାବୁ କେତେ ଦୂର ସତ୍ୟ ଲେଖିଛନ୍ତି ତାହାର ଯଥାର୍ଥ ଅନୁସନ୍ଧାନ କରି ଖଣ୍ଡିଏ ପୁସ୍ତକ ଲେଖିବା ପାଇଁ ଏ ଦେଶରେ କୌଣସି ଉପଯୁକ୍ତ ଲୋକ ନାହାନ୍ତି; ଏପରି ଉପଯୁକ୍ତ ଲେଖାଥିଲେ ଆମେ କାନ୍ତିଚନ୍ଦ୍ର ବାବୁଙ୍କ ପୁସ୍ତକର ଏବଂ ଯଥାର୍ଥ ଉତ୍ତର ଦେ(ଲେ) ଖି ପାରିଥାନ୍ତୁ।[୫]

୧୮୭୦ ମସିହାରେ ବୀମସ୍ ସାହେବଙ୍କ ସହାୟତା କରିପାରି ନଥିଲେ ସୁଦ୍ଧା ଓଡ଼ିଆ ଭାଷାରେ 'ବ୍ୟାକରଣ' ଓ 'ଅଭିଧାନ' ପ୍ରଣୟନ ପୂର୍ବକ ତାଙ୍କର ସ୍ୱପ୍ନକୁ ସାକାର କରିବାପାଇଁ ମାତୁଳାଳୟ ମଞ୍ଜୁଷାଠାରେ ଜନ୍ମ ଗ୍ରହଣ କରିଥିବା ରଘୁନାଥ ନନ୍ଦ ଓ ରମାଦେବୀଙ୍କ ଦ୍ୱିତୀୟ ପୁତ୍ର ଗୋପୀନାଥ ପାରଳାଖେମଣ୍ଡିର ପବିତ୍ର ସାଧନା ପୀଠରେ ପଦାର୍ପଣ କରିଛନ୍ତି।

ପାରଳାଖେମଣ୍ଡିର ଗୌରବାବହ ସାଂସ୍କୃତିକ, ସାହିତ୍ୟକ ଓ ରାଜନୀତିକ ଐତିହ୍ୟ; ଗୋପାଳକୃଷ୍ଣ, ଗୌରହରି, ହରିବନ୍ଧୁ, କବିସୂର୍ଯ୍ୟ, ଜଗନ୍ନାଥ ନାରାୟଣ ଦେବ ପ୍ରମୁଖଙ୍କ ସଂଗୀତାବଳୀର ସୁମଧୁର ମୂର୍ଚ୍ଛନା; ପଦ୍ମନାଭ ଦେବ, ଶ୍ୟାମସୁନ୍ଦର ରାଜଗୁରୁ, ନୀଳମଣି ପରିଛା, ଅପର୍ଣ୍ଣା ପଣ୍ଡା, ଅପନ୍ନା ପରିଛା ପ୍ରଭୃତି ବୟୋଜ୍ୟେଷ୍ଠ ଓ ସମବୟସ୍କ ବନ୍ଧୁମାନଙ୍କ ସାହଚର୍ଯ୍ୟ; ମଠମନ୍ଦିରଗୁଡ଼ିକର ଘଣ୍ଟାଧ୍ୱନି ଓ ଆବେଗ ପରିପ୍ଲୁତ ସଂକୀର୍ତ୍ତନର ଭକ୍ତିପୂତ ସ୍ୱରଲହରୀ; ନିତ୍ୟନନ୍ଦ ଶତପଥୀ, ଗଜନ୍‌ମୋହନ ପାଠୀ, ଗୁରୁଦନ୍ତୀ ବେଙ୍କଟାଚଳ ଶର୍ମା, ମଙ୍ଗୁ ଶ୍ରୀନିବାସ ରାଓ, ବି. ରାମମୂର୍ତ୍ତି, ମଧୁସୂଦନ ରାଜଗୁରୁ ମହାପାତ୍ର ପ୍ରମୁଖ ଶିକ୍ଷକ ଓ ଶିକ୍ଷାବିତ୍‌ଙ୍କ ଶିକ୍ଷା ଓ ସଦିଚ୍ଛା; ପଦ୍ମନାଭ ରଙ୍ଗାଳୟର ନାଟକ ସମାରୋହ, ବିଚ୍ଛିନ୍ନାଞ୍ଚଳ ଓଡ଼ିଆମାନଙ୍କର ଜାତୀୟତାବୋଧ ଏବଂ ସର୍ବୋପରି ପାରିବାରିକ ସଂସ୍କାର ଗୋପୀନାଥଙ୍କ ଅଖଣ୍ଡ ସାହିତ୍ୟସାଧନାପାଇଁ ଥିଲା ପ୍ରେରକତତ୍ତ୍ୱ। ସେ ନିଜର ସମଗ୍ର ଜୀବନକୁ ଉତ୍କଳଭାରତୀଙ୍କ ଚରଣକମଳରେ ସମର୍ପିତ କରିଛନ୍ତି। ତାଙ୍କ ଜୀବନୀ ଅନୁଧ୍ୟାନ କଲେ ମନେହୁଏ, ଓଡିଆ ଭାଷା ଓ ସାହିତ୍ୟର ସମ୍ମାନରକ୍ଷା ଓ ସ୍ୱାତନ୍ତ୍ୟ ପ୍ରତିପାଦନପାଇଁ ହିଁ ବିଧାତା ବୋଧହୁଏ ତାଙ୍କୁ ପ୍ରେରଣ କରିଛନ୍ତି। କାୟମନୋବାକ୍ୟରେ ଗୋପୀନାଥ ବିଧାତାର ଏହି ଲକ୍ଷ୍ୟପୂର୍ତ୍ତି ପାଇଁ ଆଜୀବନ ଅକୁଣ୍ଠ ସାଧନା କରିଛନ୍ତି।

ଦୁଇ

ଏକ ନିର୍ଦ୍ଦିଷ୍ଟ ଲକ୍ଷ୍ୟ ସାଧାନ ପାଇଁ ଯା'ର ଜନ୍ମ, ତା'ର ଜୀବନରେ ସାଂସାରିକ ଭୋଗବିଳାସ ଏବଂ ସୁଖସ୍ୱାଚ୍ଛନ୍ଦ୍ୟର ପ୍ରଶ୍ନ ନାହିଁ। ଗୋପୀନାଥ ସମଗ୍ର ଜୀବନ କେବଳ ଦୁଃଖ ଓ ଯାତନା ମଧ୍ୟରେ ହିଁ କଟାଇ ଦେଇଛନ୍ତି। ଶୈଶବରେ ତାଙ୍କ ବୟସର ପିଲମାନେ ଯେତେବେଳେ ବାଳଚାପଲ୍ୟରେ ପାରଳାଖେମଣ୍ଡିର ରାଜପଥକୁ ଉଚ୍ଛୁଳାଇ ଦେଉଥିଲେ, ଗୋପୀନାଥ ସେତେବେଳେ ସେଥିରେ ଥିଲେ ସଂପୂର୍ଣ୍ଣ ବୀତସ୍ପୃହ। ଏଥିପାଇଁ ପରବର୍ତ୍ତୀ ସମୟରେ ତାଙ୍କୁ ଅବଶ୍ୟ ଅନୁତାପ କରିବାକୁ ପଡ଼ିଥିଲା। 'ମୁଁ ଯେତେଦୂର ଜାଣେ, ଏ ପଣ୍ଡିତ ମହାଶୟ ଶୈଶବରୁ ଖେଳ ଖେୟାଲ ଜାଣନ୍ତି ନାହିଁ। ପିଲାବେଳେ ପିଲାଙ୍କ ସଙ୍ଗେ ଧୂଳିଖେଳା ସୁଦ୍ଧା କରିଅଛନ୍ତି କି ନାହିଁ, କହି ନ ପାରେଁ। ତାହା ତାଙ୍କର ମନେନାହିଁ ବୋଲି କହନ୍ତି। ଅତଏବ ଖେଳରେ ବ୍ୟବହୃତ ଶବ୍ଦଗୁଡ଼ିକରେ ସେ ସଂପୂର୍ଣ୍ଣ ଅନଭିଜ୍ଞ' ଇତ୍ୟାଦି।[୬]

ଗୋପୀନାଥଙ୍କ ଶୈଶବର ଏହି ଏକାନ୍ତ-ପ୍ରୀତି, କୈଶୋରରେ ବିଭୁପ୍ରୀତିରେ ପରିଣତ ହୋଇଛି। ସେ ପ୍ରତିଦିନ ପାରଳାଖେମଣ୍ଡିର ବିଭିନ୍ନ ମନ୍ଦିରକୁ ଯାଇ ସାଧୁସନ୍ଥଙ୍କ ମେଳରେ ଘଣ୍ଟାବାଦନ ଓ ସଂକୀର୍ତ୍ତନରେ ଯୋଗଦାନ କରିଛନ୍ତି। ସତ୍‌ସଙ୍ଗରୁ ସନ୍ନ୍ୟାସୀ ହେବାର ଆକାଂକ୍ଷା ତାଙ୍କ ମନରେ ବଳବତୀ ହୋଇ ଉଠିଛି। ପିତା ସାଂସାରିକ ବନ୍ଧନରେ ଆବଦ୍ଧ କରିବାପାଇଁ ମାତ୍ର ଚଉଦ ବର୍ଷ ବୟସରେ ତାଙ୍କର ବିବାହ ସମ୍ପନ୍ନ କରାଇ ଦେଇଛନ୍ତି।

କିନ୍ତୁ ବର୍ଷକ ମଧ୍ୟରେ କନ୍ୟାଟିର ମୃତ୍ୟୁ ହୋଇଯାଇଛି। କେବଳ ସେତିକି ନୁହେଁ, ତା ପରେପରେ ୧୮୮୪ ମସିହାରେ ମାତା ମଧ୍ୟ ଇହଧାମ ତ୍ୟାଗ କରି ଚାଲିଯାଇଛନ୍ତି। ଏହା ଗୋପୀନାଥଙ୍କ ମନରେ ଯେଉଁ ପ୍ରତିକ୍ରିୟା ସୃଷ୍ଟି କରିଛି, ତା'ରି ଫଳରେ ସେ ପିତା ଓ ପରିବାରର ଅଜ୍ଞାତସାରରେ ସନ୍ନ୍ୟାସ ଅବଲମ୍ବନ କରିବାପାଇଁ ସାଧୁମାନଙ୍କ ସହ ଗୃହତ୍ୟାଗ କରିଛନ୍ତି। କିନ୍ତୁ ସନ୍ନ୍ୟାସୀ ହୋଇ ଧର୍ମ-ସାଧନା କରିବା ତାଙ୍କପାଇଁ ବିଧିନିର୍ଦ୍ଦିଷ୍ଟ ନଥିଲା। ପିତା କଟକଠାରୁ ତାଙ୍କୁ ଫେରାଇ ଆଣିଛନ୍ତି।[୨] ଗୋପୀନାଥ ସନ୍ନ୍ୟାସୀ ହୋଇପାରିଲେ ନାହିଁ , କିନ୍ତୁ ପରବର୍ତ୍ତୀ ସମୟରେ ସନ୍ନ୍ୟାସୀର ମନୋବୃତ୍ତି ତାଙ୍କ ଜୀବନକୁ ବିଶେଷ ଭାବେ ପ୍ରଭାବିତ କରିଛି। ଈଶ୍ୱରବିଶ୍ୱାସ, ସାଂସାରିକ ଭୋଗବିଳାସ ପ୍ରତି ଅନାସକ୍ତି, ସ୍ଥିତପ୍ରଜ୍ଞତା, ଜୀବନର କଠୋର ସତ୍ୟର ସମ୍ମୁଖୀନ ହେବାପାଇଁ ଅଶେଷ ସହିଷ୍ଣୁତା, ଉଦାର କ୍ଷମାଶୀଳତା, ଲକ୍ଷ୍ୟସିଦ୍ଧିପାଇଁ ସାଧନାରେ ଏକନିଷ୍ଠତା ପ୍ରଭୃତି ଥିଲା ତାଙ୍କ ବ୍ୟକ୍ତିତ୍ୱର କେତୋଟି ବିଲକ୍ଷଣ ବିଶେଷତ୍ୱ। ଗୃହସ୍ଥାଶ୍ରମରେ ସେ ଥିଲେ ଗୃହୀ-ସନ୍ନ୍ୟାସୀ।

ପିତା ଓ ପରିବାରର ତାଡ଼ନାରେ ସେ ଦ୍ୱିତୀୟଦାର ଗ୍ରହଣ କରିଛନ୍ତି। କିନ୍ତୁ ବିଧାତା ତାଙ୍କୁ ସାଂସାରିକ ଜଞ୍ଜାଳଠାରୁ ଦୂରରେ ରଖିବାପାଇଁ ଯେପରି ଦୃଢ଼ ପରିକର। ଏଣୁ ତାଙ୍କ ଜୀବନରେ ପିତୃତ୍ୱ ଲାଭର ସୌଭାଗ୍ୟ ଘଟିନାହିଁ। ସେ ନିଃସନ୍ତାନ। ପୋଷ୍ୟପୁତ୍ରଟିଏ ଗ୍ରହଣ କରି ଏ ଦୁଃଖରୁ କଥଂଚିତ୍ ଉଦ୍ଧାର ପାଇବାପାଇଁ ସେ ଚେଷ୍ଟା କରିଛନ୍ତି। କିନ୍ତୁ ଅକାଳରେ ସେ ମଧ୍ୟ ତାଙ୍କୁ ଛାଡ଼ି ଚାଲିଯାଇଛନ୍ତି।

କବିରାଜି ଥିଲା ଗୋପୀନାଥଙ୍କ କୌଳିକ ବୃତ୍ତି। ତାଙ୍କ ଷଷ୍ଠ ପୂର୍ବପୁରୁଷ ବିକେଇ ନନ୍ଦ ରାଜବୈଦ୍ୟ ଭାବେ ପୁରୀରେ ବୀରବଳଭଦ୍ରପୁର ଶାସନରୁ ଯାଇ ପାରଳାଖେମଣ୍ଡିରେ ପଦାର୍ପଣ କରିଥିଲେ। ସେହି ସମୟଠାରୁ ନନ୍ଦବଂଶର ବିଭିନ୍ନ କୃତିପୁରୁଷ ଆୟୁର୍ବେଦ ଶାସ୍ତ୍ର-ପ୍ରବୀଣତାପାଇଁ ରାଜସମ୍ମାନ ପାଇ ଆସିଛନ୍ତି। ତାଙ୍କ ମାମୁଁ ଲିଙ୍ଗରାଜ ସଦସ୍ୟ ମଧ୍ୟ ଏଥିପାଇଁ ମଞ୍ଜୁଷା ରାଜାଙ୍କଦ୍ୱାରା ସମ୍ମାନିତ ହୋଇଥିଲେ। ନନ୍ଦଶର୍ମାଙ୍କ ମଧ୍ୟ ଏହି ଶାସ୍ତ୍ରରେ କମ୍ ପ୍ରବେଶ ନଥିଲା। ତାଙ୍କ ରଚିତ 'କର୍ମବିପାକ' ଏବଂ 'ଶବ୍ଦତତ୍ତ୍ୱବୋଧ ଅଭିଧାନ' ର ଶେଷରେ ଥିବା ବୈଦ୍ୟକ ଶବ୍ଦମାଳାହିଁ ଏହାର ପ୍ରକୃଷ୍ଟ ପ୍ରମାଣ। ସେ କୌଳିକବୃତ୍ତିର ଆଶ୍ରୟ ନେଇଥିଲେ, ରୋଗୀସେବା ଜନିତ ପୁଣ୍ୟ ସହିତ ପ୍ରଚୁର ସମ୍ପତ୍ତି ଓ ସମ୍ମାନ ଲାଭ କରିପାରିଥା'ନ୍ତେ। କିନ୍ତୁ ଈଶ୍ୱରଙ୍କ ଇଚ୍ଛା ଭିନ୍ନ ପ୍ରକାର। ସେ ତାଙ୍କୁ ବିଷହସ୍ତା କରି ଦେଇଥିଲେ। ରୋଗର ନିଦାନ କରିବାରେ ତାଙ୍କର ଦକ୍ଷତା ଥିଲେ ସୁଦ୍ଧା ନିଜ ହାତରେ ଔଷଧ ପ୍ରଦାନ କରିବା ସମ୍ଭବ ନଥିଲା। ତେଣୁ ସେ ବୈଦ୍ୟବୃତ୍ତିରୁ ନିବୃତ୍ତ ହେବାପାଇଁ ବାଧ୍ୟ ହୋଇଥିଲେ।

ପରିଶେଷରେ ବଜ୍ରପାତ ଫଳରେ ସେ ଶ୍ରୁତିଶକ୍ତି ହରାଇ ବସିଥିଲେ। ସେ ଯାହା କହୁଥିଲେ, ତାହା ସମସ୍ତଙ୍କୁ ଶୁଣାଯାଉଥିଲା, କିନ୍ତୁ ଅନ୍ୟମାନଙ୍କ ସବୁକଥା ସେ ଶୁଣିପାରୁ ନଥିଲେ। ଏହା ତାଙ୍କ ପାଇଁ ଆଶୀର୍ବାଦ, କି ଅଭିଶାପ ଥିଲା, କହିବା ସମ୍ଭବପର ନଥିଲେ ସୁଦ୍ଧା ଓଡ଼ିଆ ସାହିତ୍ୟପାଇଁ ଥିଲା ଦୈବୀ ଆର୍ଶୀବାଦ। ବାହାରର ଅଯଥା କୋଳାହଳ ତାଙ୍କ ସାହିତ୍ୟ ସାଧନାପାଇଁ ଆଉ ପ୍ରତିବନ୍ଧକ ହେଲା ନାହିଁ, ତାଙ୍କ ଏକାଗ୍ରତା ଭଙ୍ଗ କରିବାପାଇଁ ସମର୍ଥ ହେଲାନାହିଁ।

ତାଙ୍କ ଜୀବନର ଏହି ସବୁ ଘଟଣା ପ୍ରବାହକୁ ପର୍ଯ୍ୟାଲୋଚନା କଲେ ସ୍ପଷ୍ଟ ଉପଲବ୍ଧ ହୁଏ ଯେ, ଉତ୍କଳଭାରତୀଙ୍କ ଉପାସନା ତଥା ମାନରକ୍ଷାପାଇଁ ହିଁ ଗୋପୀନାଥ ଓଡ଼ିଆ ଭାଷା ସାହିତ୍ୟର ଏକ ସଂକଟମୟ ପରିସ୍ଥିତିରେ ଜନ୍ମଗ୍ରହଣ କରିଥିଲେ। ତାହା ପୁଣି ସାଂସ୍କୃତିକ ଓଡ଼ିଶାରୁ ବିଚ୍ଛିନ୍ନ ହୋଇପଡ଼ିଥିବା ଏକ ଉପାନ୍ତ ଅଞ୍ଚଳରେ। ମାତ୍ର ୫୪ ବର୍ଷ ମଧ୍ୟରେ ସେ ଓଡ଼ିଆ ଭାଷା, ଓଡ଼ିଆ ସାହିତ୍ୟ ଏବଂ ଓଡ଼ିଶା ପାଇଁ ଯାହା କରିଯାଇଛନ୍ତି, ତାହା ନିଶ୍ଚିତ ଭାବରେ ବିସ୍ମୟକର। ୧୯୨୪ ମସିହା ଜାନୁଆରି ଚଉଦ ତାରିଖରେ ସେ ଇହଲୀଳା ସମ୍ବରଣ କରିଛନ୍ତି। ତାଙ୍କ ମୃତ୍ୟୁରେ ଶୋକ ପ୍ରକାଶକରି ଉତ୍କଳ ସାହିତ୍ୟର ସମ୍ପାଦକ ବିଶ୍ୱନାଥ କର ଲେଖିଛନ୍ତି -

> ପଣ୍ଡିତ ଗୋପୀନାଥ ନନ୍ଦଶର୍ମା ପୁରାତନ ରୀତିରେ ସଂସ୍କୃତଜ୍ଞ ପଣ୍ଡିତ। ସଂସ୍କୃତଜ୍ଞ ପଣ୍ଡିତମାନେ ଉତ୍କଳ ସାହିତ୍ୟ ଚର୍ଚ୍ଚାରେ କ୍ୱଚିତ ମନ ବଳାଇଥାନ୍ତି। ମାତ୍ର ଗୋପୀନାଥ ଉତ୍କଳ ସାହିତ୍ୟର ସୌନ୍ଦର୍ଯ୍ୟ ଓ ଗୌରବ ଅନୁଭବ କରି ତାହାର ଚର୍ଚ୍ଚାରେ ଏକାବେଳକେ ବୁଡ଼ିଯାଇଥିଲେ। ସଂସ୍କୃତ ଛଡ଼ା ତୈଲଙ୍ଗ୍ୟ ସାହିତ୍ୟରେ ସେ ସୁପଣ୍ଡିତ ଥିଲେ, ପୁଣି ନିଜର ସାହିତ୍ୟଜ୍ଞାନକୁ ପରିପୁଷ୍ଟ କରିବା ପାଇଁ ରାଶି ରାଶି ବଙ୍ଗଳା ସାହିତ୍ୟ ମଧ୍ୟ ଅଧ୍ୟୟନ କରିବାକୁ କୁଣ୍ଠିତ ହୋଇନଥିଲେ। ଏଡ଼େ ଅଧ୍ୟୟନଶୀଳ ବ୍ୟକ୍ତି ଯଥାର୍ଥରେ ଉତ୍କଳରେ ବିରଳ। କି ପ୍ରାଚୀନ, କି ଆଧୁନିକ, କୌଣସି ଓଡ଼ିଆ ପୁସ୍ତକ ଅଧ୍ୟୟନ କରିବାକୁ ତାଙ୍କର ପ୍ରାୟ ବାକି ନଥିଲା। କଥା ପଡ଼ିଲେ, ନାନା ଶ୍ରେଣୀର ପୁସ୍ତକମାନଙ୍କର ଅଧ୍ୟାୟ, ଶ୍ଳୋକ ବା ପୃଷ୍ଠା ପର୍ଯ୍ୟନ୍ତ ଉଲ୍ଲେଖ କରି ପ୍ରମାଣ ପ୍ରୟୋଗ କରୁଥିଲେ। ଭାଷାର ଜଟିଳତା ଓ ବର୍ଣ୍ଣନାର ବାହୁଲ୍ୟ ଯୋଗୁଁ ତାଙ୍କ ରଚନା ସକଳ ଶ୍ରେଣୀର ପାଠକମାନଙ୍କୁ ରୁଚିକର ହେଉନଥିଲା ସତ୍ୟ, କିନ୍ତୁ ତାହାର ପ୍ରତିପଂକ୍ତିରେ ଗଭୀର ଗବେଷଣାର ମୁଦ୍ରା ଅଙ୍କିତ ଥିଲା ଏବଂ ତାହା ଅନ୍ୟତ୍ର ସୁଦୁର୍ଲ୍ଲଭ। ପ୍ରାଚୀନ ରୀତିନୀତିରେ ଶିକ୍ଷିତ ଓ ଅଭ୍ୟସ୍ତ ଏବଂ ପ୍ରାଚୀନତାର ପୂର୍ଣ୍ଣ ପକ୍ଷପାତୀ ହେଲେ ମଧ୍ୟ ନବ୍ୟଭାବର ଗ୍ରାହକତା ତାଙ୍କ ମଧ୍ୟରେ ଯଥେଷ୍ଟ ଥିଲା - ଗୁଣ ଗ୍ରହଣ ବିଷୟରେ ନବ୍ୟପ୍ରାଚୀନ ଭେଦ ସେ ଭୁଲି ଯାଉଥିଲେ।[୮]

ଏପରି ଜଣେ ସୁଦୁର୍ଲ୍ଲଭ ବିଦ୍ୱତ୍ତାସଂପନ୍ନ ଗୁଣଗ୍ରାହୀ ପଣ୍ଡିତଙ୍କ ମୃତ୍ୟୁରେ ବନ୍ଧୁ ବିଶ୍ୱନାଥ କରଙ୍କ ଏହି 'ଶୋକବାର୍ତ୍ତା' କିମ୍ବା ବାଲୁକେଶ୍ୱର ମହାପାତ୍ରଙ୍କ 'ସ୍ୱର୍ଗତ ନନ୍ଦଶର୍ମା' ଶୋକ ଗୀତିକାଟି ବ୍ୟତୀତ ସେତେବେଳେ ଏ ଜାତି ତାଙ୍କପ୍ରତି ଆଉ ଅଧିକ ଅଶ୍ରୁଳ ଶ୍ରଦ୍ଧାଞ୍ଜଳି ଅର୍ପଣ କରିବାପାଇଁ ସମର୍ଥ ହୋଇ ନ ଥିଲା। ଅବଶ୍ୟ ସ୍ୱଳ୍ପ ବ୍ୟବଧାନରେ ପଣ୍ଡିତ ଗୋପୀନାଥ (୧୪.୧.୧୯୨୪), କବି ଗଙ୍ଗାଧର ମେହେର (ତା ୪.୪.୧୯୨୪), ପଣ୍ଡିତ ମୃତ୍ୟୁଞ୍ଜୟ ରଥ ( ତା ୧୦.୪.୧୯୨୪) ଏବଂ ପଣ୍ଡିତ ନୀଳମଣି ବିଦ୍ୟାରତ୍ନ (ତା ୨୬. ୭.୧୯୨୪) ଙ୍କ ଜୀବନାବସାନକୁ ଏହାର କାରଣ ବୋଲି ଆପାତତଃ ଗ୍ରହଣ କରାଯାଇଥାଏ। କିନ୍ତୁ ସେସମୟର ପତ୍ରପତ୍ରିକାଗୁଡ଼ିକୁ ଅନୁଧ୍ୟାନ କଲେ, ନନ୍ଦ ପଣ୍ଡିତଙ୍କ ପ୍ରତି ହୋଇଥିବା ପକ୍ଷପାତିତା ଆଦୌ ଅସ୍ପଷ୍ଟ ହେବ ନାହିଁ। ସାଂସାରିକ ଜୀବନରେ ବିଧାତା ଯେପରି ତାଙ୍କର ପ୍ରତିକୂଳ ଥିଲେ, ସାହିତ୍ୟିକ ଜୀବନରେ ସମକାଳୀନ

ଓଡ଼ିଶାର ଅଧିକାଂଶ ସାହିତ୍ୟ-ବଡପଣ୍ଡା ତାଙ୍କ ପ୍ରତି ସେହିପରି ଈର୍ଷା ପ୍ରଣୋଦିତ ପ୍ରତିକୂଳତା ଆଚରଣ କରିଛନ୍ତି ।

ରାଧାନାଥ ବଙ୍ଗଳା ସାହିତ୍ୟର ଅନୁସରଣରେ ଓଡ଼ିଆ ପଦ୍ୟରେ ଉପଧାମିଳନ ଓ ଅମିତ୍ରାକ୍ଷର ଛନ୍ଦ ପ୍ରବର୍ତ୍ତନ କରିଥିଲେ । ପଣ୍ଡିତ ଗୋପୀନାଥ ଅନ୍ୟତମ ପଡୋଶୀ ସାହିତ୍ୟ ତେଲୁଗୁର ଆହ୍ୱାନକ୍ରମେ ଗଣନିୟମ ଛନ୍ଦର ପ୍ରବର୍ତ୍ତନ ପାଇଁ ପ୍ରୟାସ କରିଥିଲେ । ରାଧାନାଥ ତତ୍କାଳୀନ ଓଡ଼ିଶାରେ ଶିକ୍ଷାବିଭାଗର ସର୍ବମୟ କର୍ତ୍ତା ଥିବାଯୋଗୁଁ ସମସ୍ତ ବାଧାବିଘ୍ନ ଅତିକ୍ରମ କରି ପ୍ରାଥମିକ ସ୍ତରରେ ବହୁ ଲେଖକଙ୍କୁ ନିଜର ଅନୁଗତ କରାଇପାରିଥିଲେ । କିନ୍ତୁ ଦକ୍ଷିଣ ସୀମାନ୍ତରେ ପଣ୍ଡିତ ନନ୍ଦଶର୍ମା ଯେଉଁ ନବୀନ ଆଦର୍ଶ ଉପସ୍ଥାପନ କରିଥିଲେ, ତାହା ତ ଅନ୍ୟମାନଙ୍କଦ୍ୱାରା ଗୃହୀତ ହେଲା ନାହିଁ, ବରଂ ସେ ଏଥିପାଇଁ ଉପହସିତ ହୋଇଥିଲେ । ଯେଉଁମାନେ ସେତେବେଳେ ସଂସ୍କୃତ ଛନ୍ଦନିୟମରେ କବିତା ଲେଖିବା ଆରମ୍ଭ କରିଥିଲେ, ସେମାନଙ୍କପାଇଁ ପୁରସ୍କାର ଥିଲା ।

କେଶାକର୍ଷଣ ହାବୁକା ଗଡ଼ଗଡ଼ା ଚପୋଡ଼୍ ବିନ୍ଧା କଡ଼ି
ଲେଡା ନାକମୋଡ଼ା କହୁଣି କୋରଡ଼ା ପାଣ୍ଠୋଇ ଠେଙ୍ଗା ହଡ଼ି ।
ଝିଙ୍କା ବାହୁଛଟା ସମର୍ଥ ଗୋଇଠା ଚେଙ୍ଗା ମୁଖୀ ଚେଙ୍ଗିବା
ଶାଙ୍କୋଳି ତଉକାନ୍ତି ଚବୁକ ତହଃ ତୋଟ୍ୟାଧିକନ୍ନାଧିକଃ ।

'ବିଶୁଦ୍ଧ ଓଡ଼ିଆ ଶବ୍ଦକୋଷ'ସଂକଳନ ପାଇଁ ୧୯୦୪ ମସିହାରେ ଓଡ଼ିଶାର ସୁଧୀବୃନ୍ଦ ଚିନ୍ତା କରିବା ପୂର୍ବରୁ ୧୮୯୭ରୁ ଦୀର୍ଘ ସାତବର୍ଷ ଅକ୍ଳାନ୍ତ ପରିଶ୍ରମ କରି ପଣ୍ଡିତ ଗୋପୀନାଥ 'ଶବ୍ଦତତ୍ତ୍ୱବୋଧ ଅଭିଧାନ'ପ୍ରଣୟନ କରିସାରିଥିଲେ । ବହୁ ଘାତପ୍ରତିଘାତ ଅତିକ୍ରମ କରି ୧୯୧୬ ମସିହାରେ ଅଭିଧାନଟି ପ୍ରକାଶ ପାଇବା ପରେ ଏହାକୁ ନେଇ ଯେଉଁ ତୀବ୍ର ବାଦାନୁବାଦ ଆରମ୍ଭ ହୋଇଥିଲା, ତାହାହିଁ ଥିଲା ପଣ୍ଡିତ ମହାଶୟଙ୍କ ପ୍ରତି ଏ ଜାତିର ପରମ ଓ ଚରମ କୃତଜ୍ଞତା ଜ୍ଞାପନ ! ଯେଉଁ ଉତ୍କଳ ସାହିତ୍ୟ ସମାଜ ବାରମ୍ବାର ସଂଶୋଧନ କରାଇ ଅଭିଧାନର ପ୍ରକାଶନ ସଂପର୍କରେ ଅନୁକୂଳ ମନ୍ତବ୍ୟ ପ୍ରଦାନ କରିଥିଲେ[୮୦], ସେହି ସମାଜର 'ଜଣେ ସଭ୍ୟ' ତା ୨୮.୩.୧୯୧୬ ରେ ଏଥିର ମାତ୍ର କେତୋଟି ପୃଷ୍ଠା ଓଲଟାଇ ଯେଉଁ ମନ୍ତବ୍ୟ ପ୍ରଦାନ କରିଛନ୍ତି, ତାହା ଲକ୍ଷ୍ୟ କରିବାର କଥା । ଏଥିରେ ଅଛି :

> ପଣ୍ଡିତ ଶ୍ରୀ ଗୋପୀନାଥ ନନ୍ଦଙ୍କ 'ଉତ୍କଳ ଅଭିଧାନ' ପ୍ରକାଶିତ ହୋଇଅଛି ବୋଲି 'ସାହିତ୍ୟ ସମ୍ବାଦରୁ' ଶୁଣି ପୁସ୍ତକ ଖଣ୍ଡିକ ଦେଖିବାପାଇଁ ଉତ୍ସୁକ ହୋଇଥିଲି । ଭାଗ୍ୟକ୍ରମରେ କାଲି ଉତ୍କଳ ସାହିତ୍ୟ ସମାଜର ସଂପାଦକଙ୍କ ନିକଟରେ ସେ ଖଣ୍ଡି ଦେଖି ବସୁ ବସୁ କେତେକ ପୃଷ୍ଠା ଓଲଟାଇ ଦେଖିଗଲି । ତହିଁରେ ମୋହର କଳ୍ପିତ ଧାରଣା ଏକାବେଳେ ଚଳିଗଲା, ଏତେକାଳରେ ଖଣ୍ଡେ ଭଲ ଅଭିଧାନ ହେବ ହେବ ବୋଲି ଯାହାକୁ ଆଶା କରୁଥିଲୁଁ, ତାହାର ଏ ଶୋଚନୀୟ ଦଶା ! ବିଜ୍ଞ ପାଠକମାନେ ଏହାକୁ ଥରେ ଦେଖିଲେ ଜାଣିପାରିବେ । ଏଥିରେ ଶବ୍ଦମାନଙ୍କର ଅର୍ଥ ବିଚିତ୍ର । ଅନେକ ସ୍ଥଳରେ ଅର୍ଥ ମଧ୍ୟ ଠିକ୍ ହୋଇ ନାହିଁ । ... ଏପରି ଭ୍ରମପ୍ରମାଦପୂର୍ଣ୍ଣ ଦୋଷ ବହୁଳ ଗ୍ରନ୍ଥ ଲାଗି

କଣ ଏତେ ଆୟୋଜନ ଏବଂ ଗବର୍ଣ୍ଣମେଣ୍ଟ ଏତେ ଅର୍ଥବ୍ୟୟ କରୁଛନ୍ତି ? ଆମ୍ଭମାନଙ୍କର ଏକାନ୍ତ ଆଶା, ସମାଜ ପକ୍ଷରୁ ଏହାର ସମାଲୋଚନା ହୋଇ ଶୁଦ୍ଧ ପରିଶିଷ୍ଟ ବାହାରିବ। ଏହା ନ ହେଲେ ଏ ପ୍ରକାର ପୁସ୍ତକ ଜନସାଧାରଣରେ ପ୍ରଚରିତ ହେବା ନିରାପଦ ନୁହେ। ଏ ପୁସ୍ତକ ଛାତ୍ରମାନଙ୍କ ହାତକୁ ଯିବାପୂର୍ବରୁ ଶିକ୍ଷା ବିଭାଗର କର୍ତ୍ତୃପକ୍ଷଙ୍କଦ୍ୱାରା ଏହାର ପରୀକ୍ଷା ସର୍ବଥା ବାଞ୍ଛନୀୟ ମନେକରୁ।'ଇତ୍ୟାଦି [୧୧]

କେବଳ ଏତିକି ନୁହେଁ, ଆଲୋଚ୍ୟ ଅଭିଧାନକୁ କେନ୍ଦ୍ର କରି ଦୀର୍ଘଦିନ ପର୍ଯ୍ୟନ୍ତ 'ଗୋଟିଏ ତୁମୁଳ ତର୍କଯୁଦ୍ଧ ଓ 'ବାଗବିତଣ୍ଡା' ଚାଲିଥିଲା। ଏଥିରେ ଫକୀରମୋହନ ସେନାପତି, ଗୋପାଳଚନ୍ଦ୍ର ପ୍ରହରାଜ, ମୃତ୍ୟୁଞ୍ଜୟ ରଥ, ପୁରୁଷୋତ୍ତମ ତର୍କାଳଙ୍କାର, ଗୋପବନ୍ଧୁ ଦାଶ, ନୀଳକଣ୍ଠ ଦାଶ, ବିଶ୍ୱନାଥ କର, ମଧୁସୂଦନ ଦାସ, ଯୋଗେଶଚନ୍ଦ୍ର ରାୟ, କୃଷ୍ଣପ୍ରସାଦ ଚୌଧୁରୀ, ଶଶିଭୂଷଣ ରାୟ, ଶଶିଭୂଷଣ ରଥ ପ୍ରମୁଖଙ୍କ ପରି ବିଶିଷ୍ଟ ସାହିତ୍ୟିକ ଜଡ଼ିତ ହୋଇପଡିଥିଲେ। ଏମାନଙ୍କ ମଧ୍ୟରୁ କେହି କେହି ପଣ୍ଡିତ ମହାଶୟଙ୍କ ପ୍ରତି ଈର୍ଷାପ୍ରଣୋଦିତ କଟୁ ମନ୍ତବ୍ୟମାନ ମଧ୍ୟ ପ୍ରକାଶ କରିଛନ୍ତି। 'ଅଯଥାବାଦୀ', 'ଅବିମୃଷ୍ୟକାରୀ', 'ଭାଷାତତ୍ତ୍ୱଜ୍ଞାନଶୂନ୍ୟ ଅଜ୍ଞଜ୍ଞତାରେ ପଣ୍ଡିତଂମନ୍ୟମାନ' 'ଜ୍ଞାନଲବ - ଦୁର୍ବିଦଗଧ'। ଆଲୋଚକମାନଙ୍କର "ଅସଙ୍ଗତ ଅସମୀଚୀନ ବୈତୃଣ୍ଡିକ ବାକଜାଲ' ତାଙ୍କୁ କିଛିସମୟ ପାଇଁ ବିବ୍ରତ କରିଥାଇପାରେ, କିନ୍ତୁ 'ନନ୍ଦେ ଆଦର୍ଶ ଦୃଢ଼କରି କ୍ରମେ ନୀତିପୀଠରେ ଦଣ୍ଡାୟମାନ ହୋଇ ପ୍ରତିବାଦଗୁଡ଼ିକର ଉତ୍ତର' ଦେଇଛନ୍ତି। ପରିଣାମରେ 'ଓଡ଼ିଆ ଶବ୍ଦ ସନ୍ଦର୍ଭ' ପରି ଗବେଷଣା - ପ୍ରସୂତ ପାଣ୍ଡିତ୍ୟପୂର୍ଣ୍ଣ ପ୍ରବନ୍ଧ ଆମେ ପାଇପାରିଛୁ। ଅବଶ୍ୟ ଏ ସଂପର୍କରେ ମଧ୍ୟ ବିରୁଦ୍ଧବାଦୀମାନେ ଯେ ସ୍ୱରଉତ୍ତୋଳନ ନ କରିଛନ୍ତି, ତା' ନୁହେ [୧୨]; କିନ୍ତୁ ନନ୍ଦଙ୍କ 'ଅଭିଧାନ' ଓ 'ଭାଷାତତ୍ତ୍ୱ' ଏ ସବୁର ଉର୍ଦ୍ଧ୍ୱରେ ରହି କାଳଜୟୀ ହୋଇପାରିଛି। ସେ ପରବର୍ତ୍ତୀ ରଚନାଗୁଡିକୁ ଅଧିକ ପ୍ରାମାଣିକ ଓ ଯୁକ୍ତି- ସମର୍ଥିତ କରିବାପାଇଁ ଇଂରେଜ ଭାଷାରେ ଲିଖିତ ଗ୍ରଂଥମାନ ଆଲୋଡ଼ନ କରିଛନ୍ତି [୧୩], ତଥ୍ୟ ଅନୁସନ୍ଧାନପାଇଁ ସୁଦୂର ମାନ୍ଦ୍ରାଜ ପର୍ଯ୍ୟନ୍ତ ଦଉଡ଼ିଛନ୍ତି। [୧୪] ବିରୋଧୀଗୋଷ୍ଠୀର ଆକ୍ରମଣ କେବଳ ନନ୍ଦଙ୍କ ପାଇଁ ନୁହେଁ, ଓଡ଼ିଆ ଭାଷା ଓ ସାହିତ୍ୟ ପାଇଁ ହୋଇଛି ପରୋକ୍ଷ ଆଶୀର୍ବାଦ।

ସେହିପରି ପଣ୍ଡିତ ମହାଶୟଙ୍କ 'ସାରଳା ମହାଭାରତ ସମାଲୋଚନା' ପ୍ରକାଶ ପାଇବା ବେଳେ ଓଡ଼ିଶାର ବହୁ ବିଜ୍ଞ ପାଠକ ତା' ବିରୋଧରେ କମ୍ ବିଷୋଦ୍‌ଗାର କରିନାହାନ୍ତି। ସେମାନଙ୍କର ଏହି ଆକ୍ରମଣରେ ବିଚଳିତ ହୋଇ ସମାଲୋଚକ ' ନିଜ ଶକ୍ତିକୁ ଫଣୀଗୁଚ୍ଛ କ୍ରମରେ କ୍ଷୀଣ - ବିକାଶ କରିବାପାଇଁ ବାଧ୍ୟ ହୋଇଛନ୍ତି; 'ପ୍ରଧାନ' ଭାଗକ୍ରୟର ବିଚାର କଥଞ୍ଚିତ ଶେଷ କରିଛନ୍ତି। ଆବଶ୍ୟକ ଭୂରି-ଭାଷଣ-ଭୂଷଣକୁ ଦୂଷଣପ୍ରାୟ' ମନେକରୁଥିବା, 'ମତ୍ସର-ପ୍ରକୃତି-କଚ୍ଚରମତି, ବହୁ ବିସ୍ତୃତ କାତର ବହୁ ପଠନ ଶ୍ରମରେ ଅସହିଷ୍ଣୁ ପାଠକ ମହାଶୟଙ୍କ କଟୁ-କଟାକ୍ଷରେ ପତିତ ନ ହେବାପାଇଁ ଉଭୟ ମହାଭାରତ ଗ୍ରନ୍ଥ ଆମୂଳାନ୍ତ ଆଲୋଡ଼ନ ଓ ପରିଶୀଳନ କରି ଯାବତ୍ ପରିମିତ ଜ୍ଞାତବ୍ୟ ସାମଗ୍ରୀ ସମ୍ପାଦନ କରି ସଞ୍ଚିତ ରଖିଥିଲେ, ସେଥିରୁ ଅନେକ ଉଦବୃତ୍ତ ରଖିବା

ପାଇଁ ବାଧ ହୋଇଛନ୍ତି। କିନ୍ତୁ ଏହା ମଧ ଓଡ଼ିଆ ସାହିତ୍ୟ ପାଇଁ ଅନ୍ୟ ଏକ ଆଶୀର୍ବାଦ ମନେହୁଏ। ସାରଳା ମହାଭାରତର ସମାଲୋଚନାର ଆଉ ଦୀର୍ଘସମୟ ବିନିଯୋଗ କରିଥିଲେ, ସେ ହୁଏତ ଆମକୁ ' ଶ୍ରୀମଦ୍ ଭାଗବତ ସମାଲୋଚନା' ଓ ' ଶ୍ରୀମତ୍ ରାମାୟଣ ସମାଲୋଚନା' ଦେବାପାଇଁ ସମର୍ଥ ହୋଇପାରି ନଥାନ୍ତେ।

ସମସ୍ତ ସାଂସରିକ ଦୁଃଖ, ଯାତନା ଓ ସମାଲୋଚନା-ରୂପ ହଳାହଳକୁ ନିର୍ବିକାର ଚିତ୍ତରେ ପାନକରି ଗୋପୀନାଥ ଓଡ଼ିଆ ଜାତିପାଇଁ ଅମୃତ ବିତରଣ କରିଯାଇଅଛନ୍ତି। ' ନାମରେ ପ୍ରୟାସ ନାହିଁ' ଅର୍ଥରେ ପିପାସା ନାହିଁ, ନିନ୍ଦାସ୍ତୁତି ପ୍ରତି ଭ୍ରୂକ୍ଷେପ ନାହିଁ। ଅନନ୍ୟ ଚିତ୍ତରେ କେବଳ ସାହିତ୍ୟ ନିମନ୍ତେ ସାହିତ୍ୟର ଅନୁଶୀଳନ ନନ୍ଦ ମହାଶୟଙ୍କ ବ୍ରତ'। ଓଡ଼ିଆ ଭାଷା ଓ ସାହିତ୍ୟର ଗୌରବ ପ୍ରତିଷ୍ଠା ତାଙ୍କର ଏକମାତ୍ର ଲକ୍ଷ୍ୟ; ଯେଉଁ ଲକ୍ଷ୍ୟସିଦ୍ଧ ପାଇଁ ସେ ବିଧି - ପ୍ରେରିତ, ସେ ଲକ୍ଷ୍ୟରେ ଉପନୀତ ହେବାପାଇଁ ତାଙ୍କର ଏକନିଷ୍ଠ ତଥା ଅବିଶ୍ରାନ୍ତ ସାଧନା ଅନନ୍ୟସାଧାରଣ ଓ ବିସ୍ମୟକର।

ତିନି

ଗୋପୀନାଥ ଯେଉଁ ମସିହାରେ ଜନ୍ମଗ୍ରହଣ କରିଥିଲେ, ସେହି ୧୮୬୯ ରେ ଦକ୍ଷିଣ ବିଛିନ୍ନାଞ୍ଚଳରେ ବାସ କରୁଥିବା ଓଡ଼ିଆମାନେ ଗଭର୍ଣ୍ଣରଙ୍କ ସମୀପକୁ ଗ୍ଭରୋଟି ବିଷୟରେ ଅଙ୍ଗୀକୃତ କରିବା ନିମିତ୍ତ ଯେଉଁ ବିନୟପତ୍ରିକା ପ୍ରେରିତ କରିଥିଲେ, ସେଥିରେ ଓଡ଼ିଆ ଭାଷାକୁ ସରକାରୀ କାର୍ଯ୍ୟାଳୟ ତଥା ଶିକ୍ଷାକ୍ଷେତ୍ରରେ ସ୍ୱୀକୃତି ଦେବାପାଇଁ ଅନୁରୋଧ କରାଯାଇଥିଲା ଏବଂ ୧୮୭୦ 'ଉତ୍କଳ ଦୀପିକା' ରେ 'ଶାସ୍ତ୍ରାନୁସାରେ ଉତ୍କଳ ଦେଶ ସମଗ୍ର ଏକତ୍ର ହୋଇ ଓଡ଼ିଶା ଜିଲ୍ଲାରେ ରହିବା ଓ ସର୍ବତ୍ର ଉତ୍କଳ ଦେଶର ଅଦାଲତରେ ଉତ୍କଳବିଦ୍ୟା ପ୍ରଚଳିତ ହେବା ନିମିତ୍ତ ଅନୁରୋଧ ଜଣାଇ ଏକ ଦୀର୍ଘ ପତ୍ର ପ୍ରକାଶ ପାଇଥିଲା।[୧୫] 'ତାହାହିଁ ବୋଧହୁଏ ଦେଶମିଶ୍ରଣ ଇତିହାସରେ ଏକ ସମ୍ମିଳିତ ସ୍ୱରର ଅଦ୍ୟ ପରିପ୍ରକାଶ; ମାତ୍ର - ଉନବିଂଶ ଶତାବ୍ଦୀରେ ଏହା ଥିଲା ଏକାନ୍ତ ଭାବେ ଅନନ୍ୟ ସାଧାରଣ'।[୧୬]

ଏହି ଉଭୟ ପତ୍ରରୁ ନିଜର ଭାଷା ଓ ସଂସ୍କୃତିକୁ ବଞ୍ଚାଇ ରଖିବାପାଇଁ ସାଂସ୍କୃତିକ ଓଡ଼ିଶାରୁ ବିଚ୍ଛିନ୍ନ ହୋଇପଡ଼ିଥିବା ଦକ୍ଷିଣଓଡ଼ିଶା ଜନସାଧାରଣଙ୍କ ବ୍ୟାକୁଳତା ଏକାନ୍ତ ପ୍ରଣିଧାନଯୋଗ୍ୟ। ନବ ପ୍ରତିଷ୍ଠିତ ବିଦ୍ୟାଳୟଗୁଡ଼ିକରେ ଇଂରେଜୀ ଓ ତେଲୁଗୁ ଭାଷା ଶିକ୍ଷା ଦିଆଯିବାପାଇଁ ମାନ୍ଦ୍ରାଜ ସରକାର ଯେଉଁ ନୀତି ପ୍ରଣୟନ କରିଥିଲେ ଏବଂ ପ୍ରାଶାସନିକ ସୁବିଧା ଦୃଷ୍ଟିରୁ ପୂର୍ବରୁ ଇଂରେଜୀ ଶିକ୍ଷାଲାଭ କରିଥିବା ତେଲୁଗୁମାନଙ୍କୁ ସରକାରୀ କାର୍ଯ୍ୟାଳୟଗୁଡ଼ିକରେ ଯେପରି ଅଗ୍ରାଧିକାର ଦେଇଥିଲେ, ତାହାରି ଫଳରେ ଏ ଅଞ୍ଚଳରୁ ଓଡ଼ିଆ ଭାଷା ଓ ସଂସ୍କୃତି ଲୋପପାଇଯିବାର ଆଶଙ୍କା ଚିନ୍ତାଶୀଳ ଓଡ଼ିଆମାନଙ୍କୁ ବିଚଳିତ କରିଥିଲା। ଫଳରେ ଆତ୍ମରକ୍ଷା ନିମିତ୍ତ ସେମାନେ ସରକାର ଓ ଓଡ଼ିଆଭାଷୀଙ୍କ ସହାନୁଭୂତି ଭିକ୍ଷା କରିବାପାଇଁ ସମ୍ମିଳିତ ଉଦ୍ୟମ ଆରମ୍ଭ କରିଥିଲେ। ୧୮୮୫ ରେ ଅପର୍ଣ୍ଣା ପଣ୍ଡାଙ୍କ ପୃଷ୍ଠପୋଷକତା ଏବଂ ଶ୍ୟାମସୁନ୍ଦର ରାଜଗୁରୁଙ୍କ ସଭାପତିତ୍ୱରେ ଗଢ଼ି ଉଠିଥିବା ପାରଳାଖେମଣ୍ଡିର 'ଉତ୍କଳ ହିତୈଷିଣୀ ସମାଜ', ବଳରାମ ମହାରଣା, ଉଇଲିୟମ ମହାନ୍ତି ପ୍ରଭୃତିଙ୍କ ଉଦ୍ୟମରେ ଏବଂ ବାବୁ ଡ଼ାନିୟଲ୍ ମହାନ୍ତିଙ୍କ ସଭାପତିତ୍ୱରେ ବ୍ରହ୍ମପୁରର

'ହିତବାଦିନୀ ସଭା' (ପରବର୍ତ୍ତୀ ସମୟରେ ନରସିଂହ ଦାସ ଏହାର ସଭାପତି ହୋଇଥିଲେ), ୧୯୦୨ ଏପ୍ରିଲ ମାସରେ ଶ୍ୟାମସୁନ୍ଦର ରାଜଗୁରୁଙ୍କ ସଭାପତିତ୍ୱରେ ବ୍ରହ୍ମପୁରଠାରେ ଆରମ୍ଭ ହୋଇଥିବା "ଗଞ୍ଜାମ ଉତ୍କଳ ସମ୍ମିଳନୀ" (ଏହାହିଁ ପରବର୍ତ୍ତୀ ସମୟରେ ଉତ୍କଳ ସମ୍ମିଳନୀରେ ପରିଣତ ହୋଇଥିଲା) ପ୍ରଭୃତି ଏହି ଉଦ୍ୟମର କେତୋଟି ଅମୃତମୟ ପରିଣତି।[୧୭] ପାରଳାଖେମଣ୍ଡି,ମଞ୍ଜୁଷା, ଧରାକୋଟ, ଖଲିକୋଟ, ସୁରଙ୍ଗୀ ପ୍ରଭୃତି ରାଜା ଓ ଜମିଦାରମାନଙ୍କର ପୃଷ୍ଠପୋଷକତା ; ଶ୍ୟାମସୁନ୍ଦର ରାଜଗୁରୁ, ଅପର୍ଣ୍ଣା ପଣ୍ଡା, ଡ଼ାନିୟଲ୍ ମହାନ୍ତି, ଉଇଲିୟମ ମହାନ୍ତି, ଜୟମଙ୍ଗଳ ରଥ, ସଦାଶିବ ବିଦ୍ୟାଭୂଷଣ, ଗଦାଧର ଚ୍ୟାଉପଟ୍ଟନାୟକ, ମହମ୍ମଦ ୟୁସୁଫ୍, ଦୟାନିଧି ଦାସ, ମଧୁସୂଦନ ପାଣିଗ୍ରାହୀ ପ୍ରମୁଖଙ୍କ ଜାତୀୟତାବୋଧ ଉନବିଂଶ ଶତାବ୍ଦୀର ଚତୁର୍ଥପାଦରୁ ସମଗ୍ର ଦକ୍ଷିଣଓଡ଼ିଶାରେ ଏକ ବଳିଷ୍ଠ ଜାତୀୟ ଜାଗରଣ ତଥା ଭାଷା ଓ ସଂସ୍କୃତି ସଚେତନତା ସୃଷ୍ଟି କରିଥିଲା।

୧୮୮୬ ବେଳକୁ ଗୋପୀନାଥ ନନ୍ଦ ସନ୍ନ୍ୟାସୀ ହେବାରେ ବିଫଳ ହୋଇ ପାରଳାଖେମଣ୍ଡି ଫେରି ଆସିବା ପରେ ସ୍କୁଲଶିକ୍ଷା ପରିତ୍ୟାଗ କରିଥିଲେ। ସେତେବେଳକୁ ସେ ତୃତୀୟ ଫର୍ମର ଛାତ୍ର, ବୟସ ମାତ୍ର ସତର। ଏ ବୟସରେ ସେ ମଧ୍ୟ ଏହି ଜାତୀୟ ଜାଗୃତିରେ ସମ୍ମିଳିତ ହେବା ସ୍ୱାଭାବିକ। ଘରେ ପିତାଙ୍କଠାରୁ ସଂସ୍କୃତ, ଆୟୁର୍ବେଦ, ଜ୍ୟୋତିଷ ଶିକ୍ଷା; ଗୃହର ଇଷ୍ଟଦେବତା ରାଧାକୃଷ୍ଣଙ୍କ ଉପାସନା, ମଠ ଓ ମନ୍ଦିରଗୁଡ଼ିକରେ ଗୌଡୀୟ ଗୋସ୍ୱାମୀମାନଙ୍କ ଲିଖିତି ଶାସ୍ତ୍ରଚର୍ଚ୍ଚା, ଶ୍ରବଣ; ପଦ୍ମନାଭ ନାରାୟଣ ଦେବଙ୍କ ଆୟୋଜିତ ସାହିତ୍ୟ ସନ୍ଧ୍ୟାରେ ଯୋଗଦାନ ଏବଂ ବନ୍ଧୁମାନଙ୍କ ସହ ଜାତୀୟ କାର୍ଯ୍ୟରେ ସହଯୋଗ ପ୍ରଭୃତି ତାଙ୍କର ଦୈନନ୍ଦିନ କାର୍ଯ୍ୟ ଥିଲା। ପ୍ରତ୍ୟେକ କାର୍ଯ୍ୟରେ ତାଙ୍କର ଆନ୍ତରିକତା ହିଁ ଏକାନ୍ତ ଲକ୍ଷଣୀୟ। ସାଧନାରେ ନିଷ୍ଠା ନ ଥିଲେ ଲକ୍ଷ୍ୟରେ ଉପନୀତ ହେବା ସହଜସାଧ୍ୟ ନୁହେ। ଗୋପୀନାଥଙ୍କ ଲିଖିତ 'ଶବ୍ଦତତ୍ତ୍ୱବୋଧ ଅଭିଧାନ' ର ବିଜ୍ଞାପନ ହିଁ ଏହାର ପ୍ରକୃଷ୍ଟ ପ୍ରମାଣ। ଉତ୍କଳ ସାହିତ୍ୟ ସମାଜର ବିଭିନ୍ନ ଅଧିବେଶନରେ ବହୁ ସିଦ୍ଧାନ୍ତ ଗ୍ରହଣ କରାଯାଇଥାଏ। କିନ୍ତୁ ତାହାକୁ କାର୍ଯ୍ୟରେ ପରିଣତ କରିବାର ପ୍ରବୃତ୍ତି ଅନ୍ୟ କାହାରି ଥିଲାପରି ମନେହୁଏ ନାହିଁ।[୧୮] ସମାଜର ବହୁ ସିଦ୍ଧାନ୍ତ ସିଦ୍ଧାନ୍ତରେ ହିଁ ରହିଯାଇଛି।

ସେହିପରି ଆନୁଷ୍ଠାନିକ ଯୋଗ୍ୟତା ନଥିଲେ ସୁଦ୍ଧା ପଣ୍ଡିତ ଗୋପୀନାଥ ୧୯୧୦ରୁ ୧୯୨୩ ପର୍ଯ୍ୟନ୍ତ ପାରଳାଖେମଣ୍ଡି ମହାବିଦ୍ୟାଳୟରେ ସଂସ୍କୃତ ଓ ଓଡ଼ିଆ ପଣ୍ଡିତ ଭାବେ ଅଧ୍ୟାପନା କରିଛନ୍ତି। ଏଥିରେ ମଧ୍ୟ ତାଙ୍କର ଐକାନ୍ତିକ ନିଷ୍ଠା ଓ ଆନ୍ତରିକତା କମ୍ ନଥିଲା। ଛାତ୍ରମାନଙ୍କ ମନରେ କେବଳ ପାଠ୍ୟ ବିଷୟବସ୍ତୁ ନୁହେଁ, ତାହା ମାଧ୍ୟମରେ ସାହିତ୍ୟପ୍ରୀତି ଜାଗ୍ରତ କରିବା ପାଇଁ ସେ କମ୍ ଅଧ୍ୟବସାୟ କରିନାହାନ୍ତି। ତାଙ୍କ ପ୍ରସ୍ତୁତ 'ରଘୁବଂଶ'ର କ୍ଲାସନୋଟ୍ ହିଁ ଏହାର ବିଲକ୍ଷଣ ନିଦର୍ଶନ।[୧୯]

## ଚାରି

ପାରଳାଖେମଣ୍ଡିର ତତ୍କାଳୀନ ସାହିତ୍ୟ-ପରିବେଶ ଓ ପରମ୍ପରା ଯୁବକ ଗୋପୀନାଥଙ୍କୁ ସାହିତ୍ୟ ସୃଷ୍ଟିପାଇଁ ଅନୁପ୍ରେରିତ କରିଛି। ୧୮୮୯ ମସିହାରୁ ସେ ଓଡ଼ିଶାର ସାରସ୍ୱତ କ୍ଷେତ୍ରରେ ଅବତୀର୍ଣ୍ଣ ହୋଇଛନ୍ତି। ପ୍ରାଥମିକ ସ୍ତରରେ ସେ ପ୍ରାଚୀନ କାବ୍ୟରୀତିକୁ ଅନୁସରଣ କରି 'ଚନ୍ଦ୍ରୋଦୟ', 'ବିରହଗୀତିକା', 'ରଥୋତ୍ସବ' ପ୍ରଭୃତି ଗୀତିକାବ୍ୟ ରଚନା

କରିଛନ୍ତି । ଇନ୍ଦ୍ରଧନୁ - ବିଜୁଳୀ ଆନ୍ଦୋଳନ କାଳରେ ଶ୍ୟାମସୁନ୍ଦର ରାଜଗୁରୁ, ପଦ୍ମନାଭଦେବ ପ୍ରଭୃତିଙ୍କ ଇନ୍ଦ୍ରଧନୁ - ପକ୍ଷପାତିତା ତାଙ୍କୁ ଏ ଦିଗରେ ଅଧିକ ପ୍ରୋତ୍ସାହିତ କରିଛି । ଫଳରେ ଭଞ୍ଜୀୟ କାବ୍ୟଶୈଳୀରେ ସେ ରଚନା କରିଛନ୍ତି ଦ୍ୱାଦଶଛାନ୍ଦ ବିଶିଷ୍ଟ କୃଷ୍ଣକାବ୍ୟ 'ପୀୟୂଷଧାରା' ।

୧୮୯୧ ରେ ରାଜମହେନ୍ଦ୍ରୀ କଲେଜରୁ ବି.ଏ. ପାଶ୍ କରି ଫେରିଥିବା ଶ୍ୟାମସୁନ୍ଦର ରାଜଗୁରୁ ପାରଳାର ସାହିତ୍ୟ-ବାତାବରଣକୁ ଏକ ନୂତନ ଦିଗ ପ୍ରଦାନ କରିଛନ୍ତି । ତାଙ୍କରି ଉଦ୍ୟମରେ ପାରଳାର ରାଜପ୍ରାସାଦ ଏବଂ ରାଧାକାନ୍ତ ମଠରେ ଦୁଇଟି ଉନ୍ନତ ପାଠାଗାର ଗଢି ଉଠିଛି । ଭାରତର ବିଭିନ୍ନ ସ୍ଥାନରେ ପ୍ରକାଶ ପାଉଥିବା ବହୁ ପୁସ୍ତକ ଓ ପତ୍ରପତ୍ରିକା ସଂଗୃହୀତ ହୋଇଛି । ଫଳରେ ପାରଳାର ଉଦୀୟମାନ ଯୁବକମାନେ ଜ୍ଞାନରାଜ୍ୟରେ ବିଭିନ୍ନ ଦିଗ ସଂପର୍କରେ ଅବହିତ ହୋଇଛନ୍ତି । ଏହି ପାଠଗାର ଏବଂ ନିଜ ସାହିରେ ରହୁଥିବା ବୟୋଜେଷ୍ଠ ଆଧୁନିକ ଶିକ୍ଷାପ୍ରାପ୍ତ ଶ୍ୟାମସୁନ୍ଦର ରାଜଗୁରୁଙ୍କ ସାହଚର୍ଯ୍ୟ ପଣ୍ଡିତ ଗୋପୀନାଥଙ୍କ ସୃଷ୍ଟିଶୀଳ ପ୍ରତିଭାକୁ ଏକ ନୂତନ ଦିଗରେ ପ୍ରବାହିତ କରିବାପାଇଁ ସୁଯୋଗ ସୃଷ୍ଟି କରିଛି ।

ପାଠାଗାରପାଇଁ ତେଲୁଗୁ ଭାଷା ଓ ତେଲୁଗୁ ଅକ୍ଷରରେ ମୁଦ୍ରିତ ବହୁ ଗ୍ରନ୍ଥ ସଂଗୃହୀତ ହୋଇଛି । ଫଳରେ ତେଲୁଗୁ ପଣ୍ଡିତ ଓ ସାହିତ୍ୟିକମାନେ ସେମାନଙ୍କ ଭାଷାର 'ଅସ୍ମିତା' ପ୍ରକ୍ଷାପନରେ ଶତମୁଖ ଉଠିଛନ୍ତି । ସେମାନଙ୍କ ଭାଷା ଓ ସାହିତ୍ୟ ସହିତ ତୁଳନା କରି ଓଡ଼ିଆ ଭାଷା ଓ ସାହିତ୍ୟର ନିକୃଷ୍ଟତା ପ୍ରତିପାଦନ କରିବା ସେମାନଙ୍କର ଲକ୍ଷ୍ୟ ହୋଇଛି ।ସେମାନଙ୍କ ତାଚ୍ଛଲ୍ୟପୂର୍ଣ୍ଣ ଅଭିଯୋଗ ଶୁଣିବା ମାତ୍ରକେ ପଣ୍ଡିତ ନନ୍ଦଙ୍କ "ହୃଦୟର ଏକ ଆଡୁ କ୍ରୋଧାଗ୍ନି ସାବହିଦ୍ୱ ରୂପେ ଧୂମାୟମାନ ହୋଇ ଉଠିଲା, ଅନ୍ୟଆଡେ ଅଭିମାନ ହୃଦୟକୁ ଅସ୍ତବ୍ୟସ୍ତ ଓ ଅବସନ୍ନ କରିପକାଇଲା" । ସେ ଅନୁଭବ କରିଛନ୍ତି ତେଲୁଗୁ ସାହିତ୍ୟିକମାନଙ୍କ ଆହ୍ୱାନର ସମ୍ମୁଖୀନ ହେବାକୁ ହେଲେ, (କ) ଓଡ଼ିଆ ଭାଷାରେ ଗଣନିୟମ ଛନ୍ଦାନୁବନ୍ଧ କବିତା ଲେଖିବାକୁ ହେବ, (ଖ) ସଂସ୍କୃତ ନାଟକାବଳୀକୁ ପ୍ରୌଢ଼ଶୈଳୀରେ ଓଡ଼ିଆରେ ଅନୁବାଦ କରିବାକୁ ହେବ, (ଗ) 'ଶବ୍ଦରତ୍ନାକରମ୍' (୧୮୮୫) ତୁଲ୍ୟ ଏକ ବିଶୁଦ୍ଧ ଓଡ଼ିଆ ଅଭିଧାନ ପ୍ରଣୟଣ କରିବାକୁ ହେବ ଏବଂ (ଘ) ସି.ପି. ବ୍ରାଉନ୍‌ଙ୍କ 'ତେଲୁଗୁ ଭାଷାର ବ୍ୟାକରଣ' (୧୮୪୦) ପରି ଓଡ଼ିଆ ଭାଷାର ଏକ ସ୍ୱତନ୍ତ୍ର ବ୍ୟାକରଣ ରଚନାକରି ଏହାର ସ୍ୱାତନ୍ତ୍ର ପ୍ରତିଷ୍ଠା କରିବାକୁ ହେବ । ପଣ୍ଡିତ ନନ୍ଦଙ୍କର ପରବର୍ତ୍ତୀ ସାହିତ୍ୟ ସାଧନା ମଧ୍ୟରେ ଏହି ଚାରୋଟି ଆଭିମୁଖ୍ୟକୁ ସ୍ପଷ୍ଟ ଉପଲବ୍ଧି କରାଯାଇପାରେ । ଏହା ସହିତ ଓଡ଼ିଆ ସାହିତ୍ୟର ଏକ ପୂର୍ଣ୍ଣାଙ୍ଗ ଇତିହାସ ରଚନାକରିବା ଥିଲା ତାଙ୍କର ଅନ୍ୟତମ ଲକ୍ଷ୍ୟ । କିନ୍ତୁ ଓଡ଼ିଆ ସାହିତ୍ୟର ଦୁର୍ଭାଗ୍ୟ, ତାଙ୍କର ଅକାଳ ବିୟୋଗ ଫଳରେ ଏହା ସଂପୂର୍ଣ୍ଣ ହୋଇପାରିଲାନାହିଁ ।

ମାତ୍ର ୫୪ ବର୍ଷ ମଧ୍ୟରେ ଗଭୀର ଅନୁସନ୍ଧିତ୍ସା, ଅଖଣ୍ଡ ଅଧ୍ୟବସାୟ, ଅସାଧାରଣ ଧୈର୍ଯ୍ୟ,ଅପୂର୍ବ ସ୍ମରଣଶକ୍ତି, ଅଗାଧ ପାଣ୍ଡିତ୍ୟ ନେଇ ସେ ଯେଉଁ ରଚନାବଳୀ ଓଡ଼ିଆ ସାହିତ୍ୟକୁ ପ୍ରଦାନ କରିଯାଇଛନ୍ତି, ତାହା ନିଶ୍ଚିତ ଭାବେ ବିସ୍ମୟକର । ତାଙ୍କର ସବୁ ଅଭିମତ ଓ ସବୁ ସିଦ୍ଧାନ୍ତ ଯେ ସଂପୂର୍ଣ୍ଣ ତ୍ରୁଟିଶୂନ୍ୟ,କହିବା ସମ୍ଭବ ନୁହେଁ; ସେ ମଧ୍ୟ ସାରସ୍ୱତ ଉଦାରତା ନେଇ ଏଗୁଡ଼ିକର ଅଧିକ ବିଚାର ଆଲୋଚନା ପାଇଁ ଅଭିଜ୍ଞ ପାଠକମାନଙ୍କୁ ଅନୁରୋଧ କରିଛନ୍ତି । କିନ୍ତୁ " ଏହି ନୂତନତ୍ୱ, ଏ ପୁରୋଦୃଷ୍ଟି, ଏ ସତସାହସ, ଏ ସାଧୁଉଦ୍ୟମ

"ବୁଝିବା ଆବଶ୍ୟକ। ସେ କେବଳ ଓଡ଼ିଆ ଭାଷାର "ଶବ୍ଦସବୁ" ନୁହେଁ, ଓଡ଼ିଆ ସାହିତ୍ୟର ବିଭିନ୍ନ ଉପାଦାନକୁ "ଫିଟାଇ ଲୋକଙ୍କ ଆଗରେ ପକାଇ ଦେଇଛନ୍ତି ମାତ୍ର"। [୨୦] ମନେହୁଏ, ନୀଳକଣ୍ଠଙ୍କ ବ୍ୟତୀତ ନନ୍ଦ ପଣ୍ଡିତଙ୍କ ସୃଷ୍ଟିର ମହତ୍ତ୍ୱ ଅବଧାରଣରେ ଅନ୍ୟ କୌଣସି ସମୀକ୍ଷକ ଏତେମାତ୍ରାରେ ସଫଳ ହୋଇପାରିନାହାନ୍ତି। ଏହି ନୀରବ ସାଧକଙ୍କ କାରୟିତ୍ରୀ ଓ ଭାବୟିତ୍ରୀ ପ୍ରତିଭାର ଯଥାର୍ଥ ଆଲୋଚନା ନିମିତ୍ତ ତାଙ୍କ ସୃଷ୍ଟି ସମ୍ଭାରର ରଚନା ଓ ପ୍ରକାଶନ ସମୟ ନିର୍ଦ୍ଧାରିତ ହେବା ସର୍ବାଦୌ ଆବଶ୍ୟକ ବୋଲି ସେସବୁର ଏକ କ୍ରମିକ ବିବରଣୀ ପ୍ରଦାନ କରିବା ପାଇଁ ଏଠାରେ ପ୍ରୟାସ କରାଯାଇଛି।

**ଗୋପୀନାଥ ନନ୍ଦଙ୍କ ରଚନାବଳୀ**

**ପଦ୍ୟାବଳୀ** :୧୯୦୭ ମସିହାରେ ପାରଳାଖେମୁଣ୍ଡି ଗଜପତି ପ୍ରେସରେ ମୁଦ୍ରିତ। ପୁସ୍ତିକାଟି ଶ୍ରୀଯୁକ୍ତ ଗୁମାଦୁର୍ଗାଧିପ ଶ୍ରୀ ସୂର୍ଯ୍ୟନାରାୟଣ ବିଷୋୟୀଙ୍କୁ ଉତ୍ସର୍ଗ କରାଯାଇଛି। ଭୂମିକାରେ ଜଣାଯାଏ ଯେ, ଏଥିରେ ସନ୍ନିବେଶିତ ତିନୋଟି ପଦ୍ୟ ୧୮୯୧ କିମ୍ବା ଏହା ପୂର୍ବର ରଚନା।

(କ) **ଚନ୍ଦ୍ରୋଦୟ** - ଏହାକୁ ଲେଖକଙ୍କ ପ୍ରଥମ ରଚନା ରୂପେ ଗ୍ରହଣ କରାଯାଇପାରେ। ରଚନା ସମୟ ୧୮୯୧ ପୂର୍ବବର୍ତ୍ତୀ।

(ଖ) **କର୍ମବିପାକ** - ଲେଖକଙ୍କ ଦ୍ୱିତୀୟ ରଚନା।୧୮୯୧ ପୂର୍ବରୁ ରଚିତ।

(ଗ) **ବିରହ ଗୀତିକା** - ୧୮୯୧

**ରଥୋତ୍ସବ** : ୧୮୯୧ ପୂର୍ବବର୍ତ୍ତୀ (ପଦ୍ୟାବଳୀର ଭୂମିକା)। ଏହା ପ୍ରକାଶ ପାଇନାହିଁ।

**ରାଧାମାଧବବିଳାସ** : ୧୮୯୧ ପୂର୍ବବର୍ତ୍ତୀ ରଚନା। ଅପ୍ରକାଶିତ।(ପଦ୍ୟାବଳୀର ଭୂମିକା)

**ପୀୟୂଷଧାରା** : ୧୯୧୪ ମସିହାରେ ଉତ୍କଳ ସାହିତ୍ୟ ପ୍ରେସ, କଟକରୁ ମୁଦ୍ରିତ । ଭଞ୍ଜୀୟ ଶୈଳୀରେ ରଚିତ ଦ୍ୱାଦଶଛାନ୍ଦବିଶିଷ୍ଟ ଏହି କାବ୍ୟଟି ପାରଳାଖେମଣ୍ଡିର ସ୍ୱନାମଧନ୍ୟ ରାଜା କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବଙ୍କ ନାମରେ ଉତ୍ସର୍ଗିତ।

**ମେଘଦୂତ** : ଖ୍ରୀ ୧୯୦୭ ରେ ଉତ୍କଳସାହିତ୍ୟ ପ୍ରେସ,କଟକରୁ ମୁଦ୍ରିତ ହୋଇ ପୁସ୍ତକାକାରରେ ପ୍ରକାଶିତ। 'ଭୂମିକା' ରେ ଲେଖକ ଏହାକୁ ୧୮୯୮ ମସିହାରେ ଅନୁବାଦ କରିଥିବା ସ୍ୱୀକାର କରିଛନ୍ତି। ଏହାର କେତେକ ଅଂଶ, ଆରମ୍ଭରୁ ଭା ୧୦/୩୮ ସଂ (ତା ୩/୬/୧୯୦୫) ଠାରୁ ଭା ୧୬/୫୧ ସଂ ( ତା ୨/୯/୧୯୦୫) ମଧ୍ୟରେ ଧାରାବାହିକ ଭାବେ ପ୍ରକାଶିତ।

**ବିହ୍ଳଣୀୟ କାବ୍ୟ** : ଖ୍ରୀ ୧୯୧୫ ରେ ଉତ୍କଳ ସାହିତ୍ୟ ପ୍ରେସରେ ମୁଦ୍ରିତ ଓ ପ୍ରକାଶିତ। ରଚନା ସମୟ ଖ୍ରୀ : ୧୯୦୦ ବୋଲି 'ବିଜ୍ଞାପନ' ରେ ଉଲ୍ଲେଖ ଅଛି। ପୁସ୍ତକଟିକୁ ଧରାକୋଟ ରାଜା ମଦନମୋହନ ସିଂହଙ୍କୁ ଉତ୍ସର୍ଗ କରାଯାଇଛି।

**ମୁକୁନ୍ଦାନନ୍ଦ ଭାଣ** : ୧୯୦୦ ମସିହାରେ ଲିଖିତ, କିନ୍ତୁ ଅପ୍ରକାଶିତ।

**ଜାନକୀପରିଣୟ** : ଖ୍ରୀ ୧୯୧୫ରେ ବିଶ୍ୱନାଥ କରଙ୍କ ଉତ୍କଳ ସାହିତ୍ୟ ପ୍ରେସରେ ମୁଦ୍ରିତ ହୋଇ ନିଜେ ଲେଖକଙ୍କଦ୍ୱାରା ପ୍ରକାଶିତ। କିନ୍ତୁ ଏହାର ରଚନା ସମୟ ଖ୍ରୀ ୧୯୦୦ ଥିବା ଲେଖକ ଗ୍ରନ୍ଥର ଭୂମିକାରେ ସ୍ୱୀକାର କରିଛନ୍ତି। ଗ୍ରନ୍ଥକୁ ପାରଳାଖେମଣ୍ଡିର ମହାରାଜା କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବଙ୍କୁ ଉତ୍ସର୍ଗ କରାଯାଇଛି।

**ଉଦ୍ଧବଦୂତ** : ଖ୍ରୀ ୧୯୦୭ ରେ ପ୍ରକାଶିତ। ଗ୍ରନ୍ଥ ଶେଷରେ ଏହାର ରଚନା ସମୟ ଖ୍ରୀ

୧୯୦୬ (ଅବଧକ୍ଷି - ନାଗ- ମହୀ ଅର୍ଥାତ ୧୮୨୭ ଶକାବ୍ଦ) ବୋଲି ଉଲ୍ଲେଖ ଥିଲେ ସୁଦ୍ଧା ମୁଖବନ୍ଧରୁ ଜଣାଯାଏ 'ଜାନକୀ ପରିଣୟ' ନାଟକ ଅନୁବାଦ ପରେ ପରେ ଏହାର ଅନୁବାଦ କାର୍ଯ୍ୟ ସଂପନ୍ନ ହୋଇଛି। ଏଥିରେ ଉଲ୍ଲେଖ ଅଛି, ମତ୍‌କର୍ତ୍ତୃକ ଅନୁବାଦିତ 'ଜାନକୀ ପରିଣୟ' ନାଟକ ଖଣ୍ଡିକରେ ପାଣ୍ଡୁଲିପି ପଢ଼ି ମୋହର ସୁହୃତ୍ ବନ୍ଧୁ ଅତ୍ରତ୍ୟ ଶ୍ରୀ ଶ୍ରୀ ଶ୍ରୀ ମହାରାଜାଙ୍କ ପୁରୋହିତ ପଣ୍ଡିତ ଶ୍ରୀ ମଧୁସୂଦନ ରାଜଗୁରୁ ମହାପାତ୍ର ମହାଶୟ ପରିତୁଷ୍ଟ ହୋଇ ଏହି **ଉଦ୍ଧବଦୂତ**ର ଉତ୍କଳାନୁବାଦ ସଂସ୍କୃତ ଛନ୍ଦରେ ଲେଖିବା ପାଇଁ ମୋତେ ସାଦରେ ଅନୁରୋଧ କରିଥିଲେ। ବନ୍ଧୁଙ୍କ ଅନୁରୋଧ ଓ ଚରିତ୍ରର ପବିତ୍ରତାରେ ହୃଦୟ ଆକୃଷ୍ଟ ହେବାରୁ ତାର କେତେକ ଦିନ ପରେ ଅନୁବାଦ ଆରମ୍ଭ କଲି।

ଏ ଦୃଷ୍ଟିରୁ 'ଉଦ୍ଧବଦୂତ' ରଚନା ସମୟ ୧୯୦୧ ମସିହା । ଗ୍ରନ୍ଥଟି ବୃହତ୍ ଦୁର୍ଗାଧିଶ୍ୱର ଶ୍ରୀମାନ୍ ମହାରାଜ ଶ୍ରୀ ଶ୍ରୀ ଶ୍ରୀ କିଶୋରଚନ୍ଦ୍ର ସିଂହଦେବ ମହୋଦୟଙ୍କ ନାମରେ ଉତ୍ସର୍ଗ କରାଯାଇଛି।

**ସୀତାବନବାସ ନାଟକ :** ୧୯୦୭ ମସିହାରେ, କଟକ ଅରୁଣୋଦୟ ପ୍ରେସରୁ, ଏନ୍. ଏନ୍.ସାହୁଙ୍କଦ୍ୱାରା ମୁଦ୍ରିତ ଓ ପ୍ରକାଶିତ। ୧୯୦୧ ମସିହାରେ ଏହାର ରଚନା ଶେଷ ହୋଇଛି। ନାଟକଟିକୁ ଲେଖକ ବଡଖେମୁଣ୍ଡିର ରାଜା ଶ୍ରୀ ଶ୍ରୀ ଶ୍ରୀ କୃପାମୟ ଅନଙ୍ଗଭୀମ କେଶରୀଦେବଙ୍କ କରକମଳରେ ଅର୍ପଣ କରିଛନ୍ତି।

**ବିକ୍ରମୋବଂଶୀୟ ନାଟକ :** ୧୯୦୧ ମସିହାରେ ରଚିତ ଏବଂ କଟକର ଅରୁଣୋଦୟ ଯନ୍ତ୍ରାଳୟରେ ମୁଦ୍ରିତ ହୋଇ ୧୯୦୮ ମସିହାରେ ପ୍ରକାଶିତ। ଏହି କ୍ରୋଟକାଖ୍ୟ ନାଟକଟିକୁ ଲେଖକ ମଞ୍ଜୁଷା ଯୁବରାଜ ଶ୍ରୀ ଶ୍ରୀନିବାସ ଦେବଙ୍କୁ ଉତ୍ସର୍ଗ କରିଛନ୍ତି।

**ରାମାଶ୍ୱମେଧ ନାଟକ :** 'ସୀତା ବନବାସ' ପରେ ପରେ ଏହାକୁ ରଚନା କରାଯାଇଥିବା ବିଷୟ ଲେଖକ ସୂଚୀତ କରିଥିବା ଯୋଗୁଁ, ଏହାର ରଚନାସମୟ ଖ୍ରୀ ୧୯୦୨ । ୧୯୧୩ ମସିହାରେଏହା ଉତ୍କଳ ସାହିତ୍ୟ ପ୍ରେସରେ ମୁଦ୍ରିତ । ନାଟକଟିକୁ ଲେଖକ ପାରଳାଖେମୁଣ୍ଡିର ମହାରାଜା କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବଙ୍କ କରକମଳରେ ସମର୍ପଣ କରିଛନ୍ତି।

**ଶବ୍ଦତତ୍ତ୍ୱବୋଧ ଅଭିଧାନ :** ଏହାର ସଂକଳନ କାର୍ଯ୍ୟ ୧୮୯୭ ମସିହାରୁ ଆରମ୍ଭ ହୋଇ ୧୯୦୩ ମସିହାରେ ଶେଷ ହୋଇଥିବା ଧରାକୋଟର ତତ୍କାଳୀନ ରାଜା ଶ୍ରୀ ମଦନମୋହନ ସିଂହ ଦେବଙ୍କ ଲିଖିତ ପ୍ରଥମ ସଂସ୍କରଣର ଭୂମିକା ( ତା ୩୦/୧/୧୯୧୫) ରୁ ଜଣାଯାଏ। ଅଭିଧାନଟି ବହୁ ବାଧାବିଘ୍ନ ଅତିକ୍ରମ କରି ଖ୍ରୀ : ୧୯୧୬ ରେ ପ୍ରକାଶିତ। 'ଉତ୍କଳ ସାହିତ୍ୟ' ପତ୍ରିକାର ଭା ୧୯/୪ ସଂଖ୍ୟାରେ (ଜୁଲାଇ, ୧୯୧୫) ଏହାର ମୁଦ୍ରଣ କାର୍ଯ୍ୟ ଶୀଘ୍ର ଆରମ୍ଭ ହେଉଥିବା ବିଷୟରେ ସୂଚନା ଦିଆଯାଇଛି ଏବଂ ସେହି ଭାଗର ୧୦ମ ସଂଖ୍ୟାରେ (ଜାନୁୟାରୀ, ୧୯୧୬) ଏହାର ମୁଦ୍ରଣ ଶେଷ ଓ ୧୧ଶ ସଂଖ୍ୟାରେ ( ଫେବୃୟାରୀ, ୧୯୧୬) ଏହା ପ୍ରକାଶିତ ହୋଇଥିବା ଘୋଷଣା କରାଯାଇଛି।

**ଦ୍ରୌପଦୀ ବସ୍ତ୍ରହରଣ ନାଟକ :** ୧୯୦୫ ମସିହାରେ ପ୍ରଣୀତ, ପାରଳାଖେମୁଣ୍ଡି ଗଜପତି ପ୍ରେସରେ ମୁଦ୍ରିତ ଓ ୧୯୦୮ ରେ ପ୍ରକାଶିତ। ଚିକିଟିର ନାଟ୍ୟପ୍ରେମୀ ରାଜା ଶ୍ରୀ ଶ୍ରୀ ରାଧାମୋହନ ରାଜେନ୍ଦ୍ରଦେବଙ୍କୁ ଏହି ନାଟକଟି ସମର୍ପଣ କରାଯାଇଛି।

**ଗଣନିୟମ କବିତା** (ପ୍ରବନ୍ଧ): ଉତ୍କଳ ସାହିତ୍ୟ : ଭା ୯/୭ ସଂ
(କାର୍ତ୍ତିକ, ୧୩୧୩ = ଅକ୍ଟୋବର,୧୯୦୫)

**ଜାନକୀ ପରିଣୟ ନାଟକ (ପ୍ରବନ୍ଧ)** : ଉତ୍କଳ ସାହିତ୍ୟ ଭା ୯/୯-୧୦ ସଂ(ପୌଷ ଓ ମାଘ, ୧୩୧୩ = ଡ଼ିସେମ୍ବର ୧୯୦୫- ଜାନୁୟାରୀ ୧୯୦୬)
**ଓଡ଼ିଆ ତଦ୍ଧିତ** : ଉତ୍କଳ ସାହିତ୍ୟ : ଭା ୯ / ୧୧- ୧୨ ସଂ (ଫାଲଗୁନ, ଚୈତ୍ର ୧୩୧୩ = ଫେବୃୟାରୀ - ମାର୍ଚ୍ଚ, ୧୯୦୬)
**ଓଡ଼ିଆ କୃଦନ୍ତ** : ଉତ୍କଳ ସାହିତ୍ୟ : ଭା ୧୦/ ୩-୪ ଓ ୫ ( ଆଷାଢ଼ - ଶ୍ରାବଣ ଓ ଭାଦ୍ର ୧୩୧୩ = ଜୁନ୍, ଜୁଲାଇ ଓ ଅଗଷ୍ଟ, ୧୯୦୬)
**ଓଡ଼ିଆ କୃଦନ୍ତରେ ଅସମାପିକା କ୍ରିୟା** : ଉତ୍କଳ ସାହିତ୍ୟ : ଭା ୧୦ / ୬-୭ ସଂ (ଆଶ୍ୱିନ - କାର୍ତ୍ତିକ,୧୩୧୪ = ସେପଟେମ୍ବର - ଅକ୍ଟୋବର, ୧୯୦୬)
**ଓଡ଼ିଆ ସମାସ** : ଉତ୍କଳ ସାହିତ୍ୟ : ଭା ୧୦/୮, ୯-୧୦ (ମାର୍ଗଶିର,ପୌଷ - ମାଘ, ୧୩୧୪ = ନଭେମ୍ବର - ଡ଼ିସମ୍ବର, ୧୯୦୬,ଜାନୁୟାରୀ, ୧୯୦୭)
**ଓଡ଼ିଆ ଧାତୁତତ୍ତ୍ୱ ବିଚାର** : ମୁକୁର : ଭା ୧/୮ (ମାର୍ଗଶିର ୧୩୧୪ = ନଭେମ୍ବର, ୧୯୦୭) ରୁ ଆରମ୍ଭ ହୋଇ ଭା ୪/୧୧- ୧୨ (ଫାଲଗୁନ ଚୈତ୍ର ୧୩୧୪ ମାର୍ଚ୍ଚ, ୧୯୧୦) ପର୍ଯ୍ୟନ୍ତ ଧାରାବାହିକ ପ୍ରକାଶିତ।
**ଓଡ଼ିଆ ଲିଙ୍ଗାନୁଶାସନ** : ଉତ୍କଳ ସାହିତ୍ୟ, ଭା ୧୦/୧୧, ୧୨ ସଂ (ଫାଲଗୁନ, ଚୈତ୍ର, ୧୩୧୪-ଫେବୃୟାରୀ, ମାର୍ଚ୍ଚ, ୧୯୦୭)
**ଓଡ଼ିଆ ବଚନ ନିର୍ଣ୍ଣୟ** : ଉତ୍କଳ ସାହିତ୍ୟ, ଭା ୧୧/୧-୨ (ବୈଶାଖ-ଜ୍ୟେଷ୍ଠ, ୧୩-୧୪= ଏପ୍ରିଲ, ମେ ୧୯୦୭)
**ଓଡ଼ିଆ ଶବ୍ଦ ବିଭକ୍ତି ପ୍ରତ୍ୟୟ** : ଉତ୍କଳ ସାହିତ୍ୟ, ଭା ୧୧/୩-୪, ୫-୬, ୮-୯, ୧୦ (ଆଷାଢ଼-ଶ୍ରାବଣ, ୧୩-୧୪; ଭାଦ୍ର-ଆଶ୍ୱିନ, ମାର୍ଗଶିର-ପୌଷ, ମାଘ, ୧୩-୧୫ = ଜୁନ୍-ଜୁଲାଇ, ଅଗଷ୍ଟ-ସେପ୍ଟେମ୍ବର, ନଭେମ୍ବର-ଡିସେମ୍ବର,୧୯୦୭, ଜାନୁୟାରୀ, ୧୯୦୮)
**ଓଡ଼ିଆ ସର୍ବନାମ** : ଉତ୍କଳ ସାହିତ୍ୟ, ଭା ୧୧/୧୧-୧୨ (ଫାଲଗୁନ - ଚୈତ୍ର), ୧୩୧୫ (ଫେବୃଆରୀ/ମାର୍ଚ୍ଚ-୧୯୦୮), ଭା ୧୨/୧-୨ (ବୈଶାଖ-ଜ୍ୟେଷ୍ଠ, ୧୩୧୫, ଏପ୍ରିଲ-ମେ ୧୯୦୮)
**ଓଡ଼ିଆରେ ଯୁଷ୍ମଦ୍ ଅସ୍ମଦ୍ ପ୍ରକ୍ରିୟା** : ଉତ୍କଳ ସାହିତ୍ୟ, ଭା ୧୨/୩-୪, (ଆଷାଢ଼-ଶ୍ରାବଣ, ୧୩-୧୫= ଜୁନ୍-ଜୁଲାଇ, ୧୯୦୮)
**ଓଡ଼ିଆ ବିଭକ୍ତ୍ୟର୍ଥ ଓ କାରକ** : ଉତ୍କଳ ସାହିତ୍ୟ, ଭା ୧୨/୫-୬,୭-.୯-୧୦ (ଭାଦ୍ର-ଆଶ୍ୱିନ, କାର୍ତ୍ତିକ-ମାର୍ଗଶିର, ପୌଷ-ମାଘ, ୧୩୧୬, ଅଗଷ୍ଟ-ସେପ୍ଟେମ୍ବର, ଅକ୍ଟୋବର-ନଭେମ୍ବର, ଡିସମ୍ବର, ୧୯୦୮ ଓ ଜାନୁୟାରୀ ୧୯୦୯)
**ଓଡ଼ିଆ ଅବ୍ୟୟ ପ୍ରକରଣ** : ଉତ୍କଳ ସାହିତ୍ୟ, ଭା ୧୨/୧୧-୧୨; ଭା ୧୩/୧-୨, ୩-୪-୫ (ଫାଲ୍‌ଗୁନ-ଚୈତ୍ର, ବୈଶାଖ-ଜ୍ୟେଷ୍ଠ, ଆଷାଢ଼-ଶ୍ରାବଣ-ଭାଦ୍ର, ୧୩୧୬ = ଫେବୃଆରୀ-ମାର୍ଚ୍ଚ, ଏପ୍ରିଲ-ମେ, ଜୁନ୍-ଜୁଲାଇ-ଅଗଷ୍ଟ, ୧୯୦୯)
**ସାରଳା ମହାଭାରତର ସମାଲୋଚନା (ଶ୍ରୀ ଭାରତ ଦର୍ପଣ)** : ଉତ୍କଳ ସାହିତ୍ୟ, ଭା ୧୫/୧-୨, ୩, ୪-୫, ୬-୭, ୮-୯-୧୦, ୧୧-୧୨, ଭା ୧୬/୧-୨, ୩-୪, ୫-୬, ୭-୮, ୧୧-୧୨, ଭା ୧୭/୧-୨,୩-.୫, ୯-୧୦, ୧୧, ୧୨, ଭା

୧୮/୧, ୨, ୩, ୪-୫, ୬, ୭, ୮, ୯, ୧୧, ୧୨, ଭା ୧୯/୧, ୨-୩, ୪, (ବୈଶାଖୀ, ଜ୍ୟେଷ୍ଠ, ୧୩୧୮=ଏପ୍ରିଲ-ମେ, ୧୯୧୧ ଠାରୁ ଶ୍ରାବଣ, ୧୩୨୨ = ଜୁଲାଇ, ୧୯୧୫ ପର୍ଯ୍ୟନ୍ତ ୩୦ ଟି ସଂଖ୍ୟାରେ ପ୍ରକାଶିତ)।

(ଏହି ପ୍ରବନ୍ଧଗୁଡ଼ିକ ପଣ୍ଡିତ ଗୋପୀନାଥ ନନ୍ଦଶର୍ମାଙ୍କ ଦେହାନ୍ତ ପରେ ଅନୁଜ ବଳଭଦ୍ର ନନ୍ଦଶର୍ମାଙ୍କଦ୍ୱାରା ସଙ୍କଳିତ ହୋଇ ୧୯୨୮ ମସିହାରେ 'ଶ୍ରୀ ଭାରତ ଦର୍ପଣ' ନାମରେ ପ୍ରକାଶିତ । କିନ୍ତୁ ଏହାର ରଚନା ୧୯୦୯ ଜୁନ୍ ମାସ ବେଳକୁ ଶେଷ ହୋଇ ହୋଇଥିବା ପଣ୍ଡିତ ମହାଶୟ ପ୍ରଦାନ କରିଥିବା ପାଦଟୀକାରୁ ଜଣାଯାଏ। ସେ ଲେଖିଛନ୍ତି, ' ବିଗତ ବର୍ଷ ଜୁନ୍ ମାସରେ ଉତ୍କଳ ସାହିତ୍ୟ ପତ୍ରିକାର ସମ୍ପାଦକ ପଣ୍ଡିତବର ଶ୍ରୀ ବିଶ୍ୱନାଥ କର ମହୋଦୟଙ୍କୁ ଏହି ପ୍ରବନ୍ଧର ସମଗ୍ର କାଗଜମାନ ଦେଖିବାପାଇଁ ପ୍ରାର୍ଥନା ପୂର୍ବକ ଦିଆଯାଇଥିଲା। ଶଂସିତ ମହାଶୟ କାଗଜଗୁଡ଼ିକ ଦେଖି ପ୍ରକାଶ କରିବାପାଇଁ ଆଦେଶ କରିଥିଲେ। ମାତ୍ର ଶରୀରର ଅସ୍ୱାସ୍ଥ୍ୟ ଏବଂ ଅନ୍ୟାନ୍ୟ କାର୍ଯ୍ୟବଶତଃ ସମୁଚିତ ସମୟ ନ ପାଇ ଆଜିଯାଏ ପ୍ରକାଶ କରିପାରି ନଥିଲୁଁ।)

**ଓଡ଼ିଆ ବର୍ଣ୍ଣ ଓ ସନ୍ଧି ନିର୍ଣ୍ଣୟ** : ଉତ୍କଳ ସାହିତ୍ୟ , ଭା ୧୩/୬-୭-୮, ୧୧-୧୨ ଓ ଭା ୧୪ / ୧-୨-୩ (ଆଶ୍ୱିନ- କାର୍ତ୍ତିକ -ମାର୍ଗଶୀର,ଫାଲଗୁନ - ଚୈତ୍ର, ବୈଶାଖ - ଜ୍ୟେଷ୍ଠ,ଆଷାଢ଼, ୧୩୧୭ = ସେପଟେମ୍ବର - ଅକ୍ଟୋବର - ନଭେମ୍ବର, ୧୯୦୯ ଓ ଫେବୃୟାରୀ - ମାର୍ଚ୍ଚ, ଏପ୍ରିଲ -ମେ-ଜୁନ ୧୯୧୦)

**ତ୍ରୈଲଙ୍ଗ୍ୟ ଭୋଜ ଓ ତ୍ରୈଲଙ୍ଗ ସାହିତ୍ୟ (ପ୍ରବନ୍ଧ)** : ଉତ୍କଳ ସାହିତ୍ୟ, ଭା ୧୪/ ୧-୨-୩ (ବୈଶାଖ - ଜ୍ୟେଷ୍ଠ- ଆଷାଢ଼ ୧୩୧୭= ଏପ୍ରିଲ୍ - ମେ- ଜୁନ୍, ୧୯୧୦)

**ସତୀ (ପ୍ରବନ୍ଧ)** : ମୁକୁର : ଭା ୫/୧ ( ବୈଶାଖ, ୧୩୧୭ = ଏପ୍ରିଲ୍ ୧୯୧୦)

**ଲକ୍ଷ୍ମୀ ସମାଯୋଗ** (ପ୍ରବନ୍ଧ) : ଉତ୍କଳ ସାହିତ୍ୟ, ଭା ୧୪/ ୪-୫ (ଶ୍ରାବଣ - ଭାଦ୍ର, ୧୩୧୭= ଜୁଲାଇ -ଆଗଷ୍ଟ, ୧୯୧୦)

**ଓଡ଼ିଆରେ ବିଶେଷଣ ବିଧି** : ଉତ୍କଳ ସାହିତ୍ୟ, ଭା ୧୪/୬,୧୧ ସଂ

( ଆଶ୍ୱିନ, ଫାଲଗୁନ, ୧୩୧୮ = ସେପଟେମ୍ବର, ୧୯୧୦; ଫେବୃୟାରୀ,୧୯୧୧)

**ମତ୍ସ୍ୟେନ୍ଦ୍ରନାଥ ଓ ଗୋରକ୍ଷନାଥ** (ପୂର୍ବ ପ୍ରକାଶିତ ଉତ୍ତାରୁ): ସମ୍ବଲପୁର ହିତୈଷିଣୀ ଭା ୨୪/୨୨ ସଂ (କ୍ରୋଡ଼ପତ୍ର), ତା ୨୨-୩-୧୯୧୩। ଏହାର ପ୍ରଥମାଂଶ ଆମର ହସ୍ତଗତ ହୋଇପାରିନାହିଁ।

**ଉନ୍ମତ୍ତରାଘବ ନାଟକ** : ଖ୍ରୀ ୧୯୧୫ରେ ଏହା ବିଶ୍ୱନାଥ କରଙ୍କଦ୍ୱାରା ଉତ୍କଳ ସାହିତ୍ୟ ପ୍ରେସରେ ମୁଦ୍ରିତ। ଉତ୍ସର୍ଗ ପତ୍ରରୁ ଏହା ୧୯୧୪ ମସିହାରେ ରଚିତ ହୋଇଥିବା ଜଣାଯାଏ। ଏହା ପାରଳାଖେମଣ୍ଡିର ରାଣୀ ମହୋଦୟାଙ୍କ କରକମଳରେ ସମର୍ପିତ।

**ଓଡ଼ିଆ ଶବ୍ଦସନ୍ଦର୍ଭ** : ସତ୍ୟବାଦୀ : ଖ ୨/୮-୧୨ (କନ୍ୟା -ମକର= ସେପଟେମ୍ବର, ୧୯୧୭ ଜାନୁୟାରୀ,୧୯୧୮) ସଂଖ୍ୟାଠାରୁ ଆରମ୍ଭ ହୋଇ ୫/ ୧୧- ୧୨ (କୁମ୍ଭ - ମୀନ, ୧୩୨୬ = ଫେବୃୟାରୀ - ମାର୍ଚ୍ଚ ୧୯୨୦) ପର୍ଯ୍ୟନ୍ତ ବିକ୍ଷିପ୍ତ ଭାବେ ପ୍ରକାଶିତ।

**ଶ୍ରୀମତ୍ ଭାଗବତ ସମାଲୋଚନା** : ସତ୍ୟବାଦୀ : ଖ ୪/୬-୭, ୮-୧୨; ଖ ୫/୧-୨

୩-୪, ୬-୭, ୧୧-୧୨; ଖ ୬/୩,.୫ (କନ୍ୟା -ତୁଳା, ବିଛା ଠାରୁ ମୀନ, ମେଷ - ବୃଷ,ମିଥୁନ-କର୍କଟ, ୧୩୨୫, କନ୍ୟା - ତୁଳା, କୁମ୍ଭ - ମୀନ, ୧୩୨୬; କୁମ୍ଭ, ମୀନ,ମେଷ, ୧୩୨୮ = ସେପଟେମ୍ବର,ଅକ୍ଟୋବର, ନଭେମ୍ବର ୧୯୧୮; ଫେବୃୟାରୀ - ମାର୍ଚ୍ଚ, ୧୯୧୯ ଫେବୃୟାରୀ, ମାର୍ଚ୍ଚ-ଏପ୍ରିଲ ୧୯୨୧)

ଏହାର ଆରମ୍ଭରେ ଏକ ଉତ୍ସର୍ଗପତ୍ର ସଂଯୋଜିତ। ଏଥିରେ ଉଲ୍ଲେଖ ଅଛି, 'ଗଞ୍ଜାମ ଓଡ଼ିଆମାନଙ୍କ ପ୍ରତି ଆନ୍ତରିକ ସହାନୁଭୂତି ନିମନ୍ତେ ଏହି ପୁସ୍ତକ ଖଣ୍ଡିକ ଗଞ୍ଜାମ ଜିଲ୍ଲା କଲେକ୍ଟର ଶ୍ରୀମାନ୍ ସି.ବି. କଟରାଲ ଏସକ୍ୱେର ସି. ଆଇ. ଇ; ଆଇ. ସି.ଏସ୍ ମହୋଦୟଙ୍କ ନାମରେ ତାଙ୍କ ବିନୀତ ସେବକ ଓ ଗୁଣାନୁବାଦକ ଗ୍ରନ୍ଥକାରଦ୍ୱାରା ଉତ୍ସୃଷ୍ଟ ହେଲା।' ଏଥିରୁ ଜଣାଯାଉଛି ଯେ ପଣ୍ଡିତ ମହାଶୟ **ଶ୍ରୀମତ୍ ଭାଗବତର ସମାଲୋଚନା** ଶେଷକରି ପୁସ୍ତକାକାରରେ 'ସତ୍ୟବାଦୀ' ପତ୍ରିକାର ସମ୍ପାଦକଙ୍କ ନିକଟକୁ ପ୍ରେରଣ କରିଥିଲେ। ଏହାପରେ 'ଶ୍ରୀମତ୍ ରାମାୟଣ ସମାଲୋଚନା' ପ୍ରକାଶ ପାଇଥିବାରୁ ଆଲୋଚ୍ୟ ପୁସ୍ତକଟି ସଂପୂର୍ଣ୍ଣ ରୂପେ ଲିଖିତ ହୋଇଥିବା ନିଶ୍ଚିତ।

**କୁମାରବିଜୟ** : ଶଶିଭୂଷଣ ରଥଙ୍କଦ୍ୱାରା ସମ୍ପାଦିତ, ପ୍ରଦୀପ : ଭା ୧/୧ ଠାରୁ ୧୨, ଭା ୨/୨, ୯,୧୦, ୧୧(ଆଶ୍ୱିନ ଠାରୁ ଭାଦ୍ରବ, ୧୩୨୫ -୨୬; କାର୍ତ୍ତିକ, ଜ୍ୟେଷ୍ଠ, ଆଷାଢ଼, ଶ୍ରାବଣ, ୧୩୨୬ = ଅକ୍ଟୋବର, ୧୯୧୮ ଠାରୁ ସେପଟେମ୍ବର ୧୯୧୯; ନଭେମ୍ବର ୧୯୧୯; ଜୁନ୍-ଜୁଲାଇ-ଅଗଷ୍ଟ-୧୯୨୦)

**ବାଳ ରାମାୟଣ** :ପ୍ରଦୀପ : ଭା ୨/୧, ୩ (ଆଶ୍ୱିନ, ମାର୍ଗଶୀର, ୧୩୨୬ - ଅକ୍ଟୋବର, ଡ଼ିସମ୍ବର, ୧୯୧୯।

**ରଘୁବଂଶ ବିଗ୍ରହ** : ପ୍ରଦୀପ ଭା ୨/୫, ୬,୭,.୧୦ ( ମାଘଠାରୁ ଚୈତ୍ର, ଜ୍ୟେଷ୍ଠ, ଆଷାଢ଼, ୧୩୨୬ = ଜାନୁୟାରୀ ଠାରୁ ମାର୍ଚ୍ଚ, ମେ, ଜୁନ୍ ୧୯୧୯।

**ଶ୍ରୀମତ୍ ରାମାୟଣ ସମାଲୋଚନା** : ମୁକୁର : ଭା ୧୮/୨, ୩, ୪, ୫, ୬, ୯-୧୦(ବୈଶାଖ, ଜ୍ୟେଷ୍ଠ, ଆଷାଢ଼,ଶ୍ରାବଣ, ଭାଦ୍ର ୧୩୩୦, (ଏହାପରେ ବି ୧୩୩୦ ରେ ଅଛି) ମାର୍ଗଶୀର - ପୌଷ ୧୩୩୧ = ଏପ୍ରିଲ୍ ଠାରୁ ଅଗଷ୍ଟ, ନଭମ୍ବର - ଡ଼ିସମ୍ବର ୧୯୨୩) ଏବଂ କୋଣାର୍କ ଭା ୧/୧,୩ (ସେପଟେମ୍ବର,୧୯୫୮; ମାର୍ଚ୍ଚ, ୧୯୫୯) ଭା ୨/୩-୪ (୧୯୬୧)।

**ପ୍ରାନ୍ତଟୀକା**

୧. "ଗତ ସପ୍ତାହରେ କଟକ ଷ୍ଟାରରେ ବାବୁ ଉମାଚରଣ ହାଲଦାର ଖଣ୍ଡିଏ ସୁଦୀର୍ଘ ପତ୍ରିକା ପ୍ରକାଶ କରାଇ ଅଛନ୍ତି। ବଙ୍ଗଳା ଅକ୍ଷରରେ ଉତ୍କଳ ଭାଷା ପୁସ୍ତକ ଓ ସମ୍ବାଦପତ୍ରାଦି ମୁଦ୍ରିତ ହେବା ସେଥିର ତାତ୍ପର୍ଯ୍ୟ ଅଟଇ"। - **ଉତ୍କଳ ଦୀପିକା** : ତା.୧୦.୭.୧୮୬୯

୨. **ଉତ୍କଳ ଦୀପିକା** : ତା ୨୪.୭.୧୮୬୯

୩. ତତ୍ରୈବ : ତା ୭.୮.୧୮୬୯

୪. ତତ୍ରୈବ : ତା ୧୪.୮.୧୮୬୯

୫. ସାମନ୍ତରାୟ, ନଟବର : **ଓଡ଼ିଆ ସାହିତ୍ୟର ଇତିହାସ** (୧୮୦୩-୧୯୨୦),

୧୯୬୪, ପୃଷ୍ଠା - ୨୩୭
୬. ସିଂହଦେବ, ମଦନମୋହନ, ୧୯୬୨ : **ଶବ୍ଦତତ୍ତ୍ୱବୋଧ ଅଭିଧାନ**; ପ୍ରଥମ ସଂସ୍କରଣର ଭୂମିକା, ବ୍ରହ୍ମପୁର, ନିଉ ଷ୍ଟୁଡେଣ୍ଟେସ ଷ୍ଟୋରସ୍ - ପୃଷ୍ଠା - ୧୧ପଣ
୭. ଦାସ, ନୀଳକଣ୍ଠ, ୧୯୨୭ : **ଓଡ଼ିଆ ଭାଷାତତ୍ତ୍ୱ**, ଗ୍ରନ୍ଥ ପ୍ରବେଶ-ବଳଭଦ୍ର ନନ୍ଦ ଶର୍ମା, ପୃଷ୍ଠା -୬
୮. କର, ବିଶ୍ୱନାଥ (ସଂ) : **ଉତ୍କଳ ସାହିତ୍ୟ** -ଭା ୨୭/୧୨ ସଂ, ଶୋକ ସମ୍ବାଦ ପୃଷ୍ଠା -୪୬୧
୯. ପ୍ରହରାଜ, ଗୋପାଳ ଚନ୍ଦ୍ର, **ଭାଗବତ ଟୁଙ୍ଗିରେ ସଂଧ୍ୟା**, ଅନ୍ତର୍ଭୁକ୍ତ, ଉତ୍କଳ ସାହିତ୍ୟ, ଭା ୪/୭-୮
୧୦. ସିଂହଦେବ, ମଦନମୋହ, **ଶବ୍ଦତତ୍ତ୍ୱବୋଧ ଅଭିଧାନ**ର ଭୂମିକା
୧୧. **ଉତ୍କଳ ଦୀପିକା** : ଭା ୫୧/୧୫, ତା ୮-୪-୧୯୧୬
୧୨. ତର୍କାଅଂଳକାର, ପୁରୁଷୋତ୍ତମ : **ଓଡ଼ିଆ ଶବ୍ଦ ସନ୍ଦର୍ଭ ଆଲୋଚନା**, ଉତ୍କଳ ସାହିତ୍ୟ, ଭା ୨୧/୮ମ
୧୩. ନନ୍ଦ, ଗୋପୀନାଥ,୧୯୨୭ : **ଓଡ଼ିଆ ଭାଷାତତ୍ତ୍ୱ**, ପୃଷ୍ଠା-୧୫୨
୧୪. ତତ୍ରୈବ, ପୃଷ୍ଠା - ୧୪୫, ପାଦଟୀକା
୧୫. ସାମନ୍ତରାୟ, ନଟବର, ୧୯୬୪, **ଆଧୁନିକ ଓଡ଼ିଆ ସାହିତ୍ୟ ବିକାଶର ପୃଷ୍ଠଭୂମି**, ପୃଷ୍ଠା -୧୫୨-୧୫୮
୧୬. ତତ୍ରୈବ : ପୃଷ୍ଠା - ୧୩୯
୧୭. ପଣ୍ଡା, ଅପର୍ଣ୍ଣା, **ନବଗଞ୍ଜାମ** (୧ମ, ୧୯୦୭), ପୃଷ୍ଠା -୧୫-୨୪
୧୮. ନନ୍ଦ, ଗୋପୀନାଥ,୧୯୨୭: **ଶବ୍ଦତତ୍ତ୍ୱବୋଧ ଅଭିଧାନ**, ପୃଷ୍ଠା-୭
୧୯. ଆଚାର୍ଯ୍ୟ, ସୁଦର୍ଶନ, ୧୯୭୨, ପ ।।ପୀନାଥ ନନ୍ଦଙ୍କ କ୍ଲାସନୋଟ୍, ଅନ୍ତର୍ଭୁକ୍ତ ସ୍ରଷ୍ଟା ଓ ସୃଷ୍ଟି (୧ମ)
୨୦. ଦାସ, ନୀଳକଣ୍ଠ, ୧୯୨୭ : **ଓଡ଼ିଆ ଭାଷାତତ୍ତ୍ୱର ଗ୍ରନ୍ଥ ପ୍ରବେଶ**



୨୬ ଡିସେମ୍ବର, ୧୯୭୫-୦୧ ଜୁଲାଇ, ୧୯୨୮

## ସମାଲୋଚକ ନନ୍ଦକିଶୋର

ଅନନ୍ତଚରଣ ଶୁକ୍ଳ

## ଏକ

ନନ୍ଦକିଶୋର ମୁଖ୍ୟତଃ କବି ହେଲେ ହେଁ ଓଡ଼ିଆ ସମାଲୋଚନା ସାହିତ୍ୟରେ ଏକ ବିଶିଷ୍ଟ ସ୍ଥାନ ଦାବୀ କରନ୍ତି । ' ଉତ୍କଳ ସାହିତ୍ୟ' ତଥା ରାଧାନାଥ ଓ ମଧୁସୂଦନଙ୍କ କାବ୍ୟ କବିତାର ସଂକ୍ଷିପ୍ତ ଆଲୋଚନା ଏବଂ ଗୋଟିଏ ଦୁଇଟି ଚିଠିରୁ ତାଙ୍କର ସମାଲୋଚନା ପ୍ରତିଭା (critical genius) ସମ୍ବନ୍ଧରେ ସ୍ପଷ୍ଟ ଧାରଣା ହୁଏ । ଭାରତୀୟ ଆଳଙ୍କାରିକମାନଙ୍କ ସହିତ ତାଙ୍କର ପରିଚୟ ସମ୍ୟକ ନୁହେଁ । ତାଙ୍କର ଆଲୋଚନା ପଦ୍ଧତି ମୁଖ୍ୟତଃ ଇଂରାଜୀ ସମାଲୋଚନାଦ୍ୱାରା ପ୍ରଭାବିତ - ଏ କଥା ନନ୍ଦକିଶୋର ସ୍ୱୟଂ ସ୍ୱୀକାର କରିଥିଲେ ହେଁ ସଂସ୍କୃତ ସାହିତ୍ୟ ଓ ଅଳଙ୍କାର ସହିତ ତାଙ୍କର ଅବଶ୍ୟକୀୟ ପରିଚୟ ଥିଲା ବୋଲି ନିଃସନ୍ଦେହରେ କୁହାଯାଇପାରେ । ପାଶ୍ଚାତ୍ୟ ସମାଲୋଚନା ପଦ୍ଧତି ସହିତ ସଂସ୍କୃତ ସାହିତ୍ୟର ମୂଲ୍ୟବୋଧ ସଂଯୋଜନାଦ୍ୱାରା ଓଡ଼ିଆ କାବ୍ୟ କବିତାର ମୂଲ୍ୟାୟନ କ୍ଷେତ୍ରରେ ପ୍ରାଥମିକ ସୂରୀମାନଙ୍କ ମଧ୍ୟରୁ ସେ ଅନ୍ୟତମ । କେବଳ ଫକୀରମୋହନଙ୍କୁ ଛାଡ଼ିଦେଲେ ତାଙ୍କର ପୂର୍ବବର୍ତ୍ତୀ ବା ସମସାମୟିକ ଗଦ୍ୟଲେଖକମାନଙ୍କ ମଧ୍ୟରୁ କେହି ତାଙ୍କର ଗଦ୍ୟ ଶୈଳୀର ସମକକ୍ଷ ବୋଲି ମନେହୁଏ ନାହିଁ ।ପୁଣି ପାଶ୍ଚାତ୍ୟ ସାହିତ୍ୟର ସୃଜନାତ୍ମକ ଓ ସମାଲୋଚନାତ୍ମକ ସାହିତ୍ୟ ସହିତ ସଂସ୍କୃତ ଓ ଓଡ଼ିଆ ସାହିତ୍ୟର ବ୍ୟାପକ ଅଧ୍ୟୟନ, ମନନ ଓ ପ୍ରୟୋଗ ଦୃଷ୍ଟିରୁ ଏବଂ ତୁଳନାତ୍ମକ ବିଚାରଧାରାର ପ୍ରବର୍ତ୍ତନ ଦୃଷ୍ଟିରୁ ନନ୍ଦକିଶୋରଙ୍କୁ ଆଧୁନିକ ଓଡ଼ିଆ ସାହିତ୍ୟର ପ୍ରଥମ ସମାଲୋଚକ ମଧ୍ୟ କୁହାଯାଇପାରେ ।

ନନ୍ଦକିଶୋରଙ୍କର ସମାଲୋଚନା ପଦ୍ଧତି ଶ୍ରୈଣିକ ବା generic । ଇଉରୋପୀୟ ସାହିତ୍ୟ - ସମାଲୋଚନାରେ ଆରିଷ୍ଟୋଟଲଙ୍କ ଠାରୁ ଅଷ୍ଟାଦଶ ଶତାବ୍ଦୀର ଡକ୍ଟର ସାମୁଏଲ ଜନସନ୍‌ଙ୍କ ପର୍ଯ୍ୟନ୍ତ ଏହି ପଦ୍ଧତି ଅନୁସୃତ ହୋଇଆସିଛି । ଏ ପ୍ରକାର ପଦ୍ଧତିରେ ସମଗ୍ର କାବ୍ୟଜଗତକୁ କଥାବସ୍ତୁ, ବର୍ଣ୍ଣନାରୀତି, ଆଭିମୁଖ୍ୟ ଏବଂ ଗଠନପ୍ରଣାଳୀ ଆଦି କେତେକ ଦୃଷ୍ଟିକୋଣରୁ ବିଭିନ୍ନ ଶ୍ରେଣୀରେ ବିଭକ୍ତ କରାଯାଇଥାଏ । ଯଥା - ମହାକାବ୍ୟ, ନାଟକ ଓ ଗୀତିକାବ୍ୟ ଆଦି । ପ୍ରଥମ ଦୁଇଟିର କଥାବସ୍ତୁ ହେଲା - ମାନବ ଜୀବନର ବିଭିନ୍ନ ବୈଚିତ୍ର୍ୟପୂର୍ଣ୍ଣ ଘଟଣାବଳୀ; କିନ୍ତୁ ମହାକାବ୍ୟ ବା ' ଏପିକ୍'ର କବି ସ୍ୱୟଂ କିମ୍ବା ପାତ୍ରପାତ୍ରୀ ମୁଖରେ ହିଁ ସମଗ୍ର ଘଟଣାର ବର୍ଣ୍ଣନା କରାଇଥାନ୍ତି ।ପୁଣି କଥାବସ୍ତୁର ପ୍ରକୃତି ଦୃଷ୍ଟିରୁ ନାଟକ ଦୁଇ ଭାଗରେ ବିଭକ୍ତ - ଟ୍ରାଜେଡି ଓ କମେଡ଼ି । ଟ୍ରାଜେଡ଼ିର ଘଟଣା ଗୁରୁତ୍ୱପୂର୍ଣ୍ଣ; କିନ୍ତୁ କମେଡ଼ି ହାସ୍ୟୋଦ୍ଦୀପକ । ମହାକାବ୍ୟ ବା ନାଟକଠାରୁ ଗୀତିକବିତା ଗଠନରୀତି ଦୃଷ୍ଟିରୁ ପୃଥକ । ପ୍ରଥମ ଦୁଇଟିରେ କଥାବସ୍ତୁ, ଚରିତ୍ର, ଚିନ୍ତା ବା ଭାବ,ଭାଷା,

ସଙ୍ଗୀତ ଓ ପ୍ରେକ୍ଷା ପ୍ରଭୃତି ଅଙ୍ଗର ଏକ ବିଶିଷ୍ଟ ସଂଯୋଗ ଥିବା ସ୍ଥଳେ ଗୀତିକବିତାରେ କେବଳ ଗାନଯୋଗ୍ୟ ଭାଷାଦ୍ୱାରା ଏକ ବିଶିଷ୍ଟ ଭାବର ପ୍ରକାଶ ମାତ୍ର କରାଯାଇଥାଏ। ଏଣୁ ନାଟକ ବା ମହାକାବ୍ୟ ପରି ଏଥିରେ କଥାବସ୍ତୁ ଓ ଚରିତ୍ରାଦିର ଉପଯୁକ୍ତ ସଂଯୋଗାଦି ଜନିତ ସମସ୍ୟା ଦେଖାଦିଏନାହିଁ କିମ୍ବା ଏଥିପାଇଁ ଏକ ବିଶିଷ୍ଟ ଦୈର୍ଘ୍ୟର କଥା ମଧ୍ୟ ଉଠେନାହିଁ। କାରଣ ଏହା ସ୍ୱଳ୍ପ ସମୟ ମଧ୍ୟରେ ଗାନ କରାଯାଉଥିବାରୁ ସ୍ୱଭାବତଃ କ୍ଷୁଦ୍ର। ମହାକାବ୍ୟ ବା ନାଟକରେ ଚରିତ୍ର ଏବଂ ପରିସ୍ଥିତିର ପ୍ରକୃତି ଅନୁଯାୟୀ ତାକୁ ପୁଣି ଦୁଇ ଭାଗରେ ବିଭକ୍ତ କରାଯାଇ ପାରେ - ସମ୍ଭ୍ରାନ୍ତ ବା aristocratic ଏବଂ ସାଧାରଣ ବା democratic । ରାଜା, ସମ୍ରାଟ କିମ୍ବା ଉଚ୍ଚକୁଳସମ୍ଭୂତ ପାତ୍ରପାତ୍ରୀ ଏବଂ ତଦୁପଯୁକ୍ତ ପରିବେଶକୁ ନେଇ ଯେଉଁ କାବ୍ୟ ବା ନାଟକ, ତାହାକୁ କୁହାଯାଏ ସମ୍ଭ୍ରାନ୍ତ (ଯଥା - Antony and Cleopatra) ଏବଂ ସମାଜର ସାଧାରଣ ଚରିତ୍ର ଓ ପରିବେଶ ସମ୍ବଳିତ କାବ୍ୟ ନାଟକାଦି (ଯଥା - ୱାର୍ଡସୱାର୍ଥଙ୍କ **ଲୁସି** ଇତ୍ୟାଦି) ସାଧାରଣ। ଆଭିମୁଖ୍ୟ ଦୃଷ୍ଟିରୁ ମଧ୍ୟ ସମଗ୍ର କାବ୍ୟଜଗତକୁ ଦୁଇ ଭାଗରେ ବିଭକ୍ତ କରାଯାଇଥାଏ। କବି ଯଦି ସ୍ୱୀୟ ରଚନା ମାଧ୍ୟମରେ  ନୀତିଶିକ୍ଷା ହେବାପାଇଁ ଇଚ୍ଛା କରନ୍ତି, ତେବେ ତାହାକୁ କୁହାଯିବ ଶିକ୍ଷାମୂଳକ ବା didactic ( ଯଥା - ତୁଳସୀ ସ୍ତବକ, Paradise Lost ଓ ଭର୍ତ୍ତୃହରିଙ୍କ ନୀତିଶତକ); କିନ୍ତୁ କାବ୍ୟ ଯଦି କେବଳ ସୌନ୍ଦର୍ଯ୍ୟାନୁଭୂତିର ପ୍ରକାଶ କରେ ଏବଂ ସେଠାରେ ନୀତିଶିକ୍ଷାର ସ୍ଥାନ ଗୌଣ ହୁଏ, ତେବେ ତାହାକୁ କୁହାଯାଏ 'କଳାତ୍ମକ' ବା artistic (ଯଥା - **ମେଘଦୂତ**, କୀଟସଙ୍କର ଓଡ୍ ସମୂହ ଏବଂ ଭଞ୍ଜଙ୍କର ସଙ୍ଗୀତାବଳୀ)। ତା'ଛଡା କବିଙ୍କର ସ୍ୱକୀୟ ଜୀବନଦର୍ଶନ, କବିତାର ସଂଜ୍ଞା ଓ ପ୍ରକାଶଭଙ୍ଗୀକୁ କେନ୍ଦ୍ର କରି ପରବର୍ତ୍ତୀ କାଳରେ Romantic, Realistic, Idealistic, Symbolitic, Abstract (Subjective, ବା Personal) ପ୍ରଭୃତି ନାନା ପ୍ରକାର ବିଭାଜନ ସୃଷ୍ଟି ହେଇସାରିଛି; କିନ୍ତୁ ଏ ପ୍ରକାର ବିଭାଜନ ମୁଖ୍ୟ ନୁହେଁ। କାବ୍ୟ ଓ ନାଟକ ବା **ଶ୍ରବ୍ୟକାବ୍ୟ** ଓ **ଦୃଶ୍ୟକାବ୍ୟ** - ଏହି ମୁଖ୍ୟ ଦୁଇ ବିଭାଗର ମହାକାବ୍ୟ,ଖଣ୍ଡକାବ୍ୟ, ଗୀତିକାବ୍ୟ, ଟ୍ରାଜେଡି ଓ କମେଡି ପ୍ରଭୃତି ଉପବିଭାଗଗୁଡ଼ିକ ହିଁ ମୁଖ୍ୟ, ଅନ୍ୟଗୁଡ଼ିକ ଆନୁଷଙ୍ଗିକ ମାତ୍ର। ସାହିତ୍ୟକୁ ବିଭିନ୍ନ ଶ୍ରେଣୀରେ ବିଭକ୍ତ କରିଥିବା ହେତୁ ପ୍ରାଚୀନ ସଂସ୍କୃତ ସମାଲୋଚନା ପଦ୍ଧତିକୁ ମଧ୍ୟ ଶ୍ରୈଣିକ ଆଲୋଚନା କୁହାଯିବ; କିନ୍ତୁ ସଂସ୍କୃତ କାବ୍ୟଶାସ୍ତ୍ରରେ ସମାଲୋଚନାର ଆଉ ଗୋଟିଏ ମୁଖ୍ୟ ଦିଗ ଥିଲା। ତାହା ହେଉଛି ପ୍ରକାଶଭଙ୍ଗୀର ବିଶ୍ଳେଷଣ, ଯାହାକୁ ଆଧୁନିକ ଇଉରୋପୀୟ ସମାଲୋଚକମାନେ stylistics କହନ୍ତି। ଯେହେତୁ ସମଗ୍ର କାବ୍ୟ ଜଗତର ଏକମାତ୍ର ପ୍ରକାଶ ମାଧ୍ୟମ ଶବ୍ଦ ଏବଂ ଅର୍ଥ, କାବ୍ୟର ସୌନ୍ଦର୍ଯ୍ୟ କେବଳ ଗଠନରୀତି (structure) ଉପରେ ନିର୍ଭର ନକରି ଶବ୍ଦାର୍ଥର ପ୍ରୟୋଗ ଉପରେ ମଧ୍ୟ ନିର୍ଭର କିଥାଏ। ଫଳରେ ରୀତିବାଦ, ଅଳଙ୍କାରବାଦ, ବକ୍ରୋକ୍ତିବାଦ ଓ ଧ୍ୱନିବାଦ ଆଦି ଶାବ୍ଦିକ ତଥା ଆର୍ଥିକ ବିଶ୍ଳେଷଣ (language analysis) ର ବିଶିଷ୍ଟ ପଦ୍ଧତିମାନ ସହ ଗଠନ ବୈଶିଷ୍ଟ୍ୟର ବିଶ୍ଳେଷଣ ( structural analysis) ସଂସ୍କୃତ ସମାଲୋଚନା ସାହିତ୍ୟକୁ ଋଦ୍ଧିମନ୍ତ କରିଛି; କିନ୍ତୁ ଇଉରୋପୀୟ ସମାଲୋଚନାରେ ଶବ୍ଦାର୍ଥର ବିଶ୍ଳେଷଣ ମାତ୍ର ଏଇ ଶତାବ୍ଦୀର କଥା। ଆରିଷ୍ଟୋଟଲ୍ 'ପୋଏଟିକସ' ରେ ଏ ଦିଗଟିକୁ କାବ୍ୟଶାସ୍ତ୍ରର ବହିର୍ଭୂତ

ବୋଲି କହି କେବଳ ବଚନକ୍ରିୟା (rhetorics) ର ଅଙ୍ଗ ବୋଲି ମତ ଦେଇଛନ୍ତି ଏବଂ ଖ୍ରୀଷ୍ଟୀୟ ପ୍ରଥମ ଶତକର ରୋମୀୟ ସମାଲୋଚକ ସିସେରୋ ଏବଂ କ୍ୱିଣ୍ଟିଲିଆନ ସେହି ମତକୁ ସମର୍ଥନ କରିଛନ୍ତି। ଊନବିଂଶ ଶତକର ଇଂରାଜୀ ସମାଲୋଚକ କୋଲରିଜ୍ କାବ୍ୟର ଛାନ୍ଦସିକ ପ୍ରକାଶ, ତା'ର ଗଠନରୀତି ଓ ପ୍ରଭାବର ନିୟାମକ ବୋଲି ମତଦେଇଛନ୍ତି ଏବଂ ତାଙ୍କୁ ଅନୁସରଣ କରି ଆଇ. ଏ. ରିଚର୍ଡ଼ସ ତଥା ଉଇଲିୟମ ଏମ୍ପସନ୍ ପ୍ରଭୃତି ସମାଲୋଚକ ଆରିଷ୍ଟୋଟଲଙ୍କ ଯୁଗରୁ ଚଳିଆସୁଥିବା poetry ଓ rhetorics ମଧ୍ୟରେ ଥିବା ଭେଦକୁ ଖଣ୍ଡନ କରି କାବ୍ୟର structurର ସହିତ ଛନ୍ଦ ତଥା ଶବ୍ଦାର୍ଥର ନିବିଡ଼ ସମ୍ପର୍କ ପ୍ରତିଷ୍ଠାର ପ୍ରଚେଷ୍ଟା କରିଛନ୍ତି। ଏବଂ, ଏ ପ୍ରଚେଷ୍ଟାର ଫଳସ୍ୱରୂପ stylistics କାଳକ୍ରମେ ଓସ୍ପିତଜେର (ଜର୍ମାନ),ଆମାଦୋ ଆଲୋନସୋ( ଇତାଲୀୟ) ଏବଂ ଏରିକ୍ ଆଓେର୍ବାକ୍ (ଜର୍ମାନ)ପ୍ରଭୃତିଙ୍କଦ୍ୱାରା ଏକ ସ୍ୱତନ୍ତ୍ର ସମାଲୋଚନା ପଦ୍ଧତିର ଗୌରବ ଲାଭକରିଛି।

ଇଉରୋପୀୟ ତଥା ଭାରତୀୟ ସମାଲୋଚନା ପଦ୍ଧତିର ଏପରି ଏକ ସଂକ୍ଷିପ୍ତ ତୁଳନାତ୍ମକ ବିବରଣୀ ନନ୍ଦକିଶୋରଙ୍କ ପଦ୍ଧତିକୁ ସ୍ପଷ୍ଟକରେ। ସେ ଜଣେ ଶୁଦ୍ଧ ଶ୍ରୈଣିକ ସମାଲୋଚକ। ତତସମ ଶବ୍ଦ ସହିତ ତଦ୍ଭବ ତଥା ଦେଶଜ ଶବ୍ଦ ସଂଯୋଜନାର ଯୁକ୍ତିଯୁକ୍ତତା ବ୍ୟତୀତ ଗଠନରୀତି ସହିତ ଛନ୍ଦ ଓ ଶବ୍ଦାର୍ଥର ଅପରିହାର୍ଯ୍ୟ ସମ୍ବନ୍ଧ ବିଷୟରେ ସେ ଆଲୋଚନା କରିନାହାନ୍ତି।ତେଣୁ ରୋମାଣ୍ଟିକ ସମାଲୋଚକ କୋଲରିଜ୍ ତାଙ୍କ ପୂର୍ବଭାବୀ ହେଲେ ମଧ୍ୟ ତାଙ୍କର ସମାଲୋଚନା ପଦ୍ଧତିଦ୍ୱାରା ସେ ପ୍ରଭାବିତ ନ ହୋଇ ଅଷ୍ଟାଦଶ ଶତାବ୍ଦୀର ଶରଭରକ୍ୱସମ ମକ୍ୱସସ୍ପସମ ଏଡ଼ିସନ ଓ ଜନସନ୍‌ଙ୍କଦ୍ୱାରା ବିଶେଷ ପ୍ରଭାବିତ ହୋଇଥିବାର ଜଣାଯାଏ। ଏ ଶ୍ରେଣୀର ସମାଲୋଚକମାନେ ପ୍ରଥମେ କୌଣସି ଏକ ସାହିତ୍ୟକୃତିକୁ ଏକ ବିଶିଷ୍ଟ 'ଶ୍ରେଣୀ' (ମହାକାବ୍ୟ,ନାଟକ ବା ଗୀତିକାବ୍ୟ ଆଦି) ର ଅନ୍ତର୍ଭୁକ୍ତ କରିଥାନ୍ତି ଏବଂ ସେଥିରେ ଥିବା ଗୁଣଗୁଡ଼ିକ କେତେଦୂର ପ୍ରୋକ୍ତ ଶ୍ରେଣୀପାଇଁ ଉପଯୁକ୍ତ, ତାହା ବିଚାରକରି କୃତିର ମୂଲ୍ୟାୟନ କରିଥାନ୍ତି। ଏ ଧରଣର ସମାଲୋଚନାକୁ Judicial criticism ମଧ୍ୟ କୁହାଯାଏ ଏବଂ ତାହା କ୍ଲାସିସିଜମର ଏକ ନିଦର୍ଶନ। ବଡ଼ କୌତୁକର କଥା, ନନ୍ଦକିଶୋର କବି ହିସାବରେ ରୋମାଣ୍ଟିକବାଦୀ - ବିଶେଷ କରି ୱାର୍ଡସୱାର୍ଥୀୟ ହେଲେ ହେଁ ସମାଲୋଚକ ହିସାବରେ ସେ ଜଣେ କ୍ଲାସିକବାଦୀ।

ରାଧାନାଥଙ୍କ କାବ୍ୟାଲୋଚନାରେ ନନ୍ଦକିଶୋର ପ୍ରଥମେ କବିଙ୍କୁ କେତେକ ଶ୍ରେଣୀଭୁକ୍ତ କରିଛନ୍ତି। ଯଥା - ସେ ମୁଖ୍ୟତଃ ଜଣେ ମହାକାବ୍ୟର କବି। ସମ୍ଭ୍ରାନ୍ତ ଚରିତ୍ରସ୍ରଷ୍ଟା (poet of aristocracy), ବାସ୍ତବବାଦୀ (realist), ସୌନ୍ଦର୍ଯ୍ୟବାଦୀ (aristic), ବସ୍ତୁପରକ (objective) ବା concrete ବା impersonal ଏବଂ ଦୁଃଖବାଦୀ (pessimistic) ହେତୁ ବିୟୋଗାନ୍ତକ କାବ୍ୟସ୍ରଷ୍ଟା (tragedian)।

ଦୁଇ

ଶ୍ରୈଣିକ ସମାଲୋଚନାର ଜନକ ଆରିଷ୍ଟୋଟଲ କାବ୍ୟର କଥାବସ୍ତୁ ଉପରେ ସମଧିକ ଗୁରୁତ୍ୱ ଆରୋପ କରିଛନ୍ତି - " ଏହା (କଥାବସ୍ତୁ) ହିଁ ଟ୍ରାଜେଡ଼ିର ଏକାଧାରରେ ପ୍ରଥମ ଓ ସର୍ବାଧିକ ଗୁରୁତ୍ୱପୂର୍ଣ୍ଣ ବିଷୟ"[୧] ଏବଂ ସେଥିପାଇଁ ବିଷୟ ନିର୍ବାଚନ କ୍ଷେତ୍ରରେ

ମଧ୍ୟ ସାବଧାନବାଣୀ ଶୁଣାଇଛନ୍ତି। [୨] ଟ୍ରାଜେଡିପାଇଁ ଟ୍ରାଜିକ୍ ସିଚୁଏସନ ଥିବା କଥାବସ୍ତୁ ଏକାନ୍ତ ଆବଶ୍ୟକ। ଯେହେତୁ ଏ ପ୍ରକାର ବିଷୟ କଳ୍ପନାଦ୍ୱାରା ଆବିଷ୍କାର କରିବା ସହଜସାଧ୍ୟ ନୁହେଁ,ଇତିହାସ କିମ୍ବା କିମ୍ବଦନ୍ତୀରୁ ତାହା ସଂଗ୍ରହ କରିବା ସବୁଠୁଁ ଭଲ। ସେହି ଦୃଷ୍ଟିରୁ ଆଗାନନଙ୍କ ଅପେକ୍ଷା ଇଉରପିଡ଼ିସଙ୍କ ପ୍ରଚେଷ୍ଟା ଉତ୍କୃଷ୍ଟତର ବୋଲି ସେ ମତ ପ୍ରକାଶ କରିଛନ୍ତି। କାବ୍ୟର କଥାବସ୍ତୁ ଦୁର୍ବଳ ହେଲେ ଚରିତ୍ର କିମ୍ବା ଭାଷା କେହି ତାହାକୁ ସୁଧାରି ପାରିବେନାହିଁ। ନନ୍ଦକିଶୋର ରାଧାନାଥଙ୍କ ଭାଷା ବିନ୍ୟାସର ଉଚ୍ଛ୍ୱସିତ ପ୍ରଶଂସା କରିଛନ୍ତି। ଅଳଙ୍କାର ପ୍ରୟୋଗ ତଥା ଅନ୍ୟ ଦେଶର ମହାର୍ହ ତଥା ସାହିତ୍ୟ କୃତିଗୁଡ଼ିକ ଛାୟାରେ ମୌଳିକତା ପ୍ରଦର୍ଶନର ଭୂୟସୀ ପ୍ରଶଂସା କରିଛନ୍ତି –

> ତଦୀୟ କାବ୍ୟ କାଞ୍ଚନ ପୌରାଣିକ ଉପାଖ୍ୟାନ ଓ ଦୃଷ୍ଟାନ୍ତ, ଐତିହାସିକ, ଭୌଗୋଳିକ,ବୈଜ୍ଞାନିକ, ଉପମା ଓ ରୂପକ, ସମସାମୟିକ ବ୍ୟକ୍ତି ଓ ବିଷୟର ଉଲ୍ଲେଖ ରୂପ ମଣିମାଣିକ୍ୟର ଜଡ଼ କାର୍ଯ୍ୟ ପରି ସୁଶୋଭିତ। ସେ ସଂସ୍କୃତ ଓ ପାଶ୍ଚାତ୍ୟ କବିବୃନ୍ଦଙ୍କ ଭାବ ଏବଂ ଶ୍ରେଷ୍ଠ ସଂସ୍କୃତ,ଓଡ୍ର,ବଙ୍ଗୀୟ କବିଗଣଙ୍କ ଭାଷାର ସମନ୍ୱୟ ସ୍ୱପ୍ରଣୀତ କାବ୍ୟାବଳୀର ପ୍ରଦର୍ଶନ କରିଅଛନ୍ତି। ସଂସ୍କୃତ, ଓଡ଼ିଆ,ବଙ୍ଗଳା, ହିନ୍ଦୀ ଭାଷାରେ ଶ୍ରେଷ୍ଠ କାବ୍ୟାବଳୀ ସମାଲୋଚକଚିତ ମନୋଯୋଗ ସହକାରେ ଆଲୋଚନା କରି ପ୍ରତିଭାଶାଳୀ କବି ତାହା ନିଜସ୍ୱ କରି ନୂତନ ଭାବରେ ସ୍ୱରଚିତ କାବ୍ୟାବଳୀରେ ଗୁନ୍ଥେଇ ଦେଇଛନ୍ତି। ତାଙ୍କ ଭାଷାରେ କାଳିଦାସ, ମୁରାରୀ, ଉପେନ୍ଦ୍ର ଭଞ୍ଜ,ମାଇକେଲ, ସାରଳା ଦାସ, ତୁଳସୀ ଦାସଙ୍କ ଅନୁକରଣ ପ୍ରତିଫଳିତ ହୋଇଅଛି ଏବଂ ତାଙ୍କ କାବ୍ୟାବଳୀ ପ୍ରୋକ୍ତ କବିବୃନ୍ଦ ଓ ସେକସପିୟର, ବାଇରନ ପ୍ରଭୃତିଙ୍କ ଭାବଦ୍ୱାରା ପରିପୁଷ୍ଟ, ଅନୁରଞ୍ଜିତ, ସୁସଜ୍ଜିତ ହୋଇଅଛି। କିନ୍ତୁ ରାଧାନାଥ ଯହିଁରେ ହସ୍ତ ଦେଇଛନ୍ତି, ତାହାକୁ ନିଜସ୍ୱ କରିଅଛନ୍ତି। [୩]

ସାହିତ୍ୟରେ ପ୍ରଭାବ, ମୌଳିକତା ଓ ଚୌର୍ଯ୍ୟବୃତ୍ତିର ଉପଯୁକ୍ତ ବିଚାରଜ୍ଞାନ ନନ୍ଦକିଶୋରଙ୍କର ଥିଲା। ତେଣୁ ଜଣେ ସାଧାରଣ ଇଂରାଜୀ ସାହିତ୍ୟ ଅଧ୍ୟେତା ଭଳି ସେ ରାଧାନାଥଙ୍କୁ ଚୌର୍ଯ୍ୟବୃତ୍ତିରେ ଅଭିଯୁକ୍ତ କରିନାହାନ୍ତି; ବରଂ ଇମର୍ସନଙ୍କ ମତକୁ ଗ୍ରହଣ କରି ମୌଳିକତାକୁ ଆପେକ୍ଷିକ ବୋଲି ସ୍ୱୀକାର କରିଛନ୍ତି [୪]; ଏବଂ ପ୍ରଭାବକୁ ଯଦି ଚୋରି କୁହାଯାଏ,ତେବେ କାଳିଦାସ, ମିଲଟନ ଏବଂ ସେକସପିଅର ସମସ୍ତଙ୍କୁ ସାହିତ୍ୟଚୋର କୁହାଯିବ ବୋଲି ଯୁକ୍ତି ବାଢ଼ିଛନ୍ତି; କିନ୍ତୁ ଏସବୁ ସତ୍ତ୍ୱେ ପାଶ୍ଚାତ୍ୟ ଜଗତର ଶ୍ରେଷ୍ଠ କବିଙ୍କ ଗଳ୍ପାଂଶ ଗ୍ରହଣ କରି ଓଡ଼ିଶା ଇତିହାସରେ ପ୍ରଧାନ ପ୍ରଧାନ ଯୁଗର ଘଟଣାବଳୀ ସଙ୍ଗେ ସଂଯୋଗ କରିଥିଲେ ମଧ୍ୟ ରାଧାନାଥ ଅଧିକାଂଶ କାବ୍ୟର କଥାବସ୍ତୁ ନିର୍ବାଚନରେ ଅସଫଳ ହୋଇଛନ୍ତି – "ରାଧାନାଥ ଉତ୍କଳକୁ ମାର୍ଜିତ କବିତାମୟୀ ଭାଷା ଦେଇଅଛନ୍ତି; କିନ୍ତ ହାୟ, ରାଧାନାଥଙ୍କ ବିଷୟ ନିର୍ବାଚନ ଅଧିକାଂଶ ସ୍ଥାନରେ ସମୁଚିତ ହୋଇ ନାହିଁ।"[୫] ଏବଂ କଥାବସ୍ତୁର ଏହି ଅସମୀଚୀନତା ହେତୁ ଚରିତ୍ରଚିତ୍ରଣ ମଧ୍ୟ ସ୍ୱଭାବତଃ ଅସମୀଚୀନ ହୋଇ ପଡ଼ିଛି। କାରଣ ଆରିଷ୍ଟୋଟଲୀୟ ଶ୍ରେଣିକ ସମାଲୋଚନା ତତ୍ତ୍ୱାନୁଯାୟୀ କଥାବସ୍ତୁ

ଚରିତ୍ରର ନିୟାମକ [୬]।

ରାଧାନାଥଙ୍କ କାବ୍ୟରେ ଅନେକତ୍ର ପ୍ରେମ ବା 'ରୂପଜ' ପ୍ରେମ ହିଁ ବିଷୟବସ୍ତୁ (theme) ଏବଂ ଏହା ପୁଣି ମୁଖ୍ୟତଃ 'ଗୁପ୍ତପ୍ରେମ ବା ସମାଜ-ବିରୁଦ୍ଧ ସମ୍ଭୋଗ' ଏବଂ ଏହି ବଷୟବସ୍ତୁକୁ ନେଇ 'ନନ୍ଦିକେଶ୍ୱରୀ', 'ପାର୍ବତୀ', 'ଯଯାତି' ଏବଂ 'ଚନ୍ଦ୍ରଭାଗା' ରେ ଯେଉଁ କଥାବସ୍ତୁ (plot) ଓ ଚରିତ୍ର ସଂଯୋଜନ କରାଯାଇଛି, ତାହା ସ୍ୱାଭାବିକ (possible) ହେଲେହେଁ ଅସମ୍ଭାବ୍ୟ (improbable), ସମାଜବିରୋଧୀ ତଥା ଅମାନୁଷିକ ଓ ନୀଚ - ମାନବାତ୍ମାର ଦିବ୍ୟ ସୌନ୍ଦର୍ଯ୍ୟଚିତ୍ର କବିଙ୍କଠାରୁ ଆମ୍ଭେମାନେ ପାଇନାହୁଁ। ସମାଜରେ ତ ନାହିଁ, ସମାଜ ଚିତ୍ରକର କବି କାହୁଁ ପାଇବେ ? କିନ୍ତୁ ସାହିତ୍ୟ ଯେପରି ସମାଜ ଜୀବନର ଦର୍ପଣରୂପ, ସେହିପରି ସମାଜର ଗୁରୁ। .... କବି ରାଧାନାଥଙ୍କ ଚିତ୍ରିତ ଅନେକ ନାୟକ ନାୟିକାଙ୍କ ପ୍ରୀତି ରୂପଜ, ଶାରୀରିକ ସୌନ୍ଦର୍ଯ୍ୟ ପାର୍ଥିବ ପ୍ରଣୟ, ମାନସିକ ଲାବଣ୍ୟପ୍ରସୂତ ନିର୍ମଳ ନିଃସ୍ୱାର୍ଥ-ପ୍ରୀତି ନୁହେଁ। ତାହା ପୃଥିବୀର, ସ୍ୱର୍ଗର ନୁହେଁ। ତାହା କାମ, ପ୍ରେମ ନୁହେଁ। ରାଧାନାଥଙ୍କ ନାୟକ ନାୟିକାଙ୍କ ପ୍ରେମ ତାଙ୍କରି ଭାଷାରେ ରୂପଜ। ସେ ଏମନ୍ତ ଚିତ୍ର ଉତ୍କଳକୁ ଦେଇ ପାରିନାହାନ୍ତି, ଯାହା ଘେନି ଓଡ଼ିଆ ଜାତି ନବଯୁଗର ନବ ଆଦର୍ଶ ପ୍ରତି ଆକୃଷ୍ଟ ହେବ, ନବୀନ ଉଦ୍ୟମରେ ମାତି ପୃଥିବୀର ଉନ୍ନତ ଜାତିମାନଙ୍କ ସହ ଉନ୍ନତ ପଥରେ ଜ୍ଞାନ, ପ୍ରୀତି ଓ କର୍ମର ଧ୍ୱଜା ହସ୍ତରେ ଧାରଣ କରି ଅଗ୍ରସର ହେବ।"[୭]

ନନ୍ଦକିଶୋରଙ୍କ ସମାଲୋଚନାର ଉଦ୍ଧୃତାଂଶଗୁଡ଼ିକ ତିନୋଟି ମୁଖ୍ୟ ସାହିତ୍ୟିକ ସମସ୍ୟା ସହିତ ସଂପୃକ୍ତ - ୧. କାବ୍ୟିକ ସତ୍ୟ ଓ କାବ୍ୟିକ ନ୍ୟାୟ, ୨. ସାହିତ୍ୟରେ ବାସ୍ତବବାଦ ବନାମ ଆଦର୍ଶବାଦ ଏବଂ ୩. ସମାଜ ଓ ସାହିତ୍ୟ ବା ସାମାଜିକ ଉନ୍ନୟନରେ ସାହିତ୍ୟର ଭୂମିକା। ସମସ୍ୟାଗୁଡ଼ିକର ବିଶଦ ଆଲୋଚନା ଉପସ୍ଥିତ ପ୍ରବନ୍ଧରେ ଅସମ୍ଭବ ହେଲେହେଁ ଯଥାସମ୍ଭବ ସଂକ୍ଷେପତଃ ସ୍ପଷ୍ଟ କରାଯାଇ ନନ୍ଦକିଶୋରଙ୍କର ସମାଲୋଚନା ପ୍ରତିଭାର ମୂଲ୍ୟାୟନ କରାଯିବ। କାବ୍ୟିକ ସତ୍ୟ ବିଷୟରେ ଲେଖକ 'ଆରିଷ୍ଟୋଟଲଙ୍କୁ କାବ୍ୟତତ୍ତ୍ୱ' ର ତୃତୀୟ ପ୍ରବନ୍ଧରେ ସମ୍ୟକ ଆଲୋଚନା କରିଛି। ତା'ର ଫଳ କଥା ହେଉଛି, ଇତିହାସ ଯାହା ଘଟେ ବା ଘଟୁଛି ତାହାର ସଂବାଦ ରଖେ, କିନ୍ତୁ ସାହିତ୍ୟ - ଯାହା ଘଟିବା ଉଚିତ ତାହାର ସଂବାଦ ଦିଏ। ' ଯାହା ଘଟିବା ଉଚିତ' କଥାଟି ବଡ଼ ଜଟିଳ। ସାଧାରଣ ଦୃଷ୍ଟିରେ ଏହା ନୈତିକତାବ୍ୟଞ୍ଜକ ପରି ମନେହୁଏ, କିନ୍ତୁ ଠିକ୍ ତା ନୁହେଁ। ଉଦାହାରଣତଃ, ଇତିହାସରେ ବହୁ ଚୋର, ତସ୍କର ବା ନାରୀଧର୍ଷଣକାରୀ ଦଣ୍ଡିତ ହୋଇନାହାନ୍ତି। ବହୁ ପ୍ରଜାପୀଡ଼କ ରାଜା ମଧ୍ୟ ବେଶ ଆରାମରେ ଜୀବନ ଅତିବାହିତ କରିଛନ୍ତି। ଅପରପକ୍ଷରେ, ଦୋଷୀ ବା ଅନିଷ୍ଟକାରୀର ଦଣ୍ଡିତ ହେବାର ଉଦାହରଣ ମଧ୍ୟ ଅସଂଖ୍ୟ। କିନ୍ତୁ 'ଗ୍ରୀଷ୍ମ ପରେ ବର୍ଷା ଆସେ', ରାତ୍ରିର ଅନ୍ଧକାର ପରେ ଉଷାର ରକ୍ତିମାଭା ବିକଶିତ ହୁଏ, ପ୍ରକୃତି ପରି ଦୋଷୀ ଦଣ୍ଡ ପାଏ' ଏକ ଅବଧାରିତ ସତ୍ୟ ନ ହେଲେ ବି (

କାରଣ ସୃଷ୍ଟିର ଆରମ୍ଭ କାଳରୁ ଗ୍ରୀଷ୍ମ ପରେ ବର୍ଷାଗମନର ବ୍ୟତିକ୍ରମ କେବେ ହୋଇ ନାହିଁ; କିନ୍ତୁ ଦୋଷୀ ଦଣ୍ଡ ନ ପାଇବାର ଦେଖା ଯାଇଛି ।) ଏକ ସାଧାରଣ - ଗୃହୀତ ସତ୍ୟ। ସାମାଜିକ ପ୍ରାଣୀ ମନୁଷ୍ୟ ଏହି ସତ୍ୟକୁ ଦାବିକରେ ବୋଲି କହିବା ବରଂ ଅଧିକ ସଂଗତ। ତେଣୁ ଏହି ସତ୍ୟର ଅନ୍ୟଥା ତା ପକ୍ଷରେ ଏକ ଅସଂଗତ। କୌଣସି ଇତିହାସରେ ଦୋଷୀ ହୁଏତ ଦଣ୍ଡ ପାଇପାରିନଥାଏ, କିନ୍ତୁ ଏ ପ୍ରକାର ଘଟଣା ସାମାଜିକ ମଣିଷପାଇଁ ସତ୍ୟର ଏକ ବ୍ୟତିକ୍ରମ ମାତ୍ର। ଦୋଷ ସହିତ ଦଣ୍ଡର, କାରଣ - କାର୍ଯ୍ୟ ସଂପର୍କ ସୁପ୍ରତିଷ୍ଠିତ। ଏଣୁ ଏହାର ବ୍ୟତିକ୍ରମକୁ ମଣିଷ ଅସ୍ୱାଭାବିକ ବୋଲି ଗ୍ରହଣ କରେ। ଇତିହାସରେ ଘଟୁଥିବା ବିଭିନ୍ନ ଘଟଣାବଳୀ ମଧ୍ୟରେ କୌଣସି ଆବଶ୍ୟକୀୟ ପାରସ୍ପରିକ ସଂବନ୍ଧ ନଥାଏ, କିନ୍ତୁ ସାହିତ୍ୟର କଥାବସ୍ତୁରେ ଏ ପ୍ରକାର ସମ୍ବନ୍ଧ ନିତାନ୍ତ ଅପରିହାର୍ଯ୍ୟ। କହିବା ବାହୁଲ୍ୟ, କୌଣସି ଏକ ଗ୍ରନ୍ଥର ପ୍ରଥମ ଅଧ୍ୟାୟରେ ଝଡ଼ି, ଦ୍ୱିତୀୟ ଅଧ୍ୟାୟରେ କୌଣସି ଏକ ରାଜାଙ୍କର ରାଜଗାଦିପ୍ରାପ୍ତ ଓ ତୃତୀୟ ଅଧ୍ୟାୟରେ କୃଷିକ୍ଷେତ୍ରରେ ବର୍ଣ୍ଣନା ବା ପରିବାର ନିୟନ୍ତ୍ରଣ ପ୍ରକ୍ରିୟାର ବର୍ଣ୍ଣନା ଥିଲେ, ତାହା ସାହିତ୍ୟ ପଦବାଚ୍ୟ ହେବ ନାହିଁ। (ଆଧୁନିକ ଇଉରୋପୀୟ 'ଓ କାଲକାଟା' ନାଟକରେ ପ୍ରଦର୍ଶିତ ଅବାନ୍ତର, ଉଦ୍ଭଟ ଓ ଉଚ୍ଛୃଙ୍ଖଳ ଯୌନକ୍ରିୟାକୁ ବର୍ତ୍ତମାନ ସମାଜର ପ୍ରଯୁକ୍ତ ଚିତ୍ର ଭାବି ଯଦି କେହି ତାକୁ ଏକ ଆଦର୍ଶ କଳାକୃତି ବୋଲି ଗ୍ରହଣ କରନ୍ତି, ତେବେ ତାଙ୍କ ବିରୁଦ୍ଧରେ ଆମର କିଛି କହିବାର ନାହିଁ।) ସାହିତ୍ୟରେ ପରସ୍ପର ସଂପୃକ୍ତ ଘଟଣାବଳୀ ଆବଶ୍ୟକ ଏବଂ ସେହି ଦୃଷ୍ଟିରୁ ଦୋଷୀ ଦଣ୍ଡ ନ ପାଇବା ଅସ୍ୱାଭାବିକ, ଅସଂଗତ, ଅନ୍ୟାୟ ବା ଅନୁଚିତ। ଏହାକୁ କୁହାଯାଏ କାବ୍ୟିକ ସତ୍ୟ (aesthitic truth), କାବ୍ୟିକ ନ୍ୟାୟ (aesthetic justice) ବା କାବ୍ୟିକ ଆଦର୍ଶ (aesthetic ideal) । କାବ୍ୟଜଗତର ଏହି ବଳିଷ୍ଠ କାର୍ଯ୍ୟ-କାରଣ ସଂପର୍କ ଯୋଗୁ ହିଁ ଆରିଷ୍ଟୋଟଲ ଏହାକୁ ଇତିହାସ ଅପେକ୍ଷା ଅଧିକ 'ଦାର୍ଶନିକ' ବା ବ୍ୟାପକ (ବା ଗ୍ରାହ୍ୟ) ବୋଲି କହିଛନ୍ତି। ଅବଶ୍ୟ ଏହି 'ଦୋଷ' ର ସଂଜ୍ଞା ଦେଶ, କାଳ, ସମାଜ, ପରମ୍ପରା ଓ ସଂସ୍କୃତିର ବିଭିନ୍ନତାନୁଯାୟୀ ବିଭିନ୍ନ ପ୍ରକାରର ହୋଇପାରେ; କିନ୍ତୁ ଦୋଷୀ ଦଣ୍ଡ ନ ପାଇବା କୁତ୍ରାପି ଦୃଷ୍ଟ ହୁଏନା।

ଏହି ଦୃଷ୍ଟିରୁ ନନ୍ଦକିଶୋରଙ୍କର ଅସଂପୂର୍ଣ୍ଣ 'ପାର୍ବତୀ' କାବ୍ୟର ସମାଲୋଚନା ବାସ୍ତବିକ ଅକାଟ୍ୟ। ପ୍ରୋକ୍ତ କାବ୍ୟର ଦୁଇଟି ସର୍ଗରୁ ଜଣାଯାଏ, ରାଜା ଗଙ୍ଗେଶ୍ୱର ନିଜର କନ୍ୟା କୌଶଲ୍ୟାର ରୂପଯୌବନ ପ୍ରତି ଆସକ୍ତ ହୋଇ ବଳପୂର୍ବକ ତା' ସହିତ ଏକ ରାତ୍ରିରେ ରମଣ କରିଛନ୍ତି। ପରଦିନ ପ୍ରଭାତଠାରୁ କ୍ରମାଗତ ଏହାର ପୁନରାବୃତ୍ତି ପାଇଁ କୌଶଲ୍ୟାକୁ ଅନୁରୋଧ କରି ଚାଲିଛନ୍ତି। ଶେଷରେ ବିଫଳ ମନୋରଥ ହୋଇ ଗର୍ଭିଣୀ କନ୍ୟାକୁ କଳଙ୍କିନୀ ଆଖ୍ୟା ଦେଇ କାରାଗାରରେ ନିବଦ୍ଧ କରିଛନ୍ତି ଏବଂ ସନ୍ତାନ ଜନ୍ମପରେ ତା'ଠାରେ ରାଜଚିହ୍ନ ଓ ନିଜ ସହିତ ସାଦୃଶ୍ୟ ଦେଖି ସମାଜ ଭୟରେ ମା' ଓ ପୁଅପ୍ରତି ଅମାନୁଷିକ ମୃତ୍ୟୁଦଣ୍ଡ ବିଧାନ କରିଛନ୍ତି। ପୁଣି ରତ୍ନପୁରରେ ରାଜଯେମା ଅନ୍ନପୂର୍ଣ୍ଣା ସ୍ୱୀୟ ଜ୍ୟେଷ୍ଠ ପୁତ୍ରପ୍ରତି ଆସକ୍ତ ଥିବା ଜାଣି ମଧ୍ୟ ଗଙ୍ଗେଶ୍ୱର ତା ପ୍ରତି ଆସକ୍ତ ହୋଇଛନ୍ତି। ବୃଦ୍ଧ ନରପତି ସେଥିରେ ସମ୍ମତ ନ ହେବାରୁ ବଳପୂର୍ବକ ରାଜ୍ୟାଧିକାର ଓ ରାଜାଙ୍କର ଶିରଚ୍ଛେଦ କରି ନିଜର କାମାନଳରେ ଆହୁତି ପ୍ରଦାନ ପାଇଁ ଅନ୍ନପୂର୍ଣ୍ଣଙ୍କୁ ସ୍ୱ ରାଜ୍ୟକୁ ପ୍ରେରଣ କରିଛନ୍ତି।

ଅନ୍ନପୂର୍ଣ୍ଣ ମହାରାଣୀ ପାର୍ବତୀଙ୍କର ଦର୍ଶନ ପାଇଁ ଅତି କାତରତା ସେହି ନିଜ ରାଜ୍ୟର ସମଗ୍ର ବୃତ୍ତାନ୍ତ ସହିତ ଗଙ୍ଗେଶ୍ୱରଙ୍କର ପାଶବିକତା ବର୍ଣ୍ଣନା କରିବାରେ ହିଁ ୨ୟ ସର୍ଗ ଶେଷ ହୋଇଛି। ଏ କାବ୍ୟ ସମ୍ବନ୍ଧରେ ନନ୍ଦକିଶୋରଙ୍କର ଅଭିମତ - "ପାର୍ବତୀ କାବ୍ୟରେ କଳଙ୍କ କାଣ୍ଡ ଅଭିନୀତ ହୋଇଛି, କିନ୍ତୁ ପାପର ଦଣ୍ଡ ଯହିଁରୁକି negativର ଶିକ୍ଷା ହୁଅନ୍ତା, ତାହା ବର୍ଣ୍ଣିତ ହୋଇନାହିଁ। କବି ପାର୍ବତୀକୁ ଯେ ପର୍ଯ୍ୟନ୍ତ ଅସଂପୂର୍ଣ୍ଣ ରଖିବେ, ସେତେଦିନ ଯାଏ ତାଙ୍କର ଶ୍ରେଷ୍ଠ ପ୍ରଶଂସାକାରୀମାନେ ମଧ୍ୟ ତାଙ୍କ କାବ୍ୟର କଳଙ୍କକାଳିମା ଅପନୋଦନ କରିବାକୁ ସମର୍ଥ ହେବେ ନାହିଁ।" [୮] - ର ଦୁଇଟି ଦିଗ ରହିଛି - କାବ୍ୟିକ ଏବଂ ସାମାଜିକ। ସାମାଜିକ ଦିଗଟିର ପ୍ରସଙ୍ଗ ଅନୁକ୍ରମେ ବିଚାର ହେବ। କାବ୍ୟିକ ସତ୍ୟ ବା ନ୍ୟାୟ ବା ଆଦର୍ଶ ଦୃଷ୍ଟିରୁ କାବ୍ୟଟି ଅମାର୍ଜନୀୟ। ଦୋଷଦୁଷ୍ଟ ପିତା ଓ କନ୍ୟାର ଯୌନସଙ୍ଗମ ଇତିହାସରେ ହୁଏତ ଏଠିସେଠି ଦେଖାଯାଏ ଏବଂ ବିଶେଷକରି ଓଡ଼ିଶାର ଇତିହାସରେ ଚୋଡ଼ଗଙ୍ଗଦେବଙ୍କ ପରେ ରାଜା ଗଙ୍ଗେଶ୍ୱର ଏପରି ଏକ କାର୍ଯ୍ୟ କରିଥିବାର ପ୍ରମାଣ 'ମାଦଳା ପାଞ୍ଜି'ରୁ ମିଳିଥାଏ। ଏ ପ୍ରକାର ପାପର ପ୍ରାୟଶ୍ଚିତପାଇଁ ବ୍ରାହ୍ମଣମାନେ କଡ଼ା ବ୍ୟବସ୍ଥା କରିଥିଲେ। ରାଜାଙ୍କର ଅଭିଶପ୍ତ ଯୌନାଙ୍ଗକୁ କାଟି ଅଗ୍ନିରେ ଆହୁତି ଦେବାର ଆଦେଶ ସେଥିରେ ଥିଲା ଗୁରୁତମ; କିନ୍ତୁ ରାଜା ସେସବୁକୁ ସବିଧାନ ପାଳନ ନ କରିବାରୁ ରାଣୀମାନେ ଉତ୍ତ୍ୟକ୍ତ ହୋଇ ତାଙ୍କର ମୁଣ୍ଡଛେଚି ପ୍ରାଣ ବିନାଶ କରିଥିଲେ। [୯] ଐତିହାସିକମାନେ ଏହାକୁ ତଥ୍ୟଭାବରେ ଗ୍ରହଣ କରି ନପାରନ୍ତି, କିନ୍ତୁ କିମ୍ବଦନ୍ତୀ ଭାବରେ ଏହା ଅବଶ୍ୟ ସ୍ୱୀକାର୍ଯ୍ୟ ଏବଂ ସାହିତ୍ୟଲୋଚନାପାଇଁ ଇତିହାସଠାରୁ କିମ୍ବଦନ୍ତୀ ଅଧିକ ଉପାଦେୟ।

ତେଣୁ କଥା ହେଉଛି, ପିତା-ପୁତ୍ରୀର ଯୌନସଂପର୍କର ସମ୍ଭାବନା ବିଷୟରେ ଓଡ଼ିଆ ଅନବହିତ ନୁହେଁ। ସେ ତାକୁ ଗ୍ରହଣ କରିଛି, ଏପରିକି ନିଜ ଜାତିର ପବିତ୍ର ସ୍ମରଣିକାରେ ମଧ୍ୟ ସ୍ଥାନ ଦେଇଛି। କିନ୍ତୁ ଦୋଷୀ ପ୍ରତି ଉପଯୁକ୍ତ ଦଣ୍ଡବିଧାନ ନକରି ଛାଡ଼ିନାହିଁ। ତାଛଡ଼ା, ପାଶ୍ଚାତ୍ୟ ସାହିତ୍ୟରେ ମଧ୍ୟ ଏ ପ୍ରକାର କଥାବସ୍ତୁ ବା ଚରିତ୍ର ବିରଳ ନୁହେଁ। ସୋଫୋକ୍ଲିସ୍‌ଙ୍କ ଓ୍ୱେଦିପସ୍, ଓଭିଡ୍‌ଙ୍କ [୧୦] ମୀରା ଏବଂ ଗ୍ରୀକ୍ ମିଥ୍‌ର ଥିଏଷ୍ଟିସ୍ [୧୧] ପ୍ରଭୃତି ଚରିତ୍ର ଏ ପ୍ରକାର ଅସାମାଜିକ ଯୌନ ସଂପର୍କଦୁଷ୍ଟ ହୋଇଛନ୍ତି, କିନ୍ତୁ କୌଣସି କ୍ଷେତ୍ରରେ ଗଙ୍ଗେଶ୍ୱରଙ୍କ ସ୍ୱେଚ୍ଛାକୃତ ଇନ୍ଦ୍ରିୟାସକ୍ତି ଦେଖାଯାଇନାହିଁ। ସର୍ବତ୍ର ଅଲଙ୍ଘନୀୟ ଦୈବୀଶକ୍ତିର ହିଁ ନିର୍ଦ୍ଦେଶ। ଓ୍ୱେଦିପସ୍ ଡେଲଫିର ଦୈବବାଣୀରୁ ପିତୃହନ୍ତା ଓ ମାତୃହରଣକାରୀ ହେବାର ଜାଣି ତାକୁ ଏଡ଼େଇ ଦେବାର ପ୍ରବଳ ଚେଷ୍ଟାକରି ବିଫଳ ହୋଇଛନ୍ତି। ଥିଏଷ୍ଟିସ୍ ନିଜର ଭାଇ ଏଟ୍ରିଭସଙ୍କ ହାତରୁ ନିଜର ପୁତ୍ରମାନଙ୍କର ମାଂସ ଖାଇ ଯେତେବେଳେ ପ୍ରତିହିଂସା ନେବାପାଇଁ ଅସ୍ଥିର ହୋଇ ଉଠିଛନ୍ତି, ଯେତେବେଳେ କନ୍ୟା ପେଲୋପିଆଙ୍କଠାରୁ ପୁତ୍ରୋତ୍ପାଦନ ପାଇଁ ଦୈବବାଣୀ ନିର୍ଦ୍ଦେଶ ଦେଇଛି। ମୀରା ଦେବୀ ଆଫ୍ରିଦିତିଙ୍କୁ ଉପଯୁକ୍ତ ସମ୍ମାନ ନ ଦେବାଦ୍ୱାରା ସେ କ୍ରୁଦ୍ଧା ହୋଇ ତାଙ୍କୁ ମୋହାଚ୍ଛନ୍ନ କରାଇ ନିଜର ପିତା ଥେୟାସ୍‌ଙ୍କ ପ୍ରତି ଆକୃଷ୍ଟ କରାଇଛନ୍ତି। ପୁଣି ପ୍ରତ୍ୟେକ କ୍ଷେତ୍ରରେ ଗଙ୍ଗେଶ୍ୱର ଏବଂ କୌଶଲ୍ୟାଙ୍କ ପରି ସମ୍ବନ୍ଧ ଜ୍ଞାନର ଅଭାବ। ଓ୍ୱେଦିପସ୍ ଏବଂ ଯୋକାଷ୍ଟା ପରସ୍ପରକୁ ମାତା ପୁତ୍ର ବୋଲି ଜାଣି ପାରିନାହାନ୍ତି। ପେଲୋପିଆ ସ୍ନାନ କରୁଥିବା ସମୟରେ ଥିଏଷ୍ଟିସ୍

କୌଶଲରେ ତାଙ୍କ ସହ ରମଣ କରିଥିବାରୁ ସେ ପିତା ବୋଲି ଚିହ୍ନି ପାରିନାହାନ୍ତି। କେବଳ ଖଡ୍‌ଗଟିକୁ ଛଡ଼ାଇ ନେଇଛନ୍ତି ଏବଂ ମୀରା ଅନ୍ଧକାର ରାତ୍ରିରେ ଥେୟାସ୍‌ଙ୍କ ଅଜ୍ଞାତରେ ନିଜର ମୋହାବିଷ୍ଟ ଯୌନକ୍ଷୁଧାକୁ ପରିତୃପ୍ତ ଅପରାଧର ଦୁର୍ଦ୍ଦମ ଗ୍ଲାନିରେ ପ୍ରତ୍ୟେକଟି ଚରିତ୍ର କ୍ଷୁବ୍‌ଧ ହୋଇ ତା'ର ପ୍ରତିଶୋଧ ନେଇଛନ୍ତି ଆତ୍ମଜିଘଂାସାରେ ଅଥବା ତତୋଽଧିକ ପୀଡ଼ାଦାୟକ ଅନ୍ୟ କେଉଁ ଉପାୟରେ। ଯୋକସ୍ତା ଏବଂ ପେଲୋପିଆ ଆତ୍ମହତ୍ୟା କରିଛନ୍ତି। ଓ୍ୱେଦପସ୍ ନିଜର ଆଖି ଖୋଲି ପକାଇଛନ୍ତି ଏବଂ ଥେୟାସ୍ ମୀରାକୁ ହତ୍ୟା କରିବାକୁ ଗୋଡ଼ାଇବା ବେଳେ ଦେବତାମାନେ ତାଙ୍କର କାତର ପ୍ରାର୍ଥନା ଶୁଣି ତାଙ୍କୁ ଗୋଟିଏ ବୃକ୍ଷରେ ପରିଣତ କରି ଦେଇଛନ୍ତି। ଏଣୁ ପ୍ରତ୍ୟେକ କ୍ଷେତ୍ରରେ କାବ୍ୟିକ ସତ୍ୟ, କାବ୍ୟିକ ନ୍ୟାୟ ଓ କାବ୍ୟିକ ଆଦର୍ଶ ନିଃସନ୍ଦେହରେ ସୁରକ୍ଷିତ; କିନ୍ତୁ ଆଶ୍ଚର୍ଯ୍ୟର କଥା, ଓଡ଼ିଆ ଭୂଇଁରେ ଗଙ୍ଗେଶ୍ୱର ଜାଣିଶୁଣି ଅନ୍ୟ କେଉଁ ଉଦ୍ଦେଶ୍ୟ ପ୍ରଣୋଦିତ ନ ହୋଇ କେବଳ ମାତ୍ର କନ୍ୟାର ଯୌବନ ମୋହରେ ବଳପୂର୍ବକ ତା ସହିତ ରମଣ କରିଛନ୍ତି ଏବଂ ସେ କନ୍ୟା ପୁଣି ଗର୍ଭବତୀ ହୋଇ ପୁତ୍ର ଜନ୍ମଦେବା ଅବଧି ସୁଦୀର୍ଘ ଦଶମାସ କାଳ ଜୀବନ ଧାରଣ କରି ରହିପାରିଛନ୍ତି। କେଉଁ ଆଶାରେ? ସମ୍ଭବତଃ ରାଧାନାଥ ଏ ପ୍ରଶ୍ନଟିର ଗୁରୁତ୍ୱ ଉପଲବ୍‌ଧି କରି ତା'ର ଉତ୍ତର ଦେବାର ଏକ କ୍ଷୀଣ ପ୍ରଚେଷ୍ଟା କରିଛନ୍ତି କୌଶଲ୍ୟାର ପ୍ରେତ ମୁହଁରେ

ଏତିକି ମାତର ଆଶା ଥିଲା ମନେ
ତୋ ଆଗେ ଏ ଦୁଃଖ ଗାଇ
କାଳସିନ୍ଧୁ ନୀରେ ପାପଭରା ଦେହ -
ତାକି ଦେବି ଭସାଇ ।[୧୨]

କିନ୍ତୁ ଏହା କେତେଦୂର ଆଶା ପଦବାଚ୍ୟ - ଯାହାପାଇଁ ଝିଅ ତା'ର "ପାପଭରା ଦେହକୁ" ନେଇ ଜଘନ୍ୟ ପିତାର ପୋନଃପୁନିକ ନାରକୀୟ ଅନୁରୋଧକୁ ସହ୍ୟକରି ଏ ଅନିର୍ଦ୍ଦିଷ୍ଟ କାଳ ପର୍ଯ୍ୟନ୍ତ ଅସୀମ ଧୈର୍ଯ୍ୟର ସହ ବଞ୍ଚିରହିବାର ଶପଥ ନେଲା ? କେତେଦୂର ବାସ୍ତବ ଏ କଥା ? ଖାଲି ସେତିକି ନୁହେଁ, ଗଙ୍ଗେଶ୍ୱର ଗୋଟିକ ପରେ ଗୋଟିଏ ଅମାନୁଷିକ ଲୀଳାର ବିଜୟକେତନ ଉଡ଼ାଇ ଚାଲିଛନ୍ତି ଏହି ଅସଂପୂର୍ଣ୍ଣ କାବ୍ୟରେ। ଏ କାବ୍ୟରେ ନ୍ୟାୟ କାହିଁ? ଆଦର୍ଶ କାହିଁ ? ସତ ବା କାହିଁ?

କେତେକ ସମାଲୋଚକ କହିପାରନ୍ତି - ପାର୍ବତୀ' କାବ୍ୟ ରଚନା ସମୟରେ ଜ୍ୟେଷ୍ଠପୁତ୍ର ଶଶିଭୂଷଣଙ୍କ ଦାରୁଣ ମୂର୍ଚ୍ଛାରୋଗ ଏବଂ ନାନାଦି ପାରିବାରିକ ଦୁଶ୍ଚିନ୍ତା ହେତୁ କବି ରାଧାନାଥ କାବ୍ୟଟିକୁ ପୂର୍ଣ୍ଣ କରି ପାରିନଥିଲେ; କିନ୍ତୁ ତାର ଅବଶିଷ୍ଟାଂଶ ଗଦ୍ୟାକାରରେ ଲେଖି ରଖିଥିଲେ, ପରେ ପଦ୍ୟାକାରରେ ପ୍ରକାଶ କରିବେ ବୋଲି। କିନ୍ତୁ ତା ଯଦି ହୁଏ, ଏଭଳି ଅସଂପୂର୍ଣ୍ଣ କାବ୍ୟ ପ୍ରକାଶ କଲେ କାହିଁକି ? କୌଣସି ଅସଂପୂର୍ଣ୍ଣ କାବ୍ୟର ଅବୁଝାମଣା ପାଇଁ ସମାଲୋଚନା ଦାୟୀ, ନା କବି ଦାୟୀ ?[୧୩]

ବର୍ତ୍ତମାନ ଦ୍ୱିତୀୟ ସମସ୍ୟା - ବାସ୍ତବବାଦ ବନାମ ଆଦର୍ଶବାଦ। ବିଗତ ଏକ ଶତାବ୍ଦୀ ଧରି ଇଉରୋପୀୟ ସାହିତ୍ୟରେ ବହୁ ସାହିତ୍ୟଗୋଷ୍ଠୀ ନିଜନିଜର ସାହିତ୍ୟ ସୃଷ୍ଟି ଏବଂ ପ୍ରକ୍ରିୟାକୁ କେନ୍ଦ୍ରକରି ବହୁ ମତବାଦର ସୃଷ୍ଟିକରି ଆସିଛନ୍ତି - ପେଟରଙ୍କ ସୌନ୍ଦର୍ଯ୍ୟବାଦ

(aestheticism) ଠାରୁ ସାର୍ତ୍ରେଙ୍କ ସ୍ଥିତିବାଦ (existentialism) ପର୍ଯ୍ୟନ୍ତ। ଏଗୁଡ଼ିକ ମଧ୍ୟରେ ବହୁ ବାଦ- ବିସମ୍ବାଦ। ପ୍ରତ୍ୟେକ ନିଜକୁ ହିଁ ସତ୍ୟରୂପରେ ପ୍ରତିଷ୍ଠିତ କରିବାକୁ ବ୍ୟଗ୍ର। ବାସ୍ତବବାଦ (realism) ଏବଂ ଆଦର୍ଶବାଦ (idealism) ମଧ୍ୟରେ ଆପାତଃ ଦୃଷ୍ଟିରୁ ସେହିପରି ପାର୍ଥକ୍ୟ ଦେଖାଯାଏ। ବାଲଜାକ୍ ବା ଆଲେକଜାଣ୍ଡାର ଡୁମା ଉନବିଂଶ ଶତାବ୍ଦୀର ଫରାସୀ ଜୀବନର ବିପର୍ଯ୍ୟସ୍ତ ସାଧାରଣ ଜନତାର ଘୃଣ୍ୟପ୍ରବାହ ପ୍ରତି ଦୃଷ୍ଟି ଦେଇଥିଲେ। ନରୱେର ନାଟ୍ୟକାର ଇବସେନ୍ ସମ୍ଭବତଃ ପ୍ରଥମଥରପାଇଁ ସିଫିଲିସ୍ ରୋଗାକ୍ରାନ୍ତ ଏକ ମଧ୍ୟବିତ୍ତ ପରିବାରର ନପୁଂସକକୁ ନାୟକର ସମ୍ମାନ ଦେଲେ। ଏସବୁ ଚରିତ୍ର କୌଣସି ପାଠକର ଅନୁକରଣୀୟ ନୁହନ୍ତି  କିମ୍ବା ସାହିତ୍ୟିକ ଏଠି କୌଣସି ସାମାଜିକ ଆଦର୍ଶ ସୃଷ୍ଟି କରିନାହାନ୍ତି। କିନ୍ତୁ ଭବଭୂତିଙ୍କ **ଉତ୍ତରରାମଚରିତ**ର ରାମ ଅଥବା ଗଙ୍ଗାଧରଙ୍କର **'ତପସ୍ୱିନୀ'** ରେ ସୀତା ଗୋଟିଏ ଗୋଟିଏ ଆଦର୍ଶ ଚରିତ୍ର। ଅତଏବ ଯେଉଁଠି ବାସ୍ତବ ଏବଂ ଆଦର୍ଶ ଚରିତ୍ର ମଧ୍ୟରେ ଦୁର୍ଭେଦ୍ୟ ପ୍ରାଚୀର, ସେଠି ନନ୍ଦକିଶୋର ରାଧାନାଥଙ୍କୁ ବାସ୍ତବବାଦୀ କହି ପୁଣି ତାଙ୍କଠାରୁ ଆଦର୍ଶର ଆଶା କରୁଛନ୍ତି କିପରି ? ଏ ପ୍ରସଙ୍ଗର ପୁଣି ଦୁଇଟି ଦିଗ – କାବ୍ୟିକ ଓ ସାମାଜିକ । ଏ ପ୍ରଶ୍ନ କାବ୍ୟିକ ସତ୍ୟ ସହିତ ଜଡ଼ିତ। ଅର୍ଥାତ କଥାବସ୍ତୁ ବା ଚରିତ୍ର ଯଦି ପୂର୍ବୋକ୍ତ ପ୍ରକାର କାର୍ଯ୍ୟ-କାରଣ ସଂପର୍କଯୁକ୍ତ  ହୋଇ ଯାହା ଘଟୁଛି ତାହା ନୁହେଁ, ପରନ୍ତୁ ଯାହା ଘଟିପାରେ ବା ଯାହା ଘଟିବା ଉଚିତ ସେହିଭଳି ହୁଏ, ତେବେ ତାହା ହେବ ସୟରବକ୍ଷ ବା ଆଦର୍ଶ। ଅପର ପକ୍ଷରେ, ଯେହେତୁ ତାହାହିଁ ସତ୍ୟ, ଈରବକ୍ଷ ବା ବାସ୍ତବ ମଧ୍ୟ ତାପାଇଁ ପ୍ରଯୁକ୍ତ। ଅତଏବ, ଇତିହାସ ବା ସମାଜ ଦୃଷ୍ଟିରୁ 'ବାସ୍ତବ' ହିଁ 'ଆଦର୍ଶ' (the real is the ideal) । ଅର୍ଥାତ୍ ସମାଜ ବା ଇତିହାସରେ 'ବାସ୍ତବ' ଏବଂ 'ଆଦର୍ଶ' ମଧ୍ୟରେ ଭେଦ ଥିବା ସ୍ଥଳେ, କାବ୍ୟିକ ଜଗତରେ ଏ ଦୁଇଟି ଏକ ଓ ଅଭିନ୍ନ। ୟୋବିସ୍ଥା, ପେଲୋପିଆ ଏବଂ ନନ୍ଦିକାର ଆତ୍ମହତ୍ୟା ଯେମିତି ବାସ୍ତବ, ସେମିତି ଆଦର୍ଶ; କିନ୍ତୁ ଅସଂପୂର୍ଣ୍ଣ କାବ୍ୟ ପାର୍ବତୀର ଗଙ୍ଗେଶ୍ୱର କିମ୍ବା କୌଶଲ୍ୟା କେହି ବାସ୍ତବ କିମ୍ବା ଆଦର୍ଶ ନୁହନ୍ତି।

ତୃତୀୟ ସମସ୍ୟା ହେଲା – ସମାଜର ଉନ୍ନୟନରେ ସାହିତ୍ୟିକର ଭୂମିକା। ଏ ବିଷୟରେ କିନ୍ତୁ ନନ୍ଦକିଶୋରଙ୍କର ସମାଲୋଚନା କବ୍ୟିକ ବା aesthetic ସ୍ତରକୁ ଉଠିପାରିନାହିଁ। ସେ ସାହିତ୍ୟିକକୁ ସମାଜର ଗୁର ଆଖ୍ୟା ଦେଇଛନ୍ତି। କିନ୍ତୁ କିଭଳି ଗୁରୁ ? ବିଦ୍ୟାଳୟର ଗୁରୁଭଳି, ନା, ଆଧାତ୍ମିକ ଗୁରୁଭଳି ? ହୋରାସଙ୍କଠାରୁ ମମ୍ମଟଙ୍କ ପର୍ଯ୍ୟନ୍ତ ସମସ୍ତ ପ୍ରାଚୀନ କାବ୍ୟଶାସ୍ତ୍ରଜ୍ଞ ସାହିତ୍ୟର ଏହି ଉପଦେଷ୍ଟାର ଭୂମିକାଟିକୁ ସ୍ୱୀକାର କରିଛନ୍ତି। କିନ୍ତୁ ତା'ର ଉପଦେଶ ହେଲା – "delightful teaching" ବା " କାନ୍ତା ସମ୍ମିତ ଉପଦେଶ।" ଧର୍ମଯାଜକଭଳି କାବ୍ୟ ଉପଦେଶ ଦିଏନା। କାବ୍ୟିକ ସତ୍ୟ ବା କାର୍ଯ୍ୟ – କାରଣ ସମ୍ପର୍କିତ କଥାବସ୍ତୁ ଓ ଚରିତ୍ରାଦିରୁ ସେ ସ୍ୱତଃ ଶିକ୍ଷାଲାଭ କରିଥାଏ। ରାମଙ୍କ କାର୍ଯ୍ୟର ସୁଫଳ ଦେଖି ରାମଙ୍କୁ ଅନୁକରଣ କରିବା ବା ରାବଣର କାର୍ଯ୍ୟର କୁଫଳ ଦେଖି ତାକୁ ପରିହାର କରିବାରେ ହିଁ ସେ ଶିକ୍ଷାଲାଭ କରେ। ନନ୍ଦକିଶୋର ଏ ସମ୍ବନ୍ଧରେ ସୁଷ୍ଠୁ ସଚେତନ ଥିବାର ଜଣାଯାଏ। କାବ୍ୟର ତିନୋଟି ଗୁଣ, ଯଥା – (୧) ପ୍ରାକୃତିକ ଶୋଭା ସଂଦର୍ଶନ ଓ ସମ୍ଭୋଗରେ ଅସାଧାରଣ ଶକ୍ତି, (୨) ବିଷୟର ଉପଯୁକ୍ତ କବିତାମୟୀ  ଭାଷା

ଏବଂ (୩) ବର୍ଣ୍ଣିତ ବା ଚିତ୍ରିତ ବିଷୟରେ ଭାବୁକ କବିଙ୍କ ହୃଦୟ ବା ଜୀବନ ଭାବ ପ୍ରତିଫଳନ - ସ୍ୱୀକାର କରି ସୌନ୍ଦର୍ଯ୍ୟବର୍ଣ୍ଣନାତ୍ମକ କବିତା (artistic ବା nondiactic poem) ବେଶି ହୃଦୟସ୍ପର୍ଶୀ ହୁଏ ବୋଲି ମତ ବ୍ୟକ୍ତ କରିଛନ୍ତି ଏବଂ ଏ ପ୍ରକାର କବିତା " କେବଳ ଭାବ ଓ କଳ୍ପନା ବଳରେ ସୌନ୍ଦର୍ଯ୍ୟପପାସୁ ହୃଦୟକୁ ଆନନ୍ଦରସରେ ଆର୍ଦ୍ରକରେ ଏବଂ ଅଲକ୍ଷ୍ୟ ଭାବରେ ତାହାକୁ ଉନ୍ନତ, ଉଦାର ଓ ସନାତନ ଜଗତରେ ଉର୍ଦ୍ଧ୍ୱତର ଗ୍ରାମକୁ ଘେନିଯାଏ" ବୋଲି ଉପଲବଧି କରିଛନ୍ତି [୧୪]। କିନ୍ତୁ ଏଭଳି ଉକ୍ତି ଶୁଣିବା ପରେ ପାଠକ ପୁନଶ୍ଚ ଏକ ଉକ୍ତି - "( ସୌନ୍ଦର୍ଯ୍ୟାତ୍ମକ) କବିତା ବିଶେଷ ଦକ୍ଷତାର ସହିତ ଲିଖିତ ନହେଲେ, ଆଦୌ ହୃଦୟଗ୍ରାହୀ ହୋଇପାରେ ନାହିଁ। ହେଲେ ଏହା ଅତି କୃତ୍ରିମ ହେବ... ପକ୍ଷାନ୍ତରରେ ଉପଦେଶ ଗର୍ଭକ କବିତା ଭାଷା ଓ ଭାବ ବୈଚିତ୍ର୍ୟରେ ଯେତେ ନିକୃଷ୍ଟ ହେଲେହେଁ ନୀତିର ଆବରଣ"[୧୫] ତଳେ ରହି ସ୍ୱୀୟ ମର୍ଯ୍ୟାଦା ରକ୍ଷା କରିପାରେ, ପୁଣି ନିରାଶ ହୋଇପଡେ। ଜଣାପଡ଼େ, ସତେଯେପରି ଉନବିଂଶ ଶତକର ରକ୍ଷଣଶୀଳ ଓଡ଼ିଆ ସମାଜର କଟାକ୍ଷକୁ ସମାଲୋଚକ ଡ଼ରିଯାଉଛନ୍ତି। ଲଳିତା ଓ ଯଯାତିର ପ୍ରାଗ୍‌ବୈବାହିକ ପ୍ରେମକାହାଣୀକୁ, ଏପରିକି ନନ୍ଦିକାର ଚୋଡଗଂଗଙ୍କ ପ୍ରତି ପ୍ରଗାଢ଼ ଆସକ୍ତିକୁ କେବଳ ରୂପଜ କହି ସାମାଜିକ ଦୃଷ୍ଟିରୁ ଅବୈଧ ବୋଲି ଘୋଷଣା କରୁଛନ୍ତି - "ଲଳିତା ଓ ନନ୍ଦିକା ଯାହା କଲେ, ଆଧୁନିକ ରାଜକନ୍ୟା ତାହା କଲେ ଜଗତ କ'ଣ କହିବ ?" [୧୬] କିନ୍ତୁ କବି କ'ଣ ଜଗତକୁ ଡରିବା ଲୋକ? ସେ ଡରନ୍ତି କେବଳ ସତ୍ୟର ଅପଳାପକୁ। କବି ସତ୍ୟଦ୍ରଷ୍ଟା ଏବଂ ସତ୍ୟବକ୍ତା। କୌଣସି ରାଜକନ୍ୟା କିମ୍ବା ସମାଜ କିମ୍ବା ସମଗ୍ର ଜଗତ ପାଇଁ ଗୋଟାଏ ଅନୁଶାସନ ପର୍ବର ପ୍ରବକ୍ତା ସେ ନୁହନ୍ତି। କିମ୍ବା କୌଣସି ସାହିତ୍ୟ କେତେଗୁଡ଼ିଏ ସାମାଜିକ ଆଦର୍ଶର ପ୍ରତୀକ, ମୂର୍ତ୍ତି ବା ପ୍ରତିନିଧିର ସ୍ରଷ୍ଟା ମଧ୍ୟ ନୁହନ୍ତି। ନନ୍ଦକିଶୋରଙ୍କ ସାହିତ୍ୟ-ସମାଲୋଚନାର ଏହି ଅଂଶରେ ସାହିତ୍ୟିକ ଓ ସମାଜ-ସଂସ୍କାରକ ମଧ୍ୟରେ ପ୍ଲାଟୋନିକ ଦ୍ୱନ୍ଦ୍ୱ ଦେଖା ଦେଇଛି। ପ୍ଲାଟୋ ଯେପରି ହେଲେନିକ୍ ଗ୍ରୀସର ବିଦ୍ୟାର୍ଥୀମାନଙ୍କୁ ବିପଧଗାମୀ ନ କରାଇବା ପାଇଁ ପାଠ୍ୟକ୍ରମରୁ ହୋମରଙ୍କ "ଇଲିଆଡ୍" ବା ସେଫୋକ୍ଲିସଙ୍କ 'ରାଜା ଓ୍ୱେଦିପସ୍'କୁ ବହିଷ୍କାର କରିଛନ୍ତି, ନନ୍ଦକିଶୋର ସେହିପରି ଗଙ୍ଗାଧରଙ୍କ 'କୀଚକବଧ' ଯୁବକ-ଯୁବତୀ ବା କିଶୋର-କିଶୋରୀମାନଙ୍କୁ ବିପଥଗାମୀ କରାଇପାରେ ବୋଲି ଆଶଙ୍କା କରିଛନ୍ତି। ନର-ନାରୀର ପ୍ରଣୟକୁ କେବଳ 'ରୁପଜ' କହି ତଦବ୍ୟତୀତ ଅନ୍ୟ କେଉଁ "ନିର୍ମଳ ସଂଯତ ପ୍ରଣୟ ଚିତ୍ରଦ୍ୱାରା [୧୭] ପବିତ୍ରୀକୃତ କାବ୍ୟ" ର ସନ୍ଧାନ କରିଛନ୍ତି। ମୋଟାମୋଟି ଏ କ୍ଷେତ୍ରରେ ନନ୍ଦକିଶୋର ସମାଜସଂସ୍କାରାତ୍ମକ ଏବଂ ସୌନ୍ଦର୍ଯ୍ୟାତ୍ମକ ସାହିତ୍ୟର ଟଣାଘୋଷଡାରେ ଶେଷକୁ ସମାଜସଂସ୍କାର ଆଡ଼କୁ ମୁହାଁଇ ସାହିତ୍ୟ ଓ ସାମାଜିକତା ମଧ୍ୟରେ ଭାରସାମ୍ୟ ରକ୍ଷା କରି ନପାରି ବାଟବଣା ହେଇଛନ୍ତି।

ନିଜର ଯୁକ୍ତିକୁ ସମର୍ଥନ କରିବା ପାଇଁ ନନ୍ଦକିଶୋର କାଳିଦାସଙ୍କର "ଅଭିଜ୍ଞାନଶାକୁନ୍ତଳମ୍" ର ଉଦାହରଣ ଦେଇଛନ୍ତି। ଦୁଷ୍ମନ୍ତ ଓ ଶକୁନ୍ତଳାଙ୍କର ପ୍ରାଗବୈବାହିକ ପ୍ରୀତି ବା ଗାନ୍ଧର୍ବ ବିବାହ ପ୍ରତି କଟାକ୍ଷପାତ ପୂର୍ବକ ଉଭୟଙ୍କ ମଧ୍ୟରେ ଦୈବ- ବିଚ୍ଛେଦ ସୃଷ୍ଟିକରି "ହାତେ ହାତେ ଦଣ୍ଡବିଧାନ କରିଛନ୍ତି" ଓ ଶକୁନ୍ତଳା ଦୁଷ୍ମନ୍ତଙ୍କଦ୍ୱାରା ରାଜବାଟୀରେ ପ୍ରତ୍ୟାଖ୍ୟାତା ହେବାପରେ ଶାର୍ଙ୍ଗରବ ମୁଖରେ କବି ଯେପରି ସାବଧାନ ବାଣୀ ଶୁଣାଇଛନ୍ତି। କିନ୍ତୁ "ଯଯାତିକେଶରୀ"ଙ୍କରେ ସେଭଳି କିଛି ନାହିଁ; ବରଂ ଦୈବୀ କୃପାଦ୍ୱାରା ନାୟକ ନାୟିକା ବିପଦରୁ ରକ୍ଷା ପାଇ ପରେ ବିବାହ କରିଛନ୍ତି। ଏହା ଅନୁଚିତ ଏବଂ ଅସାମାଜିକ।

କିନ୍ତୁ ସମାଲୋଚକ ଭୁଲିଯାଉଛନ୍ତି ଯେ, ସମାଜକୁ ଶିକ୍ଷାଦେବା ପାଇଁ ବା ଗାନ୍ଧର୍ବବିବାହକୁ ଅସିଦ୍ଧ ବା ଅସାମାଜିକ ପ୍ରତିପନ୍ନ କରିବା ପାଇଁ କାଳିଦାସ ଦୁର୍ବାସାର ଅଭିଶାପ ସଂଯୋଜନ କରିନାହାନ୍ତି। ସେକାଳରେ ଆଠ ପ୍ରକାର ବିବାହ ମଧ୍ୟରୁ ଗାନ୍ଧର୍ବବିବାହ ମୁଖ୍ୟ ଥିଲା ଏବଂ ସଂସ୍କୃତିସମ୍ପନ୍ନ ନାଗରିକମାନେ ଏହାକୁ ଆଦରର ସହ ଗ୍ରହଣ କରୁଥିଲେ। ତା ହୋଇ ନଥିଲେ ତ୍ରିକାଳଜ୍ଞ ଋଷିଗଣ ଏହାକୁ ସାଦର ସମର୍ଥନ କରିନଥାନ୍ତେ। ଶାର୍ଙ୍ଗରବ କବିଙ୍କର ପ୍ରତିନିଧି ନୁହେଁ; ବରଂ ମହର୍ଷି କଣ୍ୱ ହିଁ ସମାଜ ବା କବିଙ୍କର ପ୍ରତିନିଧି। ଶାର୍ଙ୍ଗରବ ଏକଦେଶଦର୍ଶୀ ଅପରିପକ୍ୱ ବାଳ-ସନ୍ନ୍ୟାସୀ। ସଂସାରର ବ୍ୟାପକତା ସମ୍ବନ୍ଧରେ ନୀରବ ଥିଲେ; କାରଣ ସେ ଜାଣିଥିଲେ ସେସବୁ ସାମୟିକ ମାତ୍ର। ଦୁର୍ବାସାଙ୍କ ଅଭିଶାପ ସଂଯୋଜନର ମୂଳ ଲକ୍ଷ୍ୟ ସାମାଜିକ ଶିକ୍ଷା ଦେବା ନୁହେଁ। **ମହାଭାରତ** କିମ୍ବା **ଭାଗବତ** ପ୍ରଭୃତି ଇତିହାସ ଗ୍ରନ୍ଥରେ ଥିବା ଦୁଷ୍ମନ୍ତ ଚରିତ୍ରର କାମୁକତା କିମ୍ବା ଲମ୍ପଟୀ ଓ ମିଥ୍ୟାବାଦିତା ଦୂରକରିବା। ପାଠକ 'ଅଲକ୍ଷ୍ୟ' ରେ (ନନ୍ଦକିଶୋରଙ୍କ ଭାଷାରେ) ଅବଶ୍ୟ ଏଥିରୁ ଅନ୍ୟ ପ୍ରକାର ଶିକ୍ଷାଲାଭ କରିପାରେ; କିନ୍ତୁ କବିଙ୍କର ତାହା ଲକ୍ଷ୍ୟ ନୁହେଁ। ତା' ଛଡା, ଦୁଷ୍ମନ୍ତ ଓ ଶକୁନ୍ତଳାଙ୍କର ପ୍ରେମ କ'ଣ 'ରୂପଜ' ନୁହେଁ? ନର-ନାରୀର ପ୍ରଣୟ ମାତ୍ରେଇ 'ରୂପଜ'। ଏହି 'ରୂପଜ' ପ୍ରଣୟ ହିଁ ରୂପାତୀତରେ ପରିଣତ ହୁଏ। ସେଇଥିପାଇଁ ତ ଭଗବାନ ବ୍ୟାସଦେବ **ଶ୍ରୀମଦଭାଗବତର ରାସପଞ୍ଚାଧ୍ୟାୟ**ରେ କୃଷ୍ଣ ଏବଂ ଗୋପୀମାନଙ୍କର ଅଲୌକିକ ପ୍ରେମରେ ନିବିଡ ଶରୀର ସମ୍ପର୍କର ଆବଶ୍ୟକତା ଦେଖାଇଛନ୍ତି। ଯେଉଁ ନନ୍ଦିକା ପ୍ରୀତିପାଇଁ ପିତାଙ୍କୁ ମଧ୍ୟ ହରାଇପାରେ, ସେ କଣ ଆଦର୍ଶ ପ୍ରଣୟିନୀ ଗୌରବ ଦାବୀ କରେନା? ସେହିଭଳି କେଦାରଗୌରୀଙ୍କର ପ୍ରଣୟ। ଯଯାତି ଓ ଲଳିତାର ପ୍ରେମ ମଧ୍ୟ ସେହି ଦୃଷ୍ଟିରୁ ଆଦର୍ଶ। କାରଣ ଯଯାତି ଗଙ୍ଗେଶ୍ୱର ଭଳି ଲଳିତାକୁ କେବଳ ଧର୍ଷଣ କରିବାକୁ ଚାହିଁ ନ ଥିଲା। ରୂପ ମାଧ୍ୟମରେ ଦୁହେଁ ଯେତେବେଳେ ରୂପାତୀତ ସ୍ତରକୁ ଯାଇ ପରସ୍ପରର ହୃଦୟକୁ ଅଧିକାର କରି ସାରିଥିଲେ, ସେଠି ଦୁହିଁଙ୍କର ମିଳନରେ ଜନ୍ମିଥିବା ବାଧା ଯଦି ଦୈବୀବଳରେ ଅତିକ୍ରାନ୍ତ କରିହେଲା, ସେଠି ଅବାସ୍ତବତା ବା ଅନୌଚିତ୍ୟ ରହିଲା କେଉଁଠି?

ତିନି

ଆଉ ମାତ୍ର ଗୋଟିଏ ବିଷୟର ଉଲ୍ଲେଖପୂର୍ବକ ଏହି ପ୍ରବନ୍ଧର ଉପସଂହାର କରାଯିବ। ତାହା ହେଲା, ନନ୍ଦକିଶୋରଙ୍କର କାବ୍ୟିକ ଭାଷା (poetic diction) ସମ୍ବନ୍ଧରେ ମନ୍ତବ୍ୟ। ତାଙ୍କ ମତରେ, ରାୟ କବିଙ୍କ ଭାଷା ଟିକିଏ କଠିନ, କିନ୍ତୁ କର୍କଶ ନୁହେଁ। କଠିନତା ଏବଂ କର୍କଶତା ଏକ କଥା ନୁହେଁ। ସଂସ୍କୃତ ସମାଲୋଚକମାନେ ଭାରବୀଙ୍କ ଭାଷା ସମ୍ବନ୍ଧରେ ଠିକ୍ ଏହି କଥା ହିଁ କହିଛନ୍ତି। କବିଙ୍କର ଭାଷା ନାରିକେଳ ଫଳ ପରି। ଉପରେ କଠିନ, କିନ୍ତୁ ଭିତରେ ଅତୀବ ସୁକୋମଳ ଏବଂ ସରସ। ରାୟ କବିଙ୍କ ଭାଷା କିନ୍ତୁ ଭଞ୍ଜକବିଙ୍କ ଭାଷାଠାରୁ ସହଜ।

> ଉଚ୍ଚଶ୍ରେଣୀସ୍ଥ ସାହିତ୍ୟର ଭାଷା ଟିକିଏ କଠିନ। ଉଚ୍ଚଶ୍ରେଣୀସ୍ଥ ସାହିତ୍ୟର ଭାଷା ଏତାଦୃଶ ହେବା ସର୍ବଦା ବାଞ୍ଛନୀୟ। ତାହା ନୋହିଲେ, ପାଞ୍ଚଥର ଦଶଥର, ପାଠପରେ ଭାଷା ପାଠକର ଆୟତ୍ତ ହେଲେ ପୁନଃ ପଠନରେ ବିତୃଷ୍ଣା ଜନ୍ମେ। ଭାଷାରୁ ଆସକ୍ତି ମୋହ ଚାଲିଯାଏ। କଠିନ ଶବ୍ଦାଡ଼ମ୍ବର ଭେଦକରି ପାଠକ ଯେଉଁ ରସ ଲାଭକରନ୍ତି, ସରଳ ଶବ୍ଦଯୁକ୍ତ ଅନାୟାସଲବ୍ଧ ରସରେ ସେ ତୃପ୍ତି, ଆହ୍ଲାଦ ତାଙ୍କୁ ମିଳେ ନାହିଁ। [୧୭]

ଆୟାସଲବ୍ଧ ଆନନ୍ଦତର ପ୍ରଗାଢ଼ତର...” କିନ୍ତୁ ସମାଲୋଚକ ଏଇ ‘ଟିକିଏ କଠିନ’ ଦ୍ୱାରା କ’ଣ ବୁଝାଇବାକୁ ଯାଇଛନ୍ତି, ତାହା ସ୍ପଷ୍ଟ ହେଉ ନାହିଁ। ଭଞ୍ଜଙ୍କ ଭାଷା ଅତି କଠିନ, କିନ୍ତୁ ରାୟଙ୍କ ଭାଷା ‘ଟିକିଏ କଠିନ’ ବୋଲି କହିଦେଲେ କାବ୍ୟିକ ଭାଷା ସମ୍ବନ୍ଧରେ କୌଣସି ଧାରଣା ହୁଏନା। ଏ ଦୃଷ୍ଟିରୁ ଭଞ୍ଜଙ୍କୁ ରାୟଙ୍କ ଅପେକ୍ଷା ନିମ୍ନସ୍ଥାନ ଦିଆଯିବ କି ନା, ସେସମ୍ବନ୍ଧରେ ଯେଉଁ ଗୁରୁତର ପ୍ରଶ୍ନ ଉଠୁଛି, ତାହା ନନ୍ଦକିଶୋରଙ୍କ ‘ଟିକିଏ କଠିନ’ ମାପକାଠିଦ୍ୱାରା ସମାଧାନ କରିବା ଅସମ୍ଭବ। ରୋମାଣ୍ଟିକ୍ ଇଂରାଜୀ କବିମାନଙ୍କଦ୍ୱାରା ପ୍ରଭାବିତ ହୋଇ ସେ ସ୍ୱୀକାର କରିଛନ୍ତି ଯେ, ସରଳ ଭାଷାରେ ଉନ୍ନତ କାବ୍ୟ ରଚନା କରାଯାଇପାରେ। କିନ୍ତୁ ସେହି ସରଳ ଭାଷା ବା ‘ଲୋକଭାଷା’ ନେଇ ୱାର୍ଡସ୍‌ୱାର୍ଥ ଏବଂ କେଲରିଜ୍‌ଙ୍କ ମଧ୍ୟରେ ଯେଉଁ ବାଦାନୁବାଦ, ତାହା ସହିତ ନନ୍ଦକିଶୋର ପରିଚିତ ଥିବାପରି ଜଣା ପଡ଼େନାହିଁ। ‘ଲୋକଭାଷା’, ‘ସରଳଭାଷା’, ‘ମାତୃଭାଷା’ ଏବଂ ‘କାବ୍ୟିକଭାଷା’ ସମ୍ବନ୍ଧରେ ତାଙ୍କର ସୂକ୍ଷ୍ମ ଅନୁଧ୍ୟାନ ଥିବାପରି ଜଣାଯାଏନାହିଁ। କାରଣ ସେ ସାଧୁ ସଂସ୍କୃତ ଭାଷାରେ କାବ୍ୟ ପଦ୍ଧତିର ବିପକ୍ଷରେ ଯାଇ “ମାତୃଭାଷାରେ” କାବ୍ୟ ରଚନାକୁ ଶ୍ରେୟସ୍କର ଜାଣିଛନ୍ତି, କିନ୍ତୁ ମାତୃଭାଷା’, ‘ସରଳଭାଷା’ ଓ ‘ଲୋକଭାଷା’ ମଧ୍ୟରେ କୌଣସି ପାର୍ଥକ୍ୟ ଦେଖାଇ ନାହାନ୍ତି। ବାଗେସ୍, ଗୋଲ୍‌ଡସ୍ମିଥ୍, ସ୍କଟ୍ ଓ ୱାର୍ଡସୱାର୍ଥଙ୍କୁ “ପ୍ରାକୃତିକ ରଚନାଭଙ୍ଗୀ” (Natural style) ଦୃଷ୍ଟିରୁ ଗୋଟିଏ ଶ୍ରେଣୀଭୁକ୍ତ କରାଇ ବିଚାର ବିଭ୍ରାଟ ସୃଷ୍ଟି କରିଛନ୍ତି ଏବଂ ଭାଷା (diction) ଓ ଶୈଳୀ (style) କୁ ଖୁବ୍ ସମ୍ଭବ ଗୋଟିଏ ଅର୍ଥରେ ଗ୍ରହଣ କରିଛନ୍ତି ଅଥବା ତା ମଧ୍ୟରେ ସୂକ୍ଷ୍ମ ତତ୍ତ୍ୱର ଉପଲବ୍ଧି କରିନାହାନ୍ତି।

ରାଧାନାଥଙ୍କ କାବ୍ୟରେ ସଂସ୍କୃତ ଅର୍ଥ ସହିତ ତଦ୍‌ଭବ ତଥା ଦେଶଜ ଶବ୍ଦର ପ୍ରୟୋଗକୁ ସମାଲୋଚକ ସ୍ୱାଗତ ଜଣାଇଛନ୍ତି। କାରଣ ତାଙ୍କ ମତରେ ଏତଦ୍‌ଦ୍ୱାରା ଓଡ଼ିଆ ଭାଷାର ପରିପୁଷ୍ଟି ସାଧନ ହୋଇଛି। ‘ମିଲଟନ୍ ପ୍ରଭୃତି କବିମାନେ ଗ୍ରୀକ୍ ଓ ଲାଟିନ୍ ଅର୍ଥ ସହିତ ସାକ୍‌ସନ୍ ଶବ୍ଦର ବିନ୍ୟାସ କରି ଭାଷାକୁ ଋଦ୍ଧିମନ୍ତ କରିଛନ୍ତି। ତେଣୁ ରାଧାନାଥଙ୍କର ଏହି ପ୍ରତିଷ୍ଠା ସମାଲୋଚକମାନଙ୍କ ବିଷଦୃଷ୍ଟିରେ ନ ପଡ଼ି ବରଂ ଶୁଭଦୃଷ୍ଟିରେ ପଡ଼ିବା ଉଚିତ; କିନ୍ତୁ ବାସ୍ତବିକ ଏହି ଶୁଦ୍ଧ ଓ କଥିତଭାଷାର ମିଶ୍ରଣ ପଦ୍ଧତି ରାଧାନାଥଙ୍କର ତ ନୂଆ ନୁହେଁ। ଭଞ୍ଜ, ଦୀନକୃଷ୍ଣ ଏବଂ ଅଭିମନ୍ୟୁ ତଥା ବଳଦେବ ପ୍ରଭୃତି କବିଙ୍କ ଭାଷାରେ ଏ ପ୍ରକାର ‘ଦିବ୍ୟାଦିବ୍ୟ’ ବା ‘ମଣିପ୍ରବାଳ’ ଭାଷାର ବହୁଳ ପ୍ରୟୋଗ ଦେଖାଯାଇଛି : ରାଧାନାଥଙ୍କୁ ଏ ଉଦ୍ୟମର ସ୍ରଷ୍ଟା କୁହା ନ ଯାଇ ସମର୍ଥକ ତଥା ପ୍ରଚାରକ କହିଲେ ଖୁବ୍ ସମ୍ଭବ ଅଧିକ ଉପଯୁକ୍ତ ହେବ। ଫଳକଥା - କବ୍ୟିକ ଭାଷା ସମ୍ବନ୍ଧରେ ନନ୍ଦକିଶୋରଙ୍କ ସମାଲୋଚନାରୁ କୌଣସି ତତ୍ତ୍ୱର ସନ୍ଧାନ ପାଇବା କଷ୍ଟକର।

ଟୀକା ଓ ଟିପ୍‌ପଣୀ

(୧) ଆ: କା :, ପୃ: ୨୮ (୨) ଆ: କା: ପୃ: ୪୬-୪୭ (୩) ନ: ଗ୍ର:, ପୃ:୯୬୬-୯୬୭ (୪) ନ: ଗ୍ର:, ପୃ: ୯୬୭ (୫) ନ: ଗ୍ର:, ପୃ: ୯୬୫ (୬) ଆ:କା: ପୃ: ୧୫୨ (୭) ନ: ଗ୍ର:, ପୃ: ୯୭୩ (୮) ନ: ଗ୍ର:, ପୃ: ୯୭୩ (୯) ମାଦଳା ପାଞ୍ଜି, ପୃ: ୨୩-୨୪ (୧୦) ଓଭିଡ୍, ପୃ: ୨୩୩-୩୮ (୧୧) Rose, H.J. ଦେଖନ୍ତୁ (୧୨) ରା:ଗ୍ର:, ପୃ: ୧୩୧ (୧୩) ତାଛଡ଼ା ଆଉ ଗୋଟିଏ କଥା - ନନ୍ଦକିଶୋରଙ୍କ ସମାଲୋଚନା ପ୍ରକାଶିତ ହେଲା ଖ୍ରୀ: ୧୯୦୩ ମାଘ ସଂଖ୍ୟା “ଉତ୍କଳ

ସାହିତ୍ୟ'ରେ। ତା'ର ପ୍ରାୟ ପାଞ୍ଚବର୍ଷ ପରେ ରାଧାନାଥଙ୍କର ଦେହାନ୍ତ ହେଲା ୧୯୦୮ ମସିହା ଚୈତ୍ର ମାସରେ। ଏହି ଦୀର୍ଘ ପାଞ୍ଚ ବର୍ଷ ମଧ୍ୟରେ ବହୁ ବିରୁଦ୍ଧ ମନ୍ତବ୍ୟରୁ ରକ୍ଷା ପାଇବା ପାଇଁ ସେ ନିଜେ କିଛି ସ୍ୱୀକାରୋକ୍ତି ଅନ୍ତତଃ କରିପାରିଥାନ୍ତେ କିମ୍ବା ସମାଲୋଚନାର ଗୁରୁତ୍ୱ ବୁଝି ନିଜର ସେହି ଗଦ୍ୟାଂଶଟିକୁ ପ୍ରକାଶ କରି ପାରିଥାନ୍ତେ। ତାଙ୍କର ଦେହାନ୍ତର ପାଞ୍ଚବର୍ଷ ପରେ ୧୯୧୩ ମସିହା ଭାଦ୍ରବ ମାସରେ "ରାଧାନାଥ ଗ୍ରନ୍ଥାବଳୀ"ର ଦ୍ୱିତୀୟ ସଂସ୍କରଣରେ ଶଶିଭୂଷଣ ରାୟ ସେହି ଗଦ୍ୟାଂଶଟିକୁ ପ୍ରକାଶ କଲେ। ସେ ଅଂଶଟି ପୁଣି ରାଧାନାଥଙ୍କ ଟିପାଖାତାର ଶୈଳୀରେ ଲିଖିତ ନ ହୋଇ ଅନ୍ୟ ପୂର୍ଣ୍ଣାଙ୍ଗ ଗଦ୍ୟ ରଚନାର ଶୈଳୀରେ ଲେଖା ଏକଖଣ୍ଡ ଗଳ୍ପ ପରି ମନେହୁଏ। ଅସଂପୂର୍ଣ୍ଣ କାବ୍ୟକୁ ପୂର୍ଣ୍ଣତା ଦେବାପାଇଁ କବି କେତେଗୁଡିଏ ଟିପ୍ପଣୀ ବା 'ପଏଣ୍ଟ' ଲେଖିରଖି ପାରିଥାନ୍ତେ ସ୍ୱୀୟ 'ଟୀପାଖାତା' ଶୈଳୀରେ। କିନ୍ତୁ ତା ନକରି ଏପରି ଏକ ପୂର୍ଣ୍ଣାଙ୍ଗ ଶୈଳୀରେ ଲେଖିବାର କାରଣ କ'ଣ? ଯଦିବା ଅସୁବିଧା ବଶତଃ ଆଉ କାବ୍ୟରୂପ ନ ଦେଇ ଅବିଶିଷ୍ଟାଂଶ ଗଦ୍ୟରେ ପ୍ରକାଶ କରିବା ତାଙ୍କର ଇଚ୍ଛା ଥିଲା, ତେବେ ତ ସେ ଜୀବଦ୍ଦଶାରେ ତାହା କରି ପାରିଥାନ୍ତେ। ଯେଉଁଟା କି ତାଙ୍କର ନିହାତି ଆବଶ୍ୟକ ଥିଲା। ଏ ସବୁର ସନ୍ଦେହ ମୋଚନର ଦାୟିତ୍ୱ ଐତିହାସିକମାନଙ୍କ ଉପରେ ନ୍ୟସ୍ତ ହେଲା। (୧୪) ନ: ଗ୍ର:, ପୃ - ୧୦୮୮ (୧୫) ନ: ଗ୍ର: ପୃ-୧୦୮୮(୧୬) ନ: ଗ୍ର: ପୃ-୯୭୩ (୧୭) ନ:ଗ୍ର:ପୃ: ୧୧୨୪ (୧୮) ନ:ଗ୍ର:, ପୃ-୯୭୧।

**ସହାୟକ ଗ୍ରନ୍ଥସୂଚୀ**

ବଳ, ହେମନ୍ତ କିଶୋର ଓ ବସନ୍ତ କିଶୋର (ସଂପାଦିତ),(୧୯୬୭) **ନନ୍ଦ କିଶୋର ଗ୍ରନ୍ଥାବଳୀ**, କଟକ, ଫ୍ରେଣ୍ଡସ ପବ୍ଲିସରସ୍ (ନ:ଗ୍ର:)

**ରାଧାନାଥ ଗ୍ରନ୍ଥାବଳୀ** (୧୯୬୦), କଟକ : କଟକ ଟ୍ରେନିଂ କମ୍ପାନୀ (ନ:ଗ୍ର) କଟକ,

ମହାନ୍ତି, ଆର୍ତ୍ତବଲ୍ଲଭ (ସଂପାଦିତ)(୧୯୬୯), **ମାଦଳାପାଞ୍ଜି**, ଭୁବନେଶ୍ୱର : ଉତ୍କଳ ବିଶ୍ୱବିଦ୍ୟାଳୟ,

ଶୁକ୍ଳ, ଅନନ୍ତ ଚରଣ (ଅନୂଦିତ ଓ ଆଲୋଚିତ)(୧୯୬୯) **ଆରିଷ୍ଟୋଟ୍‌ଲଙ୍କ କାବ୍ୟତତ୍ତ୍ୱ**, (ଆ:କା:), କଟକ : ଫ୍ରେଣ୍ଡସ ପବ୍ଲିସରସ୍,

Adams. Hazard. (1969), *The TuterstsofCristicism*, N. York,

Frye, Northrop. (1957), *Anatomy of Criticism*, New Jarsey,

Ovid, **Metamophosis**. (1970), Penguin Classics,

Preminger, Alex, ed. (1978), *Princeton Encyclopaedia of Poetry and Poetics*, N. York,

Rose, H.J. ( 1964), *A Hand Book of Greek Mythology*, London,



୧୪ ମେ, ୧୮୮୨- ୧୦ ଏପ୍ରିଲ,୧୯୨୪

ଓଡ଼ିଆ ସାହିତ୍ୟରେ ପଣ୍ଡିତ ମୃତ୍ୟୁଞ୍ଜୟ

ନଟବର ସାମନ୍ତରାୟ

ଏକ

ପ୍ରବନ୍ଧପାଠ ( ୧୯୦୭ ସାଲ) ର 'ଉଇଲିୟମ ହଣ୍ଟର' ନାମକ ପ୍ରବନ୍ଧରେ ପଣ୍ଡିତ ମୃତ୍ୟୁଞ୍ଜୟ ରଥ ଲେଖିଅଛନ୍ତି,

> ହଣ୍ଟରଙ୍କ କର୍ମମୟ ଜୀବନ ଆଲୋଚନା କରି ଆମ୍ଭେମାନେ ବର୍ତ୍ତମାନ ଏହା କହିପାରୁଁ ଯେ, ତାଙ୍କ ସମାନ ମତିମାନ ଏବଂ କର୍ମପ୍ରାଣ ଲୋକ ପୃଥିବୀରେ ଅତି ବିରଳ ଲକ୍ଷିତ ହୁଅନ୍ତି। ଲୋକ କାର୍ଯ୍ୟକ୍ଷେତ୍ରରେ ସ୍ୱଗୁଣ ବଳରେ କିପରି ଅଗ୍ରସର ହୋଇ ମହତ୍ତର କର୍ମମାନ ସଂପାଦନ କରିପାରେ, ତହିଁର ସେ ଜଣେ ଆଦର୍ଶ। ତାହାଙ୍କୁ ଯେଉଁମାନେ ଭଲକରି ଜାଣନ୍ତି,ତନ୍ମଧ୍ୟରୁ ଅନେକେ କହନ୍ତି, ତାଙ୍କର ଗଭୀର ପାଣ୍ଡିତ୍ୱ ନଥିଲା; କିନ୍ତୁ ଅନ୍ୟର ପାଣ୍ଡିତ୍ୟକୁ ସେ ପାଠକ ସମାଜ ସମ୍ମୁଖରେ ମନୋହର ବେଶରେ ଉପସ୍ଥାପିତ କରିପାରୁଥିଲେ। ଅନେକେ ତାହାଙ୍କୁ ଉଚ୍ଚଶ୍ରେଣୀର ଐତିହାସିକ ବୋଲି ମଧ୍ୟ ସ୍ୱୀକାର କରନ୍ତି ନାହିଁ। କିନ୍ତୁ ସେ ଯାହାହେଉ, ସେ ପ୍ରଗାଢ଼ ଅଧ୍ୟବସାୟ ଓ ଗବେଷଣା ବଳରେ ଦଶଜଣକର କର୍ମ କରିଅଛନ୍ତି। ତତକୃତ ପ୍ରତ୍ୟେକ ପୁସ୍ତକରେ ଶ୍ରମଶୀଳତା,ବୁଦ୍ଧିମତା ଏବଂ ରଚନା-ନୈପୁଣ୍ୟର ପରିଚୟ ମିଳେ।

ଏଇ ଉଦ୍ଧୃତି ଭିତରୁ କେବଳ 'ହଣ୍ଟର' ନାମଟି କାଢ଼ିନେଇ ତାହା ସ୍ଥଳରେ ପଣ୍ଡିତ ମୃତ୍ୟୁଞ୍ଜୟଙ୍କ ନାମଟି ରଖିଦେଲେ, ତାହା ଯେଉଁ ରୂପ ଆହରଣ କରିବ, ତାହାହିଁ ହେଉଛି ପଣ୍ଡିତ ମୃତ୍ୟୁଞ୍ଜୟଙ୍କ ସମସ୍ତ ଅବଦାନର ସର୍ବଶ୍ରେଷ୍ଠ ପରିଚୟ। ଓଡ଼ିଆ ସମାଲୋଚନା ସାହିତ୍ୟର ଆଦି ଯୁଗରେ ଯେଉଁ କେତେ ଜଣ କ୍ଷଣଜନ୍ମା ସାଧକ, ଯୁଗପୁରୁଷ ଆବିର୍ଭାବ ଲାଭ କରି ଓଡ଼ିଆ ସମାଲୋଚନା ସାହିତ୍ୟର ମୂଳଭିତ୍ତି ନିର୍ମାଣରେ ଆତ୍ମନିୟୋଗ କରିଥିଲେ, ପଣ୍ଡିତ ମୃତ୍ୟୁଞ୍ଜୟ ହେଉଛନ୍ତି ସେମାନଙ୍କ ମଧ୍ୟରୁ ଅନ୍ୟତମ। ପ୍ରଗାଢ଼ ଅଧ୍ୟବସାୟ ଓ ମୌଳିକ ଗବେଷଣା ବଳରେ ସେ ଯେପରି ନିଜେ ଏକା ଦଶଜଣକଙ୍କ କାମ କରିପାରିଛନ୍ତି, ତାହା ଏକାନ୍ତଭାବେ ବିସ୍ମୟକର। ଏଇ ମତିମାନ କର୍ମପ୍ରାଣ ସାଧକର ସାଧନା-ପ୍ରସୂତ ସମସ୍ତ ସିଦ୍ଧି ଭିତରେ ହୁଏତ ଆମେ ତାଙ୍କ ସାମସାମୟିକ ପଣ୍ଡିତ ଗୋପୀନାଥ ନନ୍ଦଙ୍କ ଅତୁଳନୀୟ ଶାସ୍ତ୍ର- ପାଣ୍ଡିତ୍ୟ କିମ୍ବା ଶ୍ୟାମସୁନ୍ଦର ରାଜଗୁରୁଙ୍କ ଐତିହାସିକ ଗବେଷଣାର ମାନସିକ ଆଭିମୁଖ୍ୟ ପରିପୂର୍ଣ୍ଣ ରୂପରେ ଦେଖି ନ ପାରୁଁ; କିନ୍ତୁ ନିଜ କର୍ମର ପରିସର ଭିତରେ ସ୍ୱଗୁଣ ବଳରେ ସେ ଯେଉଁ ମହତ୍ତର କର୍ମ ସଂପାଦନ କରି ପାରିଛନ୍ତି, ସେ ଦିଗରେ ସେ ନିଜେ ନିଜର ଏକ ସ୍ୱତନ୍ତ୍ର ଆଦର୍ଶ ରୂପେ ଯେ ପ୍ରତିଭାତ ହେଉଛନ୍ତି, ତାହା ଏକାନ୍ତ ଭାବରେ ସତ୍ୟ। ଅତ୍ରତତ୍ର ବିକ୍ଷିପ୍ତ ଉପାଦାନର ସଂଗ୍ରହ ଓ ତା'ର ଅଭିନବ ସଜ୍ଜୀକରଣରେ ସେ ଯେପରି

ଜଣେ କୁଶଳୀ କଳାକାରର କଳା-ନୈପୁଣ୍ୟ ପ୍ରଦର୍ଶନ କରିଯାଇଅଛନ୍ତି, ସେଥିରେ ସେ ଜଣେ ଅନନ୍ୟସାଧାରଣ ସାଧକ ରୂପେ ନିଜର ସ୍ୱତନ୍ତ୍ର ବ୍ୟକ୍ତିତ୍ୱର ଅଲିଭା ମୁଦ୍ରା ଆମ ମାନସପଟରେ ଅଙ୍କିତ କରିଦେବାର ଆଶ୍ଚର୍ଯ୍ୟ କିଛି ନାହିଁ। ପଣ୍ଡିତ ମୃତ୍ୟୁଞ୍ଜୟଙ୍କ ଲେଖାକୁ ତୁଳନାମୂଳକ ଭାବେ ଆଲୋଚନା କଲେ ତାହାଙ୍କ ଲେଖା ଭିତରେ ଏକ ସଂପୂର୍ଣ୍ଣ ନୂତନ ଆଭିମୁଖ୍ୟ ଥିବାର ଆମେ ସ୍ପଷ୍ଟ ଅନୁଭବ କରିଥାଉଁ। ସମାଲୋଚନାପାଇଁ ନିର୍ବାଚିତ ବିଷୟ ବା ଉପାଦାନର ଭିନ୍ନତା ତଥା ବ୍ୟାପକତା ଭିତରେ ଥିବା ତାଙ୍କର ସୁଦୂରବିସ୍ତାରୀ ଦୃଷ୍ଟିକୋଣ ଥରେ ନିରୀକ୍ଷଣ କଲେ, ଏଇ ନିରଭିମାନୀ ପଣ୍ଡିତଙ୍କର ଶାଶ୍ୱତ ସମ୍ପଦ ପ୍ରତି ଜଣେ ସ୍ୱତଃ ଆକୃଷ୍ଟ ହୋଇପଡ଼େ। ପ୍ରତିଭା ହେଉଛି ଏକ ଈଶ୍ୱରଦତ୍ତ ବିଭବ; ଏପରି ବିଭବରେ ବିମଣ୍ଡିତ ବ୍ୟକ୍ତି ଯେତେବେଳେ ଯାହା ଲେଖେ, ତାହା ସର୍ବୋଚ୍ଚ ସମ୍ମାନର ଅଧିକାରୀ ହୋଇଥାଏ। କିନ୍ତୁ ପ୍ରଗାଢ଼ ଅଧବସାୟ ଓ ଗଭୀର ଆତ୍ମନିଷ୍ଠା ମଧ୍ୟ ଅଳ୍ପ ପ୍ରତିଭାବାନ ବ୍ୟକ୍ତିକୁ ତଦନୁରୂପ ସମ୍ମାନ ଲାଭରେ ଅତୀବ ସହାୟକ ହୋଇଥାନ୍ତି। ଏଇ ଶେଷୋକ୍ତ ସମ୍ମାନରେ ବିଭୂଷିତ ପଣ୍ଡିତ ମୃତ୍ୟୁଞ୍ଜୟଙ୍କ ସାହିତ୍ୟ ସାଧନା ଏ ଦେଶ ସାହିତ୍ୟର ଇତିହାସରେ ଚିରଦିନ ସମୁଜ୍ଜ୍ୱଳ ହୋଇ ରହିଥିବ, ଏଥିରେ କୌଣସି ସନ୍ଦେହ ନାହିଁ।

ପଣ୍ଡିତ ମୃତ୍ୟୁଞ୍ଜୟଙ୍କ ସର୍ବପ୍ରଥମ ରଚନା 'କୃଷକଜୀବନ' ପ୍ରବନ୍ଧର ପ୍ରକାଶ ସମୟ ହେଉଛି, ମାର୍ଚ୍ଚ ୧୯୦୦ ସାଲ ଓ ସର୍ବଶେଷ ରଚନା 'ବିଚିତ୍ରରାମାୟଣ' (ଆଲୋଚନା) ର ସମୟ ଜୁଲାଇ ୧୯୨୩ ସାଲ। **କର୍ମବୀରର ଗୌରୀଶଙ୍କର ଓ ଓଡ଼ିଆ ପକେଟ ଅଭିଧାନ**, ଏ ଉଭୟ ପୁସ୍ତକ ୧୯୨୫ ସାଲରେ, ଅର୍ଥାତ ତାଙ୍କ ଦେହାବସାନର ପରବର୍ଷ ପ୍ରକାଶିତ ହୋଇଥିଲେ ହେଁ ସେସବୁ ୧୯୨୪ ସାଲ ପୂର୍ବରୁ ପ୍ରସ୍ତୁତ ହୋଇଥିଲା। ମୃତ୍ୟୁଞ୍ଜୟଙ୍କ ଜନ୍ମ (ମେ ୧୮୮୨ ସାଲ) ଓ ମୃତ୍ୟୁ (ତା ୧୦ - ୪- ୧୯୨୪ ସାଲ) ସମୟକୁ ଲକ୍ଷ୍ୟରଖି ବିଚାର କଲେ ଜଣାଯାଏ, ତାଙ୍କ ଜୀବନର ପ୍ରଥମ ୧୮ ବର୍ଷ ବାଲ୍ୟ ଓ ଶିକ୍ଷାଲାଭରେ ବ୍ୟୟିତ ହୋଇଥିଲା; ଅବଶିଷ୍ଟ ୨୪ ବର୍ଷ ହେଉଛି ତାଙ୍କର ସାହିତ୍ୟିକ ଜୀବନ। ଏଇ କ୍ଷୁଦ୍ର ଜୀବନର ଆଦି ଓ ଶେଷ ସମୟ ଓଡ଼ିଆ ସାହିତ୍ୟର ଇତିହାସରେ ବହୁଦିଗରୁ ଗୁରୁତ୍ୱପୂର୍ଣ୍ଣ। ଆଧୁନିକ ଓଡ଼ିଆ ସାହିତ୍ୟର ପ୍ରଥମ ପର୍ଯ୍ୟାୟ ଊନବିଂଶ ଶତାବ୍ଦୀର ଶେଷ ତିରିଶବର୍ଷ ଭିତରେ ସୀମିତ ହୋଇଥିଲେ ହେଁ ୧୮୮୧ - ୧୯୦୦ ସାଲ ହେଉଛି ନୂତନ ସୃଷ୍ଟିବିକାଶର ଆଦିକାଳ। ରାଧାନାଥ, ମଧୁସୂଦନ ପ୍ରଭୃତି ଯେଉଁ କଳାକାରମାନଙ୍କ ବିଶେଷ ଯତ୍ନରେ ଏ ସାହିତ୍ୟ ପ୍ରଥମେ ବିକାଶ ଲାଭ କରିଥିଲା, ସେଇମାନଙ୍କ ମଧୁର ସଂସ୍ପର୍ଶରେ ଆସିବାର ପରମ ସୌଭାଗ୍ୟ ଲାଭକରି ମୃତ୍ୟୁଞ୍ଜୟ ନିଜ ଜୀବନର ଗତିପଥ ନିର୍ଦ୍ଧାରଣ କରି ଦେଇଥିଲେ। ବିଂଶଶତାବ୍ଦୀର ପ୍ରଥମ ୨୫ ବର୍ଷ ଭିତରେ ଓଡ଼ିଆ ସାହିତ୍ୟ ଏକ ନୂତନ ଆଶା ଅଭୀପସା ବହନ କରି ଯେଉଁ ବଳିଷ୍ଠ ଆଭିମୁଖ୍ୟ ଆହରଣ କରିଥିଲା, ଅନ୍ତତଃ ପ୍ରବନ୍ଧ ଓ ସମାଲୋଚନା - ସାହିତ୍ୟର ବିଚାର ଦୃଷ୍ଟିରୁ ସେହି ଆଭିମୁଖ୍ୟ ନିର୍ମାଣରେ ପଣ୍ଡିତ ମୃତ୍ୟୁଞ୍ଜୟଙ୍କ ଭୂମିକା ବିଶିଷ୍ଟ ସମ୍ମାନର ଅଧିକାରୀ। ୧୯୨୫ ସାଲ ପରେ ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତି ଓ ତାଙ୍କ ସାହିତ୍ୟିକ ସହଯୋଗୀମାନଙ୍କ ବହୁ କୃତିତ୍ୱ ଶ୍ୟାମସୁନ୍ଦର ରାଜଗୁରୁ, ଗୋପୀନାଥ ନନ୍ଦ, ବିଶେଷତଃ ମୃତ୍ୟୁଞ୍ଜୟଙ୍କ ସାଧନାଲବଧ୍ ସିଦ୍ଧି ଭିତରେ ଅନୁସନ୍ଧାନ କରିବା ଏକ କଷ୍ଟକର ବ୍ୟାପାର ନୁହେଁ।

ମୃତ୍ୟୁଞ୍ଜୟଙ୍କ ପରିବାରର ଆର୍ଥିକ ସ୍ଥିତି ଭଲ ନଥିଲା, କି ଜୀବନରେ ଅତି ଉଚ୍ଚ ଶିକ୍ଷାଲାଭ କରିବାର ସୁଯୋଗ ମଧ୍ୟ ତାଙ୍କର ନଥିଲା। କଟକ ଟ୍ରେନିଂ ସ୍କୁଲ ପର୍ଯ୍ୟନ୍ତ ଶିକ୍ଷାପାଇ ଘରେ ସଂସ୍କୃତ ଅଧ୍ୟୟନ କରି ସେ ପଣ୍ଡିତ ହୋଇଥିଲେ। ୧୯୦୪ ସାଲ ବେଳକୁ ତାଙ୍କୁ ମାତ୍ର ୨୨ ବର୍ଷ। ଏଇ ବୟସରେ ମଧ୍ୟ ସେ ସେତେବେଳେ **ବାଣୀଭୂଷଣ** ଉପାଧିରେ ବିଭୂଷିତ ହେବାର ସମ୍ମାନ ଲାଭ କରିଥିଲେ। ଏଇ ଉପାଧିକୁ ସେତେବେଳେ କେହିକେହି କାଠଯୋଡ଼ିକୂଳିଆ ଉପାଧି କହି ତାଙ୍କୁ ଏମିତି ବିଦ୍ରୁପ କରୁଥିଲେ -

ଅମଙ୍ଗଳସ୍ୟ ବାରସ୍ୟ ଯଥା ମଙ୍ଗଳବାରତା
ଅବାଣୀ ଭୂଁଣସ୍ୟାପି ବାଣୀ ଭୂଷଣତା ତଥା।

ଅର୍ଥାତ୍ "ଅମଙ୍ଗଳସୂଚକ ବରକୁ ଯେପରି ମଙ୍ଗଳବାର ନାମ ଦିଆଯାଇଛି,ସେହିପରି ଅବାଣୀଭୂଷଣଙ୍କୁ ବାଣୀଭୂଷଣ ପଦ ପ୍ରଦତ୍ତ ହୋଇଅଛି।" କିନ୍ତୁ ଅତୀବ ଆଶ୍ଚର୍ଯ୍ୟର କଥା ଯେ, ଏଇ ଅବାଣୀଭୂଷଣ ଜୀବନର ପରବର୍ତ୍ତୀ କୋଡ଼ିଏ ବର୍ଷ ଭିତରେ ଯେଉଁ ବାଣୀ ରତ୍ନହାରରେ ଉତ୍କଳଭାରତୀଙ୍କୁ ବିଭୂଷିତ କରିଦେଇ ଯାଇଅଛନ୍ତି, ତାଙ୍କ ପ୍ରତିଦ୍ୱନ୍ଦୀମାନଙ୍କ କଥା ଦୂରରେ ଥାଉ, ଆଜି ପର୍ଯ୍ୟନ୍ତ ମଧ୍ୟ ବହୁ ଲେଖକ ସେଇ ହାରର ଔଜ୍ଜ୍ୱଲ୍ୟରେ ନିଜ ନିଜ ରଚନାକୁ ସମୃଦ୍ଧିମନ୍ତ କରି ଆସୁଅଛନ୍ତି। ଏପରି ଏକ ସୁବିପୁଳ ଗୌରବର ଅଧିକାରୀ ହେବା ଅତି କମ୍ ସଂଖ୍ୟକ ଲେଖକଙ୍କ ଜୀବନରେ ଘଟିଥିବାର ଦେଖିବାକୁ ମିଳେ।

ସାଧକର ଅନ୍ତର୍ନିହିତ ସାଧନା-ଶକ୍ତି ଅନୁକୂଳ ପାରିପାର୍ଶ୍ୱିକ ପରିବେଶର ସହାୟତାରେ କିପରି ଜଣେ ଅପୂର୍ବ କୃତିତ୍ୱ ସାଧନ କରିପାରେ, ମୃତ୍ୟୁଞ୍ଜୟଙ୍କ ସାହିତ୍ୟିକ ଜୀବନୀ ପର୍ଯ୍ୟାଲୋଚନା କଲେ ଆମେ ସେଇ ସତ୍ୟ ଅତି ନିବିଡ଼ଭାବେ ଅନୁଭବ କରିଥାଉଁ। ଟ୍ରେନିଂ ସ୍କୁଲରେ ଅଧ୍ୟୟନ କଲାବେଳେ ସେ ସ୍କୁଲର ହେଡ଼ମାଷ୍ଟର ଭକ୍ତକବି ମଧୁସୂଦନ ରାଓ ତଥା ' ଉତ୍କଳ ସାହିତ୍ୟ'ର ସଂପାଦକ ବିଶ୍ୱନାଥ କରଙ୍କ ସଂସ୍ପର୍ଶରେ ଆସିବାର ସୁବିଧା ଲାଭ କରିଥିଲେ। ମୃତ୍ୟୁଞ୍ଜୟଙ୍କ ସଦ୍ୟ ମୁକୁଳିତ ପ୍ରତିଭାର ଆଦ୍ୟ ସୌରଭ ବିକୀର୍ଣ୍ଣ ହେବା ପାଇଁ, ଯେପରି ମନେହୁଏ, ତାଙ୍କ ସମ୍ମୁଖରେ ନୂତନ ପ୍ରତିଷ୍ଠିତ 'ଆଲୋଚନାସଭା'ର ଦ୍ୱାର ଉନ୍ମୁକ୍ତ ହୋଇ ରହିଥିଲା। ତାଙ୍କ ସାହିତ୍ୟିକ ଜୀବନର ସାହିତ୍ୟ-ସୃଷ୍ଟି ଏଇପରି ଏକ ଅନୁକୂଳ ପରିବେଶରେ ପରିପୁଷ୍ଟ ହୋଇ ପରବର୍ତ୍ତୀ ସମୟରେ 'ଉତ୍କଳଦୀପିକା' ର ସମ୍ପାଦକ ଗୌରୀଶଙ୍କର ରାୟଙ୍କ ସସ୍ନେହ ସହାନୁଭୂତିରେ ସ୍ୱତଃ ବିକଶିତ ହୋଇ ଉଠିଥିବାର ଦେଖିବାକୁ ମିଳେ। ଏଇପରି ଆକସ୍ମିକ ଆଶୀର୍ବାଦର ପରିବର୍ଦ୍ଧିତ ସାଧକର ଅନ୍ତର୍ନିହିତ ସାଧନା ତାଙ୍କର ବହୁବିଧ କୃତି ଭିତରେ ସର୍ବତ୍ର ଆତ୍ମପ୍ରକାଶ କରିଥିବାର ଆମେ ଅନୁଭବ କରିଥାଉଁ।

ଭାଷାତତ୍ତ୍ୱ ଆଲୋଚନା, ସାରଳା ସାହିତ୍ୟ ସମୀକ୍ଷା,ପ୍ରାଚୀନ କବିମାନଙ୍କ କୃତିର ମୂଲ୍ୟାୟନ,ସଂସ୍କୃତ କାବ୍ୟନାଟକର ଅନୁବାଦ, ଅଭିଧାନ ପ୍ରଣୟନ - ଏଇପରି କେତୋଟି ବିଷୟର ପରିଧି ଭିତରେ ଫୁଟିଉଠିଥିବା ଶ୍ୟାମସୁନ୍ଦର ରାଜଗୁରୁ ଓ ପଣ୍ଡିତ ଗୋପୀନାଥ ନନ୍ଦଙ୍କ ସାହିତ୍ୟ - ସାଧନା ସହିତ ମୃତ୍ୟୁଞ୍ଜୟଙ୍କ ସାଧନା ତୁଳନାକଲେ ବହୁଦିଗରୁ ଏହାଙ୍କ ଅବଦାନ ଅତି ଉଚ୍ଚକୋଟୀର ବୋଲି ପ୍ରତିଭାତ ହେବନାହିଁ। କିନ୍ତୁ ଏ ପ୍ରତ୍ୟେକ କ୍ଷେତ୍ରରେ

ମୃତ୍ୟୁଞ୍ଜୟଙ୍କ ଯେଉଁ ବିଶେଷତ୍ୱ ଦେଖିବାକୁ ମିଳେ, ତାହାର ଅନୁରୂପ ଚିତ୍ର ପୂର୍ବୋକ୍ତ ଦୁଇଜଣଙ୍କ ଲେଖାରେ ଥିବାର ଅନୁଭୂତ ହୁଏନାହିଁ। କାରଣ; ମୃତ୍ୟୁଞ୍ଜୟ ଏପରି କେତୋଟି ବିଷୟରେ ହାତ ଦେଇଛନ୍ତି, ଯାହା ଅନ୍ୟଜଣଙ୍କ ଲେଖାର ଏକାନ୍ତ ସ୍ୱପ୍ନ। ଯଥା : - ବିଭିନ୍ନ ବିଷୟକ ପ୍ରବନ୍ଧ ବା ରଚନା; ଗବେଷଣାତ୍ମକ ପ୍ରବନ୍ଧ; ପ୍ରାଚୀନ ପୁରାତତ୍ତ୍ୱ ସମ୍ବନ୍ଧୀୟ ନିବନ୍ଧାବଳୀ; ଭ୍ରମଣସାହିତ୍ୟ; ସର୍ବୋପରି ଆଧୁନିକ ଓଡ଼ିଆ ସାହିତ୍ୟ ସ୍ରଷ୍ଟାଙ୍କ ଉପରେ ଭିନ୍ନ ଭିନ୍ନ ଦୃଷ୍ଟିକୋଣରୁ ସମାଲୋଚନା ଇତ୍ୟାଦି। ଏଠାରେ ମଧ୍ୟ ସ୍ପଷ୍ଟ ସ୍ୱୀକାର କରିବାର କଥା ଯେ, ଏଇ ଶେଷୋକ୍ତ ବିଷୟକ ରଚନାଗୁଡ଼ିକର ଆଭିମୁଖ୍ୟ ଓ ସେଥିରେ ଥିବା ଅଭିମତ ପରବର୍ତ୍ତୀ ସମୟର ବହୁ ଲେଖକଙ୍କ ଉପରେ ପରୋକ୍ଷ ଓ ପ୍ରତ୍ୟକ୍ଷଭାବେ ପ୍ରଭାବ ବିସ୍ତାର କରିଅଛି।

ଆଲୋଚନାର ସୁବିଧା ଦୃଷ୍ଟିରୁ ଆମେ ମୃତ୍ୟୁଞ୍ଜୟଙ୍କ ସମସ୍ତ ରଚନାକୁ ନିମ୍ନଲିଖିତ ବିଭଗରେ ବିଭକ୍ତ କରି ଦେଉଅଛୁଁ। ଯଥା : - ୧. ସଂସ୍କୃତ କାବ୍ୟ ନାଟକର ଅନୁବାଦ; ୨. କାବ୍ୟ କବିତା; ୩. ବିଭିନ୍ନ ରଚନା; ୪. ପୁରାତତ୍ତ୍ୱ ନିବନ୍ଧାବଳୀ; ୫. ଭ୍ରମଣସାହିତ୍ୟ; ୬. ଭାଷାତତ୍ତ୍ୱ ସମ୍ବନ୍ଧୀୟ ରଚନା; ୭. ବିଭିନ୍ନ ପ୍ରବନ୍ଧ ଓ ୮. ପ୍ରାଚୀନ ଓ ଆଧୁନିକ ଓଡ଼ିଆ ସାହିତ୍ୟର ଆଲୋଚନା।

ଆମ ପ୍ରବନ୍ଧର ଦ୍ୱିତୀୟ ଭାଗରୁ ଏହି ବିଷୟଗୁଡ଼ିକର ପର୍ଯ୍ୟାଲୋଚନା କରାଯାଇଅଛି।

ଦୁଇ

ପଣ୍ଡିତ ମୃତ୍ୟୁଞ୍ଜୟଙ୍କ ଯେଉଁ ବିଶିଷ୍ଟ ରଚନାଗୁଡ଼ିକ ପରବର୍ତ୍ତୀ ଓଡ଼ିଆ ସମାଲୋଚନା-ସାହିତ୍ୟକୁ ଋଦ୍ଧିମନ୍ତ ଓ ପ୍ରଭାବିତ କରିଥିବାର ଆମେ ଅନୁଭବ କରୁଁ, ସେଗୁଡ଼ିକର ସ୍ୱତନ୍ତ୍ର ବିଶ୍ଳେଷଣ କରିବା ପୂର୍ବରୁ ତାହାଙ୍କ ଲିଖିତ ଅନ୍ୟ ଅପ୍ରଧାନ ବିଭାଗର ସଂକ୍ଷିପ୍ତ ପରିଚୟ ଆମେ ବର୍ତ୍ତମାନ ଉପସ୍ଥାପନ କରି ଦେଇଅଛୁଁ।

ଆଲୋଚ୍ୟ ଅପ୍ରଧାନ ଲେଖାଗୁଡ଼ିକ, ଯେତେଦୂର ମନେହୁଏ, ଲେଖକଙ୍କ ଅବକାଶ ସମୟରେ କେବଳ ସାହିତ୍ୟ ସାଧନାରେ ସାମୟିକ ଭାବେ ନିଜକୁ ବ୍ୟାପୃତ ରଖିବା ଉଦ୍ଦେଶ୍ୟରେ ପ୍ରସ୍ତୁତ କରାଯାଇଥିଲା। ଏଥିରୁ ଅନୁବାଦ ଲେଖାଗୁଡ଼ିକ ପରିମାଣଦୃଷ୍ଟିରୁ ଅଧିକ; ଯଥା : - **ରତିବିଳାପ** (ଜୁଲାଇ ୧୯୦୯); **ବିକ୍ରମୋର୍ବଶୀ** (୧୯୦୯); **ମୁଦ୍ରାରାକ୍ଷସ** (୧୯୧୦); **ଉତ୍ତରରାମଚରିତ** (କେବଳ ଶେଷ ତିନିଅଙ୍କ ଡ଼ିସେମ୍ବର ୧୯୧୨); **କୁମାରସମ୍ଭବ** (୧୯୧୫); **ମାଳତୀମାଧବ ନାଟକ** (୧୯୧୬ -୧୭); **ନାଗାନନ୍ଦ** (ଡ଼ିସେମ୍ବର ୧୯୧୯); **ବେଣୀସଂହାର** (ନଭେମ୍ବର ୧୯୨୦)। ସଂସ୍କୃତ କାବ୍ୟ ଓ ନାଟକର ଏପରି ଆକ୍ଷରିକ ଅନୁବାଦର ବୈଶିଷ୍ଟ୍ୟ ହେଉଛି ଯେ, ମୁଖ୍ୟ ଭାବଧାରାର ଅକ୍ଷତ ସଂରକ୍ଷଣ ସଙ୍ଗେ ସଙ୍ଗେ ଲଳିତ କମନୀୟ ଭାଷାର ପରିପାଟୀରେ ତାକୁ ଅତି ଦକ୍ଷତାର ସହ ଏକ ମୌଳିକ ରଚନା ରୂପେ ଉପସ୍ଥାପନା କରିବା। ପଣ୍ଡିତ ରଥଙ୍କ ଅନୂଦିତ ନାଟକ ଏଇ ଭାଷାଦୃଷ୍ଟିରୁ ସମସାମୟିକ କେତେକ ଅନୁବାଦ ନାଟକଠାରୁ ସଂପୂର୍ଣ୍ଣ ଭିନ୍ନରୂପର କୃତି ରୂପେ ପ୍ରତିଭାତ ହେଉଛନ୍ତି। ଏଇପରି ଅବସର କାଳରେ ଲିଖିତ ବହୁ କ୍ଷୁଦ୍ର କ୍ଷୁଦ୍ର କବିତା ମଧ୍ୟରେ,ଆକାର ବିଚାରରେ 'ନରାଜ' (୧୯୧୦) ଖଣ୍ଡକାବ୍ୟ ହେଉଛି ସର୍ବପ୍ରଧାନ।

ଅନ୍ୟାନ୍ୟ କ୍ଷୁଦ୍ର କବିତାଗୁଡ଼ିକ ସାମୟିକ ଭାବସ୍ଫୁରଣର ପ୍ରତୀକ ହେଲେ ହେଁ ଏଇ କାବ୍ୟ ମଧ୍ୟ ସେଇ ଧର୍ମରୁ ବିଚ୍ୟୁତ ନୁହେଁ। ଏଥିରେ କବିବର ରାଧାନାଥଙ୍କ 'ଚିଲିକା'ର ପ୍ରଭାବ ବହୁ ଦିଗରୁ ଅତି ସ୍ପଷ୍ଟ ହେଲେହେଁ କବିଙ୍କ ଜାତୀୟଚେତନା ଏଥିରେ ସର୍ବପ୍ରଧାନ ଭୂମିକା ଗ୍ରହଣ କରିଥିବାର ଉପଲବ୍ଧି ହୁଏ। ପୁନଶ୍ଚ ପଣ୍ଡିତ ରଥେ ବିଦ୍ୟାଳୟରେ ଶିକ୍ଷକତା କରିବାର ଅଭିଜ୍ଞତା ଲାଭ କରିଥିବାରୁ ଛାତ୍ରୋପଯୋଗୀ କେତେକ ପାଠ୍ୟପୁସ୍ତକ ରଚନାର ମଧ୍ୟ ହାତ ଦେଇଥିଲେ। ଯଥା - **ମୂଳଶବ୍ଦବୋଧିକା**(୧୯୦୨); **ସୁଖବୋଧ ବ୍ୟାକରଣ** (୫ମ ଓ ୬ଷ୍ଠ ଶ୍ରେଣୀ ନିମିତ୍ତ ୧୯୧୭); **ଓଡ଼ିଆ ରଚନା ଓ ଅନୁବାଦ** (୧୯୨୬); **ଓଡ଼ିଆ ପକେଟ ଅଭିଧାନ** (୧୯୨୫)। ଏଇପରି ରଚନାଗୁଡ଼ିକ କୌଣସି ସାର୍ଥକନାମା ପ୍ରତିଭାବନ୍ତ ଲେଖକଙ୍କର ପରିଚୟ ଦିଅନ୍ତି ବୋଲି ମନେହୁଏନାହିଁ। ଅଧ୍ୟୟନ ଓ ଅଧ୍ୟବସାୟକୁ ଜୀବନର ଏକ ବ୍ରତରୂପେ ଗ୍ରହଣ କଲେ, ଏଇପରି କର୍ମମାନ ସାଧନ କରିବାରେ ଆଶ୍ଚର୍ଯ୍ୟ କିଛି ନାହିଁ।

ଏକମାତ୍ର ଉପନ୍ୟାସ ' ଅଦ୍ଭୁତ ପରିଣାମ'(୧୯୧୫)ହେଉଛି ମୃତ୍ୟୁଞ୍ଜୟଙ୍କ ଅନ୍ୟ ଏକ ଅପ୍ରଧାନ ରଚନା। ଜଣେ ପଲ୍ଲୀ-ଯୁବକ ସହରରେ ଅଧ୍ୟୟନ କଲାବେଳେ ଅନ୍ୟ ଏକ ସଂପ୍ରଦାୟ ବିଶେଷର ସଂସ୍ପର୍ଶରେ ଆସି କିପରି ଧର୍ମାନ୍ତର ଗ୍ରହଣ କରେ ଓ ପରିଶେଷରେ ସେଇ ସଂପ୍ରଦାୟରେ ବିବାହ କରେ; ପରବର୍ତ୍ତୀ ସମୟରେ ନିଜ ପତ୍ନୀକୁ ସମୁଦ୍ରଗର୍ଭକୁ ନିକ୍ଷେପ କରି ସେ କିପରି ଦଣ୍ଡିତ ହୁଏ - ଏହାହିଁ ଏ ଉପନ୍ୟାସର ଉପଜୀବ୍ୟ ବିଷୟ। ସ୍କୁଲ ମାଗାଜିନପାଇଁ ଉଦ୍ଦିଷ୍ଟ ଏପରି ଏକ ଉପନ୍ୟାସ ଛାତ୍ରଛାତ୍ରୀଙ୍କ ସମ୍ମୁଖରେଏକ ଆଦର୍ଶ ପ୍ରତିଷ୍ଠାପାଇଁ ପରିକଳ୍ପିତ ହୋଇଥିଲେହେଁ ଏହା ସେଇ ସଂପ୍ରଦାୟର କୌଣସି କୌଣସି ଲେଖକଙ୍କଦ୍ୱାରା ସମାଲୋଚିତ ହୋଇଥିବାର ଦେଖିବାକୁ ମିଳେ। ଜଣେ ପ୍ରାବନ୍ଧିକ ଓ ଗବେଷକ ସ୍ରଷ୍ଟାର ସ୍ୱପ୍ନ ଓ କଳ୍ପନା ନେଇ ସୃଷ୍ଟି କରିବାକୁ ଚେଷ୍ଟାକଲେ, ସେଥିରେ ବିଫଳତା ଦେଖାଯିବା ଆଦୌ ଅସମ୍ଭବ ନୁହେଁ। କାରଣ, କଳ୍ପନାର ସାର୍ଥକ ରୂପାୟନ ପାଇଁ ଯେଉଁ ପ୍ରତିଭା ଏକାନ୍ତ ଆବଶ୍ୟକ, ସେପରି ସୃଷ୍ଟିପ୍ରତିଭା 'ନରାଜ' କିମ୍ବା 'ଅଦ୍‌ଭୁତ ପରିଣାମ'ରେ ଆମେ ଦେଖିବାକୁ ପାଉନାହୁଁ। ଏପରି ଏକ ଉପନ୍ୟାସ ସାମୟିକ ଉତ୍ତେଜନା ତଥା ପାରିପାର୍ଶ୍ୱିକ ଦାବୀର ଏକ ପରିପ୍ରକାଶ ମାତ୍ର; ବେଶ୍ ଏତିକି ହିଁ ତା'ର ଯଥେଷ୍ଟ ପରିଚୟ।

ମୃତ୍ୟୁଞ୍ଜୟ ଯେଉଁ କେତୋଟି ରଚନା ଉଚ୍ଚକୋଟୀର ଗବେଷକଙ୍କର ଦୃଷ୍ଟି ଆକର୍ଷଣ କରିଥାନ୍ତି, ସେଗୁଡ଼ିକ ସଂଖ୍ୟାରେ କମ୍ ହେଲେ ହେଁ ସେସବୁ ତାଙ୍କ ଶ୍ରେଷ୍ଠ ଗବେଷଣାର ସାର୍ଥକ ପ୍ରତିନିଧି ରୂପେ ବିବେଚିତ ହୋଇଥାନ୍ତି। ଯଥା :- **ନରସିଂହ ଦେବଙ୍କ ତମ୍ରଶାସନ** (ଏପ୍ରିଲ, ୧୦୧୦- ମାର୍ଚ୍ଚ ୧୯୧୧ ଭିତରେ ମୁକୁରର ୪ଟି ସଂଖ୍ୟାରେ ପ୍ରକାଶିତ); **ଚାଟେଶ୍ୱର ଶିଳାଲିପି** (ଅକ୍ଟୋବର ୧୯୧୦); **ଜଗନ୍ନାଥ ଶିଳାଲିପି** (ଏପ୍ରିଲ ୧୯୧୩); **ତ୍ରିକାଣ୍ଡକୋଷ ଓ ପୁରୁଷୋତ୍ତମ ଦେବ** (୧୯୧୩); **ଚକଡାରୁ କାଣ୍ଡେ** (ନଭେମ୍ବର ୧୯୧୭); **ଜୟଦେବଙ୍କ ଜନ୍ମବିଚାର** (ଡିସେମ୍ବର ୧୯୧୭)। ଏଥିରୁ **ତ୍ରିକାଣ୍ଡ କୋଷ ଓ ପୁରୁଷୋତ୍ତମ ଦେବ** ଏବଂ **ଜୟଦେବଙ୍କ ଜନ୍ମ ବିଚାର** ପ୍ରବନ୍ଧ ଦୁଇଟି ତାଙ୍କର ସଂସ୍କୃତ ସାହିତ୍ୟରେ ଥିବା ଗଭୀର ପ୍ରବେଶର ପରିଚୟ ଦେଇଥାନ୍ତି। ପୁରାତତ୍ତ୍ୱ ସମ୍ବନ୍ଧୀୟ ଅନ୍ୟାନ୍ୟ ପ୍ରବନ୍ଧରେ ଶିଳାଲିପି ଓ ତାମ୍ରଶାସନର ନୂତନ ପାଠୋଦ୍ଧାର କରି ମୂଳପାଠର ଅର୍ଥ ଅର୍ଥାନ୍ତର

କରିବାରେ ସେ ଯେଉଁ ଗଭୀର ପାଣ୍ଡିତ୍ୟର ପରିଚୟ ଦେଇଛନ୍ତି, ତାହା ଇତିହାସ ସହିତ ପ୍ରତ୍ୟକ୍ଷଭାବେ ସଂପୃକ୍ତ ଥିବାରୁ ଆମେ ଜ୍ଞାତସାରରେ ତାହା ଉପରେ କିଛି କହିବାକୁ ଉଚିତ ମଣୁନାହୁଁ। ତେବେ ଏଠାରେ ଏତିକି ସୂଚେଇ ଦିଆଯାଇପାରେ ଯେ, ୧୯୦୯ ସାଲ ପରଠାରୁ ଆମେ ମୃତ୍ୟୁଞ୍ଜୟଙ୍କର ଯେଉଁ ଗବେଷକର ରୂପ ଓଡ଼ିଆ ସାହିତ୍ୟରେ ଦେଖିବାକୁ ପାଇଥାଉଁ, ସେଇ ରୂପର ସାର୍ଥକ ପ୍ରତିଫଳନ ଉପରୋକ୍ତ ପ୍ରବନ୍ଧଗୁଡ଼ିକରେ ପରିଲକ୍ଷିତ ହୋଇଥାଏ ମାତ୍ର।

ବିଭିନ୍ନ ସ୍ଥଳରୁ ଉପାଦାନ ଆହରଣ ପାଇଁ ପରିଭ୍ରମଣ କଲାବେଳେ ମୃତ୍ୟୁଞ୍ଜୟ ଯେଉଁ ଭ୍ରମଣଜନିତ ଅଭିଜ୍ଞତା ଅର୍ଜନ କରିଥିଲେ, ସେ ତାହାକୁ 'ଟିପ୍‌ପଣୀ' ଆକାରରେ **ମୁକୁର** ପତ୍ରିକାର ବିଭିନ୍ନ ବର୍ଷରେ ପ୍ରକାଶ କରିଥିଲେ। **ଶୁଭସ୍ତମ୍ଭ, ଶୁକନଦୀ, ଚିତ୍ରୋତ୍ପଳା, ରାମେଶ୍ୱର ପାହାଡ଼** (ଅଗଷ୍ଟ ୧୯୧୦), **ମହାବିନାୟକ, ଧଉଳିଗିରି** (ଅକ୍ଟୋବର ୧୯୧୦), **ସପ୍ତମାତୃକା** (ଏପ୍ରିଲ ୧୯୧୧), **ଲଳିତିଗିରି, ଉଦୟଗିରି, ରତ୍ନଗିରି** (ଫେବୃୟାରୀ ୧୯୧୨), **ଘୋରଡିଆ, ବିଶ୍ୱନାଥ ମୁଣ୍ଡିଆ, ବକ୍ରେଶ୍ୱର ମୁଣ୍ଡିଆ, ଜଗତି** (ଜୁନ୍ ୧୯୧୪), **ରତାଗଡ଼, ଚର୍ଚ୍ଚିକା, ସିଂହନାଥ** (ଅକ୍ଟୋବର ୧୯୧୪), **ଭଟ୍ଟାରିକା, ନୀଳମାଧବ** (ନଭେମ୍ବର ୧୯୧୪), **ନରସିଂହପୁର, ଯୋଡ଼ମୁଁ** ( ଜାନୁୟାରୀ ୧୯୧୫), **ଦଶପଲ୍ଲା** (ମାର୍ଚ୍ଚ ୧୯୧୫)। ଓଡ଼ିଶାର ଏଇପରି କେତେକ ସ୍ଥାନର ଯେଉଁ ଟିପ୍‌ପଣୀ ସେ ଦେଇଛନ୍ତି, ସେଥିରେ ତତ୍‌ତତ୍ ସ୍ଥାନର ଲୋକବିଶ୍ୱାସ, କିମ୍ବଦନ୍ତୀ, ଦେବଦେବୀ, ସେଗୁଡ଼ିକର ପ୍ରାଚୀନ ଇତିହାସ ସହିତ ଅତୀତ କୀର୍ତ୍ତିସ୍ତମ୍ଭର ସମ୍ୟକ୍ ପରିଚୟ ପଣ୍ଡିତଜୀଙ୍କ ମାର୍ଜିତ ଗମ୍ଭୀର ଭାଷାର ଲୋଭନୀୟ ପରିପାଟୀରେ ଉପସ୍ଥାପିତ ହୋଇଅଛି। ଜଣେ ଗବେଷକର ଚକ୍ଷୁରେ ଯାହା ଯେତିକି ଯେମିତି ପ୍ରତିଭାତ ହେବାର କଥା, ତାହା ଜଣେ ଉଚ୍ଚକୋଟୀର ପ୍ରାବନ୍ଧକଙ୍କ ହସ୍ତରେ ପରିପୂର୍ଣ୍ଣ ଅଳଙ୍କାରିକ ଛଟାରେ ଅଭିବ୍ୟକ୍ତ ଲାଭ କରିବା ଏକାନ୍ତ ସ୍ୱାଭାବିକ। ୧୯୨୦ ସାଲ ପୂର୍ବରୁ **ଓଡ଼ିଆ ଭ୍ରମଣ-ସାହିତ୍ୟ** ସଂଖ୍ୟାରେ ଅତି କମ୍ ଥିଲା। ମୃତ୍ୟୁଞ୍ଜୟଙ୍କର ଏଇ ଟିପ୍‌ପଣୀ ତ'ର ଅଭାବ କେତେକ ପରିମାଣରେ ଦୂର କରିପାରିଛି ବୋଲି ବିଶ୍ୱାସ ହୁଏ।

ଶୁଦ୍ଧ ସାହିତ୍ୟ ଦୃଷ୍ଟିରୁ ବିଚାର କଲେ, ଭାଷାତତ୍ତ୍ୱ ସମ୍ବନ୍ଧୀୟ ପ୍ରବନ୍ଧ, ବିଭିନ୍ନ ବିଷୟକ ପ୍ରବନ୍ଧାବଳୀ, ପୁରାତନ ଓ ଆଧୁନିକ ସାହିତ୍ୟ, ସାହିତ୍ୟ ସ୍ରଷ୍ଟାଙ୍କ ଉପରେ ଆଲୋଚନା -- ପ୍ରବନ୍ଧର ଏଇ ତିନୋଟି ବିଭାଗରେ ମୃତ୍ୟୁଞ୍ଜୟଙ୍କ ସମସ୍ତ କୃତିତ୍ୱ ଓ ସାଧନାର ସାର୍ଥକତା ଥିବାର ଆମେ ଅନୁଭବ କରିଥାଉଁ। ନିମ୍ନରେ ଆମେ କ୍ରମାନ୍ୱୟରେ ଏ ପ୍ରତ୍ୟେକ ବିଭାଗର ସ୍ୱରୂପ ବିଶ୍ଳେଷଣ କରି ତାଙ୍କ ସିଦ୍ଧିର ପରିଚୟ ପ୍ରଦାନ କରୁଅଛୁଁ।

**ଧ୍ୱନ୍ୟାତ୍ମକ ଭାଷା** (ମାର୍ଚ୍ଚ ୧୯୦୩), **ଭାଷାରହସ୍ୟ** (ଏପ୍ରିଲ ୧୯୦୩), **ଗ୍ରାମ୍ୟଭାଷା** (ମେ ୧୯୦୩), **ଓଡ଼ିଆଭାଷାର ମୂଳ** (ଫେବୃଆରୀ-ମେ ୧୯୦୪), **ଶବ୍ଦରହସ୍ୟ** (ଜୁଲାଇ ୧୯୦୫), **ଓଡ଼ିଆ ବର୍ଣ୍ଣ ଓ ତାହାର ଉଚ୍ଚାରଣ** (ଜୁଲାଇ ୧୯୦୮), **ଓଡ଼ିଆ ଭାଷାର ବର୍ତ୍ତମାନ ଅବସ୍ଥା ଓ ଗତି** (ଜୁଲାଇ-ସେପ୍‌ଟେମ୍ବର ୧୯୧୫)-ଏଇପରି କେତୋଟି ପ୍ରବନ୍ଧରେ ଓଡ଼ିଆ ଶବ୍ଦ ଓ ଭାଷାର ମୌଳିକ ସ୍ୱରୂପ ଉପସ୍ଥାପନା ପାଇଁ ପଣ୍ଡିତ ମୃତ୍ୟୁଞ୍ଜୟ ଚେଷ୍ଟିତ ହୋଇଥିବାର ଦେଖିବାକୁ ମିଳେ। ଶ୍ୟାମସୁନ୍ଦର ରାଜଗୁରୁଙ୍କ ପ୍ରଥମ ଭାଷାତତ୍ତ୍ୱ ପ୍ରବନ୍ଧ **ଓଡ଼ିଆ ବିଭକ୍ତି** (ଜୁଲାଇ ୧୯୦୪) ଓ ପଣ୍ଡିତ ଗୋପୀନାଥ ନନ୍ଦଙ୍କ

**ଓଡ଼ିଆ ତଦ୍ଧିତ** (ଫେବୃଆରୀ ୧୯୦୬)ର ପ୍ରକାଶ-ସମୟ ବିଚାର କଲେ ପଣ୍ଡିତ ମୃତ୍ୟୁଞ୍ଜୟ ଏ କ୍ଷେତ୍ରରେ ଓଡ଼ିଆ ସାହିତ୍ୟରେ ସର୍ବପ୍ରଥମେ କାର୍ଯ୍ୟ ଆରମ୍ଭ କରିଥିବାର ଅନୁମିତ ହୁଏ। ତଥାପି ଏହା ସ୍ପଷ୍ଟ ସ୍ୱୀକାର କରାଯାଇପାରେ ଯେ, ଏ ଉଭୟ ଲେଖକ ଓଡ଼ିଆ ଭାଷାର ମୂଳ ପ୍ରାକୃତ-ଅପଭ୍ରଂଶଠାରେ ନିରୀକ୍ଷଣ କରି ଭାଷା ଉତ୍ପତ୍ତିର ତାତ୍ତ୍ୱିକ ବ୍ୟାଖ୍ୟା ଦିଗରେ ଯେପରି ନିଜ ନିଜର ସମସ୍ତ ସାଧନା ଏବଂ ଅଧ୍ୟବସାୟ ବିନିଯୋଗ କରିଥିଲେ, ତା'ର ଅନୁରୂପ ଚିତ୍ର ମୃତ୍ୟୁଞ୍ଜୟଙ୍କ ଲେଖାରେ ଦେଖିବାକୁ ମିଳେ ନାହିଁ। ସ୍ଥୁଳତଃ, ଏହାଙ୍କ ଲେଖା ପୂର୍ଣ୍ଣତଃ ପ୍ରବନ୍ଧଧର୍ମୀ; ପ୍ରବନ୍ଧର ଗଠନ ଶିଳ୍ପ ସଂରକ୍ଷଣ କରି ସେଥିରେ ଭାଷାତତ୍ତ୍ୱର ଏକ ଏକ ନିର୍ଦ୍ଦିଷ୍ଟ ବିଭାଗକୁ ଆଲୋଚନା କରିବା ତାହାଙ୍କ ଲେଖାର ଥିଲା ମୌଳିକ ଲକ୍ଷ୍ୟ। ଏଇ ଲକ୍ଷ୍ୟ ସାଧନପାଇଁ ନିଜ ଚିନ୍ତାରାଜିକୁ ସାଧାରଣ ପାଠକର ରୁଚି-ଅନୁକୂଳ କମନୀୟ ଭାଷା ପରିପାଟୀରେ ରୂପାୟନ କରବାକୁ ସେ ବାଧ୍ୟ ହୋଇଥିଲେ। ଏହାର ଫଳ ଏହାହିଁ ହେଲା ଯେ, ଏଥିରେ ଭାଷା-ତତ୍ତ୍ୱ ଆଲୋଚନା ଅପେକ୍ଷା ସେଇ ଆଲୋଚନାର ଉପସ୍ଥାପନା କୌଶଳ ପ୍ରଧାନ ହୋଇ ଦେଖାଦେଲା। ପ୍ରବନ୍ଧର ଏପରି ଶିଳ୍ପ କୌଶଳ ଭାଷାତତ୍ତ୍ୱ ଉପରେ ପାଠକ ମନରେ ସାଧାରଣ ଧାରଣା ଜନ୍ମାଇ ଅତ୍ୟନ୍ତ ଲୋକପ୍ରିୟ ଓ ହୃଦୟଗ୍ରାହୀ କରି ଦେବାରେ ସମର୍ଥ ହୋଇଥିଲା। ଏ ବିଷୟରେ ଗୋଟିଏ ଉଦାହରଣ ଦେଖନ୍ତୁ -

> ପୃଥିବୀର ନଦୀ, ଉଦ୍‌ଭିଦ ପ୍ରଭୃତି ବହୁ ଶାଖାପ୍ରଶାଖା ବିଶିଷ୍ଟ। ନଦୀର ଶାଖା ପ୍ରଶାଖା ବହୁଦୂର ବିସ୍ତୃତ ହୋଇ ବହୁ ଭୂଖଣ୍ଡର ସରସତା ସଂପାଦନ କରୁଅଛି। ବୃକ୍ଷ ଏକ ସ୍ଥାନରେ ଥାଇ ଲମ୍ବ ଶାଖା ପ୍ରଶାଖାଦ୍ୱାରା ବହୁଦୂର ପର୍ଯ୍ୟନ୍ତ ଛାୟା ପ୍ରଦାନ କରି ପାର୍ଶ୍ୱବର୍ତ୍ତୀ ପ୍ରାଣିବର୍ଗର ହିତସାଧନ କରୁଅଛି। ଭାଷା ଜଗତରେ ମଧ୍ୟ ସେଇପରି ଶାଖା ପ୍ରଶାଖାବାନ୍ ଶବ୍ଦ ଅଛି। ପ୍ରକୃତିଭୂତ ଏକ ଶବ୍ଦରୁ ବହୁ ଶବ୍ଦ ଉତ୍ପନ୍ନ ହୋଇ ବିଭିନ୍ନ ଭାବ ପ୍ରକାଶ କରି ଜନ ସମାଜର ପ୍ରଭୂତ କଲ୍ୟାଣ ସାଧନ କରୁଅଛି। ଜଡ଼ଜଗତ ଓ ପ୍ରାଣୀଜଗତର ସୃଷ୍ଟି ପ୍ରକ୍ରିୟା ସହିତ ଭାଷା ଜଗତର ଏହି ସୃଷ୍ଟି ପ୍ରକିୟାର ସାମଞ୍ଜସ୍ୟ ଅଛି। ବହିର୍ଜଗତ ପରି ଏହି ଭାଷା ଜଗତରେ ମଧ୍ୟ କେନ୍ଦ୍ରସ୍ଥଳରେ ଅବଶ୍ୟ ଏକ ଶକ୍ତି ପ୍ରଚ୍ଛନ୍ନ ରହିଅଛି। ଶକ୍ତିବିନା କ୍ରିୟାହେବା ଅସମ୍ଭବ। ହୃଦୟାକାଶରେ ପ୍ରତିମୁହୂର୍ତ୍ତ ନାନା ଭାବର ଉଦୟ ଓ ଅସ୍ତ ହେଉଅଛି। ଉକ୍ତ ଶକ୍ତିଦ୍ୱାରା ଭାବନିଚୟ ପରିଚାଳିତ ହୋଇ ଭାଷାରେ ପ୍ରକାଶମାନ ହେଉଅଛି। ଭାଷାଦ୍ୱାରା ଆମ୍ଭେମାନେ ପରସ୍ପରର ଭାବ ବିନିମୟ କରୁଅଛୁଁ। ଭାଷା ସମାଜର ଚିର ସହଚର। ସମାଜର ଗତି ଅନୁସାରେ ଭାଷାର ଗତି। ସମାଜର ଛାୟା ଭାଷା ଉପରେ ପଡ଼େ। ସମାଜରୁ କୁସଂସ୍କାର ବା ସଂକୀର୍ଣ୍ଣତା ଦୂରହେବା ସଙ୍ଗେ ସଙ୍ଗେ ଭାଷାର ମଧ୍ୟ ଅନେକ ସଂସ୍କାର ଅପସାରିତ ହୋଇ ଯାଉଅଛି। ପୂର୍ବେ ଯେଉଁ ଶବ୍ଦ ଗୋଟିଏ ସଂକୀର୍ଣ୍ଣ ସୀମାରେ ଆବଦ୍ଧ ଥିଲା, ଆଜି ତାହା ନାନା ସ୍ଥାନରେ ପ୍ରଯୁକ୍ତ ହୋଇ ପ୍ରଶସ୍ତ ହୋଇଅଛି। ବର୍ତ୍ତମାନ 'ଶାଖା' ଶବ୍ଦ କେବଳ ବୃକ୍ଷଠାରେ ପ୍ରଯୁକ୍ତ ହେଉନାହିଁ। ନଦୀର ଶାଖା, ସଭାର ଶାଖା, ସମାଜର ଶାଖା, ଧର୍ମର ଶାଖା ଇତ୍ୟାଦି ନାନା ପ୍ରୟୋଗ ହେଉଅଛି। ଉତ୍‌କର୍ଣ୍ଣ କହିଲେ ଯେ କେବଳ ଶଶକାଦିଠାରେ ଉଦ୍‌ଗତ କର୍ଣ୍ଣ

ବୋଲି ବୁଝିବୁଁ ତାହାନୁହେଁ। ଯେ କୌଣସି ଭାବୀ ବିଷୟ ଆଡ଼କୁ କର୍ଣ୍ଣ ଥିଲେ ସେଠାରେ **ଉତ୍‌କର୍ଣ୍ଣ** ଶବ୍ଦ ପ୍ରଯୁକ୍ତ ହୋଇପାରିବ। ସ୍ରୋତ କଥାଟି କେବଳ ଜଳଠାରେ ଆବଦ୍ଧ ନ ରହି ପକ୍ଷବିସ୍ତାରପୂର୍ବକ କାଳ, ଘଟଣା, ଭାଷା, ସମାଜ ପ୍ରଭୃତି ସଙ୍ଗେ ମିଶ୍ରିତ ହେଲାଣି। ଏହାଦ୍ୱାରା ଭାଷାର ପୁଷ୍ଟି ଓ ପ୍ରଚାର ବୃଦ୍ଧି ହେଉଅଛି। ଏହିପରି ଭାଷା ଯେତିକି ବଳିଷ୍ଠ ଓ ପୁଷ୍ଟ ହେଉଥିବ, ତେତିକି ତାହା ନିଜର ପ୍ରଶସ୍ତ ମାର୍ଗ ଗଠନରେ ସମର୍ଥ ହେଉଥିବ। ଯେଉଁ ଭାଷାରେ ଉକ୍ତ ପ୍ରକାର ସ୍ୱାଚ୍ଛନ୍ଦ୍ୟରେ ପ୍ରତିବନ୍ଧ ଅଛି, ତାହାର ବହୁଳ ପ୍ରଚାର ସମ୍ଭବପର ନୁହେଁ।- **ଭାଷାରହସ୍ୟ**ରୁ ଉଦ୍ଧୃତ

ଏଇ ଉଦ୍ଧୃତିକୁ ବିଶ୍ଳେଷଣ କଲେ ଏଥିରେ ଭାଷାତତ୍ତ୍ୱର କୌଣସି ନିଗୂଢ଼ ତାତ୍ତ୍ୱିକ ବ୍ୟାଖ୍ୟା କିମ୍ବା ଲେଖକର କୌଣସି ମୌଳିକ ଚିନ୍ତା ଆମେ ଦେଖିପାରିବୁ ନାହିଁ। ଭାଷାତତ୍ତ୍ୱ ସଂବନ୍ଧୀୟ କୌଣସି ପୁସ୍ତକ ଅଧ୍ୟୟନ କରି ଏହାଠାରୁ ଅଧିକ ଉନ୍ନତ ପ୍ରବନ୍ଧଟିଏ ଅତି ସହଜରେ ମଧ୍ୟ ପ୍ରସ୍ତୁତ କରାଯାଇ ପାରିବ। ତଥାପି ଆମେ ଏଥିରେ ଦେଖୁଁ ଲେଖକଙ୍କର ପ୍ରବନ୍ଧ-ଗତ ଗଠନ-କୌଶଳ, ଯାହାର ଅବଲମ୍ବନରେ ଏକ ନିର୍ଦ୍ଦିଷ୍ଟ ବିଷୟ, ଭାବର କ୍ରମିକ ଉନ୍‌ମୋଚନ ଭିତରେ କିପରି ଉପସ୍ଥାପିତ ହୋଇପାରିଛି। ଫଳରେ ଏପରି ଏକ ସୁଖପାଠ୍ୟ ପ୍ରବନ୍ଧରୁ ଭାଷା-ବିକାଶର ଏକ ସଂକ୍ଷିପ୍ତ ପରିଚୟ କେବଳ ଆମ୍ଭେମାନେ ପାଇପାରିଛୁ ମାତ୍ର। ମନେହୁଏ, ଏପରି ଏକ ପ୍ରବନ୍ଧ ଭାଷାଜ୍ଞାନହୀନ ସାଧାରଣ ପାଠକପାଠିକାମାନଙ୍କ ସହଜ ଅବବୋଧପାଇଁ ଉଦ୍ଦିଷ୍ଟ ଥିଲା। ସେଇହେତୁରୁ ଆମର ଆଲୋଚ୍ୟ ପ୍ରବନ୍ଧ 'ଭାଷାରହସ୍ୟ' (ଏଥିରୁ ଉଦାହରଣ ଭାଗ ବାଦ ପଡିଛି) ମୃତ୍ୟୁଞ୍ଜୟଙ୍କ କୌଣସି ପ୍ରବନ୍ଧ-ପୁସ୍ତକର ଅନ୍ତର୍ଗତ ହୋଇଥିବାର ଦେଖିବାକୁ ମିଳେ।

ପୂର୍ବରୁ କୁହାଯାଇଅଛି ଯେ, କଟକ ଟ୍ରେନିଂ ସ୍କୁଲ, ଏପରି କି ତାଙ୍କର ଲେଖକ ଜୀବନର ଆରମ୍ଭରୁ ସେ ମଧୁସୂଦନ ରାଓ ଓ ବିଶ୍ୱନାଥ କରଙ୍କ ସଂସ୍ପର୍ଶରେ ଆସି ସମସାମୟିକ କଟକର ସାହିତ୍ୟିକ ଜୀବନ ସହିତ ଘନିଷ୍ଠଭାବେ ସଂପୃକ୍ତ ହୋଇପଡ଼ିଥିଲେ। ଦେଖି ବସିଲେ, ଏଇ ସମୟ ହେଉଛି ତାଙ୍କ ସାହିତ୍ୟ ସାଧନାରେ ଏକ ତାଲିମ ଗ୍ରହଣ ସମୟ। ନବପ୍ରତିଷ୍ଠିତ **ଆଲୋଚନା ସଭା** (୧୮୯୩) ଓ ତା'ର ପରବର୍ତ୍ତୀ ବିକାଶ **'ଉତ୍କଳ ସାହିତ୍ୟ ସମାଜ'** (୧୯୦୩) ରେ ବିବିଧ ପ୍ରବନ୍ଧପାଠ କରିବା, ଗୌରୀଶଙ୍କର ରାୟ ଓ ବିଶ୍ୱନାଥ କରଙ୍କ ଗୃହପାଠାଗାରରେ ସମସାମୟିକ ବଙ୍ଗଳା ମାସିକପତ୍ରିକା ସହିତ ବିଭିନ୍ନ ପୁସ୍ତକ ଅଧ୍ୟୟନ କରିବା। ଏହାଦ୍ୱାରା ଓଡ଼ିଆ ସାହିତ୍ୟର ପ୍ରବନ୍ଧ ବିଭାଗକୁ ସମୃଦ୍ଧ କରିବା ପାଇଁ ସେ ନିଜକୁ ଅତି ଚତୁରତାର ସହ ପ୍ରସ୍ତୁତ କରିଦେଇଥିଲେ। ଊନବିଂଶ ଶତାବ୍ଦୀରେ ବହୁ ବଙ୍ଗୀୟ ଲେଖକ ବଙ୍ଗଳାଭାଷାର ବିଶେଷତ୍ୱ ପ୍ରତିଷ୍ଠା ଦିଗରେ ଯେଉଁ ପ୍ରବନ୍ଧମାନ ପତ୍ରପତ୍ରିକାରେ ପ୍ରକାଶ କରିଥିଲେ, ସେଥିରୁ, ବିଶେଷତଃ ରବୀନ୍ଦ୍ରନାଥ ଠାକୁରଙ୍କ ପ୍ରବନ୍ଧାବଳୀରୁ, ମୃତ୍ୟୁଞ୍ଜୟ ପ୍ରେରଣା ପାଇଥିବା ଆଦୌ ଅସମ୍ଭବ ନୁହେଁ। ଭାଷାତତ୍ତ୍ୱ ସମ୍ପର୍କୀୟ ରବୀନ୍ଦ୍ରନାଥଙ୍କ ଲେଖାଗୁଡ଼ିକ ଭାଷାତତ୍ତ୍ୱ ଦୃଷ୍ଟିରୁ ଯେପରି ଗାମ୍ଭୀର୍ଯ୍ୟପୂର୍ଣ୍ଣ, ସେଗୁଡ଼ିକର ସାହିତ୍ୟିକ ଶୈଳୀ ମଧ୍ୟ ତତୋଧିକ ଚିତ୍ତାକର୍ଷକ। ଯୁବକ ମୃତ୍ୟୁଞ୍ଜୟ ଏଇପରି ଏକ ଶୈଳୀର ଅନୁସରଣ କରିବାରେ ଆଶ୍ଚର୍ଯ୍ୟ କିଛି ନାହିଁ।

ପ୍ରବନ୍ଧ ରଚନାରୁ ଆରମ୍ଭ ହୁଏ ମୃତ୍ୟୁଞ୍ଜୟଙ୍କ ପ୍ରଥମ ସାହିତ୍ୟିକ ଜୀବନ। **କୃଷକଜୀବନ** (ମାର୍ଚ୍ଚ ୧୯୦୦), **ଘଟିଯନ୍ତ୍ର** (ନଭେମ୍ବର,୧୯୦୧), **ଷ୍ଟକଚକ୍ୟ**(ଜୁନ ୧୯୦୨), **ଷ୍ଟଟଶାଳୀ** (ନଭେମ୍ବର ୧୯୦୨), **ସାମନ୍ତ ଚନ୍ଦ୍ରଶେଖର** (ଜାନୁୟାରୀ, ୧୯୦୩),**ଚତୁଷ୍ପାଠୀ** (ସେପଟେମ୍ବର ୧୯୦୩), **ମୃଚ୍ଛକଟିକ** (ଜୁଲାଇ ୧୯୦୪), **ଈଶ୍ୱରଚନ୍ଦ୍ର ବିଦ୍ୟାସାଗର** (ସେପଟେମ୍ବର ୧୯୧୦), ଏପରିକି **ପ୍ରବନ୍ଧପାଠ** (୧୯୦୭) ଓ **ନାରୀ ଦର୍ପଣ** (ଦୁଇଭାଗ : ୧୯୧୭) ପରି ପୁସ୍ତକରେ ସ୍ଥାନ ପାଇଥିବା ପ୍ରବନ୍ଧଗୁଡିକର ବିଷୟବସ୍ତୁରେ ଭିନ୍ନତା ଥିଲେ ସୁଦ୍ଧା ସେଗୁଡ଼ିକର ସାହିତ୍ୟିକ ଧର୍ମ ଓ ଗୁଣ ସର୍ବତ୍ର ଏକ ଏବଂ ସମାନ। ଗୋଟିଏ ଗୋଟିଏ ନିର୍ଦ୍ଦିଷ୍ଟ ବିଷୟର ନିର୍ବାଚନ, ଏପରି ନିର୍ବାଚିତ ବିଷୟର ପୂର୍ଣ୍ଣ ଧାରଣାପାଇଁ ଯାହା ଏକାନ୍ତ ଆବଶ୍ୟକ, ବିଭିନ୍ନ ଦିଗରୁ ସେସବୁର ମନନ ଓ ଚିନ୍ତନ, ସର୍ବଶେଷରେ ଚିନ୍ତାଗୁଡ଼ିକର କ୍ରମିକ ସଜ୍ଜୀକରଣ - ଗୋଟିଏ ପ୍ରବନ୍ଧର ପ୍ରସ୍ତୁତିପାଇଁ ଏଇପରି ଏକ ସାହିତ୍ୟିକ ଧର୍ମ ହେଉଛି ସେଇ ପ୍ରବନ୍ଧର ବହିଃ-ରୂପାନ୍ତର। ଏହି ବହିଃରୂପର ଅନ୍ୟ ଏକ ବିଷୟ ହେଉଛି ତାହାର ସାହିତ୍ୟିକ ଭାଷା, ବିଶେଷତଃ ଭାବ ପରିବେଷଣର ସ୍ୱାଭାବିକତା, ସରଳତା, ସୁସ୍ପଷ୍ଟତା ତଥା ତା'ର ଅନାବିଳତା। ସଂସ୍କୃତ ଶବ୍ଦ ସମନ୍ୱିତ ଯେଉଁ ଗୁରୁଗମ୍ଭୀର ଗଦ୍ୟଭାଷାର ବଳିଷ୍ଠ ଭିତ୍ତିଭୂମି ପୂର୍ବରୁ ମଧୁସୂଦନ ସୁପ୍ରତିଷ୍ଠା କରିଥିଲେ, ମୃତ୍ୟୁଞ୍ଜୟଙ୍କ ପରି ବହୁ ପ୍ରାବନ୍ଧିକଙ୍କର ତାହାହିଁ ଥିଲା ଏକ ନିରାପଦ ଅବଲମ୍ବନ। ଗଦ୍ୟଶୈଳୀର ଅନ୍ତଃରୂପରେ ଆତ୍ମପ୍ରକାଶ କରେ ପ୍ରାବନ୍ଧିକଙ୍କର ବଳିଷ୍ଠ ସ୍ୱକୀୟତା, ସ୍ରଷ୍ଟାର ଉନ୍ନତ ମୌଳିକତା - ଅନ୍ୟ କଥାରେ କହିଲେ ହେବ, ତାଙ୍କର ସ୍ୱପ୍ନ ବା କଳ୍ପନା ବହିଃରୂପର ଆହୃତ ଉପାଦାନରେ କୌଣସି ପରିବର୍ତ୍ତନ କରିଦେବା କିମ୍ବା ପ୍ରମାଦ କଳ୍ପନା ରଖିଦେବା ପ୍ରବନ୍ଧର ସ୍ୱାର୍ଥଦୃଷ୍ଟିରୁ ଆଦୌ ନିରାପଦ ନୁହେଁ। କାରଣ ଏପରି ପରିବର୍ତ୍ତନ କିମ୍ବା ପ୍ରମାଦ ଏକ ଦୋଷରୂପେ ସାଧାରଣତଃ ବିବେଚିତ ହୋଇଥାଏ। ତେଣୁ ଏ କ୍ଷେତ୍ରରେ ପ୍ରତ୍ୟେକ ପ୍ରାବନ୍ଧିକ ଅତୀବ ସଚେତନ ରହିବାକୁ ବାଧ୍ୟ। କିନ୍ତୁ ଏ ଆହୃତ ଉପାଦାନକୁ ସ୍ରଷ୍ଟା ନିଜର କଳ୍ପନା ବା ସ୍ୱପ୍ନଧର୍ମରେ ରଞ୍ଜିତ ନ କଲେ, ତାହା ଆଦୌ ଚିତ୍ତାକର୍ଷକ ହୁଏନାହିଁ। ତେଣୁ ଏ ପ୍ରତ୍ୟେକ ପ୍ରବନ୍ଧର ମୌଳିକତା ଓ ସ୍ୱତନ୍ତ୍ରତା ଭିତରେ ସୃଷ୍ଟିକଳ୍ପନାର ଭୂମିକା ଏକାନ୍ତ ଗୁରୁତ୍ୱପୂର୍ଣ୍ଣ। ଉଚ୍ଚକୋଟୀର ପ୍ରବନ୍ଧର ଏଇ ସର୍ବଶ୍ରେଷ୍ଠ ଧର୍ମ ସାଧାରଣ ପ୍ରବନ୍ଧରେ ମଧ୍ୟ କେତେକ ପରିମାଣରେ ପରିଦୃଷ୍ଟ ହୋଇଥାଏ। ମୃତ୍ୟୁଞ୍ଜୟଙ୍କ ଆଲୋଚ୍ୟ ପ୍ରବନ୍ଧଗୁଡ଼ିକରେ ଅନ୍ୟାନ୍ୟ ଧର୍ମ ସହିତ ପ୍ରବନ୍ଧଗତ ଏଇ ସ୍ୱପ୍ନ ବା କଳ୍ପନା ଅନୁସନ୍ଧାନ କରିବା ଏକାନ୍ତ କଷ୍ଟକର ନୁହେଁ।

ଓଡ଼ିଆ ସାହିତ୍ୟକୁ ମୃତ୍ୟୁଞ୍ଜୟଙ୍କର ଯାହା ସାର୍ଥକ ଅବଦାନ, ତାହା ପର ବିଭାଗରେ ଆପଣମାନେ ଦେଖିବାକୁ ପାଇବେ।

## ତିନି

ପୁରାତନ ଓ ଆଧୁନିକ ସାହିତ୍ୟ ଓ ସାହିତ୍ୟିକଙ୍କ ଉପରେ ପଣ୍ଡିତ ମୃତ୍ୟୁଞ୍ଜୟ ଯେଉଁସବୁ ପ୍ରବନ୍ଧ ପ୍ରସ୍ତୁତ କରିଛନ୍ତି, ସେସବୁ ଭିତରେ ଜଣେ ସାଧକର ସମସ୍ତ ସାଧନା ଓ ଅଧ୍ୟବସାୟ, ଜଣେ ଗବେଷକଙ୍କର ବିଶିଷ୍ଟ ମାନସିକ ଆଭିମୁଖ୍ୟ ଓ ବିଷୟପରିଶୀଳନ ମନୋବୃତ୍ତି, ଜଣେ ସମାଲୋଚକର ଗଭୀର ଅନ୍ତର୍ଦୃଷ୍ଟି ଓ ବିଶ୍ଳେଷଣ ଧାରା -- ଏ ସମସ୍ତ

ସାର୍ଥକଭାବେ ରୂପାୟିତ ହୋଇଥିବାର ଦେଖିବାକୁ ମିଳେ। ତାଙ୍କ ଆଲୋଚନାର ଏହି ଆଭିମୁଖ୍ୟ ଓଡ଼ିଆ ସାହିତ୍ୟକୁ ବିଶେଷ ଅବଦାନ। ଏ ଅବଦାନର ମହତ୍ୱ ଓ ମହିମା ସେତିକିବେଳେ ପୂର୍ଣ୍ଣରୂପେ ଅନୁଭୂତ ହୁଏ, ଯେତେବେଳେ ପରବର୍ତ୍ତୀ ଆଲୋଚକମାନଙ୍କ ଉପରେ ତାଙ୍କ ଲେଖାଗୁଡ଼ିକର ବହୁଳ ପ୍ରଭାବ ଆମେ ନିରୀକ୍ଷଣ କରିଥାଉଁ। ମୃତ୍ୟୁଞ୍ଜୟଙ୍କ ସାହିତ୍ୟ ସମ୍ବନ୍ଧୀୟ ପ୍ରବନ୍ଧଗୁଡ଼ିକର ସାରବତ୍ତା ଉପଲବ୍ଧି କରିବାକୁ ହେଲେ ସେଗୁଡ଼ିକୁ ନିମ୍ନଲିଖିତ ତିନୋଟି ଦୃଷ୍ଟିରୁ ଅନୁଶୀଳନ କରିବା ଉଚିତ। ଯଥା -

କ. *ଆଲୋଚକ ଓ ଗବେଷକଙ୍କର ବିଷୟ ଅନୁସନ୍ଧାନ* : ସଂଗ୍ରାହକଙ୍କ ସ୍ୱରୂପ ଉପରେ ନିର୍ଭର କରେ ତାଙ୍କ ବିଶ୍ଳେଷଣର ସାର୍ଥକତା। ତେଣୁ ଏ ଅନୁସନ୍ଧାନ ଓ ସଂଗ୍ରହ ସର୍ବାଦୌ ବୈଜ୍ଞାନିକ, ଯୁକ୍ତିଯୁକ୍ତ ତଥା ବିଶ୍ୱାସଯୋଗ୍ୟ ହେବା ଏକାନ୍ତ ଆବଶ୍ୟକ। ପୁରାତନ ଓ ଆଧୁନିକ ସାହିତ୍ୟ କ୍ଷେତ୍ରରେ ମୃତ୍ୟୁଞ୍ଜୟଙ୍କ ଅନୁସନ୍ଧାନ ଓ ସଂଗ୍ରହ କିପରି ଭିନ୍ନଭିନ୍ନ ବୈଚିତ୍ର୍ୟର ପରିପୂର୍ଣ୍ଣ, ତାହା ଆମ ଆଲୋଚନାର ଯଥାସ୍ଥାନରେ ଆପଣମାନେ ଦେଖିବାକୁ ପାଇବେ।

ଖ. ତାଙ୍କ ନିର୍ବାଚିତ ବିଷୟବସ୍ତୁ ଅନ୍ୟ କେହି ନିଜ ଆଲୋଚନାରେ ସ୍ଥାନ ଦେଇଛନ୍ତି ନା ନାହିଁ ? ଯଦି ଧରାଯାଏ ଯେ, କେହି ପୂର୍ବରୁ ତାହାକୁ ଗ୍ରହଣ କରିନାହାନ୍ତି, ତାହାହେଲେ ସେଇ ନୂତନ ନିର୍ବାଚିତ ବିଷୟକୁ ମୃତ୍ୟୁଞ୍ଜୟ କି ରୂପରେ ବିଶ୍ଳେଷଣ ତଥା ଉପସ୍ଥାପନା କରିଛନ୍ତି, ଯାହା ତାଙ୍କ ପରବର୍ତ୍ତୀ ଆଲୋଚକମାନଙ୍କ ଉପରେ ବହୁଳ ପ୍ରଭାବ ପକାଇବାରେ ସମର୍ଥ ହୋଇଅଛି। ବିଷୟବସ୍ତୁର ଏପରି ନିର୍ବାଚନରେ ତାଙ୍କ ସୂକ୍ଷ୍ମ ବିଚାରବୋଧ ଓ ବଳିଷ୍ଠ ଦୃଷ୍ଟିକୋଣ ସ୍ୱତଃ ଆତ୍ମପ୍ରକାଶ କରିଥାଏ। ଅଚ୍ୟୁତାନନ୍ଦ ଦାସ, ସାରଳା ଦାସ, ଅରକ୍ଷିତ ଦାସ, ଏପରି କି ବଳରାମ ଦାସ ଓ ଦୀନକୃଷ୍ଣ ଦାସ; ବିଶେଷତଃ ଆଧୁନିକ ଯୁଗର ପତ୍ରପତ୍ରିକା,ମଧୁସୂଦନ,ଫକୀରମୋହନ, ଗୌରୀଶଙ୍କର ପ୍ରଭୃତିଙ୍କ ଜୀବନୀ - ଏସବୁ ବିଷୟ ଭିତରୁ କେତୋଟି ସମ୍ପୂର୍ଣ୍ଣ ନୂତନ ଭାବେ ସେ ସଂଗ୍ରହଣ କରିଛନ୍ତି ଓ ଅନ୍ୟ କେତୋଟିକୁ ତାଙ୍କ ପୂର୍ବବର୍ତ୍ତୀ ଆଲୋଚକଙ୍କ ପ୍ରମାଦକୁ ସଂଶୋଧନ କରିବା ପାଇଁ ନିର୍ବାଚନ କରିଛନ୍ତି। ଅତୀବ ଆଶ୍ଚର୍ଯ୍ୟର କଥା, ଏହାଙ୍କ ନିର୍ବାଚିତ ବିଷୟବସ୍ତୁର ଉପସ୍ଥାପନା ଏପରି ଅଭ୍ରାନ୍ତ ଯେ, ତାଙ୍କ ପରବର୍ତ୍ତୀ କୌଣସି ସମାଲୋଚକ ଏ ଦିଗରେ ଏହାଙ୍କ ପ୍ରଭାବରୁ ନିଜକୁ ମୁକ୍ତକରି ରଖି ପାରିନାହାନ୍ତି।

ଗ. ତାଙ୍କ ନିର୍ବାଚିତ ବିଷୟ ଯଦି ପୂର୍ବରୁ କେହି ଗ୍ରହଣ କରିଥାନ୍ତି, ତା'ହେଲେ ସେଇ ଲେଖାର ଦୁର୍ବଳତା ଧରିପାରିବାରେ ମୃତ୍ୟୁଞ୍ଜୟ କେତେଦୂର ସମର୍ଥ ହୋଇଛନ୍ତି, ଏଥିରୁ ତାଙ୍କର ଗଭୀର ଅନ୍ତର୍ଦୃଷ୍ଟି ସ୍ୱତଃ ଆତ୍ମପ୍ରକାଶ ହୋଇ ଉଠୁଅଛି। ମାତ୍ର ଦୁଇ **ଦୀନକୃଷ୍ଣଙ୍କୁ** ଜଣେ ବୋଲି ପ୍ରମାଣ କରିବା କିମ୍ବା **ଦ୍ୱାରକା ଦାସ** ବନାମ **ଦ୍ୱିତୀୟ ବଳରାମ** ଦାସଙ୍କ ସଠିକ ସମୟ ନିରୂପଣ କରିବା, **ସାମନ୍ତସିଂହାରଙ୍କ** ପରି କବିଙ୍କ କୃତିର ମୌଳିକତା ପ୍ରତିପାଦନ ପାଇଁ ସେଇ କୃତିର ସାହିତ୍ୟିକ ବିଶ୍ଳେଷଣ ତଥା ଧର୍ମ ମତବାଦର ଆଲୋଚନା କରିବା -- ପୂର୍ବାଲୋଚିତ ଏଇପରି ବିଷୟଗୁଡ଼ିକରେ ତାଙ୍କ ଅବଦାନର ସ୍ୱରୂପ ନିରୀକ୍ଷଣ କରାଯାଇପାରେ।

ପୁରାତନ ଓ ଆଧୁନିକ କ୍ରମରେ ସେଇ ପ୍ରବନ୍ଧଗୁଡ଼ିକର ବିଶ୍ଳେଷଣ ଆମେ ବର୍ତ୍ତମାନ ଉପସ୍ଥାପନ କରିବାକୁ ଯାଉଅଛୁଁ।

'ଅଚ୍ୟୁତାନନ୍ଦ' (ସେପଟେମ୍ବର ୧୯୦୯) ନାମକ ପ୍ରବନ୍ଧର ପ୍ରକାଶ ସମୟ ପର୍ଯ୍ୟନ୍ତ ମୃତ୍ୟୁଞ୍ଜୟ କେତେକ ସାଧାରଣ ବିଷୟକ ପ୍ରବନ୍ଧ,ଭାଷାତତ୍ତ୍ୱ ସଂବଳିତ ପ୍ରବନ୍ଧ, କେତେକ ସଂସ୍କୃତ କାବ୍ୟନାଟକର ଅନୁବାଦରେ ସଂପୂର୍ଣ୍ଣ ନିଯୁକ୍ତ ଥିଲେ। ଓଡ଼ିଆ ସାହିତ୍ୟର ଆଲୋଚନା ଉପରେ ଏଇ ସମୟ ମଧ୍ୟରେ ସେ ବିଶେଷ କୌଣସି ଗୁରୁତ୍ୱ ଦେଇନଥିଲେ। **ଓଡ଼ିଆ ପୋଥି ଚିତ୍ରକାବ୍ୟ**, (ଜାନୁୟାରୀ ୧୯୦୫) ଓ ପରବର୍ତ୍ତୀ ସମୟରେ ପ୍ରକାଶିତ '**ପୁରାତନ ପୋଥି**' (ଏପ୍ରିଲ ୧୯୧୮) ରେ ଯଥାକ୍ରମେ ଉପେନ୍ଦ୍ରଭଞ୍ଜଙ୍କ **ଚିତ୍ରକାବ୍ୟବନ୍ଧୋଦୟ** ଓ **ଲୀଳାବତୀ** (ଗଣିତ) କାବ୍ୟ ଉପରେ ଯେଉଁ ଆଲୋଚନା କରିଥିଲେ, ତାହାହିଁ ହେଉଛି ଅମୁଦ୍ରିତ ପୋଥି ସାହାଯ୍ୟରେ କରିଥିବା ଏକ ଏକ କାବ୍ୟ ସମାଲୋଚନା। ବସ୍ତୁତଃ, ଏ କ୍ଷେତ୍ରରେ ତାଙ୍କର ପ୍ରାୟ ଅନ୍ୟ ସମସ୍ତ ସମାଲୋଚନା ମୁଦ୍ରିତ ପୁସ୍ତକ ଉପରେ ପ୍ରତିଷ୍ଠିତ। କିନ୍ତୁ ଏ ସ୍ଥଳରେ ମଧ୍ୟ ସେ କବି ବିଶେଷରେ ଅନ୍ୟ ସମସ୍ତ ରଚନାର ସଂକ୍ଷିପ୍ତ ପରିଚୟ ଦେବାପାଇଁ ପୋଥିର ଆଶ୍ରୟ ନେଇଥିବାର ଦେଖିବାକୁ ମିଳେ।

୧୯୦୨ ସାଲରେ ପ୍ରକାଶିତ 'ଓଡ଼ିଆ ଭାଷା ଓ ଓଡ଼ିଆ ସାହିତ୍ୟ'ର ଏକ ଅଂଶବିଶେଷ 'ପ୍ରାଚୀନ ଓଡ଼ିଆ ସାହିତ୍ୟ', ୧୯୦୬ ସାଲରେ ମୁକୁର ପତ୍ରିକାର ବିଭିନ୍ନ ସଂଖ୍ୟାରେ ଆତ୍ମପ୍ରକାଶ କରିଥିଲା। ଓଡ଼ିଶାର କେତେଜଣ ଖ୍ୟାତନାମା କବି, ଯଥା : - **ସାରଳା ଦାସ, ବିଶ୍ୱମ୍ଭର ଦାସ, ବଳରାମ ଦାସ, ଜଗନ୍ନାଥ ଦାସ, ଦୀନକୃଷ୍ଣ ଦାସ, ଉପେନ୍ଦ୍ରଭଞ୍ଜ, ବିଶ୍ୱନାଥ ଖୁଣ୍ଟିଆ, ଅଭିମନ୍ୟୁ ସାମନ୍ତସିଂହାର, କବିସୂର୍ଯ୍ୟ ବଳଦେବ** ପ୍ରଭୃତିଙ୍କ ଉପରେ ସେ ଯେଉଁ ଆଲୋଚନା କରିଥିଲେ, ତାହା ସମୟ ବିଚାରରେ ଶ୍ୟାମସୁନ୍ଦର ରାଜଗୁରୁଙ୍କ ଆଲୋଚନାର ପୂର୍ବବର୍ତ୍ତୀ ହେଲେହେଁ, ସେଥିରେ କୌଣସି ମୌଳିକ ଚିନ୍ତା ବା ଉପାଦାନ ଥିବାର ଅନୁଭୂତ ହୁଏନାହିଁ। ତେବେ ଏତିକି କୁହାଯାଇ ପାରେ ଯେ, ଏଥିରେ ଲେଖକଙ୍କର ଯେଉଁ ଐତିହାସିକ ଦୃଷ୍ଟିକୋଣ ଆତ୍ମପ୍ରକାଶ କରିଅଛି, ତାହା ଏକ ସ୍ୱତନ୍ତ୍ର ବର୍ଣ୍ଣବିଭାରେ ପରବର୍ତ୍ତୀ ସମୟର ଆଲୋଚନାରେ ଉଦ୍‌ଭାସିତ ହୋଇଉଠିଥିବାର ଦେଖିବାକୁ ମିଳେ।

ଶ୍ୟାମସୁନ୍ଦର ରାଜଗୁରୁଙ୍କ 'ଦୀନକୃଷ୍ଣ ଦାସ' (୧୯୦୩) ଓ ମୃତ୍ୟୁଞ୍ଜୟଙ୍କ 'ଅଚ୍ୟୁତାନନ୍ଦ ଦାସ' ପ୍ରବନ୍ଧ (୧୯୦୯) ଓଡ଼ିଆ ସମାଲୋଚନା ସାହିତ୍ୟର ଇତିହାସରେ ଯେଉଁ ଐତିହାସିକ ଆଲୋଡ଼ନ ସୃଷ୍ଟି କରି ଏ ଦେଶର ସମସ୍ତ ଚିନ୍ତାଶୀଳ ଲେଖକମାନଙ୍କ ଉପରେ ଅଖଣ୍ଡ ପ୍ରଭାବ ବିସ୍ତାର କରି ଆସିଅଛି, ସେଥିରେ ପଣ୍ଡିତ ମୃତ୍ୟୁଞ୍ଜୟଙ୍କ ପ୍ରତିଭାର ଗୌରବାବହ ଭୂମିକା ଏକାନ୍ତଭାବେ ବିସ୍ମୟକର। କାରଣ, ଦୁଇ ଦୀନକୃଷ୍ଣଙ୍କୁ ଏକ କରିବାରେ ରାଜଗୁରୁଙ୍କ ଉତ୍‌ଥାପିତ ଯୁକ୍ତି ଓ ଉପାଦାନର ମୌଳିକତା ପରୋକ୍ଷଭାବେ ଏକ ଦୀନକୃଷ୍ଣ ମତବାଦୀଙ୍କୁ ପ୍ରଭାବିତ କରି ପାରିଅଛି। ଅଚ୍ୟୁତାନନ୍ଦଙ୍କ ଜୀବନୀ ସହ ଷୋଡ଼ଶ ଶତାବ୍ଦୀର ଧାର୍ମିକ ଚିନ୍ତାଧାରା, ବିଶେଷତଃ ପଞ୍ଚସଖା ଧାରଣା ମୃତ୍ୟୁଞ୍ଜୟ ଯେପରି ପ୍ରସ୍ତୁତ କରି ପରିବେଷଣ କରିଦେଇଛନ୍ତି, ପରବର୍ତ୍ତୀ ସମୟର ସମସ୍ତ ସମାଲୋଚକ ଏ ଉଭୟ

ବିଷୟକୁ ଅସଂଦିଗଧ ଚିତ୍ତରେ କେବଳ ଅନୁସରଣ କରି ଆସିଛନ୍ତି।

୧୯୦୯ ସାଲ ପୂର୍ବରୁ ଅଚ୍ୟୁତାନନ୍ଦଙ୍କ ଜୀବନୀ ଓ ଧର୍ମ ମତବାଦ ଉପରେ ଶିକ୍ଷିତ ଓଡ଼ିଆ ଲେଖକମାନଙ୍କର କୌଣସି ଧାରଣା ନ ଥିଲା କହିଲେ ଚଳେ। 'ପଞ୍ଚସଖା' କହିଲେ ବଳରାମ, ଜଗନ୍ନାଥ,ଅଚ୍ୟୁତ ପ୍ରଭୃତି ପଞ୍ଚମହାପୁରୁଷ ବିଷ୍ଣୁଙ୍କର ସଖା ଥାଇ ଏ ଦେଶରେ ବ୍ରହ୍ମଜ୍ଞାନ ପ୍ରଚର କରିଥିବା ଧାରଣାଟି ଲୋକ ପରମ୍ପରାରୁ ସଂଗୃହୀତ ହୋଇ କାହାରି କାହାରି ଲେଖାରେ ସ୍ଥାନ ପାଇଥିଲା। କିନ୍ତୁ ଏମାନେ ଯେ ଷୋଡ଼ଶ ଶତାବ୍ଦୀରେ ପରସ୍ପର ସଖା ଥାଇ ଶ୍ରୀଚୈତନ୍ୟ ମହାପ୍ରଭୁଙ୍କର ଅନ୍ତରଙ୍ଗ ପରିକର ଥିଲେ - ପଞ୍ଚସଖା ଧାରଣାର ଏ ରୂପଟି ଅଚ୍ୟୁତାନନ୍ଦଙ୍କ ଜୀବନୀର ପୃଷ୍ଠଭୂମି ଉପରେ ମୃତ୍ୟୁଞ୍ଜୟ ଯେପରି ସୁପ୍ରତିଷ୍ଠିତ କରି ଧର୍ମ ବିଷୟକ ସମସ୍ତ ଓଡ଼ିଆ ସମାଲୋଚନାର ଆଭିମୁଖ୍ୟରେ ଏକ ନୂତନ ଦିଗନିର୍ଣ୍ଣୟର ସଂକେତ ଦେଲେ, ତାହା ତଦାନୀନ୍ତନ ଚିନ୍ତାଶୀଳ ଲେଖକମାନଙ୍କଠାରେ ସମ୍ପୂର୍ଣ୍ଣ ଅଜ୍ଞାତ ଥିଲା।

ମୃତ୍ୟୁଞ୍ଜୟଙ୍କ ବିବେଚନାରେ ଅଚ୍ୟୁତାନନ୍ଦଙ୍କ 'ଶୂନ୍ୟସଂହିତା' ପୁସ୍ତକ ହେଉଛି ଏପରି ନୂତନ ଦିଗଦର୍ଶନର ପ୍ରଧାନ ଏବଂ ଏକାନ୍ତ ନିର୍ଭରଯୋଗ୍ୟ ଉପାଦାନ। ୧୯୦୭ ସାଲରେ କଲିକତାର ମଣିଲାଲ ମହାରଣାଙ୍କଦ୍ୱାରା ପ୍ରକାଶିତ 'ଶୂନ୍ୟସଂହିତା' ରେ ଅଚ୍ୟୁତାନନ୍ଦ ଓ ତାଙ୍କ କଥିତ ପଞ୍ଚସଖାଙ୍କ ସହ ଶ୍ରୀ ଚୈତନ୍ୟଙ୍କ ସମ୍ପର୍କର ସୂଚନା ଲିପିବଦ୍ଧ ହୋଇ ରହିଅଛି। ଏଥିରେ ମଧ୍ୟ ଅଛି ଅଚ୍ୟୁତାନନ୍ଦଙ୍କ ଜୀବନୀର ଏକ ସଂକ୍ଷିପ୍ତ ସଙ୍କେତ। ଯଥା : ତାଙ୍କୁ ସେତେବେଳେ ଛଅବର୍ଷ, ସେତେବେଳେ ପିତାଙ୍କ ସଙ୍ଗରେ ପୁରୀ ଆସି ସେ ଶ୍ରୀ ଚୈତନ୍ୟଙ୍କର ଦର୍ଶନ ଲାଭ କରନ୍ତି ଓ ସନାତନଙ୍କଠାରୁ କର୍ଣ୍ଣମନ୍ତ୍ର ଗ୍ରହଣ କରନ୍ତି। ତତ୍‌ପରେ ସେ ସ୍ୱଗ୍ରାମକୁ ପ୍ରତ୍ୟାବର୍ତ୍ତନ କରି ପ୍ରାୟ ଦଶବର୍ଷ ଦଶମାସ କାଳ ଏକାକୀ ଏକ ନିସ୍ପୃହ ଜୀବନ ଅତିବାହିତ କରନ୍ତି। ଦିନେ ହଠାତ୍ ରାତ୍ରିରେ ବ୍ରହ୍ମାଣ୍ଡଠାକୁର ବୌଦ୍ଧ ଜଗନ୍ନାଥଙ୍କ ଠାରୁ ନିରାକାର ମନ୍ତ୍ର ଗ୍ରହଣ କରି ସ୍ୱପ୍ନାଦେଶରେ ସେ ପୁରୁଷୋତ୍ତମ କ୍ଷେତ୍ରରେ ଶ୍ରୀଚୈତନ୍ୟଙ୍କ ସହ ଦ୍ୱିତୀୟ ଥର ମିଳିତ ହୁଅନ୍ତି। ଡ଼ୋର କୌପୀନଧାରୀ ଅଚ୍ୟୁତ ହରିନାମ ସଂକୀର୍ତ୍ତନ ଉଦ୍ଦେଶ୍ୟରେ ଶ୍ରୀଚୈତନ୍ୟଂକ ଆଦେଶରେ ଭାରତ ଭ୍ରମଣ କରନ୍ତି। ତିନିବର୍ଷ ପରେ ପୁନର୍ବାର ପୁରୀକ୍ଷେତ୍ରକୁ ପ୍ରତ୍ୟାବର୍ତ୍ତନ କରି ପଞ୍ଚସଖା ମେଳରେ ସେ ଶ୍ରୀଚୈତନ୍ୟଙ୍କ ଦର୍ଶନ ଲାଭକରନ୍ତି। ଶ୍ରୀଚୈତନ୍ୟ ଜଣେ ଐତିହାସିକ ବ୍ୟକ୍ତି; ସେ ୧୫୦୯/୧୦ ସାଲରେ ପ୍ରଥମେ ପୁରୀକ୍ଷେତ୍ରକୁ ଆସିଥିଲେ। ଇତିହାସର ଏଇ ସମୟ ଅବଲମ୍ବନରେ ଅଚ୍ୟୁତାନନ୍ଦଙ୍କର ଜନ୍ମ ଓ ଶ୍ରୀଚୈତନ୍ୟଙ୍କର ସହ ତିନିଥର ମିଳନର ସମୟ ନିର୍ଦ୍ଧାରଣ କରିଦେବା ମୃତ୍ୟୁଞ୍ଜୟଙ୍କ ପରି ଜଣେ କୁଶଳୀ ଗବେଷକଙ୍କ ପକ୍ଷରେ ଆଦୌ କଷ୍ଟକର ନଥିଲା। ଅତ୍ରତତ୍ର ବିକ୍ଷିପ୍ତ ଅଚ୍ୟୁତାନନ୍ଦଙ୍କ ଜୀବନବୃତ୍ତାନ୍ତ ଏକତ୍ର ସଂଗ୍ରହ କରି ତାକୁ ଏକ ନୂତନ ରୂପ ପ୍ରଦାନ କରିବା, ବିଶେଷତଃ ଏଇ ଜୀବନବୃତ୍ତାନ୍ତର ପୃଷ୍ଠଭୂମି ଉପରେ ତଦାନୀନ୍ତନ ଓଡ଼ିଶାର ଧର୍ମଗତ ଚିନ୍ତାଧାରାର ସ୍ୱରୂପ ଉପସ୍ଥାପନା କରିବା; ସ୍ଥୁଳତଃ, ଜଣେ ବ୍ୟକ୍ତିର ଜୀବନଚରିତ ମାଧ୍ୟମରେ ଗୋଟାଏ ଧର୍ମ ମତବାଦର ଇତିହାସ ଗଠନ କରିଦେବା ହେଉଛି ମୃତ୍ୟୁଞ୍ଜୟଙ୍କ୍ ଏଇ 'ଅଚ୍ୟୁତାନନ୍ଦ ଦାସ' ପ୍ରବନ୍ଧର ପ୍ରଧାନ ବିଶେଷତ୍ୱ। ପୁନଶ୍ଚ, ଲେଖକଙ୍କ ଅପୂର୍ବ ମଧୁର ସାହିତ୍ୟିକ ଭାଷା, ପ୍ରବନ୍ଧର ଶୈଳୀଗତ ସ୍ୱପ୍ନ ଓ କଳ୍ପନା, ଏପରିକି ତା'ର ଉପସ୍ଥାପନା

କୌଶଳ ହେତୁ ଏଇ ପ୍ରବନ୍ଧର ମୌଳିକ ଅନ୍ତଃପ୍ରକୃତି ସ୍ୱତନ୍ତ୍ର ବର୍ଣ୍ଣବିଭା ଧାରଣ କରିଥିବାର ଅନୁଭୂତ ହୁଏ। ଏ ପୁସ୍ତକର ଯେଉଁ ଉପାଦାନ ଥିଲା ଏକାନ୍ତଭାବେ ଜଡ଼, ପ୍ରାଣଶୂନ୍ୟ ଓ ପାରସ୍ପରିକ ସହଯୋଗରେ ସେଥିରୁ ଏକ ସ୍ୱତନ୍ତ୍ର ମୂଲ୍ୟବୋଧ ଆବିର୍ଭୂତ ହେବା ଆଦୌ ବିସ୍ମୟକର ନୁହେଁ। ଶ୍ରୀଚୈତନ୍ୟଙ୍କ ପରିକରତ୍ୱ ଧାରଣା ଭିତ୍ତି ଉପରେ ଏ ପଞ୍ଚସଖା ଭାବନା ସୁପ୍ରତିଷ୍ଠିତ - ଏହାହିଁ ହେଉଛି ଏପରି ନୂତନ ମୂଲ୍ୟବୋଧର ସାର୍ଥକ ପରିପ୍ରକାଶ ମାତ୍ର। ଏଇ ନୂତନ ମୂଲ୍ୟବୋଧ ହେତୁ କାଳ-ସାଗର-ବକ୍ଷରେ ଭାସମାନ ଏ ଦେଶର ପାଞ୍ଚଜଣ ମହାପୁରୁଷ ସମୟର ଏକ ନିର୍ଦ୍ଦିଷ୍ଟ ସୀମା ଭିତରେ ଐତିହାସିକ ବ୍ୟକ୍ତିତ୍ୱର ଗୌରବ ଲାଭ କରିଥିବାର ଦେଖିବାକୁ ମିଳେ। ଏଥି ପାଇଁ ପଣ୍ଡିତ ମୃତ୍ୟୁଞ୍ଜୟଙ୍କ ଅମର ଲେଖନୀ ଏକମାତ୍ର ଦାୟୀ ବୋଲି କହିଲେ କିଛିମାତ୍ର ଅନ୍ୟାୟ ହେବନାହିଁ।

"ଅଚ୍ୟୁତାନନ୍ଦଙ୍କ ଜନ୍ମ ସମୟ", "ସୁନ୍ଦରାନନ୍ଦ ଥିଲେ ଜଣେ ବୌଦ୍ଧ ସନ୍ନ୍ୟାସୀ", "ପଞ୍ଚସଖାଙ୍କ ପରୀକ୍ଷାର ସମୟ" - ଏଇପରି କେତୋଟି ବିଷୟର କାଳଗତ ଓ ସିଦ୍ଧାନ୍ତଗତ ଅସଙ୍ଗତି ସଂଶୋଧନ କରି ପରବର୍ତ୍ତୀ ସମୟରେ ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତି ପଞ୍ଚସଖା ଧାରଣାକୁ ଅଧିକ ବଳବତ୍ତର କରିଦେଇ ଥିଲେ ସୁଦ୍ଧା ପଣ୍ଡିତଜୀଙ୍କ ପ୍ରଦର୍ଶିତ ଜୀବନମୂଳକ ଆଲୋଚନାର ଧାରା ଅନୁସରଣ କରିବାକୁ ସେ ବାଧ୍ୟ ହୋଇଛନ୍ତି। ମୃତ୍ୟୁଞ୍ଜୟଙ୍କ ପ୍ରବନ୍ଧ ଭିତରେ ବହୁ ବିଷୟର ଆହରଣ ଓ ଆଲୋଚନା ଥିଲେ ସୁଦ୍ଧା ପଞ୍ଚସଖା ଧାରଣା ପାଇଁ ଏଇ ଜୀବନୀ ଥିଲା ଏକମାତ୍ର ଅପରିହାର୍ଯ୍ୟ ଉପାଦାନ। ଯଥାର୍ଥ ଗବେଷକର ଚକ୍ଷୁରେ ବିଷୟର ଅନୁଧ୍ୟାନ, ଅନୁଶୀଳନ ତଥା ନିର୍ବାଚନ ନକଲେ ଗୋଟିଏ ନିର୍ଦ୍ଦିଷ୍ଟ ଅଭିମତର ପ୍ରତିଷ୍ଠା ସମ୍ଭବପର ନୁହେଁ। ଗବେଷକର ସେହି ଚକ୍ଷୁ ଥରେ ବିଷୟ ନିର୍ବାଚନ କରି ତଥ୍ୟର ବିଶ୍ଳେଷଣ କରିଦେଲେ, ଆଲୋଚନାରେ ଏକ ସ୍ୱତନ୍ତ୍ର ନୂତନମାର୍ଗ ସ୍ୱତଃ ଉନ୍ମୋଚିତ ହୋଇପଡ଼େ। 'ଅଚ୍ୟୁତାନନ୍ଦ' ପ୍ରବନ୍ଧ ସେଇପରି ଏକ ନୂତନ ମାର୍ଗର ପ୍ରତୀକ ଓ ଏଥିରେ ପଣ୍ଡିତ ମୃତ୍ୟୁଞ୍ଜୟଙ୍କ ଗବେଷଣାତ୍ମକ ଆଭିମୁଖ୍ୟ ସ୍ପଷ୍ଟତଃ ରୂପାୟିତ।

ଗୋଟିଏ ନିର୍ଦ୍ଦିଷ୍ଟ ସ୍ଥଳକୁ ଯାଇ ଜଣେ ଲେଖକଙ୍କ ଉପରେ ବହୁଲୋକଙ୍କଠାରୁ ଉପାଦାନ ସଂଗ୍ରହ, ଏପରି କି ତତ୍‌ସମ୍ପର୍କିୟ ଲୋକବିଶ୍ୱାସ, ପରମ୍ପରାରେ ପ୍ରଚଳିତ କାହାଣୀ, କିମ୍ବଦନ୍ତୀ; ଲେଖକଙ୍କ ବଂଶୀୟ ଲୋକଙ୍କ ଠାରୁ ବଂଶବୃକ୍ଷ ସଂଗ୍ରହ- ଗବେଷଣାତ୍ମକ ପ୍ରବନ୍ଧର ପ୍ରସ୍ତୁତି ଦିଗରେ ମୃତ୍ୟୁଞ୍ଜୟଙ୍କର ଏପରି ସାଧନା ଓଡ଼ିଆ ସାହିତ୍ୟରେ ସମ୍ପୂର୍ଣ୍ଣ ଅଭିନବ। ଏହା ତାଙ୍କରିଠାରେ ଦେଖାଦେଇ ବୋଧହୁଏ ତାଙ୍କରି ପାଖରେ ଶେଷ ହୋଇ ଯାଇଅଛି। ସମାଲୋଚନାର ପ୍ରାଥମିକ ସ୍ତରରେ ଏପରି ସାଧନାର ଆବଶ୍ୟକତା ଏକାନ୍ତ ଅପରିହାର୍ଯ୍ୟ ଥିଲେହେଁ ଏଥିରେ ବିପଦ ବହୁଦିଗରୁ ଦେଖାଦେବା ଆଦୌ ଅସମ୍ଭବ ନୁହେଁ। ଆହୃତ ଲୋକବିଶ୍ୱାସ କିମ୍ବା କାହାଣୀ କିମ୍ବଦନ୍ତୀର ଯଥାର୍ଥତା ଉପଯୁକ୍ତ ବିଚାର ବୁଦ୍ଧିରେ ପରୀକ୍ଷିତ ନକରି କୌଣସି ଅଭିମତ ବା ଧାରଣା ତିଆରି କରିଦେବା ସାହିତ୍ୟପକ୍ଷରେ ଆଦୌ ଶୁଭଙ୍କର ନୁହେଁ। ବିଶ୍ୱାସ ଅପେକ୍ଷା ଯୁକ୍ତି ହେଉଛି ପ୍ରତ୍ୟେକ ସାର୍ଥକ ଆଲୋଚନା ବା ଗବେଷଣାର ଯଥାର୍ଥ ପ୍ରାଣପିଣ୍ଡ। ଯୁକ୍ତିକୁ ପରିହାର କରି ବିଶ୍ୱାସକୁ ପ୍ରାଧାନ୍ୟ ଦେଲେ ଯେଉଁ କ୍ଷତି ହେବାର କଥା, ମୃତ୍ୟୁଞ୍ଜୟଙ୍କର ଆଲୋଚ୍ୟ ପ୍ରବନ୍ଧ, 'ଅଚ୍ୟୁତାନନ୍ଦ ଦାସ'ରେ ଥିବା ପଞ୍ଚସଖା ଧାରଣା ହେଉଛି ତା'ର ଉତ୍କୃଷ୍ଟ ଉଦାହରଣ। ପରବର୍ତ୍ତୀ ସମୟରେ ଲିଖିତ ସାରଳା ମହାଭାରତ

ଆଲୋଚନାରେ ସେ ବିଷୟରେ କିପରି ଅଧିକ ସଚେତନ ଥିଲେ, ତାହାର ପରିଚୟ ଆମେ ବର୍ତ୍ତମାନ ଉପସ୍ଥାପନା କରୁଅଛୁଁ।

'ଆଦିକବି ସାରଳା ଦାସ'। (ଏପ୍ରିଲ ୧୯୧୨) ପଣ୍ଡିତ ମୃତ୍ୟୁଞ୍ଜୟଙ୍କ ଦ୍ୱିତୀୟ ସମାଲୋଚନାତ୍ମକ ପ୍ରବନ୍ଧ। ବୋଧହୁଏ, ଆକାରରେ ଦୀର୍ଘ ଥିବା ହେତୁ ୧୯୧୧ ସାଲର ପ୍ରଥମ ଭାଗରେ ଏହା ପୁସ୍ତକାକାରରେ ପ୍ରକାଶ ପାଇଥିଲା। ଏଥିରେ ସାଧାରଣ ପ୍ରବନ୍ଧ ଅପେକ୍ଷା ଗୋଟିଏ ପୁସ୍ତକର ସମସ୍ତ ପରକଳ୍ପନା ରୂପାୟିତ ହୋଇଥିବାର ଦେଖିବାକୁ ମିଳେ। ସାରଳା ଦାସଙ୍କ ଜନ୍ମସ୍ଥାନ, ବଂଶ ପରିଚୟ, ତାଙ୍କ ଜୀବନୀ ସମ୍ପର୍କୀୟ କାହାଣୀ ଓ ଲୋକବିଶ୍ୱାସ, ତଦାନୀନ୍ତନ ରାଜନୀତିକ ଇତିହାସ, ଭାଷା, ବିଷୟବସ୍ତୁ, ଚରିତ୍ରଚିତ୍ରଣ ଦୃଷ୍ଟିରୁ ଓଡ଼ିଆ ମହାଭାରତର ସଂକ୍ଷିପ୍ତ ସମାଲୋଚନା ଓ କବିଙ୍କ ସୃଷ୍ଟି ପ୍ରତିଭା -ସ୍ଥୂଳତଃ ସାରଳା ଦାସଙ୍କ ଜୀବନୀ ଓ ସୃଷ୍ଟି ଅତି କମ୍ ପରିସର ଭିତରେ ଏଥିରେ ଉପସ୍ଥାପିତ ହୋଇଅଛି। କବି ଓ ତାଙ୍କ କୃତି ସାଧାରଣ ପାଠକପାଠିକମାନଙ୍କ ନିକଟରେ ଉପସ୍ଥାପନା କରିବାକୁ ହେଲେ ପ୍ରତ୍ୟେକ ବିଷୟ ସଂକ୍ଷିପ୍ତ, ତଥା ଆଲୋଚନାର ଭାଷା ସୁଖପାଠ୍ୟ ହେବା ଏକାନ୍ତ ସ୍ୱାଭାବିକ। ଏ ପୁସ୍ତକରେ ଜଣେ ଗବେଷକର ଉପାଦାନ ସଂଗ୍ରହ, ଜଣେ ଚିନ୍ତାଶୀଳ ସମାଲୋଚକର ବିଶ୍ଳେଷଣାତ୍ମକ ବିଚାର ବିମର୍ଶ ତଥା ଜଣେ ରସାନୁସନ୍ଧାନୀ ବିଦଗଧ ପାଠକର ସାହିତ୍ୟ ସୌନ୍ଦର୍ଯ୍ୟ-ନିରୀକ୍ଷଣ କରିବାର ମାନସିକ ଆଭିମୁଖ୍ୟ, କଳ୍ପନାବିଳାସୀ ସାହିତ୍ୟକର ମନୋଜ୍ଞ ଭାଷା ବିଭବରେ ଏପରି ବିମଣ୍ଡିତ ହୋଇଅଛି ଯେ, ଏହା ସାଧାରଣ ସମାଲୋଚନା ପୁସ୍ତକ ଅପେକ୍ଷା ଗୋଟିଏ ଅତି ମୁଗ୍ଧକର ରସସମନ୍ୱିତ ଜୀବନୀମୂଳକ ଆଲୋଚନା ଗ୍ରନ୍ଥର ଗୌରବ ଆହରଣ କରିବାକୁ ସମର୍ଥ ହୋଇଅଛି। ବ୍ରଜସୁନ୍ଦର ଦାସ ଏ ଗ୍ରନ୍ଥର 'ପ୍ରବେଶକ'ରେ ଯଥାର୍ଥତଃ କହିଛନ୍ତି -

> ଲେଖକ ଅତୀବ ଯତ୍ନରେ ଓ ଗଭୀର ଗବେଷଣା ପୂର୍ବକ ଇତିହାସ, କିମ୍ବଦନ୍ତୀ ପ୍ରଭୃତିର ଓ କବିଙ୍କ ନିଜ କଳ୍ପନା ସାହାଯ୍ୟରେ ସାରଳା ଦାସଙ୍କର ସର୍ବାଙ୍ଗ ସୁନ୍ଦର ଜୀବନୀର ଗୋଟିଏ ଚିତ୍ର କରିଅଛନ୍ତି। +++ ଏଥିରେ କବିଙ୍କର ବାଲ୍ୟଜୀବନ, ବିଦ୍ୟାଶିକ୍ଷା, କବିତ୍ୱସ୍ଫୂର୍ତ୍ତି ଧର୍ମଭାବ ପ୍ରଭୃତିର ବିଶଦ୍ ଆଲୋଚନା ହୋଇଅଛି। ପୁଣି କବିଙ୍କର ରଚିତ ମହାଭାରତ ଗୋଟିଏ ସୁନ୍ଦର, ସରଳ ଏବଂ ସଂକ୍ଷିପ୍ତ ସମାଲୋଚନା ଯୋଗ କରାହୋଇଅଛି। ସମାଲୋଚନାଟି ଏପରି ପ୍ରୀତିପଦ ହୁଏନାହିଁ। ତହିଁରୁ ଅନେକ ଶିଖିବାର ଅଛି। ଶାରଳା ମହାଭାରତ ପାଠକମାନଙ୍କର ଏହା ସର୍ବପ୍ରଥମେ ପଢ଼ିବା ଉଚିତ। ଏ ଖଣ୍ଡି ପଢ଼ିଲେ ପାଠକେ 'ବ୍ୟାସଙ୍କୁ' 'ଦାସେ' କେତେ ଅନ୍ତର ବୁଝି ପାରିବେ।

ବ୍ୟାସ-ମହାଭାରତଠାରୁ ସାରଳା ଦାସଙ୍କ ମହାଭାରତରେ ଥିବା 'ଅନ୍ତର'ର ସ୍ୱରୂପ ଉପଲବ୍ଧି ଜଣେ ଗଭୀର ମନନଶୀଳ ଶାସ୍ତ୍ରଜ୍ଞ ପଣ୍ଡିତଙ୍କ ଶାସ୍ତ୍ର-ପାଣ୍ଡିତ୍ୟ ଉପରେ ନିର୍ଭର କରେ। ପରବର୍ତ୍ତୀ ସମୟରେ ପଣ୍ଡିତ ଗୋପୀନାଥ ନନ୍ଦଙ୍କ **ଭାରତ ଦର୍ପଣ** (୧୯୧୧ ଏପ୍ରିଲରୁ ଆରମ୍ଭ) ଏ କ୍ଷେତ୍ରରେ ଏକ ସାର୍ଥକ ସମାଲୋଚନା ଗ୍ରନ୍ଥ ହେଲେହେଁ ମୃତ୍ୟୁଞ୍ଜୟଙ୍କ **ସାରଳାମହାଭାରତର** ପର୍ବଗତ ଆଲୋଚନା ସର୍ବପ୍ରଥମେ ପଦକ୍ଷେପ ରୂପେ ଦେଖାଦେଇ ବିଷୟ-ପର୍ଯ୍ୟାଲୋଚନାର ଯେଉଁ ଧାରାଟି ଉପସ୍ଥାପନ କରିଦେଇଥିଲା, **ଭାରତଦର୍ପଣରେ**

ତା'ର ପରିପୂର୍ଣ୍ଣ ରୂପବିଭବ ଆତ୍ମପ୍ରକାଶ କରିଅଛି ମାତ୍ର। ଦୁଇଟି କୃତିର 'ଅନ୍ତର' ସାଧାରଣତଃ ସାମ୍ୟ-ବୈଷମ୍ୟର ଭିତ୍ତି ଉପରେ ପ୍ରତିଷ୍ଠିତ। ବିଷୟର ଯଥାର୍ଥ ଉପଲବ୍ଧି ଦିଗରେ ମୃତ୍ୟୁଞ୍ଜୟଙ୍କ ଆଲୋଚନାର ଏ ନୂତନ ଆଭିମୁଖ୍ୟ ତୁଳନାତ୍ମକ ଓଡ଼ିଆ ସମାଲୋଚନର ଅଗ୍ରଦୂତ କହିଲେ ଅତ୍ୟୁକ୍ତି ହେବ ନାହିଁ।

ମୃତ୍ୟୁଞ୍ଜୟଙ୍କ ସଂଗ୍ରହ ଓ ଗବେଷଣା ଉପରେ ବ୍ରଜସୁନ୍ଦରଙ୍କ ପୂର୍ବୋକ୍ତ ଅଭିମତଟି ଏକାନ୍ତ ତାତ୍‌ପର୍ଯ୍ୟପୂର୍ଣ୍ଣ। ଉପାଦାନର ସଂଗ୍ରହ, ତା'ର ସତ୍ୟାସତ୍ୟର ପରିମାପ, ପରିଶେଷରେ ଅତୀତର ବିଷୟବସ୍ତୁକୁ ରସସିକ୍ତ, ପ୍ରାଣବନ୍ତ ଓ ଆକର୍ଷଣୀୟ କରିବାପାଇଁ ଲେଖକଙ୍କର ସ୍ୱକୀୟ ସ୍ୱପ୍ନ ବା କଳ୍ପନାର ସଂମିଶ୍ରଣ -- ଏ ତିନୋଟି ଉପାଦାନର ପରିଚୟ ମୃତ୍ୟୁଞ୍ଜୟଙ୍କ ସାରଳାଜୀବନୀ ପର୍ଯ୍ୟାଲୋଚନା ବିଭାଗରେ ଆମେ ଦେଖିବାକୁ ପାଇଥାଉଁ। କେତୋଟି ଉଦାହାରଣ ଦେଖନ୍ତୁ। ଜନଶ୍ରୁତି ଏହି ଯେ, 'ଶେଷୋକ୍ତ କାହାଣୀ', 'ଗୋଟିଏ କୌତୁକ କାହାଣୀ ଆଦି କବିଙ୍କ ସମ୍ବନ୍ଧରେ ଯେଉଁ 'ଶୁଣାଯାଇଥାଏ', 'ବୋଧହୁଏ', 'ସମ୍ଭବତଃ', 'କଥିତ ଅଛି', 'ଅନୁମିତ ହେଉଅଛି', 'କେହି କେହି କହନ୍ତି', 'କିମ୍ବଦନ୍ତୀରୁ ପ୍ରକାଶ ପାଏ', 'ସ୍ଥାନୀୟଲୋକେ କହନ୍ତି', 'ଅନୁମାନ ହୁଏ', 'ସ୍ଥାନୀୟ ଲୋକଙ୍କ ମୁଖରୁ ଶୁଣାଯାଏ', 'ଖୁବ୍ ସମ୍ଭବ', -- ଏଇପରି ଅତ୍ରତତ୍ର ବହୁଳ ବ୍ୟବହୃତ ଶବ୍ଦ ଓ ବାକ୍ୟାଂଶଗୁଡ଼ିକର ସ୍ୱରୂପ ଅନୁଧ୍ୟାନ କଲେ ଉପାଦାନ ସଂଗ୍ରହ ଭିତରେ ଥିବା ଆଲୋଚକଙ୍କର ସତ୍ୟ ପ୍ରତିପାଦନ ଦିଗରେ ବିଚାରଧାରା ତଥା ବିଶ୍ୱାସଯୋଗ୍ୟ ସମ୍ଭାବନା ପ୍ରତି ଅଧିକ ଆନ୍ତରିକତା ପ୍ରଦର୍ଶନର ମନୋବୃତ୍ତି ଆମେ ଅନୁଭବ ନକରି ରହିପାରୁ ନାହୁଁ। ଅତୀତର ଘନଘୋର ଅନ୍ଧକାର ମଧ୍ୟରୁ ବିଚାରବୁଦ୍ଧି ଓ ବିଶ୍ଳେଷଣ ବଳରେ ସତ୍ୟାନୁସନ୍ଧାନମୂଳକ ଉପାଦାନ ଆହରଣ କରିବା ଗବେଷକର ଏକ ମୌଳିକ ଧର୍ମ। ଏହାର ଅଭାବ ହେଲେ, ଅର୍ଥାତ୍ ଅତୀତର ଉପାଦାନକୁ କେବଳ ବିଶ୍ୱାସବଳରେ ସର୍ବତ୍ର ସତ୍ୟ ବୋଲି ଗ୍ରହଣ କରିନେଲେ, ଆଲୋଚନାରେ ଅପସିଦ୍ଧାନ୍ତ ଦେଖାଯିବା ଆଦୌ ବିଚିତ୍ର ନୁହେଁ। ଅଚ୍ୟୁତାନନ୍ଦଙ୍କ ପଞ୍ଚସଖା ଧାରଣାଟି ଏଇପରି ଅପସିଦ୍ଧାନ୍ତର ଏକ ଉଜ୍ଜ୍ୱଳ ଉଦାହରଣ। ଯେଉଁ ସୁନ୍ଦରାନନ୍ଦଙ୍କର ପରବର୍ତ୍ତୀ ଅବତାର ହେଉଛନ୍ତି ସ୍ୱୟଂ ଅଚ୍ୟୁତାନନ୍ଦ, ସେ ସୁନ୍ଦରାନନ୍ଦ ଯେ ଶ୍ରୀ ଚୈତନ୍ୟଙ୍କ ଦେହାବସାନ ପରେ ମଧ୍ୟ ଜୀବିତ ଥିଲେ, ଏ ଉପାଦାନ ମୃତ୍ୟୁଞ୍ଜୟ ଜାଣିଥିଲେ 'ଶୂନ୍ୟସଂହିତା'ରେ ଲିପିବଦ୍ଧ ଥିବା ଅଚ୍ୟୁତାନନ୍ଦଙ୍କ ଜୀବନୀ ତଥା ପଞ୍ଚସଖା ବୃତ୍ତାନ୍ତକୁ ସେ ଆଦୌ ବିଶ୍ୱାସ କରି ନଥାନ୍ତେ, କି ତାଙ୍କର ସରଳ ବିଶ୍ୱାସ ଯେପରି ପଞ୍ଚସଖା ଧାରଣାକୁ ସତ୍ୟରୂପେ ପ୍ରତିପାଦନ କରିଦେଇ ଓଡ଼ିଆ ସମାଲୋଚନା ସାହିତ୍ୟକୁ ବିଭ୍ରାନ୍ତିରେ ନିକ୍ଷେପ କରିଦେଇଛି, ତାହା କେବେ ସମ୍ଭବ ହୋଇନଥାନ୍ତା। ପ୍ରାବନ୍ଧିକଙ୍କର ଏ ଦୋଷ-ଦୁର୍ବଳତା ସମୟକ୍ରମେ ଦୂର ହୋଇଯାଇ ତାହା ସ୍ଥାନରେ ଯୁକ୍ତିର ଅନୁପ୍ରବେଶ ହୋଇଥିବାର ଆମେ ଅନୁଭବ କରିଥାଉ। ସାରଳା ସମାଲୋଚନାରେ ଏହାର ଆଦ୍ୟ ଆଭାସ ପରିଲକ୍ଷିତ ହୋଇଥାଏ। ଜଣେ ଗବେଷକ ନିଜର ପ୍ରଥମ ପ୍ରମାଦକୁ ପରେ କିପରି ସଂଶୋଧନ କରି ସତ୍ୟର ଅଧିକ ନିକଟବର୍ତ୍ତୀ ହୁଅନ୍ତି, ଦୀନକୃଷ୍ଣଙ୍କ ଉପରେ ଲିଖିତ ମୃତ୍ୟୁଞ୍ଜୟଙ୍କ ଦୁଇଟି ପ୍ରବନ୍ଧ ତା'ର ସାକ୍ଷ୍ୟ ଦେଇଥାନ୍ତି।

ରସକଲ୍ଲୋଳକାର ଦୀନକୃଷ୍ଣ ପୁରୀବାସୀ ଓ ସେ ଜଳେଶ୍ୱରନିବାସୀ, ବହୁ ଗ୍ରନ୍ଥ ପ୍ରଣେତା, ରସବିନୋଦକାର ଦୀନକୃଷ୍ଣଙ୍କଠାରୁ ସଂପୂର୍ଣ୍ଣ ପୃଥକ୍ - ଏ ଅଭିମତ ପ୍ରଥମେ ଶ୍ୟାମସୁନ୍ଦର ରାଜଗୁରୁ 'ଦୀନକୃଷ୍ଣ ଦାସ' (୧୯୦୩) ନାମକ ପ୍ରବନ୍ଧରେ ପ୍ରତିପାଦନ କରିଥିଲେ। ଏଇ ଭାବଧାରାର ଅନୁସରଣରେ **ତାଳଚେରପଦକ ପରୀକ୍ଷା-ରସକଲ୍ଲୋଳ** (୧୯୧୦) ପ୍ରବନ୍ଧ ମୃତ୍ୟୁଞ୍ଜୟ ଲେଖିଥିଲେ ହେଁ ସେ ଏଇ ସିଦ୍ଧାନ୍ତରେ ବିଶ୍ୱାସ କରି ନପାରି ତା'ର ପରିବର୍ତ୍ତନପାଇଁ ପରବର୍ତ୍ତୀ ସମୟରେ 'ଦୀନକୃଷ୍ଣ ଦାସ' (ମାର୍ଚ୍ଚ, ୧୯୧୯) ନାମକ ଅନ୍ୟ ଏକ ପ୍ରବନ୍ଧ ପ୍ରସ୍ତୁତ କରିଥିଲେ। ଏପରି ମତ ପରିବର୍ତ୍ତନର ପଶ୍ଚାତ୍‌ରେ ତାଙ୍କର ଗଭୀର ମନନଶୀଳତା, ତୀକ୍ଷ୍ଣ ବିଚାରବୋଧ ତଥା ସତ୍ୟାସତ୍ୟ ନିର୍ଣ୍ଣୟରେ ଐକାନ୍ତିକତା ଓ ଏକନିଷ୍ଠତା ସ୍ୱତଃ ଆତ୍ମପ୍ରକାଶ କରିଅଛି ମାତ୍ର। ଆଲୋଚନାର ଏପରି ଆଭିମୁଖ୍ୟ ଜଣେ ସିଦ୍ଧ ଗବେଷକର ମୌଳିକ ଗବେଷଣା-ଧର୍ମକୁ ଯେ କେବଳ ଉପସ୍ଥାପନା କରୁଅଛି, ଏଥିରେ କୌଣସି ସନ୍ଦେହ ନାହିଁ।

ରାଜଗୁରୁ ମହାଶୟ ଦୁଇଜଣ ଦୀନକୃଷ୍ଣ ଥିବାର ସ୍ୱୀକାର କରି ଉଭୟେ ସମସାମୟିକ ବୋଲି ଅଭିମତ ଦେଇଛନ୍ତି। ତାଙ୍କ ପ୍ରବନ୍ଧରେ ଅଛି; "ଏ (ରସବିନୋଦକାର ଦୀନକୃଷ୍ଣ) ଓଡ଼ିଶାର ରାଜା ଦିବ୍ୟସିଂହ ଦେବଙ୍କ ରାଜତ୍ୱ ସମୟର କବି : ଅର୍ଥାତ୍ ରସକଲ୍ଲୋଳ ରଚୟିତା ଦୀନକୃଷ୍ଣ ଦାସଙ୍କ ସମକାଳୀନ ଥିଲେ।" ଦୁଇ ଦୀନକୃଷ୍ଣ ଯଦି ଏକ ସମୟର କବି, ତା'ହେଲେ ପରମ୍ପରାର ଅନୁରୋଧରେ ଏ ଉଭୟଙ୍କୁ ଏକ ବୋଲି ପ୍ରମାଣ କରିବାରେ କ୍ଷତି ବା କ'ଣ ଅଛି ? ପଣ୍ଡିତ ମୃତ୍ୟୁଞ୍ଜୟ ବୋଧହୁଏ ଏଇପରି ଏକ ଧାରଣାର ପରବର୍ତ୍ତୀ ହୋଇ କେତୋଟି ଅଧିକ ଯୁକ୍ତିବଳରେ ତାହା ପ୍ରତିପାଦନ କରିଅଛନ୍ତି। ଏହାଙ୍କର ଏଇ ପ୍ରବନ୍ଧଟିକୁ ନିରୀକ୍ଷଣ କଲେ ଏଥିରେ କିଛି ଅସାଧାରଣ ବିଷୟ ଥିବାର ପ୍ରଥମେ ଅନୁଭୂତ ହୁଏନାହିଁ। କିନ୍ତୁ ଏହାକୁ ଭଲଭାବେ ପରୀକ୍ଷା କଲେ ଜଣାଯାଏ, ଏହା ଯେପରି ରାଜଗୁରୁଙ୍କ ପ୍ରବନ୍ଧର ଏକ ମୌନ ପ୍ରତିବାଦ ମାତ୍ର, ଏଥିରେ ରାଜଗୁରୁଙ୍କ ପ୍ରମାଦ ଓ ଅସ୍ପଷ୍ଟତା ଦୂର କରାଯାଇ ବହୁ ଦିଗରୁ ନୂତନ ଆଲୋକପାତ କରାଯାଇଅଛି।

ଦୀନକୃଷ୍ଣଙ୍କ 'ନାମରତ୍ନଗୀତା'ରେ ଅଛି, "ଯେଉଁକାଳେ ସପ୍ତଦଶ ଅଙ୍କ ହେବ ଜାଣ। ଯୁଧିଷ୍ଠିର ନାମେ ଥିବ ଦିବ୍ୟସିଂହ ରାଣ।" **ରସକଲ୍ଲୋଳକାର** ଦୀନକୃଷ୍ଣଙ୍କ ସମ୍ପର୍କରେ ଦାର୍ଢ୍ୟତାଭକ୍ତିରେ ଅଛି "ସେ ଦିବ୍ୟସିଂହ ମହାରଥା। ସ୍ୱପନେ ଦେଖି ଏହିକଥା।" ରାଜଗୁରୁ ମହାଶୟ ଏଇ ଦ୍ୱିତୀୟ ଉଦ୍ଧୃତିଟି ଦେଇ ନ ଥିଲେ ହେଁ ଏ ଉଭୟ ଦୀନକୃଷ୍ଣଙ୍କୁ ଦିବ୍ୟସିଂହ କାଳର ବୋଲି କହିଛନ୍ତି। ରାଜଗୁରୁଙ୍କ ପ୍ରବନ୍ଧର ପରବର୍ତ୍ତୀ ଅଂଶରେ ଦୀନକୃଷ୍ଣଙ୍କ 'ରସବିନୋଦ'ରୁ ଗୋଟିଏ ଉଦ୍‌ଧୃତି (ଯାହାର ବହୁ ସ୍ଥଳକୁ ମୃତ୍ୟୁଞ୍ଜୟ ସଂଶୋଧନ କରି ଦେଇଛନ୍ତି) ଦିଆଯାଇଅଛି। ସେଥିରେ ଖୋରଧା ରାଜବଂଶର କୁଳପଞ୍ଜିକା ସହିତ ସେ ଯେଉଁ ସ୍ଥଳରେ ଥାଇ **ରସବିନୋଦ** ଲେଖିଥିଲେ, ସେଇସ୍ଥଳର ରାଜାଙ୍କ କଥା କୁହାଯାଇଅଛି। ଏଇ ଉଦ୍ଧୃତିରେ ଦିବ୍ୟସିଂହ ଦେବଙ୍କ କଥାର ଉଲ୍ଲେଖ ନ ଥିଲେ ସୁଦ୍ଧା, ରାଜଗୁରୁ ଶେଷରେ କହିଛନ୍ତି "ଏହି ବଂଶବୃକ୍ଷ ସହିତ ହଣ୍ଟର ସାହେବଙ୍କ ଓଡ଼ିଶା ଇତିହାସ ତୁଳନା କରି ଦେଖିଲେ କବି ଦିବ୍ୟସିଂହଙ୍କ ସମୟରେ ଜୀବିତ ଅନୁମିତ ହୁଏ।" **ରସବିନୋଦ** ଗ୍ରନ୍ଥର କବି ଦୀନକୃଷ୍ଣ ଯେଉଁ ସ୍ଥଳରେ ଥାଇ ଲେଖିଥିଲେ, ସେସମ୍ପର୍କରେ ରାଜଗୁରୁ କହିଛନ୍ତି,

"ସେ (ଦୀନକୃଷ୍ଣ) ଖୋରଧା ନିକଟବର୍ତ୍ତୀ ଭୀମନଗରସ୍ଥ କୌଣସି ବଳରାମ ସାମନ୍ତସିଂହାରଙ୍କ ଅନୁସରଣରେ ରହି ଜୀବିକା ନିର୍ବାହ କରୁଥିଲେ।" **ରସବିନୋଦ**ରେ ଥିବା ଖୋରଧା ରାଜବଂଶ ଓ ଢେଙ୍କାନାଳ ରାଜବଂଶର ଯେଉଁ ଦୁଇଟି ବଂଶବୃକ୍ଷ ଦିଆଯାଇଅଛି, ତା'ର ତାତ୍ପର୍ଯ୍ୟ ରାଜଗୁରୁ ଧରି ନପାରି ଯେଉଁ ଦୁଇଟି ପ୍ରମାଦ କରିଥିଲେ, ମୃତ୍ୟୁଞ୍ଜୟ ଅତି ଦକ୍ଷତାର ସହ ଏ ଉଭୟକୁ ସଂଶୋଧନ କରି **ରସବିନୋଦ**ର ରଚନା କାଳକୁ ଠିକ ନିର୍ଣ୍ଣୟ କରି ଦେଇଅଛନ୍ତି। **ରସବିନୋଦ**ରେ ଥିବା ଏଇ ପ୍ରାସଙ୍ଗିକ ଉଦ୍ଧୃତିର ଅର୍ଥ ହେଉଛି : - ଦୀନକୃଷ୍ଣ ଢେ଼ଙ୍କାନାଳର ରାଜା ବଳରାମ ସାମନ୍ତସିଂହାରଙ୍କ ଆଶ୍ରୟରେ ରହି **ରସବିନୋଦ** ଗ୍ରନ୍ଥ ରଚନା କରିଥିଲେ। ଏଇ ସମୟରେ ଖୋରଧା ରାଜା ବଳଭଦ୍ର ଦେବଙ୍କର ୫ ଅଙ୍କ ଚଳୁଥିଲା। ଉଦ୍ଧୃତିଟିରେ ବଳରାମ ସାମନ୍ତସିଂହାରଙ୍କ ସମୟର କୌଣସି ସଙ୍କେତ ନଥିଲେ ସୁଦ୍ଧା ମୃତ୍ୟୁଞ୍ଜୟ ଖୋରଧା ରାଜା ବଳଭଦ୍ର ଦେବଙ୍କ ୫ ଅଙ୍କର ସଙ୍କେତରୁ **ରସବିନୋଦ**ର ରଚନା ସମୟ ୧୬୫୫ ସାଲ ବୋଲି ହିସାବ କରି ଦେଖାଇ ଦେଇଅଛନ୍ତି। ଏ ଦୁଇଟି ବଂଶର ଉଲ୍ଲେଖ ପୁସ୍ତକଟିରେ ଏପରି ଭାବେ କରାଯାଇଅଛି ଯେ, ଢେ଼ଙ୍କାନାଳର ଇତିହାସ ଜାଣି ନଥିଲେ ଏ ଉଭୟ ବଂଶବୃକ୍ଷର ସମ୍ପର୍କ ଆଦୌ ବୁଝିହେବନାହିଁ। ସେଇ ହେତୁରୁ ରାଜଗୁରୁ ଏହା ଉପରେ କୌଣସି ଧାରଣା କରିପାରିନାହାନ୍ତି। ଅପରପକ୍ଷରେ, ମୃତ୍ୟୁଞ୍ଜୟ ଢେ଼ଙ୍କାନାଳ ରାଜବଂଶ ଉପରେ ଏକ ସ୍ୱତନ୍ତ୍ର ଇତିହାସ ରଚନା କଲାବେଳେ ଏଇ ଉଭୟ ବଂଶବୃକ୍ଷର ସମ୍ପର୍କ କଥା ଅନୁଭବ କରିପାରିଛନ୍ତି। ଫଳରେ ସାମନ୍ତସିଂହାରଙ୍କ ସମୟର ଉଲ୍ଲେଖ ନଥିଲେ ସୁଦ୍ଧା ବଳଭଦ୍ରଙ୍କ ୫ ଅଙ୍କର ସୂଚନାରୁ **ରସବିନୋଦ**ର ରଚନା ସମୟ ନିର୍ଣ୍ଣୟ କରିବାରେ ସେ ସମର୍ଥ ହୋଇଅଛନ୍ତି, ତେଣୁ ସେ ଅତି ନିର୍ଭୟରେ କହିଅଛନ୍ତି, "ଜଳେଶ୍ୱରରୁ ଆସି ସେ (ଦୀନକୃଷ୍ଣ) ଯେଉଁଠାରେ ବାସ କରିଥିଲେ, ସେ ଗ୍ରାମର ନାମ 'ଏକଘରିଆ'। ଆଦ୍ୟାପି ଏହି 'ଏକଘରିଆ' ଗ୍ରାମ ଢେଙ୍କାନାଳ ରାଜ୍ୟର ଅନ୍ତର୍ଗତ ବ୍ରାହ୍ମଣୀ ନଦୀ କୂଳରେ ଅବସ୍ଥିତ ଏବଂ ବ୍ରାହ୍ମଣୀ କୂଳସ୍ଥିତ ପ୍ରସିଦ୍ଧ ଭୀମନଗରୀ ଦୁର୍ଗର ଅନତି ଦୂରବର୍ତ୍ତୀ। ଏହିଠାରେ କବି ଅଳ୍ପଦୂରବର୍ତ୍ତୀ 'ହଦଗଡ଼'ର ପ୍ରସିଦ୍ଧ ସାମନ୍ତସିଂହାରଙ୍କ ବୃତ୍ତିଭୋଗୀ ହୋଇ **ରସବିନୋଦ** ପ୍ରଭୃତି ଗ୍ରନ୍ଥ ରଚନା କରିଥିଲେ।" ୧୯୦୩ ସାଲରେ ରାଜଗୁରୁ ଯେ ଏପରି ପ୍ରମାଦ କଲେ ତାହା ନୁହେଁ, ୧୯୨୭ ସାଲରେ ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତି **ରସକଲ୍ଲୋଳ** 'ମୁଖବନ୍ଧ' ପ୍ରସ୍ତୁତ କଲାବେଳେ ମୃତ୍ୟୁଞ୍ଜୟଙ୍କ ଏହି ପ୍ରବନ୍ଧ ପଢ଼ିନଥିବାରୁ ଏଇ ସ୍ଥାନ ଉପରେ କୌଣସି ସ୍ପଷ୍ଟ ଧାରଣା ଯେ ଦେଇ ନାହାନ୍ତି ତାହା ନୁହେଁ, ଏ ପୁସ୍ତକ (ରସବିନୋଦ)ର ରଚନା ସମୟ ଉପରେ ସମ୍ପୂର୍ଣ୍ଣ ନୀରବ ରହିଅଛନ୍ତି।

'ରସବିନୋଦ' ଗ୍ରନ୍ଥ ବଳଭଦ୍ର ଦେବଙ୍କ ୫ ଅଙ୍କ ଅର୍ଥାତ୍ ୧୬୫୫ ସାଲରେ ରଚିତ; 'ନାମରତ୍ନଗୀତ' ଗ୍ରନ୍ଥ କିନ୍ତୁ ଦିବ୍ୟସିଂହ ଦେବଙ୍କ ୧୭ ଅଙ୍କ ଅର୍ଥାତ୍ ୧୭୦୧-୨ ସାଲରେ ରଚିତ। ଏ ଉଭୟ ପୁସ୍ତକରେ ଥିବା ଏଇ ସମୟ ସଙ୍କେତ ଯଦି ଠିକ୍, ତା ହେଲେ ୧୬୫୫ ସାଲରେ ଲିଖିତ **ରସବିନୋଦ**ର ଆଦ୍ୟରେ ଥିବା ଗ୍ରନ୍ଥ ତାଲିକାରେ ୧୭୦୧-୨ ସାଲର 'ନାମରତ୍ନଗୀତ'ର ନାମ ଆସିଲା କିପରି ? ଏପରି ଅସମ୍ଭବ ବିଷୟ ଦୀନକୃଷ୍ଣଙ୍କ ସଂଖ୍ୟା ନିର୍ଣ୍ଣୟର ସମାଲୋଚକମାନଙ୍କ ମଧ୍ୟରୁ କାହାରି ଜଣକର ମନରେ ଉଦିତ ହୋଇଥିବାର ଦେଖିବାକୁ ମିଳେନାହିଁ। ଏଥିରୁ ସ୍ପଷ୍ଟ ଅନୁମିତ ହୁଏ ଯେ,

**'ରସବିନୋଦ'**ର ଗ୍ରନ୍ଥ ତାଲିକାଟି ପୁସ୍ତକ ରଚନାବେଳେ ଲିଖିତ ହୋଇ ନଥିଲା। ଏହା ପରେ କେବେ ସେଇ ଗ୍ରନ୍ଥ ତାଲିକାରେ **ରସକଲ୍ଲୋଳ** ପ୍ରଭୃତି ଗ୍ରନ୍ଥର ନାମ ରହିବା ନ ରହିବା, ଦୀନକୃଷ୍ଣଙ୍କ ସଂଖ୍ୟା ନିର୍ଣ୍ଣୟ ପ୍ରସଙ୍ଗରେ, ବିଶେଷ ଗୁରୁତ୍ୱପୂର୍ଣ୍ଣ ବୋଲି ମନେ ହୁଏନାହିଁ। କିନ୍ତୁ ଦେଖିବାର କଥା, ଦୁଇ-ଦୀନକୃଷ୍ଣ ମତବାଦୀଙ୍କର ଏକମାତ୍ର ନିର୍ଭରଯୋଗ୍ୟ ପ୍ରାମାଣିକ ଉପାଦାନ ହେଉଛି ଏଇ ଗ୍ରନ୍ଥ ତାଲିକା, ଯେଉଁଥିରେ **ରସକଲ୍ଲୋଳ**ର ନାମ ଉଲ୍ଲେଖ କରାଯାଇ ନାହିଁ। ପଣ୍ଡିତ ମୃତ୍ୟୁଞ୍ଜୟ ଖୋରଧା ଓ ଢ଼େଙ୍କନାଳ ରାଜବଂଶର କୁଳପଞ୍ଜିକା ସାହାଯ୍ୟରେ **ରସବିନୋଦ**ର ରଚନା ସମୟ ନିର୍ଣ୍ଣୟ କରି ଦୀନକୃଷ୍ଣଙ୍କ ଗ୍ରନ୍ଥ ତାଲିକାର ପ୍ରମାଣକୁ ପରୋକ୍ଷରେ ଯେପରି ଦୁର୍ବଳ କରିଦେଲେ, ସେଥିରେ ଏକ-ଦୀନକୃଷ୍ଣ ଧାରଣା ସୁପ୍ରତିଷ୍ଠା ହେବାର ପଥ ସୁଗମ ହୋଇ ଉଠିଥିବାର ଅନୁଭୂତ ହୁଏ।

**ରସବିନୋଦ**ର କୌଣସି ଏକ ପୋଥିରୁ ଗ୍ରନ୍ଥ ତାଲିକାରୁ ଉଦ୍ଧାର କରି ମୃତ୍ୟୁଞ୍ଜୟ କହିଅଛନ୍ତି, "ଉଲ୍ଲେଖିତ ଗ୍ରନ୍ଥ ତାଲିକାରେ 'ରସକଲ୍ଲୋଳ' ଓ 'ଆର୍ତ୍ତତ୍ରାଣ'ର ନାମ ନାହିଁ। ସମ୍ଭବତଃ ଉକ୍ତ ଦୁଇଗ୍ରନ୍ଥ **ରସବିନୋଦ** ରଚନାର ପରେ ରଚିତ ହୋଇଥିବ। ଅଥବା 'ରସକଲ୍ଲୋଳ' 'ରସସମୁଦ୍ର' ନାମରେ ଏଥିରେ ଅଭିହିତ ହୋଇଅଛି।" ରାଜଗୁରୁଙ୍କ ତାଲିକାରେ 'ରସସମୁଦ୍ର' ସ୍ଥାନରେ ଅଛି 'ଭାବସମୁହ'। ତତ୍ପରେ ରସକଲ୍ଲୋଳରେ ବିବିଧ ଛନ୍ଦର ପ୍ରୟୋଗ ଓ ରଚନା ଶୈଳୀର ସ୍ୱାତନ୍ତ୍ର୍ୟ ଥିବା କାରଣ ଦେଖାଇ ରାଜଗୁରୁ ଯେପରି ରସକଲ୍ଲୋଳକାରଙ୍କୁ ଏକ ପୃଥକ୍ ବ୍ୟକ୍ତି ରୂପେ ଗ୍ରହଣ କରିଅଛନ୍ତି, ତା'ର ଉତ୍ତରରେ ମୃତ୍ୟୁଞ୍ଜୟ କହିଛନ୍ତି, "କିନ୍ତୁ ଏତିକିରେ ଦୀନକୃଷ୍ଣ ଦୁଇଜଣ ଥିଲେ ବୋଲି ଆମ୍ଭେମାନେ ସ୍ୱୀକାର କରି ପାରିଲୁନାହିଁ। **ଗୁଣସାଗର, ନାମରତ୍ନଗୀତା, ଧର୍ମସାଗର ଓ ରସବିନୋଦ** ପ୍ରଭୃତି ପାଠକଲେ ଜଣାଯାଏ, ସେମାନେ ଏକ କବିଙ୍କର ରଚନା ଏବଂ ସେସମସ୍ତର ବିଷୟ ପ୍ରାୟ ଏକ ଭାବରେ ଅନୁପ୍ରାଣିତ। ଏହାଙ୍କର ପ୍ରାୟ ସମସ୍ତ ଗ୍ରନ୍ଥରେ ଧର୍ମୋପଦେଶ ଓ ଧର୍ମକଥା ସରଳ ଭାଷାରେ ବର୍ଣ୍ଣିତ ହୋଇଅଛି। **ରସକଲ୍ଲୋଳ**ରେ ମଧ୍ୟ ସେହି ବିଶେଷତ୍ୱ ଅଛି, କିନ୍ତୁ ଏହାର ରଚନା କିଞ୍ଚିତ ରସାଶ୍ରିତ ଓ ଉଚ୍ଚତର ଭିତ୍ତିରେ ଅବସ୍ଥାପିତ। **ରସକଲ୍ଲୋଳ**ର ସ୍ୱଭାବୋକ୍ତି ଓ ଲଳିତ ପଦନ୍ୟାସ ଅନ୍ୟତ୍ର ବିରଳ। ଉଭୟ ପାଠରୁ ଜଣାଯାଏ, ଗୋଟିଏ ଲେଖକଙ୍କ ନବୀନ ଅବସ୍ଥାରେ ଲେଖା, ଅନ୍ୟଟି ପ୍ରବୀଣ ଅବସ୍ଥାର ଲେଖା। ଏକ ଲୋକଶିକ୍ଷା ପ୍ରେରଣାରେ – ଅନ୍ୟ ଭକ୍ତି ତଦ୍‌ଗତ ଭାବରେ ଲିଖିତ। ଏହି ହେତୁରୁ ଉଭୟ ଗ୍ରନ୍ଥର ରଚନା ଏକ କବିଙ୍କ ଲେଖନୀପ୍ରସୂତ ବୋଲି ପ୍ରତୀତ ହୁଏନାହିଁ। କିନ୍ତୁ କବିଙ୍କ ଜୀବନବୃତ୍ତାନ୍ତ ଆଲୋଚନା କଲେ ଜଣାଯାଏ, ଏ ସମସ୍ତ ଗ୍ରନ୍ଥର କବି ସେହି ଦୀନକୃଷ୍ଣ ଦାସ।"

ଆମର ଆଲୋଚ୍ୟ ପ୍ରବନ୍ଧଟିରେ ମୂଳତଃ ରାଜଗୁରୁଙ୍କ କେତେକ ଭ୍ରାନ୍ତିର ଦୂରୀକରଣ ଲକ୍ଷ୍ୟଥିବାରୁ ଏ ପ୍ରବନ୍ଧର ପ୍ରାୟ ସମସ୍ତ ବିଷୟ ଏଥିରେ ବ୍ୟୟିତ ହୋଇଥିଲା। ଏକ ଦୀନକୃଷ୍ଣ ପ୍ରମାଣ ପାଇଁ ବିଭିନ୍ନ ରଚନାର ତୁଳନାତ୍ମକ ଚିତ୍ର ଦେବାକୁ ବୋଧହୁଏ ସେ ଅବସର ପାଇନାହାନ୍ତି। ପରବର୍ତ୍ତୀ ସମୟରେ ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତି ଏଇ ବିଭାଗରେ ହାତଦେଇ ଏକ ଦୀନକୃଷ୍ଣ ମତକୁ ପରିପୁଷ୍ଟ କରିଅଛନ୍ତି। କିନ୍ତୁ ୧୯୨୭ ସାଲ **ରସକଲ୍ଲୋଳ**ର ମୁଖବନ୍ଧ ଲେଖିଲାବେଳେ ସେ ମୃତ୍ୟୁଞ୍ଜୟଙ୍କ ଏଇ ପ୍ରବନ୍ଧଟି ପଢ଼ିଥିଲେ

୧୯୩୧ ସାଲ (ଜଗମୋହନ ଛାନ୍ଦର ପ୍ରକାଶ ସମୟ) ପର୍ଯ୍ୟନ୍ତ ତାଙ୍କୁ **ଜଗମୋହନ ଛାନ୍ଦ** ପାଇଁ ଅପେକ୍ଷା କରିବାକୁ ପଡ଼ିନଥାନ୍ତା। କାରଣ ମୃତ୍ୟୁଞ୍ଜୟ ଦୀନକୃଷ୍ଣଙ୍କ ଗ୍ରନ୍ଥ ତାଲିକାରେ ଏଇ **ଜଗମୋହନ ଛାନ୍ଦ** ୧୯୧୯ ସାଲ ପୂର୍ବରୁ ଛପା ସରିଥିବାର ସଙ୍କେତ ଦେଇଥିବାର ଆମେ ଦେଖିବାକୁ ପାଉଁ।

'**ଅଭିମନ୍ୟୁ ସାମନ୍ତସିଂହାର** (ଏପ୍ରିଲ, ୧୯୧୪) ପ୍ରବନ୍ଧଟି ଆକାରରେ ମୃତ୍ୟୁଞ୍ଜୟଙ୍କ ପ୍ରାଚୀନ କବି ସମ୍ପର୍କୀୟ ସମସ୍ତଲେଖା ଭିତରେ ସର୍ବବୃହତ। ଏହା **ଉତ୍କଳ ସାହିତ୍ୟ** ପତ୍ରିକାର ୧୯୧୪ ସାଲ ଏପ୍ରିଲରୁ ନଭେମ୍ବର ମଧ୍ୟରେ ସାତୋଟି ସଂଖ୍ୟାରେ ପ୍ରକାଶିତ। ବିଷୟବସ୍ତୁ ଦୃଷ୍ଟିରୁ ଏ ପ୍ରବନ୍ଧ ଦୁଇଭାଗରେ ବିଭକ୍ତ। ସାମନ୍ତସିଂହାରଙ୍କ ବଂଶ ପରମ୍ପରା, ତାଙ୍କର ବାଲ୍ୟ ଓ ବୈବାହିକ ଜୀବନ, ବାଲ୍ୟଶିକ୍ଷା ଓ କ୍ରୀଡ଼ାକୌତୁକ, ତାଙ୍କର ଆଦ୍ୟ ଓ ଅନ୍ୟାନ୍ୟ ରଚନା, ଜନ୍ମ ଓ ତିରୋଧାନର କାଳ -- ଏଇପରି ବହୁବିଧ ବିଷୟ ସହିତ କବି-ସମ୍ପର୍କୀୟ ବିବିଧ ଉପାଖ୍ୟାନ – ଯାହା ପ୍ରାବନ୍ଧିକ ଲୋକମୁଖରୁ ତଥା କବିଙ୍କ ବଂଶଧରଙ୍କଠାରୁ ଆହରଣ କରିଥିଲେ, ତାହା ପ୍ରଥମ ଭାଗରେ ଅନ୍ତର୍ଭୁକ୍ତ। ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତି **ବିଦଗଧଚିନ୍ତାମଣି**ର ମୁଖବନ୍ଧରେ ଏଥିରୁ କେତେକାଂଶ ମଧ୍ୟ ଉଦ୍ଧାର କରି ଦେଇଛନ୍ତି। ଅତୀବ ଆଶ୍ଚର୍ଯ୍ୟର କଥା ଯେ, ଆଜି ପର୍ଯ୍ୟନ୍ତ ଯେଉଁମାନେ ସାମନ୍ତସିଂହାରଙ୍କ ଜୀବନୀ ସମ୍ପର୍କରେ ଯାହା କିଛି ଯେଉଁଠି କହିଛନ୍ତି, ସେସମସ୍ତ ଏଇ ପ୍ରଥମଭାଗର ଉପାଦାନରୁ ପ୍ରତ୍ୟକ୍ଷ ବା ପରୋକ୍ଷଭାବେ ଆହୃତ ମାତ୍ର।

ସାଧାରଣ କିମ୍ବଦନ୍ତୀ ପଣ୍ଡିତ ମୃତ୍ୟୁଞ୍ଜୟଙ୍କ କଳ୍ପନା ଓ ଅପୂର୍ବ ଭାଷାବିନ୍ୟାସ ବଳରେ କିପରି ଅତ୍ୟନ୍ତ ବିଶ୍ୱାସଯୋଗ୍ୟ ଓ ମୁଗଧକର ଆଭା ବହନ କରିପାରେ, ତା'ର ଗୋଟିଏ ଉଦାହରଣ ଦେଖନ୍ତୁ। ସେ ଲେଖିଛନ୍ତି,

> ଅନ୍ୟ କେହି କେହି କହନ୍ତି ୯/୧୦ ବର୍ଷ ବୟସରେ ଅଭିମନ୍ୟୁ ଜଣେ ବୈଷ୍ଣବଙ୍କୁ ଦେଖି ତାହାଙ୍କ ପ୍ରତି ଭକ୍ତିପ୍ରବଣ ହେଲେ ଏବଂ ଜ୍ଞାନଶକ୍ତି ବା କବିତ୍ୱର ବିକାଶଲାଗି ମନ୍ତ୍ରୋପଦେଶ ଦେବାକୁ ଅନୁରୋଧ କଲେ। ବୈଷ୍ଣବ ତାହା ବାଳକ ପକ୍ଷରେ ଅତି କଠିନ ବ୍ୟାପାର ଏବଂ ଅସମ୍ଭବ ବୋଲି କହି ନିଷେଧ କଲେ। କିନ୍ତୁ ଅଭିମନ୍ୟୁଙ୍କ ନିର୍ବନ୍ଧାତିଶୟରେ ଆଉ ଭାବ ଗୋପନ କରି ନପାରି ମନ୍ତ୍ରୋପଦେଶପୂର୍ବକ କହିଲେ, ତୁମ୍ଭେ ତିନିଦିନ ଓ ତିନିରାତି ଅନାହାରରେ ରୁଦ୍ଧ ପ୍ରକୋଷ୍ଠରେ ଏହା ସାଧନ କରିବ। ଚତୁର୍ଥ ଦିନକୁ ବର୍ତ୍ତିଥିଲେ ସିଦ୍ଧିଲାଭ ହେବ। ଯୋଗାରମ୍ଭ ପୂର୍ବରୁ ପରିବାର ମଧ୍ୟରେ ଏହା ଜଣାଇ ଦେବ। ମୃତ୍ୟୁର ଭୟ ଜାଣି ସୁଦ୍ଧା ମନସ୍ୱୀ ଅଭିମନ୍ୟୁ କିଛି ମାତ୍ର କାତର ନ ହୋଇ ଆପଣାର ସଂକଳ୍ପିତ କର୍ମ ପୂର୍ବରୁ ଜଣାଇ ଦେଲେ। ସେ ଦାରୁଣ ସମ୍ବାଦ ଶ୍ରବଣମାତ୍ରେ ସମସ୍ତେ ଏକମାତ୍ର ସନ୍ତାନୀର ଭବିଷ୍ୟତ ଭାଳି ଭାଳି ବ୍ୟାକୁଳ ହୋଇପଡ଼ିଲେ। ବାଳକ ଗୋଟିଏ ରୁଦ୍ଧ ଗୃହରେ ଅସୀମ ସାହସ ସହକାରେ ଯୋଗ ସାଧନ କଲେ। ତିନି ଅହୋରାତ୍ର କଟିଗଲା। ଚତୁର୍ଥ ଦିନ ପ୍ରତ୍ୟୁଷରେ ଦ୍ୱାରଦେଶରେ ରୁଣ୍ଡୀଭୂତ ଗୁରୁଜନ କବାଟ ନ ଫିଟିବାର ଦେଖି ବଳ ପ୍ରୟୋଗ ପୂର୍ବକ ତାହା ଭାଙ୍ଗି ସେଥିରେ ପ୍ରବେଶ କରି ଦେଖିଲେ ଯେ

ଗୋଟିଏ କ୍ଷୀଣତେଜ ଦୀପ ସ୍ତିମୀତ ଭାବରେ ଜଳୁଅଛି ଏବଂ ପ୍ରାଣର ସଙ୍ଗାଳୀ ଅଭିମନ୍ୟୁ ମୂର୍ଚ୍ଛିତ ହୋଇ ତଳଶାୟୀ ହୋଇଅଛନ୍ତି। ତତକ୍ଷଣାତ୍ କ୍ରନ୍ଦନର ରୋଳ ସହ ସର୍ବାଙ୍ଗରେ ଲହୁଣି ଘସିବାରେ କିଛିକ୍ଷଣ ପରେ ଅଭିମନ୍ୟୁଙ୍କର ଚେତନା ହେଲା। ସେତେବେଳେ 'ରାଧାକୃଷ୍ଣ' ଯୁଗଳମୂର୍ତ୍ତି ଦର୍ଶନ କରୁଥିବାର ସେ ପ୍ରକାଶ କଲେ ଏବଂ ସେହି ଦିନଠାରୁ ସିଦ୍ଧିଲାଭ କରି ସେହି ଯୁଗଳଚରିତ ବର୍ଣ୍ଣନାରେ କୃତସଂକଳ୍ପ ହେଲେ। କବି ଆଜୀବନ ଏହି ମଧୁର ପ୍ରେମାମୃତ ହୃଦୟରେ ଧାରଣା କରି କି ଧ୍ୟାନ ଧାରଣା, କି ବଚନ ରଚନା, ସର୍ବତ୍ର ନାନାଭାବରେ ପ୍ରଚ୍ଚର କରିଥିଲେ।

ହୁଏତ ଏ କିମ୍ବଦନ୍ତୀ ଏକ ଭାକ୍ତିକ ମିଥ୍ୟା; କିନ୍ତୁ ଏ ମିଥ୍ୟାର ଉପସ୍ଥାପନା କି ମୁଗଧକର ଅଭିବ୍ୟକ୍ତି - ଶୋଭା - ସମ୍ପଦରେ ବିଭୂଷିତ। ନଅବର୍ଷର ବାଳକ ପକ୍ଷରେ ଏପରି କଠିନ ଯୋଗ ସାଧନା ଓ ସିଦ୍ଧିର ଯଥାର୍ଥତା ଉପରେ ଜଣେ ସନ୍ଦିହାନ ହେଲେ ବି ଏହା ଯେ କବିଙ୍କ ଶ୍ରେଷ୍ଠକୃତି **ବିଦଗଧଚିନ୍ତାମଣି**ର ଭିତ୍ତିଭୂମି ରୂପେ ପରିକଳ୍ପିତ ହୋଇଅଛି, ଏଥିରେ କୌଣସି ସନ୍ଦେହ ନାହିଁ।

ଆଲୋଚ୍ୟ ପ୍ରବନ୍ଧର ଦ୍ୱିତୀୟ ଭାଗରେ କବିଙ୍କ ' ବୈଷ୍ଣବ ଦର୍ଶନର ସରସତା, ନାନାଶାସ୍ତ୍ର ପାଣ୍ଡିତ୍ୟ, ତଦାନୀନ୍ତନ ରୀତିନୀତିର ଛାୟା ଏବଂ ଜଡ଼ ଓ ଚେତନା ପ୍ରକୃତିର ଚିତ୍ରଣରେ କୃତିତ୍ୱ" - ଏସବୁ ବିଷୟ ସମାଲୋଚକଙ୍କ କ୍ଷମତାର ପରିସର ଭିତରେ ଆଲୋଚିତ ହୋଇଅଛି। ଏଇ ବିଭାଗଟି ମୃତ୍ୟୁଞ୍ଜୟଙ୍କ ଅନ୍ୟାନ୍ୟ ସମାଲୋଚନାତ୍ମକ ପ୍ରବନ୍ଧଠାରୁ ସମ୍ପୂର୍ଣ୍ଣ ସ୍ୱତନ୍ତ୍ର। ଏହାଙ୍କର ଅନ୍ୟାନ୍ୟ ସମସ୍ତ ପ୍ରବନ୍ଧ ଇତିହାସ - ଭିତ୍ତିକ; ଗୋଟିଏ ଗୋଟିଏ ବିଭାଗ ଏଥିରେ ପ୍ରଧାନ ସ୍ଥାନ ଅଧିକାର କରିଥାନ୍ତି। କିନ୍ତୁ ଆମର ଆଲୋଚ୍ୟ ପ୍ରବନ୍ଧର ଦ୍ୱିତୀୟ ଭାଗରେ ଗୌଡ଼ୀୟ ଧର୍ମଦର୍ଶନର ପରିଚୟ ସହ **ବିଦଗ୍ଧଚିନ୍ତାମଣି**ର କାବ୍ୟଗତ ସୌନ୍ଦର୍ଯ୍ୟ ପରିଶୀଳନ ପ୍ରତି ଅଧିକ ଧ୍ୟାନ ଦିଆଯାଇଅଛି। ଏଥିରେ ସମାଲୋଚକଙ୍କ ଗଭୀର ଶାସ୍ତ୍ରପାଣ୍ଡିତ୍ୟ, ରସପ୍ରାଣତା ତଥା ତୁଳନାତ୍ମକ ସମାଲୋଚନାରେ ଥିବା ତାଙ୍କର ଦକ୍ଷତା ଅତି ସ୍ୱଷ୍ଟଭାବେ ପ୍ରକଟିତ ହୋଇ ଉଠୁଅଛି। ଗୌଡ଼ୀୟ ବୈଷ୍ଣବଧର୍ମ ଦର୍ଶନ, ବିଶେଷତଃ, ସମାନ୍ତସିଂହାରଙ୍କ ସାହିତ୍ୟର ବିଶ୍ଳେଷଣ ଦିଗରେ ପ୍ରବନ୍ଧର ଏଇ ବିଭାଗଟି ଅତ୍ୟନ୍ତ ଉପାଦେୟ। ଏଇ ଦୀର୍ଘ ପ୍ରବନ୍ଧଟି ପୁସ୍ତିକାରୂପରେ ପ୍ରକାଶ ପାଇଥିଲେ ଓଡ଼ିଆ ବୈଷ୍ଣବ ସାହିତ୍ୟ ସମାଲୋଚନା ଦିଗରେ ବହୁ ଲୋକଙ୍କୁ ପ୍ରଭାବିତ କରିପାରିଥାନ୍ତା। ଅଧ୍ୟାପକ ଆର୍ତ୍ତବଲ୍ଲଭଙ୍କ ଟୀକା ଟିପ୍‌ପଣୀର କେତେକ ସ୍ଥଳରେ ଏହାର ପ୍ରଭାବ ମଧ୍ୟ ସ୍ମରଣ କରାଯାଇପାରେ।

ଗୌଡ଼ୀୟ ବୈଷ୍ଣବଧର୍ମ ଦର୍ଶନରେ ଅନୁଶୀଳନ ପରି ଓଡ଼ିଶୀ ଧର୍ମଦର୍ଶନ ଉପରେ ମୃତ୍ୟୁଞ୍ଜୟଙ୍କ ଆଲୋଚନା କିପରି ବିଶିଷ୍ଟ ସ୍ଥାନ ଅଧିକାର କରିଥିଲା, ତାହାର ପରିଚୟ ଆମେ ବର୍ତ୍ତମାନ ଉପସ୍ଥାପନା କରିବାକୁ ଯାଉଅଛୁଁ।

'ଅରକ୍ଷିତ ଦାସ ଓ ମହୀମଣ୍ଡଳ ଗୀତା' (ଜୁଲାଇ, ୧୯୨୦) ଓ "ବଳରାମ ଦାସ ଓ ବ୍ରହ୍ମାଣ୍ଡ ଭୂଗୋଳ" (ଜୁନ୍, ୧୯୨୨) - ଆଧ୍ୟାତ୍ମିକ ଦର୍ଶନ ପ୍ରଖ୍ୟାପନ ଦୃଷ୍ଟିରୁ ଏ ଉଭୟ ପ୍ରବନ୍ଧରେ ବହୁ ସାମ୍ୟ ପରିଦୃଷ୍ଟ ହୋଇଥାଏ। ଏଥିରୁ ପ୍ରଥମଟିରେ ଅରକ୍ଷିତ ଦାସଙ୍କ

ଜୀବନ କାହାଣୀ, ଜନଶ୍ରୁତି ଓ ମହୀମଣ୍ଡଳ ଗୀତାର ବିଭିନ୍ନ ସ୍ଥଳରେ ଥିବା ଉପାଦାନ ଉପରେ ଆଧାରିତ। ଏପରି ଜୀବନୀ ପ୍ରସ୍ତୁତ କରିବାର କୌଶଳ 'ଅଚ୍ୟୁତାନନ୍ଦ ଦାସ'ପ୍ରବନ୍ଧରେ ପ୍ରଥମେ ଅବଲମ୍ବିତ ହୋଇଥିଲା। ଅରକ୍ଷିତ ଦାସଙ୍କ ଆବିର୍ଭାବ ସମୟ ନିର୍ଣ୍ଣୟରେ ଯେଉଁ ବିଚାର ପ୍ରଣାଳୀ ଅନୁସୃତ ହୋଇଅଛି, ସେ ବିଚାର ପଦ୍ଧତିର ଅନ୍ୟ ଏକ ରୂପ ଦ୍ୱିତୀୟ ପ୍ରବନ୍ଧ 'ବଳରାମ ଦାସ ଓ ବ୍ରହ୍ମାଣ୍ଡ ଭୂଗୋଳ' ରେ ପରିଲକ୍ଷିତ ହୁଏ। କୌଣସି ବିଷୟକୁ କେବଳ ସରଳ ବିଶ୍ୱାସରେ ସତ୍ୟ ବୋଲି ଗ୍ରହଣ କରିନେବା ପୂର୍ବରୁ ତା'ର ସତ୍ୟାସତ୍ୟ ପରୀକ୍ଷା କରିବା ଏକାନ୍ତ ପ୍ରୟୋଜନ - ଏପରି ପ୍ରୟୋଜନବୋଧ 'ଅଚ୍ୟୁତାନନ୍ଦ ଦାସ' ପ୍ରବନ୍ଧରେ ପ୍ରକଟିତ ହୋଇ ନଥିବାରୁ ସତ୍ୟ ବୋଲି ସୁପ୍ରତିଷ୍ଠିତ ହୋଇ ପାରିଥିଲା। ଏହା ପରେ ସାରଳା ଦାସ, ଦୀନକୃଷ୍ଣ ଦାସ, ସାମନ୍ତସିଂହାର, ଅରକ୍ଷିତ ଦାସଙ୍କ ଉପରେ ଲିଖିତ ଆଲୋଚନାରେ ଏ ବିଚାରବୋଧ କ୍ରମଶଃ ଅଭିବୃଦ୍ଧି ଲାଭକରି ବଳରାମ ଦାସଙ୍କ ଉପରେ ହୋଇଥିବା ଆଲୋଚନାରେ କିପରି ଚରମ ସାର୍ଥକତା ଲାଭ କରିଥିଲା, ତାହାର ପରିଚୟ ଦେଖନ୍ତୁ। **ରାମାୟଣ** ଓ **ଛତିଶଗୁପ୍ତଗୀତାର** ପ୍ରଣେତା ହେଉଛନ୍ତି ବଳରାମ ଦାସ - ଯେ ଥିଲେ ତେଲେଙ୍ଗା ମୁକୁନ୍ଦଦେବଙ୍କ ସମକାଳୀନ -- ଏପରି ଭ୍ରାନ୍ତ ଅଭିମତର ସଂଶୋଧନ କରନ୍ତି ମଧୁସୂଦନ ଦାସ। ୧୯୧୩ ସାଲରେ ପ୍ରକାଶିତ ' ଗୁପ୍ତଗୀତା ଓ ବଳରାମ ଦାସ'ପ୍ରବନ୍ଧରେ ସେ ପ୍ରମାଣ କରିଦେଲେ ଯେ **ରାମାୟଣ** ପ୍ରଣେତା ବଳରାମ ଦାସ ଓ **ଛତିଶଗୁପ୍ତଗୀତାର** ଲେଖକ ବଳରାମ ଦାସ ହେଉଛନ୍ତି ଏକ ନାମଧାରୀ ଦୁଇଜଣ ସ୍ୱତନ୍ତ୍ର ବ୍ୟକ୍ତି। ଏଥିରୁ ଜଣେ ବୃଦ୍ଧ ଓ ଅପର ଜଣକ ତରୁଣ ବୋଲି ସେ ଧରି ନେଇଛନ୍ତି। ହେଲେହେଁ, ଏ ଉଭୟେ ହେଉଛନ୍ତି ତେଲେଙ୍ଗା ମୁକୁନ୍ଦଦେବଙ୍କ ସମୟର ଲୋକ। **ଛତିଶଗୁପ୍ତଗୀତାରେ** ଲେଖାଅଛି ଯେ, ବଳରାମଙ୍କ ଜନ୍ମ ମୁକୁନ୍ଦଦେବଙ୍କ ୨ ଅଙ୍କରେ, ପୁଣି ଏ ପୁସ୍ତକରେ ରଚନା ସମୟ ହେଉଛି ମୁକୁନ୍ଦଦେବଙ୍କ ୨୭ ଅଙ୍କ। କିନ୍ତୁ ଦେଖିବାର କଥା, ତେଲେଙ୍ଗା ମୁକୁକନ୍ଦଦେବ ଏତେ ବର୍ଷ ପର୍ଯ୍ୟନ୍ତ ରାଜତ୍ୱ କରି ନଥିଲେ। ତେଣୁ ଏକ ନାମଧାରୀ ଏ ଉଭୟ କବି ତେଲେଙ୍ଗା ମୁକୁନ୍ଦଦେବଙ୍କ ସମୟର ନୁହନ୍ତି, ଏହା ନିଶ୍ଚିତ। ଦୀର୍ଘ ବହୁବର୍ଷ ଧରି ଏ ସମ୍ପର୍କରେ ଯେଉଁ ବିଷୟଟି ଏକାନ୍ତ ସନ୍ଦେହାଚ୍ଛନ୍ନ ଥିଲା, ମୃତ୍ୟୁଞ୍ଜୟ **ବ୍ରହ୍ମାଣ୍ଡଭୂଗୋଳର** ଆଲୋଚନା ପ୍ରସଙ୍ଗରେ **ଛତିଶଗୁପ୍ତଗୀତାର** ପ୍ରଣେତା ବଳରାମଙ୍କୁ ଖୋରଧା ଭୋଇବଂଶର ମୁକୁନ୍ଦଦେବଙ୍କ ସମୟରେ ଚିହ୍ନିତ କରି ସେହି ସମସ୍ୟାର ସମାଧାନ କରି ଦେଇଥିଲେ। ଏହାଙ୍କ ଆଲୋଚନାର ମାର୍ଗ ଅନୁସରଣ କରି ଆଧାପକ ଆର୍ତ୍ତବଲ୍ଲଭ ମହାନ୍ତି, 'ପରଚେଗୀତା'ର ମୁଖବନ୍ଧରେ ପ୍ରମାଣ କଲେ ଯେ, **ଛତିଶଗୁପ୍ତଗୀତାର** ପ୍ରକୃତ ଲେଖକ ହେଉଛନ୍ତି ଦ୍ୱାରାକା ଦାସ - ବଳରାମ ଦାସ ତାଙ୍କର ଛଦ୍ମନାମ ମାତ୍ର। ଆଧୁନିକ ସାଲ ଗଣନାର ନିୟମ ଅନୁସରଣ କରି ଐତିହାସିକ କେଦାରନାଥ ମହାପାତ୍ର କହିଲେ ଯେ, ଦ୍ୱାରାକା ଦାସଙ୍କ ଜନ୍ମ ୧୬୫୬-୫୭ ସାଲ (ମୁକୁନ୍ଦଦେବଙ୍କ ୨ ଅଙ୍କ) **ଛତିଶଗୁପ୍ତଗୀତାର** ରଚନା ସମୟ ୧୬୭୮-୭୯ ସାଲ (ମୁକୁନ୍ଦଦେବଙ୍କ ୨୭ ଅଙ୍କ) ଓ ତାଙ୍କ ମୃତ୍ୟୁ ପ୍ରାୟ ୧୭୩୭ ସାଲ (ଶିବପୁରାଣରେ ବୀରକେଶରୀ ଦେବଙ୍କ ନାମୋଲ୍ଲେଖ ଥିବାରୁ)। ଏଥିରୁ ସ୍ପଷ୍ଟ ଅନୁଭୂତ ହୁଏ ଯେ, ମୃତ୍ୟୁଞ୍ଜୟ **ଛତିଶଗୁପ୍ତଗୀତାର** ରଚନା ସମୟ ନିର୍ଦ୍ଧାରଣ ପାଇଁ ଭୋଇବଂଶୀୟ ମୁକୁନ୍ଦଦେବଙ୍କ ନାମୋଲ୍ଲେଖ କରିବାରେ ଯେଉଁ ନିରାପଦ

ମାର୍ଗ ଉନ୍ମୋଚନ କରିଦେଇଥିଲେ, ଅଧ୍ୟାପକ ଆର୍ତ୍ତବଲ୍ଲଭ ଓ ଐତିହାସିକ କେଦାରନାଥ ସେଇ ମାର୍ଗ ଅନୁସରଣ କରି ନିଜ ନିଜ ସିଦ୍ଧାନ୍ତରେ ଉପନୀତ ହୋଇଅଛନ୍ତି ମାତ୍ର ।

ଓଡ଼ିଶାର ପ୍ରଚଳିତ ଧର୍ମଦର୍ଶନର ସ୍ୱରୂପ ବିଶ୍ଳେଷଣ ହେଉଛି ମୃତ୍ୟୁଞ୍ଜୟଙ୍କ ଆଲୋଚନାର ଅନ୍ୟ ଏକ ବୈଶିଷ୍ଟ୍ୟ। **ଦ୍ୱାରକା ଦାସ** ବନାମ **ବଳରାମ ଦାସ** (୧୬୫ ୧୭୩୭) - **ଅରକ୍ଷିତ ଦାସ** (ଆବିର୍ଭାବର ସମୟ ଆନୁମାନିକ ୧୭୭୦ ସାଲ), ଏ ଉଭୟଙ୍କ ପୁସ୍ତକକୁ କେନ୍ଦ୍ରକରି ସେ ଯେଉଁ ଦର୍ଶନର ସାଧାରଣ ପରିଚୟ ନିଜ ଆଲୋଚନାରେ ସ୍ଥାନ ଦେଇଛନ୍ତି, ତାହାହିଁ ହେଉଛି ୧୭ଶ ଓ ୧୮ଶ ଶତାବ୍ଦୀରେ ଦେଖା ଦେଇଥିବା ଏ ଦେଶର ଆଧ୍ୟତ୍ମିକ ଚେତନାର ସାମାନ୍ୟ ନିଦର୍ଶନ ମାତ୍ର। ମଧୁସୂଦନ ଦାସ ୧୯୧୩ ସାଲରେ 'ଗୁପ୍ତଗୀତା ଓ ବଳରାମ ଦାସ' ପ୍ରବନ୍ଧରେ ଏପରି ଆଲୋଚନାର ସୂତ୍ରପାତ କରିଥିଲେହେଁ ସେ ନିଜ ଆଲୋଚନାକୁ କେବଳ ଉପନିଷଦର ତାତ୍ତ୍ୱିକ ବ୍ୟାଖ୍ୟା ଭିତରେ ସୀମିତ କରି ରଖି ଦେଇଥିଲେ। ପ୍ରାଚ୍ୟବିଦ୍ୟା ପ୍ରବୀଣ ଗବେଷକ ନଗେନ୍ଦ୍ରନାଥ ବସୁଙ୍କ 'Modern Buddhism and Its Followers in Orissa' ପୁସ୍ତକ ୧୯୧୧ ସାଲରେ ପ୍ରକାଶ ପାଇଥିଲେ ହେଁ ଏହାର କୌଣସି ପ୍ରଭାବ ମଧୁସୂଦନଙ୍କ ଆଲୋଚନାରେ ପ୍ରତିଫଳିତ ହୋଇନାହିଁ। ବଳରାମ ଦାସଙ୍କ **ବ୍ରହ୍ମାଣ୍ଡଭୂଗୋଳ**, ବିଶେଷତଃ ଅରକ୍ଷିତ ଦାସଙ୍କ **ମହୀମଣ୍ଡଳଗୀତା**ର ଆଲୋଚନାରେ ମୃତ୍ୟୁଞ୍ଜୟ, ବସୁ ମହାଶୟଙ୍କ ଚିନ୍ତାଧାରା ଆହରଣ କରି ଏ ଦେଶର ଧର୍ମସାହିତ୍ୟରେ ଥିବା ବୌଦ୍ଧ ପ୍ରଭାବର ସ୍ୱରୂପ ଆମକୁ ପରିବେଷଣ କରିଦେଇ ଅଛନ୍ତି। ପରବର୍ତ୍ତୀ ସମୟରେ ଅଧ୍ୟାପକ ଆର୍ତ୍ତବଲ୍ଲଭଙ୍କ 'ଅଚ୍ୟୁତାନନ୍ଦ ଓ ଅଣାକାର ସଂହିତା', 'ନିର୍ଗୁଣମହାତ୍ମ୍ୟ ଓ ବିଷ୍ଣୁଗର୍ଭପୁରାଣ'ର ମୁଖବନ୍ଧରେ ବସୁ ମହାଶୟ ଓ ମୃତ୍ୟୁଞ୍ଜୟଙ୍କ ଚିନ୍ତାଧାରା ଅନୁସନ୍ଧାନ କରିବା କଷ୍ଟକର ନୁହେଁ।

ଦ୍ୱାରକା ଦାସ ବନାମ ତରୁଣ ବଳରାମ ଦାସ କିମ୍ବା ଦ୍ୱିତୀୟ ବଳରାମ ଦାସଙ୍କୁ ୧୬ଶ ଶତାବ୍ଦୀର ରାମାୟଣକାର ବଳରାମ ଦାସଙ୍କ ଠାରୁ ପୃଥକ୍ କରି ତାଙ୍କୁ ୧୭-୧୮ଶ ଶତାବ୍ଦୀରେ ଅବସ୍ଥାପିତ କରିବାଦ୍ୱାରା ଓଡ଼ିଆ ଧର୍ମସାହିତ୍ୟର ଆଲୋଚନାରେ ମୃତ୍ୟୁଞ୍ଜୟ କି ବପୁଳ ପରିବର୍ତ୍ତନ ସୂତ୍ରପାତ କରିଥିଲେ, ତାହା ସେ ଯେ ନିଜେ, ଏପରି କି ତାଙ୍କ ପରବର୍ତ୍ତୀ ସମୟରେ ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତି ଥରେ ଗଭୀର ଭାବେ ଅନୁଧ୍ୟାନ କରିଥିଲେ, ଓଡ଼ିଆ ଧର୍ମସାହିତ୍ୟର ଆଲୋଚନା ନିଶ୍ଚୟ ଏକ ଭିନ୍ନ ଦିଗରେ ଗତି କରିଥାନ୍ତା ଓ ନିଜ ନିଜ ଲେଖାରେ ଦେଇଥିବା ବହୁ ଦ୍ୱନ୍ଦ୍ୱାତ୍ମକ ଅଭିମତ କେବେ ସମ୍ଭବପର ହୋଇ ନଥାନ୍ତା। ମୃତ୍ୟୁଞ୍ଜୟଙ୍କ ଗବେଷଣାଲବ୍ଧ ସିଦ୍ଧାନ୍ତର ଚମତ୍କାରିତା ଉପଲବ୍ଧି ପାଇଁ ଆମେ ବର୍ତ୍ତମାନ ସେଇ ସମ୍ଭାବ୍ୟମାନ ପରିବର୍ତ୍ତନର ଚିତ୍ର ଉପସ୍ଥାପନ କରୁଅଛୁଁ।

ରାମାୟଣକାର ବଳରାମ ଦାସ, ଭାଗବତକାର ଜଗନ୍ନାଥ ଦାସ ଓ ହରିବଂଶ ଲେଖକ ଅଚ୍ୟୁତାନନ୍ଦ ଦାସ - ଏଇ ତିନି ମହାପୁରୁଷଙ୍କ ନାମରେ ପ୍ରଚଳିତ ବହୁ ପୁସ୍ତକ ଯେ ଏଇ ମୂଳ ଲେଖକମାନଙ୍କର ନୁହେଁ, 'ଛତିଶଗୁପ୍ତଗୀତା'ର ପିତୃତ୍ୱ ଆବିଷ୍କାର ପରେ, ଏ ବିଷୟ ଏକ ସ୍ଥିର ସତ୍ୟରୂପେ ପ୍ରମାଣିତ ହୋଇ ଯାଇଥିଲା। ଜଣେ ମୂଳ ଗୁରୁଙ୍କ ନାମ ଭଣିତାରେ ପରବର୍ତ୍ତୀ ସମୟରେ ତାଙ୍କ ଶିଷ୍ୟମାନଙ୍କଦ୍ୱାରା ବିଭିନ୍ନ ପୁସ୍ତକ ପ୍ରଚାରିତ ହେବା ଏକାନ୍ତ ସ୍ୱାଭାବିକ। ପଣ୍ଡିତ ମୃତ୍ୟୁଞ୍ଜୟ 'ଅଚ୍ୟୁତାନନ୍ଦ ଦାସ' ପ୍ରବନ୍ଧ ଲେଖିଲାବେଳେ

ଏହା ପ୍ରତି ଆଦୌ ସଚେତନ ନଥିଲେ: ଏପରି କି ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତି **ଶୂନ୍ୟସଂହିତା**ରେ କେତେକ କାଳଗତ ପ୍ରମାଦ ଥିଲେ ସୁଦ୍ଧା ଏହା ଉପରେ ଆଦୌ ଗୁରୁତ୍ୱ ଦେଇନାହାନ୍ତି। **ଶୂନ୍ୟସଂହିତା**ରେ ଥିବା ଚୈତନ୍ୟ ସମ୍ପର୍କିତ ପଞ୍ଚସଖା ଧାରଣା ଏକାନ୍ତ ମିଥ୍ୟା ହେଲେହେଁ ଏ ଉଭୟ ଆଲୋଚକଙ୍କ ସରଳ ବିଶ୍ୱାସ ହେତୁ ସେଇ ମିଥ୍ୟା ଆଜି ଓଡ଼ିଆ ଧର୍ମସାହିତ୍ୟ ଆଲୋଚନାରେ ଏକାନ୍ତ ସତ୍ୟ ରୂପେ ପ୍ରତିଷ୍ଠିତ ହୋଇପାରିଛି। ଯେଉଁ ବୈଜ୍ଞାନିକ ବିଚାରସମ୍ମତ ମନୋବୃତ୍ତି **ଛତିଶଗୁପ୍ତଗୀତା**ର ପିତୃତ୍ୱ ନିରୂପଣରେ ସମର୍ଥ ହୋଇଥିଲା, ତାହାରି ଅଭାବ ହେଲେ ଯେ କୌଣସି ମିଥ୍ୟା ସତ୍ୟର ଆଭା ବହନ କରିବା ଆଦୌ ବିଚିତ୍ର ନୁହେଁ।

ଷୋଡ଼ଶ ଶତାବ୍ଦୀର ପ୍ରଥମ ଭାଗରେ ଶ୍ରୀଚୈତନ୍ୟଙ୍କ ଦୀର୍ଘକାଳ ଧରି ପୁରୀକ୍ଷେତ୍ରରେ ଅବସ୍ଥାନ ଓ ତାଙ୍କ ଦେହାବସାନ (୧୫୩୩ ସାଲ) ପରେ ଷଟ୍‌ଗୋସ୍ୱାମୀ ଯେଉଁ ପ୍ରେମଧର୍ମୀ ବୈଷ୍ଣବ ମତବାଦ ପ୍ରଚାର କରିଥିଲେ, ୧୬୧୫ ସାଲରେ କୃଷ୍ଣଦାସ କବିରାଜଙ୍କ 'ଶ୍ରୀଚୈତନ୍ୟଚରିତାମୃତ' ପୁସ୍ତକ ରଚିତ ହେବା ଫଳରେ ସେଇ ମତବାଦଟି ଏକ ସ୍ଥିରତର ଭୂମିରେ ବିକଶିତ ହୋଇ ଉଠିବାର ସୁବିଧା ପାଇଥିଲା। ଯୋଗ ଓ ଜ୍ଞାନର ସାଧନ କ୍ଷେତ୍ର ପୁରୀକ୍ଷେତ୍ରରେ ଏଇ ବୈଷ୍ଣବ ଭାବନା ବିରୁଦ୍ଧରେ କ'ଣ ଘଟିଥିଲା, ତା'ର କୌଣସି ନିର୍ଭରଯୋଗ୍ୟ ଉପାଦାନ ଆମ ପାଖରେ ନଥିଲେ ସୁଦ୍ଧା ଓଡ଼ିଶାର ପ୍ରଚଳିତ ଧର୍ମ ବିଶ୍ୱାସ ଏଇ ପ୍ରେମ ଦର୍ଶନକୁ ଯେ ସୁସ୍ଥଚିତ୍ତରେ ଗ୍ରହଣ କରି ନଥିବ, ସପ୍ତଦଶ ଶତାବ୍ଦୀର ବହୁ ଉପାଦାନ ଏହାର ସାକ୍ଷ୍ୟ ପ୍ରଦାନ କରନ୍ତି। ଏଇ ଶତାବ୍ଦୀର ପ୍ରାୟ ମଧ୍ୟଭାଗରେ ରଚିତ ଦିବାକର ଦାସଙ୍କ 'ଜଗନ୍ନାଥଚରିତାମୃତ' ପୁସ୍ତକର ଅନ୍ତଃସ୍ୱରରେ ଏପରି ଏକ ପ୍ରତିକ୍ରିୟାର ଧ୍ୱନି ଶୁଣିପାରିବା କଷ୍ଟକର ନୁହେଁ। ଓଡ଼ିଶାର ପାରମ୍ପରିକ ଧର୍ମ ଧାରଣାର ପୁନରଦ୍ଧାରପାଇଁ ସେସମୟରେ ବହୁ ଲେଖକ ସଜାଗ ହୋଇ ଉଠିଥିବାର ଦେଖିବାକୁ ମିଳେ। ଜଗନ୍ନେଶ୍ୱର ଦାସଙ୍କ 'ପ୍ରଣବବ୍ୟାହୃତୀଗୀତା' (୧୬୪୬ ସାଲ) ରେ ଏଇ ଯୋଗ-ଜ୍ଞାନମୂଳକ ଧର୍ମ ଭାବନାର ତାତ୍ତ୍ୱିକ ବିଶ୍ଳେଷଣ ଲିପିବଦ୍ଧ ହୋଇ ରହିଅଛି।

**ଛତିଶଗୁପ୍ତଗୀତା** (୧୬୭୮) ଓ **ମହୀମଣ୍ଡଳଗୀତା** (ଲେଖକଙ୍କ ଜନ୍ମ ପ୍ରାୟ ୧୭୭୦ ସାଲ) - ଏ ଉଭୟ ପୁସ୍ତକର ଅନ୍ତଃସ୍ୱର ଯୋଗ ଓ ଜ୍ଞାନବାଦଦ୍ୱାରା ପୂର୍ଣ୍ଣତଃ ନିୟନ୍ତ୍ରିତ। ସ୍ଥୂଳତଃ, ୧୭ଶ ଓ ୧୮ଶ ଶତାବ୍ଦୀରେ ପ୍ରଚଳିତ ଓଡ଼ିଶାର ଆଧ୍ୟାତ୍ମିକ ଦର୍ଶନର ଏ ଉଭୟ ପୁସ୍ତକ ସାର୍ଥକ ପ୍ରତିଛବି କହିଲେ କିଛି ଅତ୍ୟୁକ୍ତି ହେବନାହିଁ। ଏ ଉଭୟ ପୁସ୍ତକର ଯୋଗ ଓ ଜ୍ଞାନବାଦ ତନ୍ତ୍ର-ମନ୍ତ୍ର-ଯନ୍ତ୍ର ସହିତ ସମନ୍ୱିତ ହୋଇଗଲେ ସେହି ଧର୍ମଦର୍ଶନ ଯେଉଁ ରୂପ ଆହରଣ କରିବାର କଥା, ସେଇ ରୂପର ପରିପୂର୍ଣ୍ଣ ଚିତ୍ର ଅଚ୍ୟୁତାନନ୍ଦଙ୍କର **ଶୂନ୍ୟସଂହିତା**ରେ ଅତି ସ୍ୱଚ୍ଛଭାବେ ଅଙ୍କିତ ହୋଇଥିବାର ଅନୁଭୂତ ହୁଏ। ଗୌଡୀୟ ପ୍ରେମଦର୍ଶନ ତଥା ପରକୀୟା ପ୍ରୀତିସର୍ବସ୍ୱ ଭକ୍ତିଧର୍ମର ଏ ରୂପ ସହିତ କୌଣସି ସମ୍ପର୍କ ନାହିଁ। ଶ୍ରୀଚୈତନ୍ୟଙ୍କ ସହ ଅଚ୍ୟୁତାନନ୍ଦଙ୍କର ଦ୍ୱିତୀୟ ମିଳନ ପୂର୍ବରୁ ସେ ବୌଦ୍ଧ ଜଗନ୍ନାଥଙ୍କଠାରୁ ଏ ଦେଶରେ ଯେଉଁ ମନ୍ତ୍ର ଓ ଭଜନ ପ୍ରଚାର କରିବାପାଇଁ ଆଦେଶ ପାଇଥିଲେ, ତାହା ହେଉଛି, "ମନ୍ତ୍ରନିରାକାର ଶୂନ୍ୟଭଜନ" - ଏ ମନ୍ତ୍ର ଓ ଭଜନ ସହିତ ଗୌଡୀୟ ପ୍ରେମଦର୍ଶନର କୌଣସି ସମ୍ପର୍କ ପ୍ରତିଷ୍ଠା କରାଯାଇ ନପାରେ। ଗୋଟିଏ ସିଦ୍ଧାନ୍ତରେ

ଉପନୀତ ହେବା ପାଇଁ ମୃତ୍ୟୁଞ୍ଜୟ ତାଙ୍କର ଅନ୍ୟାନ୍ୟ ପ୍ରବନ୍ଧଗୁଡ଼ିକରେ ବିଚାର ବୁଦ୍ଧି ପ୍ରୟୋଗ କରିଛନ୍ତି। ଏପରି କି, ଏହାରି ବଳରେ ସେ ଅନ୍ୟର ଭ୍ରାନ୍ତିକୁ ସଂଶୋଧନ କରି ନେଇଛନ୍ତି ଓ ଦୀନକୃଷ୍ଣଙ୍କ ଉପରେ ନିଜର ପୂର୍ବମତ ମଧ୍ୟ ପରିବର୍ତ୍ତନ କରିଦେଇ ଅଛନ୍ତି। ଠିକ୍ ସେଇପରି ମୃତ୍ୟୁ ପୂର୍ବରୁ ପ୍ରାଥମିକ ଜୀବନରେ ଲିଖିତ 'ଅଚ୍ୟୁତାନନ୍ଦ ଦାସ' ପ୍ରବନ୍ଧର ସିଦ୍ଧାନ୍ତକୁ ସେ ଯଦି ପୁନର୍ବିଚାର କରିଥାନ୍ତେ, କିମ୍ବା ଅଚ୍ୟୁତାନନ୍ଦ ପ୍ରଦତ୍ତ ଆତ୍ମଜୀବନୀ ଉପରେ ସାମାନ୍ୟ ସନ୍ଦେହ ପ୍ରକାଶ କରିଥାନ୍ତେ, ତା ହେଲେ 'ମନ୍ତ୍ରନିରାକାର ଶୂନ୍ୟଭଜନ'ର ଶ୍ରେଷ୍ଠ ପ୍ରବକ୍ତା ଅଚ୍ୟୁତାନନ୍ଦ କିମ୍ବା ଅନ୍ୟ ଚାରି ମହାପୁରୁଷଙ୍କୁ ଶ୍ରୀଚୈତନ୍ୟଙ୍କର ଅନ୍ତରଙ୍ଗ ଅନୁଚର ରୂପେ ଚିତ୍ରଣ କରିବାକୁ ସେ ଆଦୌ ସୁଖକର କିମ୍ବା ଶ୍ରେୟସ୍କର ମଣି ନଥାନ୍ତେ। ଅଧ୍ୟାପକ ଆର୍ତ୍ତବଲ୍ଲଭ ଯେପରି ବହୁ ସ୍ଥଳରେ ମୃତ୍ୟୁଞ୍ଜୟଙ୍କର ପ୍ରଦର୍ଶିତ ମାର୍ଗରେ ଅତି ନିରାପଦରେ ଯାଇ କେତେକ ସ୍ଥଳରେ ତାଙ୍କର ପ୍ରମାଦ ଓ ଅସଂପୂର୍ଣ୍ଣତାକୁ ସଂଶୋଧନ କରିଦେଇ ଅଛନ୍ତି, ଅଚ୍ୟୁତାନନ୍ଦଙ୍କ ଉପରେ ମୃତ୍ୟୁଞ୍ଜୟଙ୍କ ସେଇ ସଂଶୋଧନ ଅଭିମତ ଦେଖିଥିଲେ, ଆମର ଦୃଢ଼ ବିଶ୍ୱାସ, ସେ କଦାପି ଚୈତନ୍ୟ ସମ୍ପର୍କିତ ପଞ୍ଚସଖା ଧାରଣ ପରି ଏକ ଭ୍ରାନ୍ତ ଅଭିମତକୁ ଅଧିକ ସତ୍ୟ ରୂପେ ଉପସ୍ଥାପନା କରି ନଥାନ୍ତେ। ପଞ୍ଚସଖା ଶବ୍ଦଟିର ଯଥାର୍ଥ ତାତ୍ପର୍ଯ୍ୟ ଓ ତାର ଐତିହାସିକ ଆବଶ୍ୟକତା, ଏ ଉଭୟ ସମାଲୋଚକଙ୍କଦ୍ୱାରା ସେତେବେଳେ ଅବଧାରିତ ହୋଇ ଯାଇଥିଲେ, ଗତ ଅର୍ଦ୍ଧ ଶତାବ୍ଦୀର ଓଡ଼ିଆ ଧର୍ମସାହିତ୍ୟ ଆଲୋଚନା ଏକ ସ୍ୱତନ୍ତ୍ର ଭିନ୍ନ ରୂପରେ ବିକାଶ ଲାଭ କରିଥାନ୍ତା ବୋଲି ମନେହୁଏ। ଏକ ଦିଗରେ ପଞ୍ଚସଖାଙ୍କର ଶ୍ରୀଚୈତନ୍ୟଙ୍କ ସହ ନିଗୂଢ଼ ସମ୍ପର୍କ, ଅପର ଦିଗରେ ଏମାନଙ୍କର ଏକ ଏକ ସ୍ୱତନ୍ତ୍ର ଅଭିନବ ଧର୍ମମତବାଦର ପ୍ରଚାର -- ଏପରି ଦ୍ୱନ୍ଦ୍ୱାତ୍ମକ ବିପରୀତମୁଖୀ ଅଭିମତ ପ୍ରକାଶ କରିବା ଏମାନଙ୍କ ପକ୍ଷରେ ସମ୍ଭବପର ହୋଇ ନଥାନ୍ତା। 'ବ୍ରହ୍ମାଣ୍ଡ ଭୂଗୋଳ ଓ ବଳରାମ ଦାସ' ପ୍ରବନ୍ଧରେ ମୃତ୍ୟଞ୍ଜୟ ଆଲୋଚନାର ଯେଉଁ ଆଭିମୁଖ୍ୟ ପ୍ରଦର୍ଶନ କରିଥିଲେ, ପରବର୍ତ୍ତୀ ଅଲୋଚକମାନେ ତା'ର ଉପଯୁକ୍ତ ବିନିଯୋଗ କରି କରିଥିଲେ ଓଡ଼ିଆ ଧର୍ମସାହିତ୍ୟ ଆଲୋଚନା ଆଜି ଅତି ଉନ୍ନତ ସ୍ତରରେ ଉପନୀତ ହୋଇ ପାରିଥାନ୍ତା ବୋଲି ବିଶ୍ୱାସ ହୁଏ।

ସାରଳା ଦାସ, ଦୀନକୃଷ୍ଣ ଦାସ, ଅଚ୍ୟୁତାନନ୍ଦ ଦାସ, ଅଭିମନ୍ୟୁ ସାମାନ୍ତସିଂହାର,ଅରକ୍ଷିତ ଦାସ, ଦ୍ୱାରକା ଦାସ, ବଳରାମ ଦାସ - ଏମିତି କେତେ ଜଣ ପ୍ରାଚୀନ କବିଙ୍କ ଉପରେ ମୃତ୍ୟୁଞ୍ଜୟ ଯେଉଁ ଆଲୋଚନା କରିଅଛନ୍ତି, ତା'ର ପରିମାଣ ଅଳ୍ପ, ହେଲେ ଆଲୋଚନାର ଆଭିମୁଖ୍ୟ ସଂପୂର୍ଣ୍ଣ ଅଭିନନ୍ଦନୀୟ। ଇତିହାସ ଧର୍ମାକ୍ରାନ୍ତ- ଏପରି ଆଭିମୁଖ୍ୟ ଏକାନ୍ତ ଭାବେ ବିଜ୍ଞାନସମ୍ମତ ଓ ଗବେଷଣା ଧର୍ମରେ ଏହା ସତତ ଉଜ୍ଜ୍ୱଳ ଏବଂ ପରିମାର୍ଜିତ। ଗବେଷକର ଯୁକ୍ତିସର୍ବସ୍ୱ ମନୋବୃତ୍ତି ଓ ବିଷୟ ପର୍ଯ୍ୟବେକ୍ଷଣରେ ଗଭୀର ଅନ୍ତର୍ଦୃଷ୍ଟି, ଏ ଉଭୟ ତାହା କିଛି ଥରେ ଧରିନିଅନ୍ତି ଓ ଯାହା କିଛି ସତ୍ୟ ବୋଲି ଉପଲବ୍ଧ କରନ୍ତି, ସେଥିରେ ପ୍ରମାଦ ଯେ ସଂଶୋଧିତ ହୁଏ ବା ଅସଂପୂର୍ଣ୍ଣତା ପରିପୂର୍ଣ୍ଣତା ଲାଭକରେ ତାହା ନୁହେଁ, ଯାହା ସବୁଦିନପାଇଁ ଅନ୍ୟମାନଙ୍କ ପକ୍ଷରେ ହୁଏ ଏକମାତ୍ର ପ୍ରଧାନ ଅବଲମ୍ବନ। ମୃତ୍ୟୁଞ୍ଜୟ ଥିଲେ ଓଡ଼ିଆ - ସମାଲୋଚନା-ସାହିତ୍ୟର ଆଦି ଇତିହାସରେ ଏପରି ପ୍ରକୃତିର ଜଣେ ଗବେଷକ, ଯାହାଙ୍କ ପ୍ରଦର୍ଶିତ ମାର୍ଗଟି ପ୍ରସ୍ତୁତ ହୋଇ

ରହି ନଥିଲେ ଅଧ୍ୟାପକ ଆର୍ତ୍ତବଲ୍ଲଭଙ୍କ ପରି ଜଣେ ସମାଲୋଚକର ଆଲୋଚନା ବହୁ କ୍ଷେତ୍ରରେ ସଂପୂର୍ଣ୍ଣ ଭିନ୍ନରୂପ ଧରିଥାନ୍ତା ବୋଲି ମନେହୁଏ। ପ୍ରାଚୀନ ସାହିତ୍ୟର ଆଲୋଚନା ଦୃଷ୍ଟିରୁ ବିଚାର କଲେ ଜଣାଯାଏ ଯେ,ଗତ ଅର୍ଦ୍ଧଶତାବ୍ଦୀର ସାହିତ୍ୟାଲୋଚନା ବହୁଦିଗରୁ ଅଧ୍ୟାପକ ଆର୍ତ୍ତବଲ୍ଲଭଙ୍କ ବିଚାରଧାରାଦ୍ୱାରା ପରିପୁଷ୍ଟ ତଥା ନିୟନ୍ତ୍ରିତ। ଅତୀବ ଦୁଃଖର କଥା, ଅଧ୍ୟାପକ ଆର୍ତ୍ତବଲ୍ଲଭଙ୍କ ଆଲୋଚନାର ମୂଳସ୍ରୋତ ଉପଲବ୍ଧି ପ୍ରତି ଆମେ କେବେ ଅବହିତ ହେଉ ନାହୁଁ ବୋଲି ପଣ୍ଡିତ ମୃତ୍ୟୁଞ୍ଜୟଙ୍କ ଅବଦାନ ଆଜି ସଂପୂର୍ଣ୍ଣ ବିସ୍ମୃତ କହିଲେ ଚଳେ।

ଆଧୁନିକ ସାହିତ୍ୟର ସମାଲୋଚନା କ୍ଷେତ୍ରରେ ମୃତ୍ୟୁଞ୍ଜୟଙ୍କ ଭୂମିକାର ପରିଚୟ ଆମର ପରବର୍ତ୍ତୀ ଆଲୋଚନାରେ ଆପଣମାନେ ଦେଖିବାକୁ ପାଇବେ।

ଚାରି

ଅତୀତର ଘଟଣାବଳୀ କାଳ-ସ୍ରୋତରେ ବିଲୁପ୍ତ କିମ୍ବା ପରିବର୍ତ୍ତିତ, ଏପରି କି ବହୁ ସମୟରେ ସେସବୁ ଲୋକଙ୍କ ସ୍ମୃତିରୁ ମଧ୍ୟ ଏପରି ବିସ୍ମୃତ ହୋଇପଡ଼ନ୍ତି ଯେ, ସେମାନଙ୍କ ଯଥାର୍ଥ ସ୍ୱରୂପର ଉପଲବ୍ଧି ସବୁ ସମୟରେ ସମ୍ଭବ ହୁଏନାହିଁ। ଓଡ଼ିଆ ସାହିତ୍ୟ କଥା ବିଚାର କଲେ ଆମେ ଦେଖୁଁ ଯେ, ଲୋକମାନେ ବହୁ ସମୟରେ ନିଜ ନିଜ ଲେଖାରେ କେବଳ ନିଜର ନାମ ବ୍ୟତୀତ ସେମାନଙ୍କର କୌଣସି ପରିଚୟ, ଏପରି କି ରଚନା ସମୟର କୌଣସି ସଂକେତ ମଧ୍ୟ ଦେଇ ନଥାନ୍ତି। ଏପରି କି, କବି ଓ ତାଙ୍କ କୃତିକୁ ଅନୁଶୀଳନ କଲାବେଳେ ସମାଲୋଚକମାନେ ବିଷୟର ଅବବୋଧ ପାଇଁ ଅନୁମାନ ବା ସମ୍ଭବନାର ଆଶ୍ରୟ ନେବାକୁ ବାଧ୍ୟ ହୋଇଥାନ୍ତି। ଯେଉଁ ଅନୁମାନ ବା ସମ୍ଭାବନା ସାଧାରଣଙ୍କ ଆଖିରେ ବିଶେଷ ଗୁରୁତ୍ୱପୂର୍ଣ୍ଣ ନୁହେଁ, ପ୍ରାଚୀନ ସାହିତ୍ୟର ଆଲୋଚକ ଓ ଗବେଷକଙ୍କ ଚକ୍ଷୁରେ ତାହାର ସ୍ଥାନ ସର୍ବାଧିକ। କିନ୍ତୁ ସମାଲୋଚକର ଅନୁମାନ କେବେ ଅହେତୁକ କିମ୍ବା କପୋଳକଳ୍ପିତ ସୁଖସ୍ୱପ୍ନର ବର୍ଣ୍ଣ ଧାରଣ କରିବା ଉଚିତ ନୁହେଁ। ଏହା ସତତ ସତ୍ୟର ଦ୍ୱାରୋଦ୍‌ଘାଟନ ଦିଗରେ ସହାୟକ ହେବା ଏକାନ୍ତ ବାଞ୍ଛନୀୟ। କାରଣ, ବିଷୟର ଯଥାଯଥ ସ୍ୱରୂପ ଉନ୍‌ମୋଚନ ଦିଗରେ ଅନୁମାନ ଉଦ୍ଦିଷ୍ଟ ନହେଲେ, ତାହା ଏକାନ୍ତ ମୂଲ୍ୟହୀନ ଓ ଅବାନ୍ତର ସିଦ୍ଧାନ୍ତର କାରଣ ହୋଇଥାଏ। ମୃତ୍ୟୁଞ୍ଜୟଙ୍କ ସଂଗୃହୀତ ଉପାଦାନ ଲୋକବିଶ୍ୱାସ, କାହାଣୀ, କିମ୍ବଦନ୍ତୀ ସହିତ ପୁସ୍ତକସ୍ଥ ଅନ୍ତର୍ନିହିତ ବିଷୟ -- ବହୁ କ୍ଷେତ୍ରରେ ପରୀକ୍ଷିତ ହୋଇ ଯେଉଁ ଅନୁମାନମୂଳକ ସିଦ୍ଧାନ୍ତ ପରିବେଷଣ କରିଛି, ସେଥିରେ ବହୁ ପରିମାଣରେ ସତ୍ୟର ସତ୍ତା ଅନୁଭୂତ ହୋଇଥାଏ। ସେଇହେତୁରୁ 'ଅଚ୍ୟୁତାନନ୍ଦ ଦାସ' ପ୍ରବନ୍ଧ ବ୍ୟତୀତ ଅନ୍ୟ ସମସ୍ତ ପ୍ରବନ୍ଧରେ ତାଙ୍କ ଅନୁମାନ ବା ସମ୍ଭାବନା ଏକାନ୍ତ ମୂଲ୍ୟହୀନ ବୋଲି ମନେହୁଏନାହିଁ।

କିନ୍ତୁ ଆଧୁନିକ ଓଡ଼ିଆ ସାହିତ୍ୟ ଉପରେ ଲିଖିତ ଆଲୋଚନାର ଅନ୍ତର୍ନିହିତ ଆଭିମୁଖ୍ୟ ଅନୁଧ୍ୟାନ କାଳରେ ମୃତ୍ୟୁଞ୍ଜୟଙ୍କ ଚିତ୍ତବୃତ୍ତିର ଏକ ସ୍ୱତନ୍ତ୍ର ସ୍ୱରୂପ ଆମେ ଉପଲବ୍ଧ କରିଥାଉଁ। ଏ ଆଲୋଚନାର ପ୍ରଧାନ ବୈଶିଷ୍ଟ୍ୟ ଯେ, ଏଥିରେ କେଉଁଠି ଅନୁମାନ କିମ୍ବା ସମ୍ଭାବନାର ସ୍ଥାନ ନାହିଁ। ପ୍ରତ୍ୟେକ ଘଟଣା ବା ବିଷୟ, ତତ୍‌ସଂପର୍କିତ କାଳ, ବର୍ଷ, ମାସ, ଦିନ--ସବୁ ଉପାଦାନ ସୁସ୍ପଷ୍ଟ ଓ ସୁନିର୍ଦ୍ଦିଷ୍ଟ। କଳ୍ପନାର ଆଶ୍ରୟରେ କୌଣସି ବିଷୟ ନୂତନ କରି ତିଆରି କରିଦେବାର ଅବକାଶ ଏଥିରେ ନାହିଁ। ଘଟଣା ଓ କାଳ ଯାହା ଅତ୍ରତତ୍ର ବିକ୍ଷିପ୍ତ ହୋଇ ରହିଥାଏ, ସେଗୁଡ଼ିକ ସଂଗ୍ରହ କରି ସେମାନଙ୍କ ପାରସ୍ପରିକ ସହଯୋଗରେ

ବିଷୟର ପ୍ରକୃତ ମୌଳିକ ସ୍ୱରୂପ ଉପସ୍ଥାପନା କରିବା ଆଲୋଚନା ବା ଗବେଷକର ଏକ ପ୍ରଧାନ କର୍ତ୍ତବ୍ୟ। ମୃତ୍ୟୁଞ୍ଜୟଙ୍କ ଏପରି କର୍ତ୍ତବ୍ୟର ପରିଚୟ ଆଧୁନିକ ସାହିତ୍ୟ ଉପରେ ଲିଖିତ ତାଙ୍କର ସମସ୍ତ ଲେଖାରେ ପରିଦୃଷ୍ଟ ହୋଇଥାଏ। ସେଇ ହେତୁରୁ ତାଙ୍କ ସଂଗ୍ରହର କେତେକ ସ୍ଥଳରେ ପ୍ରମାଦ ବା ଅସଂପୂର୍ଣ୍ଣତା ଥିଲେ ସୁଦ୍ଧା, ତାଙ୍କ ଆଲୋଚନା କେବେ ପଥଭ୍ରାନ୍ତ ହୋଇଥିବାର ଅନୁଭୂତ ହୁଏନାହିଁ।

**କବି ରାଧାନାଥ** (ଡିସେମ୍ବର, ୧୯୦୮), **ବ୍ରହ୍ମଜ୍ଞ ମଧୁସୂଦନ** (ଆରମ୍ଭ ଡିସେମ୍ବର ୧୯୧୨- ଶେଷ ମାର୍ଚ୍ଚ, ୧୯୧୫), **କର୍ମବୀର ଗୌରୀଶଙ୍କର** (ଡିସେମ୍ବର, ୧୯୧୫, ପୁସ୍ତକ ୧୯୨୫ ସାଲ), **ସ୍ୱର୍ଗତଃ ଫକୀରମୋହନ** (ଜୁଲାଇ, ୧୯୧୮), **ଊନବିଂଶ ଶତାବ୍ଦୀର ଉତ୍କଳ ପତ୍ରପତ୍ରିକା** (ନଭେମ୍ବର, ୧୯୧୯) - ଏଇ ଜୀବନୀମୂଳକ ଆଲୋଚନାଗୁଡ଼ିକରେ ଆଧୁନିକ ଓଡ଼ିଆ ସାହିତ୍ୟର ତିନିଜଣ ଶ୍ରେଷ୍ଠ କଳାକାର ଓ ନବ ଉତ୍କଳର ପ୍ରାଣପ୍ରତିଷ୍ଠାତା କର୍ମବୀର ଗୌରୀଶଙ୍କର ଘଟଣା ବହୁଳ ଜୀବନୀ ବିଷୟ ନିର୍ବାଚନରେ ଥିବା ମୃତ୍ୟୁଞ୍ଜୟଙ୍କ ବିଚାରବୁଦ୍ଧିର ସମ୍ୟକ୍ ପରିଚୟ ଦେଇଥାନ୍ତି ମାତ୍ର। ଯେଉଁ ପୁରାତନ ପତ୍ରପତ୍ରିକା ନିଜ ନିଜ ଜରାଜୀର୍ଣ୍ଣ ବକ୍ଷରେ ଆଧୁନିକ ଓଡ଼ିଶାର ଇତିହାସ ବହନ କରି ଦିନେ ଆତ୍ମପ୍ରକାଶ କରିଥିଲେ ଓ ଯାହା ଆଧୁନିକ ସାହିତ୍ୟର ଗବେଷଣା କ୍ଷେତ୍ରରେ ସର୍ବପ୍ରଥମେ ମୃତ୍ୟୁଞ୍ଜୟଙ୍କ ଚକ୍ଷୁ ଉନ୍ମୋଚନ କରିଦେଇଥିଲେ, ଉତ୍କଳ ପତ୍ରପତ୍ରିକା ପ୍ରବନ୍ଧରେ ସେଗୁଡ଼ିକର ସଂକ୍ଷିପ୍ତ ଚିତ୍ର ଉପସ୍ଥାପିତ ହେବାରେ ଆଶ୍ଚର୍ଯ୍ୟ କିଛି ନାହିଁ।

ଆଧୁନିକ ଓଡ଼ିଆ ସାହିତ୍ୟର ଇତିହାସ ଯେଉଁମାନେ ନିର୍ମାଣ କରିଥିଲେ, ସେମାନଙ୍କଠାରୁ ପ୍ରତ୍ୟକ୍ଷଭାବେ ସେଇ ଇତିହାସର ଉପାଦାନ ସଂଗ୍ରହ କରିବାର ପରମ ସୌଭାଗ୍ୟ ମୃତ୍ୟୁଞ୍ଜୟଙ୍କ ଭାଗ୍ୟରେ ଦେଖା ଦେଇଥିଲା। ଫଳରେ ଏହାଙ୍କ ଲେଖାର ବହୁ ସ୍ଥଳରେ ଏପରି ଶୁଣାକଥାମାନ ଲିପିବଦ୍ଧ ହୋଇ ରହିଅଛି, ଯାହା ପାଇବା ଆଜିର କୌଣସି ଆଲୋଚକଙ୍କ ପକ୍ଷରେ କେବେ ସମ୍ଭବପର ନୁହେଁ। ଗୌରୀଶଙ୍କର ଥିଲେ ଜଣେ ଏକ-ନିଷ୍ଠ ସମାଜସେବୀ; ତାଙ୍କ ସଂପାଦିତ 'ଉତ୍କଳଦୀପିକା' ସହିତ ତଦାନୀନ୍ତନ ସମସ୍ତ ପତ୍ରପତ୍ରିକା ପ୍ରିଣ୍ଟିଂ କୋମ୍ପାନୀ ଛାପାଖାନାରେ ଗଚ୍ଛିତ ହୋଇ ରହିଥିଲା। ଚତୁର ଗବେଷକ ମୃତ୍ୟୁଞ୍ଜୟଙ୍କ ସମ୍ମୁଖରେ ଏଇ ପତ୍ରପତ୍ରିକାଗୁଡ଼ିକ ଖୋଲି ଦେଇଥିଲେ ଆଧୁନିକ ଓଡ଼ିଶାର ଇତିହାସ। ସେ ଏଇଥିରୁ ଅତି ସହଜରେ ବିଷୟ-ସଂଗ୍ରହ କରିବାର ଯେଉଁ ସୁବିଧା ଲାଭ କରିଥିଲେ, ତାଙ୍କ ପରବର୍ତ୍ତୀ ସମାଲୋଚକମାନଙ୍କ ପକ୍ଷରେ ସେ ସୁବିଧା ଥିଲା ଏକାନ୍ତ ସ୍ୱପ୍ନ। ମୃତଞ୍ଜୟଙ୍କ ଲେଖାଗୁଡ଼ିକରେ ଏଇ ପ୍ରତ୍ୟକ୍ଷ ସଂଗ୍ରହର ମୁଦ୍ରା ମଧ୍ୟ କମ୍ ଦେଖିବାକୁ ମିଳେ ନାହିଁ। ସ୍ଥୁଳତଃ, ସମସାମୟିକ ବ୍ୟକ୍ତିବିଶେଷ, ଲେଖକମାନଙ୍କ ପରିବାରବର୍ଗ ତଥା ଆତ୍ମୀୟସ୍ୱଜନ, ତଦାନୀନ୍ତନ ପତ୍ରପତ୍ରିକା - ଏଇ ତିନୋଟି ଉତ୍ସରୁ ମୃତ୍ୟୁଞ୍ଜୟ କେତେ ଓ କିପରି ଉପାଦାନ ଆହରଣ କରିଥିଲେ, ତା'ର ସଂକେତ ଉପରୋକ୍ତ ଚାରିଜଣଙ୍କ ଜୀବନୀ ଉପରେ ଲିଖିତ ପ୍ରବନ୍ଧମାନଙ୍କରେ ସ୍ପଷ୍ଟ ଦେଖିବାକୁ ମିଳେ।

'ଉତ୍କଳ ପତ୍ରପତ୍ରିକା' ପ୍ରବନ୍ଧଟିର ସ୍ୱକୀୟ ସ୍ୱତନ୍ତ୍ର ଗୌରବ ଆଜି ମଧ୍ୟ ଅନତିକ୍ରାନ୍ତ। ବିଭିନ୍ନ ପତ୍ରପତ୍ରିକା ଧାରାବାହିକଭାବେ ସଜ୍ଜୀକୃତ ହେଲେ ସେଥିରୁ ସମୟର ପ୍ରାଣ-ସ୍ପନ୍ଦନ

ଯେ ସ୍ୱତଃ ବିକଶିତ ହୋଇଉଠି ଗୋଟାଏ ଇତିହାସ ତିଆରି କରିପାରେ, ଏ ଧାରଣା ସେସମୟ କାହିଁକି, ଆଜି ବି ବହୁଲୋକଙ୍କର ଅଛି ବୋଲି ମନେହୁଏନାହିଁ। ଏ ପ୍ରବନ୍ଧ ପ୍ରସ୍ତୁତିର ପରିକଳ୍ପନା ଯେପରି ମୌଳିକ ଓ ଅଭିନବ, ଅନ୍ୟମାନଙ୍କୁ ଦିଗ ନିର୍ଦ୍ଦେଶ ଦେବାରେ ତାହା ସେଇପରି ଅଦ୍ୱିତୀୟ ଓ ସମର୍ଥ। ଗତ ୫୫ ବର୍ଷ ମଧ୍ୟରେ ଯେଉଁମାନେ ଏଇପରି ପତ୍ରପତ୍ରିକାର ତାଲିକା ପ୍ରସ୍ତୁତ କରି ସେମାନଙ୍କ ଉପରେ କିଛି କହିଛନ୍ତି, ସେମାନେ ଏଇ ପ୍ରବନ୍ଧ ଉପାଦାନଠାରୁ ଅଧିକ ଅଗ୍ରସର ହୋଇଛନ୍ତି ବୋଲି ଅନୁଭୂତ ହୁଏନାହିଁ। ମୃତ୍ୟୁଞ୍ଜୟଙ୍କ ସଂଗ୍ରହର ମହନୀୟତା, ବିଷୟ ପର୍ଯ୍ୟବେକ୍ଷଣରେ ମୌଳିକତା ତଥା ତାଙ୍କ ଦୃଷ୍ଟିକୋଣର ସ୍ୱତନ୍ତ୍ରତା ଯେ କେତେ ଗଭୀର ଓ ବ୍ୟାପକ, ତାହା ଏଇ ଗୋଟିଏ ପ୍ରବନ୍ଧରୁ ମଧ୍ୟ ଉପଲବ୍ଧ ହୋଇପାରିବ।

ରାଧାନାଥଙ୍କ ଉପରେ ଲିଖିତ ପ୍ରବନ୍ଧ ଅପେକ୍ଷା ଫକୀରମୋହନଙ୍କ ଜୀବନୀକୁ କେନ୍ଦ୍ର କରି ଲିଖିତ ପ୍ରବନ୍ଧ କେବଳ ଆକାରରେ ନୁହେଁ, ଉପାଦାନ ଓ ଉପାଦେୟତାରେ ମଧ୍ୟ ବହୁ ଗୁଣରେ ଉନ୍ନତତର। ଏଇ ଲେଖା ପରେ ଫକୀରମୋହନଙ୍କ ଆତ୍ମଜୀବନୀ ପ୍ରକାଶ ପାଇଥିଲେ ମଧ୍ୟ ଏଇ ପ୍ରବନ୍ଧର ସ୍ୱାତନ୍ତ୍ର୍ୟ ଆଦୌ ମଳିନ ବା ନିଷ୍ପ୍ରଭ ହୋଇଯାଇନାହିଁ। ଏପରିକି ଏହା ଅଧିକ ସତ୍ୟ ଯେ,ଏଥିରେ ଅନେକ ସଂଗ୍ରହ ଅଛି, ଯାହା ଆତ୍ମଚରିତରେ ମଧ୍ୟ ଦେଖିବାକୁ ମିଳେନାହିଁ। ଚୌଧୁରୀ ଓ ସେନାପତି ବଂଶର ବଂଶବୃକ୍ଷ, ସେନାପତିଙ୍କ ବାଲ୍ୟଜୀବନ, ପ୍ରାଥମିକ ଜୀବନର ଚାକିରୀ ଓ ବିବାହଠାରୁ ଆରମ୍ଭ କରି ବିଭିନ୍ନ ଷ୍ଟେଟର ସର୍ବମୟ କର୍ତ୍ତା ହେବା ପର୍ଯ୍ୟନ୍ତ କେତେକ ଘଟଣା, ଏପରିକି 'ଉତ୍କଳ ଭ୍ରମଣଂ' ପ୍ରକାଶ ପରେ ଫକୀରମୋହନଙ୍କୁ ଲକ୍ଷ୍ୟ ରଖି ଲେଖାଯାଇଥିବା କବିତା; କଟକ ଓ ବାଲେଶ୍ୱରରେ ତାଙ୍କର ସାହିତ୍ୟଚର୍ଚ୍ଚା, ସର୍ବଶେଷରେ ଫକୀରମୋହନଙ୍କ ସମସ୍ତ ପ୍ରକାଶିତ ରଚନାର ଏକ ଦୀର୍ଘ ତାଲିକା - ଏଥିରୁ ବହୁ ବିଷୟ ଆମେ ଆତ୍ମଚରିତରୁ ପାଉଥିଲେ ମଧ୍ୟ ଗୋଟିଏ ପ୍ରବନ୍ଧର କ୍ଷୁଦ୍ର ପରିସର ଭିତରେ ମୃତ୍ୟୁଞ୍ଜୟ ଅତି ଦକ୍ଷତାର ସହ ଏଗୁଡ଼ିକୁ ଏକ ଯୋଗସୂତ୍ରରେ ଗ୍ରନ୍ଥନ କରି ଫକୀରମୋହନଙ୍କ ବିରାଟ ବ୍ୟକ୍ତିତ୍ୱର ଭାବ-ମୂର୍ତ୍ତିକୁ ରୂପାୟିତ କରିଦେଇ ଅଛନ୍ତି।

ଭକ୍ତକବି ମଧୁସୂଦନ ଥିଲେ ମୃତ୍ୟୁଞ୍ଜୟଙ୍କର ଶିକ୍ଷାଗୁରୁ; ଅପର ପକ୍ଷରେ, ଗୌରୀଶଙ୍କର ଥିଲେ ମୃତ୍ୟୁଞ୍ଜୟଙ୍କ ଗବେଷଣା ଓ ଆଲୋଚନା କ୍ଷେତ୍ରରେ ଯଥାର୍ଥ ଉତ୍ସାହଦାତା ଓ ପଥପ୍ରଦର୍ଶକ। ସାହିତ୍ୟିକ ଓ ବ୍ୟକ୍ତିଗତ ଜୀବନରେ ଏ ଉଭୟଙ୍କଠାରେ ସେ ଥିଲେ ଅଶେଷ ଭାବରେ ଋଣୀ। ଏ ଉଭୟଙ୍କ ଜୀବନର ଆଦର୍ଶ ଓ ମାନସିକ ଆଭିମୁଖ୍ୟଦ୍ୱାରା ସେ ମଧ୍ୟ ବହୁଳଭାବେ ପ୍ରଭାବିତ ହୋଇଥିଲେ। ଫଳରେ ମଧୁସୂଦନଙ୍କ ତିରୋଧାନ ପରେ ଓ ଗୌରୀଶଙ୍କରଙ୍କ ଜୀବିତାବସ୍ଥାରେ ଏମାନଙ୍କ ଜୀବନୀକୁ ଲିପିବଦ୍ଧ କରି ରଖିବା ପାଇଁ ସମଗ୍ର ଓଡ଼ିଶାରେ ମୃତ୍ୟୁଞ୍ଜୟଙ୍କ ପରି ଅନ୍ୟ ଦ୍ୱିତୀୟ ଉପଯୁକ୍ତ ବ୍ୟକ୍ତି କେହି ନଥିଲେ। ଏ ଉଭୟଙ୍କ ଜୀବନୀ ଉପରେ ଲିଖିତ ଦୀର୍ଘ ପ୍ରବନ୍ଧ ଦୁଇଟି ଅନୁଧ୍ୟାନ କଲେ ସେଥିରେ ସଂଗୃହୀତ ଉପାଦାନ କି ଗଭୀର ନିଷ୍ଠା ଓ ଆନ୍ତରିକତାର ବର୍ଣ୍ଣବିଭାରେ ସମୁଜ୍ଜ୍ୱଳ, ତାହା ଆମେ ଉପଲବ୍ଧି କରିଥାଉଁ। ଯେଉଁମାନେ ଏ ଦେଶର ଗୋଟିଏ ସ୍କୁଲର ଡ୍ରଇଂ ଶିକ୍ଷକ କିମ୍ବା ସଂସ୍କୃତ ପଣ୍ଡିତଠାରେ ଏକ ବିପୁଳ ସୃଷ୍ଟି-ଶକ୍ତିର ସମୁଜ୍ଜ୍ୱଳ ସମ୍ଭାବନା ଥିବାର ଅନୁଭବ କରି ନିଜ

ନିଜ ଅକୁଣ୍ଠ ସ୍ନେହମମତାରେ ତାଙ୍କୁ ଦିନେ କୋଳକୁ ଟାଣି ଆଣିଥିଲେ, ସେଇ ଡ୍ରଇଂ ଶିକ୍ଷକ, ସେଇ ସଂସ୍କୃତ ପଣ୍ଡିତ ଜୀବନର ସମସ୍ତ କୃତଜ୍ଞତାର ନିଦର୍ଶନ ସ୍ୱରୂପ ଏଇମାନଙ୍କ ମହାନ୍ ବ୍ୟକ୍ତିତ୍ୱ ତଥା ଅବଦାନରୁ ଏ ସାହିତ୍ୟର ଚିରସ୍ଥାୟୀ କରିବା ପାଇଁ ଏ ଜାତିର ହାତକୁ ଟେକି ଦେଇଛନ୍ତି ଏପରି ଏକ ଏକ ଜୀବନୀମୂଳକ ଆଲୋଚନା ଗ୍ରନ୍ଥ, ଯାହା ଆଦ୍ୟପ୍ରାନ୍ତ ମୌଳିକ ଉପାଦାରେ ମହିମାନ୍ୱିତ, ଯାହା ପରିକଳ୍ପନା ଓ ରୂପାୟନରେ ଏବେ ବି ଅନତିକ୍ରାନ୍ତ। ଏଥିରେ ଏପରି ଅଜସ୍ର ଉପାଦାନ ଅଛି, ଯାହା ଗତ ୫୫ ବର୍ଷ ଭିତରେ ସାଧାରଣ ପାଠକ, ଆଲୋଚକ, ଏପରି କି ବହୁ ଗବେଷକଙ୍କର  ଏକ ଲୋଭନୀୟ ଅନୁକରଣ ଉପାଦାନ ରୂପେ ବିବେଚିତ ହୋଇ ଆସୁଅଛି। ଯେଉଁମାନେ ଉନବିଂଶ ଶତାବ୍ଦୀର ଓଡ଼ିଶା ଉପରେ କିଛି କାମ କରିବାକୁ ଚାହାନ୍ତି, ସେମାନଙ୍କ ପକ୍ଷରେ ଏ ଉଭୟ ପୁସ୍ତକ ଏକାନ୍ତ ଅପରିହାର୍ଯ୍ୟ, ଏଥିରେ ଆଦୌ ସନ୍ଦେହ ନାହିଁ।

ଦେଖିବାର କଥା, ଆମର ଆଲୋଚ୍ୟ ଉଭୟ ପ୍ରବନ୍ଧ (ଯାହା ଏକ ଏକ ପୁସ୍ତକ ମଧ୍ୟ)ର ପରିକଳ୍ପନା ଓ ତା'ର ରୂପାୟନ ପ୍ରାୟ ସମାନ କହିଲେ ଚଳେ। ମଧୁସୂଦନ କିମ୍ବା ଗୌରିଶଙ୍କରଙ୍କ ଜୀବନୀର ଧାରାବାହିକ ବିଶିଷ୍ଟ ବିବରଣୀ ପ୍ରଦାନ କରି ତାଙ୍କ ଜୀବନୀର ପରିଚୟ ଉପସ୍ଥାପନ, ଦ୍ୱିତୀୟତଃ ଏଇ ଜୀବନୀର ପୃଷ୍ଠଭୂମି ଉପରେ ପାରିପାର୍ଶ୍ୱିକ ଉପାଦାନର ପରିବେଷଣ --- ଏ ଉଭୟ ଭିତରୁ ପ୍ରଥମଟି ପ୍ରବନ୍ଧର ଲକ୍ଷ୍ୟ ଓ ଦ୍ୱିତୀୟଟି, ଅର୍ଥାତ ପୃଷ୍ଠଭୂମି ହେଉଛି ଏଇ ଲକ୍ଷ୍ୟ ସାଧନ ଦିଗରେ ଉପାୟ ମାତ୍ର। କିନ୍ତୁ ଏଇ ଲକ୍ଷ୍ୟ ଓ  ଉପାୟ ପରସ୍ପର ଏପରି ସଂଶ୍ଳିଷ୍ଟ ଯେ, ସେଥିରୁ କେଉଁଟି ପ୍ରଧାନ ବା କେଉଁଟି ଅପ୍ରଧାନ, ତାହା ନିର୍ଣ୍ଣୟ କରିବା ସହଜ ନୁହେଁ। ଜୀବନୀର ବୈଚିତ୍ର୍ୟ ସ୍ୱୀକୃତ ହେଲେ ହେଁ, ବୈଚିତ୍ର୍ୟର ମହତ୍ୱ ପୃଷ୍ଠଭୂମିର ବିବିଧ ବୈଚିତ୍ର୍ୟ ଉପରେ ମଧ୍ୟ ପୂର୍ଣ୍ଣ ନିର୍ଭରକରେ। ତେଣୁ ଯେଉଁ ପୃଷ୍ଠଭୂମିର ବୈଚିତ୍ର ଯେତେ ଅଭିନବ, ସ୍ୱତନ୍ତ୍ର ଓ ମୌଳିକ, ଜୀବନୀର ପରିପୂର୍ଣ୍ଣତା ସେତେ ସାର୍ଥକ ଓ ଅମଳିନ। ଏ ଉଭୟର ମଧୁର ସମନ୍ୱୟ ହେଉଛି ଏକ ସ୍ୱତନ୍ତ୍ର ସାହିତ୍ୟିକ କଳା। ଯେଉଁଠି ଏପରି କଳାର ସାର୍ଥକ ରୂପାୟନରେ କଳାକାର ଆତ୍ମ-ସଚେତନ, ସେଠି ଜୀବନୀ ଓ ପୃଷ୍ଠଭୂମି, ଲକ୍ଷ୍ୟ ଓ ଉପାୟ ଅଭିନ୍ନ ପ୍ରତୀତ ହେବା ସମ୍ପୂର୍ଣ୍ଣ ସ୍ୱାଭାବିକ। ମୃତ୍ୟୁଞ୍ଜୟଙ୍କ ଲିଖିତ ଏ ଉଭୟ ଜୀବନୀରେ କଳାର ଉନ୍ନତ ଚମତ୍କାରିତା ଅଛି ବୋଲି ମନେହୁଏନାହିଁ। ଗୌରୀଶଙ୍କରଙ୍କ ପ୍ରବନ୍ଧରେ ଜୀବନୀ ମୁଖ୍ୟ, ତା'ର ପୃଷ୍ଠଭୂମି ମଧୁସୂଦନଙ୍କ ପୃଷ୍ଠଭୂମିଠାରୁ ଅଧିକ ଉନ୍ନତ, ବ୍ୟାପକ ବା ବିସ୍ତୃତ ନୁହେଁ। ଗୌରୀଶଙ୍କରଙ୍କର ପ୍ରବନ୍ଧରେ ଜୀବନୀ ଓ ପୃଷ୍ଟଭୂମି ଭିତରେ ଥିବା ଯୋଗସୂତ୍ର ସମ୍ପୂର୍ଣ୍ଣ ଅନୁଭବଗମ୍ୟ, ଯଦିଓ ଏ ଯୋଗସୂତ୍ରର କଳାଗତ ବୈଚିତ୍ର ସମ୍ପାଦନ ପ୍ରତି ଲେଖକ ବିଶେଷ ଯତ୍ନଶୀଳ ନୁହନ୍ତି। ମଧୁସୂଦନ ପ୍ରବନ୍ଧରେ ଏ ଯୋଗସୂତ୍ର ଏକାନ୍ତ କ୍ଷୀଣ, ଏଥିରେ ଜୀବନୀର ଉଭୟ ଦିଗ, ଲକ୍ଷ୍ୟ ଓ ଉପାୟ, ନିଜ ନିଜ ସ୍ୱାତନ୍ତ୍ର୍ୟରେ ଗରୀୟାନ। ତେଣୁ ଏ ଉଭୟର ସମବାୟ ଭିତରୁ ଏକ ମଧୁର ଐକ୍ୟଧ୍ୱନି ସ୍ପଷ୍ଟତଃ ପରିସ୍ଫୁରିତ ନ ହେବାର ଆଶ୍ଚର୍ଯ୍ୟ କିଛିନାହିଁ। କଳାଗତ ବିଗ୍ଭରବୋଧର ମାନଦଣ୍ଡରେ ଆମେ ଏ ଉଭୟ ଜୀବନୀରୁ କୌଣସି ଉନ୍ନତ କଳାର ପରିଚୟ ଦେଖିବାକୁ ନ ପାଇଲେ ମଧ୍ୟ ଏ ଜୀବନୀର ଏପରି ଅନ୍ୟ ଏକ ଏକ ବୈଶିଷ୍ଟ୍ୟ ଅଛି, ଯାହା ଏ ସାହିତ୍ୟରେ ସମ୍ପୂର୍ଣ୍ଣ

ଅଭିନବ। ଊନବିଂଶ ଶତାବ୍ଦୀର ବହୁ ମୂଲ୍ୟବାନ ଉପାଦାନ ଯାହାକୁ ସେ ବିଭିନ୍ନ ଉପାୟରେ ସଂଗ୍ରହ କରି ପାରିଥିଲେ, ସେସବୁ ଆଜି ବିଭିନ୍ନ ଲେଖକଙ୍କ ଲେଖା ଭିତରେ ବିନିଯୁକ୍ତ ହେଉଥିବାର ଦେଖିବାକୁ ମିଳେ। ସଂଗୃହୀତ ଉପାଦାନର ଏ ବୈଶିଷ୍ଟ୍ୟ ମୃତ୍ୟୁଞ୍ଜୟଙ୍କୁ ଏ ସାହିତ୍ୟରେ ମୃତ୍ୟୁଞ୍ଜୟୀ କରିବାରେ ସମର୍ଥ ହୋଇଅଛି ମାତ୍ର।

ଅଚ୍ୟୁତାନନ୍ଦ କିମ୍ବା ଅରକ୍ଷିତ ଦାସଙ୍କ ପରି ପୁରାତନ କବିଙ୍କ ଜୀବନୀ ସହିତ ମଧୁସୂଦନ କିମ୍ବା ଗୌରୀଶଙ୍କରଙ୍କ ପରି ଆଧୁନିକ ଲେଖକଙ୍କ ଜୀବନୀ ତୁଳନା କଲେ ଆମ ପୂର୍ବୋକ୍ତ ଅଭିମତରେ ସତ୍ୟତା ସହଜରେ ପ୍ରମାଣିତ ହୋଇପାରିବ। ପୁରାତନ ଲେଖକମାନଙ୍କ ଜୀବନୀପାଇଁ ଉପାଦାନ ଯଥେଷ୍ଟ ନାହିଁ। ପୁସ୍ତକରୁ ସଂଗୃହୀତ ସ୍ୱଳ୍ପ ଜୀବନୀକୁ ପ୍ରାଣବନ୍ତ ଓ ବିଶ୍ୱାସଯୋଗ୍ୟ କରିବାପାଇଁ ପ୍ରାବନ୍ଧିକଙ୍କ ଭାଷା-ବୈଭବ ମାଧ୍ୟମରେ କ୍ଷୁଦ୍ର ବିଷୟର ସ୍ଫୀତୀକରଣ ଯେପରି ସମ୍ପାଦିତ ହୋଇଅଛି, ସେଥିରେ ଜଣେ କଳାକାରର ଅଳଙ୍କରଣ ପ୍ରବୃତ୍ତି ଅନୁସନ୍ଧାନ କରିବା ଆଦୌ କଷ୍ଟକର ନୁହେଁ। ଅପର ପକ୍ଷରେ, ଆଧୁନିକ ଲେଖକମାନଙ୍କ ଜୀବନୀ ଘଟଣାବହୁଳ। ଘଟଣାବହୁଳ ଜୀବନୀପାଇଁ ଭାଷା ପରିପାଟୀର କୌଣସି ବିଶେଷ ଆବଶ୍ୟକତା ନାହିଁ। ବହୁବିଧ ବିଷୟରେ ନୂତନତା ହିଁ ପ୍ରବନ୍ଧର ଗୌରବ ବୃଦ୍ଧିପାଇଁ ଯଥେଷ୍ଟ। ଫଳରେ ଏପରି ବିଷୟ ସଂଗ୍ରହ ଓ ତା'ର ଉପସ୍ଥାପନାପାଇଁ ସାହିତ୍ୟକ କଳା ଅପେକ୍ଷା ସଂଗ୍ରାହକର ଅଧ୍ୟବସାୟ ସର୍ବମାନ୍ୟତା ଅର୍ଜନକରିବା ଏକାନ୍ତ ସ୍ୱାଭାବିକ। ସମାଲୋଚନାର ପ୍ରାଥମିକ ସ୍ତରରେ ଏପରି ଘଟିବାରେ ଆଶ୍ଚର୍ଯ୍ୟ କିଛି ନାହିଁ।

ଗୌରୀଶଙ୍କର ପ୍ରବନ୍ଧରେ ଜୀବନୀ ସହିତ ଉତ୍କଳସଭାଠାରୁ ଭାଷା ଆନ୍ଦୋଳନ ପର୍ଯ୍ୟନ୍ତ ବହୁ ବିଷୟର ବର୍ଣ୍ଣନା ଥିଲେ ସୁଦ୍ଧା ତାଙ୍କ ପ୍ରଦତ୍ତ ଭାଷା ଆନ୍ଦୋଳନର ଚିତ୍ରଟି ପରବର୍ତ୍ତୀ ଓଡ଼ିଆ ଲେଖକମାନଙ୍କ ଉପରେ ଅଖଣ୍ଡ ପ୍ରଭାବ ପକାଇଥିବାର ଦେଖିବାକୁ ମିଳେ। କାରଣ, ଏ ସମ୍ପର୍କରେ ଯାହା କିଛି ଅନ୍ୟମାନେ ଲେଖିଛନ୍ତି, ସେମାନେ ଏଇ ଆଲୋଚନାରୁ ହିଁ ଉପାଦାନ ଆହରଣ କରିଅଛନ୍ତି। ଏ ଲେଖାଟିର ଅନ୍ୟ ଏକ ବୈଶିଷ୍ଟ୍ୟ ମଧ୍ୟ ଅଛି। ୧୯୧୭ ସାଲର ଆରମ୍ଭରେ ଫକୀରମୋହନ ନିଜ ଜୀବନୀର ଗୋଟିଏ ଅଂଶରେ ଲେଖିଥିଲେ ଯେ କାନ୍ତିଚନ୍ଦ୍ର ଭଟ୍ଟାଚାର୍ଯ୍ୟଙ୍କ 'ଓଡ଼ିଆ ସ୍ୱତନ୍ତ୍ର ଭାଷା ନେୟ' ପୁସ୍ତକର ଯେଉଁ "ପ୍ରତିକ୍ରିୟା ବାଲେଶ୍ୱରରେ ଦେଖା ଦେଇଥିଲା, ତାର ଫଳ ସ୍ୱରୂପ ବାଲେଶ୍ୱରବାସୀ ଦରଖାସ୍ତ କରିବାରୁ ଓଡ଼ିଆ ଭାଷା ରକ୍ଷା ପାଇଯାଇଥିଲା। କିନ୍ତୁ ମୃତ୍ୟୁଞ୍ଜୟ ଦୀପିକାରୁ ଉପାଦାନ ସଂଗ୍ରହ କରି ଦେଖାଇ ଦେଲେ ଯେ ଏ ଆନ୍ଦୋଳନ ଏ ପୁସ୍ତକ ପ୍ରକାଶର ଏକ ବର୍ଷ ପୂର୍ବରୁ ଆରମ୍ଭ ହୋଇଥିଲା; କେବଳ କଟକ ଲୋକଙ୍କ ଦରଖାସ୍ତ ହେତୁ କାନ୍ତିଚନ୍ଦ୍ରଙ୍କ ପୁସ୍ତକ ପ୍ରକାଶ ପୂର୍ବରୁ ମଧ୍ୟ ଓଡ଼ିଆ ଭାଷାର ସ୍ୱାତନ୍ତ୍ର୍ୟ ସରକାରଙ୍କଦ୍ୱାରା ସ୍ୱୀକୃତ ହୋଇଥିଲା। ମୃତ୍ୟୁଞ୍ଜୟଙ୍କ ଏ ଲେଖା ପ୍ରକାଶ ପାଇ ନଥିଲେ ଫକୀରମୋହନ ଭ୍ରାନ୍ତ ଅଭିମତ ବହୁବର୍ଷ ଧରି ଏକ ସତ୍ୟ ରୂପେ ସୁପ୍ରତିଷ୍ଠିତ ହୋଇ ଯାଇଥାନ୍ତା। ଅତୀବ ବିଚିତ୍ର କଥା ଯେ, ଏବେ ବି ବହୁ ଗବେଷକ ଫକୀରମୋହନଙ୍କ ସେଇ ମିଥ୍ୟାକୁ ସତ୍ୟ ବୋଲି ପ୍ରଚାର କରିବାରେ ଲାଗିପଡ଼ିଛନ୍ତି।

ମଧୁସୂଦନ ପ୍ରବନ୍ଧରେ ଜୀବନୀ ଅପେକ୍ଷା ପୃଷ୍ଠଭୂମିର ବୈଶିଷ୍ଟ୍ୟ ଏକାନ୍ତ ଲକ୍ଷଣୀୟ ବିଷୟ। ଏହାଙ୍କ ଜୀବନୀ ସହିତ ଊନବିଂଶ ଶତାବ୍ଦୀର ଅଜସ୍ର ଘଟଣା ଓ ବ୍ୟକ୍ତିବିଶେଷଙ୍କ

ପରିଚୟ ଉପସ୍ଥାପିତ ହେବାଦ୍ୱାରା ଏ ପ୍ରବନ୍ଧର ସମଗ୍ରିକ ରୂପରେ ବହୁ ବୈଚିତ୍ର୍ୟର ସମାବେଶ ସମ୍ଭବପର ହୋଇପାରିଅଛି। ମଧୁସୂଦନଙ୍କ ବାଲ୍ୟଜୀବନ ଠାରୁ ଅବସର ଗ୍ରହଣ ସମୟ ପର୍ଯ୍ୟନ୍ତ ଜୀବନ ଭିତରେ ବହୁ ଛୋଟ ବଡ଼ ଘଟଣାର ଉଲ୍ଲେଖ, ଏପରିକି ତାଙ୍କ ପୁତ୍ରକନ୍ୟାଙ୍କ ଜନ୍ମ, ବ୍ୟବହାର, ସମୟ, ବ୍ରାହ୍ମଧର୍ମ ପ୍ରଚାର, ସାଧୁ ରାୟ-ପ୍ୟାରୀମୋହନଙ୍କ ଜୀବନୀ - ଏଇପରି ବହୁ ବିଷୟ ଏଥିରେ ସ୍ଥାନ ପାଇଥିବାରୁ ପ୍ରବନ୍ଧଟିର ଗୁରୁତ୍ୱ ଓ ପ୍ରାଧାନ୍ୟ ସ୍ୱତଃ ଅନୁଭୂତ ହୋଇଥାଏ। ପରବର୍ତ୍ତୀ ସମୟରେ ଯେଉଁମାନେ ମଧୁସୂଦନଙ୍କ ଜୀବନୀ ତଥା ତାଙ୍କ ସାହିତ୍ୟ ଉପରେ କିଛି ଆଲୋଚନା କରିଅଛନ୍ତି, କିମ୍ବା ଯେଉଁମାନେ ଆଧୁନିକ ସାହିତ୍ୟର ମୂଲ୍ୟବୋଧ-ପରିମାପ ଦିଗରେ ତା'ର ପୃଷ୍ଠଭୂମିର ଚିତ୍ର ଦେଇଅଛନ୍ତି, ସେମାନଙ୍କ ମଧ୍ୟରୁ ପ୍ରାୟ ଅଧିକାଂଶ ଏଇ ପ୍ରବନ୍ଧଠାରେ ଋଣୀ ଥିବାର ଦେଖିବାକୁ ମିଳେ।

ପଣ୍ଡିତ ମୃତ୍ୟୁଞ୍ଜୟ ରଥଙ୍କ ସମସ୍ତ ରଚନା ଉପରେ ଏକ ବିହଙ୍ଗମ ଦୃଷ୍ଟିନିକ୍ଷେପ କଲେ ସେଥିରୁ ତାଙ୍କର ଯେଉଁ ଭାବମୂର୍ତ୍ତିଟି ଆମ ମାନସପଟରେ ଉଦ୍‌ଭାସିତ ହୋଇ ଉଠେ, ତା'ର ଗୋଟିଏ ପାଖରେ ଅଛି ତାଙ୍କର **ପକେଟ ଅଭିଧାନ, ସୁଖବୋଧ ବ୍ୟାକରଣ, ଓଡ଼ିଆ ରଚନା ଓ ଅନୁବାଦ ପୁସ୍ତକ, ମୂଳଶବ୍ଦବୋଧିକା,** ସଂସ୍କୃତ କାବ୍ୟ-ନାଟକର ଅନୁବାଦ, **ଅଦ୍ଭୁତପରିଣାମ** ଉପନ୍ୟାସ ଓ **ରସାବଳୀ** ପରି ଶିଶୁ ସାହିତ୍ୟ; କିନ୍ତୁ ଅନ୍ୟ ପାଖରେ ଅଛି **ପ୍ରବନ୍ଧପାଠ, ନାରୀଦର୍ପଣ** ପରି ପୁସ୍ତକ, ଭ୍ରମଣସାହିତ୍ୟ, ପ୍ରତ୍ନତାତ୍ତ୍ୱିକ, ଗବେଷଣାତ୍ମକ ପ୍ରବନ୍ଧ ସହ ପ୍ରାଚୀନ ଓ ଆଧୁନିକ ସାହିତ୍ୟ ସଂପର୍କିତ କେତେକ ସମାଲୋଚନାତ୍ମକ ପ୍ରବନ୍ଧ। କାଳର କରାଳ ସ୍ରୋତରେ ହୁଏତ ପ୍ରଥମ ପାଖର ରଚନା ବିସ୍ମୃତ ହୋଇଯାଇପାରେ। କିନ୍ତୁ ଦ୍ୱିତୀୟ ପାଖର ଆଲୋଚନାତ୍ମକ ପ୍ରବନ୍ଧ ତାଙ୍କୁ ଚିରଦିନ ଏ ସାହିତ୍ୟରେ ଅମର କରି ରଖିବ, ଏଥିରେ ଆଦୌ ସନ୍ଦେହ ନାହିଁ। ପ୍ରଥମ ପାଖର କୃତିରେ ତାଙ୍କ ଅଧ୍ୟବସାୟର ଅକ୍ଷୟ ମୁଦ୍ରା ଅଙ୍କିତ; କିନ୍ତୁ ଦ୍ୱିତୀୟ ପାଖର ରଚନାରେ ଅଧ୍ୟବସାୟ ସହିତ ତାଙ୍କର ବିଚକ୍ଷଣ ବିଚାରବୁଦ୍ଧି ତଥା ସଂଗ୍ରହବୈଚିତ୍ର୍ୟ ଆମକୁ ବିମୁଗ୍ଧ କରି ଦେବାରେ ସମର୍ଥ ହୋଇଥାନ୍ତି। ଗତ ଅର୍ଦ୍ଧଶତାବ୍ଦୀ ମଧ୍ୟରେ ଏ ଦେଶରେ ହଜାର ହଜାର ସଂଖ୍ୟାରେ ସାହିତ୍ୟଶିକ୍ଷକ ଓ ଅଧ୍ୟାପକ ଚାଲିଗଲେଣି; ଏବେ ମଧ୍ୟ ଚାଲିଯାଉଛନ୍ତି। ମୃତ୍ୟୁଞ୍ଜୟଙ୍କ ପରି ଜଣେ ହାଇସ୍କୁଲର ସଂସ୍କୃତ ପଣ୍ଡିତ ସାଂସାରିକ ଦୁଃଖ ଦାରିଦ୍ର୍ୟରେ ସତତ ଜର୍ଜରିତ ହୋଇ ମଧ୍ୟ ନିଜର ସ୍ୱକୀୟ ସାଧନା ବଳରେ ଯେଉଁ ସିଦ୍ଧି ବା ସଫଳତା ଅର୍ଜନ କରିଅଛନ୍ତି, ତାହା ଆଉ କାହାରି ପକ୍ଷରେ ସମ୍ଭବପର ହୋଇନାହିଁ। ଏ ସିଦ୍ଧି ଯଥାର୍ଥତଃ ଏ ଦେଶର ଏକ ଜାତୀୟ ସାରସ୍ୱତ ସଂପଦ। ଯେଉଁ ସାଧନା ଓ ପ୍ରତିଭା ଏପରି ସଂପଦସୃଷ୍ଟିର ପ୍ରଧାନ କାରଣ, ସେ ପ୍ରତିଭା ଓ ସାଧନାକୁ ଆମର ହାର୍ଦ୍ଦିକ ସମ୍ମାନ ଓ ପ୍ରଣତି ଜଣାଇ ଏ ଆଲୋଚନାର ଇତିଶ୍ରୀ କରୁଅଛୁଁ।

**ମୃତ୍ୟୁଞ୍ଜୟଙ୍କ ରଚନାସୂଚୀ**

ପଣ୍ଡିତ ମୃତ୍ୟୁଞ୍ଜୟ ରଥଙ୍କ କେତେକ ପ୍ରକାଶିତ ପୁସ୍ତକ ଏକତ୍ର ଗ୍ରନ୍ଥାବଳୀ ରୂପରେ ଆତ୍ମପ୍ରକାଶ କରିଥିଲେ ହେଁ ତାଙ୍କର ଅଧିକାଂଶ ଉପାଦେୟ ରଚନା ଆଜି ବହୁଲୋକଙ୍କ ନିକଟରେ ସଂପୂର୍ଣ୍ଣ ଅଜ୍ଞାତ କହିଲେ ଚଳେ। ବହୁଦିଗରୁ ସେ ଓଡ଼ିଆ ସାହିତ୍ୟକୁ କିପରି ଋଦ୍ଧିମନ୍ତ କରିଛନ୍ତି ତା'ର ପରିଚୟ ଲାଭପାଇଁ ଆମେ ତାଙ୍କ ରଚନାର ଗୋଟିଏ ତାଲିକା

ପାଠକପାଠିକାମାନଙ୍କ ସମ୍ମୁଖରେ ବର୍ତ୍ତମାନ ଉପସ୍ଥାପନା କରିଦେଇଛୁଁ। ଏ ତାଲିକାଟିର ଅସଂପୂର୍ଣ୍ଣତା ଆମେ ସ୍ପଷ୍ଟତଃ ଅନୁଭବ କରୁଥିଲେ ହେଁ ଏ ଦେଶର ଭବିଷ୍ୟତ ପାଠକ, ସଂଗ୍ରାହକ ତଥା ଗବେଷକମାନଙ୍କୁ ଏହା କେତେକ ପରିମାଣରେ ସାହାଯ୍ୟ କରିପାରିଲେ ଆମର ସମସ୍ତ ଶ୍ରମ ସାର୍ଥକ ହୋଇଛି ବୋଲି ଆମେ ବିବେଚନା କରିବୁଁ।

'ଓଡ଼ିଆ ସାହିତ୍ୟରେ ପଣ୍ଡିତ ମୃତ୍ୟୁଞ୍ଜୟ' ପ୍ରବନ୍ଧ ଭିତରେ ମୃତ୍ୟୁଞ୍ଜୟଙ୍କ ରଚନାଗୁଡ଼ିକର ଯେଉଁ ସମୟ ଦିଆଯାଇଛି, ତାହା ଏଇ ତାଲିକାରୁ ଗ୍ରହଣ କରାଯାଇଅଛି।)

୧. **କୃଷକଜୀବନ** (ପ୍ରବନ୍ଧ): ଉତ୍କଳ ସାହିତ୍ୟ ୪/୩ (= ମାର୍ଚ୍ଚ, ୧୯୦୦)

୨. **ଘଟିଯନ୍ତ୍ର** (ପ୍ରବନ୍ଧ): ଉ.ସା.୫/୮ (= ନଭେମ୍ବର, ୧୯୦୧)

୩. **ମୂଳଶବ୍ଦବୋଧିକା** (୧ମ ଖଣ୍ଡ): ଉ.ସା.୫/୧୨(=ମାର୍ଚ୍ଚ, ୧୯୦୨)ରେ ସମାଲୋଚିତ।

୪. **ଋକଚକ୍ୟ:** ଉ.ସା. ୬/୩(=ଜୁନ, ୧୯୦୨)

୫. **ଋଚଶାଳୀ** (ପ୍ରବନ୍ଧ): ୬/୮(= ନଭେମ୍ବର, ୧୯୦୨)

୬. **ସାମନ୍ତ ଚନ୍ଦ୍ରଶେଖର:** ଉ.ସା. ୬/୧୦(=ଜାନୁଆରୀ, ୧୯୦୩)

୭. **ଧ୍ୱନ୍ୟାତ୍ମକ ଭାଷା** (ପ୍ରବନ୍ଧ): ଉ.ସା. ୬/୧୨(=ମାର୍ଚ୍ଚ, ୧୯୦୩)

୮. **ଭାଷାରହସ୍ୟ** (ପ୍ରବନ୍ଧ) : ଉ.ସା. ୭/୧(= ଏପ୍ରିଲ, ୧୯୦୩)

୯. **ଗ୍ରାମ୍ୟଭାଷା** (ପ୍ରବନ୍ଧ): ଉ.ସା.୭/୨(= ମେ, ୧୯୦୩) କଟକ ଆଲୋଚନା ସଭାରେ ପଠିତ।

୧୦. **ଚତୁଷ୍ପାଠୀ** (ପ୍ରବନ୍ଧ): ଉ.ସା.୭/୬(= ସେପେଟେମ୍ବର, ୧୯୦୩)

୧୧. **ଓଡ଼ିଆଭାଷାର ମୂଳ** (ପ୍ରବନ୍ଧ):ଉ.ସା.୭/୧୧(=ଫେବୃୟାରୀ, ୧୯୦୪); 'ସାହିତ୍ୟ'ର ୮/୧ ଏବଂ ୮/୨ (= ମେ, ୧୯୦୪) ସଂଖ୍ୟାରେ ଏହାର ପରବର୍ତ୍ତୀ ଅଂଶ ପ୍ରକାଶିତ। ଉତ୍କଳ ସାହିତ୍ୟ ସମାଜରେ ପଠିତ।

୧୨. **ମୃଚ୍ଛକଟିକ** (ପ୍ରବନ୍ଧ): ସଂସ୍କୃତ ପରିଷଦରେ ପଠିତ। ଉ.ସା. ୮/୪(= ଜୁଲାଇ,୧୯୦୪)ରେ ପ୍ରକାଶିତ। ଏଥିରେ ଅଛି, "ଉପସଂହାର ସ୍ଥଳରେ ଏତିକି ବକ୍ତବ୍ୟ ଯେ ମୃଚ୍ଛକଟିକର ଉତ୍କଳାନୁବାଦ ହେବା ବାଞ୍ଛନୀୟ।
XXX କୌଣସି ଶକ୍ତିମାନ ଲେଖକଙ୍କଦ୍ୱାରା ନାଟକ ଖଣ୍ଡିକ ଅନୂଦିତ ହୋଇପାରିଲେ ଉତ୍କଳ ସାହିତ୍ୟ ଭଣ୍ଡାରରେ ଖଣ୍ଡେ ଉପାଦେୟ ପୁସ୍ତକ ରହିଯାନ୍ତା। ସେଥିଲାଗି ଲେଖକଙ୍କୁ ଉତ୍ସାହ ପ୍ରଦାନ ସର୍ବାଦୌ ଆବଶ୍ୟକ।"

୧୩. **ମୁଦ୍ରାରାକ୍ଷସ** (ପ୍ରବନ୍ଧ): ଉ.ସା. ୮/୬(= ସେପେଟେମ୍ବର, ୧୯୦୪)

୧୪. **ଓଡ଼ିଆ ପୋଥି**(ଚିତ୍ରକାବ୍ୟ): ଉ.ସା.୮/୧୦(=ଜାନୁୟାରୀ, ୧୯୦୫)-ଉପେନ୍ଦ୍ର ଭଞ୍ଜଙ୍କ ଚିତ୍ରକାବ୍ୟ ବନ୍ଧୋଦୟର ସମାଲୋଚନା।

୧୫. **ଶବ୍ଦରହସ୍ୟ** (ପ୍ରବନ୍ଧ): ଉ.ସା. ୯/୪(= ଜୁଲାଇ, ୧୯୦୫)

୧୬. **ପ୍ରାଚୀନ ଓଡ଼ିଆସାହିତ୍ୟ** (ଆଲୋଚନା): ମୁକୁର ୧/୨ (= ଏପ୍ରିଲ,୧୯୦୬)। ଏହାର ପାଦଟୀକାରେ ଅଛି, "୧୯୦୨ରେ ପ୍ରକାଶିତ 'ଓଡ଼ିଆ ଭାଷା ଓ ପ୍ରାଚୀନ ଓଡ଼ିଆ

ସାହିତ୍ୟ'ଏହା ଏକ ଅଂଶ।" ମୁକୁର ୧/୩ ରେ ବିଶ୍ୱମ୍ଭର ଦାସ ଓ ବଳରାମ ଦାସ; ମୁକୁର ୧/୪ରେ ସାରଳା ଦାସ; ମୁକୁର ୧/୬ ରେ ଦୀନକୃଷ୍ଣ ଦାସ, ବୀରବର ଉପେନ୍ଦ୍ର ଭଞ୍ଜ; ମୁକୁର ୧/୯ ଓ ୧/୧୦ ସଂଖ୍ୟାରେ ଉପେନ୍ଦ୍ର ଭଞ୍ଜ; ସାମନ୍ତସିଂହାର ଓ କବିସୂର୍ଯ୍ୟ ବଳଦେବ ରଥଙ୍କ ଉପରେ ଆଲୋଚନା କରାଯାଇଛି।

୧୭. **ସ୍ୱର୍ଗୀୟ ରାମଚନ୍ଦ୍ର ଦାଶ** (କବିତା): ମୁକୁର ୧/୫ (= ଅଗଷ୍ଟ, ୧୯୦୬)

୧୮. **କବିସୂର୍ଯ୍ୟ ବଳଦେବ ରଥ**(କବିତା): ମୁକୁର ୧/୮(= ନଭେମ୍ବର, ୧୯୦୬)

୧୯. **ପ୍ରତାପରୁଦ୍ରଦେବ**(କବିତା): ମୁକୁର: ୧/୯(= ଡ଼ିସେମ୍ବର, ୧୯୦୬)

୨୦. **ପ୍ରବନ୍ଧପାଠ** (ପୁସ୍ତକ): ୧ମ ସଂସ୍କରଣ 'ଭୂମିକା'ର ସମୟ ତା ୧୨-୧୦-୧୯୦୭; ୨ୟ ସଂସ୍କରଣ ତା ୧୬-୭-୧୯୧୧; ୩ୟ ସଂସ୍କରଣ ତା ୨୦-୫-୧୯୧୫।

୨୧. **ଉତ୍କଳର କପାଋଷ:** ମୁକୁର: ୩/୧ (= ଏପ୍ରିଲ, ୧୯୦୮)

୨୨. **ଓଡ଼ିଆ ବର୍ଣ୍ଣ ଓ ତାହାର ଉଚ୍ଚାରଣ** (ପ୍ରବନ୍ଧ): ମୁକୁର ୩/୨ (= ମେ, ୧୯୦୮); ଏହାର ପରବର୍ତ୍ତୀ ଅଂଶ ୩ୟ, ୪ର୍ଥ ଓ ୫ମ ସଂଖ୍ୟା (ଅଗଷ୍ଟ, ୧୯୦୮) ରେ ପ୍ରକାଶିତ।

୨୩. **କବି ରାଧାନାଥ** (ପ୍ରବନ୍ଧ): ମୁକୁର ୩/୯ (=ଡିସେମ୍ବର, ୧୯୦୮) ରାଧାନାଥଙ୍କ ସ୍ମୃତି ସଭାରେ ପଠିତ।

୨୪. **ରତିବିଳାପ** (କୁମାର ସମ୍ଭବମ୍ ୪ର୍ଥ ସର୍ଗରୁ ଅନୁବାଦ): ମୁକୁର ୪/୧(=ଏପ୍ରିଲ୍, ୧୯୦୯) ଉ.ସା. ୧୯/୭ (= ଅକ୍ଟୋବର, ୧୯୧୫) ଓ ଉ.ସା. ୧୯/୮ ରେ **କୁମାର ସମ୍ଭବର** ଅନ୍ୟ ଅଂଶ ଅନୁବାଦ ପ୍ରକାଶିତ। ପୁସ୍ତକର ପ୍ରଥମ ସଂସ୍କରଣ ଭୂମିକାର ସମୟ ତା ୧-୧୨-୧୯୧୫ ସାଲ।

୨୫. **ନରସିଂହଦେବଙ୍କ ତାମ୍ରଶାସନ** : ମୁକୁର ୪/୧ (= ଏପ୍ରିଲ, ୧୯୦୯); ଏଇବର୍ଷ ମୁକୁରର ୩ୟ, ୪ର୍ଥସଂଖ୍ୟା, ୫ମ, ୬ଷ୍ଠ ସଂଖ୍ୟା ଓ ୧୧ଶ ଓ ୧୨ଶ ସଂଖ୍ୟାରେ ଏହାର ପରବର୍ତ୍ତୀ ଅଂଶ ମୁଦ୍ରିତ।

୨୬. **ଅଜବିଳାପ** (ରଘୁବଂଶ ୮ମ ସର୍ଗର ଅନୁବାଦ): ମୁକୁର ୪/୩, ୪(=ଜୁନ-ଜୁଲାଇ, ୧୯୦୯)

୨୭. **ଗ୍ରୀକ୍‌ଦୂତ ଓ ରାଜା:** ମୁକୁର ୪/୫,୬(= ଅଗଷ୍ଟ, ସେପଟେମ୍ବର, ୧୯୦୯)'ଐତିହାସିକ ଚିତ୍ର' ନାମକ ବଙ୍ଗଳା ମାସିକ ପତ୍ରିକାର ୫ମ ଭାଗର ୯ମ ସଂଖ୍ୟାରେ ବାବୁ ମାଖନଲାଲ ସେନଙ୍କ ଲିଖିତ। 'ମେଗାସ୍ଥିନିସ୍ ଓ ସେଲିଉକସ' ନାମକ କ୍ଷୁଦ୍ର ପ୍ରବନ୍ଧର ଆଶ୍ରୟରେ ଲିଖିତ।

୨୮.**ଟିପ୍‌ପଣୀ:** ମୁକୁର ୪/୫,୬(= ଅଗଷ୍ଟ- ସେପଟେମ୍ବର, ୧୯୦୯), ରେ (୧) ଶୁଭସ୍ତମ୍ଭ; (୨) ଶୁକନଦୀ;(୩) ଚିତ୍ରୋତ୍‌ପଳା;(୪) ରାମେଶ୍ୱର ପାହାଡ଼;୪/୭,୮ରେ (୫) ମହାବିନାୟକ;(୬) ଧଉଳିଗିରି; ୫/୧ ରେ (୭) **ସପ୍ତମାତୃକା:** ୫/୧୧, ୧୨ ରେ (୮) ନଳତିଗିରି; ୯ ଉଦୟଗିରି; ୧୦ ରତ୍ନଗିରି; ୮/୩(=ଯୁନ, ୧୯୧୩ରେ ନ

୧୯-୨୧ ର ଟିପ୍ପଣୀ; ୮/୭ ରେ ନ ୨୨-୨୪ର ଟିପପଣୀ; ୮/୯ ରେ ନ ୨୫ ଓ ୨୬ର ଟିପପଣୀ; ୮/୧୦, ୧୧ ରେ ନ ୨୭ ଓ ୨୮ ର ଟିପପଣୀ; ୮/୧୨ (= ମାର୍ଚ୍ଚ, ୧୯୧୪) ରେ ନ ୨୯ ଟିପପଣୀ ସ୍ଥାନ ପାଇଛି।ଏହାର ଶେଷରେ 'କ୍ରମଶଃ' ମଧ ଲେଖା ଅଛି।

୨୯. **ଅଚ୍ୟୁତାନନ୍ଦ ଦାସ** (ସମାଲୋଚନା): ଉ.ସା. ୧୩/୬(= ସେପଟେମ୍ବର, ୧୯୦୯)

୩୦. **ବିକ୍ରମୋର୍ବଶୀ**(ଅନୁବାଦ) ଏଥିରେ ଥିବା ୯-୯-୧୯୦୯ର 'ଭୁମିକା' ରେ ଅଛି, " ମୁଁ ପ୍ରାୟ ଚାରି ବର୍ଷ ପୂର୍ବେ ସଂସ୍କୃତର ବିକ୍ରମୋର୍ବଶୀ ଏବଂ ମୁଦ୍ରାରାକ୍ଷସର ନାଟକର ଅନୁବାଦ କରିଥିଲି।" ଦ୍ୱିତୀୟ ମୁଦ୍ରଣର ' ବିଜ୍ଞାପନ' ସମୟ ତା ୨୯-୯-୧୯୧୫।

୩୧. **ଋଟେଶ୍ୱର ଶିଳାଲିପି:** ମୁକୁର ୪/୭,୮ (- ଅକ୍ଟୋବର -ନଭେମ୍ବର, ୧୯୦୯)

୩୨. **ପ୍ରାଚୀନ ଭୂଗୋଳ** (ପୃଥିବୀର ଗୋଲତ୍ୱ): ମୁକୁର ୪/୯,୧୦ (= ଡିସେମ୍ବର, ୧୯୦୯- ଜାନୁୟାରୀ, ୧୯୧୦)

୩୩. **କବିବର ରାଧାନାଥ :** ମୁକୁର ୪/୧୨(=ମାର୍ଚ୍ଚ ୧୯୧୦)

୩୪. **ତାଳଚେର ପଦକ ପରୀକ୍ଷା** (ରସକଲ୍ଲୋଳ): ଉ.ସା. ୧୪/୧ (= ଏପ୍ରିଲ, ୧୯୧୦) ଓ ଉ.ସା. ୧୪/୪ ରେ ପ୍ରକାଶିତ।

୩୫. **ଆଦିକବି ସାରଳା ଦାସ:** ମୁକୁର ୫/୧(= ଏପ୍ରିଲ, ୧୯୧୦); ମୁକୁର ୫/୨, ୩ ଓ ମୁକୁର ୫/୪, ୫ ସଂଖ୍ୟାରେ ପ୍ରକାଶିତ। ପୁସ୍ତକର ନାମ '**ଶାରଳା ଚରିତ**'। ଏଥିରେ ଥିବା 'ପ୍ରବେଶକ'ର ସମୟ ହେଉଛି ତା ୧୭-୧-୧୯୧୧।

୩୬. **ମୁଦ୍ରାରାକ୍ଷସ** (ଅନୁବାଦ): ତା ୧୧-୫-୧୯୧୦ରେ ଲିଖିତ। 'ମୁଖବନ୍ଧ'ରେ ଅଛି,

" ଏପରି ଶିକ୍ଷଣୀୟ ନୀତିପୂର୍ଣ୍ଣ ନାଟକର ଅନୁବାଦ ଉତ୍କଳଭାଷାରେ ବାଞ୍ଛନୀୟ ବୋଲି ମୁଁ ପ୍ରାୟ ଚାରିବର୍ଷ ପୂର୍ବେ ଏହି କାର୍ଯ୍ୟ କରିଥିଲି।"

୩୭. **ନରାଜ**(କାବ୍ୟ): ପ୍ରଥମ ସଂସ୍କରଣ 'ନିବେଦନ'ର ସମୟ ତା ୧୫-୫-୧୯୧୦। ଶ୍ରୀ କୁଳମଣି ଦାଶଙ୍କଦ୍ୱାରା 'ନରାଜ' ର ସମାଲୋଚନା ମୁକୁର ୫/୯, ୧୦ (= ଜାନୁୟାରୀ, ୧୯୧୨) ସଂଖ୍ୟାରେ ପ୍ରକାଶ ପାଇଅଛି।

୩୮. **ଈଶ୍ୱରଚନ୍ଦ୍ର ବିଦ୍ୟାସାଗର** (ପ୍ରବନ୍ଧ): ମୁକୁର ୫/୬ (= ସେପଟେମ୍ବର, ୧୯୧୦)

୩୯. **ମଧୁସୂଦନ** (କବିତା): ମୁକୁର ୭/୯ (= ଡିସେମ୍ବର, ୧୯୧୨)

୪୦. **ଉତ୍ତରରାମଚରିତ**। ମୁକୁର ୧/୮ (= ନଭେମ୍ବର,୧୯୦୬) ରେ ଭକ୍ତକବି ମଧୁସୂଦନ ରାଓଙ୍କଦ୍ୱାରା ଏଇ ନାଟକର ଅନୁବାଦ ପ୍ରଥମେ ଆରମ୍ଭ ହୋଇଥିଲା। ପଞ୍ଚମ ଅଙ୍କର 'ସଦର୍ପେ' ଠାରୁ ଶେଷ ପର୍ଯ୍ୟନ୍ତ ପଣ୍ଡିତ ମୃତ୍ୟୁଞ୍ଜୟ ଅନୁବାଦ କରିଥିବାର ସୂଚନା ମୁକୁର ୭/୯(= ଡିସେମ୍ବର, ୧୯୧୨) ରେ ପ୍ରକାଶିତ ଅନୁବାଦର ପାଦଟୀକାରେ ଦେଖିବାକୁ ମିଳେ। ମୃତ୍ୟୁଞ୍ଜୟଙ୍କ ଅନୁବାଦଟି 'ମଧୁସୂଦନ ଗ୍ରନ୍ଥାବଳୀ' ରେ ସ୍ଥାନ ପାଇଛି।

୪୧. **ବ୍ରହ୍ମଜ୍ଞ ମଧୁସୂଦନ :** ଆରମ୍ଭ, ସାହିତ୍ୟ ୧୬/୯(= ଡିସେମ୍ବର, ୧୯୧୨) ଓ ଶେଷ ଉ:ସା: ୧୮/୧୨(= ମାର୍ଚ୍ଚ ୧୯୧୫)। ଏହାହିଁ ହେଉଛି ପଣ୍ଡିତ ମୃତ୍ୟୁଞ୍ଜୟଙ୍କ

ସର୍ବବୃହତ୍ ଜୀବନୀମୂଳକ ସମାଲୋଚନା ଗ୍ରନ୍ଥ।

୪୨. **ଜଗନ୍ନାଥ ଶିଳାଲିପି** ( ଆଲୋଚନା): ମୁକୁର ୮/୧ (= ଏପ୍ରିଲ୍, ୧୯୧୩)

୪୩. **ତ୍ରିକାଣ୍ଡକୋଷ ଓ ପୁରୁଷୋତ୍ତମଦେବ:** ଉତ୍କଳ ସାହିତ୍ୟ ସମାଜରେ ପଠିତ ପ୍ରବନ୍ଧ। ୧୯୧୩ ସାଲ। ଉତ୍କଳ ସାହିତ୍ୟ ସମାଜ, ନବମ ବର୍ଷା କାର୍ଯ୍ୟ ବିବରଣୀ(୧୯୧୪) ନାମକ ପୁସ୍ତିକାରେ ଏହା ପ୍ରକାଶିତ।

୪୪. **ମୈତ୍ରେୟୀ** (କବିତା): ଉ:ସା:୧୭/୩(=ଜୁନ,୧୯୧୩)

୪୫. **ଆତ୍ରେୟୀ**(କବିତା): ଉ:ସା: ୧୭/୮(= ନଭେମ୍ବର, ୧୯୧୩)

୪୬. **ଲୀଳାବତୀ** (କବିତା): ମୁକୁର ୮/୧୨ (= ମାର୍ଚ୍ଚ, ୧୯୧୪)

୪୭. **ବାରବାଟୀ ଦର୍ଶନେ**(କବିତା): ମୁକୁର ୯/୧(= ଏପ୍ରିଲ, ୧୯୧୪)

୪୮. ଅଭିମନ୍ୟୁ ସାମନ୍ତସିଂହାର(ସମାଲୋଚନା): ଉ:ସା: ୧୮/୧(= ଏପ୍ରିଲ,୧୯୧୪); ଅବଶିଷ୍ଟ ୧୮/୨;୧୮/୩;୧୮/୪;୧୮/୬;୧୮/୭;୧୮/୮; ଏଇପରି ସମଗ୍ର ପ୍ରବନ୍ଧଟି **ସାତୋଟି** ସଂଖ୍ୟାରେ ପ୍ରକାଶିତ।

୪୯. **ଅଦ୍ଭୁତ ପରିମାଣ**(ଉପନ୍ୟାସ): ଗ୍ରନ୍ଥକାରଙ୍କ 'ଭୂମିକା' ର ସମୟ ତା ୧୩-୪-୧୯୧୫। ଯୋନାଥନ ମହାନ୍ତି, ବି.ଏ.ଙ୍କ ପ୍ରତିବାଦ ବା ଅଦ୍ଭୁତ ପରିମାଣ'ର ସମାଲୋଚନା ଉ:ସା: ୧୯/୧୧(=ଫେବୃୟାରୀ, ୧୯୧୬)ରେ ପ୍ରକାଶିତ।

୫୦. **ଓଡ଼ିଆ ଭାଷାର ବର୍ତ୍ତମାନ ଅବସ୍ଥା ଓ ଗତି** (ଆଲୋଚନା): ଉ:ସା.୧୯/୪(-ଯୁଲାଇ, ୧୯୧୫) ଓ ସାହିତ୍ୟ ୧୯/୫, ୬ରେ ପ୍ରକାଶିତ।

୫୧. ସ୍ୱର୍ଗୀୟ ରାୟ ମଧୁସୂଦନ ରାଓ ବାହାଦୂରଙ୍କ ସଂକ୍ଷିପ୍ତ ଜୀବନ ବୃତ୍ତାନ୍ତ: 'ମଧୁସୂଦନ ଗ୍ରନ୍ଥାବଳୀ'ରେ ଏହା ସ୍ଥାନ ପାଇଛି। ଲେଖାର ସମୟ ତା ୧-୧୧-୧୯୧୫

୫୨. **ଉତ୍କଳବନ୍ଧୁଙ୍କ ପତ୍ର :** ଉ.ସା. ୧୯/୮(= ନଭେମ୍ବର, ୧୯୧୫) ଓ ଉ.ସା. ୨୧/୨(ମେ,୧୯୧୭), ଏଇ ଦୁଇଟି ସଂଖ୍ୟାରେ ବିଲାତରୁ ପ୍ରେରିତ ରେଭେନସା ସାହେବଙ୍କ ପତ୍ର ପ୍ରକାଶିତ।

୫୩. **କର୍ମବୀର ଗୌରୀଶଙ୍କର:** ଉ.ସା.୧୯/୯(=ଡ଼ିସେମ୍ବର, ୧୯୧୫)ରୁ କ୍ରମଶଃ ପ୍ରକାଶିତ। ପୁସ୍ତକ ରୂପରେ ବିଶ୍ୱନାଥ କରଙ୍କ 'ବିଜ୍ଞାପନ'ର ସମୟ ତା ୧୦-୯-୧୯୨୫। ପଣ୍ଡିତ ମୃତ୍ୟୁଞ୍ଜୟଙ୍କ ଦେହାବସାନ ପରେ ଏ ପୁସ୍ତକ ପ୍ରକାଶିତ ହୋଇଥିଲା। ଶେଷଭାଗଟି ଅଧ୍ୟାପକ ଗିରିଜାଶଙ୍କର ରାୟଙ୍କଦ୍ୱାରା ଲିଖିତ।

୫୪. **ମାଳତୀମାଧବ**(ଅନୁବାଦ): ଆରମ୍ଭ ଉ.ସା. ୨୦/୪(=ଜୁଲାଇ, ୧୯୧୬) ଓ ଶେଷ- ଉ.ସା.୨୧/୨(=ମେ,୧୯୧୭)। ଏହାର ପାଦଟୀକାରେ ଅଛି, "ଏହାର ପ୍ରଥମ ଅଙ୍କ ମଧୁବାବୁଙ୍କ ମୃତ୍ୟୁ ପୂର୍ବରୁ କରା ହୋଇଥିଲା।"

୫୫. **ଇଂରାଜୀ ଆଗମନ:** ଉ.ସା.୨୦/୫(=ଅଗଷ୍ଟ,୧୯୧୬)

୫୬. **ସୁଖବୋଧ ବ୍ୟାକରଣ**(୫ମ ଓ ୬ଷ୍ଠ ଶ୍ରେଣୀ ନିମିତ୍ତ): ୧୯୧୬ ସାଲ। ମ୍ୟାକମିଲାନ କୋ:ଙ୍କଦ୍ୱାରା ପ୍ରକାଶିତ।

୫୭. **ନାରୀଦର୍ପଣ** (୨ୟଭାଗ):ଉ.ସା.୨୧/୩(=ଜୁନ,୧୯୧୭)ର 'ସାହିତ୍ୟ-

ସଂବାଦ'ରେ ଏହାର ପ୍ରକାଶନ ପ୍ରଚରିତ। ଶଶିଭୂଷଣ ରାୟଙ୍କ 'ମୁଖବନ୍ଧ'ର ସମୟ ତା ୭-୭-୧୯୧୭।

୫୮. **ଚକଡ଼ାରୁ କାଣ୍ଡେ** (ଆଲୋଚନା): ଉ.ସା.୨୧/୮(=ନଭେମ୍ବର, ୧୯୧୭)

୫୯. **ଜୟଦେବ ଜନ୍ମବିଚାର:** ଉ.ସା. ୨୧/୯(=ଡିସେମ୍ବର, ୧୯୧୭) ତା ୨୪-୧୧-୧୯୧୭ ସାୟଂକାଳରେ ଉତ୍କଳ ସାହିତ୍ୟ ସମାଜରେ ପଠିତ।

୬୦. **ପୁରାତନ ପୋଥି**(ପ୍ରବନ୍ଧ): ଉ.ସା.୨୨/୧(=ଏପ୍ରିଲ, ୧୯୧୮)

୬୧. **ସ୍ୱର୍ଗତ ଫକୀରମୋହନ** (ଜୀବନ ଚରିତ): ଉ.ସା.୨୨/୪(=ଜୁଲାଇ, ୧୯୧୮), ୨୨/୫୫ ଓ ୨୨/୬ - ଏଇ ତିନୋଟି ସଂଖ୍ୟାରେ ପ୍ରକାଶିତ।

୬୨.**ଦୀନକୃଷ୍ଣ ଦାସ** (ଆଲୋଚନା): ଉ.ସା. ୨୨/୧୨(=ମାର୍ଚ୍ଚ, ୧୯୧୯)

୬୩. **ଉନବିଂଶ ଶତାବ୍ଦୀର ଉତ୍କଳ ପତ୍ରପତ୍ରିକା**(ପ୍ରବନ୍ଧ): ଉ.ସା. ୨୩/୮(=ନଭେମ୍ବର,୧୯୧୯)। ତା ୧୧-୯-୧୯୧୯ରେ ଉତ୍କଳ ସାହିତ୍ୟ ସମାଜର ସାଧାରଣ ଅଧିବେଶନରେ ପଠିତ ପ୍ରବନ୍ଧ। ପୁସ୍ତିକା ରୂପରେ 'ନିବେଦନ'ର ସମୟ ତା ୨୧-୪-୧୯୨୦।

୬୪. **ନାଗାନନ୍ଦ** (ଅନୁବାଦ): ଉ.ସା. ୨୩/୯, ୧୦(= ଡିସେମ୍ବର, ୧୯୧୯) ରୁ ଆରମ୍ଭ

୬୫. **ରାଧାନାଥ-ସ୍ମୃତି:** ଉ.ସା.୨୪/୧(=ଏପ୍ରିଲ, ୧୯୨୦)

୬୬. **ଅରକ୍ଷିତ ଦାସ ଓ ମହୀମଣ୍ଡଳଗୀତା(ଆଲୋଚନା)**: ଉ.ସା.୨୪/୪(=ଜୁଲାଇ, ୧୯୨୦)ଓ ୨୪/୫ ସଂଖ୍ୟାରେ ପ୍ରକାଶିତ।

୬୭. **ବେଣୀସଂହାର** (ଅନୁବାଦ): ଉ.ସା. ୨୪/୭, ୮(=ଅକ୍ଟୋବର, ନଭେମ୍ବର, ୧୯୨୦)

୬୮. **ରାଧାନାଥ-ସ୍ମୃତି:** ଉ.ସା ୨୫/୨,୩(=ମେ, ଜୁନ,୧୯୨୧)

୬୯. **ଓଡ଼ିଆ ରଚନା ଓ ଅନୁବାଦ** (ପୁସ୍ତକ): ୧ମ ସଂସ୍କରଣ ୧୯୨୧ ସାଲ। କଟକ ଟ୍ରେଡ଼ିଂ କୋ:ଦ୍ୱାରା ପ୍ରକାଶିତ।

୭୦. **ବଳରାମ ଦାସ ଓ ବ୍ରହ୍ମାଣ୍ଡଭୂଗୋଳ** (ଆଲୋଚନା): ଉ.ସା.୨୬/୩(=ଜୁନ, ୧୯୨୨)

୭୧. **କର୍ମୀପୁରୁଷର ଅନୁଭୂତି:** ଉ.ସା.୨୭/୧(=ଏପ୍ରିଲ,୧୯୨୩)ଏଇ ଦୁଇଟି ସଂଖ୍ୟାରେ ପ୍ରକାଶିତ।

୭୨. **ବିଚିତ୍ରରାମାୟଣ**(ଆଲୋଚନା): ଉ.ସା.୨୭/୪(=ଜୁଲାଇ, ୧୯୩୬ ଓ ୨୭/୬) -ଏଇ ଦୁଇଟି ସଂଖ୍ୟାରେ ପ୍ରକାଶିତ।

୭୩. **ଓଡ଼ିଆ ପକେଟ ଅଭିଧାନ** : ୧୯୨୫ ସାଲ (ପ୍ରଥମ ସଂସ୍କରଣ)

୭୪. **ରସାବଳୀ** (ପ୍ରକାଶ ସମୟ ଅଜ୍ଞାତ)



୫ ମଇ, ୧୮୮୪ - ୬ ନଭେମ୍ବର, ୧୯୬୭

## ପଣ୍ଡିତ ନୀଳକଣ୍ଠଙ୍କ ସମାଲୋଚନା ବୈଶିଷ୍ଟ୍ୟ

ଗଗନେନ୍ଦ୍ରନାଥ ଦାଶ

"ମୁଁ ଏବେ ଅନ୍ୟ ସାଧନାରେ ଲାଗିଛି। ତଥାପି ସାହିତ୍ୟ ହେଉଛି ମୋର ନିତ୍ୟ ବିଚାରର ବସ୍ତୁ।"

ପଣ୍ଡିତ ନୀଳକଣ୍ଠ ପେସାଦାର ସାହିତ୍ୟ ସମାଲୋଚକ ନଥିଲେ, କି ସାହିତ୍ୟ ସମାଲୋଚନା ତାଙ୍କର ପେସା ନଥିଲା। ଏହା ଥିଲା ତାଙ୍କ ବହୁମୁଖୀ ପ୍ରତିଭାର ଅନ୍ୟତମ ବିଶିଷ୍ଟ ଦିଗ। ପୁଣି ସାହିତ୍ୟ ଚର୍ଚ୍ଚା ତାଙ୍କର ପେସା ନଥିଲେ ହେଁ, ଥିଲା ତାଙ୍କର ବିଳାସ; ତାଙ୍କର ଜୀବିକା ନଥିଲେ ହେଁ ଥିଲା ତାଙ୍କର ଜୀବନ। ତେଣୁ ସୌଖୀନ-ସମାଲୋଚକ-ସୁଲଭ ଆନ୍ତରିକତାର ଅଭାବ ତାଙ୍କ ସାହିତ୍ୟ-ସମାଲୋଚନାରେ କୁତ୍ରାପି ପ୍ରତିଫଳିତ ହୋଇନାହିଁ। ଅଧ୍ୟୟନ ଓ ଅନୁଶୀଳନ ଉପରେ ପ୍ରତିଷ୍ଠିତ ନ ଥାଇ, କେବଳ ବ୍ୟକ୍ତିଗତ ମତଦାନ ମଧ୍ୟରେ ତାଙ୍କ ସମାଲୋଚନା ସୀମିତ ହୋଇପଡିନାହିଁ। ଅନ୍ୟପକ୍ଷରେ, ସେଥିରେ ତାର ଗଭୀର ନିଷ୍ଠାପର ସ୍ପର୍ଶ ପରିଲକ୍ଷିତ ହୁଏ। ସେ ତାଙ୍କର କର୍ମମୟ ଜୀବନକାଳ ମଧ୍ୟରେ ସାହିତ୍ୟସେବାପାଇଁ ଖୁବ୍ ସୁଯୋଗ ଓ ସମୟ ପାଇଥିଲେ, କ୍ୱଚିତ୍ ଅବକାଶ ଓ ଅବସର ପାଇଥିଲେ, କିନ୍ତୁ ଯେତିକି ସେ କରିଛନ୍ତି, କରିପାରିଛନ୍ତି, ତାହା ବହନ କରିଛି ତାଙ୍କର ଗଭୀର ଆନ୍ତରିକତାର ମୁଦ୍ରାଙ୍କନ।

ସତ୍ୟର ଅନୁସନ୍ଧାନ, ଆବିଷ୍କାର ଓ ପ୍ରତିଷ୍ଠା ନୀଳକଣ୍ଠଙ୍କ ଜୀବନ ତଥା ସାହିତ୍ୟଚର୍ଚ୍ଚାର ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ବିଭାବ: ମୂଳମନ୍ତ୍ର। ତାଙ୍କ ବ୍ୟକ୍ତିଗତ ଜୀବନ ଓ ସାହିତ୍ୟିକ ଜୀବନ ମଧ୍ୟରେ ବିରୋଧ ତ ନଥିଲା, ବିଶେଷ କିଛି ପାର୍ଥକ୍ୟ ମଧ୍ୟ ନଥିଲା। ତାଙ୍କ ଦୃଷ୍ଟିରେ ସତ୍ୟ ଯେତେ ଅପ୍ରିୟ ଓ ରୂଢ଼ ହେଲେ ମଧ୍ୟ ଗ୍ରହଣୀୟ, ସ୍ପୃହଣୀୟ ଓ ଶ୍ଳାଘ୍ୟ। ପୁଣି ମନ ତାଙ୍କର ଥିଲା ଯୁକ୍ତିପ୍ରବଣ। ତେଣୁ ଯୁକ୍ତିକୁ ସେ ସତ୍ୟ ଅନୁସନ୍ଧାନ, ଆବିଷ୍କାର ଓ ପ୍ରତିଷ୍ଠାର ମାଧ୍ୟମ ରୂପେ ଗ୍ରହଣ କରିଥିଲେ। ସେ ସମସ୍ତ ପ୍ରକାର ଅହଂକରିତାକୁ ଘୃଣା କରୁଥିଲେ। ଯୁକ୍ତିର ମାୟାଜାଲ ବିଛାଇ ଅସତ୍ୟକୁ ସତ୍ୟ ବୋଲି ପ୍ରତିପନ୍ନ କରିବାର ମନୋବୃତ୍ତି ତାଙ୍କର ନଥିଲା। ତାଙ୍କ ଯୁକ୍ତିରେ ଭୁଲ୍ ଥାଇପାରେ। ସେ ଯାହାକୁ ସତ୍ୟ ବୋଲି ଗ୍ରହଣ କରିଥିଲେ, ତାହା ପରବର୍ତ୍ତୀ କାଳରେ ସତ୍ୟ ନୁହେଁ ବୋଲି ପ୍ରମାଣିତ ହୋଇପାରେ, କିନ୍ତୁ ସେ ଜାଣିଶୁଣି ଏସବୁ କରି ନଥିଲେ ବୋଲି ବିଶ୍ୱାସ ହୁଏ।

ପୁଣି ଏହି ସତ୍ୟର ଅନୁସନ୍ଧାନ, ଆବିଷ୍କାର ଓ ପ୍ରତିଷ୍ଠା ଉଦ୍ୟମରେ ସେ ସବୁବେଳେ ଗଡ୍ଡାଳିକା ପ୍ରବାହରୁ ମୁକ୍ତ ରହିବା ପାଇଁ ଚେଷ୍ଟା କରିଛନ୍ତି। ଫଳରେ, ପ୍ରାୟ ତାଙ୍କ ଦୃଷ୍ଟିକୋଣରେ ମୌଳିକତା ଓ ନୂତନତାର ପ୍ରତିଫଳନ ଦେଖିବାପାଇଁ ମିଳେ। ବେଳେ ବେଳେ ତାଙ୍କର ଦୃଷ୍ଟିକୋଣ ଏତେ ବେଶି ମୌଳିକ, ଏତେ ବେଶି ନୂତନ ଯେ, ମନ ସେତିକି ଉନ୍ମୁକ୍ତ ହୋଇନଥିଲେ ତାକୁ ଗ୍ରହଣ କରିବା ପାଇଁ କୁଣ୍ଠିତ ହୋଇପଡିବା ସ୍ୱାଭାବିକ।

ଜଗନ୍ନାଥ ପତିତପାବନ ନୁହନ୍ତି, କାଙ୍ଗାଳଭୋଜନରେ ଜଗନ୍ନାଥ ଧର୍ମର ମୈତ୍ରୀ ନାହିଁ ଓ ଜଗତର ନାଥ ବୋଲି ସେ ଜଗନ୍ନାଥ ନୁହଁନ୍ତି, ଜଗତ-ରୂପକ ପୁରୁଷ ବା ନାଥ ବୋଲି ସେ ଜଗନ୍ନାଥ-ପ୍ରଭୃତି ମତବାଦ ମଧ୍ୟରେ ଏହି ମୌଳିକତା ଓ ନୂତନତାର ସ୍ପଷ୍ଟ ଛାପ ରହିଅଛି।

କୁହାଯାଇଛି, ପଣ୍ଡିତ ନୀଳକଣ୍ଠ ଥିଲେ ଯୁକ୍ତିପ୍ରବଣ। କେବଳ ସେତିକି ନୁହେଁ ସାହିତ୍ୟ ଓ ସଂସ୍କୃତି ଅନୁଶୀଳନ ପ୍ରସଙ୍ଗରେ (ତଥା ଜୀବନର ଅନ୍ୟାନ୍ୟ କ୍ଷେତ୍ରରେ) ସେ ସବୁବେଳେ ସଚେତନ ଭାବରେ ସମସ୍ତ ପ୍ରକାର ଭାବପ୍ରବଣତାଠାରୁ ଦୂରରେ ରହିବାର ପ୍ରଚେଷ୍ଟା କରୁଥିଲେ। ବିଶେଷ ଭାବରେ ଭାବପ୍ରବଣତାଭିତ୍ତିକ ଦେଶପ୍ରୀତି ଓ ନାମଭକ୍ତିର ସହସ୍ର ଯୋଜନ ଦୂରରେ ରହିବା ପାଇଁ ଅଦମ୍ୟ ଉଦ୍ୟମ ତାଙ୍କର ଥିଲା। ସେଇଥିପାଇଁ ସେ କହିଥିଲେ "....କେବଳ ଦେଶପ୍ରୀତିରେ ଗବେଷଣା ବିଗିଡିଯାଏ।" (ଓଡିଆ ସାହିତ୍ୟର କ୍ରମପରିଣାମ, ୨ୟ ଭାଗର ଆଦ୍ୟକଥନୀ') । "**ଦାର୍ଢ୍ୟାତ୍ୟଭକ୍ତି** ପରି ଗ୍ରନ୍ଥ, ଭାଷାରେ ଓଡିଆ ହେଲେ ହେଁ ଏହା ଓଡିଆ ଗ୍ରନ୍ଥ ନୁହେଁ - ଏହା ପୂରାପୁରି ବଙ୍ଗଳା ସାହିତ୍ୟ ଗ୍ରନ୍ଥ।" (ଓଡିଆ ସାହିତ୍ୟର କ୍ରମ ପରିମାଣ: ୧ମ ଭାଗ, ୬ଷ୍ଠ ଅଧ୍ୟାୟ) **ଦାର୍ଢ୍ୟାତ୍ୟ ଭକ୍ତି** - ଓଡିଆରେ ଲେଖା ବଙ୍ଗଳା ସାହିତ୍ୟ। ପୁଣି ଗୋପବନ୍ଧୁଙ୍କ ପ୍ରତି ନୀଳକଣ୍ଠଙ୍କ ସମ୍ମାନବୋଧ କିଛି କମ୍ ନଥିଲା। କିନ୍ତୁ ସେଇଥିପାଇଁ ସେ ସବୁବେଳେ ନିର୍ବିକାର ଓ ନିର୍ବିଚାର ଭାବରେ ଗୋପବନ୍ଧୁଙ୍କ ମତକୁ ମାନିନେଇନାହାନ୍ତି। ଏପରିକି ଆବଶ୍ୟକ ମନେହେଲେ ଗୋପବନ୍ଧୁଙ୍କୁ କଠୋର ଭାଷାରେ ସମାଲୋଚନା କରିବାପାଇଁ କୁଣ୍ଠିତ ହୋଇନାହାନ୍ତି। (ଦ୍ରଷ୍ଟବ-ଓଡିଆ ସାହିତ୍ୟର କ୍ରମପରିଣାମ, ୨ୟଭାଗ, ୬ଷ୍ଠ ଅଧ୍ୟାୟ: ପୌରାଣିକ ଓ ଭାକ୍ତିକ ମିଥ୍ୟାର ସମ୍ବନ୍ଧ)। ସେ ଏହିପରି ଭାବରେ ଭାବପ୍ରବଣତାଠାରୁ ଦୂରରେ ରହି ସାହିତ୍ୟ-ସମାଲୋଚନାରେ ପ୍ରବୃତ୍ତ ହୋଇଥିଲେ। ଏହାର ଅର୍ଥ ଅବଶ୍ୟ ନୁହେଁ ଯେ, ତାଙ୍କର ଦେଶପ୍ରୀତି ଆଦୌ ନଥିଲା। କିନ୍ତୁ ପ୍ରଚଣ୍ଡ ଦେଶପ୍ରେମ ତାଙ୍କର ସତ୍ୟାନୁସନ୍ଧିତ୍ସୁ ଗବେଷକର ଦୃଷ୍ଟିକୁ ପୂରାପୂରି ଆଚ୍ଛନ୍ନ କରିପାରିନଥିଲା। ଅନ୍ତତଃ ସଚେତନ ଭାବରେ ସେ ଦେଶପ୍ରୀତିକୁ ସତ୍ୟର ଊର୍ଦ୍ଧ୍ୱରେ ସ୍ଥାନ ନ ଦେବାପାଇଁ ସତତ ସଚେଷ୍ଟ ଥିଲେ। ଅବଶ୍ୟ ଏଇ ପ୍ରଚେଷ୍ଟାରେ ସେ କେତେ ମାତ୍ରାରେ ସଫଳ ହୋଇଥିଲେ, ତା' ସମ୍ପୂର୍ଣ୍ଣ ଭାବରେ ଅଲଗା କଥା।

ଏଇଠି ସୂଚାଇ ଦିଆଯାଇପାରେ, ତାଙ୍କ ସମାଲୋଚକ ଜୀବନର ପ୍ରଥମ ପର୍ଯ୍ୟାୟରେ ତୁଳନାମୂଳକ ଭାବରେ ଦେଶପ୍ରୀତିର ଆଧିକ୍ୟ ହୁଏତ ଥିଲା। ତାହା ସ୍ୱୀକାର କରି ସେ କହିଛନ୍ତି, "ଅନ୍ୟଥା ଏହା ପ୍ରାଣପ୍ରାଚୁର୍ଯ୍ୟ ଉପରେ ପ୍ରତିଷ୍ଠିତ ଥିଲେ ମଧ୍ୟ ଆମର ସବୁ ଥିଲା ଓ ଆମ ଲେଖକ ବଡ, ଇଂରେଜମାନେ ନଷ୍ଟ କରି ଦେଇଥିବା ଆମ ଶିଳ୍ପପରି ଆଉ କାହାରି ନଥିଲା, ପ୍ରଭୃତି ଭାବ ଯେ ଏଥିରେ ପୂରି ରହିଥିଲା, ଏହା ନ କହିଲେ ମଧ୍ୟ ବୁଝାଯାଉଛି। ସେଇ ଭାବର ଛାୟା ନ୍ୟୂନାଧିକ ପରିମାଣରେ ମୋର ଏଇ ସବୁ ସେ ଯୁଗର ଆଲୋଚନା ଭିତରେ ଦେଖା ପଡିବ।" (ଓଡିଆ ଭାଷା ଓ ସାହିତ୍ୟ, ପ୍ରଥମ ସଂସ୍କରଣର ଭୂମିକା) କିନ୍ତୁ ପରବର୍ତ୍ତୀ କାଳରେ ସେ ନିଜକୁ ଏଇ ଦେଶପ୍ରୀତିରୁ ମୁକ୍ତ ରଖିବାପାଇଁ ସଚେତନ ଉଦ୍ୟମ କରିଆସିଛନ୍ତି। ଅବଶ୍ୟ ସେ ସମ୍ପୂର୍ଣ୍ଣ ଭାବରେ ଏଥିରୁ ମୁକ୍ତ ରହିପାରିନାହାନ୍ତି।

ପୁଣି ସାହିତ୍ୟ ଓ ସଂସ୍କୃତିର ସମାଲୋଚନା କ୍ଷେତ୍ରରେ କେତେକ ପରମ୍ପରା ବା କେବଳ ପରିସ୍ଥିତି (ବା ପରିବେଶ) ତାଙ୍କୁ ପ୍ରଭାବିତ କରିବାପାଇଁ ସମର୍ଥ ନଥିଲା। କାରଣ ତାଙ୍କ ଦୃଷ୍ଟିରେ ପରମ୍ପରା, ପରିସ୍ଥିତି ପୁରୋଦୃଷ୍ଟି କିଛିଟା ଅବିଚ୍ଛେଦ୍ୟ ଥିଲା। କେବଳ ପରମ୍ପରା ଓ ପରିସ୍ଥିତିକୁ ସେ ବିଚାରକୁ ନେଇ ନଥିଲେ। ସେଥିରେ ପୁରୋଦୃଷ୍ଟି ଫୁଟାଇ ସେ ଆଲୋଚନା କରୁଥିଲେ।

ଓଡିଆ ସାହିତ୍ୟ-ସମାଲୋଚନା କ୍ଷେତ୍ରରେ କିନ୍ତୁ ଗଡ଼ଡାଲିକା ପ୍ରବାହ ଓ ଭାବପ୍ରବଣତା, ବିଶେଷ ଭାବରେ, ପ୍ରଚଣ୍ଡ ଦେଶପ୍ରୀତି ଓ ସହିଷ୍ଣୁତାହୀନ ଅନ୍ଧ ଭାବରେ ଭକ୍ତିର ରାଜତ୍ୱ ସେତେବେଳେ ଚାଲିଥିଲା, ଆଜି ବି ଚାଲିଛି। ନୂତନ ଦୃଷ୍ଟିକୋଣ ଓ ଅପ୍ରିୟ ସତ୍ୟକୁ ଗ୍ରହଣ କରିବାରେ କୁଣ୍ଠା ସେତେବେଳେ ଥିଲା, ବର୍ତ୍ତମାନ ବି ଅଛି। ଗଡ଼ଡାଲିକା ପ୍ରବାହ, ପାରମ୍ପରିକତା ଓ ଭାବପ୍ରବଣତାରୁ ମୁକ୍ତରହି, ସେସବୁର ଉର୍ଦ୍ଧ୍ୱରେ ଅବସ୍ଥାନ କରି ସାହିତ୍ୟ ଓ ସଂସ୍କୃତି ବିଚାରର ପରମ୍ପରା ସୃଷ୍ଟି ହୋଇନାହିଁ। ନୀଳକଣ୍ଠଙ୍କ ଭାଷାରେ " ବିଦ୍ୟାର ପରମ୍ପରା ମଧ୍ୟ ଏ ଦେଶରେ ଫିଟୁନାଇଁ!" ସେଥିପାଇଁ ସମାଲୋଚକ ଭାବରେ ପଣ୍ଡିତ ନୀଳକଣ୍ଠ ଓଡିଶାରେ ଜନପ୍ରିୟ ହୋଇପାରିଲେ ନାହିଁ, ସାମୟିକ ଭାବରେ ଜନପ୍ରିୟ ହୋଇ ରହିପାରିଲେ ନାହିଁ। ଅବଶ୍ୟ ତାଙ୍କର ସମାଲୋଚନାରେ ଗଡ଼ଡାଳିକା ପ୍ରବାହ ବା ଭାବପ୍ରବଣତାର ଛାପ ଆଦୌ ପଡିନାହିଁ ବୋଲି କୁହାଯାଇନାହିଁ। ତା ହୁଏତ ଅଛି, କିନ୍ତୁ ତା ଘଟିଛି ତାଙ୍କର ଅଜ୍ଞାନ ଭାବରେ।

ସମାଲେଚନା କ୍ଷେତ୍ରରେ ଭିନ୍ନ ମତବାଦ ଓ ବିରୁଦ୍ଧ ସମାଲୋଚନା ପ୍ରତି ପଣ୍ଡିତ ନୀଳକଣ୍ଠଙ୍କ ଦୃଷ୍ଟିକୋଣ ଅତ୍ୟନ୍ତ ଉଦାର ଥିଲା, ମନ ଥିଲା ଉନ୍ମୁକ୍ତ। (ଏବେ କିନ୍ତୁ ବେଳେ ବେଳେ ପ୍ରକାଶ ପାଉଛି ଯେ ପଣ୍ଡିତ ନୀଳକଣ୍ଠଙ୍କ ଭିତରେ ଉଦାରତା ଓ ସହିଷ୍ଣୁତାର ଘୋର ଅଭବ ଥିଲା। ବିଶେଷ ଭାବରେ ସମାଲୋଚନା କ୍ଷେତ୍ରରେ ସେ ଅତ୍ୟନ୍ତ ଅନୁଦାର ଓ ଅସହିଷ୍ଣୁ ଥିଲେ ବୋଲି ବହୁତ ଲୋକ ବିଶ୍ୱାସ କରନ୍ତି। ଏହା କିନ୍ତୁ ଭ୍ରମାତ୍ମକ।) ନୀଳକଣ୍ଠଙ୍କ ଭାବପ୍ରବଣତାର ଅଭାବ ଥିଲା ସିନା, କିନ୍ତୁ ଉଦାରତା ଓ ସହିଷ୍ଣୁତାର ଅଭାବ ଆଦୌ ନଥିଲା। ଉଦାହରଣ ସ୍ୱରୂପ, ଗୌଡୀୟ ବୈଷ୍ଣବ ଧର୍ମସମ୍ପ୍ରଦାୟ ଓ ସେଇ ଧର୍ମସମ୍ପ୍ରଦାୟକୁ ଭିତ୍ତିକରି ଗଢ଼ି ଉଠିଥିବା ସହିତ୍ୟକୁ ସେ ତୀବ୍ର ସମାଲୋଚନା କରିଥିଲେ ହେଁ ତାଙ୍କଦ୍ୱାରା ସମ୍ପାଦିକ 'ନବଭାରତ'ର ପୃଷ୍ଠାରେ ଭିନ୍ନ ମତବାଦୀ ନଟବର ସାମନ୍ତରାୟଙ୍କ **ଓଡିଆ ବୈଷ୍ଣବ ସାହିତ୍ୟ** ସମ୍ପର୍କୀୟ ପ୍ରବନ୍ଧ ପ୍ରକାଶପାଇଁ ସେ ଅଦୌ କୁଣ୍ଠା ପ୍ରକାଶ କରିନଥିଲେ। ଏ ସମ୍ପର୍କରେ ନଟବର ସାମନ୍ତରାୟ କହନ୍ତି, "ସେସମୟରେ ପଣ୍ଡିତଜୀ ମୋ ପାଖକୁ ଯାହା ଲେଖି ପଠାଇଥିଲେ, ତାହା ମୁଁ ଜୀବନରେ କେବେ ଭୁଲିପାରିବି ନାହିଁ। ତାଙ୍କ ପତ୍ରର ମର୍ମାର୍ଥ ଥିଲା ଏଇଆ, ପତ୍ରିକାର ସମ୍ପାଦକ କୌଣସି ନିର୍ଦ୍ଦିଷ୍ଟ ମତବାଦୀ ହେଲେ ହେଁ ସାହିତ୍ୟ କ୍ଷେତ୍ରରେ ବିପରୀତ ମତବାଦକୁ ପତ୍ରିକାରେ ଆତ୍ମପ୍ରକାଶପାଇଁ ସୁଯୋଗ ଦେବା ସର୍ବାଦୌ ସମୀଚୀନ। ସାହିତ୍ୟପତ୍ରିକା ଜାତିପାଇଁ ଉଦ୍ଦିଷ୍ଟ, ଲେଖାରେ କୌଣସି ଉପାଦେୟତା ଥିଲେ, ତାହା ଅନ୍ୟମାନଙ୍କ ଉପକାରରେ ଆସିପାରେ। ସମ୍ପାଦକ ନିଜର ବ୍ୟକ୍ତିଗତ ଅଭିରୁଚିଦ୍ୱାରା ତାହାକୁ ଦବାଇ ଦେବାଦ୍ୱାରା ପ୍ରକୃତ ସମ୍ପାଦନା କାର୍ଯ୍ୟ କରନ୍ତିନାହିଁ। (ଦ୍ରଷ୍ଟବ୍ୟ:

ଓଡିଆ ବୈଷ୍ଣବ ସାହିତ୍ୟ, ନଟବର ସାମନ୍ତରାୟ, ନିଜକଥା) ଏହା ତାଙ୍କ ଉଦାରତାର ପ୍ରମାଣ ମାତ୍ର। କେବଳ ଏତିକି ନୁହେଁ, ଓଡିଆ ସାହିତ୍ୟରେ ଆଧୁନିକତାର ବାର୍ତ୍ତା ବହନ କରିଥିଲା ନବଯୁଗ ସାହିତ୍ୟ ସଂସଦ ଓ ଏହି ଅନୁଷ୍ଠାନର ପୁରୋଭାଗରେ ଥିଲେ ବାମପନ୍ଥୀ ତରୁଣଦଳ। ଏହି ତରୁଣଦଳକୁ ତଥା ଏମାନଙ୍କ ପ୍ରବର୍ତ୍ତିତ ନୂତନ ଭାବଧାରାକୁ ପ୍ରବୀଣ ଓ ପଣ୍ଡିତ ନୀଳକଣ୍ଠ ଉଦାତ୍ତ କଣ୍ଠରେ ସ୍ୱାଗତ ଜଣାଇଥିଲେ, ନବଯୁଗ ସାହିତ୍ୟ ସଂସଦର ପ୍ରତିଷ୍ଠା ଉତ୍ସବକୁ ତାଙ୍କ ସମ୍ପାଦିତ 'ନବଭାରତ' ଅଗ୍ରାଧିକାର ଦେଇଥିଲା।

ପଲ୍ଲୀର ଯାତ୍ରା ସମ୍ପର୍କରେ 'ଆଲୋଚନା' ପ୍ରସଙ୍ଗରେ ସେ ନବଭାରତରେ ଲେଖିଥିଲେ; ଗ୍ରୀସ୍‌ଦେଶ ରୀତିର ଶିଳ୍ପ ତଥା ବହୁଦିନୁ ବୌଦ୍ଧ ଶିଳ୍ପରେ ଯେଉଁ ନଗ୍ନନାରୀ ଓ ପୁରୁଷ ମୂର୍ତ୍ତି ସବୁ ବିଭିନ୍ନ ଅବୟବର ବିଭିନ୍ନ ସଂସ୍ଥିତିରେ ପେଶୀ ଓ ଶିରା ବିନ୍ୟାସ ସହିତ ଫୁଟାଇ, ଲୋକର ସୌନ୍ଦର୍ଯ୍ୟବୋଧରେ ମୁଗ୍ଧତା ଉତ୍ପାଦନ କରାଯାଏ, ତାହା ଶିଳ୍ପଦୃଷ୍ଟିରେ ଅତି ଉତ୍କୃଷ୍ଟ। ହୁଏତ ଯୌନଶୌଚ ମାତ୍ର-ବାଦୀ ତାହା ଦେଖିବେ ନାହିଁ। କାରଣ ଶିଳ୍ପର ପୁଷ୍କଳ ପରିସର ତାଙ୍କ ଆଦର୍ଶର ଅଙ୍ଗୀଭୂତ ନୁହେଁ। ରଙ୍ଗମଞ୍ଚର ଚୁମ୍ବନ, ଆଲିଙ୍ଗନ ଓ ନୃତ୍ୟଭଙ୍ଗୀ, ବାଣୀମୟ ଚଳଚ୍ଚିତ୍ରର ନାରୀପୁରୁଷର ନଗ୍ନ ପ୍ରେମାଳାପ ଓ ବ୍ୟବହାର କଥା ଛାଡିଦେଲେ ମଧ୍ୟ, ପୃଥିବୀର କାବ୍ୟ, ନାଟକ ଓ ଉପନ୍ୟାସ ପ୍ରଭୃତି ସମସ୍ତ ଗଠନ ସାହିତ୍ୟର ଏକମାତ୍ର ମେରୁଦଣ୍ଡ ଏହି ଯୌନସଙ୍କେତ। ନୀତିବାଦୀମାନେ ଏସବୁର ପାଠ ବର୍ଜନ କରନ୍ତି ଓ ଅନ୍ୟକୁ ସେହି ଉପଦେଶ ଦିଅନ୍ତି। ମନେଅଛି, ସ୍ୱର୍ଗତ ବ୍ରାହ୍ମପ୍ରଚାରକ ପ୍ରତାପଚନ୍ଦ୍ର ମଜୁମଦାରଙ୍କ Aids to Moral Character ପୁସ୍ତକରେ ଅତି ବାଲ୍ୟ ବୟସରରେ ଏହିପରି ଏକ ନିର୍ଦ୍ଦେଶରେ ପ୍ରଭାବିତ ହୋଇ, ମୁଁ ନିଜେ ଜୀବନରେ ନିତାନ୍ତ ଦରକାର ବିନା ନାଟକ ଓ ଉପନ୍ୟାସ ପଢ଼ି ନାହିଁ - ଆଜିଯାଏ ମଧ୍ୟ ନାଟକାଭିନୟ ଓ ବାଣୀମୟ ଚଳଣି ପ୍ରାୟ ଦେଖିନାହିଁ। ମୋର ମତ ବା ରୁଚି ଯାହାହେଉ-- ସାମାଜିକ ଭାବରେ ଏସବୁର ବିଚାର ଯେ ସ୍ୱତନ୍ତ୍ର, ଏହା ଆମ୍ଭେ ବୁଝୁଛୁ। ମୋର ଅଣ୍ଟା ଘୋଳିହୁଏ ବୋଲି ମୁଁ ଚଡୁ ଘିନେ, ଏଥିପାଇଁ ଜଗତରେ ସମସ୍ତେ ଖାଲି ଚଡୁ ଘିନିବେ ବୋଲି ଆଶାକରିବା ଠିକ୍ ନୁହେଁ। (ନବଭାରତ, ଧନୁ ୧୩୪୨, ଆଲୋଚନା, ପୃ. ୫୪୫)। ଯେଉଁ ନୀଳକଣ୍ଠ ଯାତ୍ରା ଅଭିନୟ କେବେ ଦେଖନ୍ତି ନାହିଁ, ସେ ଯାତ୍ରାକୁ ସମର୍ଥନ କରି କହିଥିଲେ, "ଯାତ୍ରା ଏ ଦେଶରେ ସଂସ୍କୃତିର ଏକ ମୁଖ୍ୟ ବାହନ।.... ଶୁଦ୍ଧ ସରଳ ପଲ୍ଲୀରେ ଲକ୍ଷ୍ମଣ ଦିଅର ଭାବରେ ଭାଉଜ ସୀତାଙ୍କୁ କୌଣସି ଏକ ଯୌନ ସଙ୍କେତରେ ପରିହାସ କଲେ ମଧ୍ୟ ସେଥିରେ ପଲ୍ଲୀସମାଜର ଯଥାର୍ଥ ବିଷୟ ଧରିବାରେ ଅସୁବିଧା ହୁଏନାହିଁ। ବରଂ ସେପରି ନ କଲେ ନିରସ ଅଭିନୟ ସେଠାରେ ଶୁଷ୍କ, ନୀରସ ତଥା ନିରର୍ଥକ ହୋଇପାରେ। " (ତତ୍ରୈବ ପୃ. ୫୪୬)। ସେହିପରି ନିଜେ ଉପନ୍ୟାସ ପାଠରେ ସଦା କୁଣ୍ଠିତ ଥିଲେ ମଧ୍ୟ, ନିତ୍ୟାନନ୍ଦ ମହାପାତ୍ରଙ୍କ "ଭୁଲ୍" ଉପନ୍ୟାସକୁ ଧାରାବାହିକ ଭାବରେ ନବଭାରତ ପୃଷ୍ଠାରେ ସ୍ଥାନ ଦେବାକୁ ବିଶେଷ ଆଗ୍ରହ ଦେଖାଇଥିଲେ। (ଏବେ ନିତ୍ୟାନନ୍ଦ ମହାପାତ୍ର କଥା ପ୍ରସଙ୍ଗରେ ମୋତେ କହିଲେ ଯେ, ପ୍ରଥମେ ନୀଳକଣ୍ଠଙ୍କ ଧାରଣା ଥିଲା କାନ୍ତକବି ଲକ୍ଷ୍ମୀକାନ୍ତଙ୍କ care of ମାର୍ଫତ୍‌ରେ ଲେଖାଆସୁଥିବାରୁ ଲକ୍ଷ୍ମୀକାନ୍ତଙ୍କର ଜଣେ ଭାଇ, ଅର୍ଥାତ୍

ନିତ୍ୟାନନ୍ଦଙ୍କ ଦାଦା, ଛଦ୍ମନାମରେ ଏ ଉପନ୍ୟାସ ଲେଖୁଛନ୍ତି। ଥରେ ଲେଖକ ଅସୁସ୍ଥ ହୋଇପଡିବାରୁ ଠିକ ସମୟରେ ଲେଖା ପଠାଇପାରିଲେ ନାହିଁ। ନୀଳକଣ୍ଠ ଲକ୍ଷ୍ମୀକାନ୍ତଙ୍କ ଭାଇଙ୍କ ଉଦ୍ଦେଶ୍ୟରେ ଚିଠି ଲେଖିଲେ, ଭଲ ତ ଲେଖୁଥିଲୁ, ବନ୍ଦ କଲୁ କାହିଁକି ?) ସେତେବେଳେ ବୟସରେ ତରୁଣ ନିତ୍ୟନନ୍ଦ ନୀଳକଣ୍ଠଙ୍କର ଏ ଚିଠି ପଢ଼ି ବିଶେଷ ପ୍ରେରଣାଲାଭ କରିଥିଲେ।

ନୀଳକଣ୍ଠଙ୍କ ଉଦାରତାର ଏହିପରି ବହୁ ଉଦାହରଣ ଦିଆଯାଇପାରେ। ତାଙ୍କର ଭାବପ୍ରବଣତାର ଅଭାବ ଥିଲା, ଉଦାରତା ଓ ସହିଷ୍ଣୁତାର ନୁହେଁ। ଅବଶ୍ୟ ସେ ଆପଣା ମତର ପ୍ରତିଷ୍ଠାପାଇଁ ଓ ତାର ସମର୍ଥନପାଇଁ ଶକ୍ତିଶାଳୀ ଯୁକ୍ତିର ଆଶ୍ରୟ ନେଉଥିଲେ। ପୁଣି ତାଙ୍କର ପ୍ରକାଶଭଙ୍ଗୀ ମଧ୍ୟ ଅନୁରୂପ ଭାବରେ ଶକ୍ତିଶାଳୀ ଥିଲା। ଅନ୍ୟ କଥାରେ, ସେ ତାଙ୍କର ବକ୍ତବ୍ୟ ଅତ୍ୟନ୍ତ ରୋକ୍‌ଠୋକ୍ ଭାବରେ, ଟାଣଭାଷାରେ ପ୍ରକାଶ କରୁଥିଲେ। ସେହିପରି ଭିନ୍ନମତ ବା ବିରୁଦ୍ଧମତକୁ ମଧ୍ୟ ତୀବ୍ର ଭାବରେ ଆକ୍ରମଣ କରିବାପାଇଁ କେବେ କୁଣ୍ଠା ପ୍ରକାଶ କରୁନଥିଲେ। ପୁଣି ତାଙ୍କର ବ୍ୟକ୍ତିଗତ ଜୀବନ ଓ ସମାଲୋଚକ ଜୀବନ ମଧ୍ୟରେ ବିରୋଧ ତ ନଥିଲା, ପାର୍ଥକ୍ୟ ବି ବିଶେଷ ନଥିଲା। କୌଣସି ଜିନିଷକୁ କଥାରେ ବିରୋଧ କରି କାମରେ ଗ୍ରହଣ କରିବା ପରି ଛଦ୍ମତା ତାଙ୍କର ନଥିଲା। ଶେଷରେ, ସେ ଥିଲେ ଅତ୍ୟନ୍ତ ନର୍ଭୀକ। ଫଳରେ ସେ ଅତ୍ୟନ୍ତ ଅନୁଦାର ଓ ଅସହିଷ୍ଣୁ ବୋଲି ପରିଗଣିତ ହେଲେ।

ସମାଲୋଚକ ଭାବରେ ପଣ୍ଡିତ ନୀଳକଣ୍ଠ ବିଚ୍ଛିନ୍ନତାବାଦୀ ବା Isolationist ନଥିଲେ, ଥିଲେ ପରିବେଶବାଦୀ ବା Contextualist ସମାଲୋଚକ। ବିଚ୍ଛନ୍ନତାବାଦୀମାନେ କଳାକୃତିକୁ ସ୍ୱୟଂସମ୍ପୂର୍ଣ୍ଣ ଏକକ ରୂପେ ବିଚାର କରନ୍ତି ଓ କଳାକୃତିର ଅବବୋଧ (Interpretation) ଓ ମୂଲ୍ୟାୟନ (Evaluation) ରେ କଳାକାରର ବ୍ୟକ୍ତିଗତ ଜୀବନ, କଳାସୃଷ୍ଟିର ପୃଷ୍ଠଭୂମି ଓ ଯୁଗୀୟ ପ୍ରବୃତ୍ତି ବିଚାରକୁ ନେବାର ଆବଶ୍ୟକତା ଅନୁଭବ କରନ୍ତିନାହିଁ। ପକ୍ଷାନ୍ତରରେ, ପରିବେଶବାଦୀମାନେ କଳାକୃତିକୁ ତା'ର ପରିବେଶରୁ ବିଚ୍ଛିନ୍ନକରି ବିଚାର କରନ୍ତି ନାହିଁ। ସେମାନଙ୍କ ମତରେ- କଳାକାରର ଜୀବନୀ କଳାସୃଷ୍ଟିର ପୃଷ୍ଠଭୂମି, ଯୁଗୀୟ ପ୍ରବୃତ୍ତି ଆଦିରୁ ତାକୁ ବିଚ୍ଛିନ୍ନ କରି କଳାକୃତିର ପ୍ରକୃତ ଅବବୋଧ ଓ ମୂଲ୍ୟାୟନ ସମ୍ଭବ ନୁହେଁ। ଏହାହିଁ କଳା-ବିଚାରରେ ନୀଳକଣ୍ଠଙ୍କ ଆଭିମୁଖ୍ୟ ଥିଲା। ସେ ସେଥିପାଇଁ ଉପେନ୍ଦ୍ରଙ୍କ ଲାବଣ୍ୟବତୀର ସମାଲୋଚନା ପ୍ରସଙ୍ଗରେ ଲେଖିଥିଲେ-'କାବ୍ୟ ଦେଖିବାବେଳେ ସମାଲୋଚକ ଯଥାଶକ୍ତି ଅନୁମାନ ବଳ ପ୍ରୟୋଗ କରି ନିଜକୁ କବିଙ୍କ ସ୍ଥାନରେ ରଖି ବିଚାର କରିବା ବିଧେୟ। କବିଙ୍କ ଆଖପାଖ ଘଟଣାରାଶି ଓ ସମାଜାଦିର ବ୍ୟବସ୍ଥା ସମ୍ପୂର୍ଣ୍ଣରୂପେ ହୃଦୟଙ୍ଗମ କରିବାପାଇଁ ହେବ। (ଲାବଣ୍ୟବତୀ, ଓଡିଆ ଭାଷା ଓ ସାହିତ୍ୟ, ୧୯୫୮, ପୃ. ୧୨୦)। ଆହୁରି ମଧ୍ୟ କବିଙ୍କ କୁଳ ଓ ବିଶ୍ୱାସ ଛଡା ଆଉ ଗୋଟିଏ କଥା ସମାଲୋଚକକର ସ୍ମରଣ ରଖିବା ଉଚିତ। ତାହା କବିଙ୍କ "ସମୟ ଓ ସେହି ସମୟର ଅବସ୍ଥା"। (ତତ୍ରୈବ, ପୃ. ୧୧୮)। ସେଥିପାଇଁ ସାହିତ୍ୟ-ସମାଲୋଚନାରେ ସେ ସଂସ୍କୃତିକୁ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଦେଇଛନ୍ତି, ସଂସ୍କୃତିର ମାନଦଣ୍ଡରେ ହିଁ ସାହିତ୍ୟକୁ ମାପିବାର

ଚେଷ୍ଟା କରିଛନ୍ତି। ସାହିତ୍ୟର କ୍ରମପରିଣାମ ପ୍ରକୃତପକ୍ଷେ ସଂସ୍କୃତିର କ୍ରମପରିଣାମରେ ପରିଣତ ହୋଇଛି। କିନ୍ତୁ ନୀଳକଣ୍ଠ କଳା ବା ସାହିତ୍ୟ ବିଚାରରେ ସଂସ୍କୃତିକୁ ଯେତେ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଦେଇଥିଲେ ହେଁ କଳା ଓ ସାହିତ୍ୟକୁ କଳା ଓ ସାହିତ୍ୟ ଭାବରେ ହିଁ ବିଚାର କରିଛନ୍ତି। ଅନ୍ତତଃ ବିଚାରକରିବା ପାଇଁ ଚେଷ୍ଟା କରିଛନ୍ତି।

ପରିବେଶବାଦୀ ସମାଲୋଚକ ଥିବାରୁ ନୀଳକଣ୍ଠଙ୍କ ଦୃଷ୍ଟିରେ ସାହିତ୍ୟ ଥିଲା ବ୍ୟାପକ। ତାଙ୍କ ମତରେ, "ସମାଜ ବିକାଶର ପ୍ରକାଶ ହେଉଛି ସାହିତ୍ୟ। ଏହି ବିକାଶର ଚଳଣି ସଂସ୍କୃତିରେ ଧରାହୁଏ। ସାହିତ୍ୟରେ ଏହି ସଂସ୍କୃତି ମପାଯାଏ। ତେଣୁ ସମାଜର ଚଳଣିଠାରୁ କଳା, କବିତା, ଆଲୋଚନା, ବିଜ୍ଞାନ, ଚିତ୍ର, ସ୍ଥାପତ୍ୟ ପ୍ରଭୃତି ସବୁ ସାହିତ୍ୟର ଅନ୍ତର୍ଗତ। (ଓଡ଼ିଆ ସାହିତ୍ୟର କ୍ରମପରିଣାମ, ୧ଭାଗ: ୧ମ ଅଧ୍ୟାୟ)। ତେବେ ଏହା ଭିତରେ ଚାହାଣି ବା ଦର୍ଶନ ଓ ଦୃଷ୍ଟିଭଙ୍ଗୀ ତଥା ଚଳଣି ବା ସମାଜରେ ଆଦାନପ୍ରଦାନଘଟିତ ସମସ୍ତ ବ୍ୟବହାର ହେଉଛି ସାହିତ୍ୟର ଶରୀର। ଚମକ ବା ସଙ୍କେତର ଆକସ୍ମିକତା ଓ ଭାବର ଅମାପ ସ୍ଫୁରଣ ହେଉଛି ତାର ପ୍ରାଣ। ମୋଟ ଉପରେ, ପରିବେଶବାଦୀ ନୀଳକଣ୍ଠ କଳାର ଅବବୋଧ ବା ମୂଲ୍ୟାୟନରେ ଚାହାଣି ଓ ଚଳଣିର ଗୁରୁତ୍ୱପୂର୍ଣ୍ଣ ଭୂମିକା ସମ୍ପର୍କରେ ବିଶେଷ ଭାବରେ ସଚେତନ ଥିଲେ ମଧ୍ୟ କଳାକୃତିର ପ୍ରକୃତ ସାଫଲ୍ୟ ଏହି ଚମକ ବା ସଙ୍କେତର ଆକସ୍ମିକତା ଓ ଭାବର ଅମାପ ସ୍ଫୁରଣ ଉପରେ ନିର୍ଭରଶୀଳ ବୋଲି ମତ ଦେଇଥିଲେ। ତେଣୁ ନୀଳକଣ୍ଠ ପରିବେଶବାଦୀ ହେଲେ ହେଁ କଳାର କଳାଗତ ମୂଲ୍ୟ ସମ୍ପର୍କରେ ବେଶ୍ ସଚେତନ ଥିଲେ।

ତେବେ କଳାକୁ ବା ଆହୁରି ତଳେଇ କରି ଦେଖିଲେ, କଳାର ଶରୀରକୁ, ନୀଳକଣ୍ଠ ସଂସ୍କୃତିର ମାନଦଣ୍ଡରେ କଳନା କରି ତା'ର ଅବବୋଧ ଓ ମୂଲ୍ୟାୟନରେ 'ଜାତୀୟ ସଂସ୍କୃତି'ର ପରିକଳ୍ପନା କରିଛନ୍ତି। ନୀଳକଣ୍ଠଙ୍କ ଜାତି ଓ ଜାତୀୟସଂସ୍କୃତି ପରିକଳ୍ପନାର ଭିତ୍ତିଭୂମି ହେଉଛି ଭୂମିଖଣ୍ଡରେ ନିବଦ୍ଧ ଭାଷା। ତାହା ହିଁ ତାଙ୍କ ଦୃଷ୍ଟିରେ ସମାଜ ଓ ସାହିତ୍ୟର ମୂଳ। ତାଙ୍କ ମତରେ 'ସ୍ୱାଧୀନ ସମାଜରେ ସ୍ୱାଧୀନ ବ୍ୟକ୍ତିର ସ୍ୱଚ୍ଛନ୍ଦ ବିକାଶ ଏହାର ଭିତ୍ତିରେ ହିଁ ସମ୍ଭବ। ନିର୍ଦ୍ଦିଷ୍ଟ ଭୂମି ସ୍ୱାଧୀନ ଖଣ୍ଡରେ ନିବଦ୍ଧ ଭାଷା ଓ ସାହିତ୍ୟକୁ ମୂଳକରି ମାନବ ସମାଜର ବିକାଶ କରିବା ଓ କରାଇବା ପୁଣି ସେଇ ଭିତ୍ତିରେ ଅର୍ଥନୀତି ଓ ରାଷ୍ଟ୍ରନୀତି ଫୁଟାଇବା ହେଉଛି ସମାଜ ବିକାଶର ସ୍ୱାଭାବିକ ଧାରା। .. ଭାଷାରେ ଭାବ ପ୍ରକାଶ ଲଭି, ମାନବର ସମାଜ ପ୍ରଥମେ ଫୁଟିଥିଲା। ସେଥିରୁ ସାହିତ୍ୟ ପ୍ରକାଶ ପାଇଲା। ଏବେ ନାନା ବିତ୍‌ପାତ ଭିତରେ ପୁଣି ସମାଜର ମୂଳ ସେଇ ଭାଷା ଓ ସାହିତ୍ୟକୁ ଆସୁଛି।" (ଓଡ଼ିଆ ସାହିତ୍ୟର କ୍ରମପରିଣାମ, ୧ମଭାଗ, ୧ମ ଅଧ୍ୟାୟ, ଭୂମିଖଣ୍ଡରେ ନିବଦ୍ଧ ଭାଷାର ସମାଜ ଓ ସାହିତ୍ୟର ମୂଳ)। ଏହା ତାଙ୍କ ସମାଲୋଚନା-ଦର୍ଶନର ଏକ ବିଶିଷ୍ଟ ଦିଗ।

ପୁଣି ଭାଷା ଉପରେ ଏହିପରି ସଚେତନ ଭାବରେ ଗୁରୁତ୍ୱ ଦେବାରୁ, ସାହିତ୍ୟର ପୂର୍ବୋକ୍ତ ବ୍ୟାପକ ଅର୍ଥ ବ୍ୟତୀତ ଅନ୍ୟ ଏକ ସଙ୍କୁଚିତ ଅର୍ଥ ମଧ୍ୟ ସେ କରି କହିଥିଲେ, 'ତେଣୁ ଚାହାଣି ଚଳଣିର ନାନା ପ୍ରକାର ପ୍ରତିଲକ୍ଷ୍ୟ ଥିଲେ ମଧ୍ୟ ସାହିତ୍ୟର କ୍ରମ ପରିଣାମ ମୁଖ୍ୟତଃ ଭାଷାରେ ପ୍ରକାଶ ପାଉଥିବା ବିଚାର ବର୍ଣ୍ଣନା ଓ ବ୍ୟଞ୍ଜନାରେ ଦେଖିବାକୁ ହୁଏ।"

ଭାଷାରେ ପ୍ରକାଶ ପାଉଥିବା ଉଭୟ କଥିତ ବା ଲୋକସାହିତ୍ୟ ଓ ଲିଖିତସାହିତ୍ୟ ଉପରେ ସେ ସମପରିମାଣରେ ଗୁରୁତ୍ୱ ଆରୋପ କରିଥିଲେ। ଲୋକସାହିତ୍ୟ ତାଙ୍କ ଦୃଷ୍ଟିରେ ହେୟ ନଥିଲା, ଥିଲା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ।

ଅବଶ୍ୟ ପରିବେଶବାଦୀ ହୋଇଥିବାରୁ ବେଳେବେଳେ ପୂର୍ବୋକ୍ତ ଚମକ ଅପେକ୍ଷା ଚାହାଣି ଓ ଚଳଣି ଉପରେ ଅତ୍ୟଧିକ ଗୁରୁତ୍ୱ ପ୍ରଦାନ କରିଛନ୍ତି ସାହିତ୍ୟ-ସମାଲୋଚନା ପ୍ରସଙ୍ଗରେ। ସେଥିପାଇଁ ବେଳେ ବେଳେ ସେ କେବଳ ସଂସ୍କୃତି ଓ ଜାତୀୟତାର (ଅନ୍ୟ କଥାରେ ଜାତୀୟ ସଂସ୍କୃତିର) ନିକିତିରେ ସାହିତ୍ୟକୁ ତଉଲିଛନ୍ତି। ସମାଲୋଚକ ନୀଳକଣ୍ଠଙ୍କ ସମାଲୋଚନାର ଏହା ଏକ ଦୁର୍ବଳତା।

ସମାଜବିଜ୍ଞାନ ତଥା ମାନବବିଦ୍ୟାର ଗବେଷଣା ପ୍ରସଙ୍ଗରେ, ବେଳେ ବେଳେ ଏକ ବା ଏକାଧିକ ବିକଳ୍ପ ପ୍ରକଳ୍ପ (hypothesis) କୁ ଆଖି ଅଗରେ ରଖି ତଥ୍ୟର ସଂଗ୍ରହ ଓ ସଜ୍ଜୀକରଣ କରାଯାଏ। ପ୍ରକଳ୍ପକୁ ସମର୍ଥନ କରୁଥିବା ତଥ୍ୟ ମିଳିଲେ (ଓ ବିରୋଧ କରୁଥିବାବା ତଥ୍ୟ ନ ମିଳିଲେ) ଓ ତାହାର ଠିକଣା ସଜ୍ଜୀକରଣ କରାଯାଇପାରିଲେ ଯୁକ୍ତିର ସହାୟତାରେ ପ୍ରକଳ୍ପ (hypothesis) କୁ ସିଦ୍ଧାନ୍ତ (thesis) ରେ ପରିଣତ କରାଯାଏ। ତେଣୁ ପ୍ରକଳ୍ପକୁ ସିଦ୍ଧାନ୍ତ କରିବା ପାଇଁ ତଥ୍ୟର ସଂଗ୍ରହ ଓ ସଜ୍ଜୀକରଣ ରୂପକ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବାକୁ ହୁଏ। ନଚେତ ପ୍ରକଳ୍ପ 'ଆକାର'ରେ ହିଁ ରହିଯାଏ, ସିଦ୍ଧାନ୍ତ ହୋଇପାରେ ନାହିଁ। ପୁଣି ବିରୁଦ୍ଧ ତଥ୍ୟ ମିଳିଲେ, ପ୍ରକଳ୍ପକୁ ତ୍ୟାଗ କରିବାକୁ ପଡେ। ନୀଳକଣ୍ଠ ସଂସ୍କୃତି ଓ ସାହିତ୍ୟ ଅନୁଶୀଳନରେ ପ୍ରବୃତ୍ତ ହୋଇଥିଲେ ମଧ୍ୟ ତଥ୍ୟ ସଂଗ୍ରହ ଓ ସଜ୍ଜୀକରଣପାଇଁ ଆବଶ୍ୟକ ସମୟ ଓ ସୁଯୋଗ ତାଙ୍କର ନଥିଲା, ବୋଧହୁଏ ନଥିଲା ମଧ୍ୟ ଆଗ୍ରହ ଓ ଧୈର୍ଯ୍ୟ। ସେ ଆଡୁସାଡୁ ବିସ୍ତର ପଢୁଥିଲେ, କିନ୍ତୁ ଧାରାବାହିକ ଅନୁଶୀଳନ କରୁନଥିଲେ, କରିବା ପାଇଁ ସମୟ ଓ ସୁଯୋଗ ପାଉନଥିଲେ। ଫଳରେ ତାଙ୍କ ପ୍ରଦତ୍ତ ବହୁ ପ୍ରକଳ୍ପ କେବଳ ପ୍ରକଳ୍ପ ଆକାରରେ ହିଁ ରହିଗଲା, ସିଦ୍ଧାନ୍ତ ହୋଇପାରିଲା ନାହିଁ। ସେସବୁ ସିଦ୍ଧାନ୍ତ ହେବାର ପରୀକ୍ଷା ମଧ୍ୟ କରାଯାଇପାରିଲା ନାହିଁ। ବେଳେ ବେଳେ ମାତ୍ର ଗୋଟିଏ ଦୁଇଟି ତଥ୍ୟ ପାଇଲେ ସେ ତାହକୁ ଭଲ ଭାବରେ ପରୀକ୍ଷା ନ କରି, ତା'ର ପ୍ରାମାଣିକତା ନିର୍ଦ୍ଧାରଣ ନ କରି ସିଦ୍ଧାନ୍ତରେ ଉପନୀତ ହୋଇପଡିଛନ୍ତି। ପୁଣି ବେଳେ ବେଳେ ଏକ ପ୍ରକଳ୍ପକୁ ପ୍ରମାଣିତ ସିଦ୍ଧାନ୍ତ ବୋଲି ଧରିନେଇ ତା'ର ଭିତ୍ତିଭୂମି ଉପରେ ଅନ୍ୟ ଏକ ସିଦ୍ଧାନ୍ତ-ସୌଧ ଗଠନ କରିଛନ୍ତି। ଏହା ତାଙ୍କ ସମାଲୋଚନାରେ ଅନ୍ୟ ଏକ ଦୁର୍ବଳତା।

ତା' ପରେ, ତାଙ୍କ ଆଲୋଚନାର ପରିବେଷଣ ଶୈଳୀର କଥା। ସାହିତ୍ୟ ଓ ସଂସ୍କୃତିର ଆଲୋଚନା ପ୍ରସଙ୍ଗରେ ଯେ କୌଣସି ଧାରଣା (Concept) ବା ବିଷୟରେ ତିନିଗୋଟି ବିଭବ ବା ତିନିଗୋଟି ଦିଗ ସମ୍ପର୍କରେ ସେ ପ୍ରାୟ ସଚେତନ ରହୁଥିଲେ। ବିଶେଷ ଭାବରେ, ତାଙ୍କ ଜୀବନର ଉତ୍ତରକାଳରେ, ଯଥା - ଚାହାଣି, ଚଳଣି ଓ ଚମକ; ପରମ୍ପରା, ପରିସ୍ଥିତି ଓ ପୁରୋଦୃଷ୍ଟି; ବିଚାର, ବର୍ଣ୍ଣନା ଓ ବ୍ୟଞ୍ଜନା; ଶବର ସଭ୍ୟତା, ଦ୍ରାବିଡ ସଭ୍ୟତା ଓ ଆର୍ଯ୍ୟ ସଭ୍ୟତା ଇତ୍ୟାଦି। ଏହି ତିନି ସଂଖ୍ୟାପାଇଁ ତାଙ୍କର ଏକ ଆକର୍ଷଣ ଥିଲା ବୋଲି ମନେହୁଏ। ଏ ଆକର୍ଷଣର ମୂଳ କ'ଣ ? ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା; ବ୍ରହ୍ମା,

ବିଷ୍ଣୁ, ମହେଶ୍ୱର; ରାମ, ଲକ୍ଷ୍ମଣ, ସୀତା; ବୁଦ୍ଧ, ଧର୍ମ, ସଂଘ; ଇଡା, ପିଙ୍ଗଳା, ସୁଷୁମ୍ନା; ତ୍ରିକୂଟ, ତ୍ରିବୀଜ, ନା ଆଉ କ'ଣ ? ଏ ସମ୍ପର୍କରେ ଅଧିକ ଆଲୋଚନା ହେବା ଉଚିତ୍। ସେ ପ୍ରାସଙ୍ଗିକ ଭାବରେ ଏହି ତିନିସଂଖ୍ୟା ସମ୍ପର୍କରେ କହନ୍ତି 'ପୃଥିବୀରେ ଆଦିମ ଗଣନା ହେଉଛି ୧୦ ଓ ୬ରୁ। ଠିକ୍ ୧୦ ଓ ୬ ନୁହେଁ। ଏହା ବସ୍ତୁତଃ ୫ ଓ ୩ ରୁ। କାଲଡିଅରେ ଏହା ଆଦିମ କାଳରେ ପ୍ରତିଷ୍ଠିତ ଥିବାର ତାଙ୍କ ଲେଖା-

"ସାହିତ୍ୟଗତ ଜ୍ୟୋତିଷ ଗଣନାଦି"ରୁ ମିଳୁଚି। ଏହାର ମୂଳ ହେଉଛି, ମନୁଷ୍ୟର ପାଞ୍ଚ ଆଙ୍ଗୁଠି। ... ବୁଢ଼ା ଆଙ୍ଗୁଠି ଛାଡି, ବାକି ଆଙ୍ଗୁଠିମାନଙ୍କ ପ୍ରତ୍ୟେକରେ ୩ ପଗ।... କିନ୍ତୁ ଆଦିମ ୩ ସମ୍ବନ୍ଧରେ ଶୂନ୍ୟ ସାଧନାରେ ଗୋଟିଏ ସ୍ୱଷ୍ଟ ଧାରଣା ଏଠି ଉଲ୍ଲେଖଯୋଗ୍ୟ। ଖୁବ୍ ସମ୍ଭବ ଏହା ଚାରି ଆଙ୍ଗୁଠି ଭିତରେ ଯେଉଁ ତିନୋଟି ଫାଙ୍କ ଅଛି, ଚୋଳାରେ ପାଣି ବା ତେଲ ଧଇଲେ ଯେଉଁ ତିନି ବାଟରେ ଗଳି ପଡେ, ସେଇଆ। ଓଡିଆର ଶୂନ୍ୟ ସାହିତ୍ୟରେ ଏଇ କଥାଟି ସାଧାରଣ।... ଓଡିଆର ଶୂନ୍ୟସାଧନା ବା ବୌଦ୍ଧଧର୍ମର ଅନେକ ପରିଭାଷା ଅତି ପ୍ରାଚୀନ। .. ସେଥିରେ ଅସୁର ସଭ୍ୟତାର ଆଦିମ ୩ ସଂଖ୍ୟାରେ ଏ ସଂକେତଟି ଦେଖିବାର ଜିନିଷ। ଆଦିମ ୩ ସଂଖ୍ୟା ଆବିଷ୍କ୍ରିୟାର ଏହାର ମୂଳ ଓ କଳିଙ୍ଗ ସଭ୍ୟତାରେ ଏ ସଂକେତଟି ଠିକ୍ ମୌଳିକ ଭାବରେ ରହି ଆସିଛି ବୋଲି କହିବାର ଅଭିପ୍ରାୟ।" (ଓଡିଆ ସାହିତ୍ୟର କ୍ରମ ପରିଣାମ, ୧ମ ଭାଗ, ୨ୟ ଅଧ୍ୟାୟ, ଅଙ୍କ ଗଣନା।)

ତାଙ୍କ ପ୍ରକାଶଭଙ୍ଗୀ ସମୟ ବିଶେଷରେ ଅପ୍ରାସଙ୍ଗିକତା, ପୁନରୁକ୍ତି, ଅସ୍ୱଷ୍ଟତା ଓ ପରସ୍ପରବିରୋଧ ଦୋଷରେ ଦୁଷ୍ଟ। ଅପ୍ରାସଙ୍ଗିକତା ଓ ପୁନରୁକ୍ତି ସମ୍ପର୍କରେ ସେ ନିଜେ ଭଲ ଭାବରେ ସଚେତନ ଥିଲେ। ଜାଣିଶୁଣି ସେ ଅପ୍ରାସଙ୍ଗିକତା ବିଷୟରେ ଅବତାରଣା କରୁଥିଲେ ବା ଏକ ବିଷୟରେ ପୁନରାବୃତ୍ତି କରୁଥିଲେ। ତାର କାରଣ ସମ୍ପର୍କରେ ସେ କହନ୍ତି, "ବଚନ ଅଛି, ଆବୃତ୍ତି ସର୍ବଶାସ୍ତ୍ରାଣାଂ ବୋଧାଦପି ଗରୀୟସୀ।" ଅର୍ଥାତ୍ ବୁଝି ନ ପାରିଲେ ମଧ୍ୟ ବାରମ୍ବାର ଆବୃତ୍ତି କଲେ, ସେଥିରେ କ୍ରମେ ଅବବୋଧ ଜାଗ୍ରତ ହୁଏ। ତେଣୁ ଓଡିଆ ସାହିତ୍ୟ ଆଲୋଚନାରେ ଭାକ୍ତିକ ମିଥ୍ୟାର ବିଶେଷ ଆଲୋଚନା କରି ବାଟ ପରିଷ୍କାର କରିବା ଦରକାର। ସେଥିପାଇଁ ତ ଅଉରି ଭଲକରି କରିବାକୁ ହେବ। ( ଓଡିଆ ସାହିତ୍ୟର କ୍ରମପରିଣାମ: ୨ୟ ଭାଗ, ୬ଷ୍ଠ ଅଧ୍ୟାୟ, ପୌରାଣିକ ଓ ଭାକ୍ତିକମିଥ୍ୟାର ସମ୍ବନ୍ଧ)

କୁହାଯାଇଛି, ନୀଳକଣ୍ଠ ପେସାଦାର ସାହିତ୍ୟ ସମାଲୋଚକ ନ ଥିଲେ। ସେ ପୁଣି ମୁହଁରୁ ଡାକି ଦେଉଥିଲେ ଏବଂ ଅନ୍ୟ କେହି ବସି ଲେଖୁଥିଲେ। ତେଣୁ ତାଙ୍କର ସାହିତ୍ୟ-ସମାଲୋଚନାରେ ଥିବା ପୂର୍ବୋକ୍ତ ଦୋଷ ସବୁ କ୍ଷମଣୀୟ। ତେବେ ଏ ପ୍ରସଙ୍ଗରେ ଲକ୍ଷ୍ୟ କରିବାର କଥା ହେଉଛି, ସମାଲୋଚକ ଜୀବନର ଆଦ୍ୟକାଳ ବା ପ୍ରଥମ ପର୍ଯ୍ୟାୟରେ ତାଙ୍କର ଆଲୋଚନା ଥିଲା ଅଧିକ ଶୃଙ୍ଖଳିତ ଓ ସନ୍ନଦ୍ଧ। ତା' ମଧ୍ୟରେ ଶୃଙ୍ଖଳା, ସଂଯମ ଓ ଅନୁପାତର ପ୍ରତିଫଳନ ସହଜରେ ପରିଲକ୍ଷିତ ହୁଏ। କିନ୍ତୁ ପରବର୍ତ୍ତୀ କାଳରେ, ଏ ସବୁର

ଅଭାବ ଦେଖାଗଲା । ସେହିପରି ତାଙ୍କ ପ୍ରଥମ ପର୍ଯ୍ୟାୟର ଆଲୋଚନାଗୁଡ଼ିକ ଅଧିକ ବସ୍ତୁନିଷ୍ଠ । ପରବର୍ତ୍ତୀ କାଳରେ ସେ ଆଲୋଚନା ପ୍ରସଙ୍ଗରେ ବ୍ୟକ୍ତିଗତ ଅନୁଭବ, ଅଭିଜ୍ଞତା ଓ ବନ୍ଧୁଙ୍କ ଅନୁଭୂତି ଓ ଅଭିଜ୍ଞତାକୁ ଉପସ୍ଥାପନ କଲେ, ସେସବୁକୁ ତଥ୍ୟ ଭାବରେ ଗ୍ରହଣ କଲେ ଓ ପ୍ରମାଣ ବୋଲି ଧରିନେଲେ । ଓଡିଆ ସାହିତ୍ୟର କ୍ରମପରିଣାମରେ ଏହି ବ୍ୟକ୍ତିନିଷ୍ଠ ଶୈଳୀର ବହୁ ଉଦାହରଣ ମିଳିବ । ପୁଣି ସେହିପରି ତାଙ୍କ ଆଲୋଚକ ଜୀବନର ପ୍ରଥମ ପର୍ଯ୍ୟାୟରେ ତତ୍ସମ ବହୁଳତା ଓ ଦେଶଜ ତଥା ଅନ୍ୟାଗତ ଶବ୍ଦର ସ୍ୱଳ୍ପତା ଦୃଷ୍ଟିଗୋଚର ହୁଏ । ପରବର୍ତ୍ତୀ କାଳରେ ସେ ସମାଲୋଚନା ପ୍ରସଙ୍ଗରେ ଅଧିକରୁ ଅଧିକ ଦେଶଜ ତଥା ବିଦେଶାଗତ ଶବ୍ଦ ବ୍ୟବହାର କରିଛନ୍ତି, ତତ୍ସମ ଶବ୍ଦର ବ୍ୟବହାର କମ୍ କରିଦେଇଛନ୍ତି ।

ମୋଟ ଉପରେ ତାଙ୍କ ପ୍ରକାଶଭଙ୍ଗୀ ପ୍ରଥମାବସ୍ଥାରେ କିଛିଟା କୃତ୍ରିମ ହୋଇଥିବା ବେଳେ, ପରବର୍ତ୍ତୀ କାଳରେ ବେଶ୍ ସ୍ୱାଭାବିକ ଓ ସାବଳୀଳ ହୋଇପାରିଛି । ପ୍ରକାଶଭଙ୍ଗୀ ହୋଇଛି ଅଧିକ ଶକ୍ତିଶାଳୀ, ଆଲୋଚନା ଅଧିକ ସୁଖପାଠ୍ୟ । ଅପ୍ରାସଙ୍ଗିକତା ତଥା ପୁନରୁକ୍ତି ଦୋଷରେ ଦୁଷ୍ଟ ହୋଇଥିଲେ ହେଁ ଓ ବୋଧହୁଏ ସେହି କାରଣରୁ ତାଙ୍କର ବକ୍ତବ୍ୟ ଅତ୍ୟନ୍ତ ସ୍ପଷ୍ଟ ହୋଇଛି । ସେ ଯେଉଁ ସ୍ଥାନରେ ଗୁରୁତ୍ୱ ଦେବାକୁ ଚାହିଁଛନ୍ତି, ସେଠାରେ ଗୁରୁତ୍ୱ ଦିଆଯାଇପାରିଛି ।

**ନୀଳକଣ୍ଠ ଦାଶଙ୍କ ରଚନାବଳୀ**

**ଓଡ଼ିଆ ବ୍ୟାକରଣ:** ପ୍ରଥମ ଓ ଦ୍ୱିତୀୟ ଭାଗ (୧୯୩୫), କଟକ : କଟକ ଟ୍ରେଡ଼ିଂ କମ୍ପାନୀ

**ଓଡ଼ିଆ ସାହିତ୍ୟର କ୍ରମପରିଣାମ** (୧ମ ଭାଗ, ୧୯୪୮; ୨ୟ ଭାଗ, ୧୯୫୫; ୩ୟ ଭାଗ), କଟକ : ନିଉ ଷ୍ଟୁଡେଣ୍ଟସ ଷ୍ଟୋର

**ଓଡ଼ିଆ ଭାଷା ଓ ସାହିତ୍ୟ** (୧୯୯୮),କଟକ : ନିଉ ଷ୍ଟୁଡ଼େଣ୍ଟସ ଷ୍ଟୋର

**ଲାବଣ୍ୟବତୀ ଟୀକା :**



୧୩ ନଭେମ୍ବର, ୧୯୦୫ - କୁମାର ପୂର୍ଣ୍ଣିମା, ୧୯୯୩

## ସାହିତ୍ୟ-ସମାଲୋଚକ ମାୟାଧର ମାନସିଂହ

ଶ୍ରୀଚରଣ ମହାନ୍ତି

**ସାହିତ୍ୟ ସମାଲୋଚନାମୂଳକ ପ୍ରବନ୍ଧ ଓ ମାନସିଂହଙ୍କ ଜୀବନ**

ମାୟାଧର ମାନସିଂହ (୧୯୦୫- ୧୯୭୩) ସାହିତ୍ୟର ବିବିଧ ବିଭାଗରେ ଲେଖନୀ ଚାଳନା କରିଛନ୍ତି। ମାତ୍ର କାବ୍ୟ - କବିତା ବ୍ୟତୀତ ତାଙ୍କ ରଚନାର ଅନ୍ୟାନ୍ୟ ବିଭାଗ ସଂପର୍କରେ ଯଥାଯଥ ଚର୍ଚ୍ଚା ହୋଇପାରିନାହିଁ। ତାଙ୍କ ସୃଷ୍ଟିର ପ୍ରକାଶ କାଳ ୧୯୨୩ ରୁ ୧୯୭୩, ଅବଧି ପ୍ରାୟ ପଚାଶ ବର୍ଷ। ସାଧାରଣ ପାଠକଦୃଷ୍ଟିରେ ମାନସିଂହ କେବଳ ଜଣେ ପ୍ରେମ ଓ ପ୍ରଣୟର କବି, ଯଦିଚ ତାଙ୍କର ଏହି ଧରଣର ସୃଷ୍ଟିସମ୍ପଦର ରଚନାକାଳ ମାତ୍ର ତିନିବର୍ଷ। ଏହି ପଚାଶବର୍ଷ ମଧ୍ୟରେ କାବ୍ୟକବିତା ସମେତ ନାନା ବିଷୟରେ ସେ ଯେଉଁ ସୃଷ୍ଟିସଂପଦ ଛାଡିଯାଇଛନ୍ତି, ତା' ମଧ୍ୟରେ ଗଦ୍ୟସାହିତ୍ୟର ପରିମାଣ ଅଧିକ। ଅସଂକଳିତ ଅବସ୍ଥାରେ ଥିବାରୁ ତଥା ପାଠକମାନଙ୍କ ପାଇଁ ସହଜଲଭ୍ୟ ହୋଇନଥିବାରୁ ଆଲୋଚକମାନଙ୍କ ମଧ୍ୟରୁ ଅନେକ ତାଙ୍କର ଏହି ସୃଷ୍ଟିସଂପଦକୁ ପ୍ରାୟତଃ ଆଲୋଚନାକୁ ଆଣିନାହାନ୍ତି।

ମାନସିଂହ ଲେଖକ ଜୀବନର ଆଦ୍ୟଭାଗରୁ ହିଁ ପ୍ରବନ୍ଧ ତଥା ଆଲୋଚନାରେ ପ୍ରବେଶ କରିଛନ୍ତି। ସେ ଇଂରାଜୀ ସାହିତ୍ୟର ଛାତ୍ର ଏବଂ ଓଡିଆ ସାହିତ୍ୟରେ ତାଙ୍କର ଅଧ୍ୟୟନ ବି ରହିଛି। ସ୍କୁଲଜୀବନରୁ ହିଁ ବଙ୍ଗଳା ଭାଷାରେ ରଚିତ ନିଗମାନନ୍ଦ ସରସ୍ୱତୀଙ୍କ ଜୀବନୀର ସେ ଜଣେ ପାଠକ ଥିଲେ। ବିଶ୍ୱକବି ରବୀନ୍ଦ୍ରନାଥ ନୋବେଲ୍ ପୁରସ୍କାର ପାଇଲା ପରେ, ସାମୟିକ ସାହିତ୍ୟିକ ତଥା ଯୁବଗୋଷ୍ଠୀ ରବୀନ୍ଦ୍ର ସାହିତ୍ୟ ପ୍ରତି ଆକର୍ଷିତ ହୋଇ ପଡ଼ିଥିଲେ। ମାନସିଂହଙ୍କର ରବୀନ୍ଦ୍ର ସାହିତ୍ୟ ପ୍ରତି ଅନୁରାଗ ଥିଲା। ରବୀନ୍ଦ୍ର କବିତାର ସେ ମୁଗ୍ଧପାଠକ ଥିଲେ। ସଂସ୍କୃତ ସାହିତ୍ୟରେ ତାଙ୍କର ପ୍ରବେଶ ବି ଥିଲା। ବିଲାତରେ ଅବସ୍ଥାନ କାଳରେ କାଳିଦାସ ଓ ସେକ୍ସପିୟରଙ୍କ ସଂପର୍କରେ ସେ ତୁଳନାତ୍ମକ ଅଧ୍ୟୟନ କରି ପିଏଚ୍.ଡି ଉପାଧି ଲାଭ କରିଛନ୍ତି।

କବି ବା ଶିଳ୍ପୀର ମାନସିକତା, କଳା ରୂପରେ ହିଁ ଆତ୍ମପ୍ରକାଶ କରେ। ସୃଷ୍ଟି ସ୍ରଷ୍ଟାର ସହଜାତ ପ୍ରବୃତ୍ତି। ପାହାଡ଼ପର୍ବତର ଗୁରୁଗମ୍ଭୀର ଶୋଭା, ଭସାବାଦଲର ସଂଦେଶ ବା ନଦନଦୀର ପ୍ରାକୃତିକ ଶୋଭା ଅନାଦି କାଳରୁ ରହି ଆସିଛି। କବିଙ୍କ ଅନୁଭବ ଓ କଳ୍ପନାର ସ୍ପର୍ଶରେ ମଣିଷ ସେମାନଙ୍କୁ ନୂଆକରି ଦେଖିଲା। ସେ ମେଘ ମଧ୍ୟରେ ଜୀବନର ସନ୍ଧାନ କଲା। ଶୋକ-ପାସୋରା-ଅପ୍ସରା-ଭୁବନ ଚିଲିକାର କୋଳରେ ମାୟାଧରଙ୍କର ଜନ୍ମ। ସହରଠାରୁ ବହୁତ ଦୂରରେ ଥିଲେ ମଧ୍ୟ ମାନସିଂହଙ୍କର ଗ୍ରାମ ଓ ପରିବାରରେ ପ୍ରାଚୀନ

ଓଡିଆ ସାହିତ୍ୟର ଚର୍ଚ୍ଚା ହେଉଥିଲା। ଭଞ୍ଜଭୂମି ଗଞ୍ଜାମର ସାଂସ୍କୃତିକ ବାୟୁମଣ୍ଡଳର ଝଲକ, କବିଙ୍କ ଗ୍ରାମ ପର୍ଯ୍ୟନ୍ତ ପରିବ୍ୟାପ୍ତ। ମାଲୁଦର ଗ୍ରାମେ ଗ୍ରାମେ ପ୍ରାଚୀନ ଛାନ୍ଦ ଚଉପଦୀର ଲହର ସାଙ୍ଗକୁ ପାରିକୁଦର ରାଜପରିବାର ସହିତ ମାନସିଂହ ପରିବାରର ପୁରୁଷାନୁକ୍ରମିକ ସଂପର୍କ ପରିବେଶକୁ ଆହୁରି ନିବିଡ କରିଛି। ପୁନଶ୍ଚ ତାଙ୍କ ପିତାମହ ସତ୍ୟବାଦୀ ନାୟକ ଜଣେ କବି ଓ ପିତୃବ୍ୟ ଜଣେ ଗ୍ରାମୀଣ ଗାୟକ ଥିବାରୁ ସାହିତ୍ୟ, ସଂଗୀତ ଓ କଳାପ୍ରତି କବିଙ୍କ ମନରେ ସହଜାତ ଆକର୍ଷଣ ବିଦ୍ୟମାନ ରହିଛି।

ପୁନଶ୍ଚ ମାୟାଧରଙ୍କ ସାଆନ୍ତବାପା ‘ଉତ୍କଳ ସାହିତ୍ୟ’ ପତ୍ରିକା ଓ ଖବରକାଗଜ ମଗାଇବାର ବିବରଣୀ ମାନସିଂହ ବିଭିନ୍ନ ସ୍ଥାନରେ ଉଲ୍ଲେଖ କରିଛନ୍ତି। ଛାତ୍ରଜୀବନରେ ପତ୍ରିକା ମଲାଟର ଖାଲି ପୃଷ୍ଠାରେ ଗୀତଲେଖି ସେ ଗାଇଛନ୍ତି। ଖୋର୍ଦ୍ଧା ହାଇସ୍କୁଲ୍‌ରେ ପାଠପଢ଼ା ସହିତ ଅନ୍ୟାନ୍ୟ ପୁସ୍ତକ ଓ ପତ୍ରିକା ପଢ଼ିବାର ବି ସୁଯୋଗ ପାଇଛନ୍ତି। ରେଭେନ୍‌ସା କଲେଜରେ ଏ ସମସ୍ତ ସୁଯୋଗର ସେ ଉପଯୋଗ କରିପାରିଛନ୍ତି। ଛାତ୍ର ଜୀବନର ପ୍ରାରମ୍ଭରୁ ଆଧୁନିକ ସାହିତ୍ୟ ସହିତ ତାଙ୍କର ପରିଚୟ ନିବିଡ଼ ହୋଇଛି। ସାହିତ୍ୟ – ସମାଲୋଚନାମୂଳକ ପ୍ରବନ୍ଧ ଓ ଆଲୋଚନା ଲେଖିବାପାଇଁ ଭୂମି ପ୍ରସ୍ତୁତ ହୋଇଛି।

ବ୍ୟକ୍ତିତ୍ୱ : ମାନସିଂହ କବି-ପ୍ରାଣର ବ୍ୟକ୍ତିତ୍ୱ। ତାଙ୍କର ପ୍ରାଣଖୋଲା ହସ ଯେପରି ଦକ୍ଷିଣା ପବନରେ ତରଙ୍ଗାୟିତ ଚିଲିକାର ଉତ୍ତାଳ ତରଙ୍ଗମାଳା। ସ୍ୱାଭାବିକ ଭାବେ ଯେକୌଣସି ସାହିତ୍ୟିକ/ ସଂସ୍କୃତିକ ସମସ୍ୟା ବା ଅନୁଭବ ସଂପର୍କରେ ପ୍ରତିକ୍ରିୟା ପ୍ରକାଶ ନ କରି ରହିପାରୁ ନଥିଲେ। ଜୀବନର ପ୍ରତ୍ୟେକ ବସ୍ତୁକୁ ଏକ ଶିକ୍ଷାସୁଲଭ ଦୃଷ୍ଟିକୋଣରୁ ଦେଖିବା ଥିଲା ତାଙ୍କ ବ୍ୟକ୍ତିତ୍ୱର ବିଶେଷ ଗୁଣ। ନିଜକୁ ଜୀବନର ବିଭିନ୍ନ ପର୍ଯ୍ୟାୟରେ, ନିଜର ରଚନା ମଧ୍ୟରେ ନାନା ଭାବରେ ଆବିଷ୍କାର କଲାଭଳି, ବିଭିନ୍ନ ସାହିତ୍ୟିକ ଓ ଶିଳ୍ପସୃଷ୍ଟିକୁ ସେ ଭିନ୍ନ ଭିନ୍ନ ଭାବରେ ପର୍ଯ୍ୟାଲୋଚନା କରିଛନ୍ତି। ତାଙ୍କ ମନରେ ଭକ୍ତି ଅପେକ୍ଷା ଯୁକ୍ତି ଅଧିକ ଭାବରେ ଉଙ୍କିମାରିଛି। ଏଣୁ ସାହିତ୍ୟିକ ଜୀବନ ଆରମ୍ଭରୁ ହିଁ ସେ ସମାଲୋଚନା ରଚନା କରିଛନ୍ତି। କୌଣସି ଲେଖାର ପ୍ରତିକ୍ରିୟା ଓ ନିଜ ରଚନା ସଂପର୍କରେ ଆସୁଥିବା ପ୍ରତିକ୍ରିୟାର ଉତ୍ତର ଦେବାପାଇଁ ସଯୌକ୍ତିକ ଉପସ୍ଥାପନରୁ ହିଁ ଆରମ୍ଭ ହୋଇଛି ତାଙ୍କ ସମାଲୋଚନା ଲେଖାର ଧାରା।

ତାଙ୍କ ସମାଲୋଚନା-ସାହିତ୍ୟକୁ ଏହିଭଳି ପର୍ଯ୍ୟାୟଭୁକ୍ତ କରାଯାଇପାରେ ଯଥା – ୧. ପ୍ରାଚୀନ ଓଡିଆ ସାହିତ୍ୟ, ୨. ଆଧୁନିକ ଓଡିଆ ସାହିତ୍ୟ, ୩. ଲୋକସାହିତ୍ୟ, ୪. ଇଂରାଜୀ ସାହିତ୍ୟ, ୫. ସଂସ୍କୃତ ସାହିତ୍ୟ, ୬. ବଙ୍ଗଳା ସାହିତ୍ୟ (ରବୀନ୍ଦ୍ରନାଥ) ୭. ସାହିତ୍ୟର ତାତ୍ତ୍ୱିକ ଆଲୋଚନା। ସଂକଳିତ ଆଲୋଚନା ପୁସ୍ତକ ମଧ୍ୟରେ ୧– କବି ଓ କବିତା, ୨– ଓଡିଆ ସାହିତ୍ୟ ଓ ସମାଜ, ୩– ମାଟିର ମହାକବି ସାରଳା ଦାସ ଏବଂ ୪– ଗୀତା ମାହାତ୍ମ୍ୟ ପ୍ରଧାନ।

ପ୍ରାଚୀନ ସାହିତ୍ୟ ସଂପର୍କରେ – ୧ (କ) ‘ପ୍ରାଚୀନ ଓଡିଆ କାବ୍ୟ’ ଆଲୋଚନା ୧୯୩୦ରେ ଲିଖିତ, ଇଛାପୁର ସାହିତ୍ୟ ସମ୍ମିଳନୀରେ ପଠିତ ଓ ୧୯୩୨ରେ ପ୍ରକାଶିତ।

ଏହି ସମାଲୋଚନା ରଚନା କଲାବେଳକୁ ମାନସିଂହ ଇଂରାଜୀ ଅନର୍ସ ପଢୁଥିବା ବି.ଏ ଶ୍ରେଣୀର ଛାତ୍ର। ସେତେବେଳେ ପ୍ରାଚୀନ ସାହିତ୍ୟ ସଂପର୍କରେ ଆଲୋଚନା ପର୍ଯ୍ୟାପ୍ତ ନଥିଲା, କିନ୍ତୁ ଅନେକ ପ୍ରାଚୀନ ସାହିତ୍ୟ ଚର୍ଚ୍ଚା ମାଧ୍ୟମରେ ଉପଲବ୍ଧ ଥିଲା। ଇଂରାଜୀ ସାହିତ୍ୟର ଛାତ୍ରଥିବାରୁ ତଥା ସମକାଳୀନ ପ୍ରତିବେଶୀ ସାହିତ୍ୟ ଓ ଓଡିଆ ସାହିତ୍ୟ ସହିତ ସଂପର୍କ ରଖିଥିବାରୁ, ପ୍ରାଚୀନ ଓଡିଆ କାବ୍ୟ ସହିତ ଆଧୁନିକ କାବ୍ୟର ଏକ ତୁଳନାତ୍ମକ ଆଲେଖ୍ୟ ସେ ଏହି ପ୍ରବନ୍ଧରେ ଉପସ୍ଥାପନ କରିଛନ୍ତି।

୧୯୩୦ ବେଳକୁ ଗୌରୀଶଙ୍କର ରାୟ, ଗୋବିନ୍ଦ ରଥ, ବ୍ରଜସୁନ୍ଦର ଦାସଙ୍କ ଭଳି ସଂପାଦକ/ ପ୍ରକାଶକ ତଥା ପ୍ରାଚୀ ସମିତି ଭଳି କେତେକ ଅନୁଷ୍ଠାନ ଅନେକ ପ୍ରାଚୀନ କାବ୍ୟର ସଟୀକ ମୁଦ୍ରଣ ମାଧ୍ୟମରେ ସେଗୁଡ଼ିକୁ ଓଡିଆ ଜାତିର ଅମୂଲ୍ୟ ସଂପଦ ଭାବରେ ଉପସ୍ଥାପନ କରିଥିଲେ। ଆଲୋଚ୍ୟ ଆଲୋଚନା, ସମ୍ଭବତଃ, ସେସମୟରେ ଗଢ଼ିଉଠିଥିବା ଉପରୋକ୍ତ ଅନୁଷ୍ଠାନ ବା ସଂକଳନର ପ୍ରତିକ୍ରିୟାରେ ସୃଷ୍ଟି। ମାନସିଂହ ଲେଖିଛନ୍ତି "ଅନେକ ପ୍ରାଚୀନପନ୍ଥୀ, ନବ୍ୟ ସାହିତ୍ୟରେ ବିତୃଷ୍ଣ ହୋଇ ଓଡିଆ ସାହିତ୍ୟର ସେହି ସ୍ୱର୍ଣ୍ଣ - ଯୁଗକୁ ସ୍ମରଣ କରି ହାୟ ହାୟ କରିଥାନ୍ତି। ଆମର ବୋଧହୁଏ, ଏମାନଙ୍କର ବିଚାର ଏକପାକ୍ଷିକ। ଉପେନ୍ଦ୍ର, ଦୀନକୃଷ୍ଣ, ଅଭିମନ୍ୟୁ, ବଳଦେବ, ଗୋପାଳକୃଷ୍ଣଙ୍କର ମଧୁର ପଦାବଳୀର ସମକକ୍ଷ ସାହିତ୍ୟସମ୍ପଦ ବର୍ତ୍ତମାନ ସାହିତ୍ୟ ସଂପଦରେ ନାହିଁ। କିନ୍ତୁ ବର୍ତ୍ତମାନ ସାହିତ୍ୟରେ ଏପରି ଅନେକ ମଣିମାଣିକ୍ୟର ସଂଗ୍ରହ ହୋଇଛି, ଯାହା ପ୍ରାଚୀନମାନଙ୍କ ନିକଟରେ ଆଶା କରାଯାଏନାହିଁ। ନୂତନ ସାହିତ୍ୟ ଏପରି କେତେକ ରସଧାରାରେ ରସବନ୍ତ ହୋଇଉଠିଛି ଯେ, ପ୍ରାଚୀନ ସାହିତ୍ୟ ନିକଟରେ ତା'ର ଦାରିଦ୍ର୍ୟ ଘେନି ଲଜ୍ଜିତ ହେବାର କୌଣସି କାରଣ ନାହିଁ।" ( ମାନସିଂହ ଗ୍ର., ଚତୁର୍ଥ ଭାଗ, ପୃ. ୩୬୫-୬୬)

ମାନସିଂହଙ୍କ ଦୃଷ୍ଟିରେ, "ସାହିତ୍ୟରେ କଳ୍ପନା ଓ ସ୍ୱପ୍ନର ନିତାନ୍ତ ପ୍ରୟୋଜନ ଥିଲେ ହେଁ, ତାହା ଏକମାତ୍ର ବା ପ୍ରଧାନ ପ୍ରୟୋଜନ ନୁହେଁ। ମାନବ ଜୀବନର ଅଗଣିତ ଦୁଃଖ ବେଦନା ହିଁ ସାହିତ୍ୟକୁ ପ୍ରକୃତରେ ମେରୁଦଣ୍ଡ ଦାନକରେ ଓ କଲ୍ୟାଣମୟ କରେ।" (ତତ୍ରୈବ: ପୃ. ୩୬୫) ସେ କବି ବା ଲେଖକର କାର୍ଯ୍ୟ ସଂପର୍କରେ ପୁଣି କହନ୍ତି "ଅଗଣିତ ଜନସଂଘର ଶତଶତ ମୂକ ଅନୁଭୂତିକୁ ଭାଷା ଦାନ କରିବା। ଯେଉଁ ଯେଉଁ ପରିମାଣରେ ମାନବ ଅନୁଭୂତିକୁ ଭାଷାର ଶିଳ୍ପ ଦେଇ ପ୍ରକାଶ କରିପାରିଛି, ସେ ସେହି ପରିମାଣରେ ପ୍ରିୟ ଓ ପୂଜ୍ୟ।" (ତତ୍ରୈବ : ପୃ. -୩୬୬) ଏହି ପ୍ରସଙ୍ଗରେ ସେ ଇଂରାଜୀ ସାହିତ୍ୟ ଓ ସଂସ୍କୃତ ସାହିତ୍ୟ, ବିଦ୍ୟାପତି, କବୀର ଓ ରବୀନ୍ଦ୍ରନାଥଙ୍କ ଉଦାହରଣ ଦେଇ ପ୍ରେମ, ନାୟକ ନାୟିକାଙ୍କର ଚିତ୍ର ତଥା ଧର୍ମ ଓ ସମାଜିକ ଜୀବନ କଥା ଉଲ୍ଲେଖ କରିଛନ୍ତି। ପ୍ରାଚୀନ କାବ୍ୟଧାରାରେ ଅଭିମନ୍ୟୁ ଓ ଗୋପାଳକୃଷ୍ଣଙ୍କ ପଦାବଳୀର ସ୍ୱାତନ୍ତ୍ର୍ୟ ସେ ଉଲ୍ଲେଖ କରିଛନ୍ତି।

(ଖ) ଗୋପାଳକୃଷ୍ଣ ପଦ୍ୟାବଳୀ (୧୯୩୩ ମସିହାରେ 'ରସଚକ୍ର' ପତ୍ରିକାର ୧/ ୪, ଜ୍ୟେଷ୍ଠ ୧/୫, ଆଷାଢ଼ ଓ ୧/୬, ଶ୍ରାବଣ) ତିନୋଟି ପର୍ଯ୍ୟାୟରେ, ଏକ ଦୀର୍ଘ

ଆଲୋଚନା ଭାବରେ ପ୍ରକାଶିତ। ଏହି ସମୟକୁ ମାନସିଂହ ଜଣେ ଜଣାଶୁଣା କବି ତଥା ଆଲୋଚକ ଭାବରେ ବେଶ୍ ପରିଚିତ ଓ ଏହାର କିଛିଦିନ ଆଗରୁ ଦୁଇ ବର୍ଷ କାଳ ଇଂରାଜୀ ସାହିତ୍ୟରେ ଏମ.ଏ ପଢ଼ିବା ପାଇଁ ପାଟଣା ବିଶ୍ୱବିଦ୍ୟାଳୟରେ ରହିଛନ୍ତି। ଏହି ଆଲୋଚନା ସଂପର୍କରେ ମାନସିଂହଙ୍କ ନିଜସ୍ୱ ବକ୍ତବ୍ୟ ପ୍ରଣିଧାନଯୋଗ୍ୟ। "ଗୋପାଳକୃଷ୍ଣ ବା ଅନ୍ୟ ପ୍ରାଚୀନ କବିମାନଙ୍କର ଆଲୋଚନା ପାଇଁ ମୋର ପାଣ୍ଡିତ୍ୟ ନାହିଁ। ଗୋପାଳକୃଷ୍ଣଙ୍କ ସଂପର୍କରେ ଲେଖିବାର ମୋର ଏକମାତ୍ର ଅଧିକାର ଏଇ ଯେ, ମୁଁ ଏ ବରେଣ୍ୟ କବିଙ୍କର 'ପଦ୍ୟାବଳୀ' ବାରମ୍ବାର ମୁଗ୍ଧ ହୋଇ ପଢ଼ିଛି ଓ ବନ୍ଧୁମାନଙ୍କ ଆଗରେ ପଢ଼ି ଶୁଣାଇଛି। ପଢୁପଢୁ ଯେଉଁ ଅନୁଭୂତି ହୋଇଅଛି, ତାହା ହିଁ ଏ ଆଲୋଚନାର ପ୍ରଧାନ ସଂପଦ।"

ଗୋପାଳକୃଷ୍ଣ ପଦ୍ୟାବଳୀକୁ ସେ ଦୁଇଟି ଭାଗରେ ଆଲୋଚନା କରିଛନ୍ତି।

ପ୍ରଥମ ଭାଗରେ: (କ) ବୈଷ୍ଣବ-କବିତା-ଲାଭ-କ୍ଷତି, (ଖ) ଗୋପାଳକୃଷ୍ଣ ଓ ଓଡିଆ ବୈଷ୍ଣବ କବି, (ଗ) ଗୋପାଳକୃଷ୍ଣ ଓ ବାତ୍ସଲ୍ୟରସ, (ଘ) ଓଡିଆ ଜନପଦ ପୀଠିକାରେ ରାଧାକୃଷ୍ଣ ଲୀଳା।

ଦ୍ୱିତୀୟ ଭାଗରେ: (କ) ଗୋପାଳକୃଷ୍ଣ ଓ ପ୍ରଣୟର ଶାଶ୍ୱତ ଚିତ୍ର (୧) ପୂର୍ବରାଗ, (୨) ପ୍ରେମର ସ୍ୱରୂପ, (ଖ) ଗୋପଲକୃଷ୍ଣ ଓ ଆଧ୍ୟାତ୍ମିକ ମାର୍ଗ।

ବୈଷ୍ଣବ କବିମାନଙ୍କ ସଂପର୍କରେ ତାଙ୍କର ଅଭିମତ - "ରାଧା ଓ କୃଷ୍ଣ, ପ୍ରେମିକ ଓ ପ୍ରେମିକାର ଦୁଇଟି ମଧୁର କଳ୍ପନା। ସବୁ କାଳରେ କବିମାନେ ପ୍ରେମପ୍ରବଣ। ବୈଷ୍ଣବ କବିମାନେ ବ୍ୟକ୍ତିଗତ ଜୀବନର ପ୍ରେମ- ଅନୁଭୂତିକୁ ଅନ୍ୟ ଦେଶର କବିମାନଙ୍କ ପରି ନିଜ ନାମରେ ପ୍ରକାଶ ନ କରି, ଏଇ ରାଧା ଓ କୃଷ୍ଣଙ୍କ ନାମରେ ଉତ୍ସର୍ଗ କରିଦେଇ ଅଛନ୍ତି।" (ତତ୍ରୈବ ପୃ. - ୨୮୭) ଏହି ମାର୍ଗରେ ଭାରତୀୟ ସାହିତ୍ୟରେ ଅନେକ ଅନେକ କାବ୍ୟ କବିତା ସୃଷ୍ଟି ହୋଇଛି। ଅନ୍ୟ ପକ୍ଷରେ ଦେବ-ଦେବୀ ନାମରେ ଅନେକ ବୀଭତ୍ସ ପ୍ରେମଲୀଳାର ହୋଇଛି ବର୍ଣ୍ଣନା। ଦେବତା ଦର୍ଶନ କରିବାକୁ ଯାଇ ମିଳିଛି ଦେବଦାସୀର ଦର୍ଶନ। ଏପରିକି ଅନେକ ସ୍ଥଳରେ ଦେବ-ଦେବୀ ଆଦୌ ନାହାନ୍ତି, କେବଳ ଦେବଦାସୀର ଦେହଲୀଳା।

ପ୍ରାଚୀନ ଓଡିଆ କାବ୍ୟର ଦୁର୍ଗମ ପରିସରକୁ ଭେଦକରିବା ସବୁ ପାଠକଙ୍କ ପାଇଁ ସମ୍ଭବ ନୁହେଁ, ମାତ୍ର ଗୋପାଳ କୃଷ୍ଣ ସେ ଦୃଷ୍ଟିରୁ ଭିନ୍ନ। ମଣିଷ ହୃଦୟର ଗଭୀର ଅନୁଭୂତି ରହିଛି ଗୋପାଳକୃଷ୍ଣଙ୍କ କବିତାରେ। ମାନସିଂହଙ୍କ ଭାଷାରେ "କବି ଆମମାନଙ୍କର ମୂକ - ହୃଦୟର ଇତିହାସ ଲେଖି ପ୍ରିୟ ହୁଅନ୍ତି। ଗୋପାଳକୃଷ୍ଣ ଆମ୍ଭମାନଙ୍କ ଜୀବନର ପ୍ରେମ - ଅନୁଭୂତିର ଇତିହାସ ଲେଖିଯାଇଛନ୍ତି - ସେ ଇତିହାସ ସତ୍ୟ ଓ ଶାଶ୍ୱତ କାହାଣୀ।" (ତତ୍ରୈବ - ପୃ. ୨୮୮) ତା ସହିତ ପୁଣି କହିଛନ୍ତି "ଭାଷାର ସ୍ୱାଭାବିକତା ଓ ଅନୁଭୂତିର ଗଭୀରତାରେ ଗୋପାଳକୃଷ୍ଣଙ୍କ ବୈଶିଷ୍ଟ୍ୟ।" ଅନ୍ୟ ଏକ ଦିଗରୁ ବିଚାର କରି ସେ କହନ୍ତି ଯେ, "ରାଧାକୃଷ୍ଣଙ୍କ କଥାକୁ ଗୋପାଳକୃଷ୍ଣ ଯେତେ ପରିମାଣରେ ଉତ୍କଳୀୟ ପରିପାରିଛନ୍ତି, ଅନ୍ୟ କୌଣସି

ଓଡିଆ ବୈଷ୍ଣବ କବି କରିପାରିନାହାନ୍ତି।" ମାନସିଂହ ଗୋପାଳକୃଷ୍ଣଙ୍କ ବାତ୍ସଲ୍ୟ ରସ ବର୍ଣ୍ଣନା, ରାଧାକୃଷ୍ଣ ଲୀଳା ତଥା ତାଙ୍କର ଆଧ୍ୟାତ୍ମିକ ଗାନ ସମୂହକୁ ବଙ୍ଗଳା କବି, ବଙ୍ଗଳାରେ ଅନୁବାଦିତ ମୈଥିଳୀ କବିତା ଓ ଓଡିଶାର ଅନ୍ୟ କବିମାନଙ୍କ ସହିତ ତୁଳନା ମାଧ୍ୟମରେ ନିଜ ମତକୁ ଉପସ୍ଥାପିତ କରିଛନ୍ତି। ପ୍ରଣୟର ଶାଶ୍ୱତ ଚିତ୍ର ଉପସ୍ଥାପନରେ ଉଦାହରଣ ସହ ସେ ଯେପରି ତର୍ଜମା କରିଛନ୍ତି, ସେତେବେଳର ମାନସିଂହଙ୍କ ବୟସ ଓ ଅଭିଜ୍ଞତାକୁ ବିଚାର କଲେ, ଯେକୌଣସି ସଚେତନ ପାଠକ ବିସ୍ମିତ ହେବ ଓ ତାଙ୍କର ଆଲୋଚନା ପଦ୍ଧତି ପାଠକରି ତୃପ୍ତି ଲାଭ କରିବ। ଓଡ଼ିଆ ସାହିତ୍ୟ ସମାଲୋଚନା ଇତିହାସରେ ଏହା ଏକ ସ୍ୱତନ୍ତ୍ର ରଚନା।

(ଗ) ପ୍ରାଚୀନ ସାହିତ୍ୟ ଆଲୋଚନା କ୍ଷେତ୍ରରେ ଲେଖକଙ୍କ ଉତ୍ତରଜୀବନରେ ରଚିତ "ମାଟିର ମହାକବି ସାରଳା ଦାସ (୧୯୫୮)" ବିଶେଷ ଭାବରେ ପାଠକମାନଙ୍କର ଦୃଷ୍ଟି ଆକର୍ଷଣ କରେ। ଲେଖକଙ୍କ ଜୀବନକାଳରେ ଏହାର ଦ୍ୱିତୀୟ ସଂସ୍କରଣ ୧୯୭୧ରେ ପ୍ରକାଶିତ ହୋଇଛି। ଏ ପୁସ୍ତକ ସଂପର୍କରେ ନିଜେ ମାନସିଂହଙ୍କର ବକ୍ତବ୍ୟ ହେଲା, " ଏ ପୁସ୍ତକରେ ଓଡିଆ ପାଠକମାନେ ସାରଳା ଦାସଙ୍କ ଜନ୍ମ ଓ କାଳ ନେଇ, ତାଙ୍କର ଜାତି, ଗୋତ୍ର ନେଇ, ତାଙ୍କର ଇତିହାସ ଭୂଗୋଳ ନେଇ ଯାହା ସବୁ ବାଦ ଓ ବିବାଦ ତାହାର କୌଣସି ସୂଚନା ଖୋଜିଲେ ନିରାଶ ହେବେ। ସମଗ୍ର ପୁସ୍ତକଟି କେବଳ ସାହିତ୍ୟ ସ୍ରଷ୍ଟା ସାରଳା ଦାସଙ୍କୁ ନେଇ। କବି ଓଡିଆ ଭାଷାକୁ କ'ଣ ଦେଇଯାଇଛନ୍ତି ଓ ଦେଇପାରିନାହାନ୍ତି ଓ କାହିଁକି, ତାହାରି ଆଲୋଚନା ହିଁ ଏହି ପୁସ୍ତିକା।"ଏହି ମନ୍ତବ୍ୟରୁ ହିଁ ସମାଲୋଚକ ମାନସିଂହଙ୍କ ଦୃଷ୍ଟିଭଙ୍ଗୀ ସୁସ୍ପଷ୍ଟ। ଲେଖକ ଗ୍ରାମ୍ୟ ଜୀବନରେ ସାରଳା ମହାଭାରତ ଶୁଣିଛନ୍ତି। ଧର୍ମ ଦୃଷ୍ଟିରୁ ନୁହେଁ, ଏହାର ବିଚିତ କାହାଣୀଗୁଡ଼ିକ ହିଁ ତାଙ୍କୁ ଆକୃଷ୍ଟ କରିଛି। ପଣ୍ଡିତ ମୃତ୍ୟୁଞ୍ଜୟ ରଥଙ୍କ 'ଶାରଳା ଚରିତ୍ର'କୁ ଛାତ୍ରାବସ୍ଥାରେ ପଢ଼ିଛନ୍ତି। ପରେ ପଣ୍ଡିତ ଗୋପୀନାଥ ନନ୍ଦଶର୍ମାଙ୍କ 'ଶ୍ରୀଭାରତ ଦର୍ପଣ' ପାଠ କରିବାଦ୍ୱାରା ସଂସ୍କୃତ ମହାଭାରତ ଓ ସାରଳା ମହାଭାରତ ତୁଳନାତ୍ମକ ଆଲୋଚନା ପାଠକଲାପରେ ହିଁ ସାରଳା ମହାଭାରତ ପଢ଼ିବା ପାଇଁ ତାଙ୍କ ଭିତରେ ଆଗ୍ରହ ସୃଷ୍ଟି କରିଛି। ଉପଲବ୍ଧ ପୁସ୍ତକଗୁଡ଼ିକର ନିଷ୍କର୍ଷ ହେଉଛି- "ମାଟିର ମହାକବି ସାରଳା ଦାସ"।

ମାନସିଂହଙ୍କ ଦୃଷ୍ଟିରେ 'ସାରଳାଙ୍କ ଓଡିଆ ମହାଭାରତ, ସ୍ୱୀକୀୟ ମହିମାରେ ଆଜି ଏକ ମୌଳିକ ରଚନାର ମର୍ଯ୍ୟାଦା ଦାବିକରେ। ପୁଣି 'ତାହା ପ୍ରତିଭାର ରହସ୍ୟମୟ, ଗୌରବମୟ ସ୍ୱର୍ଶରେ ଉଦ୍‌ଭାସିତ ହୋଇ, ସମସ୍ତଙ୍କ ଠାରୁ ବିସ୍ମିତ ପ୍ରଣତି ଆପେଇ ଘେନିଯାଏ। (ମାଟିର ମହାକବି ସାରଳା ଦାସ, ପୃ-୧) ମାଟିର ଗାଥା ଗାଇଥିବାରୁ ସାରଳା ଦାସ ଓ ତାଙ୍କର ମହାଭାରତ ଓଡିଆ ମାଟିର ମର୍ମବାଣୀ। ସାରଳା ଦାସଙ୍କ ମହାଭାରତ କେବଳ କୁରୁପାଣ୍ଡବଙ୍କ ଯୁଦ୍ଧର ଗାଥା ନୁହେଁ, ଏହା ଓଡିଆ ଜାତିର ପ୍ରକୃତ ଓ ପ୍ରକୃଷ୍ଟ ମହାକାବ୍ୟ। (ମାଟିର ମହାକବି ସାରଳା ଦାସ, ପୃ. ୨) କାରଣ ପୃଥିବୀର ସକଳ ସଭ୍ୟଜାତିର

ଏକ ଏକ 'ଜାତୀୟ' ମହାକାବ୍ୟ ଅଛି। ଏହି ମହାକାବ୍ୟ ସେହି ସେହି ଜାତିର ସ୍ୱପ୍ନ, ଆଦର୍ଶ ଓ ସଂସ୍କୃତିର ପ୍ରତିବିମ୍ବ। ସାରଳାଙ୍କ ମହାଭାରତ, ଗୋଟାଏ ଦେଶୀଭାଷାର ପୁରାଣ ନୁହେଁ। ଏହା ଓଡିଆ ଜାତିର ସ୍ୱପ୍ନ, ଆଦର୍ଶ ଓ ସଂସ୍କୃତିର ପ୍ରତିବିମ୍ବ। ଏହା ଓଡିଆ ଜାତିର ପ୍ରକୃତ ନାସନାଲ୍ ଏପିକ୍ ବା ଜାତୀୟ ମହାକାବ୍ୟ। ଏ ମହାଗ୍ରନ୍ଥରେ ଓଡିଆର ଲୌକିକ, ବ୍ୟାକରଣ ନିରପେକ୍ଷ, ଦୈନନ୍ଦିନ, ତରଳ, ଚପଳ ଭାଷା ପ୍ରଥମେ ହିଁ ସାହିତ୍ୟ ମାଧ୍ୟମ ରୂପେ ବ୍ୟବହୃତ ହୋଇଛି। ସେହି ଭାଷା ଛଅଶହ ବର୍ଷ ପରେ ଏବେ ବି ଓଡିଆ ଚଷା ଧାନବିଲରେ, ଧାନଖଳାରେ, ଗାଁ ଦାଣ୍ଡରେ ଓ ଭାଗବତ ଘରେ ବ୍ୟବହାର କରେ।" (ମାଟିର ମହାକବି ସାରଳା ଦାସ, ପୃ. ୧୩) ତାଙ୍କ ବିଚାରରେ ସାରଳା ଦାସ ସଂସ୍କୃତରେ ପଣ୍ଡିତ ନଥାଇ ପାରନ୍ତି, ମାତ୍ର ସଂସ୍କୃତ ମହାଭାରତ ସହିତ ପରିଚିତ ଥିଲେ। ସାରଳା ମହାଭାରତରେ ବର୍ଣ୍ଣିତ ଅନେକ ଚରିତ୍ରର ବର୍ଣ୍ଣନା ଯାହା କେବଳ ଓଡିଶାରେ ହିଁ ସମ୍ଭବ, ତାହା ସଂସ୍କୃତ ମହାଭାରତରେ ନାହିଁ - ଯେପରି ଭୀମଚରିତ୍ର, ଗଙ୍ଗା ଚରିତ୍ର, ଦ୍ରୌପଦୀର ରୂପ ବର୍ଣ୍ଣନା ଇତ୍ୟାଦି। ତା' ସହିତ ସାରଳା ମହାଭାରତ ଶ୍ରେଷ୍ଠତମ ବିଭାଗ ହେଉଛି, ସମାଜ, ସମର ଓ ସୌନ୍ଦର୍ଯ୍ୟ।

ମାନସିଂହ ସାରଳା ଦାସଙ୍କୁ ଶ୍ରେଷ୍ଠତ୍ୱ ପ୍ରଦାନ କରିବାର ପ୍ରମୁଖ କାରଣ ମଧ୍ୟରୁ ଗୋଟିଏ ହେଉଛି, କାହାଣୀର ସରଳ ଓ ସ୍ୱାଭାବିକ ବର୍ଣ୍ଣନା। ନାରୀର ସୌନ୍ଦର୍ଯ୍ୟ ବର୍ଣ୍ଣନାରେ ବାହ୍ୟ ଅଳଙ୍କାର ଅପେକ୍ଷା ସ୍ୱଭାବ, ସ୍ୱରୂପ, ଆଚରଣକୁ ସେ ଅଗ୍ରାଧିକାର ଦେଇଛନ୍ତି। ପୁନଶ୍ଚ ତାଙ୍କ ଦୃଷ୍ଟିରେ ପାଣ୍ଡିତ୍ୟ ଅପେକ୍ଷା ପ୍ରତିଭା ବଡ। ସେଥିପାଇଁ ସେ କହନ୍ତି " ମୁଁ ସାରଳା ଦାସଙ୍କଠି ଉଚ୍ଚକୋଟୀର ପ୍ରତିଭା ଦେଖିପାରୁଛି। କିନ୍ତୁ ପାଣ୍ଡିତ୍ୟ କେଉଁଠି ଦେଖିଲିନି। ସେ କାଳରେ ଓ ଏକାଳରେ ମଧ ପାଣ୍ଡିତ୍ୟ କହିଲେ - କ୍ଲାସିକାଲ୍ ସ୍କଲାର୍‌ସିପ୍‌କୁ ହିଁ ବୁଝାଏ। (ପୃ.-୪୮)

ଶେଷରେ ସାରଳା ମହାଭାରତର ମୂଲ୍ୟାୟନ କରିବାକୁ ଯାଇ ଲେଖିଛନ୍ତି ଯେ, ଏ ମହାଭାରତ ଖାଣ୍ଟି ଓଡିଆ ଭାଷାର ରାଷ୍ଟ୍ରୀୟ ଗନ୍ତାଘର କହିଲେ ଅତ୍ୟୁକ୍ତି ହେବନାହିଁ। ପୁଣି ସଂସ୍କୃତ ମହାଭାରତ ଗୋଟିଏ ଲୋକର କୃତିତ୍ୱ ନୁହେଁ। ବହୁଯୁଗର, ବହୁ ମନୀଷୀଙ୍କର ସାହିତ୍ୟିକ ଦାନର ସମାହାରରେ ସଂସ୍କୃତ ମହାଭାରତର ଅବୟବରାଜୀ ଗଠିତ। କିନ୍ତୁ ସାରଳା ମହାଭାରତ ଜଣେ ଲୋକର ଲେଖା ଏବଂ ସେ ଲୋକଟି ଜଣେ ପଲ୍ଲୀବାସୀ ଅର୍ଦ୍ଧଶିକ୍ଷିତ 'କୃଷକ'। ମାତ୍ର ଏହା ହିଁ ତା'ଭାଷାର ପ୍ରଥମ ସାହିତ୍ୟ (ତତ୍ରୈବ: ପୃ.- ୬୨)। ମାନସିଂହ ସଂସ୍କୃତ ମହାଭାରତ ସମେତ ଅନ୍ୟ ଭାରତୀୟ ଭାଷାର ମହାଭାରତ ସହିତ ସାରଳାଙ୍କୁ ତୁଳନା କରିଛନ୍ତି। ସାରଳାଙ୍କ ମହାଭାରତରେ ଅନେକ ଉପାଖ୍ୟାନ କିପରି କବିଙ୍କ ନିଜସ୍ୱ କଳ୍ପନା-ପ୍ରସୂତ, ତାହାର ସବିଶେଷ ଆଲୋଚନା କରି, କବିଙ୍କୁ ମାଟିର ମହାକବି ଭାବରେ ପ୍ରମାଣିତ କରିବାପାଇଁ ପ୍ରୟାସ କରିଛନ୍ତି।

**ଆଧୁନିକ ଓଡିଆ ସାହିତ୍ୟ ସଂପର୍କରେ ଆଲୋଚନା**

ଆଧୁନିକ ଓଡିଆ ସାହିତ୍ୟ ସ୍ରଷ୍ଟାଙ୍କ ସଂପର୍କରେ ମାନସିଂହ ପ୍ରାୟ ୩୦ଟି ଦୀର୍ଘ ଆଲୋଚନା ଲେଖିଛନ୍ତି। ଏଠାରେ ଲକ୍ଷ୍ୟ କରିବା କଥା, କେବଳ ୧୯୩୩ ମସିହାରେ ସେ ଯେଉଁ ଯେଉଁ ସମାଲୋଚନା ପ୍ରକାଶ କରିଥିଲେ, ଆଜିବି ତାଙ୍କ ମତ ଅନ୍ୟମାନଙ୍କ ପାଇଁ ଗ୍ରହଣୀୟ ହୋଇରହିଛି। ମାନସିଂହଙ୍କ ସଂପର୍କରେ ଚର୍ଚ୍ଚା କରୁଥିବା ଅନେକ ଆଲୋଚକ ଯେଉଁ ସମୟର ଚିତ୍ର ପ୍ରଦାନପାଇଁ ମାନସିଂହଙ୍କୁ କେବଳ ପ୍ରେମ ଓ ପ୍ରଣୟର କବି ବୋଲି ଆଲୋଚନା କରି ଚାଲିଛନ୍ତି, ସେହି ସମୟର କବି ମାନସିଂହ ଲେଖି ଚାଲିଛନ୍ତି ଅନେକ ଚିନ୍ତାମୂଳକ ପ୍ରବନ୍ଧ ଓ ଆଲୋଚନା। ତୁଳନାତ୍ମକ ଆଲୋଚନା, ବିଶେଷତଃ, ତୁଳନାତ୍ମକ ସାହିତ୍ୟ-ସମୀକ୍ଷଣର ସେ ଅନ୍ୟତମ ପଥିକୃତ ବ୍ୟକ୍ତିତ୍ୱ।

(କ) 'ରାଧାନାଥ ଓ ମଧୁସୂଦନ' ଶିରୋନାମାରେ 'ଯୁଗବୀଣା' ପ୍ରଥମ ବର୍ଷ, ତୃତୀୟ ସଂଖ୍ୟା, ମାର୍ଚ୍ଚ ୧୯୩୩ ମାନସିଂହଙ୍କର ଯେଉଁ ସମାଲୋଚନାଟି ପ୍ରକାଶିତ ହୋଇଥିଲା, ତାହା ପ୍ରକୃତରେ ରାଧାନାଥ, ମଧୁସୂଦନ ଓ ଫକୀରମୋହନଙ୍କ ସଂପର୍କରେ ହିଁ ଏକ ତୁଳନାତ୍ମକ ଚିତ୍ର। କେବଳ ମଧୁସୂଦନଙ୍କ ସ୍ମୃତି ସଭାରେ ଏହା ପଠିତ ହୋଇଥିବାରୁ, ଏଥିରେ ଶେଷଭାଗକୁ ଯାହା ଋଷିକବିଙ୍କ ସଂପର୍କରେ କିଛି ଲେଖାଯାଇଛି। ଆରମ୍ଭରେ ସେ ତିନି ସ୍ରଷ୍ଟାଙ୍କ ସଂପର୍କରେ ତୁଳନାତ୍ମକ ଆଲୋଚନା କରି, ତା' ପରେ ଲେଖିଛନ୍ତି - "ମନୁଷ୍ୟର ଉପଭୋଗ ଲାଗି ସ୍ରଷ୍ଟା ଯେଉଁ ଇନ୍ଦ୍ରିୟୋତ୍ତର ଆନନ୍ଦ ଏହି ଜଗତରେ ସଂଚିତ କରି ରଖିଛନ୍ତି, ତାହା କେବଳ ଭାଗ୍ୟବାନଙ୍କ ଭାଗ୍ୟରେ ଘଟେ। କବି, ଋଷି, ଜ୍ଞାନୀମାନେ ଭାଗ୍ୟବାନ ବ୍ୟକ୍ତି। ଏମାନେ ଦିବ୍ୟଦୃଷ୍ଟି ବଳରୁ କ୍ଷଣିକ ଓ ଚିରନ୍ତନର ପ୍ରଭେଦ ବୁଝିପାରନ୍ତି - ମରୀଚିକା ଛାଡି ସତ୍ୟର ଅନୁସନ୍ଧାନ କରନ୍ତି। ଏହି ଅନୁସନ୍ଧାନ ମାନବ ଜୀବନର ଶ୍ରେଷ୍ଠ ସାଧନା। ଏହି ଅନୁସନ୍ଧାନ ହିଁ ମନୁଷ୍ୟକୁ ପରମ ଆନନ୍ଦ ଦେଇପାରେ। ରାଧାନାଥ ଏଇ ଆନନ୍ଦ ପ୍ରକୃତିରେ, ଫକୀରମୋହନ ମାନବ ସମାଜରେ ଏବଂ ମଧୁସୂଦନ ବ୍ରହ୍ମ ଅନୁଭବରେ ଲାଭ କରିଥିଲେ। ଫକୀରମୋହନ ସତ୍ୟର, ରାଧାନାଥ ସୁନ୍ଦରର ଓ ମଧୁସୂଦନ ଶିବର ଉପାସକ ଥିଲେ।"

ମାନସିଂହଙ୍କ ତରୁଣ ବୟସର ଏହି କବି ତ୍ରୟୀଙ୍କ ସଂପର୍କରେ ମନ୍ତବ୍ୟ ପରବର୍ତ୍ତୀ କାଳର ଆଲୋଚକମାନଙ୍କୁ ପ୍ରଭାବିତ କରିଛି। ସମକାଳରେ ରାଧାନାଥଙ୍କ ସଂପର୍କରେ ତାଙ୍କର ଏକ ଦୀର୍ଘ ଆଲୋଚନା 'ରସଚକ୍ର'ର ୧ମ ଭାଗ ୧ମ ସଂଖ୍ୟା ଓ ୧ମ ଭାଗ ୨ୟ ସଂଖ୍ୟା (ଫାଲଗୁନ ୧୯୩୩ ଓ ଚୈତ୍ର ୧୯୩୩)ରେ ପ୍ରକାଶିତ ହୋଇଛି। ରାଧାନାଥଙ୍କୁ ଆଲୋଚନା କଲାବେଳେ ପ୍ରସଙ୍ଗକ୍ରମେ ଗୋପବନ୍ଧୁ ତାଙ୍କ ବିଚାର ପରିସରକୁ ଆସିଯାଇଛନ୍ତି। ଯଥା - "ପଣ୍ଡିତ ଗୋପବନ୍ଧୁ ଯେପରି ଓଡିଆ ଜାତିର ଅନ୍ତର ବୁଝିଥିଲେ, ରାଧାନାଥ ସେହିପରି ଓଡିଆ ଦେଶର ବହିରାବରଣକୁ ବୁଝିପାରିଥିଲେ।" ସେହିପରି ଅନ୍ୟ ଏକ ପ୍ରସଙ୍ଗରେ ଲେଖିଛନ୍ତି ଯେ, ମହାକବି କାଳିଦାସ ଯେପରି ନିଜ କାବ୍ୟ ମାଧ୍ୟମରେ କ୍ଷୁଦ୍ର ପର୍ବତ ରାମଗିରି, କ୍ଷୁଦ୍ର ପୟଃ - ପ୍ରଣାଳୀ ଶିପ୍ରାକୁ ଅମରତ୍ୱ ଦାନ କରିଛନ୍ତି, ରାଧାନାଥ ସେହିପରି ଓଡିଶାର ପ୍ରକୃତିକୁ ଜୀବନ୍ୟାସ ଦେଇଛନ୍ତି। ମାନସିଂହଙ୍କ ଭାଷାରେ "କାଳିଦାସୀ କାବ୍ୟ ଭାରତୀୟ ପ୍ରକୃତି, ବସ୍ତୁ ଓ ବ୍ୟକ୍ତିଙ୍କୁ

ଯାହା କରିଅଛି, ରାଧାନାଥୀ କାବ୍ୟ ଉତ୍କଳୀୟ ପ୍ରକୃତି, ବସ୍ତୁ ଓ ବ୍ୟକ୍ତିଙ୍କୁ ଠିକ୍ ସେହିପରି କରିଅଛି।' ପୁଣି ସେ କହିଛନ୍ତି - 'ରାଧାନାଥ ଯେତେବେଳେ କାବ୍ୟ ଲେଖିବାକୁ ହାତରେ ଲେଖନୀଧରି ବସିଥିବେ, ସେଦିନ ବୋଧହୁଏ ଉତ୍କଳର ମୌନ ପ୍ରକୃତିରେ ଗୋଟିଏ ନୀରବ ଓ ଅବ୍ୟକ୍ତ ଆନନ୍ଦଧାରା ଖେଳିଯାଇଥିବ। ସେଦିନ ବୋଧହୁଏ ସୋଲେରୀ ଭାଲେରୀକୁ ଓ ମହେନ୍ଦ୍ର ମେଘାସନକୁ ଡାକି କହିଥିବ, "ଆମର ପ୍ରକୃତ ଗ୍ରାହକ ଏତେଦିନେ ଆସିଲେ।" ମାନସିଂହଙ୍କର ଏ ଧରଣର ଆଲୋଚନା ପାଠ କଲାବେଳେ କବିଙ୍କର କୌଣସି ପ୍ରବନ୍ଧ ବା ଆଲୋଚନା ନୁହେଁ, କାବ୍ୟ ପାଠକଲା ପରି ବୋଧହୋଇଥାଏ। ପୁଣି ମାନସିଂହଙ୍କ ଆଲୋଚନାର ଉପସ୍ଥାପିତ ମତାମତ ଏତେ ସଂହତ ଓ ଦୃଢ଼ ଭାବରେ ଗ୍ରଥିତ ଯେ, ସେଥିରୁ କୌଣସି ଅଂଶ ବା ଧାଡ଼ି ବାଦଦେବା ସମ୍ଭବ ନୁହେଁ।

ରାଧାନାଥଙ୍କ ସଂପର୍କରେ ମାନସିଂହ ଚାରିଗୋଟି ଦୀର୍ଘ ଆଲୋଚନା ଏହି ପ୍ରକାରର।

୧. ରାଧାନାଥ ଓ ମଧୁସୂଦନ (୧୯୩୩) . ୨. ରାଧାନାଥ(୧୯୩୩), ୩. ଓଡିଆ ସାହିତ୍ୟକୁ ରାଧାନାଥଙ୍କ ଦାନ (୧୯୬୧), ୪. ରାଧାନାଥଙ୍କ ପ୍ରତି ଶ୍ରଦ୍ଧା ନିବେଦନ ଏବଂ ଅନ୍ୟ ଆଲୋଚନାଗୁଡ଼ିକର ଶୀର୍ଷକ- ୫. ସ୍ୱର୍ଗୀୟା କୁନ୍ତଳାକୁମାରୀ (୧୯୪୦), ୬. ମେହେରଙ୍କ ମହତ୍ୱ (୧୯୪୬), ୭. ଉତ୍କଳର ଚାରଣ କବି ଗୋଦାବରୀଶ (୧୯୫୬), ୮. ସ୍ୱର୍ଗତ କବି ପଦ୍ମଚରଣ ପଟ୍ଟନାୟକ (୧୯୬୦), ୯. ମାନବିକତାର କବି ମେହେର (୧୯୬୨), ୧୦. ପଣ୍ଡା ଓ ମେହେର, ୧୨. ମୁଁ ତାଙ୍କୁ କେବଳ ଦୂରରୁ ଜାଣିଥିଲି, ୧୩. ସଚ୍ଚିଦାନନ୍ଦ ତ୍ରିଭୁବନଦେବ, ୧୪. ଫକୀରମୋହନଙ୍କ ଅଙ୍ଗ କର୍ତ୍ତନ (୧୯୩୨), ୧୫. କୁନ୍ତଳା କୁମାରୀ (୧୯୪୦), ୧୬. ହୀରାଖଣ୍ଡ ମୋହନ ବ୍ରଜମୋହନ, ୧୭. ପ୍ରଣୟୀ ଗୋପବନ୍ଧୁ, ୧୮. ମାନବ ଗୋପବନ୍ଧୁ ଇତ୍ୟାଦି।

ତା' ସହିତ ତାଙ୍କ ସମସାମୟିକ କବି ଓ ଲେଖକଙ୍କ ସଂପର୍କରେ ଯେଉଁ ପତ୍ର ବା ଆଲୋଚନା ପ୍ରକାଶ କରିଛନ୍ତି, ସେଗୁଡ଼ିକର ୧. ପୁଷ୍ପିତା ଲେଖକର କୈଫୟତ (୧୯୩୦), ୨. ପରଧର୍ମ (୧୯୩୩), ୩. ନବ ସାହିତ୍ୟର ପ୍ରତିଷ୍ଠା (୧୯୩୬), ୪. ଓଡିଆରେ ଲେଖିବି କାହିଁକି ? (୧୯୩୬), ୫. ମୁଁ କାହିଁକି ଲେଖେ ?, ୬. ସାହିତ୍ୟରେ ନୂତନ ଭାବଧାରା (୧୯୫୯), ୭. ନୂତନ କବିତାର ତନୁତ୍ୟାଗ (୧୯୬୧), ୮. ଓଡିଆ ସାହିତ୍ୟର ଉନ୍ନୟନ ଯୋଜନା, ୯. ତରୁଣ ଗବେଷକ ଚିତ୍ତରଞ୍ଜନ ଇତ୍ୟାଦି।

ଲୋକସାହିତ୍ୟ : **ଉତ୍କଳର ଗାଉଁଲୀ ଗୀତ** (ନବ ଭାରତ, ଜୁଲାଇ ୧୯୩୫), **ଓଡିଶାର ଗାଉଁଲି ଗୀତ** (୧୯୫୧) ଓ **ଓଡିଆ ପଲ୍ଲୀ କବିତାର ହଲ୍ଲୀଷକ** (୧୯୬୨) ମାନସିଂହଙ୍କର କେତୋଟି ଲୋକ-ସାହିତ୍ୟ ସଂକ୍ରାନ୍ତ ଆଲୋଚନା।

ଏହି ପ୍ରସଙ୍ଗରେ ମାନସିଂହଙ୍କ ମନ୍ତବ୍ୟ - "ସମାଜ ଯେତେବେଳେ କୃତ୍ରିମ ହୋଇଉଠେ, ତାର ଭାଷା ସେହି ପରିମାଣରେ ଜଟିଳ ହୋଇଯାଏ। ଭଞ୍ଜୀୟଯୁଗର କୃତ୍ରିମ ସମାଜର ଚିତ୍ର ଆମ୍ଭେମାନେ ତାଙ୍କ ସାହିତ୍ୟରେ ପାଉ। ଏଥିରେ ଭାଷା ଦୁର୍ବୋଧ ଓ ଭାବ

ଅସହ୍ୟ। ଇଂରାଜୀ ସାହିତ୍ୟର ଅଷ୍ଟାଦଶ ଶତାବ୍ଦୀରେ ଏଇପରି ଏକ କାଳ ଉପସ୍ଥିତ ହୋଇଥିଲା। ବ୍ୟସନଶୀଳ ରାଜା ଦ୍ୱିତୀୟ ଚାର୍ଲସଙ୍କ ରାଜଦରବାରର ଛାୟାରେ ଏହି ସାହିତ୍ୟ ଗଢ଼ିଉଠିଥିଲା। ଏ ସାହିତ୍ୟ ସେ କାଳର ଇଂରାଜୀ ସମାଜର କୃତ୍ରିମତାର ପ୍ରତିକୃତି ମାତ୍ର ଏବଂ ଏଥିରେ ଶବ୍ଦର କସରତ ଓ ଅଶ୍ଳୀଳ ମନୋବୃତ୍ତି ସ୍ୱାଧୀନ କ୍ରୀଡା ଛଡା ଅନ୍ୟ କିଛି ନାହିଁ।" (ମାନସିଂହ ଗ୍ରନ୍ଥାବଳୀ ୪ର୍ଥ ଖଣ୍ଡ, ପୃ. - ୪୦୫)

ଲୋକସାହିତ୍ୟ ସଂଗ୍ରାହକ ଚକ୍ରଧର ମହାପାତ୍ରଙ୍କ 'ଉତ୍କଳ ଗାଉଁଲି ଗୀତ' ସଂପର୍କରେ ଆଲୋଚନା କରିବା ଅବସରରେ ନିଜସ୍ୱ ମତ ଉପସ୍ଥାପନ କରିବାକୁ ଯାଇ, ନିଜ ଜୀବନରେ ଲୋକଗୀତି ସଂଗ୍ରହର ପ୍ରସଙ୍ଗ ସଂପର୍କରେ ଲେଖିଛନ୍ତି - "ମୁଁ ଯେତେବେଳେ ମୋର ପଲ୍ଲୀ ଗ୍ରାମକୁ ଯାଏ, ଗ୍ରାମର ଚଷାଘରର ଛୋଟ ଛୋଟ ଝିଅ ସବୁ, ଶାଗ ତୋଳିବାକୁ ଯାଇ ଏକ ପଂକ୍ତିରେ ବସି ଶାଗ ତୋଳୁ ତୋଳୁ ଏଇପରି ଏକ ଗୀତ ସମବେତ ଭାବରେ ଗାଆନ୍ତି -

"ମଦରଙ୍ଗା ଶାଗ ରାଇତା, ନନା ଭୁଞ୍ଜନ୍ତି ନାହିଁ/ ଜଳୀକି ମାଇଲି ଗୋଇଠା ଜଳୀ ଫିଟିଲା ନାହିଁ।" (ତତ୍ରୈବ ପୃ. - ୪୦୬) ଇତ୍ୟାଦି। ଏହା ସଂଗ୍ରହ କରିବା ଯେ କି କଷ୍ଟକର ବ୍ୟାପାର କବି ତାହା ଅନୁଭବ କରିଛନ୍ତି। ଲୋକଗୀତର ଅନେକ ଭାବ ଓ ସ୍ୱର ତାଙ୍କର 'ପୁଷ୍ପିତା' ନାଟିକାରେ ପ୍ରକାଶ ପାଇଛି।

ଲୋକଗୀତରେ ପଲ୍ଲୀ ଜୀବନର ଯେ ସରଳ, ତରଳ ଭାବ ପ୍ରକାଶ ପାଇଥାଏ, ମାନସିଂହ ମୁଗ୍ଧ ପ୍ରାଣରେ ତାହା ସ୍ୱୀକାର କରିଛନ୍ତି। ତାଙ୍କ ଭାଷାରେ 'ଇଂରାଜୀ ଶିକ୍ଷାର ପ୍ରସାର ପୂର୍ବେ ଏ ଦେଶର ପଲ୍ଲୀ କାବ୍ୟମୁଖର ଥିଲା। ଦିନର ନାନା ଘଟଣାରେ ପଲ୍ଲୀବାସୀର କର୍ମକୁ କବିତା ଓ ଗାନ ଉତ୍ସାହିତ ତଥା ରସବନ୍ତ କରୁଥିଲା। ଘରେ, ଅନ୍ତଃପୁରରେ ନାରୀମାନଙ୍କ ମୁଖରୁ ପ୍ରତ୍ୟେକ କଥାରେ ଢ଼ଗଢ଼ମାଳି ଓ ବଚନିକା ଫୁଟି ଉଠୁଥିଲା। କିଶୋରୀମାନଙ୍କ କ୍ରୀଡା କୌତୁକରେ, ବ୍ରତ ଉପବାସରେ ସଂଗୀତ ପ୍ରଧାନ ଅଙ୍ଗ ଥିଲା। କିଶୋରୀମାନେ ଗୋଧୂଳି ଦାଣ୍ଡକୁ କ୍ରୀଡା ଓ ସଂଗୀତରେ ମୁଖର ଓ ମଥିତ କରି ରଖୁଥିଲେ। ପୌଢ଼ାମାନେ କର୍ମାବସରରେ ବାଳବଚାଙ୍କୁ କୋଳରେ ଶୁଆଇ ସଂଗୀତ ମଧ୍ୟ ଦେଇ ଜାତିର ପ୍ରାଣକଥା ଶିଖାଇ ରଖୁଥିଲେ। ଏହିପରି ଚାରିଆଡେ କବିତାର ମଧୁର ପ୍ରଭାବରେ ପଲ୍ଲୀଜୀବନ ରସାଳ ହୋଇ ଉଠୁଥିଲା।" (ତତ୍ରୈବ, ୪ର୍ଥ ଖଣ୍ଡ, ପୃ. - ୪୦୮) ପୁନଶ୍ଚ ସେ ଓଡିଆ ଛନ୍ଦମାନଙ୍କର ବିବର୍ତ୍ତନ ମୂଳରେ ଏହି ଗ୍ରାମ୍ୟ କବିତା ଯେ ବିଦ୍ୟମାନ, ଉଦାହରଣ ମାଧ୍ୟମରେ ତାହା ସ୍ପଷ୍ଟ କରିଦେଇଛନ୍ତି।

**ରବୀନ୍ଦ୍ରନାଥଙ୍କ ସଂପର୍କରେ**

୧୯୩୦ରେ ମାନସିଂହ ଥିଲେ କଲେଜ ଛାତ୍ର। ରବୀନ୍ଦ୍ର ପ୍ରତିଭାକୁ ଓଡିଆ ପାଠକମାନଙ୍କର ନିକଟରେ ସର୍ବାଦୌ ପରିଚିତ କରାଇବା ଲକ୍ଷ୍ୟରେ ଆଲୋଚନାଟି ଲେଖିଥିଲେ ଓ ପରେ ସହକାରରେ, ୧୯୩୩ ଜାନୁଆରିରେ ଏହା ପ୍ରକାଶ ପାଇଥିଲା। ରବୀନ୍ଦ୍ରନାଥଙ୍କ ପ୍ରତିଭା, ତାଙ୍କ କବିତାର ମୂଲ୍ୟାୟନ ଓ ସେ କାହିଁକି ଦେଶ ଓ କାଳର

ଊର୍ଦ୍ଧ୍ୱରେ, ତତ୍‌ସଂପର୍କରେ ମାନସିଂହ ଚାରିଗୋଟି ଦୀର୍ଘ ଆଲୋଚନା ପ୍ରକାଶ କରିଛନ୍ତି। ଏଗୁଡ଼ିକରେ ତାଙ୍କ ତୁଳନାତ୍ମକ ଦୃଷ୍ଟିଭଙ୍ଗୀ ପ୍ରକାଶ ପାଇଛି।୧୯୪୩ରେ ସମ୍ବଲପୁରରେ ଆୟୋଜିତ ସଭାରେ ପୁରୋଧା ରୂପରେ ରବୀନ୍ଦ୍ରପୂଜା ପ୍ରସଙ୍ଗରେ, ସେ ରବୀନ୍ଦ୍ରଙ୍କୁ ନିଜର ଗୁରୁ ଭାବରେ ଭକ୍ତି ଜ୍ଞାପନ କରିଛନ୍ତି। ପୁଣି ରବୀନ୍ଦ୍ରଙ୍କୁ ଲୋକଗୁରୁ, କବିଗୁରୁ, ମହାକବି ଓ ମହାଶିକ୍ଷକ ଭାବରେ କବୀନ୍ଦ୍ର-ରବୀନ୍ଦ୍ର ବୋଲି ସମ୍ବୋଧନ କରିଛନ୍ତି।

ରବୀନ୍ଦ୍ର ସାହିତ୍ୟ, ବିଶେଷତଃ କବିଙ୍କ କବିତା ସଂପର୍କରେ ଆଲୋଚନା ପ୍ରସଙ୍ଗରେ, ତାଙ୍କ କବିତା କାହିଁକି ମହନୀୟ, ତତ୍ ପ୍ରସଙ୍ଗରେ ନମୁନା ସହିତ ଆଲୋଚନା କରିଛନ୍ତି। କବିଗୁରୁଙ୍କ କବିତା ସହିତ ବିଭିନ୍ନ ବୈଷ୍ଣବ କବି, ଓଡିଆ ସାହିତ୍ୟର ଗୋପାଳକୃଷ୍ଣ, ଭକ୍ତକବି ମଧୁସୂଦନ, ଏପରିକି କବିସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ କାବ୍ୟର କେତେକ ପଦକୁ ଆଣି ତୁଳନା କରିବା ସହିତ, ଭଲକବିତା କାହିଁକି ଲୋକପ୍ରିୟ ହୋଇଥାଏ, ସେପ୍ରସଙ୍ଗରେ ଆଲୋକପାତ କରିଛନ୍ତି। ପୁନଶ୍ଚ ସେ **ଶ୍ରୀମଦ୍‌ଭଗବତଗୀତାରୁ** ଆରମ୍ଭ କରି ବୈଷ୍ଣବ କବିତା ଓ ରବୀନ୍ଦ୍ରନାଥଙ୍କ ସଂପର୍କରେ ଲେଖିଛନ୍ତି। କବିତା ସମାଦର ଲାଭ କରିବାର ତୃତୀୟ କାରଣ ଭାବରେ ଲେଖିଛନ୍ତି ଯେ, ଏହା ଆମକୁ ମାୟାର ପୁଷ୍ପୋଦ୍ୟାନ ଭିତରକୁ ନେଇଯାଏ। ତୃତୀୟ ଓ ଶେଷ କାରଣ ଏହା ମନୁଷ୍ୟର ଚେତନାକୁ ଊର୍ଦ୍ଧ୍ୱ କରାଏ।

ରବୀନ୍ଦ୍ରନାଥଙ୍କ କବିତାରେ ଗୋଟିଏ ମଧୁର ଭାବ ଏଇ ଯେ - ଏଇ ସୁନ୍ଦର ବିଶ୍ୱକୁ ଏକ ସୌନ୍ଦର୍ଯ୍ୟ ଦେବତା ରୂପ-ରସରେ ଉଜ୍ଜୀବିତ କରି ରଖିଛନ୍ତି। ସେଇତ ଧରଣୀରେ ଫୁଲ, ଆକାଶରେ ତାରା ଫୁଟାଏ, ଷଡରତୁ ତାଙ୍କରି ଲୀଳା, ଜଗତରେ ଯାହା କିଛି ସୁନ୍ଦର, ତାହା ତାଙ୍କରି କାର୍ଯ୍ୟ। ପୁଣି ରବୀନ୍ଦ୍ରନାଥଙ୍କ କବିତାର ଏକ ପ୍ରଧାନ ଗୁଣ ସାର୍ବଜନୀନତା।

ମାନସିଂହ ରବୀନ୍ଦ୍ରଙ୍କ ସଂପର୍କରେ ଲେଖିଥିବା ପ୍ରମୁଖ-ଆଲୋଚନାର ଶୀର୍ଷକ: **ରବୀନ୍ଦ୍ରନାଥଙ୍କ କବିତା** (୧୯୩୩), ୨. **ରବୀନ୍ଦ୍ରପୂଜା** (୧୯୩୪), ୩. **ଦେଶ ଓ ରବୀନ୍ଦ୍ର** (୧୯୫୦) ଓ ୪. **ରବୀନ୍ଦ୍ରନାଥ** (୧୯୬୧)।

ମାନସିଂହ (ଶ୍ରୀମଦ୍‌ଭଗବତ୍‌ଗୀତାର ସଟୀକ ଆଲୋଚନା) 'ଗୀତାମହାତ୍ମ୍ୟ' **ମହାକବି କାଳିଦାସ ଓ ସେକ୍‌ସପିଅରଙ୍କ** ସଂପର୍କରେ ଇଂରାଜୀର ଗବେଷଣା ସଂଦର୍ଭ ରଚନା କରିଛନ୍ତି। ଓଡିଆ ସାହିତ୍ୟ ଓ ସଂସ୍କୃତି ସଂପର୍କରେ ଇଂରାଜୀରେ ଅନେକ ଆଲୋଚନା ଓ ପୁସ୍ତକର ମଧ୍ୟ ସେ ସ୍ରଷ୍ଟା।

ମାନସିଂହ ଇଂରାଜୀ ବା ଓଡ଼ିଆ-ଯେଉଁ ଭାଷାରେ ଲେଖନ୍ତୁ, ବିଚାର, ତର୍କ ଓ ଇତିହାସ ଅପେକ୍ଷା ସେ ଅଧିକତର ନିଜର ଉପଲବ୍ଧି ନିର୍ଭରଶୀଳ। ତେଣୁ ସର୍ଜନାତ୍ମକତା ତାଙ୍କ ସାହିତ୍ୟ ସମାଲୋଚନାର ପ୍ରଧାନଗୁଣ।

ମାୟାଧର ମାନସିଂହ କେବଳ କାବ୍ୟ ସ୍ରଷ୍ଟା ନୁହନ୍ତି, ଜୀବନ ଓ ଜଗତ ସଂପର୍କରେ ତାଙ୍କର ଜିଜ୍ଞାସାବୋଧ ପ୍ରବନ୍ଧ ଓ ସମାଲୋଚନାଗୁଡ଼ିକରେ ଉତ୍କୀର୍ଣ୍ଣ। ତାଙ୍କ କବିତା, ଗୀତିନାଟ୍ୟ ଭିତର ଦେଇ ଆରମ୍ଭ ପ୍ରଶ୍ନବାଚୀ, 'ଗୀତା ମହାତ୍ମ୍ୟ' ଆଦିରେ ଯେଭଳି ଉତ୍ତରର ସନ୍ଧାନ

କରିଛି, ସେପରି ଜୀବନର ଉତ୍ତରଣ ସଙ୍ଗେ ସଙ୍ଗେ ତାଙ୍କ ବିଚାରଧାରାରେ ମଧ୍ୟ ଉତ୍ତରଣ ଘଟିଛି। ଫଳତଃ ତାଙ୍କ ଆଲୋଚନାଗୁଡ଼ିକ ହୋଇଛି ବିତର୍କିତ ଓ ହୃଦୟସ୍ପର୍ଶୀ। ତଥ୍ୟ ଓ ଇତିହାସଦ୍ୱାରା ଅନୁଶୀଳିତ ନ ହେବାରୁ ଅନେକ ସମୟରେ ଏକଦେଶଦର୍ଶୀ ମଧ୍ୟ। ଏ ସବୁ ସତ୍ତ୍ୱେ, ଓଡ଼ିଆ ସର୍ଜନାତ୍ମକ ସମାଲୋଚନା କ୍ଷେତ୍ରରେ ମାନସିଂହଙ୍କ ସମାଲୋଚନାତ୍ମକ ପ୍ରବନ୍ଧଗୁଡିକ ଏବେ ମଧ୍ୟ ଅଲଙ୍ଘନୀୟ।

**ମାୟାଧର ମାନସିଂହଙ୍କ ସମୀକ୍ଷାଗ୍ରନ୍ଥ**

**କବି ଓ କବିତା** (୧୯୪୮), କଟକ: ଦାସ୍ ବ୍ରଦରସ୍।
**ଜୀବନ ପଥ** (୧୯୪୮), କଟକ: ଦାସ୍ ବ୍ରଦରସ୍।
**ଓଡ଼ିଆ ସମାଜ ଓ ସାହିତ୍ୟ** (୧୯୫୧),କଟକ: ଦାସ ବ୍ରଦର୍ସ।
**ଜୀବନୀ ଓ ପ୍ରବନ୍ଧ** (୧୯୫୨), କଟକ: ଦାସ୍ ବ୍ରଦରସ୍।
ଶିକ୍ଷା, ଶିକ୍ଷକ ଓ ଶିକ୍ଷାୟାତନ(୧୯୫୩), କଟକ: ଦାସ୍ ବ୍ରଦରସ୍।
**ମାଟିର ମହାକବି ସାରଳା ଦାସ** (୧୯୫୮), କଟକ: ଦାସ ବ୍ରଦର୍ସ।
**ଓଡ଼ିଆ ସାହିତ୍ୟର ଇତିହାସ** (୧୯୬୭), କଟକ: ଗ୍ରନ୍ଥମନ୍ଦିର।
**ଗୀତା ମହାତ୍ମ୍ୟ** (୧୯୬୯), କଟକ: ଜେ. ମହାପାତ୍ର ଏଣ୍ଡ କୋ।
**ସରସ୍ୱତୀ ଫକୀରମୋହନ** (୧୯୭୨), କଟକ: ଗ୍ରନ୍ଥମନ୍ଦିର।



୨୯ ଡିସେମ୍ବର, ୧୯୧୮ - ୧୨ ଅଗଷ୍ଟ, ୨୦୦୦

## ସାହିତ୍ୟ-ସମାଲୋଚକ ଡକ୍ଟର ନଟବର ସାମନ୍ତରାୟ

ଚିନ୍ତାମଣି ବେହେରା

## ପ୍ରାକ୍ କଥନ

ଶ୍ରୀ ଶ୍ୟାମସୁନ୍ଦର ରାଜଗୁରୁ, ପଣ୍ଡିତ ମୃତ୍ୟୁଞ୍ଜୟ ରଥ ଓ ପଣ୍ଡିତ ଗୋପୀନାଥ ନନ୍ଦଶର୍ମାଙ୍କ ପରି ଉଚ୍ଚକୋଟୀର ସାହିତ୍ୟ - ଗବେଷକ ଓ ସମାଲୋଚକ ବିଂଶ ଶତାବ୍ଦୀର ପ୍ରଥମ କୋଡିଏ ବର୍ଷ ମଧ୍ୟରେ ଓଡିଆ ସମାଲୋଚନା -ସାହିତ୍ୟର ଯେଉଁ ସୁଦୃଢ଼ ମୂଳପତ୍ତନ ନିର୍ମାଣ କରିଦେଇଥିଲେ, ତା'ର ତିରିଶ ବର୍ଷ ଭିତରେ ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ପରି ଗବେଷକ, ପଣ୍ଡିତ ନୀଳକଣ୍ଠ ଓ କବି ମାନସିଂହଙ୍କ ପରି ବହୁ ପ୍ରାବନ୍ଧିକ ଓଡିଆ ଗବେଷଣା - ସମାଲୋଚନାର ସେଇ ଭିତ୍ତିକୁ ବହୁବିଧ ରୂପରେ ଅଧିକ ପ୍ରାଣବନ୍ତ ତଥା ବ୍ୟାପକତର କରିଦେଇଥିବାର ସ୍ପଷ୍ଟ ଉପଲବ୍ଧ ହୁଏ। ୧୯୫୦ ସାଲ ପରେ, ଅର୍ଥାତ୍ ଗତ ତିରିଶି ବର୍ଷ ଧରି ଓଡିଆ ସମାଲୋଚନା ସାହିତ୍ୟ, ଗୋଟିଏ ଦୃଷ୍ଟିରୁ ବିଚାର କଲେ, ଓଡିଆ ଅଧ୍ୟାପକମାନଙ୍କ ବୌଦ୍ଧିକ ପରିପ୍ରକାଶର ଏକ ସ୍ୱତନ୍ତ୍ର ଇଲାକାରେ ପରିଣତ ହୋଇଥିବା ଅନୁମିତ। ଏପରି ଅନୁମାନର ଯଥାର୍ଥ କାରଣ ହେଉଛି ଯେ, ପଣ୍ଡିତ ନୀଳକଣ୍ଠଙ୍କ ପରି ରାଜନୀତିଜ୍ଞ, ସୁରେନ୍ଦ୍ର ମହାନ୍ତିଙ୍କ ପରି ବରେଣ୍ୟ କଥାଶିଳ୍ପୀ, ଏପରିକି ପଣ୍ଡିତ ସୂର୍ଯ୍ୟନାରାୟଣ ଦାସଙ୍କ ପରି ଗବେଷକ ଏ କ୍ଷେତ୍ରରେ ଦେଖାଦେଇଥିଲେ ହେଁ ଓଡିଆ ଅଧ୍ୟାପକମାନଙ୍କର ସମାଲୋଚନା-ସାହିତ୍ୟକୁ ସାମୁହିକ ଦାନ ପରିମାଣ, ପରିସର ଓ ଉତ୍କର୍ଷ ଦୃଷ୍ଟିରୁ ଏକାନ୍ତ ବନ୍ଦନୀୟ। ଉଚ୍ଚଶିକ୍ଷାର ବହୁଳ ପ୍ରସାର ଫଳରେ ଦେଶରେ ଅଧ୍ୟାପକ ଶ୍ରେଣୀର ହୁଏ ଆବିର୍ଭାବ। ଉଚ୍ଚ ବେତନଭୋଗୀ ଏଇ ଶ୍ରେଣୀଟି ଆର୍ଥିକ ଦୁଶ୍ଚିନ୍ତାରୁ ମୁକ୍ତହୋଇ ନିଜ କର୍ମର ପରିସର ଭିତରେ ଗୋଟିଏ ଗୋଟିଏ ଉନ୍ନତ ପୁସ୍ତକାଳୟର ଯେଉଁ ସୁଯୋଗ ଲାଭ କରିଥିଲା, ତାହା ପୁସ୍ତକ ଅଧ୍ୟୟନ ଓ ବୌଦ୍ଧିକ ଆଲୋଚନା ମାଧ୍ୟମରେ ସାହିତ୍ୟ-ସମାଲୋଚନା ରୂପରେ ଆତ୍ମପ୍ରକାଶ କରିଥିଲା। ୧୯୫୦ ସାଲ ପୂର୍ବ ଓଡିଆ -ସାହିତ୍ୟର ସମସ୍ତ ସ୍ରଷ୍ଟା ହେଉଛନ୍ତି ପ୍ରତ୍ୟେକ ଅନ୍ୟ ଜୀବିକାଳମ୍ବୀ। ନୈସର୍ଗିକ ପ୍ରତିଭା ଓ ସୃଷ୍ଟି ପ୍ରତି ଗଭୀର ଅନୁରାଗ ଥିବା ହେତୁ ସ୍ୱାଧୀନ ଅଧ୍ୟୟନ ଓ ଅଧ୍ୟବସାୟ ଫଳରେ ସେମାନେ ନିଜ ନିଜର ଭାବନାରାଶିକୁ ଯେଉଁ ରୂପ ପ୍ରଦାନ କରିଯାଇଛନ୍ତି, ଆମେ ସେସବୁକୁ ସାହିତ୍ୟରୂପେ ଗ୍ରହଣ କରିଆସିଛୁ। ଅପରପକ୍ଷରେ, ଉଚ୍ଚଶିକ୍ଷା ପ୍ରସାରର ଏକ ଐତିହାସିକ ଘଟଣା ଉପରେ ପ୍ରତିଷ୍ଠିତ ଓଡିଆ ଅଧ୍ୟାପକ ଶ୍ରେଣୀର ସମାଲୋଚନା-ସାହିତ୍ୟ ପୂର୍ବୋକ୍ତ ସାହିତ୍ୟବିକାଶର ସଂପୂର୍ଣ୍ଣ ବିପରୀତ। ପ୍ରାକ୍ ୧୯୫୦ ସାଲର ସାହିତ୍ୟ ପୂର୍ଣ୍ଣତଃ ବୃତ୍ତି -ନିରପେକ୍ଷ, କିନ୍ତୁ ଓଡିଆ ଅଧ୍ୟାପକମାନଙ୍କ ସମାଲୋଚନା ସାହିତ୍ୟ ସର୍ବାଂଶରେ ବୃତ୍ତି -ନିର୍ଭରଶୀଳ। ଲକ୍ଷ୍ୟ କରିବାର କଥା, ଅଧ୍ୟାପନା-ବୃତ୍ତିର ପରିଣତି ସ୍ୱରୂପ ଯେଉଁ ସାହିତ୍ୟ ବିକାଶଲାଭ କରେ, ସେଥିରେ ପ୍ରତିଭା - ଦ୍ୟୋତକ ସୃଷ୍ଟି ସହିତ, ପ୍ରବଞ୍ଚନାମୂଳକ ଅପସାହିତ୍ୟ ଆବିର୍ଭୂତ

ହେବା ଆଦୌ ବିଚିତ୍ର ନୁହେଁ। ଏଇ ପ୍ରତିଭା-ଦ୍ୟୋତକ ସାହିତ୍ୟ ହେଉଛି ଓଡିଆ ଅଧ୍ୟାପକ ଶ୍ରେଣୀର ଯଥାର୍ଥ ଦାନ ଓ ଏଇ ଶ୍ରେଣୀର ଜଣେ ସାର୍ଥକ ପ୍ରତିନିଧି ହେଉଛନ୍ତି ଡକ୍ଟର ନଟବର ସାମନ୍ତରାୟ। ସମାଲୋଚନା -ସାହିତ୍ୟର ଗତି-ପ୍ରକୃତି ଓ ବିକାଶର ନିୟନ୍ତ୍ରଣରେ ତାଙ୍କର ଶକ୍ତିଶାଳୀ ଭୂମିକା ଆଜି ସମସ୍ତଙ୍କଦ୍ୱାରା ସ୍ୱୀକୃତ ଓ ସମ୍ମାନିତ। ବୃତ୍ତି ନିର୍ଭରଶୀଳ ଏହାଙ୍କ ବିପୁଳ ସାହିତ୍ୟ-ସଂପଦ ଭିତରେ ପ୍ରତିଭା-ଦ୍ୟୋତକ ସାର୍ଥକ ଗବେଷଣା ଓ ସମାଲୋଚନା ଯେଉଁ ରୂପରେ ବିକାଶ ଲାଭକରି, ଓଡିଆ ସମାଲୋଚନା-ସାହିତ୍ୟକୁ ଅଧିକ ଋଦ୍ଧିମନ୍ତ ତଥା ଭବିଷ୍ୟତ୍ ଆଲୋଚକମାନଙ୍କପାଇଁ ଏକ ନିରାପଦ ଓ ନର୍ଭରଯୋଗ୍ୟ ପଦ୍ଧତି ନିର୍ମାଣ କରିଦେଇଛି, ସମାଲୋଚନାର ସେହି ପଦ୍ଧତି ପ୍ରତି ପ୍ରତ୍ୟେକ ପାଠକ ଓ ଆଲୋଚକଙ୍କ ଦୃଷ୍ଟି ଆକୃଷ୍ଟ ହେବା ଏକାନ୍ତ ବାଞ୍ଛନୀୟ।

**ସମାଲୋଚନାର ସମୟ ଓ ସ୍ୱରୂପ**

୧୯୪୯ ସାଲ ଅକ୍ଟୋବର ମାସରୁ ବାରିପଦା ଏମ୍.ପି.ସି. କଲେଜରେ ଡକ୍ଟର ସାମନ୍ତରାୟଙ୍କ ଅଧ୍ୟାପକ ଜୀବନର ଆରମ୍ଭ। ୧୯୭୩ ସାଲ ଡିସେମ୍ବରରେ ସେ ଅବସର ଗ୍ରହଣ କରନ୍ତି। ଅଧ୍ୟାପକ ଜୀବନର ଏଇ ୨୪ବର୍ଷ ମଧ୍ୟରେ ଯେଉଁସବୁ ପ୍ରବନ୍ଧ ଓ ପୁସ୍ତକ ସେ ପ୍ରକାଶ କରିଛନ୍ତି, ତା'ର ଏକ ସ୍ଥୁଳ ପରିଚୟ "Synopses of Books, List of Research Papers and Other Articles, Published by Dr. N. Samantaray" ନାମକ ଏକ କ୍ଷୁଦ୍ର ପୁସ୍ତିକାରେ ମୁଦ୍ରିତ ହୋଇଅଛି। ଅବସର ଗ୍ରହଣର ଛଅ ବର୍ଷ ମଧ୍ୟରେ ସେ ଆଉ କେତେକ ପୁସ୍ତକ ଓ ପ୍ରବନ୍ଧ ମଧ୍ୟ ପ୍ରକାଶ କରିଅଛନ୍ତି। ତାଙ୍କର ଏ ସମସ୍ତ ଲେଖାକୁ ଚାରୋଟି ବିଭିନ୍ନ ପର୍ଯ୍ୟାୟରେ ସଜାଇ ରଖା ଯାଇପାରେ।

ପୁସ୍ତକଗୁଡିକ ଦୁଇଶ୍ରେଣୀର। ଯଥା - (କ) ପୂର୍ବ ପ୍ରକାଶିତ ପ୍ରବନ୍ଧଗୁଡିକ ଏକତ୍ର ପୁସ୍ତକାକାରରେ ସଂଗୃହୀତ, ଏଇ ପୁସ୍ତକଗୁଡିକର ସଂଖ୍ୟା ୧୨ , (ଖ) ସଂପୂର୍ଣ୍ଣ ନୂତନ ଭାବେ ଲିଖିତ, ଯାହା ପୂର୍ବରୁ ପ୍ରକାଶ ପାଇ ନଥିଲା, ଏହାର ସଂଖ୍ୟା ୮।

ରଚନାଗୁଡ଼ିକୁ ଅନୁଧ୍ୟାନ କଲେ ସେଥିରେ ଆମେ ଦୁଇଟି ବିଷୟ ସ୍ପଷ୍ଟ ଲକ୍ଷ୍ୟ କରିପାରିବୁ। ଯଥା - (କ) ପ୍ରଥମ ପର୍ଯ୍ୟାୟରେ ଥିବା ଦୁଇଟି ବିଭାଗ-ଅନ୍ତର୍ଭୁକ୍ତ ପ୍ରବନ୍ଧ ସଂଖ୍ୟାର ଅସମାନତା, ଅର୍ଥାତ୍ ପ୍ରଥମ ଚାରିବର୍ଷ ଭିତରେ ପ୍ରାଚୀନ ସାହିତ୍ୟ ଉପରେ ୨୭ଟି ପ୍ରବନ୍ଧ ଲେଖା ହେଲାବେଳେ, ଆଧୁନିକ-ସାହିତ୍ୟ ଉପରେ କେବଳ ୪ଟି ପ୍ରବନ୍ଧ ପ୍ରସ୍ତୁତ କରାଯାଇଅଛି। ପର ୬ବର୍ଷ ମଧ୍ୟରେ ଏହାର ଠିକ୍ ବିପରୀତ ଚିତ୍ର ଦେଖିବାକୁ ମିଳେ। ପ୍ରାଚୀନ ସାହିତ୍ୟ ଉପରେ କେବଳ ୨ଟି, ଆଧୁନିକ ସାହିତ୍ୟ ଉପରେ ୩୯ଟି ପ୍ରବନ୍ଧ। ଏଥିରୁ ଏହାହିଁ ପ୍ରମାଣିତ ହୁଏ ଯେ, ଡକ୍ଟର ସାମନ୍ତରାୟ ୧୯୫୪ସାଲ୍ ଆରମ୍ଭରୁ ପ୍ରାଚୀନ ସାହିତ୍ୟ ସଂପୂର୍ଣ୍ଣ ପରିହାର କରି ଆଧୁନିକ ସାହିତ୍ୟ ପ୍ରତି ଏକାନ୍ତ ଅନୁରକ୍ତ ହୋଇପଡିଛନ୍ତି। (ଖ) ତୃତୀୟ ପର୍ଯ୍ୟାୟର ପ୍ରବନ୍ଧ ଅନୁଧ୍ୟାନ କଲେ ଆମେ ଜାଣିପାରିବୁ ଯେ, ଏଇ ଚାରିବର୍ଷ ଭିତରେ ସେ ଆଧୁନିକ ସାହିତ୍ୟ ଉପରେ ଅଧିକ ଆଲୋଚନା କରିଥିଲେ ହେଁ, ପ୍ରାଚୀନ ସାହିତ୍ୟ ପ୍ରତି ପୁନର୍ବାର ଦୃଷ୍ଟି ଫେରାଇ ଆଣିବାକୁ ଚେଷ୍ଟା କରିଅଛନ୍ତି। ଏହାର ଫଳସ୍ୱରୂପ, ଚତୁର୍ଥ ପର୍ଯ୍ୟାୟରେ ଆମେ ଆଧୁନିକ ଅପେକ୍ଷା ପ୍ରାଚୀନ ସାହିତ୍ୟ ଉପରେ ଅଧିକ ସଂଖ୍ୟକ ପ୍ରବନ୍ଧ ଦେଖିବାକୁ ପାଉଅଛୁ। ୧୯୫୪ ସାଲ ଆରମ୍ଭରୁ ପ୍ରାଚୀନ ସାହିତ୍ୟ ପରିତ୍ୟାଗ କରି

ଆଧୁନିକ ସାହିତ୍ୟ ଉପରେ ଅଧିକ ପ୍ରାଧାନ୍ୟ ଦେବା କିମ୍ବା ୧୯୬୦ - ୬୯ ସାଲ, ଅର୍ଥାତ୍ ଏହି ଦଶବର୍ଷ ମଧ୍ୟରେ କେବଳ ଚାରିଟି ପ୍ରବନ୍ଧ ଲେଖିବା କିମ୍ବା ଶେଷ ଦୁଇ ପର୍ଯ୍ୟାୟରେ ପ୍ରାଚୀନ ସାହିତ୍ୟ ପ୍ରତି କ୍ରମଶଃ ଆକୃଷ୍ଟ ହେବା- ସାମନ୍ତରାୟଙ୍କ ଲେଖାରେ ଏପରି ଗତି ପରିବର୍ତ୍ତନ କ'ଣ ଏକାନ୍ତ ଆକସ୍ମିକ ଓ ଅପ୍ରତ୍ୟାଶିତ ? ଆମର ବିଶ୍ୱାସ, ସାମନ୍ତରାୟଙ୍କ ପ୍ରତ୍ୟେକ ଲେଖା କୌଣସି ଏକ ନିର୍ଦ୍ଦିଷ୍ଟ ଆଦର୍ଶ ଓ ଆଭିମୁଖ୍ୟଦ୍ୱାରା ଅନୁପ୍ରାଣିତ। ସେଥିରୁ କୌଣସିଟି କେବେ ଆକସ୍ମିକ ଓ ଅପ୍ରତ୍ୟାଶିତ ନୁହେଁ। ପତନ - ଅଭ୍ୟୁଦୟ ବନ୍ଧୁର ପନ୍ଥାର ଯାତ୍ରୀ ଏଇ ଅଧ୍ୟାପକଙ୍କ ଜୀବନଧାରା ସହିତ ତାଙ୍କ ରଚନାଗୁଡିକ ଘନିଷ୍ଠ ଭାବେ ସଂପୃକ୍ତ। ଭିନ୍ନଭିନ୍ନ ସମୟରେ ଲିଖିତ ତାହାଙ୍କ ଆଲୋଚନାରେ ଆମେ ଯେଉଁ ଭିନ୍ନ ସ୍ୱର ଶୁଣିବାକୁ ପାଇଥାଉଁ, ତାହା ଏକ ବିତର୍କିତ ଜୀବନ ହେତୁ ସମ୍ଭବପର ହୋଇଥିଲା ବୋଲି ମନେହୁଏ। ପୂର୍ବୋକ୍ତ ଚାର୍ଟରେ ଥିବା ପ୍ରବନ୍ଧ ସଂଖ୍ୟାର ବୈଷମ୍ୟ ତଥା ତାହାଙ୍କ ଲେଖାର ଅନ୍ତର୍ନିହିତ ସ୍ୱରର ପରିବର୍ତ୍ତନ ଅଧ୍ୟାପକ ଜୀବନର ପରିଣତିରୂପେ କିପରି ଦେଖାଦେଇଛି, ତାହା ବର୍ତ୍ତମାନ ଉପସ୍ଥାପନ କରାଯାଉଅଛି।

**ସମାଲୋଚନା-ସାହିତ୍ୟ ଓ ଅଧ୍ୟାପକ ଜୀବନ : ଏକ ଓ ଅଭିନ୍ନ**

୧୯୪୨ ସାଲରୁ ୧୯୪୯ ସାଲ ପର୍ଯ୍ୟନ୍ତ ଦୀର୍ଘ ସାତବର୍ଷ ବିଭିନ୍ନ ସ୍କୁଲରେ ଶିକ୍ଷକତା କରିବା ପରେ ୧୯୪୯ ସାଲ ଅକ୍ଟୋବର ମାସରୁ ସାମନ୍ତରାୟ ଅଧ୍ୟାପକ ଜୀବନ ଓ ଲେଖକ ଜୀବନ ଏକ ସଙ୍ଗେ ଆରମ୍ଭ କରନ୍ତି। ୧୯୪୮ ସାଲରେ ଓଡିଆରେ ଏମ୍.ଏ୍. ପାସ୍ କଲା ପରେ ଓ ଅଧ୍ୟାପକ ହେବା ପୂର୍ବରୁ ସେ ଯେଉଁ ଏକବର୍ଷ ସମୟ ପାଇଥିଲେ, ସେଇ ସ୍ୱଳ୍ପ ସମୟ ମଧ୍ୟରେ ସେ ନିଜକୁ ସାହିତ୍ୟିକ ରୂପେ ପ୍ରସ୍ତୁତ କରିବାରେ ଲାଗିପଡିଥିଲେ। ଏପରି କିଛି ପୂର୍ବ ପ୍ରସ୍ତୁତି ନ ଥିଲେ, ଜଣେ ଗଣିତ ଶିକ୍ଷକ, ଓଡିଆ ଅଧ୍ୟାପକ ହେବା ସଙ୍ଗେସଙ୍ଗେ ଅତି ଆକସ୍ମିକ ଭାବେ 'ଝଙ୍କାର' ପରି ଉଚ୍ଚକୋଟୀର ଏକ ପତ୍ରିକାରେ ନିଜ ଲେଖା ପ୍ରକାଶ କରିପାରିବା ସମ୍ଭବ ନୁହେଁ। ସାତବର୍ଷ କାଳ ଗଣିତ ଅଧ୍ୟୟନ ଓ ଅଧ୍ୟାପନାରେ ଯେଉଁ ଚିତ୍ତବୃତ୍ତି ଗଢ଼ିଉଠିଥିଲା, ତାହା ଯେ ସାହିତ୍ୟର ଅଧ୍ୟୟନ, ଅଧ୍ୟାପନା, ବିଶେଷତଃ ସାହିତ୍ୟ-ସମାଲୋଚନା ପାଇଁ ଆଦୌ ଅନୁକୂଳ ନୁହେଁ, ସେଥିପ୍ରତି ସେ ଯଥେଷ୍ଟ ସଚେତନ ଥିଲେ। ସେଥିପାଇଁ ସେ ପ୍ରଥମେ ପ୍ରାଚୀନ ଓଡିଆ କାବ୍ୟସାହିତ୍ୟ ହାତକୁ ନେଇ, ତାହା ଉପରେ ଅଧ୍ୟୟନ ଓ ଆଲୋଚନା ଆରମ୍ଭ କରିଦେଲେ। ପ୍ରାଚୀନ କାବ୍ୟସାହିତ୍ୟ, ସଂସ୍କୃତକାବ୍ୟ ଓ ଅଳଙ୍କାରଶାସ୍ତ୍ର ଅନୁଶୀଳନ କରିବାକୁ ବାଧ୍ୟ ହୋଇଥିଲେ। ସେଇ ହେତୁରୁ ୧୯୫୪ ସାଲ ପୂର୍ବରୁ ପ୍ରକାଶିତ ୩୧ଟି ପ୍ରବନ୍ଧ ମଧ୍ୟରୁ କେବଳ ୪ଟି ପ୍ରବନ୍ଧ ଆଧୁନିକ-ଓଡିଆ ସାହିତ୍ୟ ଉପରେ ଥିବାବେଳେ, ଅବଶିଷ୍ଟ ୨୭ଟି ପ୍ରବନ୍ଧ ପ୍ରାଚୀନ କାବ୍ୟ-ସାହିତ୍ୟ, ବୈଷ୍ଣବ-ସାହିତ୍ୟ, ଅଳଙ୍କାରଶାସ୍ତ୍ର, ଓଡ଼ିଆ ପଲ୍ଲୀ-ସାହିତ୍ୟ ଓ କେତେକ ଭିନ୍ନ ବିଷୟ ଉପରେ ପ୍ରସ୍ତୁତ କରାଯାଇଥିବାର ଦେଖିବାକୁ ମିଳେ।

ଓଡିଆ ସମାଲୋଚନା କ୍ଷେତ୍ରରେ ଆକସ୍ମିକ ଭାବେ ଆବିର୍ଭୂତ ଏଇ ଅଧ୍ୟାପକଙ୍କର ଗାଣିତିକ ବିଚାରବୁଦ୍ଧି ଓ ମାର୍ଜିତ ଚିତ୍ତବୃତ୍ତି ପ୍ରାଚୀନ ସାହିତ୍ୟ ବିଶ୍ଳେଷଣବେଳେ କିପରି ସେତେବେଳେ ସତତ ବିପ୍ଳବୀ ହୋଇଉଠିଥିଲା, ତାହା ଏଇ ପର୍ଯ୍ୟାୟରେ ଲିଖିତ ସର୍ବଶେଷ

ପ୍ରବନ୍ଧ 'ଯୌନରସ ନା ଶୃଙ୍ଗାର ରସ' (ଜାନୁୟାରୀ ୧୯୫୪)ର ଅନ୍ତଃସ୍ୱର ଭିତରେ ରୂପାୟିତ ହୋଇଅଛି। ଏହାର ପରବର୍ତ୍ତୀ ପ୍ରବନ୍ଧ **୧୯୯୭ ସାଲ** ଅକ୍ଟୋବର, ଏପ୍ରିଲ୍ ଜୁନ୍, ୧୯୫୪ର ସଂଗୃହୀତ ଉପାଦାନ ଓ ସେଥିରେ ଥିବା ସମାଲୋଚକଙ୍କ ପରିକଳ୍ପନା, ବିଷୟ ପରିବେଷଣ - କୌଶଳ ଏବଂ ବିଚାରଧାରା ତତ୍‌ପୂର୍ବ ଲିଖିତ ପ୍ରବନ୍ଧଗୁଡ଼ିକଠାରୁ ବହୁଳାଂଶରେ ଭିନ୍ନ। ଆଲୋଚକଙ୍କ ବିଚାର-ସଂପନ୍ନ ମାନସିକ ଆଭିମୁଖ୍ୟର ପରିଚୟ ଦେଖନ୍ତୁ- 'ଆମର ତୃତୀୟ ସମସ୍ୟା ଥିଲା, ପ୍ରେମମୂଳକ କବିତାର ପ୍ରକୃତ ସ୍ୱରୂପ କ'ଣ ? ଏହାକୁ ପ୍ରମାଣ କରିବା ପାଇଁ ଏଠାରେ ଧ୍ୱନିର ଯେଉଁ ଦୀର୍ଘ ଆଲୋଚନା କରାଗଲା, ତାହା ଅପ୍ରାସାଙ୍ଗିକ ବୋଲି ଯେପରି କେହି ନ ଭାବନ୍ତି। ଆଲୋଚିତ ପାଞ୍ଚଟି ଉଦାହରଣରେ ପ୍ରେମର ପରିପ୍ରକାଶ ସେଇଠି ଚମତ୍କାର ହୋଇଛି, ଯେଉଁଠି ଧ୍ୱନି ଅଛି, ଅର୍ଥାତ୍ ପ୍ରେମର ପ୍ରକୃତ ବିକାଶ ଧ୍ୱନିମୂଳକ ରଚନାରେ କେବଳ ସମ୍ଭବପର ହୋଇପାରେ। ସେଇ ହେତୁରୁ କେବଳ ପ୍ରେମକଥା ବର୍ଣ୍ଣନା କରିଦେଲେ ଯେ ତାହା ଉଚ୍ଚଦରର କବିତା ହୋଇଯିବ, ତା'ର କିଛି ଅର୍ଥ ନାହିଁ। ପ୍ରେମର ବର୍ଣ୍ଣନା ସେଇଠି ସାର୍ଥକ ହେବ, ଯେଉଁଠି ତାହା ପାଠକ ନିକଟରେ ଏକ ସ୍ୱତନ୍ତ୍ର ରୂପରେ ଆତ୍ମପ୍ରକାଶ କରିବ। ପ୍ରତ୍ୟେକ କାବ୍ୟକବିତାର ଏଇ ବିଶିଷ୍ଟ ରୂପ-ସଂପଦ ହିଁ ତାର ସମସ୍ତ ଗୌରବ। ଧ୍ୱନିବାଦ ଅଧ୍ୟୟନ କଲାବେଳେ, ଏଥିରେ କବିତାର ଏଇ ରୂପ -ପ୍ରକାଶ ପ୍ରତି ସର୍ବତ୍ର ପ୍ରାଧାନ୍ୟ ଦିଆଯାଇଥିବାର ଦେଖିବାକୁ ମିଳେ।" (ଯୌନରସ ନା ଶଙ୍ଗାରରସ) ଓଡ଼ିଆ କାବ୍ୟ-ସାହିତ୍ୟରେ ଅନ୍ତର୍ଭୁକ୍ତ ନାରୀ - ଅବୟବର ବିଶଦ ବର୍ଣ୍ଣନା ତଥା ନଗ୍ନପ୍ରେମର ଅତ୍ୟଧିକ ବିଶ୍ଳେଷଣ ଯେତେବେଳେ ଏ ଦେଶର ସମାଲୋଚକମାନଙ୍କଦ୍ୱାରା ଯଥାର୍ଥ ଶୃଙ୍ଗାର ରସ ନାମରେ ସମ୍ମାନିତ ହେଉଥିଲା, ସେତେବେଳେ ଅଳଙ୍କାରଶାସ୍ତ୍ରସମ୍ମତ ଅଧ୍ୟାପକ ସାମନ୍ତରାୟଙ୍କ ପୂର୍ବଲିଖିତ ଅଭିମତ ଥିଲା ଗତାନୁଗତିକ ଆଲୋଚନାର ଏକ ନୀରବ ପ୍ରତିବାଦ ମାତ୍ର। କିନ୍ତୁ ଦେଖିବାର କଥା, ଏଥିରେ ସମାଲୋଚକଙ୍କ ଆଧୁନିକ ମନଟି ସ୍ୱତଃ ଫୁଟିଉଠିଥିଲେ ହେଁ ତାହା ପ୍ରାଚୀନ ପରମ୍ପରାଠାରୁ ସଂପୂର୍ଣ୍ଣ ବିଚ୍ଛିନ୍ନ ନଥିଲା। କାରଣ ତାହାଙ୍କ ସମସ୍ତ ବିଚାର-ବିଶ୍ଳେଷଣ କେବଳ ଧ୍ୱନିବାଦର ପରିସର ଭିତରେ ସୀମିତ ଥିଲା। ଏପରି ଏକ ବିଦ୍ରୋହାତ୍ମକ ଚିତ୍ତବୃତ୍ତି ପ୍ରାଚୀନ ସାହିତ୍ୟ-ବିଶ୍ଳେଷଣଠାରେ ଯେ ଦୀର୍ଘକାଳ ଧରି ଆବଦ୍ଧ ହୋଇ ରହିପାରିବ ନାହିଁ, ଏହାଙ୍କ ଲେଖାର ଅନ୍ତର୍ନିହିତ ସ୍ୱରରେ ତାହା ସ୍ପଷ୍ଟ ସୂଚିତ ହୋଇଥାଏ।

'୧୮୯୭ ସାଲ ଅକ୍ଟୋବର' ପ୍ରବନ୍ଧର ନାମକରଣ ଏକ ବିଚିତ୍ର କଳ୍ପନାର ପ୍ରତୀକ। କାରଣ ସାମୟିକ ଅନ୍ୟ କୌଣସି ସମାଲୋଚକ, ଏପରିକି ଅଧ୍ୟାପକ ସାମନ୍ତରାୟଙ୍କ ଅନ୍ୟ କେଉଁ ପ୍ରବନ୍ଧର ନାମ ଏପରି ସାଲ ଓ ମାସର ନାମ ବହନ କରିଥିବାର ଦେଖିବାକୁ ମିଳେନାହିଁ। ଦେଖିବାର କଥା, ପ୍ରବନ୍ଧର ଅନ୍ତଃସ୍ୱର ଭିତରେ ଗୋଟିଏ ନିର୍ଦ୍ଦିଷ୍ଟ ସମୟର ଭୂମିକାକୁ ପ୍ରାଧାନ୍ୟ ଦେବା ଓ ଏପରି ନାମକରଣ ହେଉଛି ପ୍ରକୃତ ଉଦ୍ଦେଶ୍ୟ। ଊନବିଂଶ ଶତାବ୍ଦୀର ଶେଷ ଦଶବର୍ଷ ଓ ବିଂଶ ଶତାବ୍ଦୀର ପ୍ରଥମ କୋଡ଼ିଏବର୍ଷ - ଏଇ ସମୟସୀମା ଭିତରେ ବିକାଶ ଲାଭ କରିଥିବା ଓଡ଼ିଆ ସାହିତ୍ୟର ପ୍ରାଣସ୍ପନ୍ଦନକୁ ନିରୀକ୍ଷଣ କଲେ '୧୮୯୭ ସାଲ ଅକ୍ଟୋବର' (ଛ'ମାଣ ଆଠଗୁଣ୍ଠର ପ୍ରଥମ ପରିଚ୍ଛେଦର ପ୍ରକାଶ କାଳ)

ମାସରୁ ଆରମ୍ଭ ହୋଇଥିବା ଏକ ନୂତନ ସାହିତ୍ୟ ସ୍ୱରକୁ ବିଶ୍ଳେଷଣରେ ଦେଖାଇଦେବା ଥିଲା ଏଇ ପ୍ରବନ୍ଧର ମୌଳିକ ଲକ୍ଷ୍ୟ। ଏହି ଲକ୍ଷ୍ୟ କିପରି ଅତି କୃତିତ୍ୱର ସହ ସାଧିତ ହୋଇଛି, ତାହା ଏଥିରେ ବିନିଯୁକ୍ତ ବିଭିନ୍ନ ଉପାଦାନରୁ ସ୍ପଷ୍ଟ ପ୍ରମାଣିତ ହୋଇଥାଏ। କାଳଗତ ଉପାଦାନ ଉପରେ ପ୍ରତିଷ୍ଠିତ ପ୍ରାବନ୍ଧିକଙ୍କ ଏପରି ବିଷୟ-ବିଶ୍ଳେଷଣ ଓ ଐତିହାସିକ ଦୃଷ୍ଟିକୋଣ ପୂର୍ବ ଆଲୋଚନାରେ ପ୍ରାୟ କେଉଁଠାରେ ଦେଖିବାକୁ ମିଳେନାହିଁ।

୧୯୫୬ ସାଲ ଅଗଷ୍ଟ ମାସରୁ ୧୯୫୯ ସାଲ ସେପ୍ଟେମ୍ବର ମାସ ପର୍ଯ୍ୟନ୍ତ ତିନିବର୍ଷ ଅଧ୍ୟାପକ ସାମନ୍ତରାୟ କଟକ ରେଭେନସା କଲେଜରେ ରହନ୍ତି। ଏହି ସମୟ ଭିତରେ ସେ ଆଧୁନିକ ସାହିତ୍ୟ ଉପରେ ୨୪ଟି ପ୍ରବନ୍ଧ ପ୍ରସ୍ତୁତ କରିଥିଲେ ହେଁ, ପ୍ରାଚୀନ ସାହିତ୍ୟ ଉପରେ ଭୁଲ୍‌ବଶତଃ ମଧ୍ୟ ଦୃଷ୍ଟିନିକ୍ଷେପ କରିନାହାନ୍ତି। ଏପରିକି ବାରିପଦାର ଶେଷ ତିନିବର୍ଷରେ ସେ ଯେଉଁ ୧୭ଟି ପ୍ରବନ୍ଧ ଲେଖିଛନ୍ତି, ସେଥିରୁ ପ୍ରାଚୀନ ସାହିତ୍ୟ ବିଷୟକ ପ୍ରବନ୍ଧର ସଂଖ୍ୟା ମାତ୍ର ଦୁଇ। କଟକରେ ଲିଖିତ ୨୪ଟି ପ୍ରବନ୍ଧ ମଧ୍ୟରୁ ଶେଷ ତିନିଟି ପ୍ରବନ୍ଧ ହେଉଛି, (କ) ଓଡିଶାରେ ପ୍ରେସ ଓ ପତ୍ରିକା ( ସେପ୍ଟେମ୍ବର ୧୯୫୯), (କ) ଆଧୁନିକ ଓଡିଆ ସାହିତ୍ୟ ଓ ବାଲେଶ୍ୱର (ଅକ୍ଟୋବର ୧୯୫୯) ଓ (ଗ) ଉପଧା - ଇତିହାସ (ନଭେମ୍ବର - ଡିସେମ୍ବର, ୧୯୫୯)। ଏହି ପ୍ରବନ୍ଧଗୁଡିକୁ ଅନୁଧ୍ୟାନ କଲେ ଆମେ ଜାଣିପାରିବୁ ଯେ, ଏଥିରୁ ପ୍ରଥମ ଦୁଇଟି ପ୍ରବନ୍ଧ ବହୁ ସରକାରୀ ରିପୋର୍ଟ ଓ ରେକର୍ଡ ତଥା ବିଭିନ୍ନ ପତ୍ରପତ୍ରିକାର ଉପାଦାନ ଉପରେ ତିଆରି ହେଲାବେଳେ, ଶେଷ ପ୍ରବନ୍ଧଟି ୧୮୭୧ - ୧୯୦୦ ସାଲର ସାହିତ୍ୟିକ ଓ ସଂସ୍କୃତିକ ପ୍ରାଣସ୍ପନ୍ଦନର ଦ୍ୟୋତକ ରୂପେ ପରିକଳ୍ପିତ। ଆଧୁନିକ ଓଡିଆ ସାହିତ୍ୟର ଇତିହାସ (ଡକ୍ଟରେଟ୍ ନିବନ୍ଧ) ରଚନା ପାଇଁ ଦୀର୍ଘ ଦଶବର୍ଷ କାଳ କିପରି ସାଧନା ଓ ଅଧ୍ୟବସାୟ କରିଥିଲେ, ତା'ର କେତେକ ପରିଚୟ ଏଇଥିରୁ ଉପଲବ୍‌ଧ ହୋଇଥାଏ। ସୃଷ୍ଟି-ଲକ୍ଷ୍ୟ-ସାଧନାପାଇଁ ଯେତେବେଳେ ଗୋଟିଏ ଅନୁକୂଳ ପରିସ୍ଥିତି ଗଢ଼ି ଉଠିଅଛି, ସେତେବେଳେ ଅତି ଅପ୍ରତ୍ୟାଶିତ ଭାବେ ସେ ଭୁବନେଶ୍ୱରକୁ ସ୍ଥାନାନ୍ତରିତ ହୁଅନ୍ତି। ଯେଉଁ ଲକ୍ଷ୍ୟସାଧନ ପାଇଁ ତାଙ୍କର ପ୍ରିୟ ଆଦ୍ୟସାଧନା କ୍ଷେତ୍ର ବାରିପଦାର ସମସ୍ତ ଆକର୍ଷଣକୁ ସେ ସ୍ୱେଚ୍ଛାକୃତ ଭାବେ ପରିତ୍ୟାଗ କରି ଦେଇଥିଲେ, ଏପରି ବଦଳି ଚାକିରୀ ଜୀବନରେ ଏକାନ୍ତ ସ୍ୱାଭାବିକ ହେଲେ ହେଁ ତାହା ତାଙ୍କ ଲକ୍ଷ୍ୟ ପଥରେ ପ୍ରତିବନ୍ଧକ ସୃଷ୍ଟି କରିବାର ଆଶଙ୍କା କରି ସେ ଏହାକୁ ସୁସ୍ଥଚିତ୍ତରେ ଗ୍ରହଣ କରିପାରିନଥିଲେ। ଦୀର୍ଘ ଦଶବର୍ଷର ତପସ୍ୟା ଅସଂପୂର୍ଣ୍ଣ, - ଭବିଷ୍ୟତ ଅନିଶ୍ଚିତ ଓ ଅନ୍ଧକାରମୟ। ଏଇ ସମୟରେ ତାଙ୍କ ମାନସିକ ଅବସ୍ଥାର ପରିଚୟ, ବଦଳି ପରେ ଲିଖିତ ଦୁଇଟି ପୁସ୍ତକରେ ଆମେ ଦେଖିବାକୁ ପାଉ। 'ଗଙ୍ଗାଧର-ସାହିତ୍ୟ-ସମୀକ୍ଷା' (୧୯୬୦)ରେ ଅଛି, "ଯେଉଁ ସମାଜ ଗଙ୍ଗାଧରଙ୍କୁ ବଞ୍ଚି ରହିବାର ସର୍ବନିମ୍ନ ଅଧିକାରକୁ ବଞ୍ଚିତ କରି ରଖିଥିଲା, ଗଙ୍ଗାଧର ସେଇ ସମାଜ ମୁଖକୁ ଟେକି ଦେଇଛନ୍ତି ଅମିୟ କାବ୍ୟରସ, ଯାହା ଗଙ୍ଗାଧର ପରି ସ୍ୱଚ୍ଛ, ଗଙ୍ଗାଜଳ ପରି ପବିତ୍ର। ସମାଜର ଦାନକୁ ଗଙ୍ଗାଧରଙ୍କ ଏ ପ୍ରତିବାଦ କି ବିଚିତ୍ର, କି ମହୀୟାନ୍ !!! ରାଧାନାଥଙ୍କୁ କେନ୍ଦ୍ରକରି ଦିଆଯାଇଥିବା ଅଭିମତଟି ଏହାଠାରୁ ଅଧିକ ତୀବ୍ର ଓ ଶାଣିତ। 'ରାଧାନାଥ ଓ ଚିଲିକା କାବ୍ୟ" (୧୯୬୦)ରେ ଅଛି, 'ନିରନ୍ତର' ସାହିତ୍ୟ -ସାଧନା

ଭିତରେ ଯେ ନିଜର ଶରୀରକୁ ତିଳ ତିଳ କ୍ଷୟ କରେ, ଜୀବନର ପ୍ରତି ମୁହୂର୍ତ୍ତକୁ ସାହିତ୍ୟ - ସୃଷ୍ଟି ତଥା ଦେଶସେବାରେ ଯେଉଁ ଲୋକ ନିୟୋଗ କରେ, ଓଡିଶା ପରି ଦେଶରେ ତାକୁ ମିଳେ କେବଳ ଅପମାନ, ହତାଦର ଓ ବିଦ୍ରୂପ। ଜନତାର ଏ ଅବିଚାର ହେଉଛି ରାଧାନାଥଙ୍କ ପ୍ରତିଭା ପ୍ରତି ଘୋର ଅବମାନନା।"

ଏପରି ଆତ୍ମକଥନ ଭିତରେ ତାହାଙ୍କ ଚିତ୍ତବିକ୍ଷୋଭ ଅତିଶୟ କଷ୍ଟ ହେଲେ ହେଁ, ତାହା ଅଧିକ କାଳ ସ୍ଥାୟୀ ହୋଇଥିଲା ବୋଲି ମନେ ହୁଏନାହିଁ। ଅତି ଅଳ୍ପକାଳ ପରେ, ଅତୀତର ସମସ୍ତ ଦୁଃଖ ଭୁଲିଯାଇ ନିଜ ଲକ୍ଷ୍ୟପଥରେ ସେ ଅଗ୍ରସର ହୋଇଥିଲେ। ଏଇଠୁଁ ଆରମ୍ଭ ହୋଇଛି ତାଙ୍କ ସାହିତ୍ୟିକ ଜୀବନର ଦ୍ୱିତୀୟ ପର୍ଯ୍ୟାୟ। କିନ୍ତୁ ଏଇ ପର୍ଯ୍ୟାୟରେ ଦୀର୍ଘ ଦଶବର୍ଷ ମଧ୍ୟରେ ସେ ୪ଟି ମାତ୍ର ପ୍ରବନ୍ଧ ପ୍ରକାଶ କରିଅଛନ୍ତି। ଏଥିରୁ ଅତ୍ୟନ୍ତ ସ୍ପଷ୍ଟ ଯେ, ସେ ନିଜର ସମସ୍ତ ଶକ୍ତିକୁ ପ୍ରବନ୍ଧ ଅପେକ୍ଷା ସ୍ୱତନ୍ତ୍ର ପୁସ୍ତକ ରଚନା ଓ ପୂର୍ବ ପ୍ରକାଶିତ ପ୍ରବନ୍ଧଗୁଡ଼ିକୁ ପୁସ୍ତକ ଆକାରରେ ପ୍ରକାଶ କରିବାରେ ବିନିଯୋଗ କରିଥିଲେ। ଫଳରେ ପାଞ୍ଚଟି ପୁସ୍ତକରେ କେତେକ ପ୍ରବନ୍ଧ ସଂଗୃହୀତ ହୋଇଥିଲେ ହେଁ ଛ'ଟି ସ୍ୱତନ୍ତ୍ର ପୁସ୍ତକ ପ୍ରଣୟନ କରିବାରେ ସେ ସମର୍ଥ ହୋଇଥିଲେ।

ଏଇ ଦ୍ୱିତୀୟ ପର୍ଯ୍ୟାୟ ହେଉଛି ତାଙ୍କ ସାହିତ୍ୟିକ ଜୀବନର ସର୍ବଶ୍ରେଷ୍ଠ ଗୌରବର ଯୁଗ। 'ବ୍ୟାସକବି ଫକୀରମୋହନ' ଓ 'ଯୁଗପ୍ରବର୍ତ୍ତକ ସ୍ରଷ୍ଟା ରାଧାନାଥ' ଯଥାକ୍ରମେ ୧୯୬୦ ଓ ୧୯୬୫ ସାଲର ଓଡିଶା ସାହିତ୍ୟ ଏକାଡେମୀ 'ଆୱାର୍ଡ'ରେ ସମ୍ମାନିତ। ପୁନଶ୍ଚ 'ଓଡିଆ ସାହିତ୍ୟକୁ ଅଧ୍ୟାପକ ଆର୍ତ୍ତବଲ୍ଲଭଙ୍କ ଦାନ' (୧୯୫୬) ପୁସ୍ତକ ମଧ୍ୟ ପ୍ରବନ୍ଧ ପ୍ରତିଯୋଗିତାରେ ଏଇ ସଂସ୍ଥାଦ୍ୱାରା ପୁରସ୍କୃତ। ୧୯୬୨ ସାଲରେ 'ଡଗର'ର ରଜତ ଜୟନ୍ତୀ ଉତ୍ସବଦ୍ୱାରା ପରିଚାଳିତ ଏକ ଗୋପନୀୟ ଭୋଟରେ ସର୍ବଶ୍ରେଷ୍ଠ ଗବେଷକ ଓ ସମାଲୋଚକ ରୂପେ ଅଧ୍ୟାପକ ସାମନ୍ତରାୟ ସମ୍ମାନିତ ହୋଇଥିଲେ। ସର୍ବୋପରି ଏହାଙ୍କ ଅଧ୍ୟୟନ ଓ ଅଧ୍ୟବସାୟର ଚରମ ଲକ୍ଷ୍ୟ **ଓଡିଆ ସାହିତ୍ୟର ଇତିହାସ( ୧୮୦୩-୧୯୨୦)** ପାଇଁ ୧୯୬୩ ସାଲରେ ସେ ଡକ୍ଟରେଟ୍ ଉପାଧିରେ ଭୂଷିତ ହୋଇଥିଲେ। ଏତେ ସଂଖ୍ୟକ ପୁସ୍ତକପାଇଁ ଏପରି ବିଭିନ୍ନ ସମ୍ମାନ ଲାଭ କରିବା ଜଣେ ସାହିତ୍ୟିକଙ୍କ ଜୀବନରେ କମ୍ ଗୌରବର ବିଷୟ ନୁହେଁ।

ଏପରି ଗୌରବମୟ ଜୀବନ ପୂର୍ଣ୍ଣତଃ ଦୁଃଖହୀନ ଥିଲା ବୋଲି କୁହାଯାଇନପାରେ। ୧୯୬୩ ସାଲରେ ଡକ୍ଟରେଟ୍ ଉପାଧି ଲାଭ ପରେ ୧୯୬୫ ସାଲର ପ୍ରଥମ ଭାଗରେ ସେ ଭ୍ରାତୃବିୟୋଗ ଦୁଃଖର ସମ୍ମୁଖୀନ ହୁଅନ୍ତି। ଏହା ପରେ ଚାଲିଆସେ ଜନ୍ମଭୂମିରେ ଥିବା ଭିଟାମାଟିର ସମସ୍ତ ଦାୟିତ୍ୱ ଓ ନିଜ ପରିବାର ସହିତ ଭ୍ରାତୃପରିବାରର ସମସ୍ତ ଜଞ୍ଜାଳ। ସେ ସମସ୍ତ ସଂସାରିକ ଜଞ୍ଜାଳଠାରୁ ଦୂରରେ ରହି ଶାଶ୍ୱତ ସାରସ୍ୱତ ସାଧନାରେ ଆତ୍ମବିସ୍ମୃତ ହେବାରେ ଅଭ୍ୟସ୍ତ, ତାଙ୍କ ପକ୍ଷରେ ଏପରି ଅପ୍ରତ୍ୟାଶିତ ପାରିବାରିକ ଜଞ୍ଜାଳରେ ସାମୟିକ ଭାବରେ ହେଲେ ହେଁ ଅତ୍ୟନ୍ତ ବିବ୍ରତ ହୋଇପଡିବା ଏକାନ୍ତ ସ୍ୱାଭାବିକ। ପ୍ରାୟ ୧୯୬୯ ସାଲ ଶେଷ ସୁଦ୍ଧା ସେ ଏଥିରୁ କେତେକ ପରିମାଣରେ ମୁକ୍ତିପାଇ ପୁନର୍ବାର ସାହିତ୍ୟ-ସାଧନାରେ ଆତ୍ମନିୟୋଗ କରନ୍ତି। ଏଇଠୁ ଅବସର ନେବା (୧୯୭୩, ସାଲ ଡିସେମ୍ବର)

ପର୍ଯ୍ୟନ୍ତ ଚାରିବର୍ଷ ହେଉଛି ତାହାଙ୍କ ସାହିତ୍ୟିକ ଜୀବନର ତୃତୀୟ ପର୍ଯ୍ୟାୟ।

ଏଇ ତୃତୀୟ ପର୍ଯ୍ୟାୟରେ ସେ ପ୍ରକାଶ କରିଛନ୍ତି ୨୪ଟି ପ୍ରବନ୍ଧ, ଏଥିରୁ ୧୯ଟି ପ୍ରବନ୍ଧ ଆଧୁନିକ ଓଡିଆ ସାହିତ୍ୟ ଓ ଅବଶିଷ୍ଟ ୫ଟି ପ୍ରାଚୀନ ସାହିତ୍ୟ ଉପରେ ଲିଖିତ। ଆଧୁନିକ ସାହିତ୍ୟ ଅନୁଶୀଳନ ସଙ୍ଗେ ସଙ୍ଗେ ସେ ଯେ ପ୍ରାଚୀନ ସାହିତ୍ୟକୁ ପୁନର୍ବାର ପ୍ରତ୍ୟାବର୍ତ୍ତନ କରିଛନ୍ତି, ତାହା ଏଥିରୁ ସ୍ପଷ୍ଟ ଉପଲବ୍ଧ ହୋଇଥାଏ। ୧୯୭୪ ସାଲରୁ ୧୯୮୦ ସାଲ ପର୍ଯ୍ୟନ୍ତ ସମୟ ହେଉଛି ତାହାଙ୍କ ସାହିତ୍ୟିକ ଜୀବନର ଚତୁର୍ଥ ପର୍ଯ୍ୟାୟ। ଏଇ ସମୟ ମଧ୍ୟରେ ଲିଖିତ ୩୦ଟି ପ୍ରବନ୍ଧ (ଏହା ଅପେକ୍ଷା ସେ ଅଧିକ ଲେଖିଥିବା ବିଶ୍ୱାସ) ମଧ୍ୟରୁ ୧୩ଟି ଆଧୁନିକ ଓ ୧୭ଟି ପ୍ରବନ୍ଧ ପ୍ରାଚୀନ ସାହିତ୍ୟ ଉପରେ ପ୍ରସ୍ତୁତ। ଏଇ ପର୍ଯ୍ୟାୟରେ ସେ ପାଞ୍ଚବର୍ଷ କାଳ ବିଶ୍ୱବିଦ୍ୟାଳୟ ଗ୍ରାଣ୍ଟସ୍ କମିଶନଙ୍କ ଆନୁକୂଲ୍ୟରେ ଗବେଷଣାରେ ନିଯୁକ୍ତ ହୁଅନ୍ତି।

'ହିନ୍ଦୀ - ଓଡିଆ ସନ୍ଥ ଓ ଯୋଗସାହିତ୍ୟର ଏକ ତୁଳନାତ୍ମକ ଅଧ୍ୟୟନ' ଓ 'ଓଡିଆ ସାହିତ୍ୟ ଉପରେ ଶ୍ରୀଜଗନ୍ନାଥଙ୍କ ପ୍ରଭାବ' ଏହା ହିଁ ଥିଲା ତାହାଙ୍କ ଗବେଷଣା ଓ ସମାଲୋଚନାର ବିଷୟବସ୍ତୁ। ବୟସାଧିକ୍ୟ ହେତୁ ଧର୍ମ ପ୍ରତି ଆକୃଷ୍ଟ ହେବା ସଂପୂର୍ଣ୍ଣ ସ୍ୱାଭାବିକ। ତେଣୁ ଗବେଷଣା ଓ ସମାଲୋଚନା ପାଇଁ ଏପରି ବିଷୟ ନିର୍ବାଚନ ଏକ ସ୍ୱେଚ୍ଛାକୃତ ଘଟଣା ବୋଲି ବିଶ୍ୱାସ କରାଯାଇପାରେ। ତୃତୀୟ ପର୍ଯ୍ୟାୟରେ ଲିଖିତ ୫ଟି ପ୍ରବନ୍ଧରେ ଏପରି ପ୍ରସ୍ତୁତିର ଅତିଶୟ ସ୍ପଷ୍ଟ।

ସାମନ୍ତରାୟଙ୍କ ଆଲୋଚନା-ସାହିତ୍ୟ ଉପରେ, ଆମେ ବର୍ତ୍ତମାନ କିଛି ଆଲୋକପାତ କରିବାକୁ ଯାଉଅଛୁ।

**ଆଲୋଚନାର ଦୁଇଟି ବିଶିଷ୍ଟ ପ୍ରକୃତି**

ହିନ୍ଦୀ ଓ ଇଂରାଜୀରେ ଲିଖିତ ୩୪ଟି ଲେଖାକୁ ବାଦଦେଲେ, ସାମନ୍ତରାୟଙ୍କ ସମସ୍ତ ଆଲୋଚନା କେବଳ ଓଡିଆ ଭାଷାରେ ଲିଖିତ ଓ ଓଡିଆ ସାହିତ୍ୟ ଉପରେ ଆଧାରିତ। ସାହିତ୍ୟିକ ଜୀବନର ପ୍ରଥମ ଚାରିବର୍ଷ ମଧ୍ୟରେ ଯେଉଁ କେତୋଟି ପ୍ରବନ୍ଧ ଅଳଙ୍କାରଶାସ୍ତ୍ର ଉପରେ ପ୍ରସ୍ତୁତ କରାଯାଇଅଛି, ସେଗୁଡିକ ମଧ ଓଡିଆ ସାହିତ୍ୟକୁ ଲକ୍ଷ୍ୟ ରଖି ଲେଖାଯାଇଅଛି। ଓଡିଆ ପଲ୍ଲୀ- ସାହିତ୍ୟ, ଅଳଙ୍କାରଶାସ୍ତ୍ର, ବୈଷ୍ଣବ - ସାହିତ୍ୟ, ପ୍ରାଚୀନ କାବ୍ୟ ସାହିତ୍ୟ- ଏଇପରି ବିଷୟ ଅବଲମ୍ବନରେ ସେ ପ୍ରାଥମିକ ପର୍ଯ୍ୟାୟରେ କାର୍ଯ୍ୟ ଆରମ୍ଭ କରିଥିଲେ ହେଁ ପରବର୍ତ୍ତୀ ସମୟରେ ଆଧୁନିକ ଓଡିଆ ସାହିତ୍ୟ ଉପରେ ସମସ୍ତ ଶକ୍ତି ଓ ସମୟ ବିନିଯୋଗ କରିଛନ୍ତି। ଶେଷ ଦୁଇ ପର୍ଯ୍ୟାୟରେ ସେ ପୁନର୍ବାର ପ୍ରାଚୀନ ସାହିତ୍ୟକୁ ପ୍ରତ୍ୟାବର୍ତ୍ତନ କରିଥିଲେ ସୁଦ୍ଧା ପୂର୍ବ ମାନସିକ ଆଭିମୁଖ୍ୟକୁ କେବେ ବର୍ଜନ କରିଦେଇନାହାନ୍ତି।

ସାମନ୍ତରାୟଙ୍କ ସମସ୍ତ ଆଲୋଚନାର ଧାରା ଜାଣିବାପାଇଁ ଆମେ ଏଠାରେ ପ୍ରାଥମିକ ଅବସ୍ଥାରେ ଲିଖିତ ଦୁଇଟି ପ୍ରବନ୍ଧର ଅଂଶବିଶେଷ ଉଦ୍ଧାର କରିଦେଉଛୁ। 'ଚୋରି ଓ ବିଚାର' (ଫେବୃୟାରୀ, ୧୯୫୩) ପ୍ରବନ୍ଧର ଶେଷରେ ଅଛି, "ପର ରଚନାକୁ ନିଜ ନାମରେ ସିଲ୍‌ମାରି ପ୍ରଚାରକଲେ ତାହା ପ୍ରକୃତ ଚୋରି। ଅନୁବାଦ ବା ଅନୁସରଣକୁ ସଂପୂର୍ଣ୍ଣ ଚୋରି

କହିବା ଉଚିତ୍ ନୁହେଁ। ଯେଉଁଠାରେ ତାହାର ସଦ୍‌ବ୍ୟବହାର ହୋଇଛି, ସେଠାରେ ତାହା ଗୌରବର କାରଣ ହୁଏ। ତାହା ଆଲୋଚ୍ୟ ପ୍ରବନ୍ଧରେ ବିଶ୍ଳେଷଣଦ୍ୱାରା ପ୍ରତିପାଦନ କରାଯାଇଛି। ଉପାଦାନର ବିଶ୍ଳେଷଣ ଓ ସିଦ୍ଧାନ୍ତରେ ବିଚାରବୁଦ୍ଧିର ସର୍ବମାନ୍ୟତା ପ୍ରତ୍ୟେକ ଆଲୋଚନାରେ ସର୍ବାଦୌ ଅପରିହାର୍ଯ୍ୟ - କେବଳ ଆଲୋଚ୍ୟ ପ୍ରବନ୍ଧ ନୁହେଁ, ତାହାଙ୍କ ଅନ୍ୟ ସମସ୍ତ ଆଲୋଚନାରେ ଏହାର ସଂକେତ ଦେଖିବାକୁ ମିଳେ। 'ଦୃଷ୍ଟିକୋଣ' (ମେ, ୧୯୫୧) ପ୍ରବନ୍ଧରେ ଅଛି, "ସାହିତ୍ୟର କଳାଗୌରବ ସେଇଠି ପୂର୍ଣ୍ଣତା ଲାଭକରେ, ଯେଉଁଠି ତାହା ପାଠକପ୍ରାଣକୁ ନବନବ ରୂପରେ, ନୂତନ ପ୍ରକାଶଭଙ୍ଗୀରେ ଅନୁପ୍ରାଣିତ କରି ରଖିବାକୁ ସମର୍ଥ ହୋଇଥାଏ। ବୈଚିତ୍ର୍ୟ ବା ନୂତନତ୍ୱ ପାଠକ ଚିତ୍ତରେ କଳାର ପ୍ରକୃଷ୍ଟ ମର୍ଯ୍ୟାଦାକୁ ଚିରଦିନ ଅକ୍ଷୁଣ୍ଣ ରଖେ। ଲଳନାର ତନୁ-ଲାବଣ୍ୟ ପରି ଏଇ ବୈଚିତ୍ର୍ୟ ବା ନୂତନତ୍ୱ ସହିତ୍ୟର ଶୋଭାବର୍ଦ୍ଧନ କରିଥାଏ ଓ ପାଠକ-ଚିତ୍ତକୁ ରସାପ୍ଳୁତ କରି ରଖିବାରେ ସତତ ସମର୍ଥ ହୋଇଥାଏ। ଏଇ କାବ୍ୟ-କୌଶଳ 'ଦୃଷ୍ଟିକୋଣ' ନାମରେ ନାମିତ ହୋଇପାରେ"। ଗୋଟିଏ ଗୋଟିଏ ପ୍ରବନ୍ଧ ପ୍ରସୁତ କରିବାପାଇଁ ବହୁ ପୁସ୍ତକ ଓ ପତ୍ରପତ୍ରିକା ଅଧ୍ୟୟନ କରିବାକୁ ହୋଇଥାଏ। "ଓଡିଆ ସାହିତ୍ୟର ଇତିହାସ ପୁସ୍ତକ ରଚନାପାଇଁ ସେ ନିମ୍ନଲିଖିତ ଉପାଦାନର ସାହାଯ୍ୟ ନେଇଥିଲେ ବୋଲି ଗୋଟିଏ ପ୍ରବନ୍ଧରେ ମଧ୍ୟ ସ୍ୱୀକାର କରିଛନ୍ତି। "ଊନବିଂଶ ଶତାବ୍ଦୀର ବହୁ ପତ୍ରପତ୍ରିକା, ଯଥା - ତିରିଶବର୍ଷର ଉତ୍କଳଦୀପିକା, ତିରିଶବର୍ଷର ବାଲେଶ୍ୱର ସମ୍ବାଦବାହିକା, ତେରବର୍ଷର ଓଡିଆ ଓ ନବସମ୍ବାଦ, ଦଶବର୍ଷର ସମ୍ବଲପୁର ହିତୈଷିଣୀ, ତା ବାଦ୍ ଉତ୍କଳମଧୁପ, ଉତ୍କଳପୁତ୍ର, ଉତ୍କଳ ହିତୈଷିଣୀ, ଶିକ୍ଷାବନ୍ଧୁ, ସଂସ୍କାରକ, ପ୍ରଦୀପ, ଉତ୍କଳପ୍ରଭା ପ୍ରଭୃତି ମାସିକ ପତ୍ରିକା। ଏସବୁ ଛଡା ବୋର୍ଡ ଅଫ୍ ରେଭିନିଉ ରେକର୍ଡ ରୁମ୍‌ର ବିଭିନ୍ନ ରେକର୍ଡ, ଷାଠିଏ ବର୍ଷ ଶିକ୍ଷା ବିଭାଗର ବାର୍ଷିକ ରିପୋର୍ଟ, ତିରିଶବର୍ଷର ଓଡିଆ କମିଶନରଙ୍କ ବାର୍ଷିକ ରିପୋର୍ଟ, ତିରିଶ ବର୍ଷର ବଙ୍ଗ ସରକାରଙ୍କ ବାର୍ଷିକ ରିପୋର୍ଟ ଇତ୍ୟାଦି। ବହୁ ପୁସ୍ତକ ଓ ପତ୍ରପତ୍ରିକାର ଉପାଦାନ - ସମ୍ଭାରରେ ଯେଉଁ ଥିସିସ୍ ଓ ଅନ୍ୟାନ୍ୟ ପୁସ୍ତକ ରଚିତ ହୋଇଅଛି, ସେଥିରେ ସର୍ବତ୍ର ଏଇ ବିଶ୍ଳେଷଣ, ବିଚାରବୁଦ୍ଧି ଓ ନୂତନ ଦୃଷ୍ଟିକୋଣର ପରିଚୟ ପରିଦୃଷ୍ଟ ହୋଇଥାଏ।

ଆମେ ବର୍ତ୍ତମାନ କ୍ରମାନ୍ୱୟରେ ତାହାଙ୍କ ପ୍ରବନ୍ଧ ଓ ପୁସ୍ତକଗୁଡିକର ସଂକ୍ଷିପ୍ତ ଆଲୋଚନା ଉପସ୍ଥାପନା କରୁଅଛୁ।

**ପ୍ରଥମ ଚାରିବର୍ଷରେ ରଚନାର ପର୍ଯ୍ୟାଲୋଚନା**

ସାମନ୍ତରାୟଙ୍କ ସର୍ବପ୍ରଥମ ପ୍ରକାଶିତ ପ୍ରବନ୍ଧର ନାମ "ଓଡିଆ ଅକ୍ଷର ଶିକ୍ଷାର ସହଜ ପ୍ରଣାଳୀ" (ସେପ୍ଟେମ୍ବର , ୧୯୪୯) । ସଂପୂର୍ଣ୍ଣ ଏକ ନୂତନ ପ୍ରଣାଳୀରେ କେବଳ ଗୋଟିଏ ଅକ୍ଷର 'ଠ' ସାହାଯ୍ୟରେ ପ୍ରାୟ ସମସ୍ତ ଓଡିଆ ଅକ୍ଷର କିପରି ଲେଖି ଶିଖା ଯାଇପାରିବ, ତାହା ଏଇ ପ୍ରବନ୍ଧରେ ଦେଖାଇ ଦିଆଯାଇଅଛି। ଓଡିଆ ଭାଷାର ସମସ୍ତ ଅକ୍ଷର ଯେ, ଗୋଟିଏ ଅକ୍ଷର 'ଠ' ଠାରୁ ସ୍ୱାଭାବିକ ଭାବେ ଉଦ୍‌ଭୁତ୍ ନୁହେଁ, ଏ ଧାରଣା ତାଙ୍କର ଅନ୍ୟ ଏକ ପ୍ରବନ୍ଧ 'ଓଡିଆ ଲିପିର ଅଭ୍ୟୁଦୟ ଇତିହାସ' (ମାର୍ଚ୍ଚ ୧୯୫୧) ଅଧ୍ୟୟନ କଲେ ସ୍ପଷ୍ଟ ହୋଇଥାଏ। କିନ୍ତୁ ଓଡିଆ ଅକ୍ଷର ଲେଖି ଶିଖିଲାବେଳେ ହସ୍ତଚାଳନାର

ବାସ୍ତବ ଅନୁଭୂତିକୁ ସମ୍ମୁଖରେ ରଖି, ଅକ୍ଷରଶିକ୍ଷାର ଏଇ ନୂତନ ପଦ୍ଧତି ପ୍ରତି ସେ ଦୃଷ୍ଟି ନିକ୍ଷେପ କରିଛନ୍ତି ବୋଲି ମନେହୁଏ। ପ୍ରବନ୍ଧ ରଚନାରେ ତାଙ୍କର ଏପରି ଏକ ନୂତନ ବିଚାରବୋଧ ଓ ଦୃଷ୍ଟିକୋଣ ପରବର୍ତ୍ତୀ ସମୟରେ ଲିଖିତ ସମସ୍ତ ଆଲୋଚନାରେ ପରିଲକ୍ଷିତ।

ପ୍ରଥମ ଚାରିବର୍ଷ ମଧ୍ୟରେ ପ୍ରକାଶିତ ତାଙ୍କର ଅଧିକାଂଶ ପ୍ରବନ୍ଧ, 'ଓଡିଆ ପଲ୍ଲୀ ସାହିତ୍ୟ', 'ସାହିତ୍ୟାଦର୍ଶ' ଓ 'ଓଡିଆ ବୈଷ୍ଣବ-ସାହିତ୍ୟ' ପୁସ୍ତକରେ ସଂଗୃହୀତ। ପଲ୍ଲୀରେ ଜନ୍ମ ଓ ପ୍ରତିପାଳିତ ଏଇ ଲେଖକଙ୍କର ପଲ୍ଲୀ ଜୀବନସ୍ରୋତ ସହିତ ଯେଉଁ ବାସ୍ତବ ଅନୁଭୂତି ଥିଲା, ତାହା ଉପରେ 'ଓଡ଼ିଆ ପଲ୍ଲୀ ସାହିତ୍ୟ'ର ବିଷୟବସ୍ତୁ ପ୍ରତିଷ୍ଠିତ ଥିବାରୁ, ଆଲୋଚ୍ୟ ପୁସ୍ତକରେ ବାସ୍ତବ ଅନୁଭୂତି ଓ ସମାଲୋଚକର କଳ୍ପନା ଏକତ୍ର ଏକ ମଧୁର ଯୋଗସୂତ୍ରରେ ଗ୍ରଥିତ ହୋଇରହିଛି। ଏହାର ସଙ୍ଗୀତଧର୍ମୀ ଭାଷା, ବିଷୟ ପରିଶୀଳନରେ ଲେଖକଙ୍କର ନୂତନ ଦୃଷ୍ଟିକୋଣ ଓ ବିଚାର-ବିଶ୍ଳେଷଣ, ଓଡିଆ ପଲ୍ଲୀ ସାହିତ୍ୟ ଆଲୋଚନା ଅଧିକ ସୁଖପାଠ୍ୟର କାରଣ। ପଲ୍ଲୀ-ସଙ୍ଗୀତ, ପଲ୍ଲୀ-ବଚନିକା, ପଲ୍ଲୀ-ପ୍ରହେଳିକା ଓ ପଲ୍ଲୀ- କାହାଣୀ-ପଲ୍ଲୀ ସାହିତ୍ୟର ଏଇ ଚାରୋଟି ବିଭାଗର ଅଭ୍ୟୁଦୟ ଓ ବିକାଶର ବୁନିୟାଦି, ରସ-ସାହିତ୍ୟ ବା ସହରାଭିମୁଖୀ ଖାନ୍‌ଦାନ୍ ସାହିତ୍ୟଠାରୁ ଏହାର ପାର୍ଥକ୍ୟ ପ୍ରତିପାଦନ କରାଯାଇଛି।

'ସାହିତ୍ୟାଦର୍ଶ'ର କେତେକ ପ୍ରବନ୍ଧ ଅଳଙ୍କାର ଓ ଅନ୍ୟ କେତେକ ପ୍ରବନ୍ଧ ଚଉତିଶା ସାହିତ୍ୟ ଏବଂ ଉପେନ୍ଦ୍ରଭଞ୍ଜ-ସାହିତ୍ୟ ପ୍ରସ୍ତୁତ କରାଯାଇଅଛି। ସଂସ୍କୃତ ଅଳଙ୍କାରଶାସ୍ତ୍ର ଆକାରରେ ଯେପରି ବିଶାଳ, ତାହା ଉପରେ ହିନ୍ଦୀ-ବଙ୍ଗଳା-ଇଂରେଜୀରେ ଲିଖିତ ଆଲୋଚନା ମଧ୍ୟ ତତୋଽଧିକ ବିସ୍ମୟକର। ଏପରି ଆଲୋଚନାକୁ ଅଧ୍ୟୟନ କରି ଓଡିଆ ଭାଷାରେ ତା'ର ଚର୍ବିତଚର୍ବଣ କରିବା ମଧ୍ୟ ଅତିଶୟ ସହଜ ଓ ନିରାପଦ। ସାମନ୍ତରାୟ ଏପରି ଏକ ଗତାନୁଗତିକ ପନ୍ଥାକୁ ପରିହାର କରି ଓଡିଆ କାବ୍ୟଯୁଗ-ସାହିତ୍ୟର ଅବବୋଧ ବହିଃ ଓ ଅନ୍ତସ୍ୱରୂପର ମୂଲ୍ୟ ଅବଧାରଣରେ ଚେଷ୍ଟିତ ହୋଇଅଛନ୍ତି। ସେଥିପାଇଁ 'ସଂସ୍କୃତ ସମାଲୋଚନା ସାହିତ୍ୟର ସଂକ୍ଷିପ୍ତ ସୂଚନା' (ଅକ୍ଟୋବର ୧୯୫୩) ପ୍ରବନ୍ଧରେ ସେ ଅଳଙ୍କାରଶାସ୍ତ୍ର-ନିବଦ୍ଧ ଅଳଙ୍କାର-ରୀତି-ଗୁଣ-ବକ୍ରୋକ୍ତି-ଅନୁମିତି-ଧ୍ୱନି-ରସ-ଔଚିତ୍ୟ ନାମରେ ବହୁଳ ପ୍ରଚାରିତ ବିଭିନ୍ନ 'ବାଦ'ର ପରିଚୟ ଦେବା ସଙ୍ଗେ ସଙ୍ଗେ ରସ-ଧ୍ୱନି କାବ୍ୟର ଆତ୍ମା ହେଲେ ହେଁ କାବ୍ୟରେ ଔଚିତ୍ୟର ସର୍ବମାନ୍ୟତା ଅସ୍ୱୀକାର କରାଯାଇନପାରେ। "ଔଚିତ୍ୟବାଦ' (ଜାନୁୟାରୀ ୧୯୫୧) ଓ 'ସାହିତ୍ୟରେ ଶବ୍ଦାଳଙ୍କାର" (ଫେବୃୟାରୀ ୧୯୫୧) - ଏଇ ଦୁଇଟି ପ୍ରବନ୍ଧରେ ଯଥାକ୍ରମେ ଶୃଙ୍ଗାରରସ ଓ ଶବ୍ଦାଳଙ୍କାରର ସ୍ୱରୂପ ଅଳଙ୍କାର ଦୃଷ୍ଟିରୁ ବିଚାରକରି, ସେ ଏ ଦେଶର ସମାଲୋଚକମାନଙ୍କଦ୍ୱାରା ବହୁ ପ୍ରଶଂସିତ କାବ୍ୟ-ସାହିତ୍ୟର ଦୁଇଟି ବିଶିଷ୍ଟ ଗୌରବର ସ୍ୱରୂପ ପାଠକ ନିକଟରେ ସ୍ପଷ୍ଟ କରିଦେଇଅଛନ୍ତି। ବାସ୍ତବ ଜୀବନର ରତିକ୍ରୀଡା ଯେ ସାହିତ୍ୟର ଶୃଙ୍ଗାର ରସ ନୁହେଁ, ସାହିତ୍ୟରେ ଶୃଙ୍ଗାରସର ଗୌରବ ଲାଭ କରିବାକୁ ହେଲେ ଏ ରସର ଅଭିବ୍ୟକ୍ତି କ'ଣ ହେବା ଉଚିତ୍ - ଏ ଉଭୟ ସମସ୍ୟାର ସମାଧାନ ଯଥାକ୍ରମେ, 'ରତି ଓ ରସ' (ସେପ୍‌ଟେମ୍ବର ୧୯୫୨) ଓ 'ଯୌନରସ ବା ଶୃଙ୍ଗାରରସ' (ଜାନୁୟାରୀ,

୧୯୫୪) ପ୍ରବନ୍ଧରେ ଦେଖିବାକୁ ମିଳେ। ସାମନ୍ତରାୟଙ୍କ ଆଲୋଚନା ଓ ବିଶ୍ଳେଷଣ ସଂପୂର୍ଣ୍ଣ ସ୍ୱତନ୍ତ୍ର ଓ ନିଜସ୍ୱ। ସାହିତ୍ୟିକ ରସାପ୍ଲୁତ ଏହାଙ୍କ ମାନସିକ ଆଭିମୁଖ୍ୟରେ ବିରକ୍ତିକର ଗତାନୁଗତିକତା ତଥା ଅନ୍ଧଷ୍ଟାବକତା ପରିବର୍ତ୍ତେ କଳାର ସୌନ୍ଦର୍ଯ୍ୟବୋଧ ପ୍ରାଧାନ୍ୟ ଲାଭ କରିଅଛି। ବିଚାରରେ କଳାର ଅନ୍ତର୍ନିହିତ ସୌନ୍ଦର୍ଯ୍ୟ ହିଁ କାବ୍ୟର ପ୍ରଧାନ ଭିତ୍ତିଭୂମି। 'ଅଳଙ୍କାର ଉତ୍ପତ୍ତିର ଇତିହାସ'(ମାର୍ଚ୍ଚ, ୧୯୫୦) ପ୍ରବନ୍ଧରେ ସେ ଆଦ୍ୟପ୍ରାନ୍ତ ଏଇ ସୌନ୍ଦର୍ଯ୍ୟ ଉପରେ ଗୁରୁତ୍ୱ ପ୍ରଦାନ କରିଅଛନ୍ତି। ସମାଲୋଚକ ଜୀବନର ପ୍ରାରମ୍ଭରୁ ଅଳଙ୍କାର ଶାସ୍ତ୍ରାଲୋଚନା ପ୍ରସଙ୍ଗରେ କଳାର ଯେଉଁ ଉପାଦାନକୁ ସେ ସର୍ବଶ୍ରେଷ୍ଠ ସମ୍ମାନ ଦେଖାଇ ଶବ୍ଦ ଅଳଙ୍କାର, ଶୃଙ୍ଗାରରସ ଓ ଔଚିତ୍ୟର ସ୍ୱରୂପ ପ୍ରତିପାଦନ କରିଛନ୍ତି, ସୌନ୍ଦର୍ଯ୍ୟ-ବୋଧକୁ ସମାଲୋଚନାର ପ୍ରଧାନ ମାନଦଣ୍ଡ ରୂପେ ଗ୍ରହଣ କରିନେଇ ଓଡିଆ ଚଉତିଶା-ସାହିତ୍ୟ, ଭଞ୍ଜ-ସାହିତ୍ୟ, ବୈଷ୍ଣବ-ସାହିତ୍ୟର ମୂଲ୍ୟ ନିରୂପଣ କରିଅଛନ୍ତି। 'ଭଞ୍ଜ-ସାହିତ୍ୟ ସମସ୍ୟା' (ଏପ୍ରିଲ୍ ୧୯୫୨) 'ଭଞ୍ଜ - ସାହିତ୍ୟ-ସମାଲୋଚନାର ଏକ ସଂକ୍ଷିପ୍ତ ଇତିହାସ' (ଏପ୍ରିଲ୍ ୧୯୫୩) ଓ 'ଉପେନ୍ଦ୍ରଙ୍କ ରଚନାର ସଂଖ୍ୟା ନିର୍ଣ୍ଣୟ' (ଡିସେମ୍ବର, ୧୯୫୨) ଏଇ ତିନୋଟି ପ୍ରବନ୍ଧରେ, (କ) ପଦ୍ଧତିର ଅନୁସରଣରେ ଭଞ୍ଜ- ସାହିତ୍ୟ ଆଲୋଚିତ ହେବା ଉଚିତ୍, (ଖ) ଆଲୋଚକମାନଙ୍କ ଦୃଷ୍ଟିରେ ଭଞ୍ଜ-ସାହିତ୍ୟ କି ରୂପରେ ଧରାଦେଇଛି ଓ (ଗ) ଭଞ୍ଜଙ୍କ ପ୍ରକୃତ ରଚନା କେତେ ? - ଏଇ ତିନୋଟି ସମସ୍ୟାମୂଳକ ପ୍ରଶ୍ନ ଯାହା ଉତ୍‌ଥାପିତ ହୋଇଛି, ଗତ ୨୫ବର୍ଷ ଭିତରେ ପ୍ରାଚୀନ ସାହିତ୍ୟର ଆଲୋଚକମାନେ ସେଥିପ୍ରତି କେବେ ଅବହିତ ହୋଇଛନ୍ତି, ମନେହୁଏ ନାହିଁ। ଓଡିଆ ସାହିତ୍ୟରେ ଚଉତିଶା (ଜୁନ୍, ୧୯୫୧) ପ୍ରବନ୍ଧରେ ଚଉତିଶାର ରୂପ-ଗତ ଗଠନ-ଶିଳ୍ପର ପରିଚୟ ପ୍ରଦାନ ସହିତ ଚଉତିଶା-ସାହିତ୍ୟର ମାର୍ମିକ ସୌନ୍ଦର୍ଯ୍ୟର ବିଶ୍ଳେଷଣ ଉପରେ ଅଧିକ ଧ୍ୟାନ ଦିଆଯାଇଛି।

ଓଡିଶା କିମ୍ବା ବୈଷ୍ଣବ ଧର୍ମର ତାତ୍ତ୍ୱିକ ବିଶ୍ଳେଷଣ ଅପେକ୍ଷା, ସେଇ ଧର୍ମାବଲମ୍ବନରେ ବିକଶିତ ବୈଷ୍ଣବ-ସାହିତ୍ୟର ଗୌରବ ପ୍ରତିପାଦନ ପ୍ରତି ସାମନ୍ତରାୟ ବିଶେଷ ଆକୃଷ୍ଟ ହୋଇଅଛନ୍ତି। "ବିଦଗ୍ଧଚିନ୍ତାମଣି' (ଡିସେମ୍ବର ୧୯୪୯) ଓ 'ଲଳିତା' (ମେ, ୧୯୫୦) ପ୍ରବନ୍ଧ ଦୁଇଟିର ଗୌରବ, ଏବେ ବି ଅନତିକ୍ରାନ୍ତ ବୋଲି ଅନୁଭୂତ ହୁଏ। ରୂପ -ଗୋସ୍ୱାମୀକୃତ 'ବିଦଗ୍ଧମାଧବ' ନାଟକର ବିଷୟବସ୍ତୁ ଆଧାରରେ ରଚିତ ସାମନ୍ତସିଂହାରଙ୍କ 'ବିଦଗ୍ଧଚିନ୍ତାମଣି' କାବ୍ୟ ବିଷୟ-ଆହରଣ ଓ ନୂତନ ଉପାଦାନ ସଂଯୋଜନା ଭିତରେ କିପରି ଏକ ଅନବଦ୍ୟ ସୃଷ୍ଟି-ସମ୍ଭାରରେ ରୂପାନ୍ତରିତ ହୋଇଅଛି, ଏକ ତୁଳନାତ୍ମକ ଆଲୋଚନା ମାଧ୍ୟମରେ ତାହାହିଁ ପୂର୍ବୋକ୍ତ ପ୍ରଥମ ପ୍ରବନ୍ଧରେ ଦେଖାଇ ଦିଆଯାଇଛି। ବହୁ ବିଷୟର ଆହରଣ ଭିତରେ ମଧ୍ୟ ସାମନ୍ତସିଂହାରଙ୍କ ଗଭୀର ପାଣ୍ଡିତ୍ୟ, ବହୁ ଶାସ୍ତ୍ରଦର୍ଶିତା ଓ ଅମିଳନ ସୃଷ୍ଟି-ପ୍ରତିଭା ଯେପରି ବିଶ୍ଳେଷିତ ହୋଇଛି, ସେଥିରେ ଏଇ ବୈଷ୍ଣବ କବି, ଏକ ଅଭିନବ ସ୍ୱତନ୍ତ୍ର ଭାବମୂର୍ତ୍ତି ଧାରଣ କରି ଆମ ସମ୍ମୁଖରେ ଉପସ୍ଥିତ ହେଉଅଛନ୍ତି। କୃଷ୍ଣକାବ୍ୟର ଗତାନୁଗତିକ ପରିକଳ୍ପନାରେ ଲଳିତା ହେଉଛି ଏକ ଅସାଧାରଣ ସଖୀ: କିନ୍ତୁ କବିସୂର୍ଯ୍ୟ ବଳଦେବଙ୍କ ଲଳିତା କେବଳ ଅସଧାରଣ ନୁହେଁ, ଏକ ବିଚିତ୍ର ମନୋଜ୍ଞ ଚରିତ୍ର ସୃଷ୍ଟି।

ଛଳକଥାର ଆଶ୍ରୟରେ ରାଧାକୃଷ୍ଣଙ୍କ ମନରେ ଦ୍ୱନ୍ଦ୍ୱାତ୍ମକ ଭାବ ଜାତକରାଇ ସେମାନଙ୍କୁ ଯୁଗପତ୍ ସୁଖଦୁଃଖ ପ୍ରଦାନ କରିବା, ତତ୍‌ସହ କଥାବସ୍ତୁର ଅଗ୍ରଗତି କରାଇବା ହେଉଛି ବଳଦେବଙ୍କ ଲଳିତାର ପ୍ରଧାନ ଭୂମିକା, ଏଇ ଭୂମିକା ଭିତରେ ନିଜର ଅଖଣ୍ଡ କ୍ଷମତା ବଳରେ ମନ୍ତ୍ରମୁଗ୍ଧ ସର୍ପପରି ସେଇ ଯୁଗଳବିଗ୍ରହଙ୍କୁ ସ୍ୱଅଧୀନକୁ ଆଣି ସମଗ୍ର 'ଚମ୍ପୂ'ର ସାରସ୍ୱତ ବିଭବ ପ୍ରତିଷ୍ଠା କରିବା ହେଉଛି ଲଳିତା ସୃଷ୍ଟିର ଅନ୍ତିମ ଅନ୍ତର୍ବାଣୀ। ଏ ଅନ୍ତର୍ବାଣୀର କୃତିତ୍ୱପୂର୍ଣ୍ଣ ରୂପାୟନପାଇଁ ସାମନ୍ତରାୟଙ୍କ ଅନ୍ତର୍ଦୃଷ୍ଟି ମଧ୍ୟ ସେତିକି ଅଭିନନ୍ଦନୀୟ। ଅଧ୍ୟାପକ ଜୀବନର ଛ' ମାସ ମଧ୍ୟରେ ଜଣେ ଭୂଗୋଳ ଓ ଗଣିତ ଶିକ୍ଷକ ସାହିତ୍ୟିକ ଭୂମିକାରେ ଅବତୀର୍ଣ୍ଣ ହୋଇ ତୁଳନାତ୍ମକ ଆଲୋଚନାରେ ବଳିଷ୍ଠ ବିଚାରବୁଦ୍ଧି ଓ ସୂକ୍ଷ୍ମ ଚରିତ୍ର ସୃଷ୍ଟିର ବିଶ୍ଳେଷଣରେ ଏପରି ମନୋଜ୍ଞ ଅନ୍ତର୍ଦୃଷ୍ଟି କିପରି ପ୍ରଦର୍ଶନ କରିପାରିଲେ, ତାହା ଭାବିଲେ ବିସ୍ମିତ ନ ହୋଇ ରହିହୁଏ ନାହିଁ।

ତଦାନୀନ୍ତନ ବୈଷ୍ଣବ ସାହିତ୍ୟାଲୋଚନା କ୍ଷେତ୍ରରେ ଯେଉଁ ଦୁଇଟି ବଳିଷ୍ଠ ଆଭିମୁଖ୍ୟ ପ୍ରକଟିତ ହୋଇଥିଲା, ତାହା ସଂସ୍କାର ବା ଦେଶପ୍ରୀତି ଓ 'ଦର୍ଶନ'କୁ ଆଶ୍ରୟ କରି। 'ପରକୀୟା ପ୍ରୀତି' (ଜୁଲାଇ, ୧୯୫୩) ଓ 'ବୈଷ୍ଣବ ସାହିତ୍ୟରେ ଦର୍ଶନର ସ୍ଥାନ' (ନଭେମ୍ବର, ୧୯୫୩) ପ୍ରବନ୍ଧ ପୂର୍ବୋକ୍ତ ଦୁଇଟି ଆଭିମୁଖ୍ୟର ଦୁର୍ବଳତା ପ୍ରତିପାଦନ ପାଇଁ ପ୍ରସ୍ତୁତ ହୋଇଥିଲା ବୋଲି ଅନୁମିତ ହୁଏ। ଏ କ୍ଷେତ୍ରରେ ସାମନ୍ତରାୟଙ୍କ ଆଭିମୁଖ୍ୟ ପୂର୍ଣ୍ଣତଃ ସାହିତ୍ୟମୁଖୀ। ଏଇ ଆଭିମୁଖ୍ୟର ଆଶ୍ରୟରେ ସେ ବୈଷ୍ଣବ -ସାହିତ୍ୟର ପ୍ରକୃଷ୍ଟ ରସ-ସମ୍ପଦ ପ୍ରତିଷ୍ଠାପାଇଁ 'ବୈଷ୍ଣବ ସାହିତ୍ୟ ଆଲୋଚନାର ପ୍ରକୃତ ଦୃଷ୍ଟିକୋଣ' (ମେ, ୧୯୫୦) ଅନ୍ୟ ଦୁଇଟି ପ୍ରବନ୍ଧ 'ଓଡିଆ ସାହିତ୍ୟରେ ଗୌଡୀୟ ବୈଷ୍ଣବ ଧର୍ମଦର୍ଶନର ପ୍ରଭାବ' (ଏପ୍ରିଲ୍, ୧୯୫୫) ଓ 'କବି ବନମାଳୀ' (ସେପ୍ଟେମ୍ବର, ୧୯୫୫) ଭିତରେ ଏହି ସାହିତ୍ୟର କଳାଗତ ବୈଶିଷ୍ଟ୍ୟ ବିଶ୍ଳେଷଣ କରିଛନ୍ତି। ଆଲୋଚନାରେ ପାରମ୍ପରିକ ଗତାନୁଗତିକତା ପ୍ରତି ବିମୁଖତା ସୁସ୍ପଷ୍ଟ। 'ବୈଷ୍ଣବ ସାହିତ୍ୟର କଥାବସ୍ତୁ' (ନଭେମ୍ବର ୧୯୫୨) ପ୍ରବନ୍ଧରେ ସେ ସାହିତ୍ୟର କଥାବସ୍ତୁ ଭିତରେ ବିଭିନ୍ନ ରସାନୁକୂଳ ଉପାଦାନ ବିଶ୍ଳେଷଣ କରି ନିଜ ଆଲୋଚନାର ସ୍ୱାତନ୍ତ୍ର୍ୟ ଓ ସ୍ୱକୀୟତା ମଧ୍ୟ ପ୍ରତିପାଦନ କରିଛନ୍ତି।

ଭୂଗୋଳ ଓ ଗଣିତ ଶିକ୍ଷକର ଗାଣିତିକ ବିଚାରବୁଦ୍ଧି ନେଇ ଜଣେ ସାହିତ୍ୟର ଅଧ୍ୟାପକ ସମାଲୋଚକର ଭୂମିକାରେ ଅବତୀର୍ଣ୍ଣ ହେଲେ, ଆଲୋଚନାର ଆଭିମୁଖ୍ୟରେ ଆଧୁନିକ ମନଟି ଆତ୍ମପ୍ରକାଶ କରିବା ଏକାନ୍ତ ସ୍ୱାଭାବିକ। ସାମନ୍ତରାୟଙ୍କ ଆଧୁନିକ ମନଟି ପ୍ରଥମ ପର୍ଯ୍ୟାୟର ଚାରିବର୍ଷର ରଚନାରେ ଆଦୌ ଲୁକ୍କାୟିତ ରହିପାରିନାହିଁ। ଏ ମନ ଅନ୍ୟ ଏକ ନୂତନ ଚାରଣଭୂମି ପ୍ରତି ଅଜ୍ଞାତସାରରେ ସ୍ୱତଃ ଆକୃଷ୍ଟ ହୋଇପଡିଛି। ପରବର୍ତ୍ତୀ ସମୟରେ ଆଧୁନିକ ସାହିତ୍ୟ ଉପରେ ରଚିତ ୩୯ଟି ପ୍ରବନ୍ଧ ହେଉଛି ଏକ ନୂତନ ପ୍ରତିଆକର୍ଷଣର ଅନ୍ତିମ ପରିଣତି ମାତ୍ର। ତେବେ ଏକଥା ଏକାନ୍ତ ସତ୍ୟ ଯେ, ଏଇ ଚାରିବର୍ଷ ଭିତରେ ପ୍ରବନ୍ଧ ରଚନାର ଯେଉଁ ଶୈଳୀ ଓ ପଦ୍ଧତିରେ ସେ ନିଜକୁ ତାଲିମ୍ କରିଛନ୍ତି, ଆଧୁନିକ ସାହିତ୍ୟେ ଆଲୋଚନାବେଳେ ସେଇ ପଦ୍ଧତି ଓ ପରଂପରା ଅଧିକ ବିଜ୍ଞାନସମ୍ମତ, ଯୁକ୍ତିସର୍ବସ୍ୱ ଓ ବୈଚିତ୍ର୍ୟପୂର୍ଣ୍ଣ ହୋଇଛି।

**ପ୍ରଥମ ପର୍ଯ୍ୟାୟର ଶେଷ ଛ' ବର୍ଷ**

ଆଲୋଚନାର ସୁବିଧା ଦୃଷ୍ଟିରୁ ୧୯୫୪ - ୫୯ସାଲ ସହିତ ପରବର୍ତ୍ତୀ ସମୟରେ ରଚିତ ସମସ୍ତ ଆଧୁନିକ ସାହିତ୍ୟାଲୋଚନା ଆଧାରରେ ସାମନ୍ତରାୟଙ୍କ ଆଲୋଚନାର ସ୍ୱରୂପ ଓ ଆଭିମୁଖ୍ୟ ଆମେ ବିଚାର କରିଅଛୁ।

ପ୍ରବନ୍ଧ ସଂକଳନ ଓ ସ୍ୱତନ୍ତ୍ର ପୁସ୍ତକ, ଏଇ ଦୁଇ ରୂପରେ ଆଲୋଚନା ସମୟର ଲେଖାଗୁଡିକ ପ୍ରକାଶିତ। 'ଆଧୁନିକ ଓଡିଆ ସାହିତ୍ୟର ଦିଗ୍‌ଦର୍ଶନ' ପୁସ୍ତକ ପ୍ରଥମ ଶ୍ରେଣୀର ଓ 'ବ୍ୟାସକବି ଫକୀରମୋହନ' ଏବଂ 'ଯୁଗ-ପ୍ରବର୍ତ୍ତକ ସ୍ରଷ୍ଟା ରାଧାନାଥ' ଦ୍ୱିତୀୟ ଶ୍ରେଣୀର ଅନ୍ତର୍ଗତ। ଆମେ କ୍ରମାନ୍ୱୟରେ ସେହି ଉଭୟର ସ୍ୱରୂପ ବିଶ୍ଳେଷଣ କରୁଅଛୁ।

'ରାଧାନାଥ ସାହିତ୍ୟରେ ନାରୀ - ଚରିତ୍ର' (ଜାନୁୟାରୀ, ୧୯୫୦), 'କବି ଗୋପବନ୍ଧୁ'(ଏପ୍ରିଲ୍ ୧୯୫୧) ଓ 'ମାତ୍ରାବୃତ୍ତ ଛନ୍ଦ ଓ ଓଡିଆ କବିତା' (ଡିସେମ୍ବର ୧୯୫୩) ପରି କେତୋଟି ପ୍ରବନ୍ଧରେ ଆଧୁନିକ ଓଡିଆ ସାହିତ୍ୟ ଆଲୋଚିତ ହୋଇଥିଲେ ହେଁ, ଏ ଆଲୋଚନାର ପ୍ରକୃତ ଆରମ୍ଭ '୧୮୯୭ ସାଲ୍ ଅକ୍ଟୋବର' (ଏପ୍ରିଲ୍ -ଜୁନ୍, ୧୯୫୪) ପ୍ରବନ୍ଧଠାରୁ ହିଁ ନିର୍ଦ୍ଦେଶ କରାଯାଇପାରେ। ଆଲୋଚ୍ୟ ଶେଷୋକ୍ତ ପ୍ରବନ୍ଧରେ ଊନବିଂଶ ଶତାବ୍ଦୀର ଶେଷପାଦରେ ଦେଖାଦେଇଥିବା ସାହିତ୍ୟିକ ବାତାବରଣ ଭିତରେ ଫକୀରମୋହନଙ୍କ ଏକ ସ୍ୱତନ୍ତ୍ର ସ୍ଥାନର ଯେଉଁ ପରିକଳ୍ପନା କରାଯାଇଛି, ସେଥିରୁ ସେନାପତି ସାହିତ୍ୟ ପ୍ରତି ପ୍ରାବନ୍ଧିକଙ୍କ ସମଧିକ ଆକର୍ଷଣ ସ୍ପଷ୍ଟ ଉପଲବ୍ଧ। ଯଥାର୍ଥତଃ ଏହି ସମୟରେ, ଏପରିକି ପରବର୍ତ୍ତୀ ସମୟରେ ସେ ଫକୀରମୋହନଙ୍କ ଉପରେ ସର୍ବାଧିକ ପ୍ରବନ୍ଧ ଲେଖିଛନ୍ତି। ଫକୀରମୋହନ-ସାହିତ୍ୟର ଯେଉଁ ଯେଉଁ ବିଭାଗ ଉପରେ କିଏ କେବେ କିଛି ଚିନ୍ତା କରି ନଥିଲେ, ସାମନ୍ତରାୟ ସେଇ ସେଇ ବିଭାଗକୁ ହାତକୁ ନେଇ ସଂପୂର୍ଣ୍ଣ ଅଭିନବ ଉପାଦାନ ସାହାଯ୍ୟରେ ସେମାନଙ୍କ ଉପରେ ନୂତନ ଆଲୋକପାତ କରି କେତେକ ଭ୍ରାନ୍ତିର ଦୂରୀକରଣ, ଅପୂର୍ଣ୍ଣ ଧାରଣାର ସଂପୂର୍ଣ୍ଣତା ସାଧନ, ତଥା ବହୁ ସ୍ଥଳରେ ସେ ସାହିତ୍ୟର ଭାବମୂର୍ତ୍ତିରେ ସଂପୂର୍ଣ୍ଣ ନବୀକରଣ କରିବାରେ ସମର୍ଥ ହୋଇଅଛନ୍ତି। 'ସାଧୁସୁନ୍ଦର ଦାସଙ୍କ ଅଦ୍ୱୈତବାଦ ଚୌପଦୀ ଛାନ୍ଦ' (ସେପ୍ଟେମ୍ବର, ୧୯୫୫) ପ୍ରବନ୍ଧରେ ଏଇପରି ଏକ ଭ୍ରାନ୍ତିର ନିରାକରଣ କରାଯାଇଅଛି। କୁଜୀବର ମଠ ସାଧୁସୁନ୍ଦର ଦାସଙ୍କ ଦାର୍ଶନିକ ମତବାଦ ପ୍ରଖ୍ୟାପନପାଇଁ ଏକ ଅଦ୍ୱୈତବାଦ ଚୌପଦୀ ଛାନ୍ଦଟି ଏକମାତ୍ର ଆଧାର-ସ୍ତମ୍ଭ ରୂପେ ଯାହା ବହୁଳ ପ୍ରଚାରିତ ହୋଇ ଆସୁଥିଲା, ତାହାର ଅସାରତା ଓ ଅପ୍ରାସଙ୍ଗିକତା ଏଇ ପ୍ରବନ୍ଧରେ ପ୍ରତିପାଦିତ ହୋଇଅଛି। କାରଣ ସପ୍ତଦଶ ଶତାବ୍ଦୀର ହିନ୍ଦୀ ନିର୍ଗୁଣ ଧର୍ମ - ସଂପ୍ରଦାୟର ସନ୍ଥକବି ସୁନ୍ଦର ଦାସଙ୍କ ଏକ ବୃହତ୍ କବିତାର ଅଂଶବିଶେଷକୁ ହିଁ ଫକୀରମୋହନ ଅନୁବାଦ କରିଅଛନ୍ତି। ତେଣୁ କୁଜୀବର ମଠ ସାଧୁସୁନ୍ଦର ଦାସଙ୍କର ଏ କବିତା ସହିତ କୌଣସି ସମ୍ପର୍କ ସଂପୂର୍ଣ୍ଣ କଳ୍ପନାତୀତ। ଫକୀରମୋହନଙ୍କ 'ଉତ୍କଳ ଭ୍ରମଣ'(ନଭେମ୍ବର , ୧୯୫୬) ପ୍ରବନ୍ଧରେ 'ଉତ୍କଳ ଭ୍ରମଣ' ପୁସ୍ତକର ତିନିଟି ସଂସ୍କରଣ ପାଠରେ ଫକୀରମୋହନ କିପରି ପରିବର୍ତ୍ତନ ଓ ପରିବର୍ଦ୍ଧନ କରିଛନ୍ତି- ତାହା ଦେଖାଇଦେବା ସଙ୍ଗେ, ସାମସମୟିକ ସମାଜଚିତ୍ର ଓ ଫକୀରମୋହନଙ୍କ ଚାରିତ୍ରିକ ବୈଚିତ୍ର୍ୟ ପ୍ରାବନ୍ଧିକ ଉପସ୍ଥାପନ

କରିଛନ୍ତି। "ଫକରୀମୋହନଙ୍କ ପ୍ରଥମ କ୍ଷୁଦ୍ରଗଳ୍ପ' (ନଭେମ୍ବର, ୧୯୫୬), 'ରେବତୀ', 'ଗାରୁଡି ମନ୍ତ୍ର' (ଜାନୁୟାରୀ, ୧୯୫୬), 'ମାଧ ମହାନ୍ତିଙ୍କ କନ୍ୟାସୁନା' (ଏପ୍ରିଲ୍, ୧୯୫୬) ଓ ପରବର୍ତ୍ତୀ ସମୟରେ ରଚିତ 'ପେଟେଣ୍ଟ୍ ମେଡିସିନ୍ : ଏକ ଅଧ୍ୟୟନ' (ଜୁଲାଇ, ୧୯୭୭) -ଏଇ ଚାରୋଟି ଗଳ୍ପର ରଚନାକାଳ ଓ ତନ୍ନିହିତ ବିଷୟବସ୍ତୁର ସଂଘଟନର କାଳ ନିର୍ଣ୍ଣୟ କରି ସମାଲୋଚକ ସାମସମୟିକ ସାମାଜିକ ପରିବେଶ ଭିତରେ ଗଳ୍ପକଳାର ବୈଚିତ୍ର୍ୟ କିପରି ରୂପାୟିତ ହୋଇଅଛି, ତାହା ବିଶ୍ଳେଷଣ କରିଛନ୍ତି।

ଫକୀରମୋହନଙ୍କ ଚାରୋଟି ଉପନ୍ୟାସ ଓଡିଆ ସାହିତ୍ୟକୁ ବିଶିଷ୍ଟ ଅବଦାନ। ଦୀର୍ଘ ଦୁଇଶତ ବର୍ଷ (୧୭୨୦-୧୯୨୦) ର ସାମାଜିକ ପୃଷ୍ଠଭୂମି ଉପରେ ଉପନ୍ୟାସଗୁଡ଼ିକର ବିଷୟବସ୍ତୁ କିପରି ପରିକଳ୍ପିତ, ତାହା "ବ୍ୟାସକବି ଫକୀରମୋହନଙ୍କ ଉପନ୍ୟାସ' (ନଭେମ୍ବର ୧୯୫୫) ପ୍ରବନ୍ଧରେ, ଉପନ୍ୟାସରେ ଉଲ୍ଲିଖିତ ବିଭିନ୍ନ ସଂକେତ ସାହାଯ୍ୟରେ ପ୍ରତିପାଦନ କରାଯାଇଅଛି। 'ଛ'ମାଣ ଆଠଗୁଣ୍ଠ : ଏକ ଅଧ୍ୟୟନ' (ଜୁନ୍ ୧୯୫୬) ପ୍ରବନ୍ଧରେ ମଧ୍ୟ ଦେଖିବାକୁ ମିଳେ- ରାମଚନ୍ଦ୍ର ମଙ୍ଗରାଜଙ୍କ ଜନ୍ମଠାରୁ ମୃତ୍ୟୁ ପର୍ଯ୍ୟନ୍ତ ବର୍ଣ୍ଣିତ ବିଭିନ୍ନ ଘଟଣାର ସମୟ, ଯାହା ଅତତତ୍ର କେବଳ ସୂଚନାରେ ସ୍ଥାନ ପାଇଥିଲା, ତାହାପ୍ରତି ଦେଶର କୌଣସି ପାଠକ କେବେ ସଚେତନ ଥିଲେ ବୋଲି ବିଶ୍ୱାସ କରିହେଉନାହିଁ। 'କାଳ ଓ କଳା' (ଏପ୍ରିଲ୍ ୧୯୬୭) ପ୍ରବନ୍ଧରେ ସାମନ୍ତରାୟ ନିଜ ଗାଣିତିକ ବୁଦ୍ଧି ବଳରେ ସେସବୁ ଅତି ଦକ୍ଷତା ସହ ନିର୍ଣ୍ଣୟ କରିବାଦ୍ୱାରା ଉପନ୍ୟାସର ପୃଷ୍ଠଭୂମି ଅତିଶୟ ଉଜ୍ଜଳ ରୂପ ଧାରଣ କରିପାରିଛି। 'ଚାନ୍ଦମଣିର ଜନ୍ମକୁଣ୍ଡଳୀ' (ଜୁନ୍, ୧୯୫୬)ର ସମାଧାନ 'ମାମୁ' ଉପନ୍ୟାସର ଭିତ୍ତିଭୂମି ଅବବୋଧ ନିମିତ୍ତ ଉଦ୍ଦିଷ୍ଟ। ଇତିହାସ, ଇତିହାସ-ମୁଖୀ କଳ୍ପନା ଓ ଶୁଦ୍ଧ-କଳ୍ପନା 'ଲଛମା' ଉପନ୍ୟାସର ଏଇ ତିନିଟି ବିଶିଷ୍ଟ ଉପାଦାନର ବିଶଦ ବିଶ୍ଳେଷଣ ହେତୁ ଏଇ ଉପନ୍ୟାସର ଯଥାର୍ଥ ଅବବୋଧ ଦିଗରେ ଏକ ନୂତନ ମାର୍ଗ ପ୍ରସ୍ତୁତ କରାଯାଇଅଛି। (ଦେଖନ୍ତୁ, ଐତିହାସିକ ଉପନ୍ୟାସ ଲଛମା, ଏକ ଅଧ୍ୟୟନ, ଅକ୍ଟୋବର, ୧୯୮୦)। ବିଭିନ୍ନ ସଙ୍କେତ ସାହାଯ୍ୟରେ ଘଟଣା-ସଂଘଟନର ସମୟ ନିର୍ଦ୍ଧାରଣ ଓ ସାମାଜିକ-ରାଜନୀତିକ ପରିବେଶର ସମଧିକ ବିଶ୍ଳେଷଣ, ଏ ଉଭୟର ପରିଣତି ସ୍ୱରୂପ ଓ ଔପନ୍ୟାସିକ ଫକୀରମୋହନଙ୍କ ସୃଷ୍ଟି-ପ୍ରତିଭା ଏକ ଅଭିନବ ଦୀପ୍ତିରେ ଆମ ସମ୍ମୁଖରେ ଉଦ୍‌ଭାସିତ ହୋଇ ଉଠୁଅଛି। ପୁନଶ୍ଚ, "ଫକୀରମୋହନ ଉପନ୍ୟାସର ଗଦ୍ୟରୀତି' (ଫେବୃୟାରୀ, ୧୯୫୬) ଓ 'ସେନାପତି-ଉପନ୍ୟାସରେ ସଇତାନର ସ୍ୱରୂପ' (୧୯୫୭) ଏ ଦୁଇଟି ପ୍ରବନ୍ଧରେ ଫକୀରମୋହନଙ୍କ ଅନବଦ୍ୟ ଗଦ୍ୟରୀତିର ଉଦ୍‌ବର୍ତ୍ତନ-ଇତିହାସ ଓ ତୁଳନାତ୍ମକ ଭିତ୍ତିରେ ଚରିତ୍ରମାନଙ୍କ ଅନ୍ତର୍ନିହିତ ରସ-ଘନ-ରୂପ ପ୍ରଖ୍ୟାପିତ।

ସାମନ୍ତରାୟଙ୍କ ଗାଣିତିକ ବୁଦ୍ଧିର ସୂକ୍ଷ୍ମ ପ୍ରୟୋଗ କେତେକ ଛୋଟଛୋଟ ବାକ୍ୟ, ଏପରିକି ଗୋଟିଏ ଶବ୍ଦର ଆଶ୍ରୟରେ ଘଟଣା ବା ବିଷୟର ତୀକ୍ଷ୍ଣ ବିଶ୍ଳେଷଣ ଭିତରେ ସାର୍ଥକତା ଲାଭ କରିଛି। 'ଲୋ ରେବତୀ', ଲୋ ରେବି, ଲୋ ନିଆଁ, ଲୋ ଚୁଲି'ର ଆର୍ତ୍ତନାଦ ଭିତରେ ରେବତୀ ବୁଢ଼ୀ ମା'ର ଗହନ ମନର ବିଚିତ୍ର ଅନ୍ତର୍ଦ୍ୱନ୍ଦ୍ୱ ଚିତ୍ରିତ ହେଲାପରି, ନେତର 'ହଂମା' ଓ ମଙ୍ଗରାଜଙ୍କ 'ଏଁ' ଭିତରେ 'ଛ'ମାଣ ଆଠଗୁଣ୍ଠ'ର ସମସ୍ତ ବିଷୟ

ପ୍ରତିଧ୍ୱନିତ ହୋଇଉଠୁଛି। ମଗୁଆର ତେଲଙ୍ଗା ବଜାରରୁ ଉଦ୍ଧାର ହେବା ଘଟଣା ଭିତରେ ମଙ୍ଗରାଜଙ୍କ ଚାରିତ୍ରିକ ଦୁର୍ବଳତା କିମ୍ବା ପାଞ୍ଜିଆର ଭାସିଯାଉଥିବା 'ଗୁଜା' ରୁ ମଙ୍ଗରାଜଙ୍କ ଧନଲିପ୍‌ସା ତଥା ଜମିଦାର ହେବାର ସମୟ ନିର୍ଦ୍ଧାରଣ-ଏଇପରି କ୍ଷୁଦ୍ର କ୍ଷୁଦ୍ର ଘଟଣା ବା ବିଷୟକୁ ସୂକ୍ଷ୍ମ ଦୃଷ୍ଟିକୋଣରୁ ବିଚାରକରି ପ୍ରାବନ୍ଧିକ, ସେନାପତି-ସାହିତ୍ୟ ସଂପଦ ଅବବୋଧ ଦିଗରେ ସଂପୂର୍ଣ୍ଣ ଏକ ନବଦିଗନ୍ତ ଉନ୍ମୋଚନ କରିଦେଇଅଛନ୍ତି। ଫକୀରମୋହନ କହିଛନ୍ତି, ଖିଅମୁଣ୍ଡଟି ହାତରେ ପଡିଲେ ବୁଦ୍ଧିମାନ ତନ୍ତୀ ଯେମନ୍ତ ବିଡାଏ ସୂତା ସଲଖେ ସଲଖେ ଟାଣିଆଣେ, ଆମମାନଙ୍କୁ ସେହିପରି ବୁଦ୍ଧିମାନ ଜାଣିବ, ଟିକିଏ ସଙ୍କେତ ଦେଇ ସବୁକଥା ଆମମାନଙ୍କଠାରୁ ଶୁଣିଯାଅ।' କିନ୍ତୁ ସାମନ୍ତରାୟ ଉପନ୍ୟାସରେ ଦିଆଯାଇଥିବା ସମସ୍ତ ସଙ୍କଳନକୁ 'ଛ'ମାଣ ଆଠଗୁଣ୍ଠର ବିଷୟବସ୍ତୁ : ଏକ ସ୍ପଷ୍ଟୀକରଣ' (ଅକ୍ଟୋବର , ୧୯୭୧) ପ୍ରବନ୍ଧରେ ବିଶ୍ଳେଷଣ କରି ଅତ୍ରତତ୍ର ବିକ୍ଷିପ୍ତ ବିଷୟର ସଜ୍ଜୀକରଣ ଉପରେ ନୂତନ ଆଲୋକପାତ କରିଅଛନ୍ତି। ସମଗ୍ର ଓଡିଆ ସମାଲୋଚନା ସାହିତ୍ୟରେ ଗାଣିତିକ ବିଚାରବୁଦ୍ଧିଦ୍ୱାରା ନିୟନ୍ତ୍ରିତ ଏପରି ବିଚିତ୍ର ବିଶ୍ଳେଷଣ, ବୋଧହୁଏ ଏହାଙ୍କ ସମାଲୋଚନାରେ ଆମେ ପ୍ରଥମଥରପାଇଁ ଦେଖିବାକୁ ପାଉଛୁ।

'ଯୁଗପ୍ରବର୍ତ୍ତକ ସ୍ରଷ୍ଟା ରାଧାନାଥ' (୧୯୬୦) ପୁସ୍ତକରେ ଥିବା ୬ଟି ପ୍ରବନ୍ଧ ମଧ୍ୟରୁ 'ରାଧାନାଥ-ସାହିତ୍ୟ ଅଧ୍ୟୟନର ପୃଷ୍ଠଭୂମି', 'କେଦାରଗୌରୀ' ଓ 'ଯୁଗ ପ୍ରବର୍ତ୍ତକ ସ୍ରଷ୍ଟା ରାଧାନାଥ-ଏଇ ତିନିଟି ପ୍ରବନ୍ଧପୁସ୍ତକ ପ୍ରକାଶ ବେଳେ ଲିଖିତ ହୋଇଥିଲେହେଁ, ଅନ୍ୟ ତିନିଟି ପ୍ରବନ୍ଧ ଅର୍ଥାତ୍ 'ଚନ୍ଦ୍ରଭାଗା' (ନଭେମ୍ବର, ୧୯୫୮) 'ଦରବାର' (ଜୁନ୍ - ସେପ୍‌ଟେମ୍ବର, ୧୯୫୮) ଓ 'ରାଧାନାଥ-ସମାଲୋଚନାର ଆଦି ସ୍ୱରୂପ' (ଫେବୃୟାରୀ, ୧୯୫୭) ପତ୍ରିକାରେ ପ୍ରକାଶିତ ହୋଇଥିଲା। ଅନ୍ୟ ଏକ ପ୍ରବନ୍ଧ 'ଓଡିଆ ପାଠ୍ୟପୁସ୍ତକ ଓ କବିବର ରାଧାନାଥ' (ଏପ୍ରିଲ୍, ୧୯୫୬) ପୁସ୍ତକର ଦ୍ୱିତୀୟ ସଂସ୍କରଣରେ ସଂଯୋଜିତ। ଏଇ ସାତୋଟି ପ୍ରବନ୍ଧ ମଧ୍ୟରୁ ପ୍ରଥମ ତିନିଟିରେ ଆଧୁନିକ ଓଡିଆ ସାହିତ୍ୟର ଭିତ୍ତିଭୂମି ଉପରେ ପ୍ରତିଷ୍ଠିତ ରାଧାନାଥ-ସାହିତ୍ୟର ଗତି-ପ୍ରକୃତି ନିର୍ଦ୍ଧାରଣ, ମୋଟାମରଫସିସ୍‌ରୁ କେଦାର-ଗୌରୀ କାବ୍ୟର ବିଷୟବସ୍ତୁ ଆହରଣ ଓ ସାମସମୟିକ ସାହିତ୍ୟ କ୍ଷେତ୍ରରେ ରାଧାନାଥ-ସାହିତ୍ୟର ଭୂମିକା-ଏଇ ତିନି ରୂପରେ ଯେଉଁ ଆଲୋଚନା କରାଯାଇଅଛି, ତାହା ପାରମ୍ପରିକ ରାଧାନାଥ-ସାହିତ୍ୟାଲୋଚନାଠାରୁ ସମ୍ପୂର୍ଣ୍ଣ ଭିନ୍ନ ଓ ସ୍ୱତନ୍ତ୍ର। ଆଧୁନିକ ଓଡିଆ ସାହିତ୍ୟରେ ଗବେଷଣାରତ ଅଧ୍ୟାପକ ସାମନ୍ତରାୟ ନିଜ ସଂଗୃହୀତ ବିବିଧ ନୂତନ ଉପାଦାନ ସାହାଯ୍ୟରେ ସମୟର ପ୍ରାଣସ୍ପନ୍ଦନ ଭିତରୁ ରାଧାନାଥଙ୍କ ସୃଷ୍ଟି-ବୈଚିତ୍ର୍ୟ କିପରି ଫୁଟି ଉଠିଅଛି, ତାହା ହିଁ ଦେଖାଇଦେବାକୁ ଚେଷ୍ଟା କରିଅଛନ୍ତି। ପାଠ୍ୟପୁସ୍ତକ ଯୁଗରେ ରାଧାନାଥଙ୍କ ଶିକ୍ଷା-ପରିଦର୍ଶକର ଭାବମୂର୍ତ୍ତି, ସର୍ବଶେଷ ପ୍ରବନ୍ଧରେ ଚିତ୍ରିତ ହୋଇଅଛି। କବିଙ୍କ ମୌଳିକ ଦାନ ଓ ଶିଳ୍ପ କୌଶଳର ପରିଚୟ 'ଚନ୍ଦ୍ରଭାଗା' ଓ 'ଦରବାର' ପ୍ରବନ୍ଧେ ଦୁଇଟିରେ ଲିପିବଦ୍ଧ। ରାଧାନାଥଙ୍କ କାବ୍ୟ ବିଷୟବସ୍ତୁ ଓଭିଡଙ୍କ କାବ୍ୟାନୁସରଣର ପରିଣତି ମାତ୍ର-ଏପରି ଲଘୁ ଅଭିମତଦ୍ୱାରା ରାଧାନାଥ-ସାହିତ୍ୟର ଯେଉଁ ବିକୃତ ଆଲୋଚନା ଏ ଦେଶରେ ଦେଖା ଦେଇଥିଲା, ତା'ର ମୌନ ପ୍ରତିବାଦ ରୂପେ ସାମ୍ୟ-ବୈଷମ୍ୟ ଭିତ୍ତିରେ

'ମେଟାମରଫସିସ୍' ଓ 'ଚନ୍ଦ୍ରଭାଗା'ର ଏକ ତୁଳନାତ୍ମକ ଆଲୋଚନା କରି ସାମନ୍ତରାୟ ବ୍ୟତିକ୍ରମ, ପରିବର୍ତ୍ତନ ତଥା ନୂତନ ବିଷୟର ସଂଯୋଜକ ମାଧ୍ୟମରେ ରାଧାନାଥ ଅନୁସରଣକୁ କିପରି ଏକ ମୌଳିକ ସୃଷ୍ଟିରେ ରୂପାନ୍ତରିତ କରିପାରିଛନ୍ତି, ତାହା ଅତି ଦକ୍ଷତାର ସହ ଏଇ ପ୍ରବନ୍ଧରେ ପ୍ରତିଷ୍ଠିତ। ଯେଉଁ 'ମେଟାମରଫସିସ୍' ଥିଲା ସମାଲୋଚକମାନଙ୍କ ତୁଣ୍ଡର ଏକ ସହଜ ଅସ୍ତ୍ର, ରାଧାନାଥ-ସାହିତ୍ୟାଲୋଚନାବେଳେ ତାକୁ କେହି ଦେଖିଥିଲା ପରି ମନେହୁଏନାହିଁ। ଅପରପକ୍ଷରେ , ସାମନ୍ତରାୟ ମୌଳିକ ଉପାଦାନଗୁଡ଼ିକୁ ନିଜ ଆଲୋଚନାର ପ୍ରଧାନ ଭାରକେନ୍ଦ୍ର ରୂପେ ସ୍ୱୀକାର କରି ରାଧାନାଥ – ସାହିତ୍ୟ ଆଲୋଚନାର ଏକ ନୂତନ ମାର୍ଗ ଉନ୍ମୋଚନ କରିଦେଇଛନ୍ତି। 'ଦରବାର' ଏକ ଦୀର୍ଘ ପ୍ରବନ୍ଧ। ଯେଉଁ ପରିବେଶ ରାଧାନାଥଙ୍କୁ  ଏପରି ଏକ ବିଦ୍ରୂପାତ୍ମକ ଲେଖା ରଚନାପାଇଁ ମାନସିକ ଖାଦ୍ୟ ଯୋଗାଇଥିଲା, ସେଇ ପରିବେଶର ବିଶେଷ ବିଶ୍ଳେଷଣ ତଥା 'ଦରବାର' କାବ୍ୟର ବିଭିନ୍ନାଂଶରେ ଥିବା ଗଠନଶିଳ୍ପ ପର୍ଯ୍ୟାଲୋଚନା କରି ପ୍ରାବନ୍ଧିକ ଦରବାର କାବ୍ୟାନୁଶୀଳନ ଦିଗରେ ନୂତନ ପଦକ୍ଷେପ ନେଇଛନ୍ତି। ସ୍ଥୂଳତଃ, ରାଧାନାଥ – ସାହିତ୍ୟର ଯେଉଁ ଯେଉଁ ବିଭାଗ ସମାଲୋଚକମାନଙ୍କ ଦୃଷ୍ଟି ଆକର୍ଷଣ କରି ନଥିଲା, ତାହାରି ଉପରେ ପ୍ରାବନ୍ଧିକ ନୂତନ ଆଲୋକପାତ କରି ସ୍ରଷ୍ଟା ରାଧାନାଥଙ୍କୁ ସ୍ୱତନ୍ତ୍ର ଭାବମୂର୍ତ୍ତି ଅର୍ପଣ କରିଛନ୍ତି।

'ଗଳ୍ପ ନୁହେଁ ସମାଲୋଚନା' (୧୯୬୩) ପୁସ୍ତକରେ ଭକ୍ତକବି ମଧୁସୂଦନଙ୍କ ସାହିତ୍ୟ ଉପରେ ଦୁଇଟି ପ୍ରବନ୍ଧ 'ନବଯୁଗର ନବସମ୍ବାଦ' (ଅଗଷ୍ଟ ୧୯୫୫) ଓ 'ବର୍ଣ୍ଣବୋଧ' (ଏପ୍ରିଲ୍, ୧୯୫୬) ସ୍ଥାନ ପାଇଛନ୍ତି। ପରବର୍ତ୍ତୀ ସମୟରେ ଲିଖିତ, "ବର୍ଣ୍ଣବୋଧର ପରିଚୟ' (ଅଗଷ୍ଟ, ୧୯୭୨) 'ପ୍ରବନ୍ଧମାଳା' (ଅକ୍ଟୋବର, ୧୯୭୩) 'ଭକ୍ତକବି ମଧୁସୂଦନଙ୍କ ରଚନାର କାଳ ନିର୍ଣ୍ଣୟ' (ଜାନୁୟାରୀ, ୧୯୭୪), 'ମଧୁସୂଦନ ସାହିତ୍ୟରେ ବ୍ୟବହୃତ ଛନ୍ଦର ସ୍ୱରୂପ' (ଡିସେମ୍ବର, ୧୯୭୪) ଓ 'ମଧୁସୂଦନଙ୍କ ବର୍ଣ୍ଣବୋଧ କାହାର ?' (ନଭେମ୍ବର, ୧୯୭୮) ପ୍ରଭୃତି ପ୍ରବନ୍ଧରେ ଭକ୍ତକବିଙ୍କ ଅନାଲୋଚିତ ପୁସ୍ତକ ଓ ସାହିତ୍ୟ ଉପରେ ନୂତନ ଆଲୋକପାତ କରାଯାଇଅଛି। ଏଥିରୁ 'ବର୍ଣ୍ଣବୋଧ' ଓ 'ପ୍ରବନ୍ଧମାଳା'ର ଆଲୋଚନା ଏକାନ୍ତ ମୌଳିକ। 'ବର୍ଣ୍ଣବୋଧ' ଉପରେ ପ୍ରାବନ୍ଧିକ ଲେଖିଛନ୍ତି, "ଊନବିଂଶ ଶତାବ୍ଦୀରେ ରଚିତ ଓ ପ୍ରକାଶିତ ବିଭିନ୍ନ ବିଷୟକ ଶତ ଶତ ପାଠ୍ୟପୁସ୍ତକ ଅଧ୍ୟୟନ କରିବାର ସୁବିଧା ଆମେ ପାଇଛୁ। କିନ୍ତୁ ମଧୁବାବୁଙ୍କ ବର୍ଣ୍ଣବୋଧର ଆବିର୍ଭାବ ବୈଚିତ୍ର୍ୟ, ବିଷୟ-ଉପସ୍ଥାପନା-କୌଶଳ, ସେଥିରେ ଥିବା ଲେଖକଙ୍କର ଗଭୀର ଅନ୍ତର୍ଦୃଷ୍ଟି, ସେଥିରେ ରୂପାୟିତ ସମୟର ସାର୍ଥକ ପ୍ରାଣସ୍ପନ୍ଦନ ଆମେ ଅନ୍ୟ କୌଣସି ଓଡିଆ ପାଠ୍ୟପୁସ୍ତକରେ ଥିବାର ଅନୁଭବ କରିନାହୁଁ। ମଧୁବାବୁଙ୍କ ଅନ୍ୟ ଏକ ପାଠ୍ୟପୁସ୍ତକ 'ପ୍ରବନ୍ଧମାଳାର ପ୍ରକାଶ ଇତିହାସ', ଏହାର ଅନୁପମ ଗଦ୍ୟ ଓ ପରବର୍ତ୍ତୀ ଓଡିଆ ସାହିତ୍ୟ ଉପରେ ଏହାର ପ୍ରଭାବ 'ପ୍ରବନ୍ଧମାଳା' ପ୍ରବନ୍ଧରେ ଆଲୋଚିତ ହୋଇଅଛି।

'ଗଳ୍ପ ନୁହେଁ ସମାଲୋଚନା' ପୁସ୍ତକରୁ ପ୍ରବନ୍ଧଗୁଡିକ ପ୍ରାବନ୍ଧିକଙ୍କ ବିଶ୍ରାମକାଳୀନ ହାଲୁକା ମନର ପରିପ୍ରକାଶ ରୂପେ ପ୍ରତିଭାତ ହେଉଥିଲେ ହେଁ ସେଥିରେ ଥିବା ଆଲୋଚନାର ନୂତନତା ଓ ଗଭୀରତା, ବିଷୟ ପରିକଳ୍ପନା ଓ ଉପସ୍ଥାପନା ମୌଳିକତା ଆଦୌ ଉପେକ୍ଷଣୀୟ

ନୁହେଁ। ଏଇ ପ୍ରବନ୍ଧଗୁଡ଼ିକ ମଧ୍ୟରୁ 'ରାଧାନାଥ ସାହିତ୍ୟରେ ନାରୀ ଚରିତ୍ର' (ଜାନୁୟାରୀ, ୧୯୫୦) 'ଧରଣୀଧର ଓ ମୁଁ ଚଷାପୁଅ' (ଏପ୍ରିଲ, ୧୯୫୭) 'ନେତ୍ରମଣିର ଡାଇରୀ' (ମେ, ୧୯୫୮) 'ଗଳ୍ପ ନୁହେଁ ସମାଲୋଚନା' (ସେପ୍ଟେମ୍ବର, ୧୯୫୯) ଓ ପରବର୍ତ୍ତୀ ସମୟରେ ଲିଖିତ 'ପାଗଳ ଭଗିଆର ଜମାନବନ୍ଦୀ' (ଅକ୍ଟୋବର, ୧୯୭୨) 'ମୁଁ କିପରି ଗବେଷଣା କଲି' (ଫେବୃୟାରୀ, ୧୯୭୩) ଓ 'ମୁଁ ଡକ୍ଟର ମହତାବ' (ନଭେମ୍ବର, ୧୯୮୦) ପ୍ରଭୃତି ପ୍ରବନ୍ଧର ସୃଷ୍ଟି-ପରିକଳ୍ପନା ଓ ରୂପାୟନ କୌଶଳ ସମ୍ପୂର୍ଣ୍ଣ ନୂତନ। ଚରିତ୍ରମାନଙ୍କ ପାରସ୍ପରିକ କଥୋପକଥନ କିମ୍ବା ପୁସ୍ତକନିହିତ କୌଣସି ଚରିତ୍ର ମୁଖରେ ଆତ୍ମକଥନ- ଏହିପରି ଅଭିବ୍ୟକ୍ତି ମାଧ୍ୟମରେ ଲିଖିତ ଏଇ ପ୍ରବନ୍ଧଗୁଡିକ ସମାଲୋଚନାକୁ ଅଧିକ ବୋଧଗମ୍ୟ ଓ ଲୋକପ୍ରିୟ କରିବାପାଇଁ ପରିକଳ୍ପିତ। ସାମନ୍ତରାୟଙ୍କ ଆଲୋଚନାରେ ଏପରି ଆଭିମୁଖ୍ୟ, ଓଡିଆ ସମାଲୋଚନା ସାହିତ୍ୟରେ ଏକ ନୂତନ ପରୀକ୍ଷା।

ଆଧୁନିକ ଓଡିଆ – ସାହିତ୍ୟ ଅନୁଶୀଳନ ଦିଗରେ ତା'ର ଭିତ୍ତିଭୂମି, ଅର୍ଥାତ୍ ପୃଷ୍ଠଭୂମି ପର୍ଯ୍ୟାଲୋଚନା ଅପରିହାର୍ଯ୍ୟ ଆବଶ୍ୟକତା। ସାହିତ୍ୟାନୁଶୀଳନର ଏପରି ଆବଶ୍ୟକତା ଉପରେ ସାମନ୍ତରାୟଙ୍କ ଅଖଣ୍ଡ ବିଶ୍ୱାସ ଥିବାରୁ, ବିଭିନ୍ନ ସମୟରେ ସେ ଏଇ ସମ୍ପର୍କରେ କେତେକ ପ୍ରବନ୍ଧ ଲେଖିବାକୁ ବାଧ ହୋଇଛନ୍ତି। ଏସବୁ 'ଆଧୁନିକ ଓଡିଆ ସାହିତ୍ୟର ଭିତ୍ତିଭୂମି' (୧୯୭୪) ଓ 'ଆଧୁନିକ ଓଡିଆ ସାହିତ୍ୟ ବିକାଶର ପୃଷ୍ଠଭୂମି' (୧୯୭୯) ନାମକ ଦୁଇଟି ପୁସ୍ତକରେ ସଂଗୃହୀତ ହୋଇଛନ୍ତି। ଆଧୁନିକ ସାହିତ୍ୟର ଯେଉଁ ଯେଉଁ ବିଭାଗଗୁଡ଼ିକ ଉପରେ ପ୍ରାବନ୍ଧିକ ଦୃଷ୍ଟିନିକ୍ଷେପ କରିଛନ୍ତି, ତା'ର ପରିଚୟ ନିମ୍ନରେ ଦିଆଯାଉଛି।

ଆଧୁନିକ ଶିକ୍ଷା ଆଧୁନିକ ସାହିତ୍ୟ - ବିକାଶର ଆଦିପୀଠ ବା ମୌଳିକ ଭିତ୍ତିଭୂମି। ଏଇ ଭିତ୍ତି ଉପରେ ପ୍ରତିଷ୍ଠିତ ହୋଇଛି ଆଧୁନିକ ପାଠ୍ୟପୁସ୍ତକ। ପାଠ୍ୟପୁସ୍ତକ ସାହାଯ୍ୟରେ ଯେଉଁ ଆଧୁନିକ ଶିକ୍ଷିତ ଶ୍ରେଣୀ ସମୟକ୍ରମେ ଦେଶରେ ଅଭ୍ୟୁଦୟ ଲାଭ କରିଛି, ଆଧୁନିକ ସାହିତ୍ୟ ହେଉଛି ସେଇ ଶିକ୍ଷିତଶ୍ରେଣୀ ଓ ତା' ମନର ଏକ ସାରସ୍ୱତ ପରିପ୍ରକାଶ ମାତ୍ର। ଆଧୁନିକ ଶିକ୍ଷା ଦେଶରେ କିପରି ପ୍ରଚାରିତ ହୋଇ ପରିଶେଷରେ ସାହିତ୍ୟ ଅଭ୍ୟୁଦୟର ଏକ ପ୍ରଧାନ କାରଣ ହୋଇଥିଲା, ତାହାର ପରିଚୟ 'ଆଧୁନିକ ଓଡିଆ ସାହିତ୍ୟ ଓ ବାଲେଶ୍ୱର' (ଅକ୍ଟୋବର , ୧୯୫୭), 'ଅନୁଗୋଳରେ ଆଧୁନିକ ଶିକ୍ଷା ପ୍ରସାରର ଆଦି ଇତିହାସ' (ଜୁଲାଇ, ୧୯୫୯) ଓ 'ରେଭେନ୍ସା କଲେଜ' (ମେ, ୧୯୫୭) ପ୍ରବନ୍ଧଗୁଡ଼ିକରେ ଆଲୋଚିତ ହୋଇଅଛି। 'ପ୍ରଥମ ଯୁଗର ଓଡିଆ ପାଠ୍ୟପୁସ୍ତକ : ଅଭିଧାନ' (ଏପ୍ରିଲ୍, ୧୯୭୧), 'ଆଧୁନିକ ଓଡିଆ ସାହିତ୍ୟର ଇତିହାସରେ ମିଶନାରୀ ଆମସ୍ ସଟନ' (ସେପ୍ଟେମ୍ବର - ଅକ୍ଟୋବର, ୧୯୭୧), 'ଓଡିଆ ଭାଷା ଓ ଓଡିଶାର କମିଶନର' (ଡିସେମ୍ବର, ୧୯୭୧)- ଏଇ ପାଞ୍ଚଟି ପ୍ରବନ୍ଧ ପାଠ୍ୟପୁସ୍ତକ ଆଦିଯୁଗର ମିଶନାରୀମାନଙ୍କ ଭୂମିକା ଓ ଓଡିଶା କମିଶନରମାନଙ୍କ ଏ ଦିଗରେ ସମସ୍ତ ଆନ୍ତରିକ ଉଦ୍ୟମର ଚିତ୍ରଣ ପାଇଁ ଉଦ୍ଦିଷ୍ଟ। ୧୮୭୦ ସାଲର ପରବର୍ତ୍ତୀ ସମୟରେ ଲିଖିତ ପାଠ୍ୟପୁସ୍ତକ ପରିଚୟ 'ଓଡିଆ ପାଠ୍ୟପୁସ୍ତକ ଓ କବିବର ରାଧାନାଥ' (ଏପ୍ରିଲ୍, ୧୯୫୬) ଓ 'ମଧୁବାବୁଙ୍କ ବର୍ଣ୍ଣବୋଧ

କାହାର ?' (ନଭେମ୍ବର, ୧୯୭୮) ପ୍ରବନ୍ଧ ଦୁଇଟିରେ ଦେଖିବାକୁ ମିଳେ। ଆଧୁନିକ ଶିକ୍ଷାୟତନ ଓ ପାଠ୍ୟପୁସ୍ତକ ଯେଉଁ ଶିକ୍ଷିତ ଶ୍ରେଣୀକୁ ସୃଷ୍ଟି କରିଥିଲା, ସାହିତ୍ୟ କ୍ଷେତ୍ରରେ ତା'ର ଅବଦାନ ଯାହା ଥିଲା, ତାହା 'ଆଧୁନିକ ଓଡିଆ ସାହିତ୍ୟର ଇତିହାସ, (ଜାନୁୟାରୀ ୧୯୫୮) ପ୍ରବନ୍ଧରେ ଆଲୋଚିତ ହୋଇଅଛି। ୧୮୭୦ ସାଲ ପରେ ଯେଉଁ ପତ୍ରପତ୍ରିକାକୁ ଅବଲମ୍ବନ କରି ଆଧୁନିକ ସାହିତ୍ୟ ବିକାଶ ଲାଭ କରିବାର ସୁବିଧା ପାଇଥିଲା, 'ଉତ୍କଳ ପତ୍ରିକା : ଉନବିଂଶ ଶତାବ୍ଦୀ' (ସେପ୍ଟେମ୍ବର ୧୯୫୯) ପ୍ରବନ୍ଧରେ ସେଇ ପତ୍ରିକାଗୁଡିକର ସଠିକ୍ ପ୍ରକାଶସମୟ ଓ ଏଗୁଡିକୁ ପ୍ରକାଶ କରୁଥିବା ମୁଦ୍ରଣ ଶିଳ୍ପ, ପ୍ରମାଦମୁକ୍ତ ଏ ଉଭୟର ଚିତ୍ର ଦେଖିବାକୁ ମିଳେ। ପୁନଶ୍ଚ 'ଆଧୁନିକ ସାହିତ୍ୟକୁ ବିଲୁପ୍ତ ପତ୍ରିକାର ଦାନ' (ଜାନୁୟାରୀ, ୧୯୬୧) ପ୍ରବନ୍ଧରେ ଏଇ ପତ୍ରିକାଗୁଡିକର ଭୂମିକା ଆଲୋଚିତ ହୋଇଅଛି। ଏ ଆଲୋଚନାର ଏକ ଏକ ପୂର୍ଣ୍ଣଚିତ୍ର ଆମେ ନିମ୍ନଲିଖିତ ପ୍ରବନ୍ଧଗୁଡିକରେ ମଧ୍ୟ ଦେଖିବାକୁ ପାଉ, ଯଥା - (କ) ଉନବିଂଶ ଶତାବ୍ଦୀ ଓ ସମ୍ବଲପୁର ହିତୈଷିଣୀ (ଏପ୍ରିଲ, ୧୯୫୯), (ଖ) 'ଉତ୍କଳର ମାସିକ ସାହିତ୍ୟ ପତ୍ରିକା : ଉତ୍କଳ ଦର୍ପଣ' (ଜୁନ୍, ୧୯୭୧) ଓ (ଗ) 'ଆଚାର୍ଯ୍ୟ ପ୍ୟାରୀମୋହନ ଓ ଉତ୍କଳପୁତ୍ର' (ଜୁଲାଇ ୧୯୭୬)।

ଆଧୁନିକ ଓଡିଆ ସାହିତ୍ୟର ଅଭ୍ୟୁଦୟ ପରେ ଯେଉଁ କେତୋଟି ବିଶିଷ୍ଟ ଆଙ୍ଗିକ ଆଧୁନିକ କବିତାରେ ପରୀକ୍ଷିତ, ସେଥିରୁ କେତେକ ଆଙ୍ଗିକ ଉପରେ ମଧ୍ୟ ପ୍ରାବନ୍ଧିକ ଆଲୋଚନା କରିଛନ୍ତି। ଯଥା - (କ) କବିତାର ଯତି ଓ ଉପଧା ହେଉଛି ଏକ ଏକ ସାଧାରଣ ଆଙ୍ଗିକ। ଛନ୍ଦ ଓ ସଙ୍ଗୀତଧର୍ମୀ ପ୍ରାଚୀନ ଓଡିଆ କାବ୍ୟକବିତାରେ ଏ ଦୁଇଟି ଆଙ୍ଗିକର ଆବଶ୍ୟକତା ବିଶେଷ ଅନୁଭୂତ ହେଉ ନଥିଲେ ହେଁ, ଦର୍ଶନ ଓ ପଠନ - ଧର୍ମୀ ଆଧୁନିକ କବିତାରେ ଏହାର ଉପାଦେୟତା ଅସ୍ୱୀକାର କରାଯାଇନପାରେ। (ଖ) ସନେଟ୍ ବା ଚତୁର୍ଦ୍ଦଶପଦୀ କବିତା ଓ ଅମିତ୍ରାକ୍ଷର ଛନ୍ଦ ଅନ୍ୟ ଏକ ଏକ ନୂତନ ଆଙ୍ଗିକ। (ଗ) ଅକ୍ଷରପ୍ରଧାନ ପ୍ରାଚୀନ କବିତାରେ ମାତ୍ରାନୁସୃତ କବିତାର ଏକାନ୍ତ ଅଭାବ ନଥିଲେ ହେଁ ଓଡିଆ ଛନ୍ଦ-ସାହିତ୍ୟର ପରଂପରାରେ ମାତ୍ରାବୃତ୍ତ ଛନ୍ଦ ସାମାନ୍ୟତମ ସମ୍ମାନ ଲାଭ କରିନଥିଲା। ଆଧୁନିକ ମାତ୍ରାବୃତ୍ତ ଛନ୍ଦ ୧୯୧୦-୨୦ ସାଲ ଭିତରେ ପ୍ରଥମେ କେବଳ ପରୀକ୍ଷା ମଧ୍ୟରେ ଗତିକରି ସବୁଜ ଓ ସବୁଜ-ପର କବିମାନଙ୍କ ହସ୍ତରେ ପରିପୂର୍ଣ୍ଣ ରୂପ ଲାଭ କରିଥିବାର ଅନୁଭୂତ ହୁଏ। ଏପରି କେତେକ ବିଶିଷ୍ଟ ଆଙ୍ଗିକ ସ୍ୱରୂପ ଓ ଓଡିଆରେ ସେମାନଙ୍କ ପ୍ରଥମ ପ୍ରୟୋଗର ଇତିହାସ ଜାଣିବା ପାଇଁ 'ଉପଧା ଇତିହାସ' (ନଭେମ୍ବର-ଡିସେମ୍ବର, ୧୯୫୯), 'ଓଡିଆ ସାହିତ୍ୟରେ ଅମିତ୍ରାକ୍ଷର ଛନ୍ଦର ପ୍ରଥମ ପ୍ରବର୍ତ୍ତନ' (ଅକ୍ଟୋବର-୧୯୬୧) ଏବଂ 'ମାତ୍ରାବୃତ୍ତ ଛନ୍ଦ ଓ ଓଡିଆ କବିତା' (ଡିସେମ୍ବର, ୧୯୫୩) ପ୍ରବନ୍ଧ ପ୍ରସ୍ତୁତ କରାଯାଇଛି।

ସଂସ୍କାର ଓ ଜାତୀୟବାଦ ଆଧୁନିକ ଓଡିଆ ସାହିତ୍ୟରେ ଏକ ଏକ ପ୍ରଧାନ ଅନ୍ତଃସ୍ୱର। ଆକାର ଓ ଉପାଦେୟତା ଦୃଷ୍ଟିରୁ ଆଧୁନିକ ସାହିତ୍ୟ ଏ ଉଭୟ ସ୍ୱରସଂପଦଦ୍ୱାରା ସୁସମୃଦ୍ଧ। ଏ ଉଭୟ ଭାବର ଇତିହାସ ଓ ବିକାଶଧାରାର ଏକ ଏକ ବିଶଦ ଚିତ୍ର ଯଥାକ୍ରମେ 'ସଂସ୍କାରକ ଶ୍ରୀ ନୀଳକଣ୍ଠ' (ଅଗଷ୍ଟ, ୧୯୫୯) ଓ 'ଜାତୀୟଚେତନା ଓ ଓଡିଶାରେ

କଂଗ୍ରେସ ପ୍ରତିଷ୍ଠାର ପ୍ରଥମ ପର୍ଯ୍ୟାୟ' (ଜୁଲାଇ, ୧୯୫୬), ବିଶେଷତଃ 'ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନର ସଂକ୍ଷିପ୍ତ ପରିଚୟ' (ଏପ୍ରିଲ, ୧୯୭୫) ପ୍ରବନ୍ଧରେ ଉପଲବ୍ଧ। ୧୯୩୪ ସାଲ ପରେ ଓଡିଶାରେ ମାର୍କସୀୟ ଚିନ୍ତା ବହୁଳ ପ୍ରଚାରିତ ହେବା ଫଳରେ, ଓଡିଆ ସାହିତ୍ୟର ଅନ୍ତଃସ୍ୱରରେ ଯେଉଁ ପରିବର୍ତ୍ତନ ସଂଘଟିତ ହୋଇ ପରବର୍ତ୍ତୀ ସମୟ ସମଗ୍ର ଓଡିଆ ସାହିତ୍ୟର ଚିନ୍ତା ଓ ଚେତନାକୁ ଗଭୀର ଭାବେ ପ୍ରଭାବିତ କରିପାରିଥିଲା, ତା'ର ଏକ ସ୍ପଷ୍ଟ ଚିତ୍ର 'ଓଡିଆ ପ୍ରଗତିଶୀଳ ସାହିତ୍ୟର ଇତିହାସ' (ଅକ୍ଟୋବର - ନଭେମ୍ବର, ୧୯୫୬) ପ୍ରବନ୍ଧରେ ଲିପିବଦ୍ଧ ହୋଇଅଛି। ଆଧୁନିକ ସମାଲୋଚନା-ସାହିତ୍ୟର ସ୍ୱରୂପ, ମାନଦଣ୍ଡ, ସମାଲୋଚକ ଓ ସେମାନଙ୍କ ସମାଲୋଚନାର ପରିଚୟ ଜାଣିବା ଦିଗରେ 'ସ୍ୱାଧୀନତା ପୂର୍ବବର୍ତ୍ତୀ ଓଡିଆ ସମାଲୋଚନା ସାହିତ୍ୟ' (ଅଗଷ୍ଟ, ୧୯୫୬) ପ୍ରବନ୍ଧ ସାଧାରଣ ପାଠକଙ୍କୁ ବହୁ ସାହାଯ୍ୟ କରିଥାଏ।

ସାହିତ୍ୟର ଭିତ୍ତିଭୂମି ସମ୍ପର୍କୀୟ ଏଇ ପ୍ରବନ୍ଧଗୁଡିକ ସର୍ବାଂଶରେ ତଥ୍ୟସର୍ବସ୍ୱ ଓ ଇତିହାସମୁଖୀ, ଆକାର-ବିଚାରରେ ମଧ୍ୟ ଏଗୁଡିକ ଅତିଶୟ ଦୀର୍ଘ। ବିବିଧ ଉପାଦାନରେ ପରିକଳ୍ପିତ ଲେଖାଗୁଡିକ ସାଧାରଣ ପାଠକ ନିକଟରେ ସୁଖପାଠ୍ୟ ନ ହେବାର ଯଥେଷ୍ଟ ଆଶଙ୍କା ଅଛି, କିନ୍ତୁ ସାହିତ୍ୟ ବିକାଶର ଆଦିପରିଚୟ ଲାଭ ଦିଗରେ ଗବେଷଣାତ୍ମକ ପ୍ରବନ୍ଧଗୁଡିକ ଯେ ଏକାନ୍ତ ଅପରିହାର୍ଯ୍ୟ, ତାହା ଅସ୍ୱୀକାର କରାଯାଇନପାରେ। ଏଥିରେ ପ୍ରାବନ୍ଧିକଙ୍କ ଉପାଦାନ ଆହରଣପାଇଁ ଅସୀମ ଧୈର୍ଯ୍ୟ, ସହନଶୀଳତା ଓ ଅଧ୍ୟବସାୟ ପ୍ରକଟିତ ହେବା ସଙ୍ଗେ ସଙ୍ଗେ ବିଷୟ-ନିର୍ବାଚନର ସମୀଚୀନତା, କାଳାନୁକ୍ରମିକ ଉପାଦାନ ସଜ୍ଜୀକରଣର ଯୌକ୍ତିକତା, ବିଷୟ ଅନୁଶୀଳନ ଓ ବ୍ୟାଖ୍ୟା ପ୍ରଦାନ କୁଶଳତା, ସର୍ବୋପରି ସୂକ୍ଷ୍ମ ଦୃଷ୍ଟିକୋଣ ସ୍ୱତଃ ଅଭିବ୍ୟଞ୍ଜିତ ହୋଇଉଠୁଛନ୍ତି। ଅତୀତ ସହିତ ଗଭୀର ଆନ୍ତରିକ ଆତ୍ମନିମଜ୍ଜନ ହେତୁ ତାଙ୍କ ଆଖିରେ ଅତୀତ ଥିଲା ନିତ୍ୟ ବର୍ତ୍ତମାନ, ଫଳରେ ଯତ୍ରତତ୍ର ବିକ୍ଷିପ୍ତ ପ୍ରାଣହୀନ ଉପାଦାନ ଭିତରୁ ଏକଏକ ପ୍ରାଣବନ୍ତ ରୂପ ଅନୁଭବ କରିବା ପାଠକ ପକ୍ଷରେ ସମ୍ଭବ ହୋଇଥାଏ। 'ଭିତ୍ତିଭୂମି' ର ପ୍ରବନ୍ଧ ଜଣେ ପରିପକ୍ୱ ବିଦ୍ୱାଣୀମନର ପରିପୂର୍ଣ୍ଣ ପରିପ୍ରକାଶ ବୋଲି ବିଶ୍ୱାସ ହୁଏ।

**ସ୍ୱତନ୍ତ୍ର ପୁସ୍ତକାବଳୀର ସଂକ୍ଷିପ୍ତ ପରିଚୟ**

୧୯୫୯ ସାଲ ସୁଦ୍ଧା ଅଧ୍ୟାପକ ସାମନ୍ତରାୟଙ୍କ ଅଧ୍ୟବସାୟ - ପ୍ରସୂତ ସଂଗୃହୀତ ଉପାଦାନ ଓ ସେଗୁଡିକର ବ୍ୟାଖ୍ୟା ଓ ବିଶ୍ଳେଷଣ, ବିଷୟ- ଅନୁପ୍ରବେଶଜନିତ ତିର୍ଯ୍ୟକ ଦୃଷ୍ଟିଭଙ୍ଗୀ ଓ ବିଷୟ - ସଜ୍ଜୀକରଣର ଅପୂର୍ବ ସଫଳତା ବିଚାର କଲେ, 'ଆଧୁନିକ ଓଡିଆ ସାହିତ୍ୟର ଦିଗଦର୍ଶନ (୧୯୫୯) ପରି ଏକ କ୍ଷୁଦ୍ର ପୁସ୍ତକ ଅଳ୍ପ ସମୟ ମଧ୍ୟରେ ପ୍ରସ୍ତୁତ କରିଦେବା ଆଦୌ ଅସମ୍ଭବ କିମ୍ବା ଅସ୍ୱାଭାବିକ ବ୍ୟାପର ନୁହେଁ। ଆଲୋଚ୍ୟ ପୁସ୍ତକଟି ତାଙ୍କର ପ୍ରସ୍ତାବିତ 'ଓଡିଆ ସାହିତ୍ୟର ଇତିହାସ' ପୁସ୍ତକର ସ୍ୱରୂପ ଉପରେ ସାମାନ୍ୟ ଧାରଣା ପ୍ରଦାନ କରିଥାଏ ମାତ୍ର। କଟକରୁ ବଦଳି ହେବା ପରେ ପରେ ସେହିପରି ଅଳ୍ପ ସମୟ ମଧ୍ୟରେ 'ଗଙ୍ଗାଧର ସାହିତ୍ୟ ସମୀକ୍ଷା'(ମାର୍ଚ୍ଚ, ୧୯୬୦) ଓ 'ରାଧାନାଥ ଓ ଚିଲିକା କାବ୍ୟ'( ସେପ୍ଟେମ୍ବର , ୧୯୬୦) ପୁସ୍ତକ ଦୁଇଟି ସେ ଲେଖିଥିଲେ। କାଳାନୁକ୍ରମିକ

ରଚନାର ଅନ୍ତର୍ନିହିତ କାବ୍ୟ- କୌଶଳ ଓ ସୃଷ୍ଟି-ସୌନ୍ଦର୍ଯ୍ୟ-ମାନଦଣ୍ଡରେ କବି-ପ୍ରତିଭାର କ୍ରମ-ବିକାଶ ପର୍ଯ୍ୟାଲୋଚନା- ଏ ଉଭୟ ଉପରେ ପ୍ରାଧାନ୍ୟ ଦେବା ହିଁ 'ଗଙ୍ଗାଧର ସାହିତ୍ୟ-ସମୀକ୍ଷା'ର ବୈଶିଷ୍ଟ୍ୟ। ସାହିତ୍ୟ ଇତିହାସର ବୃହତ୍ତର ପରିଧି ଭିତରେ ଉଦ୍‌ଭାସିତ ମେହେର-ପ୍ରତିଭାର ଅମଳିନ ଜ୍ୟୋତି ଏପରି ଆଲୋଚନାଦ୍ୱାରା ଅଧିକ ପରିସ୍ଫୁଟ, ଅଧିକ ମହିମା-ବିମଣ୍ଡିତ ହୋଇପାରିଛି ବୋଲି ବିଶ୍ୱାସ ହୁଏ। "ପାରିଲେଣି ଏବେ ଦେବ ବିକର୍ତ୍ତନ"ରେ ଥିବା ସମୟଜ୍ଞାପକ "ଏବେ" ଶବ୍ଦର ପ୍ରୟୋଗବିଧିଠାରେ ଚିଲିକା-ପରିକଳ୍ପନାର ଯଥାର୍ଥ ପ୍ରାଣପିଣ୍ଡ ଅଥବା ଭାରକେନ୍ଦ୍ର ନିରୀକ୍ଷଣ କରି କେବଳ ଛଅଘଣ୍ଟା (କୌଣସି ଦିନର ମଧ୍ୟାହ୍ନ ଦୁଇଟାଠାରୁ ରାତି ଆଠଟ ପର୍ଯ୍ୟନ୍ତ) ସମୟସୀମା ଭିତରେ ଏ କାବ୍ୟର ସମସ୍ତ ବିଷୟବସ୍ତୁ କିପରି ସଜ୍ଜିତ ହୋଇଅଛି, ତାହା ପ୍ରାବନ୍ଧିକ ଦେଖାଇ ଦେଇ 'ଚିଲିକା' କାବ୍ୟକୁ ସଂପୂର୍ଣ୍ଣ ଏକ ନୂତନ ଧାରାରେ ଅଧ୍ୟୟନ କରିବାପାଇଁ ଯଥେଷ୍ଟ ମାନସିକ ଖାଦ୍ୟ ଯୋଗାଇ ଦେଇଛନ୍ତି।

ଏଇ ତିନୋଟି ରଚନା ପରେ ଅଧ୍ୟାପକ ସାମନ୍ତରାୟଙ୍କ ଦୀର୍ଘ ସାଧନାର ଫଳ "ଓଡ଼ିଆ ସାହିତ୍ୟ ଇତିହାସ" (୧୮୦୩-୧୯୨୦) ପୁସ୍ତକ ଆତ୍ମପ୍ରକାଶ କରେ। ଏହା ଉପରେ ବର୍ତ୍ତମାନ କିଛି ଆଲୋଚନା କରାଯାଉଅଛି।

'ଓଡ଼ିଅ ସାହିତ୍ୟର ଇତିହାସ' ବହୁ ପରିଶ୍ରମଲବ୍‌ଧ ଏକ ମହତ୍ତ୍ୱପୂର୍ଣ୍ଣ ଗବେଷଣାତ୍ମକ ଗ୍ରନ୍ଥ। ଦୀର୍ଘ ଏକଶତ ବର୍ଷ ଧରି ଯେଉଁ ସାହିତ୍ୟ ଏକ ବୈଜ୍ଞାନିକ ବିଚାର-ପଦ୍ଧତିରେ ପୂର୍ଣ୍ଣ ନିୟନ୍ତ୍ରିତ ଓ ଅବଧାରିତ ହୋଇ ସାମନ୍ତରାୟଙ୍କ ଅନନ୍ୟ ସାଧାରଣ ସାଧନା ଓ ଗଭୀର ତପସ୍ୟାର ଏକ ଅକ୍ଷୟ ସାରସ୍ୱତ ବିଭବ, ଏଇ ଆଲୋଚ୍ୟ ପୁସ୍ତକରୂପେ ସମାଲୋଚନା - ସାହିତ୍ୟର ଆତ୍ମପ୍ରକାଶ କରିଥିଲା। "ଓଡ଼ିଶାର ରାଜନୀତିକ, ସାମାଜିକ ଓ ଧର୍ମଗତ ଜୀବନଧାରା", "ଆଧୁନିକ ଶିକ୍ଷାର ପ୍ରସାର ଓ ତା'ର ପରିଣତି", "ଆଧୁନିକ ପାଠ୍ୟପୁସ୍ତକ ଏକ ନୂତନ ଯୁବଶକ୍ତିର ଅଭ୍ୟୁଦୟ", "ଓଡ଼ିଆ ଭାଷା - ବିଲୋପ ଆନ୍ଦୋଳନରେ ଯୁବଶକ୍ତିର ଭୂମିକା" ଆଧୁନିକ ଓଡ଼ିଆ ସାହିତ୍ୟର ପୃଷ୍ଠଭୂମି ବିଶ୍ଳେଷଣ ପାଇଁ ପାଞ୍ଚଟି ପରିଚ୍ଛେଦ ଆଲୋଚ୍ୟ ପୁସ୍ତକରେ ପ୍ରଥମେ ସ୍ଥାନ ପାଇଛି। ଶେଷ ଛ'ଟି ପରିଚ୍ଛେଦରେ ରାଧାନାଥ-ମଧୁସୂଦନ-ଫକୀରମୋହନ ସାହିତ୍ୟର ମୂଲ୍ୟାଙ୍କନ ସହ ଆଧୁନିକ ନାଟକ-ଗଦ୍ୟ-ପଦ୍ୟ ସାହିତ୍ୟର ସ୍ୱରୂପ ଉପସ୍ଥାପିତ ହୋଇଅଛି। ଷଷ୍ଠ ପରିଚ୍ଛେଦ ଏ ଉଭୟ ବିଭାଗ ମଧ୍ୟରେ (ପୃଷ୍ଠଭୂମି ଓ ସାହିତ୍ୟର ସମୀକ୍ଷା ) ଏକ ଯୋଗସୂତ୍ର ରୂପେ ପରିକଳ୍ପିତ। ଅନ୍ତିମ ତ୍ରୟୋଦଶ ପରିଚ୍ଛେଦ ସମସ୍ତ ପୁସ୍ତକ ପରିକଳ୍ପନାର 'ଇତିଶ୍ରୀ' ମାତ୍ର।

ପୂର୍ବଲିଖିତ ପ୍ରତ୍ୟେକ ପରିଚ୍ଛେଦର ଗଠନଶିଳ୍ପ ସମଗ୍ର ପୁସ୍ତକ ପରିକଳ୍ପନାର ସଂପୂର୍ଣ୍ଣ ଅନୁସରଣ କରିଅଛି। ପ୍ରତ୍ୟେକ ପରିଚ୍ଛେଦର ପ୍ରାକ୍‌ଭାଗରେ ବର୍ଣ୍ଣିତ ବିଷୟର ଯେଉଁ ସୂଚନା ଦିଆଯାଇଛି, ପରିଚ୍ଛେଦର ଶେଷରେ ଥିବା ଉପସଂହାରରେ ସେଇ ସୂଚନା କେତେଦୂର କାର୍ଯ୍ୟକାରୀ ହୋଇଛି, ତାହା ଆଲୋଚିତ ହେବା ସଙ୍ଗେସଙ୍ଗେ ପର ପରିଚ୍ଛେଦରେ ଥିବା ବର୍ଣ୍ଣନୀୟ ବିଷୟର ସୂଚନା ଉପସ୍ଥାପନ କରାଯାଇଛି। ଯାହା ଫଳରେ, ପାଠକର ଦୃଷ୍ଟି ପର ପରିଚ୍ଛେଦ ପ୍ରତି ଆକୃଷ୍ଟ ହେବା ଏକାନ୍ତ ସ୍ୱାଭାବିକ। ପୁନଶ୍ଚ, ପର ପରିଚ୍ଛେଦର ପ୍ରାକ୍‌ଭାଷାରେ ସେଇ ସୂଚନାର ପୁନର୍ଲେଖ ହେବା ସଙ୍ଗେ ଉପସଂହାରରେ ତାହା କେତେଦୂର

କାର୍ଯ୍ୟକାରୀ ହୋଇଛି, ତା'ର ଆଭସ ଦିଆଯାଇଛି ଓ ପର ପରିଚ୍ଛେଦରେ ଯାହା ଆଲୋଚନା କରାଯିବ, ତାହାର ମଧ୍ୟ ଅବତାରଣା କରାଯାଇଅଛି। ପୁସ୍ତକରେ ଥିବା ଏପରି ପରିଚ୍ଛେଦଗତ କୌଶଳ ହେତୁ ତାହାର ସମଗ୍ର ରୂପବିଭବ ଯେ ସୁପ୍ରତିଷ୍ଠିତ ହୋଇପାରିଛି ତାହା ନୁହେଁ, ଏପରି କୌଶଳର ଅନୁସରଣଦ୍ୱାରା ପାଠକକୁ ସମଗ୍ର ପୁସ୍ତକ ଅଧ୍ୟୟନପାଇଁ ମଧ୍ୟ ତାହା ପ୍ରେରଣା ଦେଇପାରୁଅଛି। ପୁନଶ୍ଚ, ପରିଚ୍ଛେଦଗତ ସମସ୍ତ ବିଷୟ ଓ ଚିନ୍ତାକୁ କେତୋଟି ବିଭାଗରେ ବିଭକ୍ତ କରି, ପ୍ରତ୍ୟେକ ବିଭାଗରେ ପୂର୍ବକଥିତ କୌଶଳକୁ ମଧ୍ୟ କେତେକ ପରିମାଣରେ ଅନୁସରଣ କରାଯାଇଛି। ସ୍ଥୁଳତଃ, ପରିଚ୍ଛେଦଗତ ପ୍ରତ୍ୟେକ ବିଭାଗ ଓ ବିଭିନ୍ନ ପରିଚ୍ଛେଦରେ ଗଠିତ ସମଗ୍ର ପୁସ୍ତକ - ଅର୍ଥାତ୍ ବିଭାଗ, ପରିଚ୍ଛେଦ ଓ ପୁସ୍ତକ-ଏ ତିନିଙ୍କର ପାରସ୍ପରିକ ଯୋଗସୂତ୍ର ଯେ ସାମାନ୍ତରାୟଙ୍କ ପୂର୍ବ ପରିକଳ୍ପିତ ଏକ ନିର୍ଦ୍ଦିଷ୍ଟ ଆଭିମୁଖ୍ୟର ପରିପ୍ରକାଶ, ଏଥିରେ କୌଣସି ସନ୍ଦେହ ନାହିଁ।

**ଓଡିଆ ସାହିତ୍ୟର ଇତିହାସ** ସାଧାରଣତଃ ତିନିଶ୍ରେଣୀର ପାଠକମାନଙ୍କପାଇଁ ଉଦ୍ଦିଷ୍ଟ। ଆଧୁନିକ ଓଡିଆ ସାହିତ୍ୟ କେଉଁ ପରିବେଶରେ ଗଢ଼ିଉଠି, କେଉଁ ଲେଖକମାନଙ୍କଦ୍ୱାରା କିପରି ଉଦ୍ଭିମନ୍ତ ହୋଇଛି, ଏ ବିଷୟରେ ସାଧାରଣଜ୍ଞାନ ଆହରଣ କରିବାକୁ ଯେଉଁମାନେ ଇଚ୍ଛୁକ, ସେମାନେ ପୁସ୍ତକର ମୂଳପାଠ ପଢ଼ିଦେଲେ, ବହୁ ମୂଲ୍ୟବାନ ବିଷୟ ଦେଖି ସନ୍ତୁଷ୍ଟ ହୋଇପାରିବେ। ଆଧୁନିକ ସାହିତ୍ୟ ଉପରେ ଯେଉଁମାନଙ୍କର ମୂଳରୁ କିଛି ଧାରଣା ଥିବ ଓ ଏହା ଉପରେ ଲିଖିତ କିଛି ଆଲୋଚନା ପଢ଼ିଥିବେ, ସେମାନେ ଏ ପୁସ୍ତକ ଅଧ୍ୟୟନ କଲେ ବହୁସ୍ଥଳରେ ସେମାନଙ୍କ ପୂର୍ବ ଧାରଣାକୁ ଅଧିକ ନୂତନ ତଥ୍ୟ ବଳରେ ବଳିଷ୍ଠ କରିପାରିବେ କିମ୍ବା ପୂର୍ବ-ପଠିତ ଆଲୋଚନାଠାରୁ ଏହାକୁ ସମ୍ପୂର୍ଣ୍ଣ ସ୍ୱତନ୍ତ୍ର ଓ ଅଧିକ ବିଶ୍ୱାସଯୋଗ୍ୟ ବୋଲି ଅନୁଭବ କରିପାରିବେ। ଏଇ ଉଭୟବିଧ ପାଠକଙ୍କ ପକ୍ଷରେ ପୁସ୍ତକସ୍ଥ ପାଦଟୀକା ଅଧ୍ୟୟନ ଆବଶ୍ୟକତା ବିଶେଷ ଅଛି ବୋଲି ମନେହୁଏନାହିଁ। ଏମାନେ ଯଥାକ୍ରମେ ନିମ୍ନ ଓ ସାମାନ୍ୟ ଉଚ୍ଚସ୍ତରରେ ଥିବାରୁ ପୁସ୍ତକର ପରିକଳ୍ପନା, ତା'ର ରୂପାୟନ କୌଶଳ ଓ ଏଥିରେ ବ୍ୟବହୃତ ଉପାଦାନର ବୈଚିତ୍ର୍ୟ ପ୍ରତି ବିଶେଷ ସଚେତନ ନ ହୋଇ ମଧ୍ୟ ଏଥିରୁ ବହୁ ମୂଲ୍ୟବାନ ଜ୍ଞାନ ଆହରଣ କରିପାରିବେ। ତୃତୀୟ ଶ୍ରେଣୀ ପାଠକ ହେଉଛନ୍ତି ଉଚ୍ଚକୋଟୀର ବିଦଗ୍ଧ ସମାଲୋଚକ, ଗୁଣଗ୍ରାହୀ ଗବେଷକ ଓ ସାମନ୍ତରାୟଙ୍କ ଉନ୍ନତ ମାନସ-ରାଜ୍ୟର କ୍ରିୟାକଳାପ, କଳା-ବୋଧ ଅନୁଧ୍ୟାନ ଓ ଅନୁଭବ କରିବାରେ ଆଗ୍ରହୀ ପାଠକ। ଏଇମାନେ ଖୋଜି ଦେଖିପାରିବେ ପାଦଟୀକାର ବିବିଧ ବୈଚିତ୍ର୍ୟ-ସ୍ତୂପୀକୃତ, କିନ୍ତୁ ସୁସଜ୍ଜିତ ଉପାଦାନ ଭିତରୁ ଜଣେ ଗବେଷକର ସାଧନାଲବ୍ଧ ଅପୂର୍ବ ସିଦ୍ଧି। ପାଦଟୀକାଠାରୁ ଉପାଦାନର ମୂଳସ୍ରୋତ ପାଖକୁ ଗଲେ ସେମାନେ ଦେଖିପାରିବେ ମୂଳରେ ଏପରି ଆଉ ପ୍ରାସଙ୍ଗିକ ଉପାଦାନ ରହିନାହିଁ, ଯାହାକୁ ସାମନ୍ତରାୟ ତାଙ୍କ ଆଲୋଚନାର ପରିସର ମଧ୍ୟକୁ ଆଣିନାହାନ୍ତି। ଏମାନେ ଦେଖିପାରିବେ, କିପରି ପ୍ରତ୍ୟେକ ଘଟଣା, ପ୍ରତ୍ୟେକ ସମୟସୂଚକ ଉପାଦାନ, ମୂଳର ପ୍ରତ୍ୟେକ ବର୍ଣ୍ଣନା ଓ ଅଭିମତ ଯେମିତି ଅତି ବିଶ୍ୱସ୍ତ ଓ ନିର୍ଭୁଲଭାବେ ପୁସ୍ତକରେ ଆହୃତ ହୋଇଅଛି। ଆହରଣ ଉପରେ କୌଣସିଠାରେ ମନରେ ସନ୍ଦେହ ହେଲେ, ମୂଳ ସହ ମିଳାଇ ଦେଖିଲେ ଜଣାଯିବ ଆହରଣ ହିଁ ସର୍ବାଂଶରେ ସତ୍ୟ।

ସାମନ୍ତରାୟ ବର୍ତ୍ତମାନରେ ଥାଇ ସ୍ୱପ୍ନରେ ନିଜକୁ ଅତୀତ ପାଖକୁ ନେଇ ଯାଇଛନ୍ତି ଓ ସେଠି ଅତୀତ ସହିତ ହୋଇଛନ୍ତି ଆତ୍ମନିମଜ୍ଜିତ । ଏପରି ଆତ୍ମନିମଜ୍ଜନ ଫଳରେ ସେ ଅତୀତକୁ ବାସ୍ତବ ବର୍ତ୍ତମାନ ରୂପେ ଅନୁଭବ କରି ସମୟର ପ୍ରାଣତନ୍ତ୍ରୀରୁ ଅଭ୍ୟୁତ୍‌ଥିତ ଉପାଦାନ ଭିତରୁ ଶୁଣିଛନ୍ତି ତା' ପ୍ରାଣବାର୍ତ୍ତା-ସେଇ ଶ୍ରୁତବାର୍ତ୍ତାକୁ ତାଙ୍କର ବିଶ୍ଳେଷଣ-ଗର୍ଭିତ ଅଭିମତ ରୂପେ ଆମେ ଆଜି ଗ୍ରହଣ କରୁଅଛୁ । ଯେଉଁ ଉପାଦାନ ଦିନେ ଥିଲା ଏକାନ୍ତ ପ୍ରାଣହୀନ, ଗବେଷକଙ୍କ ସ୍ୱପ୍ନ ଓ କଳ୍ପନା ବଳରେ ସେମାନେ ହୋଇଉଠିଛନ୍ତି ପ୍ରାଣ-ପ୍ରାଚୁର୍ଯ୍ୟରେ ପରିପୂର୍ଣ୍ଣ । ଯାହାସବୁ ଦିନେ ଥିଲେ ଏକାନ୍ତ ବିଚ୍ଛିନ୍ନ, ନିଃସଙ୍ଗ ଓ ପରସ୍ପର ସମ୍ପର୍କଶୂନ୍ୟ, ସାମନ୍ତରାୟଙ୍କ ପ୍ରତିଭାର ମୃତ୍ୟୁଞ୍ଜୟ ମନ୍ତ୍ରରେ ସେମାନେ ପ୍ରାଣବନ୍ତ ହୋଇ ଏକ ପରିପୂର୍ଣ୍ଣ ସମଗ୍ରତାର ଅବିଚ୍ଛେଦ୍ୟ ଅଙ୍ଗରୂପେ ଆଜି ପ୍ରତିଭାତ ହେଉଅଛନ୍ତି । ବିଭିନ୍ନ ବିଚ୍ଛିନ୍ନ ଉପାଦାନକୁ ଏକତ୍ର କରି ସେଥିରୁ ଅନ୍ୟ ଏକ ସ୍ୱତନ୍ତ୍ର ରୂପର ପରିକଳ୍ପନା ଓ ରୂପାୟନ ଗବେଷକଙ୍କ ସୃଷ୍ଟି ନିର୍ମାଣକ୍ଷମ ପ୍ରତିଭାର ଏହା ଅନବଦ୍ୟ ବୈଶିଷ୍ଟ୍ୟ । ଫଳରେ ସୃଷ୍ଟିକୁ ସମାଲୋଚନା କରିବାକୁ ଯାଇ ସେ ସମାଲୋଚନାକୁ ସୃଷ୍ଟିଧର୍ମରେ ରସାଣିତ କରିଦେଇଅଛନ୍ତି । ସୃଷ୍ଟିର ସମାଲୋଚନା ଭିତରେ ସମାଲୋଚକ ସାମନ୍ତରାୟଙ୍କ ସ୍ରଷ୍ଟାରୂପର ଉପଲବ୍ଧି ଯେ ନ କରିଛି, ସେ 'ଓଡିଆ ସାହିତ୍ୟର ଇତିହାସ' ପୁସ୍ତକର ପରିକଳ୍ପନା, ଗଠନଶୈଳୀ, ସଂଗୃହୀତ ଉପାଦାନର ବୈଚିତ୍ର୍ୟ ଓ କଳା-ବିଶ୍ଳେଷଣର ମହତ୍ତ୍ୱ ଯଥାର୍ଥ ଭାବେ କଳ୍ପନା କରିପାରିଛି ବୋଲି ମନେହେବ ନାହିଁ । ଏ ସମସ୍ତ ବୈଶିଷ୍ଟ୍ୟ ଭିତରେ ଫୁଟିଉଠୁଥିବା ଗବେଷକଙ୍କ ମୌଳିକ ଓ ସ୍ୱତନ୍ତ୍ର ଭାବମୂର୍ତ୍ତିର ଉପଲବ୍ଧି ହେଉଛି, ଅମ ପୂର୍ବକଥିତ ଗୁଣଜ୍ଞ ସମାଲୋଚକମାନଙ୍କ ଅଧ୍ୟୟନର ଶେଷ ପରିଣତି ।

ଅଧ୍ୟାପକ ସାମନ୍ତରାୟଙ୍କ ସ୍ରଷ୍ଟା ଓ ସମାଲୋଚକ ରୂପର ଅଭିବ୍ୟକ୍ତି ଅନ୍ୟ ଦୁଇଟି ପୁସ୍ତକରେ କିପରି ସ୍ଥାନ ପାଇଛି, ତାହାର ପରିଚୟ ବର୍ତ୍ତମାନ ଦେଖନ୍ତୁ ।

ଡକ୍ଟରେଟ୍ ଉପାଧି ଲାଭ (୧୯୬୩, ସାଲ) ପରେ ପରେ, 'ଓଡିଆ ସାହିତ୍ୟକୁ ଅଧ୍ୟାପକ ଆର୍ତ୍ତବଲ୍ଲଭଙ୍କ ଦାନ' (୧୯୬୩ ସାଲ ଶେଷ ଭାଗରେ ରଚିତ) ଓ 'ନନ୍ଦକିଶୋର ସାହିତ୍ୟ ସମୀକ୍ଷା' (୧୯୬୪) ଏଇ ଦୁଇଟି ପୁସ୍ତକ ଆତ୍ମପ୍ରକାଶ କରନ୍ତି । ଉପାଧି-ଲାଭଜନିତ ମାନସିକ ଉଲ୍ଲାସ ଓ ଆନନ୍ଦ, ଶ୍ରମବିଦ୍‌ଗଧ ବହୁ ଶଙ୍କା-ବିଜଡିତ ପ୍ରାଣର ବିଶ୍ରାମସୂଚକ ପ୍ରାପ୍ତି, ସର୍ବୋପରି ସର୍ବୋଶ୍ରେଷ୍ଠ ସିଦ୍ଧିପ୍ରାପ୍ତ-ପ୍ରସୂତ ମନର ଅଖଣ୍ଡ ସ୍ଫୁର୍ତ୍ତି ଆଲୋଚ୍ୟ ଉଭୟ ପୁସ୍ତକର ବିଷୟ ନିର୍ବାଚନ, ତା'ର ଉପସ୍ଥାପନା, ଭାଷା, ପ୍ରକାଶଭଙ୍ଗୀ ତଥା ଉଭୟ କୃତିର ଅନ୍ତଃସ୍ୱରରେ ସ୍ପଷ୍ଟ ଉପଲବ୍ଧି ନ କରି ରହି ହୁଏନାହିଁ । ଏକ ପକ୍ଷରେ, ଆର୍ତ୍ତବଲ୍ଲଭଙ୍କ ପରି ଜଣେ ଉଚ୍ଚକୋଟୀର ଗବେଷକଙ୍କ ଆଲୋଚନା, ଅପରପକ୍ଷରେ ନନ୍ଦକିଶୋରଙ୍କ ପରି ଜଣେ ଶ୍ରେଷ୍ଠ ଗୀତିକାରଙ୍କ ମୌଳିକ ସୃଷ୍ଟି, ଅର୍ଥାତ୍ ଗବେଷଣା ଓ ସୃଷ୍ଟି, ଏ ଉଭୟର ବିଶ୍ଳେଷଣାତ୍ମକ ପଦ୍ଧତି – ଅନୁସୃତ ସମାଲୋଚନା ଭିତରେ ସାମନ୍ତରାୟଙ୍କ ସ୍ରଷ୍ଟା ଓ ସମାଲୋଚକର ମିଳିତ ଭାବମୂର୍ତ୍ତି ଅନୁସନ୍ଧାନ କରିବା ଆଦୌ କଷ୍ଟକର ବ୍ୟାପାର ନୁହେଁ । ଏକ ଦିଗରେ ପୋଥିସଂଗ୍ରହ, ବିଭିନ୍ନ ପୋଥିପାଠ ଭିତରୁ ଶୁଦ୍ଧପାଠ ସଂକଳନ, ମୁଖବନ୍ଧ ଭିତରେ କବିଙ୍କ ଆବିର୍ଭାବ-ସମୟ ନିରୂପଣ ଓ କୃତିର ବିଶେଷତ୍ୱ ପ୍ରତିପାଦନ

କଲାବେଳେ ଆର୍ତ୍ତବଲ୍ଲଭଙ୍କ ଗବେଷଣା କୌଶଳର ସ୍ୱରୂପ ଉଦଘାଟନ, ଅପରପକ୍ଷରେ ନନ୍ଦକିଶୋରଙ୍କ କାଳାନୁକ୍ରମିକ ସୃଷ୍ଟି-ପ୍ରତିଭାର ବିକାଶଧାରା ପର୍ଯ୍ୟାଲୋଚନା, ଦୁଇଟି ସ୍ୱତନ୍ତ୍ର ପ୍ରତିଭାର ସ୍ୱାଧୀନ ଓ ନିରପେକ୍ଷ ମୂଲ୍ୟାଙ୍କନରେ ସାମନ୍ତରାୟଙ୍କ ଅପୂର୍ବ ସାଫଲ୍ୟ ପରିଲକ୍ଷିତ ହୋଇଥାଏ। ମନେହୁଏ, ତାଙ୍କର ବଳିଷ୍ଠ ଲେଖନୀ ଆଲୋଚନାର ଯେଉଁ ବିଭାଗକୁ ସ୍ପର୍ଶ କରିଛି, ତାହା ଶୁଦ୍ଧସୁବର୍ଣ୍ଣରେ ରୂପାନ୍ତରିତ ହୋଇଯାଇଅଛି। ଅଧ୍ୟାପକ ଆର୍ତ୍ତବଲ୍ଲଭଙ୍କ ଗବେଷଣାତ୍ମକ ପ୍ରତିଭା ଓ ନନ୍ଦକିଶୋରଙ୍କ ମୌଳିକ ସୃଷ୍ଟିପ୍ରତିଭା ତାଙ୍କର ଆଲୋଚନା ଫଳରେ ଆଜି ନବନବ ରୂପ-ବିଭବରେ ଆମ ସମ୍ମୁଖରେ ଉଦ୍ଭାସିତ ହୋଇଉଠୁଛନ୍ତି। ପରବର୍ତ୍ତୀ ସମୟରେ ରଚିତ 'ବଡଜେନା ସାହିତ୍ୟ ସମୀକ୍ଷା (୧୯୬୯) ପୁସ୍ତକରେ ଅନୁରୂପ ବିଶ୍ଲେଷଣ ପଦ୍ଧତି ଅନୁସୃତ। ଉକ୍ତ ପୁସ୍ତକରେ ବ୍ରଜନାଥ ବଡଜେନାଙ୍କ ତିନିଟି ଅମର ରଚନା 'ଚତୁରବିନୋଦ' 'ସମରତରଙ୍ଗ' ଓ 'ଗୁଣ୍ଡିଚାବିଜେ' ଉପରେ ସମ୍ପୂର୍ଣ୍ଣ ନୂତନ ଆଲୋକପାତ କରାଯାଇ, ଏକ ନବୀନ ଦୃଷ୍ଟିକୋଣରୁ କବିପ୍ରତିଭାର ମୂଲ୍ୟାଙ୍କନ କରାଯାଇଅଛି। ଆର୍ତ୍ତବଲ୍ଲଭଙ୍କ ଗବେଷଣା ଓ ବଡଜେନାଙ୍କ ସୃଷ୍ଟି ପ୍ରତିଭା- ଏ ଉଭୟର ସମୀକ୍ଷା ସଂଦର୍ଶନ କଲେ ସାମନ୍ତରାୟଙ୍କ ପ୍ରାଚୀନ ସାହିତ୍ୟ ପ୍ରତି ଆକର୍ଷଣ ଓ ଏ ଦିଗକୁ ତାଙ୍କର ପୁନଃ ପ୍ରତ୍ୟାବର୍ତ୍ତନର ଚିତ୍ର ତାହାଙ୍କ ସାହିତ୍ୟିକ ଜୀବନର ତୃତୀୟ ଓ ଚତୁର୍ଥ ପର୍ଯ୍ୟାୟର ଲିଖିତ ଆଲୋଚନାରେ ଆମେ ଦେଖିବାକୁ ପାଇଥାଉ।

**ତୃତୀୟ (୧୯୭୦-୭୩) ଓ ଚତୁର୍ଥ (୧୯୭୪-୮୦) ପର୍ଯ୍ୟାୟ ଆଲୋଚନାର ସ୍ୱରୂପ**

ଦଶବର୍ଷ (୧୯୭୦-୮୦) ମଧ୍ୟରେ ଲିଖିତ ଅର୍ଦ୍ଧଶତାଧିକ ପ୍ରବନ୍ଧ ଅନୁଧ୍ୟାନ କଲେ ସାମନ୍ତରାୟ ଆଧୁନିକ ସାହିତ୍ୟ ଅପେକ୍ଷା ପ୍ରାଚୀନ ସାହିତ୍ୟ, ବିଶେଷତଃ ଧର୍ମ-ସାହିତ୍ୟ ଅନୁଶୀଳନ ପ୍ରତି ଅଧିକ ଅନୁରକ୍ତ ହୋଇଛନ୍ତି। ଆଧୁନିକ ସାହିତ୍ୟ ଉପରେ ଆଧାରିତ ବହୁ ପ୍ରବନ୍ଧ ଆମ ପୂର୍ବ ଆଲୋଚନାରେ ଯଥାସ୍ଥାନରେ ବିଶ୍ଳେଷିତ ହୋଇଥିବାରୁ କେବଳ ଅନ୍ୟ ଦୁଇପ୍ରକାର ପ୍ରବନ୍ଧର କଥା ଏଠାରେ ଉଲ୍ଲେଖ କରୁଅଛୁ। ସାହିତ୍ୟିକ ଜୀବନର ଆଦ୍ୟ ଭାଗରେ 'ଭଞ୍ଜ-ସାହିତ୍ୟ-ସମାଲୋଚନାର ଏକ ସଂକ୍ଷିପ୍ତ ଇତିହସ' (ଏପ୍ରିଲ୍ ୧୯୫୩) ପ୍ରବନ୍ଧରେ ଭଞ୍ଜ-ସାହିତ୍ୟାଲୋଚନାର ଏକ ଐତିହାସିକ ଚିତ୍ର ଉପସ୍ଥାପିତ ହେଲାପରି, ରାଧାନାଥ ସାହିତ୍ୟ-ସମାଲୋଚନାର ଆଦି ସ୍ୱରୂପ' (ଫେବୃୟାରୀ, ୧୯୫୭) ପ୍ରବନ୍ଧରେ ରାଧାନାଥ ସାହିତ୍ୟ-ସମୀକ୍ଷାର ଏକ ଅନୁରୂପ ବିବରଣୀ ଦେଖିବାକୁ ମିଳେ। ଏ ଉଭୟ ପ୍ରବନ୍ଧ ଜଣେ ଜଣେ କବିଙ୍କ କୃତି ଉପରେ ସମୟକ୍ରମେ ଗଢ଼ି ଉଠିଥିବା ଆଲୋଚନାର ଚିତ୍ର। ମାତ୍ର, ସମୀକ୍ଷାର ସମାଲୋଚନା ଯେଉଁ ଲକ୍ଷ୍ୟରେ ସାଧାରଣତଃ କରାଯିବା କଥା, ତାହା ଉପରେ ପ୍ରାବନ୍ଧିକ ସେତେବେଳେ ବିଶେଷ ପ୍ରାଧାନ୍ୟ ଦେଇ ପାରିନାହାନ୍ତି। ଏ ଉଭୟ କବିଙ୍କ ଉପରେ ଯେଉଁ ଅଂସପୂର୍ଣ୍ଣ ଧାରଣା ପ୍ରଚାରିତ ହେଉଥିଲା, ତାକୁ ଉପସ୍ଥାପିତ କରି ସେମାନଙ୍କ ସାହିତ୍ୟର ଯଥାର୍ଥ ଅବବୋଧ କିପରି ହୋଇପାରିବ, ତାହା ଉପରେ କେବଳ ପ୍ରାବନ୍ଧିକ ଅଧିକ ଗୁରୁତ୍ୱ ଆରୋପ କରିଛନ୍ତି। କିନ୍ତୁ 'ରାଧାନାଥଙ୍କ କାବ୍ୟ ବିଷୟବସ୍ତୁର ଅନୁସନ୍ଧାନ ଇତିହାସ' (ଜାନୁୟାରୀ : ୧୯୭୨) ପ୍ରବନ୍ଧର ଲକ୍ଷ୍ୟ ଓ ତା'ର ରୂପାୟନ- କୌଶଳ ସମ୍ପୂର୍ଣ୍ଣ ଭିନ୍ନ। ରାଧାନାଥଙ୍କ କାବ୍ୟ - ବିଷୟବସ୍ତୁର ଆହରଣ ଉପରେ

ଯେଉଁମାନେ ମୌଳିକ ଭାବେ ଚିନ୍ତାକରି ଯାହାକିଛି ଆଲୋଚନାର ଦୁର୍ବଳତା ଅଥବା ଅସଂପୂର୍ଣ୍ଣତା ରହିଛି, ପ୍ରାବନ୍ଧିକ ଯେ କେବଳ ତାହା ଦେଖାଇ ଦେଇଛନ୍ତି ନୁହେଁ, ସେମାନଙ୍କଦ୍ୱାରା କୁହାଯାଇନଥିବା ବହୁ ବିଷୟର ଅବତାରଣା କରି ରାଧାନାଥ-ସାହିତ୍ୟ ଉପରେ ସଂପୂର୍ଣ୍ଣ ନୂତନ ଆଲୋକପାତ କରିବାରେ ସମର୍ଥ ହୋଇଅଛନ୍ତି। ଏପରି ଏକ ଆଲୋଚନାତ୍ମକ ପ୍ରବନ୍ଧ ଭବିଷ୍ୟତ ରାଧାନାଥ-ସାହିତ୍ୟପ୍ରେମୀଙ୍କ ଚକ୍ଷୁରେ ଏକ ବିଶ୍ୱାସଯୋଗ୍ୟ ନିର୍ଭରଶୀଳ ଦିଗ୍‌ଦର୍ଶନ ରୂପେ ବିବେଚିତ ହେବ, ଏଥିରେ ସନ୍ଦେହ ନାହିଁ। ଓଡିଆ ସମାଲୋଚନା ରାଜ୍ୟରେ ଆଲୋଚନାର ଏପରି ସ୍ୱତନ୍ତ୍ର ବିଭାଗ ସାମନ୍ତରାୟଙ୍କ ସଂପୂର୍ଣ୍ଣ ନିଜସ୍ୱ ଓ ମୌଳିକ।

ସୃଷ୍ଟିର ସମାଲୋଚନା ଏକ ଗୁରୁତର ଓ କଷ୍ଟକର ବ୍ୟାପାର। ଅପରପକ୍ଷରେ, ସମାଲୋଚନାର ସମୀକ୍ଷା ତତୋଽଧିକ ଦୁରୂହ ସାଧନର ଦ୍ୟୋତକ। ପୁନଶ୍ଚ ଜଣେଜଣେ ସମାଲୋଚକଙ୍କର ସମଗ୍ର ଆଲୋଚନା-ସାହିତ୍ୟରୁ ତାହାଙ୍କ ମାନସିକତା, ଆଭିମୁଖ୍ୟ, ବିଚାରଧାରା ଓ ଆଲୋଚନା-ପଦ୍ଧତି ଉପଲବ୍ଧି କରି ଏହାଙ୍କ ଯଥାର୍ଥ ଭାବମୂର୍ତ୍ତିକୁ ଯଥାଯଥ ଭାବେ ପ୍ରତିଷ୍ଠା କରିବା ଜଣେ ପୌଢ଼ ପରିପକ୍ୱ-ଜ୍ଞାନସମ୍ପନ୍ନ-ସମାଲୋଚକଙ୍କର ପରମ ଗୌରବ। ଏପରି ଏକ ଗୌରବର ଆଭାସ ଆମେ ଆର୍ତ୍ତବଲ୍ଲଭଙ୍କ ସାହିତ୍ୟ-ସମାଲୋଚନାରେ ପ୍ରଥମେ ଦେଖିବାକୁ ପାଇଥିଲୁ। ଏଇ ଲକ୍ଷ୍ୟରେ ସାମନ୍ତରାୟ ନିମ୍ନଲିଖିତ ପ୍ରବନ୍ଧମାନ ପ୍ରସ୍ତୁତ କରିଥିବା ସମ୍ପୂର୍ଣ୍ଣ ବିଶ୍ୱାସ। ଯଥା - (କ) ଆଧୁନିକ ଓଡିଆ ସାହିତ୍ୟର ଇତିହାସରେ ମିଶନାରୀ ଆମସ୍ ସଟନ (ସେପ୍ଟେମ୍ବର, ୧୯୭୧), (ଖ) ଇତିହାସର ବିସ୍ମୃତ ସାଧକ ( ଏପ୍ରିଲ, ୧୯୭୩) ଏଥିରେ ସଟନ, ବୀମ୍‌ସ, ଏମ.ଏମ୍. ଚକ୍ରବର୍ତ୍ତୀ ଓ ଏନ୍.ଏନ୍.ବସୁ ଆଲୋଚିତ. (ଗ) ସାହିତ୍ୟସାଧକ ଶ୍ରୀ ଶ୍ୟାମସୁନ୍ଦର (ଅକ୍ଟୋବର, ୧୯୭୫), (ଘ) ସାହିତ୍ୟ-ସମୀକ୍ଷକ ଶ୍ରୀ ଶ୍ୟାମସୁନ୍ଦର (ଜୁଲାଇ, ୧୯୭୪), (ଙ) ଓଡିଆ ସାହିତ୍ୟକୁ ଐତିହାସିକମାନଙ୍କର ଅବଦାନ  ପରମାନନ୍ଦ ଆଚାର୍ଯ୍ୟ (ଅକ୍ଟୋବର, ୧୯୭୪), (ଛ) ଆଚାର୍ଯ୍ୟ ପ୍ୟାରୀମୋହନ ଓ ଉତ୍କଳ ପୁତ୍ର (ଜୁଲାଇ, ୧୯୭୬), ଡକ୍ଟର ଆମସ୍ ସଟନ୍ , ଜନ୍ ବୀମ୍‌ସ୍, ମନମୋହନ ଚକ୍ରବର୍ତ୍ତୀ, ନଗେନ୍ଦ୍ରନାଥ ବସୁ, ଶ୍ୟାମସୁନ୍ଦର ରାଜଗୁରୁ, ପଣ୍ଡିତ ମୃତ୍ୟୁଞ୍ଜୟ ରଥ, ଆର୍ତ୍ତବଲ୍ଲଭ ମହାନ୍ତି, ପରମାନନ୍ଦ ଆଚାର୍ଯ୍ୟ - ଏଇ କେତୋଟି ନାମକୁ ନିରୀକ୍ଷଣ କଲେ ଓଡିଆ ସମାଲୋଚନା ସାହିତ୍ୟର ଖ୍ୟାତନାମା ଆଲୋଚକଙ୍କ ମଧ୍ୟରୁ କେବଳ ପଣ୍ଡିତ ଗୋପୀନାଥ ନନ୍ଦଙ୍କ ବ୍ୟତୀତ ପ୍ରାୟ ଅନ୍ୟ ସମସ୍ତ ସମୀକ୍ଷକ ସାମନ୍ତରାୟଙ୍କ ଆଲୋଚନାର ପରିଧି ଭିତରେ ଅନ୍ତର୍ଭୁକ୍ତ। ଓଡିଆ ସାହିତ୍ୟ ଆଲୋଚନା-କ୍ଷେତ୍ରରେ ଏମାନଙ୍କର ଦାନର ଯଥାର୍ଥ କଳନା କଲାବେଳେ, ଆଲୋଚନାରେ ଅନୁସୃତ ସେମାନଙ୍କ ବିଚାର-ପଦ୍ଧତିର ସ୍ୱରୂପ ପ୍ରଖ୍ୟାପନ ହିଁ ଅଧ୍ୟାପକ ସାମନ୍ତରାୟଙ୍କ ବିଶ୍ଳେଷଣର ପ୍ରଧାନ ନାଭିକେନ୍ଦ୍ର। ଦେଖିବାର କଥା, ଆମର ପୂର୍ବ ଲିଖିତ ସମସ୍ତ ଆଲୋଚକ ହେଉଛନ୍ତି ଜଣେ ଜଣେ ଖ୍ୟାତନାମା ଐତିହାସିକ ଓ ଗବେଷକ। ଐତିହାସିକମାନଙ୍କ ଗବେଷଣା-ପଦ୍ଧତି ସେମାନଙ୍କ ସାହିତ୍ୟଲୋଚନାରେ ରୂପାୟନ ହୋଇ ଓଡିଆ ସମାଲୋଚନା-ସାହିତ୍ୟକୁ କିପରି ଅଧିକ ବିଜ୍ଞାନସମ୍ମତ ଓ ଶକ୍ତିଶାଳୀ କରିପାରିଛି, ତାହା

ଦେଖାଇଦେବାଦ୍ୱାରା ସାମନ୍ତରାୟ ଚିନ୍ତାହୀନ ଭାବେ ଗଢ଼ିଉଠୁଥିବା ଯୁକ୍ତିହୀନ ଓଡିଆ - ସମାଲୋଚନାକୁ ଅତି ସଜ୍ଞାନ ଚିତ୍ତରେ ଯେ ଏକ ଉପଯୁକ୍ତ ଚେତାବନୀ ଶୁଣାଇଛନ୍ତି, ଏଥିରେ କୌଣସି ସନ୍ଦେହ ନାହିଁ। ପ୍ରାବନ୍ଧିକଙ୍କ ଏପରି ଏକ ସାର୍ଥକ ଉଦ୍ୟମ ଓଡିଆ ସମାଲୋଚନା ରାଜ୍ୟରେ ଏକାନ୍ତ ବିରଳ।

**ଧର୍ମ-ସାହିତ୍ୟ ଆଲୋଚନାର ଆଭିମୁଖ୍ୟ ବିଶ୍ଳେଷଣ**

ଧର୍ମ-ଭାବ-ଗର୍ଭିତ ପ୍ରାଚୀନ ସାହିତ୍ୟର ଆଲୋଚନା କ୍ଷେତ୍ରରେ ସାମନ୍ତରାୟ ହେଉଛନ୍ତି, ଏକ ବିବାଦାତ୍ମକ ବ୍ୟକ୍ତିତ୍ୱ। ଆମର ବିଶ୍ୱାସ, ବିଭିନ୍ନ ସମୟରେ ତାହାଙ୍କ ରଚିତ ପ୍ରବନ୍ଧ ଓ ସେଥିରେ ପ୍ରଚାରିତ ଚିନ୍ତାଧାରାଗୁଡିକ ଗୋଟିଏ ସୁସଂବଦ୍ଧ ଧାରାରେ ଆତ୍ମପ୍ରକାଶ କରି ନଥିବାରୁ, ସେଥିରୁ ଆଲୋଚକଙ୍କ ନିର୍ଦ୍ଦିଷ୍ଟ ଲକ୍ଷ୍ୟର ପରିପୂର୍ଣ୍ଣ ରୂପ ଅନୁଧ୍ୟାନ ତଥା ଅନୁମାନ କରିନେବା ସାଧାରଣ ପାଠକମାନଙ୍କ ପକ୍ଷରେ ସମ୍ଭବପର ହୋଇପାରିନାହିଁ। ଫଳରେ ତାହାଙ୍କ "ବିବାଦାତ୍ମକ ବ୍ୟକ୍ତିତ୍ୱ'ର ଭାବଟି ଅତି ସହଜରେ ଏକାନ୍ତ ସତ୍ୟ ବୋଲି ପ୍ରଚାରିତ ହେବାରେ ଆଶ୍ଚର୍ଯ୍ୟ କିଛି ନାହିଁ। ସାମନ୍ତରାୟଙ୍କ ଏହି ଆଲୋଚନା 'ସଖାହୀନ ପଞ୍ଚସଖା', 'ମୁଁ କିପରି ଗବେଷଣା କଲି', 'ଓଡିଆ ସାହିତ୍ୟରେ ସ୍ୱର ପରିବର୍ତ୍ତନ' ଓ ପୁସ୍ତକ ରୂପରେ ସଂଗୃହୀତ ହୋଇନଥିବା କେତେକ ପ୍ରବନ୍ଧରେ ସ୍ଥାନ ପାଇଛନ୍ତି। ଏ ସମସ୍ତ ଲେଖାର ଅବଲମ୍ବନରେ ତାହାଙ୍କ ଅସଲ ଲକ୍ଷ୍ୟର ସ୍ୱରୂପ ଆମେ ବର୍ତ୍ତମାନ ଉପସ୍ଥାପନ କରୁଅଛୁ।

ଓଡିଆର ଜାତୀୟ ଜୀବନ-ସ୍ରୋତ ଉପରେ ଶ୍ରୀଜଗନ୍ନାଥଙ୍କ ଅଖଣ୍ଡ ପ୍ରଭାବ ଏକ ଅବିସମ୍ବାଦିତ ସତ୍ୟ। ଏ ଜାତିର ଆଧ୍ୟାତ୍ମିକ ଚିନ୍ତା ଓ ଚେତନାର କେନ୍ଦ୍ରବିନ୍ଦୁରେ ଏ ଦେବତାଙ୍କ ଭୂମିକା ହେଉଛି ଅନନ୍ୟ ସାଧାରଣ। ଶବରପୂଜିତ ନୀଳମାଧବ ପୁରାଣ ମାଧ୍ୟମରେ ବୈଷ୍ଣବଦେବତା ପୁରୁଷୋତ୍ତମ ନାମରେ ହୋଇଛନ୍ତି ରୂପାନ୍ତରିତ। ଚତୁଃସଂପ୍ରଦାୟର ପ୍ରବର୍ତ୍ତକ ଶ୍ରୀ ରାମାନୁଜସ୍ୱାମୀ, ନିମ୍ବାର୍କ, ମଧ୍ୱାଚାର୍ଯ୍ୟ ଓ ବିଷ୍ଣୁସ୍ୱାମୀଙ୍କ ମଧ୍ୟରୁ କେହି କେହି ଶ୍ରୀକ୍ଷେତ୍ରକୁ ଆଗମନ କରିଥିଲେ ହେଁ ଚର୍ଚ୍ଚା-ଦେବତା ଶ୍ରୀଜଗନ୍ନାଥଙ୍କ ପୂଜା ପଦ୍ଧତି ଉପରେ କି ପ୍ରଭାବ ପକାଇଲେ, ତାହା ସ୍ୱତନ୍ତ୍ର ଗବେଷଣାର ବିଷୟ। କିନ୍ତୁ ଷୋଡଶ ଶତାବ୍ଦୀର ଆଦ୍ୟ ଭାଗରେ ଶ୍ରୀଚୈତନ୍ୟଙ୍କ ଦୀର୍ଘ ୨୪ବର୍ଷ (ଏଥିରୁ ତୀର୍ଥଭ୍ରମଣଜନିତ ସାଢ଼େ ତିନିବର୍ଷକୁ ବାଦ୍ ଦେଲେ) ଶ୍ରୀକ୍ଷେତ୍ରରେ ଅବସ୍ଥାନ ତଥା ଗୌଡୀୟ ପ୍ରେମ-ଧର୍ମ ପ୍ରଚାର, ବିଶେଷତଃ, ଏହାଙ୍କ ତିରୋଧାନ ପରେ ଷଡଗୋସ୍ୱାମୀଙ୍କ ଗୌଡୀୟ ଦର୍ଶନ-ସମ୍ବଳିତ କୃଷ୍ଣଦାସ କବିରାଜକୃତ **ଶ୍ରୀଚୈତନ୍ୟ ଚରିତାମୃତ** ପୁସ୍ତକର ବ୍ୟାପକ ପ୍ରଚାର ହେତୁ ଅନ୍ତତଃ ଓଡିଆ ଧର୍ମ-ସାହିତ୍ୟ ରାଜ୍ୟରେ ଶ୍ରୀଜଗନ୍ନାଥ-ଧାରଣାରେ ବିଶେଷ ପରିବର୍ତ୍ତନ ପରିଲକ୍ଷିତ ହୋଇଥିଲା। କିନ୍ତୁ ଶ୍ରୀଜଗନ୍ନାଥଙ୍କ ପୂଜା-ପଦ୍ଧତି, ଆଚାର-ନିଷ୍ଠା, ଏପରିକି ତାଙ୍କର ଅସଲ ଭାବମୂର୍ତ୍ତିର କୌଣସି ମୌଳିକ ପରିବର୍ତ୍ତନ ଅନୁଧ୍ୟାନ କେବେ ଲୋକ ସାଧାରଣଙ୍କ ଦୃଷ୍ଟିରେ ହୋଇଥିଲା କି ନାହିଁ, ତାହା ମଧ୍ୟ ସ୍ୱତନ୍ତ୍ର ବିଷୟ। ଶ୍ରୀଚୈତନ୍ୟଙ୍କ ମାନସିକ ପରିବର୍ତ୍ତନ (୧୫୦୮ ସାଲ ଡିସେମ୍ବର) ପୂର୍ବରୁ ସେ ଥିଲେ ଜଣେ ସାଧାରଣ ମଣିଷ, ନବଦ୍ୱୀପର ନିମାଇଁ ପଣ୍ଡିତ ମାତ୍ର। ଏଇ ନିମାଇଁ ପଣ୍ଡିତ ସନ୍ନ୍ୟାସ ଗ୍ରହଣ (୧୫୧୦ସାଲ୍, ଫେବୃୟାରୀ) ପରେ ହେଲେ

ଶ୍ରୀକୃଷ୍ଣ- ଚୈତନ୍ୟ, ଏବଂ ଶ୍ରୀକୃଷ୍ଣ ଓ ଶ୍ରୀଚେତନ୍ୟ ହେଲେ ଏକ ଓ ଅଭିନ୍ନ। ନୀଳାଚଳ ଯାତ୍ରାପଥରେ ପ୍ରଥମେ ରେମୁଣାର ଗୋପୀନାଥ ଓ ପରେ କଟକରେ ସାକ୍ଷୀଗୋପାଳଙ୍କ ଭେଟବେଳେ ଶ୍ରୀକୃଷ୍ଣ ଓ ଶ୍ରୀଚୈତନ୍ୟ ଏଇ ଅଭିନ୍ନତା - ଭାବ ଅଧିକ ଦୃଢ଼ୀଭୂତ ହୋଇଛି। ଶ୍ରୀକ୍ଷେତ୍ରରେ ପାଦଦେବା ମାତ୍ରେ ହିଁ, ଶ୍ରୀଚୈତନ୍ୟ ଶ୍ରୀଜଗନ୍ନାଥରେ ହୋଇଛନ୍ତି ରୂପାନ୍ତରିତ। ଦେଖିବାର କଥା, ଶ୍ରୀଚୈତନ୍ୟ ଯେ ଶ୍ରୀଜଗନ୍ନାଥ, ଏ ଭାବ ଚୈତନ୍ୟ ନବଦ୍ୱୀପରେ ଥିବାବେଳେ ମଧ୍ୟ ସ୍ୱୀକୃତ ହୋଇଥିଲେ- ଏ ବିଷୟ କୌଣସି ଗୌଡୀୟ ଚରିତଗ୍ରନ୍ଥରେ ଭୁଲ୍‌ବଶତଃ ମଧ୍ୟ ଉଲ୍ଲିଖିତ ହୋଇନାହିଁ। ଅତୀବ ବିଚିତ୍ର କଥା ଯେ, ଶ୍ରୀଚୈତନ୍ୟ ସନ୍ନ୍ୟାସୀ-ଜୀବନର ଦୀର୍ଘ ସାଢ଼େ କୋଡ଼ିଏ ବର୍ଷ ଶ୍ରୀକ୍ଷେତ୍ରରେ ଅବସ୍ଥାନ କରି ଶ୍ରୀଜଗନ୍ନାଥ ରୂପେ ସମ୍ମାନିତ ହୋଇଥିଲେ ହେଁ ଓ ତାହାଙ୍କୁ ପୁରୋଭାଗରେ ରଖି ବୃନ୍ଦାବନବିହାରୀ ଶ୍ରୀକୃଷ୍ଣ-ଶ୍ରୀରାଧାଙ୍କ ଅପ୍ରାକୃତ ପ୍ରେମକୁ ଗୌଡୀୟ ଅଚିନ୍ତ୍ୟ-ଭେଦାଭେଦ-ଦର୍ଶନର ପ୍ରଧାନ ଆଧାରସ୍ତମ୍ଭ ରୂପେ ଗ୍ରହଣ କରାଯାଇଥିଲେ ହେଁ, ସେହି ଦର୍ଶନର ପରିସର ମଧ୍ୟରେ ଶ୍ରୀକ୍ଷେତ୍ର ଓ ଶ୍ରୀଚୈତନ୍ୟ-ସେବିତ ଶ୍ରୀଜଗନ୍ନାଥଙ୍କର ନିମ୍ନତମ ସ୍ୱୀକୃତି କେଉଁଠି ପରିଲକ୍ଷିତ ହୁଏନାହିଁ। ନିତ୍ୟ-ଆରାଧ୍ୟ ଦେବତା ଓ ଶ୍ରୀଜଗନ୍ନାଥ ହେଉଛନ୍ତି ଅବତାରୀ, ଶ୍ରୀଚୈତନ୍ୟ ହିଁ ତାହାଙ୍କର ଅବତାର। ନିତ୍ୟଧାମ ଶ୍ରୀପୁରୁଷୋତ୍ତମ କ୍ଷେତ୍ରରେ ନିତ୍ୟଲୀଳାରେ ନିମଜ୍ଜିତଥାନ୍ତି ରାଧା-କୃଷ୍ଣ ଅଭିନ୍ନମୂର୍ତ୍ତି ଶ୍ରୀଜଗନ୍ନାଥ। ଏଇ ମୂର୍ତ୍ତିର ସାଧନ ପ୍ରଣାଳୀ ହେଉଛି ସ୍ୱକୀୟାପ୍ରୀତି। ଦେବତା, ପୀଠ ଓ ସାଧନାମାର୍ଗ ଏଇ ତିନିଟି ଅର୍ଚ୍ଚନା-ପଦ୍ଧତିର ଏକ ଏକ ଅପରିହାର୍ଯ୍ୟ ଅଙ୍ଗକୁ ଦିବାକର ଦାସ **ବ୍ରହ୍ମସଂହିତା** ଅବଲମ୍ବନରେ ଯେପରି ବ୍ୟାଖ୍ୟା କରିଅଛନ୍ତି, ତାହା ଗୌଡୀୟ ମତାବଲମ୍ବୀଙ୍କ ସମ୍ପୂର୍ଣ୍ଣ ବିପରୀତ।। ସାମନ୍ତରାୟ, 'ଜଗନ୍ନାଥ ଚରିତାମୃତ-ଏକ ଅଧ୍ୟୟନ' (ଅକ୍ଟୋବର, ୧୯୮୦) ପ୍ରବନ୍ଧରେ ଏହାର ସବିଶେଷ ଆଲୋଚନା କରି ପଞ୍ଚସଖା-ପରିକଳ୍ପନାର ମୂଳଭିତ୍ତି ଉପରେ ନୂତନ ଆଲୋକପାତ କରିଅଛନ୍ତି।

ଦେଖିବାର କଥା, ଏପରି ଦେବତା (ଶ୍ରୀଜଗନ୍ନାଥ) ଓ ପୀଠ (ଶ୍ରୀକ୍ଷେତ୍ର)ର ସର୍ବମାନ୍ୟତା ଯୋଗ-ତନ୍ତ୍ର-ମନ୍ତ୍ର-ଅଧ୍ୟୁଷିତ ଓଡିଶା ଭୂମିରେ ଗ୍ରହଣୀୟ ହେଲେ ହେଁ, ପ୍ରେମ-ସର୍ବସ୍ୱ ଏକ ସାଧନ ପ୍ରଣାଳୀ ଜନସାଧାରଣଙ୍କଠାରୁ ସମୁଚିତ ସମ୍ମାନ ନ ପାଇବାର ଆଶଙ୍କା ଥିବାରୁ, ଅଚ୍ୟୁତାନନ୍ଦ ଶ୍ରୀକୃଷ୍ଣଙ୍କ ଗୋଷ୍ଠଲୀଳାର ଏକ ପ୍ରଧାନ ଅଙ୍ଗ 'ସଖା'ର ପରିକଳ୍ପନା କରିବାକୁ ବାଧ୍ୟ ହୋଇଥିଲେ। ଏହାଙ୍କ ଧାରଣାରେ ଶ୍ରୀକୃଷ୍ଣରୂପୀ ବୈଷ୍ଣବ-ଦେବତା ଶ୍ରୀଜଗନ୍ନାଥ ହେଲେ ବୌଦ୍ଧ ଓ ଶ୍ରୀଚୈତନ୍ୟ ଏଇ ବୌଦ୍ଧରୂପୀ ଜଗନ୍ନାଥଙ୍କ ଅବତାର। ବଳରାମ ଦାସ, ଜଗନ୍ନାଥ ଦାସ, ଅଚ୍ୟୁତାନନ୍ଦ ଦାସ, ଯଶୋବନ୍ତ ଦାସ ଓ ଅନନ୍ତ ଦାସ - ଏଇ ପଞ୍ଚସଖା ଶ୍ରୀଚୈତନ୍ୟଙ୍କର ସଖା ଓ ଅନୁଚର ମାତ୍ର। ପଞ୍ଚସଖା ପରିକଳ୍ପନାର ପରିପୂର୍ଣ୍ଣତା ପାଇଁ, ଶ୍ରୀକୃଷ୍ଣରୂପୀ ବୈଷ୍ଣବ-ଦେବତା ଶ୍ରୀଜଗନ୍ନାଥ ପ୍ରେମମାର୍ଗୀ ଶ୍ରୀଚୈତନ୍ୟଙ୍କ ବ୍ୟକ୍ତିତ୍ୱର ଯେ ମୌଳିକ ପରିବର୍ତ୍ତନ ଘଟିଲା ତାହା ନୁହେଁ, ଏଥିପାଇଁ ଦିବାକର ଦାସଙ୍କ 'ସଖୀ ଜଗନ୍ନାଥ ଦାସ' ମଧ୍ୟ 'ସଖା ଜଗନ୍ନାଥ ଦାସ'ରେ ରୂପାନ୍ତରିତ ହେବାକୁ ବାଧ୍ୟ ହୋଇଥିଲେ। ସାମନ୍ତରାୟ 'ପଞ୍ଚସଖା-ପରିକଳ୍ପନା-ଅବବୋଧର ଦିଗ୍‌ଦର୍ଶନ' (ଅକ୍ଟୋବର - ନଭେମ୍ବର, ୧୯୮୦) ପ୍ରବନ୍ଧରେ ପଞ୍ଚସଖା ଧାରଣାଟି ଯେ ଶ୍ରୀଚୈତନ୍ୟଙ୍କ

ପରବର୍ତ୍ତୀ ଯୁଗରେ ଗୌଡୀୟ ମତବାଦର ଅନ୍ୟ ଏକ ପ୍ରତିକ୍ରିୟାର ଫଳ, ତାହା ବହୁଦିଗରୁ ପରୀକ୍ଷା କରି ପ୍ରତିପାଦନ କରିଦେଇଅଛନ୍ତି। ଏହାଙ୍କ ଆଲୋଚନାର ଏ ଆଭିମୁଖ୍ୟ ହେଉଛି ପୂର୍ଣ୍ଣତଃ ଇତିହାସମୁଖୀ। ତାତ୍ତ୍ୱିକ ବିଶ୍ଳେଷଣ ଓ ଐତିହାସିକ ଦୃଷ୍ଟିକୋଣ,ଏ ଉଭୟ ସାହାଯ୍ୟରେ ପଞ୍ଚସଖା ଶ୍ରୀଚୈତନ୍ୟଙ୍କ ପରିକର ଥିବା ତଥ୍ୟର ମୂଲ୍ୟହୀନତା ସେ ପ୍ରମାଣ କରିଅଛନ୍ତି।

ଏ ସମ୍ପର୍କରେ ତାଙ୍କର ବହୁ ଯୁକ୍ତି ଭିତରୁ ଗୋଟିକର ସାରାଂଶ ଏଠାରେ ଉଦ୍ଧାର କରାଯାଇଛି। (କ) ପଞ୍ଚସଖା ଶ୍ରୀଚୈତନ୍ୟଙ୍କର ପରିକର ଥିଲେ ଓ (ଖ) ଅଚ୍ୟୁତାନନ୍ଦଙ୍କ ସିଦ୍ଧଦେହ ହେଉଛନ୍ତି, ଶ୍ରୀଚୈତନ୍ୟଙ୍କ ସଖା ସୁନ୍ଦରାନନ୍ଦ - 'ଶୂନ୍ୟ ସଂହିତା' ବର୍ଣ୍ଣିତ ଏ ଉଭୟ ତଥ୍ୟ ପରସ୍ପର ବିରୁଦ୍ଧାତ୍ମକ। ଏଥିରୁ ଗୋଟିଏ ମିଥ୍ୟା ଓ କଳ୍ପନା ହେଲେ ଅନ୍ୟଟି ସତ୍ୟ ବା ତଥ୍ୟଭିତ୍ତିକ। ଗୌଡୀୟ ବୈଷ୍ଣବ ପରମ୍ପରାର ସୁନ୍ଦରାନନ୍ଦ ୧୬୬୦ ସାଲ ପର୍ଯ୍ୟନ୍ତ ମଧ୍ୟ ଜୀବିତ ଥିଲେ, ଏପରିକି ଶ୍ରୀ ଚୈତନ୍ୟଙ୍କ ସଖା ପୁରୁଷୋତ୍ତମ ଦାସ, ଗୌରୀ ଦାସ ପଣ୍ଡିତ, ଉଦ୍ଧାରଣ ଦତ୍ତ ଓ ଅଭିରାମ ଦାସ, ପ୍ରତ୍ୟେକ ୧୬୫୩ ସାଲ ପରେ ଦେହତ୍ୟାଗ କରିଥିଲେ। କିନ୍ତୁ ଅଚ୍ୟୁତାନନ୍ଦଙ୍କ 'ଗୁରୁଭକ୍ତିଗୀତା' ପୁସ୍ତକରେ ଏଇ ପାଞ୍ଚଜଣ ହିଁ ଯଥାକ୍ରମେ ଅଚ୍ୟୁତାନନ୍ଦ (ସୁନ୍ଦରାନନ୍ଦ) ଜଗନ୍ନାଥ ଦାସ (ପୁରୁଷୋତ୍ତମ ଦାସ), ବଳରାମ ଦାସ (ଗୌରୀଦାସ ପଣ୍ଡିତ), ଯଶୋବନ୍ତ ଦାସ (ଉଦ୍ଧାରଣ ଦତ୍ତ) ଓ ଅନନ୍ତ ଦାସ (ଅଭିରାମ ଦାସ) ରୂପେ ଆବିର୍ଭାବ ଲାଭ କରିଥିବା କୁହାଯାଇଛି। ଏହାହିଁ ଯଦି ସତ୍ୟ, ତା' ହେଲେ ପଞ୍ଚସଖା ଅନ୍ତର୍ଗତ କୌଣସି ସଖା ଶ୍ରୀଚୈତନ୍ୟଙ୍କ ତିରୋଧାନ (୧୫୩୩ ସାଲ) ପୂର୍ବରୁ ଜନ୍ମଲାଭ କରିବା ଐତିହାସିକ ଦୃଷ୍ଟିକୋଣରୁ ସମ୍ପୂର୍ଣ୍ଣ ଅସମ୍ଭବ। ଫଳରେ ପୂର୍ବୋକ୍ତ ପ୍ରଥମ ଅଭିମତ, ଅର୍ଥାତ୍, 'ପଞ୍ଚସଖା ଶ୍ରୀଚୈତନ୍ୟଙ୍କର ପରିକର ଥିଲେ' ଅଭିମତ ସ୍ୱତଃ ଅର୍ଥହୀନ ହୋଇଯାଉଛି। ଯୁକ୍ତିକୁ ବିପରୀତ ଦିଗରୁ ଆରମ୍ଭ କଲେ ଅମେ ଜାଣିବୁ ଯେ, ଯଦି "ପରିକର' ଥିବା ଘଟଣା ସତ୍ୟ, ତା' ହେଲେ ଅଚ୍ୟୁତନନ୍ଦଙ୍କ ସିଦ୍ଧଦେହ ସୁନ୍ଦରାନନ୍ଦ ହେବା ଧାରଣା ସମ୍ପୂର୍ଣ୍ଣ ଅନ୍ତଃସାରଶୂନ୍ୟ। 'ଶୂନ୍ୟସଂହିତା' ଓ 'ଗୁରୁଭକ୍ତିଗୀତା' ପ୍ରଭୃତି ଗ୍ରନ୍ଥର ବହୁ ସ୍ଥଳରେ ସୁନ୍ଦରାନନ୍ଦଙ୍କ ଦେହତ୍ୟାଗ ପରେ ଉତ୍କଳରେ ଅଚ୍ୟୁତାନନ୍ଦ ରୂପେ ଆବିର୍ଭାବ ଲାଭ କରିବାର ବିଶଦ ବର୍ଣ୍ଣନା ଥିବାରୁ ଏହାଙ୍କୁ ଓ ଅନ୍ୟ ଚାରିସଖାଙ୍କୁ ଶ୍ରୀଚୈତନ୍ୟଙ୍କ ସାମସମୟିକ କିମ୍ବା ତାଙ୍କର ପରିକର ରୂପେ ସ୍ୱୀକାର କରିବା ସମ୍ପୂର୍ଣ୍ଣ ଭ୍ରାନ୍ତି-ସଙ୍କୁଳ। ପଞ୍ଚଶାଖା-ସାହିତ୍ୟ ପରିଶୀଳନ ବେଳେ, ଯେଉଁ ଆଲୋଚକମାନେ ପରିକର ଥିବା ଭାବଧାରାକୁ ଏକ ଐତିହାସିକ ସତ୍ୟ ରୂପେ ବିଶ୍ୱାସ କରିନେଲେ, ସେମାନଙ୍କ ଭିତରୁ କେହି ଜଣେ ହେଲେ ଦ୍ୱିତୀୟ ଅଭିମତ (ଅଚ୍ୟୁତାନନ୍ଦଙ୍କ ସିଦ୍ଧଦେହ ହେଉଛନ୍ତି ସୁନ୍ଦରାନନ୍ଦ)ର ଐତିହାସିକ ଗୁରୁତ୍ୱ ପ୍ରତି ସଚେତନ ହେଲେ ନାହିଁ। ସୁନ୍ଦରାନନ୍ଦଙ୍କ ଜନ୍ମ ସମୟ ଓ 'ଗୁରୁଭକ୍ତି ଗୀତା' ପୁସ୍ତକ ଅବଲମ୍ବନରେ ଅନ୍ୟ ଚାରି ଗୌଡୀୟ ସଖା (ଶୂନ୍ୟସଂହିତାରେ ଯେଉଁମାନଙ୍କ ନାମ ଉଲ୍ଲିଖିତ ହୋଇନାହିଁ)ଙ୍କ ନାମ ନିର୍ଦ୍ଧାରଣ - ଏଇ ଉଭୟ ସୂତ୍ରର ଆଶ୍ରୟରେ ସାମନ୍ତରାୟ ଅତି ବିଜ୍ଞତାର ସହ, ପଞ୍ଚସଖାଙ୍କ ପରିକର ହେବା ଭାବ-ଧାରାକୁ ଖଣ୍ଡନକରିବା ସଙ୍ଗେସଙ୍ଗେ ପଞ୍ଚସଖା ପରିକଳ୍ପନାର ପରିସର ଭିତରୁ ପ୍ରେମମାର୍ଗୀ ଶ୍ରୀଚୈତନ୍ୟଙ୍କୁ ସମ୍ପୂର୍ଣ୍ଣ ବାଦ ଦେଇଦେଲେ। ଏହାର ଫଳସ୍ୱରୂପ, ଚୈତନ୍ୟୋତ୍ତର ଯୁଗରେ ବିକାଶ ଲାଭ କରିଥିବା

ଓଡ଼ିଶାର ଧର୍ମଧାରଣାକୁ ଯଥାର୍ଥ ଭାବେ ଅନୁଶୀଳନ କରିବାର ଏକ ଅଭ୍ରାନ୍ତ ଓ ନିରାପଦ ମାର୍ଗ ପାଠକମାନଙ୍କ ସମ୍ମୁଖରେ ଉନ୍ମୋଚିତ ହୋଇପଡ଼ିଲା। ଓଡିଶାର ଧର୍ମ-ସାହିତ୍ୟର ପର୍ଯ୍ୟାଲୋଚନା କ୍ଷେତ୍ରରେ ଏପରି ଏକ ଐତିହାସିକ ଦୃଷ୍ଟିକୋଣର ଅଭାବ ହେତୁ, ପଞ୍ଚସଖା-ସାହିତ୍ୟ-ସମାଲୋଚନା-ରାଜ୍ୟରେ ବିଭିନ୍ନ ସମୟରେ ଗଢ଼ିଉଠୁଥିବା ବିବିଧ ବିଶୃଙ୍ଖଳା ଓ ଅପସିଦ୍ଧାନ୍ତର ସ୍ରୋତ ଯେ ଏହାଦ୍ୱାରା ଗତିରୁଦ୍ଧ ହୋଇଗଲା, ଏଥିରେ କୌଣସି ସନ୍ଦେହ ନାହିଁ।

ବିଭିନ୍ନ ଭାରତୀୟ ଭାଷାର ସିଦ୍ଧ-ନାଥ-ସନ୍ଥ-ବୈଷ୍ଣବ ସାହିତ୍ୟର ବହୁ କିମ୍ବଦନ୍ତୀ ଓ ଲୋକବିଶ୍ୱାସ ତଥ୍ୟହୀନ ହେଲେହେଁ, ବହୁସଂଖ୍ୟକ ଭକ୍ତଙ୍କଦ୍ୱାରା ସେସବୁ ଇତିହାସର ମର୍ଯ୍ୟାଦା ଲାଭ କରି ଆସୁଅଛନ୍ତି। ଗୋଟିଏ ଗୋଟିଏ ମିଥ୍ୟା, ପ୍ରଚାର ମାଧ୍ୟମରେ ଥରେ ସତ୍ୟରୂପେ ଗୃହୀତ ହୋଇଗଲେ, ତାହା ଅନ୍ୟମାନଙ୍କ ଚକ୍ଷୁରେ ସର୍ବମାନ୍ୟ ସତ୍ୟର ଆଭା ଆହରଣ କରି ନେଇଥାଏ। ଜ୍ଞାନ-ମାର୍ଗୀ ପଞ୍ଚସଖା, ପ୍ରେମ-ମାର୍ଗୀ ଶ୍ରୀ ଚୈତନ୍ୟଙ୍କ ପରିକର ଥିବାର ଏକ ଅବାସ୍ତବ ପରିକଳ୍ପନା କେତେକ ଭକ୍ତ ପ୍ରଥମେ ପ୍ରଚାର କରି ଯେଉଁ ସାହିତ୍ୟ ସୃଷ୍ଟିକଲେ, ଆଧୁନିକ ଯୁଗରେ ଧର୍ମ-ସାହିତ୍ୟ ଆଲୋଚନାବେଳେ କେତେକ ଆଲୋଚକ ସେଇ ଅବାସ୍ତବ କଳ୍ପନାକୁ ଏକାନ୍ତ ସତ୍ୟ ରୂପେ ସ୍ୱୀକାର କରିନେଲେ। ମିଥ୍ୟା କିପରି ପ୍ରଚାର ମାଧ୍ୟମରେ ଅତି ଅଳ୍ପ ସମୟ ଭିତରେ ସତ୍ୟ ରୂପେ ଗୃହୀତ ହୋଇଥାଏ, ସାମନ୍ତରାୟ 'ଶିଶୁବେଦ'କୁ ତାହାର ଏକ ଜ୍ୱଳନ୍ତ ଉଦାହରଣ ରୂପେ ଉପସ୍ଥାପନ କରିଅଛନ୍ତି। 'ଶିଶୁବେଦ' ସମ୍ପର୍କରେ ଆଲୋଚକମାନଙ୍କର ଦୁଇଟି ପ୍ରଧାନ ଅଭିମତ ହେଉଛି- (କ) ଗୋରଖନାଥଙ୍କ ଭଣିତା ଥିବା ୨୫ଟି ଶ୍ଳୋକ ବିଶିଷ୍ଟ ଓଡ଼ିଆ 'ଶିଶୁବେଦ' ପୁସ୍ତକ ପ୍ରାଚୀନ ହିନ୍ଦୀ ଭାଷାରେ ରଚିତ ଗୋରଖବାନୀକୁ ପ୍ରଭାବିତ କରିଛି ଏବଂ (ଖ) ସାରଳା ମହାଭାରତରେ ବର୍ଣ୍ଣିତ ବ୍ରହ୍ମା-ଶିବ-ବିବାଦରେ ଶିବଙ୍କ ମୁଖରୁ ଶିଶୁବେଦ ଉଚ୍ଚାରିତ ହୋଇଥିବାରୁ ଶିଶୁବେଦ ପୁସ୍ତକ ହେଉଛି ପ୍ରାକ୍ ସାରଳା ଯୁଗର ଏକ ରଚନା। ଆଲୋଚକମାନଙ୍କ ଏ ଉଭୟ ଅଭିମତ କିପରି ଏକାନ୍ତ ଭିତ୍ତିହୀନ, ସାମନ୍ତରାୟ ନିଜର ତୀକ୍ଷ୍ଣ ବିଚାର-ବିଶ୍ଳେଷଣରେ ଏଇପରି ପ୍ରତିପାଦନ କରିଅଛନ୍ତି। ଓଡିଆ ଶିଶୁବେଦ ପୁସ୍ତକ ହିନ୍ଦୀ **ଗୋରଖବାନୀ**କୁ ପ୍ରଭାବିତ କରିବା ପରିବର୍ତ୍ତେ ଏହା ଯେ **ଗୋରଖବାନୀ**ରେ ଥିବା କେତେକ ପଦର ଅଶୁଦ୍ଧି ପରିପୂର୍ଣ୍ଣ ଏକ ବିକୃତ ଅନୁବାଦ ଗ୍ରନ୍ଥ, ତାହା ଉଭୟ ପୁସ୍ତକରେ ଥିବା କେତେକ ପଦର ଏକ ତୁଳନାତ୍ମକ ଆଲୋଚନାରେ ଦେଖାଇ ଦିଆଯାଇ, ପ୍ରଥମ ଅଭିମତର ସାରଶୂନ୍ୟତା ପ୍ରତିଷ୍ଠା କରାଯାଇଅଛି। ଦ୍ୱିତୀୟତଃ, ଶିବଙ୍କ ପଞ୍ଚମୁଖରେ ଯାହା ଉଚ୍ଚାରିତ ହୁଏ, ସଂସ୍କୃତ ଶିବପୁରାଣ ଅନୁସାରେ ତାହା ହେଉଛି ଅ, ଉ, ମ, ବିନ୍ଦୁ ଓ ଅର୍ଦ୍ଧମାତ୍ରା - ଏମାନଙ୍କ ସମ୍ମିଳିତ ରୂପର ନାମ ହେଉଛି ଦୀର୍ଘସୂକ୍ଷ୍ମ ପ୍ରଣବ। ବ୍ରହ୍ମା ଚାରିମୁଖରେ ଯାହା ଉଚ୍ଚାରଣ କରନ୍ତି, ତାହା ହେଉଛି, ଅ, ଉ, ମ ଏବଂ ଅର୍ଦ୍ଧମାତ୍ରା- ଏମାନଙ୍କ ସମ୍ମିଳିତ ରୂପର ନାମ ହ୍ରସ୍ୱ-ସୂକ୍ଷ୍ମ ପ୍ରଣବ। ପ୍ରଣବ ହେଉଛି ବୈଦିକ ପ୍ରଣବ ଓଁ। କିନ୍ତୁ ଦୀର୍ଘ ପ୍ରଣବର ଲିପିଗତ ରୂପ ହେଉଛି ଓଁ ଔଁ। ଏ ସମ୍ପର୍କରେ ସାମନ୍ତରାୟ ଲେଖିଛନ୍ତି, "ବ୍ରହ୍ମା ବୈଦିକ ପ୍ରଣବ ଓଁକାର ଓ ଚତୁର୍ବେଦର ଅଧିକାରୀ, ଶିବ ଦୀର୍ଘ ପ୍ରଣବ ଔଁକାର ଓ ଶିଶୁବେଦର ଅଧିକାରୀ। ତେଣୁ, ମନେହୁଏ ବ୍ରହ୍ମା ଓ ଶିବଙ୍କ ପୌରାଣିକ ନେପଥ୍ୟରେ ଦୁଇ ପ୍ରଣବର ଧ୍ୱାନଗତ ବୈଷମ୍ୟ ଥିଲା ସ୍ପଷ୍ଟ କାରଣ।"

ଦେଖିବାର କଥା, ଓଡିଆ ଯୋଗ ସାହିତ୍ୟରେ ଶିଶୁବେଦ ଶବ୍ଦ ସର୍ବତ୍ର ପ୍ରଣବ ଅର୍ଥରେ ହିଁ ବ୍ୟବହୃତ ଓ ହିନ୍ଦୀ-ଯୋଗ-ସାହିତ୍ୟରେ ସୂକ୍ଷ୍ମବେଦ ବା ସୁସମବେଦର ପ୍ରଣବ ଅର୍ଥ ସେହି ସାହିତ୍ୟର ଆଲୋଚକମାନଙ୍କଦ୍ୱାରା ମଧ୍ୟ ସମ୍ମାନିତ।

**ଶିଶୁବେଦ** ଉପରେ ସମାଲୋଚକମାନଙ୍କଦ୍ୱାରା ଲିଖିତ ଆଲୋଚନାଗୁଡିକ ନିରୀକ୍ଷଣ କଲେ ସ୍ପଷ୍ଟ ଉପଲବ୍ଧ ହୁଏ ଯେ, ଏମାନେ ସାରଳାମହାଭାରତ ଓ ପରବର୍ତ୍ତୀ ଓଡିଆ ଯୋଗସାହିତ୍ୟରେ ବ୍ୟବହୃତ ଶିଶୁବେଦ ଶବ୍ଦର ଯଥାର୍ଥ ତାତ୍ପର୍ଯ୍ୟ ଅନୁଶୀଳନ ନ କରି ନିଜ ପାଖରେ ଥିବା **ଶିଶୁବେଦ** ପୁସ୍ତକର ନାମକୁ ହିଁ ଓଡିଆ ସାହିତ୍ୟରେ ଉଲ୍ଲିଖିତ **ଶିଶୁବେଦ** ଶବ୍ଦ ଉପରେ ଆରୋପ କରିଦେଇ, ଏଇ ନାମକୁ ଦ୍ୱିତୀୟଟିର ଜନ୍ମଦାତା ହିସାବରେ ଗ୍ରହଣ କରି ନେଇଅଛନ୍ତି। ଏମାନଙ୍କ ଆଲୋଚନାର ଏପରି ଆଭିମୁଖ୍ୟ ବା ବିଚାରଧାରା ଯେ କଳସା ଆଲୋଚନାଧାରାର ସ୍ପଷ୍ଟ ଅନୁସରଣ, ଏଥିରେ କୌଣସି ସନ୍ଦେହ ନାହିଁ। ସାରଳା - ମହାଭାରତରେ ଅଛି, "ବେଦମନ୍ତ୍ର ଯୁଗତେ ସେ ଯେ ପଢ଼ନ୍ତି କଳସା। ବଶିଷ୍ଠ ମାରକଣ୍ଡ ଆବର ଦୁର୍ବାସା।" ବଶିଷ୍ଠ ମାର୍କଣ୍ଡ ପ୍ରଭୃତି ଋଷିମାନେ ବିବାହବେଦୀ ନିକଟରେ ବସି ବର-କନ୍ୟାଙ୍କ ଉଦ୍ଦେଶ୍ୟରେ ଯେଉଁ କଳସା ପଢୁଥିଲେ, ସେଇ କଳସା ଶବ୍ଦ ଉପରେ ବତ୍ସାଦାସକୃତ କଳସା ଚଉତିଶାକୁ ଆରୋପ କରିଦେଇ ସମାଲୋଚକମାନେ ଯେପରି ଭୁଲ୍ କରିଥିଲେ, ବ୍ରହ୍ମାଙ୍କ ସମ୍ମୁଖରେ ଶିବ ଯେଉଁ **ଶିଶୁବେଦ** ପଢୁଥିଲେ, ତାହା ୨୫ଟି ଶ୍ଳୋକବିଶିଷ୍ଟ **ଶିଶୁବେଦ** ପୁସ୍ତକ ବ୍ୟତୀତ ଅନ୍ୟ କିଛି ନୁହେଁ - ବିଚାର କରିବାରେ ପୂର୍ବକଥିତ ଭୁଲ୍‌ର ଅନୁସରଣ କରାଯାଇଥିବାର ଦେଖିବାକୁ ମିଳେ। (ଏଠାରେ ଉଲ୍ଲେଖ କରିବା ପ୍ରୟୋଜନ ଯେ, ଏହି ପ୍ରବନ୍ଧର ଲେଖକ ମଧ୍ୟ ତା'ର 'ଓଡିଆ କାବ୍ୟ - କବିତା'ର କ୍ରମ ପରିଣାମ' ଶୀର୍ଷକ ଦୀର୍ଘ ଆଲୋଚନାରେ ପ୍ରଚଳିତ ଭ୍ରାନ୍ତ ଧାରଣାର ବଶବର୍ତ୍ତୀ ହୋଇ 'ଶିଶୁବେଦ'କୁ ସାରଳା ଦାସଙ୍କ ପୂର୍ବକାଳୀନ ରଚନା ରୂପେ ଗ୍ରହଣ କରିଥିଲା)। କିନ୍ତୁ **ଶିଶୁବେଦ**ର ପ୍ରକୃତ ଅର୍ଥ ପ୍ରଣବ ହେଲାପରି, 'କଳସା' ର ଅସଲ ଅର୍ଥ ହେଉଛି ଚାରିବେଦରୁ ନିର୍ବାଚିତ ଆଶୀର୍ବାଦସୂଚକ ବେଦମନ୍ତ୍ର, ଯାହା ବ୍ରାହ୍ମଣ ବା ଋଷିମାନଙ୍କ ମୁଖରୁ ଉଚ୍ଚାରିତ ହେବା ଏକାନ୍ତ ସ୍ୱାଭାବିକ।

କଳସା ଓ ଶିଶୁବେଦର ଆଲୋଚକମାନେ ଏ ଦୁଇଟି ଶବ୍ଦର ଅର୍ଥାବବୋଧ ପ୍ରତି ସମୁଚିତ ଦୃଷ୍ଟି ନ ଦେଇ, ଉଭୟର ଯେ ଏକ ଏକ କଦର୍ଥ କଲେ ତାହା ନୁହେଁ, ନିଜ ନିଜ ଆଲୋଚନା ପ୍ରସଙ୍ଗରେ ଅଧିକ କିଛି ଅସଙ୍ଗତି ମଧ୍ୟ ତିଆରି କରିଦେଲେ। "ବସିଲେ କଟମ୍ବା ମାଡି ବାଳୀ ଘେନି ପିତା" ଶୁଦ୍ଧପାଠକୁ ଏମାନେ ପଢ଼ିଲେ, "ବସିଲୋକ ଟମ୍ବା ମାଡି ବାଳୀ ଘେନି ପିତା" ଓ ଏଥିରେ ଥିବା 'ଟମ୍ବା' ପରି ଏକ ଅର୍ଥଶୂନ୍ୟ ଅକ୍ଷର ସମଷ୍ଟିର 'ଅର୍ଥ ଆସନ ବିଶେଷ' ବୋଲି ବିଚାର କଲେ। 'କଟମ୍ବା'କୁ 'ଟମ୍ବା' ରୂପେ ଗ୍ରହଣ କରିବା ଫଳରେ କଟମ୍ବା ଶବ୍ଦର ମୂଳ ଯେ ସଂସ୍କୃତ କଟ ଶବ୍ଦ ( ଅର୍ଥାତ୍ କଟ ମଶିଣା) ତାହା ଅବଧାରଣ କରିବାର ଆଉ ଅବକାଶ ରହିଲା ନାହିଁ। ଅନୁରୂପ ଦୃଷ୍ଟାନ୍ତ **ଶିଶୁବେଦ** ଆଲୋଚନାରେ ଆମେ ଦେଖିବାକୁ ପାଉଁ। ଶିଶୁବେଦର ଶୁଦ୍ଧପାଠ "ଆହୁଟ ହାତ କଳେବର ଭିତର'କୁ ଆଲୋଚକମାନେ ପଢ଼ିଲେ, "ଆହୁଟ ହାତ କଲେ କର ଭିତର' ଏଠାରେ

ଏମାନେ 'କଳେବର'କୁ 'କଲେ କର' ରୂପେ ଯେ ପଢ଼ିଲେ ତାହା ନୁହେଁ, 'ଆହୁଟ'ର ଅର୍ଥ ନ ବୁଝି ତା'ର ଅର୍ଥ କଲେ 'ଘୂର୍ଣ୍ଣନ' ଯାହା ମୂଳ ପାଦର ଅର୍ଥ ସହିତ ସମ୍ପୂର୍ଣ୍ଣ ଅପ୍ରାସଙ୍ଗିକ। 'ଆହୁଟ'ର ପ୍ରକୃତ ଅର୍ଥ ହେଉଛି 'ସାଢ଼େତିନ' ଯାହା ଏକାନ୍ତ ସତ୍ୟ ଓ ଯୁକ୍ତିଯୁକ୍ତ। ଦେଖିବାର କଥା, ବଙ୍ଗଳା ଓ ହିନ୍ଦୀ ସାହିତ୍ୟରେ ମଧ୍ୟ ଏଇ 'ସାଢ଼େତିନ' ଅର୍ଥଟି ସମସ୍ତଙ୍କଦ୍ୱାରା ଗୃହୀତ।

ପଞ୍ଚସଖା ସାହିତ୍ୟର ପ୍ରଥମ ଓଡ଼ିଆ ସମାଲୋଚକ ପଣ୍ଡିତ ମୃତ୍ୟୁଞ୍ଜୟ ରଥ ୧୯୦୯ ସାଲ ସେପ୍ଟେମ୍ବର ମାସରେ 'ଅଚ୍ୟୁତାନନ୍ଦ' ପ୍ରବନ୍ଧ ପ୍ରକାଶ କରନ୍ତି। **କଳସା ଚଉତିଶା** ଓ **ଶିଶୁବେଦ** ପୁସ୍ତକ ପ୍ରାକ୍-ସାରଳା ଯୁଗର ଏକ ଏକ କୃତି ରୂପେ ଯଥାକ୍ରମେ ୧୯୩୨ ଓ ୧୯୫୩ ସାଲରେ ଅବଧାରିତ ହୁଏ। ଆଲୋଚନା ପ୍ରସ୍ତୁତ କଲାବେଳେ, ଆଲୋଚକମାନେ ସର୍ବତ୍ର ବିଚାରବୁଦ୍ଧି ପ୍ରୟୋଗ କରି ସିଦ୍ଧାନ୍ତମାନ ନେଇଥିଲେ, ପରବର୍ତ୍ତୀ ସମୟରେ ସେମାନଙ୍କ ଭ୍ରାନ୍ତ ଅଭିମତ ଏକାନ୍ତ ସତ୍ୟ ରୂପେ ସମ୍ମାନିତ ହେବାର ଅବକାଶ ରହିନଥାନ୍ତା। ଦେଖିବାର କଥା, ଏଇ ଆଲୋଚକମାନଙ୍କ ବିଚାରଧାରା ଏକଏକ ବିଶ୍ୱାସ ଉପରେ ପ୍ରତିଷ୍ଠିତ ଥିବାରୁ ଏମାନଙ୍କ ଆଲୋଚନାରେ ସମାନ ଆଭିମୁଖ୍ୟ ପରିଲକ୍ଷିତ ହେବା ଏକାନ୍ତ ସମ୍ଭବପର। ସାମନ୍ତରାୟ ଅତି ବିଜ୍ଞତାର ସହ ଏଇ ସମାନ ଆଭିମୁଖ୍ୟକୁ ନିରୀକ୍ଷଣ କରି **କଳସା** ଓ **ଶିଶୁବେଦ** ଆଲୋଚନାକୁ ପଞ୍ଚସଖା-ସାହିତ୍ୟ-ସମୀକ୍ଷାର ଭିତ୍ତିରୂପେ ବ୍ୟବହାର କରିଅଛନ୍ତି। ବହୁ ଭ୍ରାନ୍ତିପୂର୍ଣ୍ଣ କଳସା ଓ ଶିଶୁବେଦ-ଆଲୋଚନା ଯଦି ପାଞ୍ଚ ଦଶବର୍ଷ ଭିତରେ ସତ୍ୟ ହୋଇପାରେ, ତା' ହେଲେ ଧର୍ମ-ସାହିତ୍ୟରେ ଭକ୍ତମାନଙ୍କଦ୍ୱାରା ବହୁ ବର୍ଷ ଧରି ପ୍ରଚାରିତ ପ୍ରେମମାର୍ଗୀ ଶ୍ରୀଚୈତନ୍ୟ ସମ୍ପର୍କିତ ପଞ୍ଚସଖା ଧାରଣା ସଂପୂର୍ଣ୍ଣ ବାସ୍ତବ ସତ୍ୟ ରୂପେ ସମ୍ମାନିତ ହେବା ଆଦୌ ବିଚିତ୍ର ନୁହେଁ। ସାମନ୍ତରାୟଙ୍କ ପ୍ରବନ୍ଧଗତ ଆଲୋଚନାର ସମଗ୍ର ପରିକଳ୍ପନା ଉପରେ ଉପଯୁକ୍ତ ଧାରଣା କରି ନପାରିଲେ, ଆଲୋଚନା କେତେକାଂଶରେ ଦୁର୍ବୋଧ୍ୟ ହୋଇପଡିବା କିମ୍ବା ନିଜେ ସମାଲୋଚକ ଜଣେ ବିବାଦାତ୍ମକ ବ୍ୟକ୍ତିରୂପେ ପ୍ରତିଭାତ ହେବା ଏକାନ୍ତ ସ୍ୱାଭାବିକ।

ସମାଲୋଚକମାନେ **ଟମ୍ବା - କଟମ୍ବା** କିମ୍ବା **ଆହୁଟ - ଶିଶୁବେଦ** କିମ୍ବା **ପଞ୍ଚସଖା** ଶବ୍ଦକୁ ନୂତନ ଦୃଷ୍ଟିରୁ ବ୍ୟାଖ୍ୟା କଲାପରି, ଅଧ୍ୟାପକ ସାମନ୍ତରାୟ ସ୍ୱାଧୀନ ଭାବରେ ଯେଉଁ ତିନିଟି ଦୁର୍ବୋଧ୍ୟ ଶବ୍ଦର ଅର୍ଥ ବିଶ୍ଳେଷଣ ମାଧ୍ୟମରେ ବାହାର କରିଛନ୍ତି, ତାହା 'ଦେବନାଶନ ବଟ' (ଏପ୍ରିଲ୍, ୧୯୭୪) ଓ 'ଅବନା ଆଠଅକ୍ଷର' (ଅଗଷ୍ଟ, ୧୯୭୫) ପ୍ରବନ୍ଧରେ ସ୍ଥାନ ପାଇଛି। ଆଜ୍ଞାଚକ୍ର ବା ତ୍ରିକୂଟର ବର୍ଣ୍ଣନାବେଳେ **ଦେବନାଶନ** ବଟର ଉଲ୍ଲେଖ ଓଡ଼ିଆ ଯୋଗ-ସାହିତ୍ୟରେ ସାଧାରଣତଃ ଦେଖିବାକୁ ମିଳେ। ସେଠାରେ ଏପରି ଏକ ଶବ୍ଦର ପ୍ରୟୋଗ ସଂପୂର୍ଣ୍ଣ ଦୁର୍ବୋଧ୍ୟ, ଏପରିକି, ଅନେକ ସ୍ଥଳରେ ଏହା ଏକାନ୍ତ କୁହେଳିକାଚ୍ଛନ୍ନ ପରି ଅନୁମିତ ହୁଏ। ସାରଳା ମହାଭାରତର ବିଭିନ୍ନ ସ୍ଥଳରେ ବ୍ୟବହୃତ ଏଇ ଶବ୍ଦ ଓ ତତ୍‌ସମ୍ପର୍କିତ ବିଷୟକୁ ଏକତ୍ର କରି ଏଇ ବଟର ଜନ୍ମ-ଇତିହାସ ଓ କ୍ରିୟାକଳାପ ଭିତରେ ଏ ଶବ୍ଦ 'ବିପଦ'ର ଅର୍ଥ ବହନ କରି କିପରି ଯୋଗ-ସାହିତ୍ୟରେ ସ୍ଥାନ ପାଇଛି, ତାହା ପ୍ରାବନ୍ଧିକ ଅତି ପ୍ରାଞ୍ଜଳ ଭାବେ ବୁଝାଇ ଦେଇଛନ୍ତି। ସାରଳା ମହାଭାରତର ଅତ୍ରତତ୍ର

ବ୍ୟବହୃତ ଏଇ ବଟଦ୍ୱାରା ମହାଭାରତ ଯୁଦ୍ଧର ପ୍ରଧାନପ୍ରଧାନ ବିଷୟ କିପରି ନିୟନ୍ତ୍ରିତ ହୋଇଅଛି, ତାହା ପ୍ରାବନ୍ଧିକ ଦେଖାଇ ଦେଇ, ସାରଳା ଦାସଙ୍କ ଗୁମ୍ଫଗୁମ୍ଫନର ଚମତ୍କାରିତା ପ୍ରଦାନରେ ସମର୍ଥ ହୋଇଅଛନ୍ତି। **ଦେବନାଶନ** ପ୍ରବନ୍ଧ ଅନୁଶୀଳନ କଲେ ଏହା ଏକ କ୍ଷୁଦ୍ରଗଳ୍ପ ପରି ଅନୁଭୂତ ହୁଏ। ବିଭିନ୍ନ ଘଟଣା ପରସ୍ପର ସମ୍ବନ୍ଧାନ୍ୱିତ ଭାବେ ଏଥିରେ ଯେପରି ସଜ୍ଜିତ ହୋଇ ଗୋଟିକ ପରେ ଗୋଟିଏ ରହସ୍ୟ ଉଦ୍‌ଘାଟନ କରୁଛନ୍ତି, ପଢ଼ିଲେ ମନେହୁଏ, ସେସବୁ ଯେମିତି ମହାଭାରତର କୌଣସି ଗୋଟିଏ ସ୍ଥଳରେ ଥିଲା ଏବଂ  ସମାଲୋଚକ ସକଳଙ୍କୁ ପ୍ରବନ୍ଧରେ ପରିବେଷଣ କରିଦେଇଛନ୍ତି ମାତ୍ର। ଗଳ୍ପର ପରିସର ଭିତରେ ଆହୃତ ଉପାଦାନର ଏପରି ମନୋଜ୍ଞ ସଜ୍ଜୀକରଣ ସାମନ୍ତରାୟଙ୍କଙ୍କର ଯେ ସଂପୂର୍ଣ୍ଣ ନିଜସ୍ୱ, ତାହା ପ୍ରଥମେ ବିଶ୍ୱାସକୁ ନ ଆସିଲେ ମଧ୍ୟ ପାଦଟୀକାରେ ଥିବା ବିଭିନ୍ନ ଉତ୍ସର ଉଲ୍ଲେଖ, ତାହାକୁ ବିଶ୍ୱାସ ନ କରି ରହିହୁଏ ନାହିଁ। **ଅବନା ଆଠଅକ୍ଷର** ହେଉଛି 'ପ ର ର ଜ ସ ସ ବ ଦ'। ଓଡିଆ ଯୋଗ-ସାହିତ୍ୟରେ ଏହାର ବହୁଳ ପ୍ରୟୋଗ ରହିଛି। ମାତ୍ର ଏପରି ଏକ ବିଭ୍ରାନ୍ତିକର ଅକ୍ଷର-ସମଷ୍ଟିର ପ୍ରକୃତ ଅର୍ଥ କ'ଣ କିମ୍ୱା ଏଥିରେ ବନା ଥିଲେ ତା'ର ରୂପ କ'ଣ ହୋଇଥାନ୍ତା, କିମ୍ୱା ଏହାର ପ୍ରୟୋଜନୀୟତା ଓ ଲକ୍ଷ୍ୟ ଉପରେ କେହି କେବେ ଚିନ୍ତା କରିଥିବା ପରି ମନେହୁଏନାହିଁ। **ଅବନା ଆଠଅକ୍ଷର**ର ମୂଳ ବୈଦିକ ରୂପ ହେଉଛି 'ପରୋ ରଜସେ ସାବେଦୋମ୍'। ତ୍ରିପଦା ଗାୟତ୍ରୀର ଏହା ଚତୁର୍ଥ ପାଦ। ପ୍ରଣବର ଚାରିମାତ୍ରା ଅ, ଉ, ମ, ଅର୍ଦ୍ଧମାତ୍ରା ଓ ଧ୍ୟାନର ଚାରି ଅବସ୍ଥା। ଜାଗ୍ରତ, ନିଦ୍ରା, ସୁଷୁପ୍ତି ଓ ତୁରୀୟ ସହିତ ସାମିଲ୍ ହେବାପାଇଁ ଗାୟତ୍ରୀର ଚତୁର୍ଥ ପାଦର କଳ୍ପନା କରାଯାଇଥିବା ସୁନିଶ୍ଚିତ। ଏ ସମ୍ପର୍କରେ ସାମନ୍ତରାୟ କହନ୍ତି, "ଗାୟତ୍ରୀର ସାବିତ୍ରୀ ମନ୍ତ୍ର ତିନିପାଦ ବିଶିଷ୍ଟ ଗାୟତ୍ରିଛନ୍ଦରେ ଗଠିତ ହେଲେ ହେଁ-ପ୍ରଣବର ଚତୁର୍ଥ ମାତ୍ରା-ଅର୍ଦ୍ଧମାତ୍ରା ସହିତ ସାମିଲ ହେବାପାଇଁ ଗାୟତ୍ରୀର ଚତୁର୍ଥପାଦର ଆବଶ୍ୟକତା ଅନୁଭୂତ ହୋଇଅଛି। ପ୍ରଣବର ପ୍ରଥମ ତିନିପାଦପାଇଁ ଧ୍ୟାନର ତିନି ଅବସ୍ଥା। ଜାଗ୍ରତ, ସ୍ୱପ୍ନ, ସୁଷୁପ୍ତି-ସହିତ ସାମିଲ୍ ହେଲାବେଳେ, ଚତୁର୍ଥ ମାତ୍ରା ଅର୍ଦ୍ଧମାତ୍ରାକୁ ତୁରୀୟାବସ୍ଥା ସହ ମିଶାଇ ଦିଆଯାଇଛି। ସମାଧିର ଏଇ ତୁରୀୟାବସ୍ଥାରେ ଯେଉଁ ଅର୍ଦ୍ଧମାତ୍ରାକୁ ଧ୍ୟାନ କରାଯାଏ, ଗାୟତ୍ରୀର ଚତୁର୍ଥ ପାଦ-**ଅବନା ଆଠଅକ୍ଷର** – ତାହାରି ସ୍ଥାନ ଅଧିକାର କରିଥିବାର ଦେଖିବାକୁ ମିଳେ। ଫଳରେ, ପ୍ରଣବର ଅର୍ଦ୍ଧମାତ୍ରା ଓ ଗାୟତ୍ରୀର ଚତୁର୍ଥପାଦ ଅର୍ଥାତ୍ ଅବନା ଆଠଅକ୍ଷର, ଏ ଉଭୟଙ୍କ ଧ୍ୟାନର ବର୍ଣ୍ଣନା ଏକ ହେବା ଏକାନ୍ତ ସ୍ୱାଭାବିକ୍।" ଦେଖିବାର କଥା, ଏଇ ଅର୍ଦ୍ଧମାତ୍ରା ବା ଅବନା ଆଠଅକ୍ଷରର ଧ୍ୟାନ ସାଧକ ପକ୍ଷରେ ବ୍ରହ୍ମରେ ଲୀନ ହେବାର ସୂଚନା ଦେଇଥାଏ। ଆଲୋଚ୍ୟ 'ଅବନା ଆଠଅକ୍ଷର' ପ୍ରବନ୍ଧରେ 'ସିଦ୍ଧିରସ୍ତୁ' ପରି ଅନ୍ୟ ଏକ ଦୁର୍ବୋଧ ଶବ୍ଦ ଆଲୋଚିତ ହୋଇଅଛି। ଶକ୍ତିଙ୍କର ସପ୍ତଭୂମି ମଧ୍ୟରୁ ପଞ୍ଚମଭୂମି (କାହାରି କାହାରି ମତରେ ପୃଷ୍ଠଭୂମି) ହେଉଛି ଆଞ୍ଜିରୂପା ବ୍ୟାପିକା ଶକ୍ତି। ମିଥିଳାର ସାମାଜିକ ଚଳଣିରେ, ବିଦ୍ୟାରମ୍ଭ ବେଳେ ଆଞ୍ଜିଚିହ୍ନ ପ୍ରଥମେ ଲେଖି ଅନ୍ୟ ଅକ୍ଷର ଲେଖି ଶିଖିବାକୁ ହୁଏ। ଏ ସମ୍ପର୍କରେ ସାମନ୍ତରାୟ କହନ୍ତି, 'ସୃଷ୍ଟିର ଆଦ୍ୟରେ ଏଇ ବ୍ୟାପିକାଶକ୍ତି ଆର୍ବିର୍ଭୂତା ହୋଇଥାନ୍ତି। ତେଣୁ ଏହି ଶକ୍ତିଙ୍କର ଲିଖିତ ରୂପ ଏକ ତିର୍ଯ୍ୟକ୍ ରେଖା ଲେଖି ବିଦ୍ୟାରମ୍ଭ କରିବାକୁ ପଡେ। ଦେବୀ ସରସ୍ୱତୀଙ୍କର ଶୁଭାଶୀର୍ବାଦ

ଏଥିରୁ ବ୍ୟଞ୍ଜିତ ହୋଇ ଉଠୁଅଛି।" ପୁନଶ୍ଚ, "ଆଞ୍ଜୀର ଉଲ୍ଲେଖଦ୍ୱାରା ସିଦ୍ଧିର ସୂତ୍ରପାତ ହେବାର ଭାବ ସୂଚିତ ହେଉଅଛି ମାତ୍ର।" ଓଡିଶାର ସାମାଜିକ ଚଳଣିରେ ସିଦ୍ଧିରସ୍ତୁରୁ ବିଦ୍ୟାରମ୍ଭ ହୁଏ ଓ ଓଡିଆ ଯୋଗ-ସାହିତ୍ୟରେ, ଏହାର ଲକ୍ଷ୍ୟ ଠିକ୍ ଆଞ୍ଜୀର ଅନୁରୂପ। ତାହା ସିଦ୍ଧିଲାଭର ଦ୍ୟୋତକ ମାତ୍ର। **ଦେବନାଶନ ବଟ, ଅବନା ଆଠଅକ୍ଷର** ଓ **ସିଦ୍ଧିରସ୍ତୁ**- ଏଇ ତିନିଟିର ଅର୍ଥାବବୋଧ ଦିଗରେ ପ୍ରାବନ୍ଧିକ ଯେଉଁ ସୂକ୍ଷ୍ମ ବିଚାର-ବୁଦ୍ଧି ଓ ବଳିଷ୍ଠ ବିଶ୍ଳେଷଣର ପରିଚୟ ଦେଇଛନ୍ତି, ତା'ର ଅନୁରୂପ ଚିତ୍ର **କଳସା-ଶିଶୁବେଦ-ପଞ୍ଚସଖାର** ସମାଲୋଚନାବେଳେ ଅନ୍ୟ କେଉଁ ଲେଖକଙ୍କ ଆଲୋଚନାରେ ଆମେ ଦେଖିନଥିଲୁ।

**ଅବନା ଆଠଅକ୍ଷର** କିମ୍ବା **ସିଦ୍ଧିରସ୍ତୁ** ପରି ଏକଏକ କଠିନ ଶବ୍ଦର ପ୍ରକୃତିଗତ ଅର୍ଥ ନିର୍ଦ୍ଧାରଣ ପାଇଁ ସାମନ୍ତରାୟ ଯେଉଁ ଆଲୋଚନା କରିଛନ୍ତି, ତାହା ସାଧାରଣ ପାଠକଙ୍କ ପକ୍ଷରେ ସୁବୋଧ, ଏପରିକି ପ୍ରୀତିପଦ ହେବ ବୋଲି ମନେହୁଏନାହିଁ। ଯୋଗ-ସାହିତ୍ୟ ସହିତ ସଂପୂର୍ଣ୍ଣ ଅପରିଚିତ ପାଠକ ଏହା ପ୍ରତି ଆକୃଷ୍ଟ ନ ହେବା ଏକାନ୍ତ ସମ୍ଭବ। ଆମେ କିନ୍ତୁ ବିସ୍ମିତ ହେଉଛୁ ଯେ, ଯେଉଁ ଗଣିତ ଶିକ୍ଷକ ଅଧ୍ୟାପକ ଜୀବନର ଆରମ୍ଭରୁ ପ୍ରାଚୀନ ସାହିତ୍ୟ ସମୀକ୍ଷକର ଭୂମିକା ଗ୍ରହଣ କରି ପରବର୍ତ୍ତୀ ସମୟରେ ଆଧୁନିକ ସାହିତ୍ୟାଲୋଚନାବେଳେ ସନ, ତାରିଖ ଗଣନାରେ ନିଜକୁ ନିୟୋଜିତ କରିଥିଲେ, ବିଧିର କେଉଁ ନିର୍ଦ୍ଦେଶରେ, ସେଇ ବ୍ୟକ୍ତି ଜୀବନର ଶେଷ ଭାଗରେ ଦୁର୍ବୋଧ ଯୋଗ-ସାହିତ୍ୟର ବିଶ୍ଳେଷଣ ଭିତରେ ଏପରି ଅପୂର୍ବ କୃତିତ୍ୱର ଅଧିକାରୀ ହୋଇପାରିଲେ। ସାମନ୍ତରାୟଙ୍କ ଏପରି ରୂପ ପରିବର୍ତ୍ତନରେ ମଧ୍ୟ ସର୍ବତ୍ର ତାଙ୍କ ପ୍ରତିଭାର ସମୁଜ୍ଜ୍ୱଳ ଜ୍ୟୋତି ଅନୁଭବ ନ କରି ରହିହୁଏନାହିଁ। ବଳିଷ୍ଠ ବିଚାର-ବିଶ୍ଳେଷଣ, ଗଭୀର ଅନୁଧ୍ୟାନ ଓ ଅନ୍ୱେଷଣ, ତିର୍ଯ୍ୟକ୍ ଦୃଷ୍ଟିକୋଣ ଓ ନୂତନ ପ୍ରତି ଆକର୍ଷଣ,ଉପଯୁକ୍ତ ବିଷୟ ନିର୍ବାଚନ ଓ ସମଗ୍ର ସୌନ୍ଦର୍ଯ୍ୟ ପ୍ରତିଷ୍ଠା ଦିଗରେ ଗଭୀର ଅନୁରକ୍ତି ପ୍ରକାଶ, ଯୁକ୍ତିଯୁକ୍ତ ଅଭିମତ ପରିବେଷଣ ଓ ପ୍ରତ୍ୟେକ ଆଲୋଚନାର ଏକ ସମଗ୍ର ଐକ୍ୟବୋଧ ପ୍ରତି ସମାଧିକ ଦୃଷ୍ଟିନିକ୍ଷେପ- ଏ ସମସ୍ତର ସାମୂହିକ ମିଳନରେ ତାହାଙ୍କ ମାନସିକ ଆଭିମୁଖ୍ୟ ଗଠିତ ହୋଇଥିବାରୁ ସେଥିରୁ ଫୁଟି ପ୍ରକାଶ ପାଉଥିବା ସମସ୍ତ ଚିନ୍ତା ଓ ଆଲୋଚନା ଏକ ସ୍ୱତନ୍ତ୍ର ଅଭିନବ ରୂପ ଧାରଣ କରିଛି।

**ଆଲୋଚନାର ଦୁଇଟି ବଳିଷ୍ଠ ଭିତ୍ତିଭୂମି**

ପ୍ରତ୍ୟେକ ପୁସ୍ତକର ରଚନା-ସମୟ ନିରୂପଣ ଓ ବିଭିନ୍ନ ଦୁର୍ଲଭ ଉପାଦାନର ଆହରଣ, ଏ ଉଭୟ ହେଉଛି ସାମନ୍ତରାୟଙ୍କ ଆଲୋଚନାର ଦୁଇଟି ବଳିଷ୍ଠ ଦିଗ। ତାହାଙ୍କ ମତରେ, "କାଳ କାଳରେ ଜନ୍ମି ହୁଏ ସାର୍ବକାଳୀନ। କାଳର ସାର୍ବକାଳୀନ ଧର୍ମ ହିଁ ତାର ଚିରନ୍ତନ ଧର୍ମ ଓ ତା'ର ପର୍ଯ୍ୟାଲୋଚନା ହିଁ କଳାମୂଲ୍ୟ ନିରୂପଣ ବେଳେ ଏକାନ୍ତ ଅପରିହାର୍ଯ୍ୟ ମାନଦଣ୍ଡ - ଏପରି ଅଭିମତ ସାଧାରଣରେ ଗୃହୀତ। ତଥାପି ଏ ସମ୍ପର୍କରେ କାଳର ମୂଲ୍ୟ ଆଦୌ ଉପେକ୍ଷାର ବିଷୟ ନୁହେଁ। କଳାର କାଳତ୍ୱ ଓ ସାର୍ବକାଳୀନ ଧର୍ମ-ଏ ଉଭୟ ପରସ୍ପର ପରିପନ୍ଥୀ ନୁହନ୍ତି। ବରଂ ଏମାନେ ପରସ୍ପର ସହଯୋଗୀ। ଏଥିରେ ପ୍ରକାଶିତ ଅଭିମତ ଉପରେ ସମାଲୋଚକର ଅଖଣ୍ଡ ବିଶ୍ୱାସ ଥିବାରୁ ଆଧୁନିକ ସାହିତ୍ୟାଲୋଚନା ବେଳେ ପ୍ରତ୍ୟେକ ରଚନାର ପ୍ରକାଶ ସମୟ ଉପରେ ସେ ସର୍ବାଧିକ ଗୁରୁତ୍ୱଆରୋପ

କରିଅଛନ୍ତି। ସୃଷ୍ଟିର ପରିବେଶ ଅନୁଧ୍ୟାନ ଦିଗରେ ରଚନା ସମୟର ଜ୍ଞାନ ଏକ ଅପରିହାର୍ଯ୍ୟ ଆବଶ୍ୟକତା। ପରିବେଶଦ୍ୱାରା ପ୍ରଭାବିତ ସ୍ରଷ୍ଟାର ମନରୁ ଯେଉଁ ସୃଷ୍ଟିର ସ୍ୱରୂପ ଉପଲବ୍ଧ ପାଇଁ ସ୍ରଷ୍ଟାର ମନ ଓ ପରିବେଶର ଭୂମିକା ଏକାନ୍ତ ଦୁର୍ଲଙ୍ଘନୀୟ ଥିବାରୁ, ସାମନ୍ତରାୟ ନିଜ ଆଲୋଚନାରେ ସର୍ବତ୍ର ରଚନା ସମୟର ସୂଚନା ଦେଇଥାନ୍ତି। ଏହିପରି ସମୟ ନିର୍ଦ୍ଦେଶ ଜଣେଜଣେ କବିଙ୍କ ସମସ୍ତ ରଚନାର କାଳନିରୂପଣରେ ପରିପୂର୍ଣ୍ଣ ରୂପରେ ଦେଖିବାକୁ ମିଳେ। ରାଧାନାଥ, ମଧୁସୂଦନ, ଫକୀରମୋହନ, ଗଙ୍ଗାଧର, ନନ୍ଦକିଶୋର, ଶ୍ୟାମସୁନ୍ଦର ରାଜଗୁରୁ, ପଣ୍ଡିତ ମୃତ୍ୟୁଞ୍ଜୟ, ଅଧ୍ୟାପକ ଆର୍ତ୍ତବଲ୍ଲଭ, ମାୟାଧର ମାନସିଂହ, ଗୋଲୋକବିହାରୀ ଧଳ- ଏଇପରି କେତେଜଣ ଆଧୁନିକ ଲେଖକଙ୍କ ରଚନାବଳୀର କାଳାନୁକ୍ରମିକ ଯେଉଁ ତାଲିକା ସେ ପ୍ରସ୍ତୁତ କରିଛନ୍ତି, ତାର ଆଦି ସଂକେତ ଉପେନ୍ଦ୍ର ଭଞ୍ଜଙ୍କ ରଚନା ନିର୍ଣ୍ଣୟରେ ପ୍ରଥମେ ପରିଲକ୍ଷିତ ହୁଏ। କାଳାନୁକ୍ରମିକ ଭାବେ ସଜ୍ଜିତ ଏପରି ରଚନା ତାଲିକା ପ୍ରସ୍ତୁତିର ପଶ୍ଚାତରେ ସାମନ୍ତରାୟଙ୍କ ଅଗାଧ ଅଧ୍ୟବସାୟ ଓ ଗଭୀର ଅନୁସନ୍ଧାନ ଉପଲବ୍ଧ କରିବା କଷ୍ଟକର ନୁହେଁ। ଏହା ସାଧାରଣ ପାଠକମାନଙ୍କପାଇଁ ଉଦ୍ଦିଷ୍ଟ ନୁହେଁ। ଗବେଷକ ଓ ଉଚ୍ଚକୋଟୀର ସମାଲୋଚକମାନେ ହିଁ ଏପରି ରଚନା ତାଲିକାର ମହତ୍ତ୍ୱ କଳନା କରିପାରନ୍ତି। ଯଥାର୍ଥତଃ, ସମାଲୋଚନା-କ୍ଷେତ୍ରରେ ଏହା ଏକ ନିରାପଦ ଓ ନିର୍ବାକ୍ ପଥ-ପ୍ରଦର୍ଶକ। କବି-ପ୍ରତିଭାର ଉଦ୍ଭବ, ବିକାଶ, ତା'ର ଗତିଧାରା ଓ ଆଭିମୁଖ୍ୟ ବିଚାର ଦିଗରେ ଏହା ଜଣେ ସମାଲୋଚକକୁ ବହୁ ମୂଲ୍ୟବାନ୍ ମାନସିକ ଖାଦ୍ୟ ଯୋଗାଇଥାଏ। ସମାଲୋଚକ ଏହାର ଅନୁସରଣରେ ସ୍ୱାଧୀନ ଭାବରେ ଗୋଟିଏ ଗୋଟିଏ କୃତିର ବିଚାର ଓ ବିଶ୍ଳେଷଣ କରିବାରେ ସମର୍ଥ ହୋଇଥାଏ। ଓଡିଆ ସମାଲୋଚନା ସାହିତ୍ୟରେ ଅଧ୍ୟାପକ ସାମନ୍ତରାୟ ହିଁ ଏ କ୍ଷେତ୍ରରେ ପ୍ରଥମ ପଥପ୍ରଦର୍ଶକର ଗୌରବ ଲାଭ କରିଛନ୍ତି।

ସାମନ୍ତରାୟଙ୍କ ଆଲୋଚନାରେ ପ୍ରଦତ୍ତ ପ୍ରତ୍ୟେକ ଅଭିମତ ଓ ବିଷୟ ବର୍ଣ୍ଣନା ପୂର୍ଣ୍ଣତଃ ତଥ୍ୟଭିତ୍ତିକ। ଏପରି ତଥ୍ୟଭିତ୍ତିକ ଆଲୋଚନା ହେତୁ, ଅଭିମତ ସବୁବେଳେ ଅଭ୍ରାନ୍ତ କିମ୍ବା ଅଧିକ ବିଶ୍ୱାସଯୋଗ୍ୟ ବୋଲି ସମ୍ମାନିତ ହୋଇଥାଏ। ବିଭିନ୍ନ ସରକାରୀ ରେକର୍ଡ ଓ ପତ୍ରପତ୍ରିକାରୁ ନୂତନ ନୂତନ ଉପାଦାନ ଆହରଣ କରି ଏକଏକ ନିର୍ଦ୍ଦିଷ୍ଟ ଧରଣର ଉପାଦାନକୁ ଏକ ଏକ ନିର୍ଦ୍ଦିଷ୍ଟ କ୍ରମରେ ସଜାଇ ରଖିଦେବାଦ୍ୱାରା ଉପାଦାନ ସ୍ୱତଃ ଯେଉଁ ସତ୍ୟ ଦିଗକୁ ଗତିକରେ, ତାହାହିଁ ଆଲୋଚକଙ୍କ ଅଭିମତ ରୂପେ ପ୍ରକାଶ ପାଇଥାଏ। ଏ ପ୍ରକ୍ରିୟାରେ ଆଲୋଚକଙ୍କ କୌଣସି ପୂର୍ବ ପରିକଳ୍ପିତ ଧାରଣା ବା ଅଭିମତ ଉପାଦାନ ଉପରେ ଆରୋପିତ ହେବାର ଅବକାଶ ନଥାଏ। ଯେଉଁମାନେ ଏଇ ଧାରାରେ ଆଲୋଚନା କରିଥାନ୍ତି, ସେମାନଙ୍କର କୌଣସି ଅଭିମତ କପୋଳକଳ୍ପିତ ବୋଲି ନିନ୍ଦିତ କିମ୍ବା ଅନାଦୃତ ହୁଏନାହିଁ। ଅତ୍ୟନ୍ତ ସୁଖର ବିଷୟ ଯେ- ସାମନ୍ତରାୟଙ୍କ ସମଗ୍ର ସମାଲୋଚନା-ସାହିତ୍ୟରେ ଏପରି ଏକ ନିନ୍ଦିତ ପନ୍ଥାର ଗୋଟିଏ ମାତ୍ର ନିଦର୍ଶନ ଆମ ଦୃଷ୍ଟିକୁ ଆସିନାହିଁ। ସମାଲୋଚନା କ୍ଷେତ୍ରରେ ମୌଳିକ ଉପାଦାନର ଉପାଦେୟତା ଉପରେ ତାଙ୍କର ଅଗାଧ ବିଶ୍ୱାସ ଥିବାରୁ, ସେ ସର୍ବତ୍ର କ୍ଷୁଦ୍ରକ୍ଷୁଦ୍ର ଉଦ୍ଧୃତିଠାରୁ ଆରମ୍ଭ କରି ସ୍ଥଳବିଶେଷରେ ଦୀର୍ଘତର ଉଦ୍ଧୃତିମାନ

ଦେବାକୁ ଆଦୌ ସଙ୍କୋଚ ଅନୁଭବ କରିନାହାନ୍ତି। ଏପରି ଦୀର୍ଘ ଉଦ୍ଧୃତିକୁ କେହିକେହି ଅନାବଶ୍ୟକ କିମ୍ବା ଅପ୍ରାସଙ୍ଗିକ ବୋଲି ବିଚାର କରିପାରନ୍ତି। କିନ୍ତୁ ଦେଖିବାର କଥା, ଲୋକଲୋଚନର ଆଗୋଚରରେ ଥିବା ଏପରି ଦୁଷ୍ପ୍ରାପ୍ୟ ଉପାଦାନକୁ ତା'ର ବୃହତ୍ତର ରୂପରେ ପରିବେଷଣ କରି ତାକୁ ହୁଏତ ସେ ଧ୍ୱଂସମୁଖରୁ ରକ୍ଷା କରିଅଛନ୍ତି, କିମ୍ବା ମୂଳ ଉପାଦାନ ଉପରେ ଅଧିକ ଚିନ୍ତା ଓ ଅନୁଶୀଳନ କରିବାପାଇଁ ପାଠକକୁ ଏକ ଅପୂର୍ବ ସୁଯୋଗ ଦେଇଛନ୍ତି ବୋଲି ବିଶ୍ୱାସ କରିବାକୁ ଇଚ୍ଛା ହୁଏ। କେତେକ ଦୁର୍ଲ୍ଲଭ ରଚନାକୁ ପରିପୂର୍ଣ୍ଣ ରୂପରେ ଲୋକଲୋଚନକୁ ଆଣିବା ହେଉଛି ଏପରି ଉପାଦାନ ଆହରଣର ଅନ୍ତିମ ପ୍ରକ୍ରିୟା। କବିବର ରାଧାନାଥଙ୍କ **ଦୁଇଟି ଅମୂଲ୍ୟ ପ୍ରେରିତ ପତ୍ର** ସେଇ ଉଦ୍ଦେଶ୍ୟରେ ସେ ଆହରଣ କରି ବିଜୁଳି-ଇନ୍ଦ୍ରଧନୁର ପୂର୍ବ ଓ ପର ସମୟର ଚିନ୍ତାଧାରା ଉଲ୍ଲେଖ କରିଅଛନ୍ତି। ମଧୁସୂଦନଙ୍କ 'ପ୍ରବନ୍ଧମାଳା' ପୁସ୍ତକ  ଉପରେ ରାଧାନାଥଙ୍କ ମୂଲ୍ୟବାନ୍ ଆଲୋଚନା ବହୁ ଦିଗରୁ ମହତ୍ତ୍ୱପୂର୍ଣ୍ଣ। ଭକ୍ତକବିଙ୍କ 'ଅନନ୍ତ-ଆମ୍ଭମାନଙ୍କର ଆଦର୍ଶ' ପ୍ରବନ୍ଧ ତାହାଙ୍କ ଆଧାତ୍ମିକ ଚିନ୍ତା ସମ୍ବଳିତ କବିତାଗୁଡ଼ିକର ଅବବୋଧ ଦିଗରେ ନୂତନ ଆଲୋକପାତ କରିଥାଏ। ଅଶ୍ଳୀଳତା ଓ ମଦ୍ୟପାନ ବିରୋଧରେ ଗତ ଶତାବ୍ଦୀରେ ହୋଇଥିବା ଆନ୍ଦୋଳନ ଉପରେ ଏଇପରି ଦୁଇଟି ମୂଲ୍ୟବାନ୍ ଲେଖା ସଂଗ୍ରହ କରି, ପ୍ରାବନ୍ଧିକ ଆଧୁନିକ ଓଡ଼ିଆ ସାହିତ୍ୟର ଗତି-ପ୍ରକୃତି ଉପଲବ୍ଧି ଦିଗରେ ପାଠକକୁ ବହୁ ସାହାଯ୍ୟ କରିଅଛନ୍ତି। ଅଜ୍ଞାତ ଭାବରେ ପଡ଼ିରହିଥିବା ବହୁ ପୁରାତନ ତଥ୍ୟ ମଧ୍ୟରୁ ଯାହା ସାହିତ୍ୟ ଅଧ୍ୟୟନ ଦିଗରେ ପାଠକକୁ ସାହାଯ୍ୟ କରିବ ବୋଲି ସେ ଅନୁଭବ କରିଛନ୍ତି, ଅତି ସଜ୍ଞାନଚିତ୍ତରେ ସେସବୁ ସେ ନିର୍ବାଚନ କରିଛନ୍ତି। ଏପରି ସଂଗ୍ରହ ସାଧାରଣ ପାଠକ, ଏପରିକି ଉଚ୍ଚକୋଟୀର ଗବେଷକ ଓ ସମାଲୋଚକଙ୍କ ଚକ୍ଷୁରେ ଅତୀବ ମୂଲ୍ୟବାନ୍ ଓ ଅପରିହାର୍ଯ୍ୟ ।

**ଉପସଂହାର**

ଡକ୍ଟର ନଟବର ସାମନ୍ତରାୟ ଏକ ବିଚିତ୍ର ଓ ବଳିଷ୍ଠ ପ୍ରତିଭାର ଅଧିକାରୀ। ଅଧ୍ୟାପକ ଜୀବନର ପ୍ରାରମ୍ଭରୁ ହିଁ ପ୍ରତିଭାର ହୁଏ ଆଦ୍ୟ ସ୍ଫୁରଣ। ତତ୍‌ପୂର୍ବ ଜୀବନରେ ସାହିତ୍ୟ ଥିଲା ତାଙ୍କପାଇଁ ଏକ ଅଜ୍ଞାତ ବିଷୟ। ଗଭୀର ଅଧ୍ୟୟନ ଓ ଅଧ୍ୟବସାୟ, ସତତ ମନନ ଓ ଚିନ୍ତନ ଫଳରେ ସେ ସାହିତ୍ୟ-ସମାଲୋଚନା ପାଇଁ ଆହରଣ କରିଥିଲେ ଦୁଇଟି ଆଖି-ଠିକ୍ ତାଙ୍କ ଗବେଷକ ଜୀବନର ପଥଦ୍ରଷ୍ଟା ଆଚାର୍ଯ୍ୟ ପରମାନନ୍ଦଙ୍କ ଦୁଇଟି ସ୍ୱତନ୍ତ୍ର ଆଖିପରି। ଏପରି ଦୁଇଟି ଆଖିରେ ସେ ଦେଖିଥିଲେ ଓଡ଼ିଆ ପଲ୍ଲୀ-ସାହିତ୍ୟ, ପୁରାଣ-ସାହିତ୍ୟ, ପ୍ରାଚୀନ କାବ୍ୟ-ସାହିତ୍ୟ, ବୈଷ୍ଣବ ସାହିତ୍ୟ, ଓଡ଼ିଆ ଯୋଗ-ସାହିତ୍ୟ ଓ ବିଭିନ୍ନ ଦିଗରୁ ସମୃଦ୍ଧ ଆଧୁନିକ ଓଡ଼ିଆ ସାହିତ୍ୟ। ଦୀର୍ଘ ପାଞ୍ଚବର୍ଷ ମଧ୍ୟରେ ବିକଶିତ ଓଡ଼ିଆ ସାହିତ୍ୟର ଯେଉଁ ଯେଉଁ ବିଭାଗ ତାହାଙ୍କର ଏଇ ଦୁଇଟି ଆଖିକୁ ଆକୃଷ୍ଟ କରିଛି, ନିଜର ସେହି ବିଚିତ୍ର ପ୍ରତିଭା ବଳରେ ସେଇ ସେଇ ବିଭାଗ ଉପରେ ସେ ନୂତନ ନୂତନ ଆଲୋକପାତ କରିବାରେ ସମର୍ଥ ହୋଇଅଛନ୍ତି। ଆଧୁନିକ ଓଡ଼ିଆ ସମାଲୋଚନା-ସାହିତ୍ୟକୁ ସେ ଯେ ବହୁଦିଗରୁ ଉନ୍ନତ କରି ନିଜପାଇଁ ଏକ ସ୍ୱତନ୍ତ୍ର ଆଲୋଚନା ମାର୍ଗ ତିଆରି କରିନେଇଛନ୍ତି ତାହା ନୁହେଁ, ଏଇ ମାର୍ଗର ଅନ୍ୟ ପଥଯାତ୍ରୀଙ୍କପାଇଁ ବହୁ ମୂଲ୍ୟବାନ୍ ମାନସିକ ଖାଦ୍ୟ

ସମ୍ପାଦିଯିବାକୁ ମଧ୍ୟ ଭୁଲିଯାଇନାହାନ୍ତି। ଏହି ପ୍ରବନ୍ଧ ଅଧ୍ୟୟନ ଫଳରେ ଯଦି କୌଣସି ପାଠକ ଅଧ୍ୟାପକ ସାମନ୍ତରାୟଙ୍କ ସାହିତ୍ୟ-ସମାଲୋଚନା ଅଧିକ ଅନୁଶୀଳନ କରିବାପାଇଁ ଉତ୍ସାହୀ ହୁଅନ୍ତି, ତା' ହେଲେ ଆମର ସମସ୍ତ ଶ୍ରମ ସାର୍ଥକ ହୋଇଛି ବୋଲି ଅନୁଭୂତ ହେବ। ଏତଦ୍‌ବ୍ୟତୀତ, ଧର୍ମ-ସାହିତ୍ୟ ଆଲୋଚନା ପ୍ରସଙ୍ଗରେ ଡକ୍ଟର ସାମନ୍ତରାୟଙ୍କ ବ୍ୟକ୍ତିତ୍ୱ କିପରି 'ବିବଦମାନ', ତାହା ପୂର୍ବରୁ ଉଲ୍ଲିଖିତ। ମାତ୍ର କଳାସାଧନା ପରି ସମାଲୋଚନା କ୍ଷେତ୍ରରେ ମଧ୍ୟ ସତ୍ୟାନୁରକ୍ତି ବା କ୍ଷୁଦ୍ର ଜାତୀୟ-ପ୍ରୀତି' ଠୁଁ ଦୂରରେ ରହି ମୁକ୍ତପ୍ରାଣରେ ସ୍ୱୀକାର କରିବା କର୍ତ୍ତବ୍ୟ। ଏକ ନିକଟ ଅତୀତରେ ଦସ୍ତୟେଭସ୍କିଙ୍କ ଉତ୍ତରସୂରୀ ସୋଲଜେନିତ୍‌ସିନ୍ ନୋବେଲ୍ ପୁରସ୍କାର ଗ୍ରହଣର ସଭାମଣ୍ଡପରେ ଦୃପ୍ତକଣ୍ଠରେ ଘୋଷଣା କରିଥିଲେ- I would gladly give my life, If it would advance the cause of truth ? (ସତ୍ୟର ମହତ୍ତ୍ୱ ଓ ପ୍ରତିଷ୍ଠା ପାଇଁ ମୁଁ ଜୀବନଦାନ କରିବାକୁ ପ୍ରସ୍ତୁତ) ଏବଂ ଏଇ ବାଣୀ ସମାଲୋଚନା ଜଗତ ପ୍ରତି ମଧ୍ୟ ପ୍ରଯୋଜ୍ୟ। ଅବଶ୍ୟ ଏଥିପାଇଁ କଳାସାଧକ ପରି ସମାଲୋଚକକୁ ମଧ୍ୟ ଦୁଃଖ, ଦୈନ୍ୟ ଓ ଶତ୍ରୁତାର ସମ୍ମୁଖୀନ ହେବାକୁ ପଡିଥାଏ ଏବଂ ତାହାହିଁ ହୁଏତ ଅଧ୍ୟାପକ ସାମନ୍ତରାୟଙ୍କ ଭାଗ୍ୟରେ ବାରମ୍ବାର ଘଟିଛି। କିନ୍ତୁ ସେ ଆଶ୍ୱସ୍ତ ହେବା ଉଚିତ୍ ଯେ, ତାଙ୍କର ବହୁ ଅନୁରାଗୀ ଓ ସତ୍ୟସନ୍ଧାନୀ ପାଠକ ଅଛନ୍ତି ଏବଂ ଭବିଷ୍ୟତରେ ରହିବେ ମଧ୍ୟ। ଅନୁରାଗୀ ପାଠକ ଏବଂ ଅନୁସନ୍ଧିତ୍ସୁ ଆଲୋଚକ, ଉଭୟଙ୍କପାଇଁ ଦାର୍ଶନିକ ଲେବ୍‌ନିଜ୍ (Leibniz) ଅମରବାଣୀ: I would walk twenty miles to my wrost enemy if I could learn something' (ଜୀବନର ପରମଶତ୍ରୁ ହେଲେ ବି ଯଦି ତାଙ୍କଠୁ କିଛି ଶିକ୍ଷା ଲାଭର ସୁଯୋଗ ମିଳେ, ତେବେ ଦୀର୍ଘ ୨୦ମାଇଲ୍ ପଦଯାତ୍ରାର କ୍ଳେଶ ମୁଁ ବରଣ କରିବାକୁ ପ୍ରସ୍ତୁତ) - ଜୀବନରେ ବେଦମନ୍ତ୍ର ପରି ପଥ-ପ୍ରଦର୍ଶକ ହେବା କାମ୍ୟ।

**ନଟବର ସାମନ୍ତରାୟଙ୍କ ପ୍ରକାଶିତ ଗ୍ରନ୍ଥସୂଚୀ:**

୧. **ବ୍ୟାସକବି ଫକୀରମୋହନ** (୧୯୯୭), ଭୁବନେଶ୍ୱର : ଲାବନ୍ୟଭବନ, ପ୍ରତାପ ରୁଦ୍ରଦେବ

୨. **ଆଧୁନିକ ଓଡ଼ିଆ ସାହିତ୍ୟର ଦିଗ୍‌ଦର୍ଶନ** (୧୯୫୯), ଯାଜପୁର : ପ୍ରଫୁଲ୍ଲ କୁମାର ଧଳ

୩. **ଓଡ଼ିଆ ବୈଷ୍ଣବ ସାହିତ୍ୟ** (୧୯୫୯), କଟକ : ବାଣୀ ଭଣ୍ଡାର

୪. **ଯୁଗପ୍ରବର୍ତ୍ତକ ସ୍ରଷ୍ଟା ରାଧାନାଥ** (୧୯୬୦), କଟକ : ନିଉ ଷ୍ଟୁଡେଣ୍ଟସ ଷ୍ଟୋରସ

୫. **ଗଂଗାଧର ସାହିତ୍ୟ ସମୀକ୍ଷା** (୧୯୬୦), କଟକ : ନିଉ ଷ୍ଟୁଡେଣ୍ଟସ ଷ୍ଟୋରସ

୬. **ସାହିତ୍ୟାଦର୍ଶ** (୧୯୬୦), କଟକ : ଦାଶରଥି ପୁସ୍ତକାଳୟ

୭. **ରାଧାନାଥ ଓ ଚିଲିକା କାବ୍ୟ** (୧୯୬୦), ଭୁବନେଶ୍ୱର : ଗନ୍ଧର୍ବ ଶତପଥୀ

୮. **ଗଳ୍ପ ନୁହେଁ, ସମାଲୋଚନା** (୧୯୬୩), କଟକ : ଗ୍ରନ୍ଥ ମନ୍ଦୀର

୯. **ଓଡ଼ିଆ ସାହିତ୍ୟର ଇତିହାସ** (୧୮୦୩-୧୯୨୦) (୧୯୬୪), ଭୁବନେଶ୍ୱର : ପ୍ରଫୁଲ କୁମାର ଧଳ

୧୦. ଆଧୁନିକ ଓଡ଼ିଆ ସାହିତ୍ୟର ଭିତ୍ତିଭୂମି (୧୯୬୪), କଟକ : ଫ୍ରେଣ୍ଡସ ପବ୍ଲିସରସ
୧୧. ନନ୍ଦକିଶୋର ସାହିତ୍ୟ ସମୀକ୍ଷା (୧୯୬୪), ଭୁବନେଶ୍ୱର : ଓଡ଼ିଶା ସାହିତ୍ୟ ଏକାଡେମୀ
୧୨. ଓଡ଼ିଆ ପଲ୍ଲୀ ସାହିତ୍ୟ (୧୯୭୦), ବଡଦାଣ୍ଡ ସାହି, ଭୁବନେଶ୍ୱର : ଗନ୍ଧର୍ବ ଶତପଥୀ
୧୩. ଓଡ଼ିଆ ସାହିତ୍ୟକୁ ଅଧ୍ୟାପକ ଆର୍ତ୍ତବଲ୍ଲଭଙ୍କ ଦାନ (୧୯୭୦),ବଡ଼ଦାଣ୍ଡ ସାହି, ଭୁବନେଶ୍ୱର : ଗନ୍ଧର୍ବ ଶତପଥୀ
୧୪. ବଡ଼ଜେନା ସାହିତ୍ୟର ସମୀକ୍ଷା (୧୯୭୧),ବଡ଼ଦାଣ୍ଡ ସାହି, ଭୁବନେଶ୍ୱର : ଗନ୍ଧର୍ବ ଶତପଥ
୧୫. ସଖାହୀନ ପଂଚସଖା (୧୯୭୫), ଭୁବନେଶ୍ୱର : ଗଙ୍ଗାବାଈ ସାମନ୍ତରାୟ
୧୬. ମୁଁ କିପରି ଗବେଷଣା କଲି (୧୯୭୬), ଭୁବନେଶ୍ୱର : ଗଙ୍ଗାବାଈ ସାମନ୍ତରାୟ
୧୭. ଓଡ଼ିଆ ସାହିତ୍ୟରେ ସ୍ୱରପରିବର୍ତ୍ତନ (୧୯୭୬),ଭୁବନେଶ୍ୱର : ଗଙ୍ଗାବାଈ ସାମନ୍ତରାୟ
୧୮. ଓଡ଼ିଆ ସାହିତ୍ୟର କାଳ ଓ କଳା (୧୯୭୭), ଭୁବନେଶ୍ୱର : ଗଙ୍ଗାବାଈ ସାମନ୍ତରାୟ
୧୯. ଓଡ଼ିଆ ସାହିତ୍ୟରେ ସମୀକ୍ଷା ଓ ସଂଗ୍ରହ (୧୯୭୭), ଭୁବନେଶ୍ୱର : ଗଙ୍ଗାବାଈ ସାମନ୍ତରାୟ
୨୦. ଆଧୁନିକ ଓଡ଼ିଆ ସାହିତ୍ୟ ବିକାଶର ପୃଷ୍ଠଭୂମି (୧୯୭୯), ଭୁବନେଶ୍ୱର : ଗଙ୍ଗାବାଈ ସାମନ୍ତରାୟ
୨୧. ଓଡ଼ିଆ ଧର୍ମ ସାହିତ୍ୟରେ ପଞ୍ଚସଖା ପରିକଳ୍ପନା (୧୯୮୨), ଭୁବନେଶ୍ୱର : ଗଙ୍ଗାବାଈ ସାମନ୍ତରାୟ
୨୨. ରାଧାନାଥ ସାହିତ୍ୟ ସମୀକ୍ଷା (୧୯୮୪), ଭୁବନେଶ୍ୱର : ଗ୍ରନ୍ଥାଳୟ
୨୩. ଫକୀରମୋହନ ସାହିତ୍ୟ ସମୀକ୍ଷା (୧୯୮୪), ଭୁବନେଶ୍ୱର : ଗ୍ରନ୍ଥାଳୟ
୨୪. କବି ଗୋପବନ୍ଧୁଙ୍କ କାବ୍ୟ ସୃଷ୍ଟିମାନସ : ଏକ ସର୍ବେକ୍ଷଣ (୧୯୯୯), କଟକ : ଫ୍ରେଣ୍ଡସ ପବ୍ଲିସରସ



୨୧ ଜୁନ୍, ୧୯୨୨ - ୨୧ ଡିସେମ୍ବର, ୧୯୯୦

## ସାହିତ୍ୟ ସମୀକ୍ଷକ ସୁରେନ୍ଦ୍ର ମହାନ୍ତି

ପ୍ରକାଶ କୁମାର ପରିଡ଼ା

ପ୍ରବନ୍ଧ ବର୍ଗରେ ସାହିତ୍ୟ ସମୀକ୍ଷାର ସ୍ଥାନ ସୁରକ୍ଷିତ। ପ୍ରକାଶିତ ବା ରଚିତ ସାହିତ୍ୟ ଓ ପ୍ରତିଷ୍ଠାପ୍ରାପ୍ତ ଅବା ପ୍ରତିଷ୍ଠାଯୋଗ୍ୟ ସାହିତ୍ୟିକଙ୍କ ଆକଳନପୂର୍ବକ ପ୍ରବନ୍ଧ ରଚନା ଏକ ସାହିତ୍ୟ-ସମୀକ୍ଷା କର୍ମ।

ସାହିତ୍ୟ-ସମୀକ୍ଷକ ଜଣେ ପ୍ରାବନ୍ଧିକ। ସାହିତ୍ୟ ତାହାର ବିଶ୍ଳେଷଣ ସାମଗ୍ରୀ। ସାହିତ୍ୟ ବିଶ୍ଳେଷଣପାଇଁ ତାଙ୍କର କେତେକ ଯୋଗ୍ୟତା ଥିବା ଜରୁରୀ। ସେ ନିରପେକ୍ଷ ଓ ଆବେଗମୁକ୍ତ ହେବା, ବହୁପାଠୀ ଓ କଳାପ୍ରାଣ ହେବା, ଯୁଗାନୁକୂଳ ଓ ଯୁଗାତୀତ ହେବା ସହିତ ସହିଷ୍ଣୁ ଓ ସହୃଦୟ ହେବା ଉଚିତ। ସମୀକ୍ଷାର କେତେକ ପଦ୍ଧତି ମଧ୍ୟ ଅଛି। ସମୀକ୍ଷକ ତାଙ୍କ ଗୃହୀତ ବିଷୟର ଆବଶ୍ୟକତା ଓ ଉପଯୁକ୍ତତାମତେ ଏକ ପଦ୍ଧତି ବ୍ୟବହାର କରିବା ଉଚିତ। ସ୍ଥଳବିଶେଷରେ ପ୍ରବୀଣ କିମ୍ବା ମିଶ୍ର ପଦ୍ଧତି ପ୍ରୟୋଗ କରିଥାନ୍ତି। ଜଣେ ଜୀବନ ବିଶ୍ଳେଷଣକାରୀ-ଗାଳ୍ପିକ, ସମାଜ ସଂସ୍କୃତିର ସମୀକ୍ଷାକାର-ଔପନ୍ୟାସିକ ସ୍ୱଭାବତଃ ନିଜ ଭିତରେ ଏକ ଅନୁସନ୍ଧିତ୍ସୁ ଓ ଯୁକ୍ତିବାଦୀ ମାନସିକତା ନିର୍ମାଣ କରିଥାଏ। ସେହି ମାନସିକତା ତା'ର ପ୍ରିୟ ସାହିତ୍ୟିକ ଅବା ସାହିତ୍ୟକର୍ମ ଉପରେ ପ୍ରତିଫଳିତ ହେଲେ ତାହା ହୁଏ ଏକ ଭିନ୍ନ ସ୍ୱାଦର ସାହିତ୍ୟ-ସମୀକ୍ଷା।

କବି-ସମୀକ୍ଷକ ମାୟାଧର ମାନସିଂହ ଓ କଥାକାର-ସମୀକ୍ଷକ ସୁରେନ୍ଦ୍ରଙ୍କଠାରେ ତାହାର ସୁଲକ୍ଷଣ ପ୍ରତିଭାତ। ଉଭୟ କବି ଓ ସମୀକ୍ଷକଭାବେ ସ୍ୱନାମଖ୍ୟାତ। ଉଭୟ ସାରଳାଦାସ ଓ ଫକୀରମୋହନଙ୍କ ପ୍ରିୟ ଅନୁଗତ। ଉଭୟ ସାହିତ୍ୟକୁ ସମୀକ୍ଷା କରିଛନ୍ତି। ଉଭୟ ସାରଳା ଦାସ ଓ ଫକୀରମୋହନଙ୍କ ମଥାରେ ଯୁଗସ୍ରଷ୍ଟାର ଶିରୋପା ଦେଇଛନ୍ତି। ମାନସିଂହ ସାରଳା ଦାସଙ୍କୁ **ମାଟିର ମହାକବି** ଓ ଫକୀରମୋହନଙ୍କୁ **ସରସ୍ୱତୀ** ସମ୍ବୋଧନ କରି ମାର୍ଗ ଦର୍ଶନ କରାଇଛନ୍ତି। ସୁରେନ୍ଦ୍ର ସାରଳାଙ୍କୁ 'ବିଶିଷ୍ଟ ଚରିତ୍ର ସ୍ରଷ୍ଟା' ଓ ଚରିତ ସ୍ରଷ୍ଟାଭାବେ ମାନ୍ୟତା ଦେବା ସହିତ ଫକୀରମୋହନଙ୍କୁ 'ଯୁଗସ୍ରଷ୍ଟା' ସମ୍ବୋଧନ କରି ରାଧାନାଥ ଯୁଗ ଉପରେ ଏକ ଜିଜ୍ଞାସୁ ପ୍ରଶ୍ନଚିହ୍ନ ରଖିଛନ୍ତି। ମାନସିଂହ ଦୀନକୃଷ୍ଣ କବିଙ୍କୁ କବିତିଳକ ଭାବେ ଗ୍ରହଣ କରିଛନ୍ତି। ସୁରେନ୍ଦ୍ର ଦୀନକୃଷ୍ଣ ଦାସ ଶିରୋନାମରେ ମନୋଗ୍ରାଫ୍ ଲେଖିଛନ୍ତି। ତେବେ ସାହିତ୍ୟ ସମୀକ୍ଷାରେ ସୁରେନ୍ଦ୍ର ମହାନ୍ତି ଓଡ଼ିଆ ସାହିତ୍ୟର ଇତିହାସ ପ୍ରଣୟନ ଓ ଫକୀରମୋହନ ଅଧ୍ୟୟନ କ୍ଷେତ୍ରରେ ଆଲୋଚନା ଦାବି କରନ୍ତି।

**ଫକୀରମୋହନ ସମୀକ୍ଷକ ସୁରେନ୍ଦ୍ର: ପ୍ରତିଭା-ପୂଜାରୀ**

ଜଣେ କଥାକାର ସ୍ୱାଭିମାନୀ ହେଲେ ଜାତିର ଗୌରବଦୀପ୍ତ ବ୍ୟକ୍ତିତ୍ୱକୁ ବାବୁ ଓ ବାରିଷ୍ଟର ସ୍ଥାନରୁ ନେଇ ଯେପରି ଶତାବ୍ଦୀର ସୂର୍ଯ୍ୟ ଓ କୁଳବୃଦ୍ଧ କରିପାରେ, ସେହିପରି ପ୍ରାକ୍ତନ କବି ଓ କଥାକାରକୁ ଯୋଗଜନ୍ମା ଓ ଯୁଗସ୍ରଷ୍ଟା ମଧ୍ୟ କରିପାରେ ଜଣେ ଉତ୍ସାହୀ

ସମୀକ୍ଷକ। ଶ୍ରୀ ସୁରେନ୍ଦ୍ର ମହାନ୍ତି ଏହି ଉଭୟ ଭୂମିକା ନିର୍ବାହ କରିଛନ୍ତି ଓଡ଼ିଆ ସାହିତ୍ୟରେ। ଫକୀରମୋହନ ସେନାପତି ଓ ଦୀନକୃଷ୍ଣ ଦାସଙ୍କୁ ନେଇ ସମୀକ୍ଷକ ମହାନ୍ତିଙ୍କ ଉତ୍ସାହ ଲକ୍ଷ୍ୟଣୀୟ।

ଫକୀରମୋହନ ଶ୍ରୀ ମହାନ୍ତିଙ୍କ ଗଭୀର ଆକର୍ଷଣର କବି ଓ କଥାକାର। ବିପୁଳ କବିତ୍ୱ ଓ ଅନନ୍ୟ କଥା-ପ୍ରତିଭାର ଅଧିକାରୀ ଭାବେ ପୂର୍ବରୁ ତାଙ୍କୁ କେହି ଦେଖି ନ ଥିଲା। କବିବର ରାଧାନାଥଙ୍କ କୃତି ଓ ପ୍ରଚାର ନିକଟରେ ଫକୀରମୋହନ ମ୍ଳାନ ଥିଲେ। ସୁରେନ୍ଦ୍ର ଆଧୁନିକତାର ପରିଚୟ ଭାବେ ଗଦ୍ୟର ଉନ୍ମେଷକୁ ଗୁରୁତ୍ୱ ଦେଇ ଜଣେ ଆଦିଗଳ୍ପକାର ଓ ପ୍ରଥମ ସଫଳ ସାମାଜିକ ଉପନ୍ୟାସକାର ହୋଇଥିବାରୁ ଫକୀରମୋହନଙ୍କୁ ଆଧୁନିକ ଓଡ଼ିଆ ସାହିତ୍ୟର ଯୁଗସ୍ରଷ୍ଟା ଭାବେ ପ୍ରତିଷ୍ଠା ଦେବା ଉଦ୍ୟମ କରିଛନ୍ତି। ଲକ୍ଷ୍ୟଣୀୟ ଯେ, ଫକୀରମୋହନଙ୍କୁ ସାମଗ୍ରୀକରି ଏହି ପୁସ୍ତକର ପରିକଳ୍ପନା (୧୯୫୦) କଲାବେଳକୁ ଶ୍ରୀ ମହାନ୍ତିଙ୍କ ବୟସ ଅଠେଇଶ ବର୍ଷ। ସନ୍ନିହିତ ପ୍ରବନ୍ଧର ରଚନାକାଳକୁ ବିଚାରକଲେ ସୁରେନ୍ଦ୍ରଙ୍କ ପଚିଶ ବର୍ଷ ବୟସ ସୁଦ୍ଧା ରଚିତ ଓ ପ୍ରକାଶିତ ସେସବୁ ୧୯୫୫ ବେଳକୁ, ଅର୍ଥାତ୍ ତିରିଶ ବର୍ଷ ବୟସରେ ଶ୍ରୀ ମହାନ୍ତି ଫକୀରମୋହନଙ୍କୁ ଯୁଗସ୍ରଷ୍ଟା କହିବାର ସ୍ପର୍ଦ୍ଧା ରଖନ୍ତି। ଏହା ହିଁ ପ୍ରଥମତଃ ତାଙ୍କର ସମୀକ୍ଷା ସଫଳତାର ପ୍ରମାଣ ଓ ପ୍ରଶଂସାପତ୍ର। "ଫକୀରମୋହନଙ୍କୁ ଓଡ଼ିଆ ସାହିତ୍ୟର ଇତିହାସରେ ଏକ ନ୍ୟାୟୋଚିତ ଓ ବିଚାରସମ୍ମତ ଭୂମି ଉପରେ ପ୍ରତିଷ୍ଠିତ କରିବାରେ, ପୁଣି ତାଙ୍କ ସାହିତ୍ୟର ଯଥାର୍ଥ ମୂଲ୍ୟାଙ୍କନରେ ଏହା ସହାୟକ ହୋଇଥିବା, ମୋ ଶ୍ରମର ଏକମାତ୍ର ସାର୍ଥକତା।" - ସୁରେନ୍ଦ୍ର ଆଲୋଚିତ ପୁସ୍ତକର ଦ୍ୱିତୀୟ ସଂସ୍କରଣ (୧୯୬୨) ବେଳକୁ ତାଙ୍କ ସଫଳତା ଆସ୍ୱାଦନ କଲେଣି। କବି-ସମୀକ୍ଷକ ମାୟାଧର ମାନସିଂହଙ୍କ ସୂଚନା ନିର୍ଭରରେ ସେ ତୃତୀୟ ସଂସ୍କରଣ ବେଳକୁ ଏକ ପୂର୍ଣ୍ଣାଙ୍ଗ ଫକୀରମୋହନ ପରିକ୍ରମା ପୁସ୍ତକ କରିପାରିଛନ୍ତି, ଯେଉଁଥିରେ କବି ଫକୀରମୋହନଙ୍କ ଆଲୋଚନା ସହିତ ଆଧୁନିକତା ଓ ଫକୀରମୋହନ ମଧ୍ୟ ବିଶ୍ଳେଷିତ। କିନ୍ତୁ ପ୍ରକାଶକ ବା ଗ୍ରନ୍ଥକାର ଏହି ସଂସ୍କରଣରେ ମୂଳ ପୁସ୍ତକଟି ପୁଚ୍ଛରେ ଆଲୋଚନାଗୁଡ଼ିକ ସ୍ଥାନିତ ନକରି, ଏହି ସୂଚୀପତ୍ର ମତେ ବ୍ୟବସ୍ଥାପିତ କରିଥିଲେ ଭଲ ହୋଇଥାନ୍ତା। ଯେପରି ଆଧୁନିକତା ଓ ଫକୀରମୋହନ, ଫକୀରମୋହନଙ୍କ କାବ୍ୟ କବିତା, ଫକୀରମୋହନଙ୍କ ସାହିତ୍ୟାଦର୍ଶ, ଫକୀରମୋହନଙ୍କ ଗଦ୍ୟରୀତି, ଓଡ଼ିଆ ଉପନ୍ୟାସର ଅଭିବ୍ୟକ୍ତି ଓ ଫକୀରମୋହନ, ଫକୀରମୋହନଙ୍କ ଉପନ୍ୟାସ ଶୈଳୀ, ଛ'ମାଣ ଆଠଗୁଣ୍ଠ, ମାମୁଁ, ଲଛମା, ପ୍ରାୟଶ୍ଚିତ, ଫକୀରମୋହନଙ୍କ ଉପନ୍ୟାସର ଚରିତ୍ର ଚିତ୍ରଣ, ଫକୀରମୋହନଙ୍କ ନାରୀ, ଫକୀରମୋହନଙ୍କ ଉପନ୍ୟାସରେ ହାସ୍ୟରସ, କ୍ଷୁଦ୍ରଗଳ୍ପ ଓ ଫକୀରମୋହନ ଏବଂ ଆତ୍ମଚରିତ ଇତ୍ୟାଦି। ତାହାହେଲେ କବି ଓ କଥାକାର ଭାବେ ଏକ କାଳକ୍ରମିକ ଉତ୍ତରଣ ପ୍ରଦର୍ଶନ ହୋଇପାରିଥାନ୍ତା। ପ୍ରଚଳିତ ସୂଚୀପତ୍ର ଅନୁଯାୟୀ ଏହି ଅବବୋଧ ବିଖଣ୍ଡିତ ହେଉଛି ଏବଂ ଫକୀରମୋହନ କେଉଁ ଦିଗରେ ଉତ୍କୃଷ୍ଟ, ତାହା ଜଣାପଡୁ ନାହିଁ।

'ଫକୀରମୋହନ ସମୀକ୍ଷା'ରେ ସୁରେନ୍ଦ୍ର ମହାନ୍ତି ତାଙ୍କୁ ସମୁଚିତ ଆସନ ଦେବାକୁ ଯାଇ ଅନ୍ୟ କାହାକୁ ନ୍ୟୂନ କରି ପକାଇନାହାନ୍ତି; ତାହା ତାଙ୍କର ମହାନତାର ସୂଚନା ଦିଏ। ବରଂ ଫକୀରମୋହନଙ୍କ ସ୍ୱାତନ୍ତ୍ର୍ୟ ପ୍ରମାଣ କରିବାକୁ ସେ ଅନ୍ୟମାନଙ୍କ କୃତିତ୍ୱ ଓ ଯୋଗ୍ୟତାକୁ

ଅଧିକ କରି ଦେଖାଇଛନ୍ତି। ଫକୀରମୋହନଙ୍କ ସାହିତ୍ୟକୁ ମାନ୍ୟତା ଦେବାକୁ ଯାଇ ସେ ତାଙ୍କୁ ଜଣେ ଭାଷାବିନ୍ଧାଣି, ବାସ୍ତବବାଦୀ ସ୍ରଷ୍ଟା ଏବଂ ସତ୍‌ସାହିତ୍ୟକାର ଭାବେ ମର୍ଯ୍ୟାଦା ଦେଇଛନ୍ତି। ତାଙ୍କ ମତରେ-"ଫକୀରମୋହନଙ୍କ ଭାଷା ଓଡ଼ିଆ ଶବ୍ଦକୋଷର ଏକ ପ୍ରତ୍ନଶାଳା। ପୁଣି ତାଙ୍କର ଭାଷାରୀତି ଆରବୀ, ପାରସୀ, ସଂସ୍କୃତ, ତଦ୍ଭବ, ତତ୍‌ସମ ଓ କଥିତ ପ୍ରାକୃତ ଓଡ଼ିଆ ଭାଷାରେ ମିଶାମିଶି ଏକ ବିଚିତ୍ର ଇନ୍ଦ୍ରଧନୁ।" ଏହି ମନ୍ତବ୍ୟ ଜଣେ ଲେଖକର ଭାଷା ଦକ୍ଷତା ପ୍ରମାଣ କରେ। ଆଉଏକ ଉଦ୍ଧୃତିରୁ ଶ୍ରୀ ମହାନ୍ତି ଫକୀରମୋହନଙ୍କ ପ୍ରତିଭାର କିପରି ପ୍ରଶଂସକ ଥିଲେ ଜଣାପଡ଼େ। "ସବୁ ସତ୍‌ସାହିତ୍ୟ ପରି ଫକୀରମୋହନଙ୍କ ସାହିତ୍ୟ ଥିଲା ଉଦ୍ଦେଶ୍ୟମୂଳକ। ସମାଜର ସମୂହକଲ୍ୟାଣ ତାଙ୍କ ସାହିତ୍ୟର ଧର୍ମ ଥିଲା। ସାହିତ୍ୟକୁ ଉଚ୍ଚବିତ୍ତ ଓ ମଧ୍ୟବିତ୍ତ ବୈଠକଖାନା ଭିତରେ ଆବଦ୍ଧ ନ ରଖି ସେ ପଲ୍ଲୀର କୁଟୀର ଠାରୁ ସହରର ପ୍ରାସାଦ ପର୍ଯ୍ୟନ୍ତ ସର୍ବତ୍ର ବନ୍ୟାର ପ୍ଲାବନ ପରି ଛୁଟାଇ ଦେଇଥିଲେ। ତେଣୁ ସେ ଯେଉଁ ଭାଷାଭଙ୍ଗୀ ଅବଲମ୍ବନ କରିଥିଲେ, ତାହା ସେଥିପାଇଁ ପ୍ରଶସ୍ତ ଥିଲା। ଫକୀରମୋହନଙ୍କ ଭାଷାଭଙ୍ଗୀ ଯେ ଆଜିସୁଦ୍ଧା ଓଡ଼ିଆ ଗଦ୍ୟରେ ତଥାପି ଅନୁକରଣୀୟ ହୋଇରହିଛି, ସେଥିରେ ବିସ୍ମିତ ହେବାର, ତେଣୁ, କିଛି ନାହିଁ।" (ଫକୀରମୋହନ ସମୀକ୍ଷା: ପୃ-୧୧)

'ଆଧୁନିକତା ଓ ଫକୀରମୋହନ' ଆଲୋଚନାରେ ଶ୍ରୀ ମହାନ୍ତି ପ୍ରସଙ୍ଗତଃ ରାଧାନାଥଙ୍କୁ ଆଲୋଚନା କରି ଉଭୟଙ୍କ ତୁଳନାତ୍ମକ ବିଚାର ପୂର୍ବକ ଫକୀରମୋହନଙ୍କ ବିଶେଷ ଅବଦାନକୁ ପ୍ରତିଷ୍ଠା ଦେଇଛନ୍ତି। ରାଧାନାଥ କବି କୀର୍ତ୍ତିରେ ସମ୍ମାନିତ ଓ ପ୍ରତିଷ୍ଠିତ ଥିବାରୁ ଏବଂ ଫକୀରମୋହନ ଗଳ୍ପ-ଉପନ୍ୟାସରେ ପାରଦର୍ଶୀ ଥିବାରୁ ତତ୍କାଳୀନ ବିଚାର ଦୃଷ୍ଟି ରାଧାନାଥଙ୍କ ପ୍ରତି ଅଧିକ ଆନତ ହୋଇଥିବା ଉଲ୍ଲେଖ କରିଛନ୍ତି। ଫକୀରମୋହନଙ୍କ କାବ୍ୟିକ ଚେତନାର ବିଶ୍ଳେଷଣ କରି ଶ୍ରୀ ମହାନ୍ତି ଉଲ୍ଲେଖ କରନ୍ତି - "ଫକୀରମୋହନଙ୍କ କବି ଚେତନା କେବଳ ଦୈନନ୍ଦିନ ସମାଜରେ ପରିବ୍ୟାପ୍ତ ହୋଇନାହିଁ, ଗଭୀର ଅନ୍ତର୍ଦୃଷ୍ଟି ଦ୍ୱାରା ଆଲୋକିତ ହୋଇ ସେଥିରୁ ନାନା ଅନୁଭୂତି ଆହରଣ କରି ତାହାକୁ କବିତା ରୂପ ପ୍ରଦାନ କରିଛି। ପ୍ରକାଶ ଭଙ୍ଗୀରେ ବର୍ଣ୍ଣାଢ୍ୟତା ଓ ଉକ୍ତିରେ ରମଣୀୟତା ଏହି ଖଣ୍ଡ କବିତା ଗୁଡ଼ିକୁ ରସୋତ୍ତୀର୍ଣ୍ଣ କରିଛି।"

ମୋଟ ଉପରେ 'ଫକୀରମୋହନ ସମୀକ୍ଷା' ସୁରେନ୍ଦ୍ର ମହାନ୍ତିଙ୍କ ଏକ ବଳିଷ୍ଠ ସମୀକ୍ଷାଗ୍ରନ୍ଥ। ଏହି ଗ୍ରନ୍ଥର ଆଦର୍ଶ ଓ ଅଭିଲକ୍ଷ୍ୟକୁ ଅନୁସରଣ କରି ପରବର୍ତ୍ତୀ ଫକୀରମୋହନ ବିଚାରଗୁଡ଼ିକ ନିୟନ୍ତ୍ରିତ।

**ସାହିତ୍ୟ ଇତିହାସକାର ସୁରେନ୍ଦ୍ର: ନବୀନତାର ବିଧାନ**

ସାହିତ୍ୟ ଇତିହାସ ପ୍ରଣୟନ କ୍ଷେତ୍ରରେ ସୁରେନ୍ଦ୍ରଙ୍କ କୃତିତ୍ୱ କେତୋଟି ଗ୍ରନ୍ଥରେ ପ୍ରତିଫଳିତ। ଓଡ଼ିଆ ସାହିତ୍ୟର ଆଦିପର୍ବ, ମଧ୍ୟପର୍ବ, ମଧ୍ୟ ଓ ଉତ୍ତରପର୍ବ ନାମରେ ଏକ ସିରିଜ ସମେତ "ଓଡ଼ିଆ ସାହିତ୍ୟର କ୍ରମବିକାଶ" ନାମକ ୪ର୍ଥ ଗ୍ରନ୍ଥ ଏହାର ଫଳଶ୍ରୁତି।

ଆଦିପର୍ବ ଗ୍ରନ୍ଥଟି "ସାଂସ୍କୃତିକ ଦୃଷ୍ଟିଭଙ୍ଗୀ ଓ ସାମଗ୍ରିକ ଆଲୋଚନା ପଦ୍ଧତିକୁ ଆଧାରକରି ପ୍ରକାଶିତ" ବୋଲି ବିଦ୍ୱାନ ସମୀକ୍ଷକ ତାରିଣୀ ଚରଣ ଦାସ (ଚିଦାନନ୍ଦ) କହନ୍ତି। ଏହି ଗ୍ରନ୍ଥଟି ଭାଷାସାହିତ୍ୟର ଉନ୍ମେଷ ବିକାଶର ସାମାଜିକ-ସାଂସ୍କୃତିକ-ସାମରିକ ଓ ଶାସନିକ ପରିସ୍ଥିତି ଚିତ୍ର ପ୍ରଦାନପୂର୍ବକ ଚର୍ଯ୍ୟାଗୀତି, ନାଥ ସାହିତ୍ୟ, ମଙ୍ଗଳଗୀତିକା ଓ ମାଦଳାପାଞ୍ଜିର

ଚର୍ଚ୍ଚାକୁ ଆଶ୍ରୟ କରିଛି । ମହାକବି ସାରଳା ଦାସଙ୍କ ଜୀବନ, ଜୀବିକା, ସଂଧାନ, ଭୂୟୋଦୃଷ୍ଟି, ଜନସଂପୃକ୍ତି, ଭକ୍ତିମତ୍ତା, ସାହସିକତା ଓ ସାରସ୍ୱତ ସାଧୁତାର ଭୁରିଭୁରି ପ୍ରଶଂସାରେ ଆଦିପର୍ବ ଗ୍ରନ୍ଥର ଆଦିକବି ପରିଚ୍ଛେଦ ପରିପୂର୍ଣ୍ଣ ।

ସାରଳା ଦାସଙ୍କୁ ଆଦିକାଳର ଉଦ୍‌ଘାଟକ କହିଲେ ଓଡ଼ିଆ ସାହିତ୍ୟ ବରଂ କନିଷ୍ଠ ହୋଇପଡୁଛି । ସାରଳା ଓ ପଞ୍ଚସଖାଙ୍କୁ ମଧ୍ୟପର୍ବର ନାୟକ କରି ପୂର୍ବ-ମଧ୍ୟକୁ ଇତିହାସ ଓ ଆଖ୍ୟାୟିକା ସମୃଦ୍ଧ ଏବଂ ଉତ୍ତରମଧ୍ୟକୁ ପୁରାଣ ଓ ଧର୍ମୀୟ ରଚନା ସମୃଦ୍ଧ ଅଂଶଭାବେ ବିଚାର କରିଥିଲେ ସୁରେନ୍ଦ୍ର ଏକ ନୂଆ ଦୃଷ୍ଟିକୋଣର ପରିଚୟ ଦେଇପାରିଥାନ୍ତେ । ମାତ୍ର ତାଙ୍କର ଶ୍ରଦ୍ଧାବେଗ ସାରଳା ଦାସଙ୍କ କ୍ଷାତ୍ର କବିତ୍ୱପ୍ରତି ଏତେ ଆନତ ଯେ, ସେ ପୂର୍ବବର୍ତ୍ତୀ ଶାକ୍ତ, ସିଦ୍ଧ, ନାଥ ଓ ବୈଷ୍ଣବ ସାହିତ୍ୟଗୁଡ଼ିକ ପ୍ରତି ଯଥାର୍ଥ ବିଚାର କିମ୍ବା ଧ୍ୟାନ ଦେଇପାରିନାହାନ୍ତି । ଲିପି, ଭାଷା, ଶିଳାଲେଖ, ସନନ୍ଦ ଓ ପ୍ରଶସ୍ତିଗୁଡ଼ିକର ପାଠୋଦ୍ଧାରପୂର୍ବକ ତନ୍ନିହିତ ସାହିତ୍ୟସ୍ୱରୂପ ଉଦ୍‌ଘାଟନ କରିପାରିଥିଲେ ତାଙ୍କର ଆଦିପର୍ବ ଶିରୋନାମଟି ଯଥାର୍ଥ ହୋଇଥାନ୍ତା ।

ତଥାପି ଜଣେ ଶ୍ରଦ୍ଧାଶୀଳ ପାଠକଭାବେ ସାରଳା ମହାଭାରତର ଅପୂର୍ବ ଆଲୋଚନା କରିବାରେ ସେ ଦକ୍ଷତା ପ୍ରଦର୍ଶନ କରିଛନ୍ତି । ଏହି କୃଷିକାରୀ-ଅପଣ୍ଡିତ କବିଟିର କବିତ୍ୱ-ଶକ୍ତି. କଳ୍ପନା-ପାଟବତା, ଚରିତ୍ର-ଚିତ୍ରଣ ଓ ନିର୍ମାଣ-ଦକ୍ଷତା, ଶବ୍ଦ-ଜ୍ଞାନ ଓ ଭାଷା-ବିଭୂତି, ସର୍ବୋପରି ପରମ୍ପରା ଉଲ୍ଲଙ୍ଘନ ପୂର୍ବକ ଚରିତ୍ରର ବାସ୍ତବାୟନ ଘଟାଇବା ଦକ୍ଷତାକୁ ସୁରେନ୍ଦ୍ର ଯଥାର୍ଥରେ ଉନ୍ମୋଚନ କରିଛନ୍ତି ଓ ସେଥିପାଇଁ ଅଜସ୍ର ପ୍ରଶଂସା ବ୍ୟକ୍ତ କରିଛନ୍ତି । ଏପରିକି ପରବର୍ତ୍ତୀକାଳରେ ଯଦୁବଂଶ, ଶ୍ରୀକୃଷ୍ଣଙ୍କ ଶେଷହସ, ନାରୀର ମନ ଭଳି ଗଳ୍ପ ଅନୁସୃଜନ କରି ଆପଣାର ମୁଗ୍ଧତାର ବିଦଗ୍ଧ ପ୍ରକାଶ ଘଟାଇଛନ୍ତି ।

ସାରଳା ଦାସଙ୍କ କବି-ବ୍ୟକ୍ତିତ୍ୱ ସୃଷ୍ଟିରେ ପ୍ରଥମରୁ ଶ୍ରୀ ମହାନ୍ତି କିପରି କୃତସଙ୍କଳ୍ପ, ତାହା ସାରଳା ପର୍ବର ଉପୋଦ୍‌ଘାତି ମନ୍ତବ୍ୟରୁ ସ୍ପଷ୍ଟ ଉଦ୍ଧାର କରିହେବ - "ଗ୍ରୀକ୍ ସାହିତ୍ୟର ପୁରୋଭାଗରେ ଯେପରି ହୋମର୍ ଓ ଇଂରାଜୀ ସାହିତ୍ୟର ଆରମ୍ଭରେ ଚସରଙ୍କ ନାମ ପ୍ରତିଷ୍ଠିତ, ଓଡ଼ିଆ ସାହିତ୍ୟର ଉପୋଦ୍‌ଘାତରେ ସାରଳା ଦାସଙ୍କ ନାମ ସେହିପରି ସ୍ମରଣୀୟ । ... ମଧ୍ୟଯୁଗୀୟ ଇଂରାଜୀ କଥିତଭାଷା ଚସର୍‌ଙ୍କ ପ୍ରୟୋଗ ଓ ଅନୁଶୀଳନରେ ମାର୍ଜିତ ହୋଇ ଯେପରି ଏକ ସାହିତ୍ୟିକ ସୌକୁମାର୍ଯ୍ୟ ଲାଭ କରିଥିଲା, ସାରଳାଦାସଙ୍କ ଲେଖନୀରେ କଥିତ ଓଡ଼ିଆଭାଷା ସେହିପରି ଏକ ସ୍ୱକୀୟତା ସମ୍ପନ୍ନ ଓ ସାବଲୀଳ ସୌନ୍ଦର୍ଯ୍ୟ ଲାଭ କରିଥିଲା ।"(ପୃ-୧୨୦)

ଏପରି କରିବାର ମନସାଧଟି କେତେ ଯୋଜନାବଦ୍ଧ ଓ ଅପେକ୍ଷିତ ତାହା ଆଦିପର୍ବର ମୁଖବନ୍ଧ 'ଭୂମିକା'ରେ ନିମ୍ନମତେ ଲିଖିତ "ସାରଳାଙ୍କୁ ଜଣେ ସାଂସ୍କୃତିକ ନେତା ରୂପେ ପୂର୍ବଭାରତୀୟ ସାଂସ୍କୃତିକ ପୃଷ୍ଠଭୂମିରେ ପ୍ରତିଷ୍ଠିତ ନ କଲେ, ସଂସ୍କୃତ ମହାଭାରତଠାରୁ ସାରଳା ମହାଭାରତ ବର୍ଣ୍ଣିତ ବିଭିନ୍ନ ବୈଷମ୍ୟ ଓ ଚରିତ୍ର ଚିତ୍ରଣର ତାତ୍ପର୍ଯ୍ୟ ପୁଣି ସାରଳାଙ୍କ ପ୍ରଚଣ୍ଡ ପ୍ରତିଭା ସହଜରେ ଉପଲବ୍ଧ କରିହେବ ନାହିଁ । ମହାକବି ଓ ସିଦ୍ଧ ସାରଳାଙ୍କୁ ଶୂଦ୍ରମୁନି କହି ଦୟିନୀ କରିବା ଓ ସେ ହୁଡୁମାଙ୍କ ପରି ଝଙ୍କଡ଼ବାସିନୀ ସାରଳାଙ୍କ

କାଳିସୀ ଅବତରୀ ଥିବାବେଳେ ଦାଣ୍ଡିବୃତ୍ତରେ ମହାଭାରତ ଲେଖିଯାଇଥିଲେ ବୋଲି କହିବା ଏକ ସାଂସ୍କୃତିକ ବିମୂଢ଼ତା ମାତ୍ର।" ସାରଳା ଦାସଙ୍କ କବି ପ୍ରତିଭାର ଆକଳନରେ ଯେତିକି ଓଡ଼ିଆ ଜାତି ଇତିହାସ ଓ ସଂସ୍କୃତିର ବିବର୍ତ୍ତନ ଦେଖାଇପାରେ ସେତିକି ପୁଣି ଓଡ଼ିଆ ଭାଷାର ମୌଳିକତା ଓ ପ୍ରାଚୀନତା ପ୍ରମାଣ କ୍ଷେତ୍ରରେ ସେ କି ବଳିଷ୍ଠ ଭୂମିକା ରଖେ-ମହାଭାରତ, ଏକଥା ସୁରେନ୍ଦ୍ର ମହାନ୍ତି ପ୍ରମାଣ କରିଯାଇଛନ୍ତି ଆଦିପର୍ବ ଗ୍ରନ୍ଥରେ।

ସାହିତ୍ୟ-ଇତିହାସ ଦୃଷ୍ଟିରୁ ତତ୍ତ୍ୱ ବଳିଷ୍ଠତା ଊଣାହୋଇ ଶ୍ରଦ୍ଧାବେଗ ଓ ଉଦ୍ଦେଶ୍ୟ ଧର୍ମିତା ବଳବତ୍ତର ଥିବାରୁ ଏ ଗ୍ରନ୍ଥଟି ପ୍ରାମାଣିକ ହୋଇନପାରେ, କିନ୍ତୁ ତୁଳନାତ୍ମକ ସାହିତ୍ୟ ଚର୍ଚ୍ଚାର ପ୍ରାଥମିକ ପ୍ରୟାସ ରୂପେ ଏହାର ପ୍ରାଧାନ୍ୟ ସୁରକ୍ଷିତ। ବିଡ଼ମ୍ବନା ଓ ଆଶ୍ୱାସନା କଥା ଏହି ଯେ, ଶ୍ରୀ ମହାନ୍ତି ଓଡ଼ିଆ ସାହିତ୍ୟର ମଧ୍ୟପର୍ବ ଓ ଉତ୍ତର ମଧ୍ୟପର୍ବ ଗ୍ରନ୍ଥ ଦୁଇଟିରେ ତତ୍ତ୍ୱାନ୍ୱେଷୀ, ଶାସ୍ତ୍ରଦର୍ଶୀ, ପଣ୍ଡିତ ସମୀକ୍ଷକ ରୂପେ ଆବିର୍ଭୂତ। ଆଲୋଚିତ କାଳର ସାହିତ୍ୟକୁ ବୃହତ୍ତର ପରିପ୍ରେକ୍ଷୀରେ ବିଚାର ତର୍କଣା କରିବାର ଯୋଜନାବଦ୍ଧ ପ୍ରୟାସ ଏଥିରେ ସୁସ୍ପଷ୍ଟ।

ମଧ୍ୟପର୍ବ ଓ ଉତ୍ତର ମଧ୍ୟପର୍ବର ଆଲୋଚନାଧୀନକାଳ ପଞ୍ଚସଖା ଯୁଗରୁ ଆରମ୍ଭ କରି ରୀତିସାହିତ୍ୟ ପର୍ଯ୍ୟନ୍ତ ବିସ୍ତୃତ। ତେଣୁ ଏଥିରେ ତତ୍ତ୍ୱ ଓ ବିଚାର ବିମର୍ଶର ଅନୁରୂପ ଉପଯୋଗିତା ରହିଛି। କିନ୍ତୁ ଲକ୍ଷ୍ୟ କରାଯାଏ, ଏହି କ୍ଷେତ୍ରରେ ସମୀକ୍ଷକ ମହାନ୍ତି ପାରମ୍ପରିକ ଭାବେ ବନ୍ଧାଗତ ଆଲୋଚନା କରିଛନ୍ତି। ପଞ୍ଚସଖାଙ୍କର ସଖାତ୍ୱକୁ ସେ ପ୍ରମାଣ କିମ୍ବା ପ୍ରତ୍ୟାଖ୍ୟାନ କରିପାରିନାହାନ୍ତି। 'ଅତିବଡ଼ି ଜଗନ୍ନାଥ' ଓ 'କବି ଜଗନ୍ନାଥ' ଏ ଦୁହିଁଙ୍କୁ ସେ ଜଣେ ବ୍ୟକ୍ତି ବୋଲି ଗ୍ରହଣ କରିଛନ୍ତି। ତଥାପି ଏ ଯୁଗ ସମ୍ପର୍କରେ ତାଙ୍କର ମୁଖବନ୍ଧ ମନ୍ତବ୍ୟ ଯଥେଷ୍ଟ ଆଲୋକପାତ କରେ। ଉଲ୍ଲେଖ ଅଛି-"ଓଡ଼ିଆ ସାହିତ୍ୟ ଇତିହାସରେ ପଞ୍ଚସଖା ଯୁଗ ନାମରେ ଯେଉଁ ଯୁଗଟିକୁ ନାମିତ କରାଯାଇଛି, ତାହା ଯଥାର୍ଥ ନୁହେଁ। କବି ବଳରାମ ଓ କବି ଜଗନ୍ନାଥଙ୍କୁ ବାଦଦେଲେ ଅନ୍ୟ ତିନିଜଣଙ୍କ କୃତି ସାହିତ୍ୟ ପଦବାଚ୍ୟ ନୁହେଁ। ଅଚ୍ୟୁତାନନ୍ଦ ଶୂନ୍ୟବାଦର ପ୍ରବକ୍ତା ଦୃଷ୍ଟିରୁ ଆଧ୍ୟାତ୍ମିକ କ୍ଷେତ୍ରରେ ଅଗ୍ରଗାମୀ ହୋଇପାରନ୍ତି, କାବ୍ୟକର୍ତ୍ତା ରୂପେ ସେ ନିଷ୍ପ୍ରଭ। ଅନନ୍ତ ଓ ଯଶୋବନ୍ତ ଶୂନ୍ୟବାଦ ନେଇ ଏତେ ତଲ୍ଲୀନ ଯେ, ସାହିତ୍ୟ ଅଂଶକୁ ସେମାନଙ୍କ ଅବଦାନ ନଗଣ୍ୟ। ଏଣୁ ଯୁଗକୁ 'ପଞ୍ଚସଖା' କହିବା ଯଥାର୍ଥ ନୁହେଁ।"

ଅଥଚ ଶ୍ରୀ ମହାନ୍ତି ପଞ୍ଚସଖା ଯୁଗର ଆଲୋଚନା ସେହି ନାମରେ କରିଛନ୍ତି। କେତେଜଣ ପ୍ରମୁଖ କବି ସୁରେନ୍ଦ୍ରଙ୍କ ସମୀକ୍ଷକ ଦୃଷ୍ଟିରେ ନିଜପାଇଁ ପ୍ରଚାରିତ ବାତାବରଣ ଠାରୁ କେତେବେଳେ ନ୍ୟୂନ କେତେବେଳେ ଉତ୍ତୀର୍ଣ୍ଣ ହୋଇଯାଇଛନ୍ତି। ଏହି ଆଲୋଚନାଗୁଡ଼ିକ ଗବେଷଣା ଲବ୍ଧ ଏବଂ ମୌଳିକ ପୋଥିପାଠ ନିର୍ଭର ହୋଇ ନ ଥିଲେ ମଧ୍ୟ ଯେଉଁ ବିଶେଷ ସମୀକ୍ଷା ପ୍ରାକ୍ତନ କବିତାକୁ ପାଠକର ପ୍ରିୟ ଓ ପରମ କରିପାରେ, ସେଥିରେ ସେ ଯେପରି ବ୍ୟୁତ୍ପତ୍ତି ଦର୍ଶାଇଛନ୍ତି, ତାହା ଅନନ୍ୟ। କାବ୍ୟ ସୌନ୍ଦର୍ଯ୍ୟ, ରସ ଓ ଶିଳ୍ପ ବିଧାନ ଗୋଟିଏ କାବ୍ୟକୁ ଓ ତା'ର କବିକୁ କାଳାନ୍ତର ଯାତ୍ରାରେ ସହାୟକ ହୁଏ। ଏଣୁ ସେ କୃତିର ରଚନାକାଳ, କବିଙ୍କ ପରିଚୟ ଉଦ୍‌ଘାଟନ ଓ ରଚନାର ଅର୍ଥାନ୍ତରରେ ମନୋନିବେଶ ନ କରି କାବ୍ୟର ଉତ୍ତମ ଦିଗ ଉନ୍ମୋଚନରେ ବ୍ରତୀ ହୋଇଛନ୍ତି।

'ଉତ୍ତର ମଧ୍ୟପର୍ବ'ରେ ରୀତି ସାହିତ୍ୟର ଭିତ୍ତି ଓ ଭୂତି ଦର୍ଶାଇବା ସହିତ ଅବଶେଷରେ ଉପେନ୍ଦ୍ର, ଦୀନକୃଷ୍ଣ, ଅଭିମନ୍ୟୁ, ଗୋପାଳକୃଷ୍ଣ ଓ ବଳଦେବଙ୍କୁ ମାନ୍ୟତା ଦେଇ ଆଲୋଚନା କରିଛନ୍ତି। ଯେଉଁ ପୃଷ୍ଠଭୂମିରେ ଧର୍ମୀୟ ସାହିତ୍ୟର ପ୍ରାବଲ୍ୟରୁ ମୁକ୍ତହୋଇ ରୀତିସାହିତ୍ୟ ଏକାଧାରରେ ଧର୍ମ ଓ ସାରସ୍ୱତ ଅଭିଳାଷକୁ ପ୍ରବାହିତ କରିପାରିଛି, ତାହାକୁ ବିଶ୍ଳେଷଣ ନ କରି ସେ ପାଶ୍ଚାତ୍ୟ ସାହିତ୍ୟରେ ସୁଦ୍ଧା ଏହିଭଳି ଶୈଳୀପ୍ରଧାନ ରଚନାବଳୀର ବର୍ତ୍ତମାନତା ଉପରେ ଗୁରୁତ୍ୱ ଦେଇଛନ୍ତି।

ସମୀକ୍ଷକ ଯେ ଭାବର ଉଚ୍ଛ୍ୱାସରେ ଭାଷାର ପ୍ରଭାବରେ ଦୁଇଶହ ବର୍ଷର ସାହିତ୍ୟକୁ ଆଜିର ପାଠକପାଖରେ ସତେଜ, ସରସ ଓ ସୁସ୍ୱାଦୁ ରୂପେ ପରିବେଷଣ କରିପାରେ, ତାହା ଉତ୍ତର ମଧ୍ୟପର୍ବର ଆଲୋଚନାରୁ ଉପଲବ୍ଧ କରିହୁଏ। ଭାଷା ବ୍ୟବହାରରେ ଅପୂର୍ବ ଆବେଗରୁ କୀଟଦଂଷ୍ଟ ପୋଥିର କବି ପ୍ରକୃତରେ ସମ୍ରାଟ ପରି, ସୂର୍ଯ୍ୟ ପରି ପ୍ରତିଭାତ ହୋଇଉଠନ୍ତି। କୌଣସି ଛବି ନୁହେଁ, ସୁରେନ୍ଦ୍ରଙ୍କ ଆଲୋଚନାରୁ ଏମାନଙ୍କ କବିତ୍ୱ ଓ ବ୍ୟକ୍ତିତ୍ୱ- ଉଭୟ ପାଠକଚେତନାରେ ପରିସ୍ଫୁଟ ହୋଇଉଠେ।

'ଓଡ଼ିଆ ସାହିତ୍ୟର କ୍ରମବିକାଶ' ଶ୍ରୀ ମହାନ୍ତିଙ୍କର ଏକ ସଂକ୍ଷିପ୍ତ ଗ୍ରନ୍ଥ। ଯହିଁରେ ପାଞ୍ଚ ଶହ ବର୍ଷର ସାହିତ୍ୟ ଇତିହାସ ଆକଳିତ। ପୂର୍ବ ତିନୋଟି ଗ୍ରନ୍ଥର ଅଭିଜ୍ଞତା ଦୃଷ୍ଟିରୁ କ୍ରମବିକାଶର ଅଙ୍ଗକୁ ରହିଁ ଆଲୋଚନା ଆଉରି ବଳିଷ୍ଠ ପ୍ରଗଲ୍‌ଭତାମୁକ୍ତ ଏବଂ ଯୁକ୍ତିଯୁକ୍ତ ହୋଇପାରିଛି। ଏହାର ବିଶେଷତ୍ୱ ହେଉଛି, ୧୮୫୦ ପରବର୍ତ୍ତୀ ଇଂରେଜୀ ପ୍ରଭାବିତ ଆଧୁନିକ ସାହିତ୍ୟର ପର୍ଯ୍ୟାଲୋଚନା। ନିଜର ବିଶ୍ୱାସ, ବୋଧ ଓ ଦୃଷ୍ଟିଭଙ୍ଗୀ ପ୍ରୟୋଗକରି ସେ ରାଧାନାଥଙ୍କ ସ୍ଥାନରେ ଫକୀରମୋହନଙ୍କୁ ଯୁଗସ୍ରଷ୍ଟା ମାନ୍ୟତା ଦେବା ଏବଂ ନନ୍ଦକିଶୋର ଓ ମଧୁସୂଦନ ରାଓଙ୍କୁ ଯଥାର୍ଥ କବିଭାବେ ଆଲୋଚନା କରିବାକୁ ସାହସ କରିଛନ୍ତି।

ସମୀକ୍ଷକ ଯେ ନିର୍ଲିପ୍ତ ହେବ, ଅର୍ଥାତ ଆବେଗଧୃତ ହେବ ନାହିଁ, ଏକଥା 'କ୍ରମବିକାଶ' ଗ୍ରନ୍ଥର ମୁଖବନ୍ଧରେ ସୁରେନ୍ଦ୍ର ପ୍ରତ୍ୟାଶା କରିଛନ୍ତି। ଅଥଚ ସୁରେନ୍ଦ୍ର ହିଁ ସମାଲୋଚନା ସାହିତ୍ୟରେ ଆବେଗ ଓ ପ୍ରାଣର ସମବାୟ କରିଥିବା ପ୍ରଥମ ସମୀକ୍ଷକ ଅର୍ଥାତ୍ ସର୍ଜନାତ୍ମକ। ସେ ଲେଖିଛନ୍ତି-"ଇତିହାସ ଏକ କଷଟି। ସେଥିରେ କିଏ ସ୍ଥାନ ପାଇବାର ଅଧିକାରୀ, ତାହା ସେମାନଙ୍କ କୃତି ଓ ସଫଳତା ଉପରେ ନିର୍ଭରଶୀଳ। ସେଥିପାଇଁ ସାହିତ୍ୟ ଇତିହାସରେ ସମାଲୋଚନା ଓ ମୂଲ୍ୟାଙ୍କନର ପ୍ରୟୋଜନୀୟତା ରହିଛି। ଐତିହାସିକ ସମାଲୋଚନାର ପଦ୍ଧତି କେତେକ ମାନ୍ୟତାପ୍ରାପ୍ତ ସମାଲୋଚନାମୂଳକ ନିୟାମକଦ୍ୱାରା ନିୟନ୍ତ୍ରିତ ହୋଇଥିବାରୁ ସ୍ୱାଭିରୁଚିମୂଳକ ମୂଲ୍ୟାଙ୍କନ ଏଥିରେ ସ୍ଥାନ ପାଇନାହିଁ। ପୁଣି ବିଭିନ୍ନ ପର୍ଯ୍ୟାୟରେ ଓଡ଼ିଆ ସାହିତ୍ୟର ଗତି ଓ ପ୍ରକୃତି କିପରି ପାରିପାର୍ଶ୍ୱିକ ପରିସ୍ଥିତିର ପ୍ରଭାବରେ ସାଧିତ ହୋଇଅଛି, ତାହାର ବିଶ୍ଳେଷଣ ଏହି ଇତିହାସର ଅନ୍ୟତମ ବୈଶିଷ୍ଟ୍ୟ। ... ପୁଣି ପ୍ରତ୍ୟେକ ସ୍ରଷ୍ଟାର ପ୍ରତିଷ୍ଠା ତାର ସୃଷ୍ଟିର ଅନ୍ତର୍ନିହିତ ପ୍ରାଣଶକ୍ତି ଉପରେ। ସାହିତ୍ୟର ଇତିହାସରେ ବହୁ ବିସ୍ମୃତ ଲେଖକ ନିଜ ସୃଷ୍ଟିର ଦୁର୍ବାର ଶକ୍ତିରେ ପୁଣି ପ୍ରାଣବନ୍ତ ହୋଇଉଠିଥାନ୍ତି। ଐତିହାସିକ ଲେଖନୀ ସେମାନଙ୍କ ପ୍ରତିଭା ନିକଟରେ ଅତି ଅକିଞ୍ଚିତକର"(ଓଡ଼ିଆ ସାହିତ୍ୟର କ୍ରମବିକାଶପୃ-ଖ)। 'ଓଡ଼ିଆ ସାହିତ୍ୟର କ୍ରମବିକାଶ' ଗ୍ରନ୍ଥରେ ସୁରେନ୍ଦ୍ରଙ୍କ ସମୀକ୍ଷା-ସାହସ ଆଧୁନିକ, ଏପରିକି ସ୍ୱାଧୀନତାପର ସାହିତ୍ୟ ପ୍ରତି କିପରି ବିଚ୍ଛର କରିଛି ତାହା ଦେଖାଯାଉ।

ଆଧୁନିକତା ସୁରେନ୍ଦ୍ରଙ୍କ ଦୃଷ୍ଟିରେ ଗଦ୍ୟର ଭୂୟୋବିକାଶ ସହିତ ଜଡ଼ିତ। ଏଣୁ ସେ ଫକୀରମୋହନଙ୍କୁ ଯୁଗସ୍ରଷ୍ଟାର ସମ୍ମାନ ଦିଅନ୍ତି। ରାଧାନାଥଙ୍କ କାବ୍ୟିକ ଉଚ୍ଚତାକୁ ସ୍ୱୀକାର କରି, ନନ୍ଦକିଶୋର ଓ ମଧୁସୂଦନଙ୍କୁ ମାନ୍ୟତା ଦେଇ ତା ସହିତ ଗୌରୀଶଙ୍କର ରାୟଙ୍କୁ ଯୋଗକରି ଶ୍ରୀ ମହାନ୍ତି ଯେଉଁ ନିଷ୍କର୍ଷରେ ପହଞ୍ଚନ୍ତି, ତାହା ବି.ସି. ମଜୁମଦାରଙ୍କ ମତର ଅନୁପୂରକ। ସାହିତ୍ୟର ଇତିହାସରେ ବାରିଷ୍ଟର ମଧୁବାବୁଙ୍କୁ ପଙ୍କ୍ତିଭୁକ୍ତ କରିବାର ସାହସ ସୁରେନ୍ଦ୍ରଙ୍କ ବୈଶିଷ୍ଟ୍ୟ। ମାତ୍ର ସାତଗୋଟି ସ୍ୱତଃସ୍ଫୁରିତ କବିତାର କବି ସମକାଳର ଉତ୍କଳଭୂମିର ଜାତୀୟଚେତନା ସୃଷ୍ଟିରେ ଯେଉଁଭଳି ନାୟକତ୍ୱ ନେଇଥିଲେ, ତାହାର ସ୍ୱରନିନାଦ ସାହିତ୍ୟରେ ସୁଦ୍ଧା ସେହିପରି ଝଙ୍କୃତ ବୋଲି ସୁରେନ୍ଦ୍ର ଦାବି କରନ୍ତି। ଲେଖିଛନ୍ତି- "ରଚନାର ରୀତି ଓ ପ୍ରକୃତି, ଶବ୍ଦ ସଂଯୋଜନା, ଆବେଗର ଗଭୀରତା ଓ ଅନୁଭୂତିରେ ଆନ୍ତରିକତା ସମ୍ପନ୍ନ ନିଷ୍ଠା ଦୃଷ୍ଟିରୁ ଏ କବିତାଗୁଡ଼ିକୁ ଓଡ଼ିଆରେ ଶ୍ରେଷ୍ଠ ଦେଶାତ୍ମବୋଧକ କବିତା ସଞ୍ଚୟନରେ ଅକ୍ଳେଶରେ ସ୍ଥାନ ଦିଆଯାଇପାରେ।"

ଏକ ସ୍ୱତନ୍ତ୍ର ଆଲୋଚନାରେ କବି ରାଧାନାଥଙ୍କୁ ଦଶପୃଷ୍ଠା ବିସ୍ତର ଦେଇ ସୁରେନ୍ଦ୍ର ତାଙ୍କୁ-'କରୁଣ ରସ ପ୍ରବର୍ତ୍ତକ', 'ପ୍ରକୃତି ମାଳଞ୍ଚର ମାଳାକାର','ଜାତୀୟତାର ଉଦ୍‌ବୋଧକ', 'ଅମିତ୍ରାକ୍ଷର ଛନ୍ଦର ପ୍ରବର୍ତ୍ତକ' ଭାବେ ଉଚ୍ଛ୍ୱସିତ ପ୍ରଶଂସା କରିଛନ୍ତି ମଧ୍ୟ। ସେହିପରି ଗଙ୍ଗାଧର ମେହେରଙ୍କୁ ଆଧୁନିକ ଓଡ଼ିଆ ସାହିତ୍ୟର ବିରଳ କାବ୍ୟନିଷ୍ଠା, ମଧୁସୂଦନ ରାଓଙ୍କୁ ଲିରିକ୍‌ଧର୍ମୀ ଗୀତିକବିତା ଓ ଚତୁର୍ଦ୍ଦଶପାଦୀ କବିତା ତଥା ଖଣ୍ଡକବିତା ଯୁଗର ସ୍ରଷ୍ଟା, ଚିନ୍ତାମଣି ମହାନ୍ତିଙ୍କୁ ସଫଳ କବି ଓ ପଦ୍ମଚରଣଙ୍କୁ ରାଧାନାଥ ଯୁଗ କାବ୍ୟପ୍ରବୃତ୍ତିର ପ୍ରତିବାଦ ବୋଲି ସ୍ପଷ୍ଟ ଅଭିବ୍ୟକ୍ତ କରିଛନ୍ତି।

ଫକୀରମୋହନଙ୍କୁ ସବିଶେଷ ମାନ୍ୟତାଦେଇ ସେ ଫକୀରମୋହନ ସମୀକ୍ଷାର ସଂକ୍ଷେପସାର ହିଁ ଉଲ୍ଲେଖ କରିଛନ୍ତି। ଫକୀରମୋହନଙ୍କ-"ଓଡ଼ିଆ କବିତା ବା ପଦ୍ୟ ସାହିତ୍ୟର ଏକ ନୂତନ ଧାରାର ପ୍ରବର୍ତ୍ତକ ଓ ସେହି ସୂତ୍ରରେ ଜଣେ ଯୁଗସ୍ରଷ୍ଟା" ବୋଲି କହି ନନ୍ଦକିଶୋରଙ୍କୁ ତାଙ୍କର "କବିତାଶୈଳୀ ଓ ବାକ୍‌ଭଙ୍ଗୀଦ୍ୱାରା ପ୍ରଭାବିତ" ବୋଲି ଶ୍ରୀ ମହାନ୍ତି ଉଲ୍ଲେଖ କରିଛନ୍ତି। ନନ୍ଦକିଶୋର ଯେ ଓଡ଼ିଆ ପଲ୍ଲୀଜୀବନର ଅବଚେତନକୁ ଉସ୍କାରିତ କରିପାରିଛନ୍ତି, ଏକଥା ସାହିତ୍ୟ ଇତିହାସକାରମାନେ ସ୍ୱୀକାର କରନ୍ତି; କିନ୍ତୁ ଏହା ଯେ ଫକୀରମୋହନ ପନ୍ଥାନୁସୃତ- ଏକଥା କେହି ଦର୍ଶାଇ ନ ଥିଲେ।

କ୍ରମବିକାଶର ୨୫୮ ପୃଷ୍ଠାରୁ ସମୟର କ୍ରମଚର୍ଚ୍ଚା ନ ହୋଇ ବିଭିନ୍ନ ଧାରାର କ୍ରମିକ ଚର୍ଚ୍ଚା ଆରମ୍ଭ ହୁଏ। ଉପନ୍ୟାସ ଓ କ୍ଷୁଦ୍ରଗଳ୍ପ, ନାଟକ, ନାଟ୍ୟ-ସାହିତ୍ୟ, ରମ୍ୟରଚନା ଓ ପ୍ରବନ୍ଧ ଶିରୋନାମରେ ଫକୀରମୋହନ, ରାମଶଙ୍କର, ଜଗନ୍‌ମୋହନଙ୍କଠାରୁ ପଣ୍ଡିତ ନୀଳକଂଠ, ଗୋଦାବରୀଶଙ୍କ ପର୍ଯ୍ୟନ୍ତ ଗଦ୍ୟ ସାହିତ୍ୟର ବିଶଦ ଚର୍ଚ୍ଚା ଚାଳିଶ ପୃଷ୍ଠା-ବ୍ୟାପ୍ତ।

ସତ୍ୟବାଦୀ-ସବୁଜ କବିତାର ଚର୍ଚ୍ଚାପରେ ପୁଣି ପ୍ରାକ୍ ସ୍ୱାଧୀନତା ଅବଧି ସାହିତ୍ୟର ଚର୍ଚ୍ଚା ଏହି ଗ୍ରନ୍ଥରେ ପରିଲକ୍ଷିତ। ସାମାନ୍ୟରେ କାନ୍ତକବି ଲକ୍ଷ୍ମୀକାନ୍ତ, କୁନ୍ତଳାକୁମାରୀ, ମାନସିଂହ, ଗଡ଼ନାୟକ, କୁଞ୍ଜବିହାରୀ, କୃଷ୍ଣଚନ୍ଦ୍ର ତ୍ରିପାଠୀ, ନିତ୍ୟାନନ୍ଦ ମହାପାତ୍ର ପ୍ରମୁଖଙ୍କୁ ଆଲୋଚନା-ମନ୍ତବ୍ୟମାନ ଦେଇ ଶ୍ରୀ ମହାନ୍ତି ଦାୟିତ୍ୱ ସମାପନ କରିଛନ୍ତି। କାନ୍ତକବିଙ୍କୁ ଜୀବନ ସଙ୍ଗୀତ ଓ କଣାମାମୁଁର ରଚନାକାର ଭାବେ, ଗୋଦାବରୀଶ ମହାପାତ୍ରଙ୍କୁ କ୍ଷୁଦ୍ରଗଳ୍ପରେ

ଶୈଳ୍ପିକ ସଫଳ ଓ ଚତୁର୍ଥ ଦଶକର ଶକ୍ତିଶାଳୀ କଥାକାର ଭାବେ, କବି କୁନ୍ତଳାକୁମାରୀଙ୍କୁ ରୋମାଣ୍ଟିକ୍, ମାନସିଂହଙ୍କୁ କଳାତ୍ମକ ଦୃଷ୍ଟିରୁ ସବୁଜ କବିମାନଙ୍କ ଅପେକ୍ଷା ବିପୁଳତର ସଫଳତାର ଅଧିକାରୀ ବୋଲି ଉଲ୍ଲେଖ କରନ୍ତି ଶ୍ରୀ ମହାନ୍ତି ।

ସମକାଳୀନ ସଚ୍ଚିଦାନନ୍ଦ, ଅନନ୍ତ, ବିନୋଦ ଚନ୍ଦ୍ର, ଜ୍ଞାନୀନ୍ଦ୍ରଙ୍କ ସମେତ ଗୁରୁପ୍ରସାଦ, ରମାକାନ୍ତ, ରବି ସିଂହ, ବେଣୁଧର, ଚିନ୍ତାମଣି, ଜାନକୀ ବଲ୍ଲଭ ପ୍ରଭୃତି ଲେଖକଙ୍କ ସମ୍ପର୍କରେ ତାଙ୍କ ମୁକ୍ତ ମନ୍ତବ୍ୟଗୁଡ଼ିକ ଉଦ୍ଧରଣଯୋଗ୍ୟ ।

"ପ୍ରଣୟବିପ୍ଳବ ସହାନୁଭୂତି ଓ ବହୁମୁଖୀ ଜୀବନ-ଚେତନା ତାଙ୍କ କବିତାର ଉପଜୀବ୍ୟ" - ଚିନ୍ତାମଣି ବେହେରା ।

"ବକ୍ତବ୍ୟର ରସଧର୍ମିତା ଅଧିକତର ଲକ୍ଷଣୀୟ" - ବେଣୁଧର ରାଉତ

"ରମାକାନ୍ତଙ୍କ କବିତାରେ ସଚ୍ଚିଦାନନ୍ଦଙ୍କ ବୁଦ୍ଧିଦୀପ୍ତ ଚମତ୍କାରିତା ଅଥବା ଗୁରୁପ୍ରସାଦଙ୍କ କୁହୁଡ଼ିବୋଳା ପତ୍ରଝରା ପୌରୁଷର ବିଷାଦ କିମ୍ବା ଆୟାସଲବ୍ଧ ନେତିତ୍ୱ ନାହିଁ-ଅଛି ସମ୍ବେଦନଶୀଳ କବିପ୍ରାଣର ଶୁଭସ୍ପର୍ଶ ।" - ରମାକାନ୍ତ ରଥ

"କବିତା ତାଙ୍କ ଜୀବନ ସଂଗ୍ରାମର ଶାଣିତ ଆୟୁଧ ।" - ରବି ସିଂହ

ତେବେ ସମୀକ୍ଷକ ସୁରେନ୍ଦ୍ର କଥାସାହିତ୍ୟରେ ତାଙ୍କ ସମକାଳୀନ ଗୋପୀନାଥ, ରାଜକିଶୋର, କାହ୍ନୁଚରଣଙ୍କ ସମ୍ପର୍କରେ ନିରପେକ୍ଷ ମତାମତ ଦେଇ ସରସ୍ୱତ ଦାୟିତ୍ୱ ନିର୍ବାହରେ ସତ୍ୟଶୀଳ ଅଛନ୍ତି ।

"ସ୍ୱାଧୀନତୋତ୍ତର କାଳରେ ଆଞ୍ଚଳିକ ଉପନ୍ୟାସ ହିଁ ହୋଇଛି ଓଡ଼ିଆ ଉପନ୍ୟାସର ଅଭିବ୍ୟକ୍ତିରେ ଏକମାତ୍ର ଉଲ୍ଲେଖଯୋଗ୍ୟ ସମ୍ପଦ । ପରଜା, ଅମୃତର ସନ୍ତାନ, ଦାଦିବୁଢ଼ା ଓ ଅପହଞ୍ଚ ପ୍ରଭୃତି ନୃତାତ୍ତ୍ୱିକ ହେଲେ ହେଁ ଚରିତ୍ର ଓ ପ୍ରବୃତ୍ତି ଦୃଷ୍ଟିରୁ ସେସବୁ ଆଞ୍ଚଳିକ ଉପନ୍ୟାସ । .... ଗୋପୀନାଥଙ୍କ କୃତିତ୍ୱ ଓ ସଫଳତାକୁ ସେମାନେ ଅତିକ୍ରମ କରିଥିବାପରି ମନେ ହୁଏ ନାହିଁ ।" (ପୃ.୩୮୨)

"ସ୍ୱାଧୀନତୋତ୍ତର ଓଡ଼ିଆ ଉପନ୍ୟାସ ଭାବସମ୍ପଦ ଓ ପରିମାଣ ଦୃଷ୍ଟିରୁ ବିଭୂତି ପଟ୍ଟନାୟକଙ୍କ ରଚନାରେ କିଛିଟା ସମୃଦ୍ଧ ହୋଇଛି । .... ବର୍ଣ୍ଣନାର ସେଇ ସମତଳୈକ ଅନର୍ଗଳତା ମଧ୍ୟରେ ସେ ଦେଇଛନ୍ତି କିଛିଟା ଅନ୍ତର୍ଦୃଷ୍ଟି ଓ ସୌକୁମାର୍ଯ୍ୟର ସ୍ପର୍ଶ ।" (ପୃ.୪୦୧)

୧୯୭୮ ଜୁଲାଇ ମାସରେ ସମାପ୍ତ ଏହି ଗ୍ରନ୍ଥ ୧୯୭୦-୭୫ ମସିହା ଅବଧି ପ୍ରକାଶିତ ଗ୍ରନ୍ଥ ସମ୍ପର୍କରେ ସୂଚନା ଦେଇଥାଏ । ଉପସଂହାର କରିବାକୁ ଯାଇ ସୁରେନ୍ଦ୍ର ଯଥାର୍ଥରେ ଲେଖିଛନ୍ତି - "ସାମ୍ପ୍ରତିକ ସାହିତ୍ୟ କୌଣସି ନୂତନ ଭାବଧାରା ଓ ଚେତନାର ବାହକ ହୋଇପାରିନାହିଁ । ବକ୍ତବ୍ୟ ଅଭାବରେ ଶୈଳୀ ଓ ଆଙ୍ଗିକ ହିଁ କେବଳ ହୋଇପାରିଛି ସାହିତ୍ୟର ପୁଞ୍ଜି । .... ବକ୍ତବ୍ୟର ଅଭାବ ସାମ୍ପ୍ରତିକ ଓଡ଼ିଆ ସାହିତ୍ୟର ଗୁଣାତ୍ମକ ବିକାଶକୁ ବହୁ ପରିମାଣରେ ବାଧାଗ୍ରସ୍ତ କରିଦେଇଛି ।" କିନ୍ତୁ ଜଣେ ସ୍ରଷ୍ଟାର ଆଶାନେଇ ସେ ଉପସଂହାର କରିଛନ୍ତି-"ଏହା ହୁଏତ ନୂତନ ସୂର୍ଯ୍ୟୋଦୟ ପୂର୍ବରୁ ରାତ୍ରି ଶେଷର ସ୍ୱାଭାବିକ ଅନ୍ଧକାର । ନୂତନ ଶକ୍ତିଶାଳୀ ଲେଖକ ଗୋଷ୍ଠୀଙ୍କ ଆବିର୍ଭାବ ପାଇଁ ଏହା ହୁଏତ ତିମିରାଚ୍ଛନ୍ନ ପ୍ରତୀକ୍ଷା ।" ଏହିସବୁ ସ୍ୱଗୁଣରୁ 'ଓଡ଼ିଆ ସାହିତ୍ୟର କ୍ରମବିକାଶ'କୁ ସୁରେନ୍ଦ୍ର ସାହିତ୍ୟ ଇତିହାସ ପ୍ରଣୟନ ପ୍ରତିଭାର ପ୍ରକୃଷ୍ଟ ନିଦର୍ଶନ କହିବା ।

ସମୀକ୍ଷକ ସୁରେନ୍ଦ୍ରଙ୍କ ସମଗ୍ର ଆକଳନ ନିମ୍ନମତେ କରାଯାଇପାରେ। ଜଣେ ସ୍ରଷ୍ଟା ଭାବରେ ସୁରେନ୍ଦ୍ର ଯେପରି ନବଯୁଗ ପ୍ରବର୍ତ୍ତକ ଥିଲେ, ସମୀକ୍ଷକ ଭାବେ ପୂର୍ବରୁ ସମୀକ୍ଷାଦୃଷ୍ଟି-ବଞ୍ଚିତ ପ୍ରତିଭାଧରଙ୍କ ବିଶେଷତ୍ୱ ଚିହ୍ନଟରେ ମଧ୍ୟ ଅଗ୍ରଣୀ ଥିଲେ। ସମୀକ୍ଷାରେ ସୁଦ୍ଧା ସଂଭ୍ରାନ୍ତ ଭାଷା ବ୍ୟବହାର ଓ ତୁଳନାତ୍ମକ, ଐତିହାସିକ ଓ ସମାଜତାତ୍ତ୍ୱିକ ସମୀକ୍ଷାରୀତିର ପ୍ରୟୋଗ ଏବଂ ସର୍ବୋପରି ସମକାଳ ସ୍ରଷ୍ଟାଙ୍କ ପ୍ରତି ଉଦାର ମନୋଭାବ ପୋଷଣରେ ସେ ଅନନ୍ୟ ଥିଲେ। ସାରଳା ଦାସଙ୍କ ଆଲୋଚନାରେ ଯେମିତି; ସେମିତି ଦୀନକୃଷ୍ଣ, ଫକୀରମୋହନ, ଗୋପୀନାଥ ଓ ଗୁରୁପ୍ରସାଦଙ୍କ ଆଲୋଚନାରେ ସେ ବିଶ୍ୱସାହିତ୍ୟ ପୀଠିକାର ଆଶ୍ରୟରେ ନବୀନ ବ୍ୟାଖ୍ୟା ଓ ନିଷ୍କର୍ଷ ପ୍ରଦାନ କରିଛନ୍ତି। ଏଣୁ ପ୍ରଫେସର ବାଉରୀବନ୍ଧୁ କରଙ୍କୁ ଅବିକଳ ଉଦ୍ଧାର କରି କୁହାଯାଇପାରେ-" ଓଡ଼ିଆ ସାହିତ୍ୟକୁ ବୃହତ୍ତର ଦୃଷ୍ଟିରେ ଦେଖିବାକୁ ତାଙ୍କର ଶକ୍ତି ସହିତ ଗଭୀର ଅଧ୍ୟୟନ ଥିଲା। ସମାଜତତ୍ତ୍ୱ, ଦର୍ଶନ, ମନୋବିଜ୍ଞାନ, ଇତିହାସ ପ୍ରଭୃତି ଜ୍ଞାନଶୃଙ୍ଖଳା ସହିତ ସମ୍ପର୍କ ରଖି ସେ ଓଡ଼ିଆ ସାହିତ୍ୟର ଯେଉଁ ମୂଲ୍ୟାୟନ କରିଛନ୍ତି ତାହାର ତୁଳନା ଓଡ଼ିଆ ସମାଲୋଚନା ସାହିତ୍ୟରେ ନାହିଁ।"

ଉପସଂହାରରେ କୁହାଯାଇପାରେ, ସମୀକ୍ଷକ ସୁରେନ୍ଦ୍ର ମହାନ୍ତି ସୃଷ୍ଟି ଓ ସ୍ରଷ୍ଟାଙ୍କ ପ୍ରତି ମିତ୍ରଦୃଷ୍ଟିସଂପନ୍ନ। ବିଚାର ଓ ସିଦ୍ଧାନ୍ତରେ ଦୃଢ଼। ପ୍ରକାଶଭଂଗୀରେ ଆବେଗର ଆଧିକ୍ୟ, କଦାଚିତ ଭାଷା ବିଧାନରେ ବିଶେଷଣ ବାହୁଲ୍ୟ ଥିଲେହେଁ ସ୍ରଷ୍ଟାର ନବ୍ୟ ପରିଚୟ ପ୍ରତିଷ୍ଠାରେ ତାହାହିଁ ହୁଏ ସହାୟକ। ସମୀକ୍ଷାରେ ମିତ୍ରଦୃଷ୍ଟି ଗଦ୍ୟଶିଳ୍ପୀ ସୁରେନ୍ଦ୍ର ମହାନ୍ତିଙ୍କ ପରିଚୟ ଓ ବିଶେଷତ୍ୱ।

## ସୁରେନ୍ଦ୍ର ମହାନ୍ତିଙ୍କ ସମାଲୋଚନା ଗ୍ରନ୍ଥ

ଫକୀରମୋହନ(୧୯୫୦), କଟକ: ନିଉ ଷ୍ଟୁଡେଂଟସ୍ ଷ୍ଟୋରସ୍।
ଫକୀରମୋହନ ସମୀକ୍ଷା(୧୯୫୫), କଟକ: ନିଉ ଷ୍ଟୁଡେଂଟସ୍ ଷ୍ଟୋରସ୍।
ଓଡ଼ିଆ ସାହିତ୍ୟର ଆଦିପର୍ବ(୧୯୬୩), କଟକ: କଟକ ଷ୍ଟୁଡେଂଟସ୍ ଷ୍ଟୋରସ୍।
ଓଡ଼ିଆ ସାହିତ୍ୟର ମଧ୍ୟପର୍ବ(୧୯୬୮), କଟକ: କଟକ ଷ୍ଟୁଡେଂଟସ୍ ଷ୍ଟୋରସ୍।
ଓଡ଼ିଆ ସାହିତ୍ୟର କ୍ରମବିକାଶ(୧୯୭୮), କଟକ: ଅଗ୍ରଦୂତ।
ସାହିତ୍ୟ ଓ ସମାଜ(୧୯୭୯), କଟକ: ଅଗ୍ରଦୂତ।
ଓଡ଼ିଆ ସାହିତ୍ୟର ମଧ୍ୟ ଓ ଉତ୍ତରପର୍ବ(୧୯୮୮), କଟକ: କଟକ ଷ୍ଟୁଡେଂଟସ୍ ଷ୍ଟୋରସ୍।



୦୩ ଅକ୍ଟୋବର, ୧୯୨୩ - ୧୬ ଜାନୁଆରୀ, ୨୦୧୩

## ସମାଲୋଚକ ଚିତ୍ତରଞ୍ଜନ

ବିଜୟ କୁମାର ନନ୍ଦ

## ଏକ

ଆପଣା ସ୍ରଷ୍ଟା ଜୀବନର ମୂଳମନ୍ତ୍ରକୁ ଚିତ୍ତରଞ୍ଜନ ଶିକ୍ଷା କରିଛନ୍ତି ବେନିଡିକ୍ଟ୍ ସ୍ପିନୋଜାଙ୍କ ପାଖରୁ। ସେ ତାଙ୍କଦ୍ୱାରା ପ୍ରଦତ୍ତ " ମୋ' ଜୀବନ ମୋ' ସାହିତ୍ୟ" ଶୀର୍ଷକ ଅଭିଭାଷଣରେ କହିଛନ୍ତି, " ନିଜର ଏକ ଚିଠିରେ ସ୍ପିନୋଜା ଲେଖିଥିବା ଗୋଟିଏ ବାକ୍ୟ ସତେଅବା ମୋ' ଜୀବନରେ ଏକ ମନ୍ତ୍ର ହୋଇ ରହିଗଲା। ସେହି ବାକ୍ୟଟି ହେଉଛି :Do not weep, do not wax indignant,understand,- ମୂଳ ଲାଟିନ୍ ଭାଷାରେ ଏହି ବାକ୍ୟଟିକୁ ସେ ଏହିପରି ଲେଖିଥିଲେ : Non ridere, non Lugere, neque detestari, sed intelligere,-କାନ୍ଦ ନାହିଁ, ନ୍ୟାୟ କରିବାର ଫାନ୍ଦରେ ପଡ଼ନାହିଁ, କ୍ରୁଦ୍ଧ ହୋଇ ଭର୍ତ୍ସନା କରନାହିଁ, ବୁଝିବାକୁ ଚେଷ୍ଟାକର। ଏହି ବାକ୍ୟଟି ମୋ'ର ଜୀବନକୁ ବଦଳାଇ ଦେଲା" ( ଦାଶ, ଗୌରାଙ୍ଗଚରଣ ସଂପାଦିତ : ୧୯୯୧,୧୧)।

ଦାର୍ଶନିକ ସ୍ପିନୋଜାଙ୍କଦ୍ୱାରା ପ୍ରଭାବିତ ଚିତ୍ତରଞ୍ଜନଙ୍କ ମତରେ କେବଳ ଜାଣିବାଦ୍ୱାରା ପ୍ରାୟ କୌଣସି ପରିବର୍ତ୍ତନ ସଂଘଟିତ ହୁଏନାହିଁ। ବୁଝିଲେ ମଣିଷ ନିଜେ ବଦଳିଯାଏ ଏବଂ ସଂସାରକୁ ବଦଳାଇବାକୁ ଚେଷ୍ଟାକରେ। ତେଣୁ ସାହିତ୍ୟିକ ପ୍ରଥମେ ଜୀବନ, ମଣିଷ,ସମାଜ ଓ ପରିବେଶକୁ ବୁଝିବା ଆବଶ୍ୟକ। ସାହିତ୍ୟ ହେଉଛି ସକଳ ପରିବର୍ତ୍ତନର ଏକ ମାଧ୍ୟମ। ଏହା ଭିତରେ ବଦଳାଏ,ବାହାରେ ବି ବଦଳାଇବାର ସ୍ପର୍ଦ୍ଧା ରଖିଥାଏ। ଯେଉଁ ସାହିତ୍ୟିକ ଜୀବନକୁ ସେତିକି ସମୀକ୍ଷକାତ୍ମକ ଭାବରେ ଦେଖିଛି, ସିଏ ସେତିକି ପରିବର୍ତ୍ତନ-ସମର୍ଥ ସାହିତ୍ୟ ଲେଖିପାରିବ। ଭଲଟେଆର, ରଷୋ ଏବଂ ସେକ୍ସପିଅର ଇଉରୋପ ଭୂଖଣ୍ଡରେ ସାମାଜିକ ପରିବର୍ତ୍ତନ ଆଣିବାର ସମର୍ଥ ହୋଇଛନ୍ତି। ସେମାନଙ୍କର ସାହିତ୍ୟର ଜନନୀ ହେଉଛି ଜୀବନ। ଜୀବନଠାରୁ ପଳାୟନ କରିବାପାଇଁ ସେମାନେ ସାହିତ୍ୟ ରଚନା କରିନାହାନ୍ତି, ଜୀବନର କଥା କହିବା ପାଇଁ ସେମାନେ ଶ୍ରଦ୍ଧାଶୀଳ ହୋଇଛନ୍ତି। ସମୂହକୁ ମଧ୍ୟ ଆପଣା ସହିତ ନେଇଛନ୍ତି। ସେମାନଙ୍କ ସାଧନା ଓ ଅନ୍ତର୍ଦୃଷ୍ଟି ଇଉରୋପର ସମାଜ ଜୀବନରେ ପରିବର୍ତ୍ତନର କାରଣ ହୋଇଛି। ଜୀବନ ଉପରେ ପ୍ରାଧାନ୍ୟ ଦେବା, ଏହାକୁ ବୁଝିବା, ଜୀବନକୁ ସତ୍ୟରୂପେ ଗ୍ରହଣ କରିବା, ସମୂହକୁ ଏଡ଼ାଇ ନ ଯାଇ ସମାଜର ସାଧାରଣ ଜୀବନକୁ ସମୃଦ୍ଧକରିବା ପ୍ରକୃତ ସାହିତ୍ୟର ଲକ୍ଷ୍ୟ। ଏହି ଲକ୍ଷ୍ୟଗୁଡ଼ିକୁ ଭୂମିକରି ଚିତ୍ତରଞ୍ଜନଙ୍କ ସାହିତ୍ୟ ସମାଲୋଚନା ଗତିଶୀଳ।

## ଦୁଇ

ସାହିତ୍ୟ-ସମାଲୋଚନା ସାଧାରଣ ଭାବରେ ସାହିତ୍ୟର ସଂଜ୍ଞା, ଶ୍ରେଣୀବିଭାଗ,ବିଶ୍ଳେଷଣ, ବ୍ୟାଖ୍ୟା ଏବଂ ମୂଲ୍ୟାୟନ ସହିତ ସଂପର୍କିତ।ଏହାର ଦୁଇଟି

ବିଭାଗ ହେଉଛି, ତାତ୍ତ୍ୱିକ ଏବଂ ପ୍ରାୟୋଗିକ ସମାଲୋଚନା। ଚିତ୍ତରଞ୍ଜନଙ୍କର ସମାଲୋଚନାର ଆଲୋଚନା ପରିପ୍ରେକ୍ଷୀରେ ଏହି ଉଭୟବିଧ ସମାଲୋଚନା ବିଷୟରେ କିଛି ଲେଖିବା ପ୍ରାସଙ୍ଗିକ ହେବ। ତାତ୍ତ୍ୱିକ ସମାଲୋଚନା ସାହିତ୍ୟର ସାଧାରଣ ନୀତିନିୟମ ଓ ପଦ୍ଧତି ସଂପର୍କରେ ସାହିତ୍ୟର ତତ୍ତ୍ୱକୁ ଉପସ୍ଥାପିତ କରେ। ଏହା ସାହିତ୍ୟକୃତିକୁ ଚିହ୍ନିବା ଓ ବିଶ୍ଳେଷଣ କରିବାପାଇଁ କେତେକ ପରିଭାଷା, ପ୍ରଭେଦ ଓ ବର୍ଗର ପ୍ରୟୋଗ କରେ ଏବଂ ମୂଲ୍ୟାୟନପାଇଁ ମାନ ନିରୂପଣ କରେ। ତାତ୍ତ୍ୱିକ ସମାଲୋଚନା ଉପରେ ପାଶ୍ଚାତ୍ତ୍ୟ ଭୂଖଣ୍ଡରେ ରଚିତ ସର୍ବପ୍ରଥମ କୃତି ହେଉଛି ଆରିଷ୍ଟୋଟଲଙ୍କର **ପୋଏଟିକସ**। ଭାରତ ଉପମହାଦେଶରେ ରଚିତ ଏହିଭଳି ପ୍ରାଚୀନ କୃତି ଭରତମୁନିଙ୍କର **ନାଟ୍ୟଶାସ୍ତ୍ର**। ବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ତାତ୍ତ୍ୱିକ ସମାଲୋଚନା କ୍ଷେତ୍ରରେ ବିଶେଷ ପ୍ରଭାବ ବିସ୍ତାର କରିଛନ୍ତି ଆଇ: ଏ: ରିଚାର୍ଡସ୍ (Principles of Literaty Criticism: ୧୯୨୪) କେନ୍ନେଥ୍ ବର୍କ (The Philosophy of Literary Form : ୧୯୪୧) ଏରିକ୍ ଅର୍‌ବାକ୍ (Mimesis: ୧୯୪୬)ଆର୍:ଏସ୍: କ୍ରେନ (ସଂପାଦିତ : Critics and Criticism) ଏବଂ ନରଥ୍ରପ ଫ୍ରାଏ ( Anatomy of Criticism : ୧୯୫୭)

ବିଂଶ ଶତାବ୍ଦୀର ସପ୍ତମ ଦଶକରୁ ଇଂରେଜ, ଆମେରିକୀୟ ଏବଂ ଅନ୍ୟାନ୍ୟ ଇଉରୋପୀୟ ଦେଶରେ ବିଭିନ୍ନ ନୂତନ, ବୈପ୍ଳବିକ ଏବଂ ଉଗ୍ର ସମାଲୋଚନା ତତ୍ତ୍ୱମାନ ଉଦ୍ଭବ ହୋଇଛି। ଏହିଭଳି କେତେକ ତତ୍ତ୍ୱ ହେଉଛି ଷ୍ଟ୍ରକଚରାଲିଜମ୍, ପୋଷ୍ଟଷ୍ଟ୍ରକଚରାଲିଜିମ୍, ଡିକନଷ୍ଟ୍ରକସନ୍, ରିଡର ରେସପନସ କ୍ରିଟିସିଜମ, ଫର୍ମାଲିଜିମ୍, ଫେମିନିଜମ୍, ମନସ୍ତାତ୍ତ୍ୱିକ ସମାଲୋଚନା, ମାର୍କସିଷ୍ଟ କ୍ରିଟିସିଜମ,ଶୈଳୀତାତ୍ତ୍ୱିକ ସମାଲୋଚନା, ଭାଷାତାତ୍ତ୍ୱିକ ସମାଲୋଚନା,ନିଉହିଷ୍ଟୋରିସିଜମ୍ ଏବଂ ପରିବେଶ ସମାଲୋଚନା। ଏହି ସବୁ ସମାଲୋଚନା ତତ୍ତ୍ୱ ଆଧାରିତ ବହୁ ପୁସ୍ତକ ରଚିତ ହୋଇଛି।

ପ୍ରାୟୋଗିକ ସମାଲୋଚନା ନିର୍ଦ୍ଦିଷ୍ଟ କୃତି, ନିର୍ଦ୍ଦିଷ୍ଟ ସାହିତ୍ୟ ଏବଂ ଏହାର ଲେଖକମାନଙ୍କର ଆଲୋଚନା ସହିତ ସଂପର୍କିତ। ଏଥିରେ ବିଶ୍ଳେଷଣ, ବ୍ୟାଖ୍ୟାନ ଏବଂ ମୂଲ୍ୟାୟନକୁ ନିୟନ୍ତ୍ରିତ କରୁଥିବା ତାତ୍ତ୍ୱିକ ନୀତିନିୟମଗୁଡ଼ିକ ଉହ୍ୟ ଭାବରେ ରହିଥାଏ ଅଥବା ଆବଶ୍ୟକତା ଅନୁସାରେ ଉପସ୍ଥାପିତ ହୋଇଥାଏ। ବିଂଶ ଶତାବ୍ଦୀରେ ପ୍ରାୟୋଗିକ ସମାଲୋଚନା କ୍ଷେତ୍ରରେ ଆଇ: ଏ: ରିଚାର୍ଡ଼ସଙ୍କ Practical Criticism (୧୯୩୦), ଟି.ଏସ୍:ଏଲିଅଟଙ୍କର Selected Essays(୧୯୩୨), ଭରଜିନିଆ ଭଲଫ,ଏଫ୍: ଆର:ଲିଭିସ୍ ଏବଂ ଲାଓନେଲ୍ ଟ୍ରିଲିଂଙ୍କର ସମାଲୋଚନା ମୂଳକ ପ୍ରବନ୍ଧ କେତେଗୁଡ଼ିଏ ଉଲ୍ଲେଖନୀୟ କୃତି। କ୍ଲି ଆନ୍ଥ ବୃକସଙ୍କର The Wellwrought Urn (୧୯୪୭) ପୁସ୍ତକ ହେଉଛି ଏକକ କୃତିଗୁଡ଼ିକର ଅଭିନିବିଷ୍ଟ ପଠନ।

ପ୍ରାୟୋଗିକ ସମାଲୋଚନା ଦୁଇ ଭାଗରେ ବିଭକ୍ତ, ଯଥା - ଧାରଣାମୂଳକ ଏବଂ ବିଚାରମୂଳକ। ଏକ କୃତିକୁ ଅଧ୍ୟୟନ କଲେ କୃତିର ଯେଉଁ ଗୁଣଗୁଡ଼ିକୁ ସିଧାସଳଖ ଅନୁଭବ କରିହୁଏ, ସେଇଗୁଡ଼ିକୁ ଭାଷାରେ ପ୍ରକାଶ କରୁଥିବା ସମାଲୋଚନା ହେଉଛି ଧାରଣାମୂଳକ ସମାଲୋଚନା। ବଚାରମୂଳକ ସମାଲୋଚନା କେବଳ ଏହି ଅନୁଭବକୁ

ପ୍ରକାଶ ନକରି କୃତିର ବିଷୟବସ୍ତୁ, ସଂଗଠନ, କଳାକୌଶଳ, ଶୈଳୀ ଏବଂ ଏହାର ପ୍ରଭାବକୁ ବିଶ୍ଳେଷଣ ଓ ବ୍ୟାଖ୍ୟା କରବାକୁ ଚେଷ୍ଟା କରେ ଏବଂ ସମାଲୋଚକର ବ୍ୟକ୍ତଗତ ସିଦ୍ଧାନ୍ତକୁ ସାହିତ୍ୟିକ ଉତ୍କର୍ଷର ସାଧାରଣ ମାନ ଉପରେ ପର୍ଯ୍ୟବେଶିତ କରିଥାଏ।

ପାରମ୍ପରିକ ସମାଲୋଚନା ତଥା ପ୍ରାୟୋଗିକ ସମାଲୋଚନାରେ ସାହିତ୍ୟର ବ୍ୟାଖ୍ୟା ଏବଂ ମୂଲ୍ୟାୟନ କରାଯିବା ସମୟରେ ମୁଖ୍ୟତଃ ମଣିଷ ଜୀବନ, ପାଠକ, ଲେଖକ କିମ୍ବା କୃତିକୁ ଏକ ସ୍ୱାଧୀନ ଏକକ ବା ସତ୍ତା ଭାବରେ ବିଚାର କରାଯାଏ। କେଉଁ ସ୍ୱାଧୀନ ସତ୍ତା ଉପରେ ପ୍ରାଧାନ୍ୟ ଦିଆଯାଇଛି, ତାହା ବିଚାରକୁ ନେଇ ସମାଲୋଚନାର ଏକ ଉପଯୋଗୀ ଶ୍ରେଣୀବିଭାଗ କରାଯାଇପାରେ।

୧. ଅନୁକରଣାତ୍ମକ ସମାଲୋଚନା : ଏହି ସମାଲୋଚନା ଏକ ସାହିତ୍ୟ କୃତିକୁ ବାହାର ଦୁନିଆ କିମ୍ବା ମଣିଷ ଜୀବନର ଏକ ଅନୁକରଣ, ପ୍ରତିଫଳନ ବା ପ୍ରତିରୂପ ଭାବରେ ଗ୍ରହଣ କରେ। ଏହାର ମୌଳିକ ମାନଦଣ୍ଡ ହେଉଛି - ସତ୍ୟନିଷ୍ଠତା। କୃତିରେ ଦୁନିଆ ବା ଜୀବନ ସଂପର୍କିତ ସତ୍ୟ କେତେ ମାତ୍ରାରେ ପ୍ରତିଫଳିତ ହୋଇଛି କିମ୍ବା ହେବା ଉଚିତ, ଏହି ସମାଲୋଚନା ତାହାର ବିଚାର କରେ। ଇଉରୋପରେ ଏହି ବିଚାରର ଉଦଗାତା ପ୍ଲେଟୋ। କିନ୍ତୁ ଆରିଷ୍ଟୋଟଲଙ୍କଦ୍ୱାରା ତାହା ବିକଶିତ ହୋଇଛି। ଆଧୁନିକ ସମାଲୋଚନା ତତ୍ତ୍ୱଗୁଡ଼ିକ ସେମାନଙ୍କ ବିଚାରଦ୍ୱାରା ପରିପୁଷ୍ଟ ହୋଇଛି।

୨. ବ୍ୟାବହାରିକ ସମାଲୋଚନା : ଏକ ସାହିତ୍ୟ କୃତି ପାଠକହୃଦୟର ରସାଗାରକୁ ଉଦ୍‌ଭାସିତ କରେ ଏବଂ ତାର ଜୀବନକୁ କରେ ଆନନ୍ଦବିଭୋର ଓ ଗତିଶୀଳ। ସାହିତ୍ୟର ତାହାହିଁ ଅଭିଧର୍ମ। ପ୍ରଥମ ଶତାବ୍ଦୀର ହୋରେସ Art of Poetry ଗ୍ରନ୍ଥରେ ଉପର୍ଯ୍ୟୁକ୍ତ ସିଦ୍ଧାନ୍ତ ସଂକ୍ରାନ୍ତରେ ଆଲୋକପାତ କରିଛନ୍ତି। ଏବଂ, ଏହି ଧାରା ଇଉରୋପରେ ଅଷ୍ଟାଦଶ ଶତାବ୍ଦୀ ପର୍ଯ୍ୟନ୍ତ ସାହିତ୍ୟ-ଆଲୋଚନା କ୍ଷେତ୍ରରେ ଆଧିପତ୍ୟ ବିସ୍ତାର କରିଛି। ଭାରତରେ ମଧ୍ୟ ଖ୍ରି: ପୂ: ତୃତୀୟ ଶତାବ୍ଦୀରେ ରଚିତ ଭରତମୁନିଙ୍କର **ନାଟ୍ୟଶାସ୍ତ୍ରଠାରୁ** ଆରମ୍ଭ କରି ଚତୁର୍ଦ୍ଦଶ ଶତାବ୍ଦୀର ବିଶ୍ୱନାଥ କବିରାଜଙ୍କର **ସାହିତ୍ୟ ଦର୍ପଣ** ପର୍ଯ୍ୟନ୍ତ ଏହି ଧାରାକୁ ପ୍ରତ୍ୟକ୍ଷ କରିହୁଏ। ଏହିଭଳି ସମାଲୋଚନା ପୁନର୍ଜାଗରଣ ହୋଇଛି ନିକଟ ଅତୀତରେ ଆଳଙ୍କାରିକ ସମାଲୋଚନା କ୍ଷେତ୍ରରେ। ଆଳଙ୍କାରିକ ସମାଲୋଚନା ଲେଖକର ଅଳଙ୍କାର ଓ କଳାଚାତୁରୀ ପ୍ରୟୋଗ ଉପରେ ପ୍ରାଧାନ୍ୟ ଦିଏ ଏବଂ ଆଲୋକିତ କରେ - ଲେଖକ କିପରି କଳାଚତୁରୀ ପ୍ରୟୋଗଦ୍ୱାରା କୃତିରେ ପ୍ରକାଶିତ ବିଷୟବସ୍ତୁ ପ୍ରତି ପାଠକୀୟ ପ୍ରତିକ୍ରିୟାକୁ କାର୍ଯ୍ୟରତ କରାଏ ଏବଂ ପାଠକକୁ ପ୍ରଭାବିତ କରେ। ଏହି ସମାଲୋଚନା ଧାରାକୁ ଉତ୍ତର ଆଧୁନିକ - ସଂରଚନାବାଦ କେତେକ ସଂକେତାବଳୀର ଏକ ରୀତିସଂଗତ ଖେଳ ବୋଲି କୁହେ। ଏବଂ, ଏହି ଖେଳ ପାଠକର ବ୍ୟାଖ୍ୟାତ୍ମକ ପ୍ରତିକ୍ରିୟା ଜାଗ୍ରତ କରିଥାଏ।

୩. ପ୍ରକାଶାତ୍ମକ ବା ଅଭିବ୍ୟକ୍ତିମୂଳକ ସମାଲୋଚନା : ଏହି ସମାଲୋଚନା ଏକ କୃତିକୁ ଏହାର ସ୍ରଷ୍ଟାଙ୍କ ଜୀବନ ସହିତ ସଂପର୍କିତ କରି ମୂଲ୍ୟାୟନ କରେ। ଏହି ସମାଲୋଚନା କବିତାର ସଂଜ୍ଞାଦେବାକୁ ଯାଇ କହିଛି ଯେ - କବିତା ହେଉଛି କବିର ଅନୁଭୂତିର ପ୍ଲାବନ ବା ଅଭିବ୍ୟକ୍ତିର ଉଚ୍ଚାରଣ ଅଥବା ତାର ଚିନ୍ତା, ଅନୁଭୂତି ଏବଂ ଉପଲବଧି

ସହିତ କାର୍ଯ୍ୟରତ କଳ୍ପନାର ପରିଣାମ। ଏହା କୃତିର ମୂଲ୍ୟାୟନ କରେ ଉପର୍ଯ୍ୟୁକ୍ତ ପଦାର୍ଥଗୁଡ଼ିକର ପ୍ରକାଶଜନିତ ସାଧୁତା ଅଥବା କବିର ମାନସିକ ଅବସ୍ଥା ବା ବ୍ୟକ୍ତିର ଦୃଷ୍ଟିକୋଣର ପର୍ଯ୍ୟାପ୍ତତାକୁ ନେଇ। ଏହା ବହୁ ସମୟରେ କୃତିରେ ସ୍ରଷ୍ଟାର ମନୋବୃତ୍ତି ଓ ଅନୁଭୂତିର ପ୍ରମାଣ ଖୋଜେ। କାରଣ ଏହା ବିଶ୍ୱାସ କରେ ଯେ, ଲେଖକ ଜ୍ଞାତ ବା ଅଜ୍ଞାତ ଭାବରେ କୃତି ଭିତରେ ନିଜକୁ ହିଁ ପ୍ରକାଶ କରିଥାଏ। ଊନବିଂଶ ଶତାବ୍ଦୀର ପ୍ରାରମ୍ଭରେ ରୋମାଣ୍ଟିକ୍ ସମାଲୋଚକମାନଙ୍କଦ୍ୱାରା ଏହି ସମାଲୋଚନାର ବିକାଶ । ଆଜି ମଧ୍ୟ ମନସ୍ତାତ୍ତ୍ୱିକ ଓ ମନୋବିଶ୍ଳେଷକ ସମାଲୋଚକ ଏବଂ ଚେତନାଧର୍ମୀ ସମାଲୋଚକମାନେ ଏହି ପଦ୍ଧତି ଉପରେ ଗୁରତ୍ୱ ଆରୋପ କରୁଛନ୍ତି।

୪. ପାଦାର୍ଥିକ ବା ବସ୍ତୁକେନ୍ଦ୍ରିକ ସମାଲୋଚନା : ଏହି ସମାଲୋଚନା ଲେଖକ, ପାଠକ କିମ୍ବା ସାମାଜିକ ପରିବେଶ ବିଷୟରେ ଅନାବଶ୍ୟକ ସୂଚନା ଦିଏନାହିଁ। ଏହା ସାହିତ୍ୟକୃତିକୁ ଏକ ସ୍ୱୟଂସଂପୂର୍ଣ୍ଣ, ସ୍ୱାବଲମ୍ବୀ ଏବଂ ସ୍ୱୟଂଶାସିତ ବସ୍ତୁଭାବରେ ଆଲୋଚନା କରେ। କୃତିର ଏକ ସ୍ୱାଧୀନ, ସ୍ୱୟଂଶାସିତ କ୍ଷୁଦ୍ର ଜଗତ ରହିଛି, ଯାହାକୁ ସମାଲୋଚକ କୃତିର ଜଟିଳତା, ସଂହତି, ଭାରସାମ୍ୟ, ସାଧୁତା ଏବଂ ଏହାର ଉପାଦାନଗୁଡିକ ମଧ୍ୟରେ ଥିବା ଆନ୍ତଃସଂପର୍କ ଭଳି ସ୍ୱକୀୟ ମାନଦଣ୍ଡଗୁଡ଼ିକଦ୍ୱାରା ମୂଲ୍ୟାୟନ କରିବ। ଏହି ଦୃଷ୍ଟିକୋଣ ୧୭୯୦ ମସିହାରେ କାଣ୍ଟଙ୍କର Critique of Aesthetic Judgment ରେ ପ୍ରକାଶିତ ହୋଇଛି। ଊନବିଂଶ ଶତାବ୍ଦୀରେ ଶେଷଭାଗରେ "କଳା ପାଇଁ କଳା" ତତ୍ତ୍ୱରେ ବିଶ୍ୱାସ କରୁଥିବା ବ୍ୟକ୍ତି ଏବଂ ପରେ କେତେକ ପ୍ରାୟୋଗିକ ସମାଲୋଚକ ଏବଂ ନୂତନ ସମାଲୋଚକ ଏହି ବିଚାରକୁ ଗ୍ରହଣ କରିଛନ୍ତି। ପ୍ରାୟ ୧୯୨୦ ରୁ ଆରମ୍ଭ କରି ୧୯୯୫ ମସିହା ପର୍ଯ୍ୟନ୍ତ ନୂତନ ସମାଲୋଚକ, ସିକାଗୋ ସ୍କୁଲ ସମାଲୋଚକ ଏବଂ ଇଉରୋପୀୟ ରୂପବାଦୀ ସମାଲୋଚକବୃନ୍ଦ ଆପଣା ବିଚାରରେ ଏହି ତତ୍ତ୍ୱକୁ ପ୍ରୟୋଗ କରିଛନ୍ତି।

(୫) ମୂଳପାଠ ସମାଲୋଚନା : - ଏହି ସମାଲୋଚନାର ଉଦ୍ଦେଶ୍ୟ ହେଉଚି, ଲେଖକ ଯାହା ପ୍ରକୃତରେ ଲେଖିଛନ୍ତି, ତାହାକୁ ଯଥାସମ୍ଭବ ନିର୍ଭୁଲ ରୂପେ ନିର୍ଣ୍ଣୟ କରିବା। ମୂଳପାଠ ସମାଲୋଚକମାନେ ଏକ କୃତିର ମୁଦ୍ରିତ ରୂପକୁ ଏହାର ପାଣ୍ଡୁଲିପି ସହିତ ତୁଳନା କରିଥାନ୍ତି। ମୁଦ୍ରିତ ରୂପରେ ହୋଇଥିବା ପରିବର୍ତ୍ତନଗୁଡ଼ିକୁ ଦର୍ଶାଇବା, କୃତିଟିର ବିଭିନ୍ନ ଅବସ୍ଥାରେ ଲେଖକ କରିଥିବା ପରିବର୍ତ୍ତନଗୁଡ଼ିକୁ ଦେଖିବା ଏବଂ ସେଥିରେ ଥିବା ପ୍ରମାଦଗୁଡ଼ିକର ନର୍ଭୁଲ ଉତ୍ସକୁ ଠାବ କରିବା ପାଇଁ ଶ୍ରଦ୍ଧଶୀଳ ଥା'ନ୍ତି। ଏହି ସମାଲୋଚକମାନେ ବହୁ ବ୍ୟକ୍ତିଙ୍କର ଟୀକା ସମନ୍ୱିତ ସଂସ୍କରଣକୁ ଲେଖକଙ୍କର ସର୍ବଶେଷ ସଂସ୍କରଣ ସହିତ ପୁନଃମୁଦ୍ରିତ କରିଥାଆନ୍ତି କୃତିର ପରିବର୍ତ୍ତିତ ଭିନ୍ନଭିନ୍ନ ରୂପଗୁଡ଼ିକୁ ଦର୍ଶାଇବା ପାଇଁ।

ଉପରଲିଖିତ ସମାଲୋଚନାଗୁଡ଼ିକ ବ୍ୟତୀତ ବହୁବିଧ ଆନ୍ତସମ୍ବନ୍ଧୀ ସାହିତ୍ୟ-ସମାଲୋଚନା ରହିଛି। ଏହି ସକଳ ସମାଲୋଚନା-ସାହିତ୍ୟ ସମାଲୋଚନାର ପରିସର ଭିତରକୁ ବିଭିନ୍ନ ବିଷୟର ଜ୍ଞାନ ଓ ତତ୍ତ୍ୱକୁ ସଂଚାଳିତ କରିଥାନ୍ତି। ଜ୍ଞାନ ଓ ତତ୍ତ୍ୱ କେଉଁ ପରିମାଣରେ ସାହିତ୍ୟକୃତିକୁ ପ୍ରଭାବତ କରିଛନ୍ତି ବା ନ କରିଛନ୍ତି, ସମାଲୋଚନାରୁ ତାହା ଜଣାପଡିଯାଏ।ଐତିହାସିକ ସମାଲୋଚନା, ଜୀବନମୂଳକ ସମାଲୋଚନା, ସମାଜଶାସ୍ତ୍ରୀୟ ସମାଲୋଚନା, ମନସ୍ତାତ୍ତ୍ୱିକ ସମାଲୋଚନା, ମନୋବିଶ୍ଳେଷଣାତ୍ମକ ସମାଲୋଚନା, ମୂଳରୂପ

ସମାଲୋଚନା ଏବଂ ପୁରାଣକଥା ସମାଲୋଚନା ଆନ୍ତଃସମ୍ବନ୍ଧୀ ସମାଲୋଚନାର ଉଦାହରଣ ଏବଂ ଏଗୁଡ଼ିକ ତାତ୍ତ୍ୱିକ ସମାଲୋଚନାର ଅନ୍ତର୍ଭୁକ୍ତ।

ଏଠାରେ ବହୁବିଧ ସମାଲୋଚନା ବିଚାରର ଅବତାରଣା କରିବାର ଉଦ୍ଦେଶ୍ୟ ହେଉଛି ଚିତ୍ତରଞ୍ଜନଙ୍କର ସମାଲୋଚନା ସାହିତ୍ୟର ଆଲୋଚନାପାଇଁ ପ୍ରସଙ୍ଗ ବା ପରିବେଶ ସୃଷ୍ଟି କରିବା। ଚିତ୍ତରଞ୍ଜନ ଆଇ.ଏ ରିଚାର୍ଡ଼ସ, ଏରିକ୍ ଅରବାକ, ନରଥ୍ରପ ଫ୍ରାଇ ଏବଂ ଡେରିଡାଙ୍କ ଭଳି ସମାଲୋଚନାତତ୍ତ୍ୱ ସଂପର୍କରେ ପୁସ୍ତକ ରଚନା କରିନାହାନ୍ତି କିମ୍ବା କ୍ଲିଆନ୍ଥ ବୃକସ ଏବଂ ଟି : ଏସ୍; ଏଲିଅଟଙ୍କ ଭଳି ପ୍ରାୟୋଗିକ ସମାଲୋଚନା ଧାରା ଉପରେ ଗ୍ରନ୍ଥ ପ୍ରଣୟନ କରିନାହାନ୍ତି। କିନ୍ତୁ ସେ ଭରଜିନିଆ ଉଲଫ, ଏଫ, ଆର୍, ଲିଭିସ, ଲାଓନେଲ୍ ଟ୍ରିଂଲିଂ ଭଳି ବହୁ ତାତ୍ତ୍ୱିକ ସମାଲୋଚନାମୂଳକ ପ୍ରବନ୍ଧ ରଚନା କରିଛନ୍ତି। ପ୍ରାୟୋଗିକ ସମାଲୋଚନାଧାରା ପ୍ରୟୋଗ କରି ପୁସ୍ତକ ଲେଖିଛନ୍ତି। ସାହିତ୍ୟ ଓ ...(୧୯୮୯), ଓଡ଼ିଆ ସାହିତ୍ୟର ସାଂସ୍କୃତିକ ବିକାଶଧାରା (୧୯୮୧), ଓଡ଼ିଆ ସାହିତ୍ୟର ଇତିହାସ (୧୯୯୩), ଅଚ୍ୟୁତାନନ୍ଦ ଓ ପଞ୍ଚସଖା-ଧର୍ମ(୧୯୫୧),ଓଡ଼ିଶାର ମହିମାଧର୍ମ(୧୯୫୨) ଗ୍ରନ୍ଥ ମଂଥନ(୧୯୯୬), ସନ୍ଥ (ଭକ୍ତି) ସାହିତ୍ୟ (୧୯୮୨), ଦେଖୁଁ ଦେଖୁଁ କେ ବା ସହୁ(୨୦୦୨) ଆଦି ପୁସ୍ତକ ଚିତ୍ତରଞ୍ଜନଙ୍କ ସମାଲୋଚକୀୟ ଅନ୍ତର୍ଦୃଷ୍ଟିର ଗୋଟିଏ ଗୋଟିଏ ଉଜ୍ଜ୍ୱଳ ଉଦାହରଣ।

ଚାରି

'ଓଡ଼ିଶାର ମହିମାଧର୍ମ' ପୁସ୍ତକର ପ୍ରଥମ ପରିଚ୍ଛେଦରେ ଚିତ୍ତରଞ୍ଜନ ପ୍ରଚଳିତ ସମାଲୋଚନା ପଦ୍ଧତି ବିଷୟରେ କିଛି ମତାମତ ଦେଇଛନ୍ତି। ସେଥିରୁ ତାଙ୍କ ସମାଲୋଚନା ପଦ୍ଧତି ବିଷୟରେ ଆମେ କିଛି ଆଭାସ ପାଉ। ସେ ଲେଖିଛନ୍ତି:

> ସମାଜ, ସାହିତ୍ୟ, ମନୋବିଜ୍ଞାନ ଓ ଧର୍ମ ମନୁଷ୍ୟର ଜୀବନ୍ତ ଜୀବନକ୍ଷେତ୍ର ସହିତ ଓତଃପ୍ରୋତ ଭାବେ ଜଡ଼ିତ। ସଚଳ ଓ ସ୍ୱାଧୀନ ମନଃକ୍ଷେତ୍ରରେ ଏହି ସବୁର ବିଚିତ୍ର ଅଭିବୃଦ୍ଧି ହୁଏ। ତେଣୁ ବସ୍ତୁ ଜଗତର ବନ୍ଧା ନିୟମ ଦେଇ ଆମେ ସେସବୁକୁ ଠିକ୍ ବୁଝିପାରିବା ନାହିଁ। କେବଳ ଜ୍ଞାନ, କେବଳ ସମୀକ୍ଷା, ପରୀକ୍ଷଣ ଓ ଅନ୍ୱୀକ୍ଷା (Observation,Experiment and inference) ବ୍ୟତୀତ ମାନବ ପ୍ରତିଭାର ଆହୁରି ଅନେକ ସାଧନ ରହିଛି, ଯାହାଦ୍ୱାରା ସେ ନାନା ବିଚିତ୍ର କ୍ଷେତ୍ରରେ ଆପଣାକୁ ପ୍ରକାଶିତ କରେ। ସେଠି ଜ୍ଞାନର ନିୟମ ଚାଳନା ଫଳ ଦେଇପାରେନାହିଁ। ପଦାର୍ଥବିଦ୍ୟା ଓ ରସାୟନବିଦ୍ୟା ପ୍ରଭୃତି ବିଶୁଦ୍ଧ ବସ୍ତୁବିଜ୍ଞାନର ଲବ୍ଧ ନିୟମଗୁଡ଼ିକୁ ଦେଇ ଜୀବନ୍ତ ପ୍ରକାଶର ପ୍ରତୀକ ସାହିତ୍ୟ ଓ ଧର୍ମର ବିଚାର କରାଯାଏ ପାରିବନାହିଁ। ଏସବୁକୁ ବୁଝିବାକୁ ହେଲେ ତାହାର ଆପଣା ପ୍ରକୃତି ଓ ଲକ୍ଷଣମାନ ପ୍ରଥମରୁ ସ୍ୱୀକାର କରିନେବାକୁ ପଡ଼ିବ। (ଦାସ ଚିତ୍ତରଞ୍ଜନ :୧୯୯୧,୪-୫)।

ଉପରଲିଖିତ ମତାମତରୁ ଜଣାପଡ଼େ ଯେ, ସାହିତ୍ୟ ଓ ଧର୍ମ ମନୁଷ୍ୟର ଜୀବନ ସହିତ ସଂପର୍କିତ। ସେଗୁଡ଼ିକ ଜୀବନ୍ତ ପ୍ରକାଶର ପ୍ରତୀକ। ବିଜ୍ଞାନର ନୀତି ନିୟମକୁ ପ୍ରୟୋଗ

କରି ଆମେ ତାକୁ ବୁଝିପାରିବା ନାହିଁ ଏବଂ ସେଗୁଡ଼ିକର ସ୍ୱକୀୟ ପ୍ରକୃତି ଓ ଲକ୍ଷଣକୁ ଆମେ ସର୍ବପ୍ରଥମେ ସ୍ୱୀକାର କରିବା। ଏହା ହେଉଛି ଇଉରୋପୀୟ ନୂତନ ସମାଲୋଚନାର ମୂଳତତ୍ତ୍ୱ। ସେ ପ୍ରଚଳିତ ମାର୍କସୀୟ ଓ ନୃତାତ୍ତ୍ୱିକ ସମାଲୋଚନାକୁ ନାପସନ୍ଦ କରି ଲେଖିଛନ୍ତି:

> ବିଜ୍ଞାନର ପ୍ରବଳ ପ୍ରାଦୁର୍ଭାବ ଫଳରେ ସାହିତ୍ୟକୁ କେବଳ ଅର୍ଥନୀତିର ନିର୍ଦ୍ଧାରିତ ପ୍ରକାଶ - ଭୂମି ବୋଲି କହିବା ସମ୍ଭବ ହୋଇଛି; ସ୍ନେହ, ପ୍ରେମ ଓ ସହାନୁଭୂତି ପ୍ରଭୃତି ଜୀବନର ସୂକ୍ଷ୍ମ ତ୍ୟାଗମୟୀ ବୃତ୍ତିଗୁଡ଼ିକୁ ଅବଚେତନ ସ୍ୱାର୍ଥ ପ୍ରବୃତ୍ତିର କୌଶଳ ବୋଲି କୁହାଯାଇଛି,ନୃତତ୍ତ୍ୱବିଦ୍ୟା (Anthropology) ନାମରେ ସଂସାରର ସହ ଜୀବନ୍ତ ଆଦିମ ମଣିଷଙ୍କୁ ଆପଣାର ଚିତ୍ତପ୍ରବୃତ୍ତ ଚରିତାର୍ଥ କରୁଥିବା ଯନ୍ତ୍ର ହିସାବରେ ବିଚାର କରାଯାଇଛି। ଧର୍ମର ଅନ୍ତର୍ନିହିତ ସ୍ୱଭାବକୁ ଅଜ୍ଞାତ ଅପ୍ରତିହତ ଭୟର ପ୍ରତିଚିତ୍ରିତ ରୂପ ବୋଲି ବ୍ୟାଖ୍ୟା କରାଯାଇଛି। ମସ୍ତିଷ୍କରୋଗର ନାନା ପ୍ରକାର ଲକ୍ଷଣ ଦେଇ ଯୀଶୁଖ୍ରୀଷ୍ଟ ପ୍ରଭୃତି ଧର୍ମଦ୍ରଷ୍ଟାମାନଙ୍କର ବିଚାର କରିବାର ଆସ୍ପର୍ଦ୍ଧା ମଧ୍ୟ ଅନେକ କରିଛନ୍ତି।(ତତ୍ରୈବ: ପୃ.୫)

ସାହିତ୍ୟ ଓ ଧର୍ମ ସମାଲୋଚନା କ୍ଷେତ୍ରରେ ବିଜ୍ଞାନର କାର୍ଯ୍ୟ-କାରଣବାଦ ଏବଂ ଶ୍ରେଣୀ ବିଭାଗକୁ ପ୍ରୟୋଗ ନ କରିବାପାଇଁ ସେ ଚାହିଁଛନ୍ତି। ତାଙ୍କ ମତରେ- ଶ୍ରେଣୀ ବିଭାଗ କେତୋଟି ମନଗଢ଼ା ଛାଞ୍ଚ, କେତେକ ସମାଲୋଚକ ଏହି ଛାଞ୍ଚ ସାହାଯ୍ୟରେ ସାହିତ୍ୟ ଓ ଧର୍ମରୁ ସେମାନେ ଚାହୁଁଥିବା ପଦାର୍ଥ ହିଁ ଖୋଜିଥାଆନ୍ତି। କାର୍ଯ୍ୟ - କାରଣବାଦର ଅର୍ଥ ହେଉଛି ଜଗତର ପ୍ରତ୍ୟେକ ଚିନ୍ତା, ପ୍ରତ୍ୟେକ ଧର୍ମଧାରା ଏବଂ ପ୍ରତ୍ୟେକ ସୃଷ୍ଟି କୌଣସି ନା କୌଣସି କାରଣରୁ ସମ୍ଭୂତ।ପୂର୍ବତନ ପରିବେଶର ସ୍ଥିତିରେ କେତେକ ପରିବର୍ତ୍ତନ (condition)ବା କାରଣ(cause)ସଂଘଟିତ ହେଲେ କାର୍ଯ୍ୟ (effect) ସମ୍ଭବ ହୁଏ। ଚିତ୍ତରଞ୍ଜନଙ୍କ ମତରେ ଏହି ଯୁକ୍ତି ବଶବର୍ତ୍ତୀ ହୋଇ ସବୁଠାରେ ସମାଲୋଚକମାନେ ଭୁଲ କରିଛନ୍ତି। ଗୋଟିଏ ଯୁଗର ଚିନ୍ତାବିପ୍ଳବକୁ ଏକ ସ୍ୱତନ୍ତ୍ର ଉଦ୍ଭିଦ ସହିତ ତୁଳନା କରି ସେ ଲେଖିଛନ୍ତି :

> ଯେ କୌଣସି ଯୁଗର ଚିନ୍ତା-ବିପ୍ଳବ ବିଦ୍ୟମାନ ପାରିପାର୍ଶ୍ୱିକତାକୁ ଠିକ୍ ମାଟି ପରି ବ୍ୟବହାର କରେ, ଆଗରୁ ଘଟିଯାଇଥିବା ସକଳ ବିପ୍ଳବରୁ ରସ ସଂଗ୍ରହ କରି ଆପଣା ବୀଜର ଅଙ୍କୁରୋଦଗମ କରାଏ। କିନ୍ତୁ ଏହି ନବୋଦ୍‌ଗତ ଉଦ୍ଭିଦର ସ୍ୱଭାବ ଅନ୍ୟରୂପ, ତାହାର ନିର୍ଦ୍ଦେଶ ଅନ୍ୟଦିଗକୁ। ତାହାର ଆପଣା ପ୍ରକୃତିଟିକୁ ନିର୍ମଳ ଭାବରେ ଚିହ୍ନିନେଇ ନ ପାରିଲେ ଆମେ ତାହା ସମ୍ବନ୍ଧରେ ସକଳ କଥା ଜାଣିପାରିବା ନାହିଁ। ଅନେକରୁ ସାର ଓ ଲକ୍ଷଣ ଗ୍ରହଣ କରି ଯୁଗବିଶେଷରେ ଯେଉଁ 'ଏକ' ର ଆବିର୍ଭାବ ହୁଏ, ତାହାର ଏକକ ପ୍ରକାଶଟିକୁ ଠଉରାଇ ନେଇ ପାରିଲେ ଯାଇ ଆମର ଅଧ୍ୟୟନ ସଂପୂର୍ଣ୍ଣ ହୋଇପାରିବ।(ତତ୍ରୈବ: ପୃ. ୭)

ଏଥିରୁ ଜଣାଯାଏ ଯେ, ସମାଲୋଚକ ସାମାଜିକ ପରିବେଶ ଉପରେ ପ୍ରାଧାନ୍ୟ ଦେବା ସଙ୍ଗେ ସଙ୍ଗେ କୌଣସି ଛାଞ୍ଚ ବା କାର୍ଯ୍ୟ-କାରଣ ବେଷ୍ଟନୀର ମୋହରେ ନ ପଡ଼ିବା

ପାଇଁ ପାଠକମାନଙ୍କୁ ଉପଦେଶ ଦେଇଛନ୍ତି। ଗୋଟିଏ ଚିନ୍ତାବିପ୍ଳବ ହେଉ ବା ଏକ ସାହିତ୍ୟ କୃତି ହେଉ, ତାହାର ଅନନ୍ୟ ଗୁଣ ଓ ପ୍ରକୃତିକୁ ଆମକୁ ଚିହ୍ନିବାକୁ ପଡ଼ିବ। କୌଣସି ନିର୍ଦ୍ଦିଷ୍ଟ ସମାଲୋଚନା ତତ୍ତ୍ୱର ନାମ ନ ନେଇଥିଲେ ମଧ୍ୟ ତାଙ୍କର ତାତ୍ତ୍ୱିକ ଦୃଷ୍ଟିକୋଣ ଯେ ସମାଜତାତ୍ତ୍ୱିକ ଏବଂ ପାଦାର୍ଥିକ ସମାଲୋଚନାର ପର୍ଯ୍ୟାୟଭୁକ୍ତ, ଏହା ସ୍ପଷ୍ଟ ହୋଇଯାଏ। 'ଅଚ୍ୟୁତାନନ୍ଦ ପଞ୍ଚସଖା-ଧର୍ମ' ପୁସ୍ତକ ଉପର୍ଯ୍ୟୁକ୍ତ ଆଦର୍ଶର ପ୍ରଥମ ଉଦାହରଣ।

ସେହି ପୁସ୍ତକର " ଦ୍ୱିତୀୟ ପୀଠି" ରେ ସେ ଲେଖିଛନ୍ତି " ଧର୍ମ ହେଉ, ଦର୍ଶନ ହେଉ ବା ସାହିତ୍ୟ ହେଉ, ପ୍ରତ୍ୟେକ ଶାସ୍ତ୍ରର ଏହି ଦିଗରେ ଗୋଟିଏ ବିଶେଷ ଏବଂ ପ୍ରଧାନ ଦାୟିତ୍ୱ ରହିଛି। ମଣିଷର ମନରେ ହିଁ ଯୁଗର ପ୍ରଥମ ଉଦ୍‌ଭାସ ହୁଏ। ତେଣୁ ମନର ଶ୍ରେଷ୍ଠ ପ୍ରସୂନ ଧର୍ମ, ଦର୍ଶନ,ବା ସାହିତ୍ୟ ଯେ ସମାଜର ରୂପ, ରସ ଓ ପ୍ରାଣର ଅଭିନବ କଳ୍ପନା କରିବାର ଭାର ଗ୍ରହଣ କରିବ, ଏଥିରେ ନିଶ୍ଚିତ ଦ୍ୱିରୁକ୍ତି ହେବ ନାହିଁ।" ( ଦାସ, ଚିତ୍ତରଞ୍ଜନ: ୧୯୯୭, ପୃ.୧୧୪)। ଦର୍ଶନ ବା ସାହିତ୍ୟ ସହିତ ସମାଜ ଓ ସଭ୍ୟତାର ଯେଉଁ ନିବିଡ଼ ସମ୍ପର୍କ ରହିଛି, ଆଧୁନିକ ସମାଲୋଚନା ତାହା ଭୁଲିଯାଇଛି ବୋଲି ସେ ସ୍ପଷ୍ଟତଃ ପ୍ରସଙ୍ଗକ୍ରମେ ଉଲ୍ଲେଖ କରିଛନ୍ତି।

ସମାଜତାତ୍ତ୍ୱିକ ସମାଲୋଚନା, ସାହିତ୍ୟକୃତି ଏବଂ ସାହିତ୍ୟିକ ବଞ୍ଚିଥିବା ସମୟର ସାମାଜିକ ଓ ସଂସ୍କୃତିକ ସ୍ଥିତି ମଧ୍ୟରେ ଥିବା ସଂପର୍କକୁ ବିଚାରକୁ ନିଏ। କାରଣ ଏହା ବିଶ୍ୱାସ କରେ ଯେ ସାହିତ୍ୟର ବିଷୟବସ୍ତୁ ଚୟନ, ଏହା ପ୍ରକାଶ କରୁଥିବା ଚିନ୍ତାଧାରା, ଏହା ଚିତ୍ରିତ କରୁଥିବା ଜୀବନ ଏବଂ ଏପରିକି ଏହାର ଗଠନ ଭଙ୍ଗୀ ସେହି ସେହି ଯୁଗର ସାମାଜିକ, ସାଂସ୍କୃତିକ, ରାଜନୀତିକ ଏବଂ ଆର୍ଥନୀତିକ ବ୍ୟବସ୍ଥା ଓ ଶକ୍ତିଦ୍ୱାରା ନିୟନ୍ତ୍ରିତ। ସାହିତ୍ୟ ଏ ସବୁଠାରୁ ଦୂରରେ ଥିବା ଚିରନ୍ତନ ମୂଲ୍ୟବୋଧ ଥିବା କଳାତ୍ମକ ଏବଂ ନାନ୍ଦନିକ ଦୁନିଆଁର ଅଧିବାସୀ ନୁହେଁ। ଏକ ସାହିତ୍ୟକୃତିର ସ୍ୱତନ୍ତ୍ର ସତ୍ତା ନଥାଏ। ଏହା ନିର୍ଦ୍ଧିଷ୍ଟ ଓ ଅପରିବର୍ତ୍ତନୀୟ ଅର୍ଥପ୍ରକାଶ କରେ ନାହିଁ। ଏଥିରେ ସମସ୍ତ ଦ୍ୱନ୍ଦ୍ୱର କଳାତ୍ମକ ମୀମାଂସା ହୁଏନାହିଁ। ବରଂ ଏଥିରେ ଭିନ୍ନ ଭିନ୍ନ ବିରୋଧାତ୍ମକ ସ୍ୱର ରହିଥାଏ। ଏହା ସୃଷ୍ଟିକାଳର କେବଳ ରକ୍ଷଣଶୀଳ ଶକ୍ତିଗୁଡ଼ିକୁ ପ୍ରକାଶ ନକରି ଏହି ଶକ୍ତିଗୁଡ଼ିକୁ ଦୁର୍ବଳ କରୁଥିବା ଅଥବା ଧ୍ୱଂସ କରିବାରେ ପ୍ରୟାସୀ ଥିବା ଶକ୍ତିଗୁଡ଼ିକୁ ମଧ୍ୟ ପ୍ରକାଶ କରେ।

ଷ୍ଟିଫେନ୍ ଗ୍ରୀନବ୍ଲାଟ ନିଜର ସମାଜତାତ୍ତ୍ୱିକ ସମାଲୋଚନାକୁ ସାଂସ୍କୃତିକ କାବ୍ୟତତ୍ତ୍ୱ (Cultural Poetics)ନାମରେ ନାମିତ କରିଛନ୍ତି। (Abrams M.H. ୧୯୯୩,p.୨୫୨)ଏହି ନାମଦ୍ୱାରା ସେ ସୂଚାଇ ଦେବାକୁ ଚାହାନ୍ତି ଯେ, ସାହିତ୍ୟ ଏବଂ କଳା ସାମାଜିକ-ସାଂସ୍କୃତିକ କ୍ରିୟାର ଅଂଶ ବିଶେଷ ଏବଂ ଏଗୁଡ଼ିକ ସାମାଜିକ ସାଂସ୍କୃତିକ ଚିନ୍ତାଧାରା ସହିତ ସମ୍ପର୍କିତ। ତାଙ୍କର ସମାଲୋଚନାର ଧାରା ହେଉଛି, ଏକ କୃତିର ଗଭୀର ଅଧ୍ୟୟନ କରି ସାହିତ୍ୟିକଙ୍କର ଆଳଙ୍କାରିକ ଚାତୁର୍ଯ୍ୟ ପଛରେ ଥିବା ଆଦର୍ଶ, ବିଶ୍ୱାସ ଓ କ୍ଷମତାର ଅଳିନ୍ଦଗୁଡ଼ିକୁ ଆବିଷ୍କାର କରିବା। ଚିତ୍ତରଞ୍ଜନଙ୍କ ମତରେ, ସମାଲୋଚକର କର୍ତ୍ତବ୍ୟ ହେଉଛି "ଇତିହାସ ବା ଘଟଣା ବର୍ଣ୍ଣନାର ଅଧିକ ଗଭୀରକୁ ଯାଇ ତାକୁ ବିଭିନ୍ନ ସାହିତ୍ୟରେ ନିହିତ ମନଃପ୍ରବୃତ୍ତିକୁ ଅନୁସନ୍ଧାନ କରିବାକୁ ହେବ। ଅସଲ ସମାଲୋଚନା କେବଳ ଇତିହାସ ନୁହେଁ, ଏହା ଅନ୍ତଃପ୍ରବେଶ। ଏହି ଅନ୍ତଃପ୍ରବେଶ ଲାଗି ସଂଖ୍ୟାଧିକ

ଘଟଣା ଯେତେ ଦରକାର ନାହିଁ, ତା'ଠାରୁ ବେଶି ଦରକାର ଯାବତୀୟ କ୍ଷେତ୍ରରେ ସେହି ଯୁଗର ବିଶେଷ ଦୃଷ୍ଟିଭଙ୍ଗୀ"। (ତତ୍ରୈବ:ପୃ. ୧୧୭)

ଚିତ୍ତରଞ୍ଜନ ପ୍ରାୟୋଗତ୍ମକ ସମାଲୋଚନା ଲେଖିଛନ୍ତି କେବଳ ଓଡ଼ିଶାର ପଞ୍ଚସଖା - ଧର୍ମ, ଓଡ଼ିଶାର ମହିମାଧର୍ମ,ସନ୍ଥ ସାହିତ୍ୟ ଏବଂ ମହିମାଧର୍ମର କବି ଭୀମଭୋଇଙ୍କୁ କେନ୍ଦ୍ରକରି। ଏ ସବୁଥିରେ ସେ ସମାଜତାତ୍ତ୍ୱିକ ସମାଲୋଚନାର ନୀତିନିୟମଗୁଡ଼ିକୁ ପ୍ରୟୋଗ କରିଛନ୍ତି।

> 'ଅଚ୍ୟୁତାନନ୍ଦ ଓ ପଞ୍ଚସଖା ଧର୍ମ" ପୁସ୍ତକରେ ସେ ଲେଖିଛନ୍ତି, "ଯେଉଁ ଯୁଗରେ ଅଚ୍ୟୁତାନନ୍ଦଙ୍କର ଜନ୍ମ, କେବଳ ସେହି ଯୁଗର ଭୂମିକା ଉପରେ ସେମାନଙ୍କର (ପଞ୍ଚସଖାଙ୍କର) ମାହାତ୍ମ୍ୟ ପରଖିବାକୁ ପଡ଼ିବ। ସେହି ଯୁଗର ଧର୍ମ, ସାହିତ୍ୟ ଓ ସାମାଜିକ ଚିନ୍ତାକୁ ସେମାନେ କିପରି ନୂତନ ବାଟରେ ଆଗେଇ ନେଇ ଯାଇଥିଲେ, କେବଳ ସେତିକି କଥାର ମର୍ମ ପାଇ ପାରିଲେ ହିଁ ସମାଲୋଚନାର ସଂପୂର୍ଣ୍ଣ ଉଦ୍ଦେଶ୍ୟ ସାର୍ଥକ ହେବ (ତତ୍ରୈବ :ପୃ.୧୨୦)। ତେବେ ସମାଜତାତ୍ତ୍ୱିକ ସମାଲୋଚନା ସହିତ ସେ ପ୍ରକାଶାତ୍ମକ ସମାଲୋଚନା ଧାରାକୁ ମଧ୍ୟ ଗ୍ରହଣ କରିଛନ୍ତି। ସେଇଥିପାଇଁ ସେ ଲେଖିଛନ୍ତି, "ତାଙ୍କର ସବୁଠାରୁ ଶ୍ରେଷ୍ଠ ଓ ପ୍ରାମାଣିକ ଗ୍ରନ୍ଥରେ ବା ଜୀବନର ସବୁଠାରୁ ପ୍ରସିଦ୍ଧ ମୁହୂର୍ତ୍ତମାନଙ୍କରେ ଅଚ୍ୟୁତାନନ୍ଦ ଯାହା ସବୁ ଲେଖିଯାଇଛନ୍ତି, ସେହି ହେଉଛି ତାଙ୍କୁ ବୁଝିବାର ଓ ତାଙ୍କର ଚିନ୍ତାଧାରାକୁ ଆପ୍ଣାର ବୋଲି ଚିହ୍ନିବାର ସିଧାରାସ୍ତା (ତତ୍ରୈବ:ପୃ. ୧୨୦)

'ଅଚ୍ୟୁତାନନ୍ଦ ଓ ପଞ୍ଚସଖା-ଧର୍ମ' ନାମରେ ନାମିତ ସମାଲୋଚନା ପୁସ୍ତକର ଆରମ୍ଭରେ ସେ ଲେଖିଛନ୍ତି - "ମଧ୍ୟଯୁଗ ଓ ତା ପୂର୍ବର ସମାଜରେ ସାହିତ୍ୟ, ସଂସ୍କୃତି ଓ ଲୋକଚାର କେବଳ ଧର୍ମର ମାଧମରେ ହିଁ ପ୍ରକାଶିତ ହୋଇଥିଲା। ସାହିତ୍ୟ ପାଇଁ ସାହିତ୍ୟ ବା କଳା ପାଇଁ କଳା, ଏପରି ଭାବନା ସେତେବେଳେ ମଣିଷର କଳ୍ପନା ବାହାରେ ଥିଲା।" ପଞ୍ଚସଖାଙ୍କର ଧର୍ମସାହିତ୍ୟର ଆଲୋଚନା ପାଇଁ ସେ ଏକ ନୀତିର କଥା କହିଛନ୍ତି: " କିନ୍ତୁ ଆଗକାଳର ଧର୍ମ ସାହିତ୍ୟ ଭିତରେ ହିଁ ଜାତିର ବହୁମୁଖୀ ଚେତନା-ସ୍ରୋତର ସନ୍ଧାନ କରାଯାଇ ପାରିବ, ଏହି ମୌଳିକ ନୀତିର ଭୂମି ଉପରେ ଆଲୋଚନା ଆରମ୍ଭ କଲେ ଆମେ ଉଚିତ ମୂଲ୍ୟଦେଇ ପଞ୍ଚସଖାଙ୍କୁ ବୁଝିବା ଲାଗି କ୍ଷମ ହୋଇପାରିବା"(ତତ୍ରୈବ: ପୃଷ୍ଠା ୨)।

ପଞ୍ଚସଖା ଧର୍ମର ଭିତ୍ତିଭୂମିର ଆଲୋଚନା ପ୍ରସଙ୍ଗରେ ସେ ସନାତନ ଧର୍ମର ମର୍ମ ଆବିଷ୍କାର ପ୍ରୟାସୀ ହୋଇଛନ୍ତି। ବୈଦିକ, ଶୈବ, ବୈଷ୍ଣବ,ବୌଦ୍ଧ ଓ ତାନ୍ତ୍ରିକ ମତବାଦର ଉର୍ବରକଦ୍ୱାରା ଚତୁର୍ଦ୍ଦଶ - ପଞ୍ଚଦଶ ଶତାବ୍ଦୀରେ ଓଡ଼ିଶାର ମାଟି ପାଗ ହୋଇଛି ବୋଲି ସେ ଅନୁଭବ କରିଛନ୍ତି। ସେତେବେଳକୁ ଓଡ଼ିଶାର ଧର୍ମପ୍ରତୀକ ହେଉଛନ୍ତି ଜଗନ୍ନାଥ। ଓଡ଼ିଶାରେ ବିଭିନ୍ନ ଧର୍ମର ନାନା ଘାତ-ପ୍ରତିଘାତଦ୍ୱାରା ଆବୃତ ଓ ପୁନରାବୃତ ହୋଇ ଓଡ଼ିଆ ମନୋଧାରାର ବଡ଼ଠାକୁର ରୂପେ ସେ ପୂଜା ପାଉଛନ୍ତି। ଧର୍ମର ଏହି ମିଳନ ପର୍ଯ୍ୟାୟରେ ପଞ୍ଚସଖାଙ୍କର ଆବିର୍ଭାବ। ସମସ୍ତ ପଞ୍ଚସଖା ପୁରୀକୁ ଆସିଥିଲେ ଏବଂ ଜଗନ୍ନାଥଙ୍କୁ ଆପଣାର ପ୍ରଭୁ ବୋଲି

ଗ୍ରହଣ କରିଥିଲେ। ସେତେବେଳେ ପୁରୀତୀର୍ଥରେ ଯାବତୀୟ ଧର୍ମଶାଖାର ଆଲୋଚନା ହେଉଥିଲା। ତେଣୁ ଆପଣାର ନିଜସ୍ୱ ଧର୍ମର ବିତରଣ ପୂର୍ବରୁ ସେମାନେ ସବୁଧର୍ମର ପରିଚୟରେ ଆସିଥିଲେ ଏବଂ ନାନାଧର୍ମର ନାନା ଆଚାରକୁ ସ୍ୱୀକାର କରିନେଇଥିଲେ। ସମାଲୋଚକଙ୍କ ମତରେ,"ନାନା ଶାଖାର ସୁଖସଙ୍ଗମରେ ସେମାନଙ୍କର ଆପଣା ଧର୍ମ ଆହୁରି ରୂପବନ୍ତ ହୋଇଉଠିଲା"। (ତତ୍ରୈବ: ପୃଷ୍ଠା ୪୯) ପଞ୍ଚସଖା ଧର୍ମର ବୈଶିଷ୍ଟ୍ୟ ବିଷୟରେ ଆଲୋଚନା କରିବାକୁ ଯାଇ ଚିତ୍ତରଞ୍ଜନ ସେହି ସମୟରେ ପ୍ରଚଳିତ ଅଦ୍ୱୈତବାଦ, ଶୂନ୍ୟ ନିରଞ୍ଜନ କଳ୍ପନା ଏବଂ ଯନ୍ତ୍ର, ମନ୍ତ୍ର ଓ ଯୋଗର ତାନ୍ତ୍ରିକ ଗନ୍ଧ ପଞ୍ଚସଖା ଧର୍ମ ଭିତରେ ଆବିଷ୍କାର କରିଛନ୍ତି। ସେ ମତପ୍ରକାଶ କରିଛନ୍ତି ଯେ, " ଧର୍ମର କୌଣସି ମାର୍କାଦିଆ ବାପାମାଆ ନାହାନ୍ତି। ସବୁ ଫୁଲର ଗନ୍ଧକୁ ବହନ କରି ଆଣୁଥିବା ପବନ ପରି ଏହା ସମସ୍ତ ଜାତିର ପ୍ରାଣରୂପଟି ପ୍ରକାଶ କରିଦିଏ। ନାନା ବୈଚିତ୍ର୍ୟ ମିଳାଇ ସେ ତଥାପି ଆପଣାର ବୈଶିଷ୍ଟ୍ୟ ବଜାୟ ରଖେ।" (ତତ୍ରୈବ: ପୃଷ୍ଠା. ୫୧)।

ସେ ଉପର୍ଯ୍ୟୁକ୍ତ ବିଚାରର ସୂତ୍ର ଧରି ପଞ୍ଚସଖା ଧର୍ମର ସ୍ୱଭାବ ଚିହ୍ନିବାକୁ ଚେଷ୍ଟା କରିଛନ୍ତି। ସାହିତ୍ୟରେ ବର୍ଣ୍ଣିତ ସୃଷ୍ଟିତତ୍ତ୍ୱ, ନାମବିଚାର, ସଗୁଣ ଓ ନିର୍ଗୁଣ ଭେଦ ଏବଂ ମନ୍ତ୍ର, ଯନ୍ତ୍ର ଓ ଯୋଗ ସାଧନା ପ୍ରଭୃତି ବିଭିନ୍ନ ଦିଗର ସମୀକ୍ଷଣ କରି ସେମାନଙ୍କର ଭୂମିକା ଖୋଜିଛନ୍ତି। ତାଙ୍କ ମତରେ, ପଞ୍ଚସଖା କୌଣସି ନୂତନ ସୃଷ୍ଟିତତ୍ତ୍ୱ ସୃଷ୍ଟି କରିନାହାନ୍ତି। କିନ୍ତୁ ପୁରୁଣା ସୂତ୍ରକୁ ଆପଣାର ନୂଆ ଭାବବ୍ୟଞ୍ଜନାରେ ପୁଷ୍ଟକରି ସେମାନେ ନିଜସ୍ୱ ଦୃଷ୍ଟିଭଙ୍ଗୀକୁ ସ୍ପଷ୍ଟ କରି ଦେଖାଇ ଯାଇଛନ୍ତି। ସେମାନଙ୍କର ସମସ୍ତ କଳ୍ପନା ଓ ମତବାଦକୁ ଇତିହାସ ଓ ଐତିହ୍ୟର ପଟ ଉପରେ (ପରୀକ୍ଷା କରି ତା'ର ମିଳନ ଓ ସ୍ୱାତନ୍ତ୍ର୍ୟ) ଉଭୟ ସୂତ୍ର ଖୋଜି ବାହାର କରିବାକୁ ଚେଷ୍ଟା କରିଛନ୍ତି।

ପଞ୍ଚସଖାଧର୍ମର ଆଲୋଚନା ବେଳେ ସେ ସେମାନଙ୍କର କୃତିରୁ ପଦ୍ୟାଂଶ ଉଦ୍ଧାର କରି ଯୁକ୍ତି ଓ ପ୍ରମାଣ ଉପସ୍ଥାପିତ କରିଛନ୍ତି। ସୃଷ୍ଟିତତ୍ତ୍ୱ ପ୍ରୟୋଗରେ ସେମାନଙ୍କର ମତାମତ ହେଉଛି, ସୃଷ୍ଟି ବାରମ୍ବାର ପାପଗ୍ରସ୍ତ ହୋଇ ପରିପୂର୍ଣ୍ଣ ହେବାରୁ ଏବଂ ଈଶ୍ୱରଙ୍କ କରୁଣା ହେତୁ ଜଗତର ସୃଷ୍ଟିହୁଏ। ଅଚ୍ୟୁତାନନ୍ଦ କିପରି ଏହି ପାପ ବା ଅପୂର୍ଣ୍ଣତାକୁ ସୃଷ୍ଟିବିକାଶ ବା ନିତ୍ୟନୂତନତ୍ତ୍ୱର ଅବିଚ୍ଛେଦ୍ୟ କାରଣ ରୂପେ ଗ୍ରହଣ କରିଛନ୍ତି, ତାର ପ୍ରମାଣ ଦେବାକୁ ଯାଇ ସେ କୈବର୍ତ୍ତଗୀତାରୁ ପଂକ୍ତି ଉଦ୍ଧାର କରିଛନ୍ତି।

ନଷ୍ଟ ଭ୍ରମ କର୍ମ ଯେବେ ସଂସାରେ ନୁହନ୍ତା
କାହା ଘେନି ବ୍ରହ୍ମା ଆଉ ସୃଷ୍ଟି ସରଜନ୍ତା୯।

ଭଗବତ୍ କରୁଣା କିପରି ବ୍ରହ୍ମଙ୍କୁ ସୃଷ୍ଟି ଆଡ଼କୁ ସଞ୍ଚାଳିତ କରିଥିଲା, ସେ ବିଷୟରେ ଲେଖିବାକୁ ଯାଇ, ଚିତ୍ତରଞ୍ଜନ ଉଭୟ ବଳରାମ ଦାସଙ୍କ 'ବ୍ରହ୍ମାଣ୍ଡଭୁଗୋଳ' ଏବଂ ଅଚ୍ୟୁତାନନ୍ଦଙ୍କର'ଛୟାଳିଶପଟଳରୁ' ଉଦ୍ଧୃତିମାନ ଆଣିଛନ୍ତି।

ଏମନ୍ତେ କୋଟିକଳ୍ପ ଅନ୍ତେ। ଦୟା ଉପୁଜିଲା ମୋ ଚିତ୍ତେ।।
ସୃଷ୍ଟି କରଣେ ବାଞ୍ଛା ହେଲା। ମୋ ଅଙ୍ଗୁ ବିନ୍ଦୁ ଉଛୁଳିଲା।।
(ବ୍ରହ୍ମାଣ୍ଡ ଭୁଗୋଳ: ପ୍ରଥମ ଅଧ୍ୟାୟ)

ସେ କାଳେ ସର୍ବ ଶୂନ୍ୟମୟ ଥିଲା। ସେ ଶୂନ୍ୟବ୍ରହ୍ମେ ସମସ୍ତ ଲୁଚିଲା।

ସୃଷ୍ଟି ସର୍ଜନାରେ କହିଲେ ଯହୁଁ। କାରୁଣ୍ୟ ଜଳ ଉପୁଜିଲା ତହୁଁ।
ମନରୁ କଲ୍ୟାଣ ଉଦୟ ହୋଇ। ଶବ୍ଦ ସ୍ୱରୂପେ ସେ ଜଳେ ପଦ।।
(ଛୟାଳିଶ ପଟଳ: ଚତୁର୍ଥ କଲେ)

ପଞ୍ଚସଖାଙ୍କ ସାହିତ୍ୟରେ ବର୍ଣ୍ଣିତ ପିଣ୍ଡ ଓ ବ୍ରହ୍ମାଣ୍ଡ ମଧ୍ୟରେ ଥିବା ସଂପର୍କ, ମନ୍ତ୍ର, ଯନ୍ତ୍ର ଓ ଯୋଗ ବିଷୟକ ମତାମତ ବିଶ୍ଳେଷଣ କାଳରେ ଚିତ୍ତରଞ୍ଜନ ସେମାନଙ୍କର ସ୍ୱକୀୟ ଦୃଷ୍ଟିଭଙ୍ଗୀକୁ ଗଭୀର ଭାବରେ ଅନୁଶୀଳନ କରିଛନ୍ତି। ଏଠାରେ ଆମେ ଇଉରୋପୀୟ ନୂତନ ସାମାଲୋଚନା (New Criticism)ର ଗୋଟିଏ ଧାରାର ପ୍ରୟୋଗ ଦେଖୁ। ଏହା ହେଉଛି ଏକ କୃତିରେ ଥିବା ଜଟିଳତା, ଅସ୍ପଷ୍ଟତା ଏବଂ ଅନେକାର୍ଥତାର ସୂକ୍ଷ୍ମ ଏବଂ ସବିଶେଷ ବିଶ୍ଳେଷଣ। ପଞ୍ଚସଖାମାନଙ୍କର ବିଭିନ୍ନ କୃତିର ବିଶ୍ଳେଷଣ କରି ସେମାନଙ୍କର ବିଶେଷତ୍ୱକୁ ସେ ଆବିଷ୍କାର କରିଛନ୍ତି ;

"ପଞ୍ଚସଖାଙ୍କର ବିଶେଷତ୍ୱ ଏଇଠି ପ୍ରଚଳିତ ସବୁପ୍ରକାର ସାଧନାକୁ ସେମାନେ ନିର୍ବିକାର ଭାବରେ ସ୍ୱୀକାର କରି ନେଇଛନ୍ତି। କିନ୍ତୁ ଆପଣା ସାଧ୍ୟବସ୍ତୁର ଧାରା ଉପରେ ସମସ୍ତ ସାଧନାକୁ ପର୍ଯ୍ୟବସିତ କରି ସେମାନେ ସାଧନାର ଆୟତନକୁ ଅତିକ୍ରମ କରି ଯାଇଛନ୍ତି। ସେମାନଙ୍କର ସାଧନା ତତ୍ତ୍ୱମୂଳ, ସେମାନଙ୍କର ରୂପୋପାସନା ଯୋଗ କେବଳ ନକାରାତ୍ମକ ଚିତ୍ତବୃତ୍ତି ନିରୋଧ ନୁହେଁ, ଏହା ଯଥାର୍ଥରେ ପରଂବ୍ରହ୍ମରେ ଯୁକ୍ତହେବାର ମହାସୁଖ ସ୍ଥିତି (ତତ୍ରୈବ: ପୃଷ୍ଠା.୯୩)। 'ଅଚ୍ୟୁତାନନ୍ଦ ଓ ପଞ୍ଚସଖା ଧର୍ମ' ପୁସ୍ତକରେ ଅଚ୍ୟୁତାନନ୍ଦ କିମ୍ବା ଅନ୍ୟ ସଖାମାନଙ୍କର କୃତିର ଶୈଳୀ ସଂପର୍କରେ ସେ ଅବଶ୍ୟ ସବିଶେଷ ଆଲୋଚନା କରିନାହାନ୍ତି। ସେମାନଙ୍କର ଭାଷା ସଂପର୍କରେ ସଂକ୍ଷିପ୍ତ ସୂଚନା ଦେଇଛନ୍ତି। ଏ ସଂପର୍କରେ ସେ ଲେଖିଛନ୍ତି:

> ଭାଷା ହେଉଛି ଜାତିମନର ବାହନ। ପ୍ରକାଶ ମାଧ୍ୟମର ଉପଲକ୍ଷ୍ୟ ହେଲେ ମଧ୍ୟ ଏହି ଭାଷା ଉପରେ ଜାତିର କୃଷ୍ଟିଗତ ଜୀବନ ଅନେକ ପରିମାଣରେ ନିର୍ଭର କରେ। ବିଭିନ୍ନ ଜାତିକୁ ସାହିତ୍ୟର ପ୍ରାଣମୂଳ କେନ୍ଦ୍ର ଅନୁସାରେ ତା'ର ଭାଷାକୁ ରୂପ ଦେବାକୁ ହିଁ ପଡ଼ିବ। ଇଂଲଣ୍ଡର ଇଲିଅଟୀ ... ଶାବ୍ଦିକ କୋଷରୁ ଶବ୍ଦ ଉଦ୍ଧାର କରିଆଣି ଓଡ଼ିଶାର ପଲ୍ଲୀବଧୂକୁ ବର୍ଣ୍ଣନା କରି ବସିଲେ ହୁଏତ ଜାତି କବିଙ୍କୁ କ୍ଷମା କରିପାରେ, କିନ୍ତୁ ତାହାଦ୍ୱାରା ସାହିତ୍ୟ, ବିଶେଷତଃ ଜାତୀୟ ସାହିତ୍ୟର କୌଣସି ସମୃଦ୍ଧି ହୋଇ ପାରିବ ନାହିଁ (ତତ୍ରୈବ: ପୃଷ୍ଠା: ୧୦୭)।

ଚିତ୍ତରଞ୍ଜନ ଶୈଳୀବିଜ୍ଞାନୀଙ୍କ ପରି କୌଣସି ସାହିତ୍ୟକୃତିର ଭାଷା ବିଶ୍ଳେଷଣ କରିନାହାନ୍ତି। ତାଙ୍କ ଭାଷାକୈନ୍ଦ୍ରିକ ବିଚାର ପ୍ରଧାନତଃ ସମାଜତାତ୍ତ୍ୱିକ। ପଞ୍ଚସଖା ଧର୍ମ ତାଙ୍କର ଆଲୋଚ୍ୟ ବିଷୟ ହୋଇଥିବାରୁ ସମ୍ଭବତଃ ସେମାନଙ୍କ ଲେଖାର ଭାଷାପ୍ରତି ସେ ଏହି ଦୃଷ୍ଟିଭଙ୍ଗୀ ବ୍ୟକ୍ତ କରିଛନ୍ତି। ସମାଜବିଜ୍ଞାନୀର ଆଖିନେଇ ସେ ଲେଖିଛନ୍ତି – "ବୈଦିକ ଯୁଗର ଗୌତମବୁଦ୍ଧ, ଦକ୍ଷିଣ ଭାରତର ରାମାନନ୍ଦ ଓ ସନ୍ଥ ସାଧକମାନଙ୍କର ବିଦ୍ରୋହୀ ଆନ୍ଦୋଳନ ପରି ପଞ୍ଚସଖାଙ୍କର ଭାଷାଭୂମିକୁ ଓଡ଼ିଶାର ଜୀବନଗଠନ କ୍ଷେତ୍ରରେ ଏକ ବିଦ୍ରୋହ ହିସାବରେ ସ୍ୱୀକାର କରିବାକୁ ହେବ। କାରଣ ସେମାନେ ସଂସ୍କୃତିକୁ ଛାଡ଼ି ସୁଗମ୍ୟ ଓ ସରଳ ଭାଷାଦ୍ୱାରା ଧର୍ମର ସୁନିଗୂଢ଼ ତତ୍ତ୍ୱଗୁଡ଼ିକୁ ପ୍ରଚାର କରି ଧର୍ମକୁ ବଞ୍ଚାଇ ରଖିବାର

ଚେଷ୍ଟା କରିଥିଲେ।

ପଞ୍ଚସଖା ଧର୍ମରେ ଜାତି ଭେଦର ସ୍ଥାନ ନଥିଲା। ଜାତି ବିଭାଗ ସଂସାରର ସୃଷ୍ଟି। କିନ୍ତୁ ମୂଳତଃ ସମସ୍ତେ ପରମପୁରୁଷଙ୍କର କଳାଘେନି ଜନ୍ମଲାଭ କରିଥାଆନ୍ତି। ସେହି କଥାର ପ୍ରମାଣ ଦେବାକୁ ଯାଇ ସମାଲୋଚକ ଅଚ୍ୟୁତାନନ୍ଦଙ୍କ କବିତାରୁ ପଂକ୍ତି ଉଦ୍ଧାର କରିଛନ୍ତି।

ସମସ୍ତେ ଯେ ଏକ ଜାତି ଜ୍ଞାନବଳେ ହେଜ
ସଂସାର ଚଳିବାପାଇଁ କରିଛି ବାଣିଜ୍ୟ।(କୈବର୍ତ୍ତ ଗୀତା)

ସମାଲୋଚକଙ୍କ ମତରେ, ସମାଜର ଛୋଟ ଜାତିମାନଙ୍କୁ ବଡ଼କରି ଦେଖାଇବା ଏବଂ ଆପଣା ଗ୍ରନ୍ଥମାନଙ୍କରେ ସେହିମାନଙ୍କର ଜୀବନ ବର୍ଣ୍ଣନା କରିବା ପଞ୍ଚସଖାଙ୍କ ଜାତି ସାମ୍ୟ-ଭାବର ଚମତ୍କାର ଦୃଷ୍ଟାନ୍ତ। ବ୍ରହ୍ମଣ୍ୟଧର୍ମର ରୀତି ଓ ଉପଚାର ବିରୋଧରେ ଭକ୍ତିସାଧନାର ଯେଉଁ ଗଣଜାଗରଣ ଢେଉ ଆସିଥିଲା, ତାହାରି ଫଳରେ ନୀଚ ଜାତିମାନେ ମଧ୍ୟ ବ୍ରାହ୍ମଣପରି ଆପଣାକୁ ପ୍ରସିଦ୍ଧ ଓ ପବିତ୍ର ଜ୍ଞାନ କରିଥିଲେ। ଏହି ପବିତ୍ରତାବୋଧରୁ ଅଚ୍ୟୁତାନନ୍ଦଙ୍କର 'ଗୋପାଳଙ୍କ ଓଗାଳ' ଓ 'କୈବର୍ତ୍ତଗୀତା'ର ସୃଷ୍ଟି। କୈବର୍ତ୍ତ ଜାତିର ପୂଜା, ପାର୍ବଣ ଓ ଦେବତାମାନଙ୍କୁ ଭଗବତ ବ୍ୟଞ୍ଜନା ଦେଇ ସେମାନଙ୍କ ମଧ୍ୟରେ ଆତ୍ମବୋଧ ଜାଗ୍ରତକରିବା ତାଙ୍କର ଉଦ୍ଦେଶ୍ୟ। ନାନା ପୁରାଣ ଓ ରୂପକଥାର ଆଶ୍ରୟ ନେଇ ସମାଜର ଛୋଟଜାତିଙ୍କୁ ବଡ଼ର ସମାନ ସଂପର୍କ ଓ ଆସନକୁ ଆଣିବା ହେଉଛି **କୈବର୍ତ୍ତଗୀତା** ପ୍ରଭୃତି ଗ୍ରନ୍ଥଲେଖାର ମୂଳକଥା।

ସମାଲୋଚକଙ୍କର ' ଓଡ଼ିଶାରେ ମହିମାଧର୍ମ' ପୁସ୍ତକ ତାଙ୍କର ଗବେଷଣାଲବ୍ଧ ସମାଲୋଚନା। ପୁସ୍ତକର ପରିଚ୍ଛେଦଗୁଡ଼ିକ ଏକ ଗବେଷଣା ନିବନ୍ଧର ଅଧ୍ୟାୟ ବିଭାଜନ ଭଳି - ଯଥା : ୧. "ମହିମାଧର୍ମର ଇତିହାସ", ୨. "ମହିମାଧର୍ମର ସମୀକ୍ଷା", ୩. "ମହିମାଧର୍ମର ସ୍ୱକୀୟ ପ୍ରକୃତି", ୪. "ଓଡ଼ିଶାର ଧର୍ମ ଧାରାରେ ମହିମାଧର୍ମ", ୫. "ଉପସଂହାର।" ଲେଖକ ସାମାଜିକ ଭୂମି ଉପରେଏହି ଧର୍ମର ବିଚାର କରିଛନ୍ତି। ସେ ଲେଖିଛନ୍ତି;

> ଆମ ଦେଶରେ ଧର୍ମ ବା ଜ୍ଞାନର ଏକ ସାମାଜିକ ଦାୟିତ୍ୱ ସବୁକାଳରେ ଥିଲା। ସେ ଲେଖିଛନ୍ତି - ଭାରତୀୟ ବିଦ୍ୟାର ଆଖିରେ ଆମେ ସମସ୍ତେ ପ୍ରାପ୍ତି ପଥରେ ପଥିକ। ସମାଜକୁ ଏ ଦେଶର ମନୀଷୀମାନେ ଚିରଦିନ ଗୋଟିଏ ଆଧ୍ୟାତ୍ମିକ ସହଯୋଗ ତନ୍ତ୍ର (Spritual Common Wealth) ରୂପରେ ଦେଖି ଆସିଛନ୍ତି। ମୋକ୍ଷ ବା ଉପଲବଧି ହିଁ ସବୁ ଶାସ୍ତ୍ରର ଚରମ ଉଦ୍ଦେଶ୍ୟ। ସେହି ମୋକ୍ଷମାର୍ଗରେ ପହୁଣ୍ଚେ ଯାଏ ଆଲୋକ ଦେଖାଇଦେବା ହେଉଛି ଜ୍ଞାନଚର୍ଚ୍ଚାର ପ୍ରଧାନ ଧ୍ୟେୟ ( ଦାସ, ଚିତ୍ତରଞ୍ଜନ ୧୯୯୧, ପୃ:୨୦)।

ପୁନଶ୍ଚ ସେ ଲେଖିଛନ୍ତି -

> ବୈଦିକ ଶାସ୍ତ୍ରର ବ୍ରାହ୍ମଣ ଓ ଆରଣ୍ୟକ ଗ୍ରନ୍ଥମାନଙ୍କ ଉପରେ ଆଖି ପକାଇଲେ ଉପରଲିଖିତ କଥା ପରିଷ୍କାର ହୋଇଯାଏ। ନାନା କାରଣରୁ ଆମର ଶାସ୍ତ୍ରଚର୍ଚ୍ଚା ବା ଅଧ୍ୟୟନ ତା'ର ସାମାଜିକ କର୍ତ୍ତବ୍ୟରୁ ବିଚ୍ୟୁତ ହୋଇଛି। ସମାଜର ଉପରି ଭାଗରେ ରହି ଜାତି ହୁଏତ ଆପଣାକୁ ଅବଗୁଣ୍ଠିତା ପ୍ରାସାଦବଧୂ କରି

ରଖିବାକୁ ଅଧିକ ପସନ୍ଦ କରୁଛି। ଧର୍ମର ସାମାଜିକ ବା ସାଧନାମୂଳକ ଦାୟିତ୍ୱ ବୁଝିବାକୁ ତା'ର ବେଳନାହିଁ।

ଆମ ଦେଶରେ ନିଗୂଢ଼ ଧର୍ମକଥା ବୁଝିବାର ନିଜସ୍ୱ ପଦ୍ଧତି ଥିଲା। ବେଦର ବ୍ୟାଖ୍ୟା କରିବା ଲାଗି ସଂହିତାରେ ଯେଉଁ ପଦ୍ଧତିର ଅବତାରଣା କରାଯାଇଛି, ତାହାର ନାମ ଆଧ୍ୟାତ୍ମିକ ବା ଆଧ୍ୟାତ୍ମବିଦ ପଦ୍ଧତି। ଧର୍ମର ବାଖ୍ୟାର୍ଥଠାରୁ ତାହାର ତତ୍ତ୍ୱାର୍ଥହିଁ ବେଶି ମହତ୍ୱପୂର୍ଣ୍ଣ। ତେଣୁ ଧର୍ମଶାସ୍ତ୍ରକୁ ବୁଝିବାବେଳେ ଏହି ତତ୍ତ୍ୱାର୍ଥ ବା ଆଧ୍ୟାତ୍ମିକ ଅର୍ଥକୁ ଆପଣା ଧ୍ୟାନରେ ରଖିବାକୁ ହେବ" (ତତ୍ରୈବ:ପୃ.୧)।

ଏହା ଏକ ଆଧ୍ୟାତ୍ମିକ ପଦ୍ଧତି। ଏହି ପଦ୍ଧତିକୁ ପ୍ରୟୋଗ କରିବା ପାଇଁ ସେ ଉପଦେଶ ଦେଇଛନ୍ତି: " ପ୍ରତ୍ୟେକ ଧର୍ମ, ଏପରିକି ପ୍ରତ୍ୟେକ ବୋଧ ବା ଜ୍ଞାନ ବିଷୟକ ସାମଗ୍ରୀର ଆଲୋଚନା କଲାବେଳେ ଆମକୁ ଏହି ଆଧ୍ୟାତ୍ମିକ ପଦ୍ଧତି ଗ୍ରହଣ କରିବାକୁ ପଡ଼ିବ" (ତତ୍ରୈବ:୨)। ପୁଣି ସେ କହିଛନ୍ତି, ଯେଉଁ ବିଦ୍ୟା ଯେତିକି ଦୂର ପର୍ଯ୍ୟନ୍ତ ବୋଧଯୋଗ୍ୟତା ଆବଶ୍ୟକ କରେ, ଆମେ ଆପଣାର ବୋଧଶକ୍ତିକୁ ସେତିକି ଦୂର ପ୍ରସାରିତ ନ କଲେ ବିଦ୍ୟାର୍ଣ୍ଣବର ରତ୍ନମୟ ତଳକୁ ସ୍ପର୍ଶ କରିପାରିବା ନାହିଁ।(ତତ୍ରୈବ: ପୃଷ୍ଠ:୨୨)।

ଚିତ୍ତରଞ୍ଜନ ସେହି ଆଧ୍ୟାତ୍ମିକ ପଦ୍ଧତିଟି ହିଁ ଗ୍ରହଣ କରିଛନ୍ତି – ମହିମାଧର୍ମକୁ ବୁଝିବା ଓ ବୁଝେଇବାପାଇଁ। ଭୀମ ଭୋଇ 'ବ୍ରହ୍ମନିରୂପଣଗୀତା' ରେ ଦେଇଥିବା ମହାନିତ୍ୟଭୁବନର ବର୍ଣ୍ଣନାକୁ କବିଦୃଷ୍ଟିର ବର୍ଣ୍ଣନା ବୋଲି କହି ସେଥିରୁ ସେ ତତ୍ତ୍ୱାର୍ଥକୁ ବୁଝିବା ପାଇଁ କହିଛନ୍ତି। ଭୀମଭୋଇଙ୍କ ବର୍ଣ୍ଣନାରେ ମହାନିତ୍ୟଭୁବନରେ ଷୋଳଲକ୍ଷ ପରମେଶ୍ୱରଙ୍କ ଲାଗି ଘର ତିଆରି ହୋଇଛି। ଷୋଳଲକ୍ଷ ଜୀବ ସେମାନଙ୍କର ସେବାରେ ନିଯୁକ୍ତ ରହିଛନ୍ତି। ପଶ୍ଚିମ ଦୁଆରେ ଏକୋଇଶ ଲକ୍ଷ ଅନନ୍ତ ଘରକରି ରହିଛନ୍ତି। ପଶ୍ଚିମ ଦୁଆରେ ଜଗନ୍ନାଥ ରହିଛନ୍ତି। ପୂର୍ବଦ୍ୱାରରେ ଚବିଶ ଲକ୍ଷ ରାଧାକୃଷ୍ଣ ଅଛନ୍ତି। ସମାଲୋଚକଙ୍କ ମତରେ, ଏସବୁ ଲେଖିବା ପଛରେ ଏକ ତତ୍ତ୍ୱ ରହିଛି। ମହିମାଧର୍ମ ପରମସତ୍ତା ବା ଅଲେଖ ପ୍ରଭୁଙ୍କର କଳ୍ପନାରେ ପୂର୍ବକଳ୍ପିତ ସମସ୍ତ ଅବତାର ବିଲୀନ ହୋଇଯାଇଛନ୍ତି। ଅଲେଖ ବା ନିରଞ୍ଜନଙ୍କୁ ସର୍ବୋଚ୍ଚ ସିଂହାସନରେ ବସାଇ କବି ଭୀମଭୋଇ ଅନ୍ୟ ଦେବତାମାନଙ୍କୁ ଯେ ତାଙ୍କର ଚରଣତଳେ ଖଟାଇଛନ୍ତି, ତତ୍ତ୍ୱତଃ ତାହା ଏହାହିଁ ପ୍ରମାଣିତ କରେ, ସେଠାରେ ଦ୍ୱୈତଭାବରେ କୌଣସି ସ୍ଥାନ ବା ଅବକାଶ ନାହିଁ (ତତ୍ରୈବ: ପୃ.୧୩୧)।

ମହିମାଧର୍ମର ସମାଜତାତ୍ତ୍ୱିକ ଅଧ୍ୟୟନ କରି ସେ ଲେଖିଛନ୍ତି ଯେ, ଜଗନ୍ନାଥଙ୍କୁ ମେରୁ କରି ଓଡ଼ିଶାର ଯାବତୀୟ ଧର୍ମ ପ୍ରତିଷ୍ଠିତ ହୋଇଆସିଛି। ଯୋଗ, ତନ୍ତ୍ର,ବୈଷ୍ଣବ, ବୌଦ୍ଧ-ସବୁ ଶାଖାର ସାଧକ ଜଗନ୍ନାଥଙ୍କୁ ଇଷ୍ଟଦେବତା ଭାବେ ଗ୍ରହଣ କରିଛନ୍ତି। ପଞ୍ଚସଖା ତାଙ୍କରି ଆଜ୍ଞାରେ ଆପଣାର ନୂତନ ଧର୍ମ ପ୍ରବର୍ତ୍ତନ କରିଛନ୍ତି। ଅଥଚ ମହିମାଧର୍ମ ଆରମ୍ଭ ହୋଇଛି ଜଗନ୍ନାଥ ଧର୍ମର ମୂଳୋତ୍ପାଟନ କରି। ସକଳ ପାଣ୍ଡିତ୍ୟ, ସକଳ ଧର୍ମର ପୁଣ୍ୟପୀଠ ଜଗନ୍ନାଥଧାମର କୌଣସି ମହତ୍ତ୍ୱ ମହିମାଧର୍ମରେ ନାହିଁ। ଏହାର ସାମାଜିକ କାରଣ ନିର୍ଣ୍ଣୟ କରିବାକୁ ଯାଇ ସେ ଲେଖିଛନ୍ତି ଯେ, ଓଡ଼ିଶାର ଦୁର୍ବଳ ଶାସନ, ପ୍ରଦେଶର ସକଳ ପ୍ରକାର ଧର୍ମ ଓ ଧର୍ମସାଧନକୁ ଅଭୟ ଦେଇପାରିଲେ ନାହିଁ। ତେଣୁ କାଳକ୍ରମେ ଜଗନ୍ନାଥ ଅନୁଷ୍ଠାନ ଓଡ଼ିଶାର ସାଧକସମ୍ପ୍ରଦାୟର ଆସ୍ଥା ହରାଇ ବସିଲା। ପଞ୍ଚସଖାଙ୍କ ପରେ ବିଭିନ୍ନ ମାର୍ଗର

ସନ୍ଥମାନେ ପୁରୀଠାରୁ ବହୁଦୂରରେ ଅରଣ୍ୟ ପର୍ବତରେ ଆଶ୍ରୟ ନେଲେ।ସେହି ନିରୋଳା ସ୍ଥାନରୁ ସେମାନେ ଜଗନ୍ନାଥ କ୍ଷେତ୍ରରେ ହେଉଥିବା ଅଧର୍ମମାନ ଲକ୍ଷ୍ୟ କରିବାରେ ଲାଗିଲେ। କାଳକାଳର ସ୍ୱୀକୃତ ଦେବତା ଜଗନ୍ନାଥଙ୍କଠାରୁ ସେମାନଙ୍କର ଅନୁରକ୍ତି କ୍ରମେ କ୍ରମେ ତୁଟିଗଲା। ସେମାନଙ୍କର ଦୃଷ୍ଟିରେ ଜଗନ୍ନାଥ କ୍ଷେତ୍ର କେବଳ ଭ୍ରଷ୍ଟଧର୍ମ ଓ ବାହ୍ୟାଚାରର ପ୍ରତିନିଧିତ୍ୱ କରିବାକୁ ଆରମ୍ଭ କଲା। ରାଜା ଓ ବ୍ରାହ୍ମଣ ସହିତ ଜଗନ୍ନାଥ ମଧ୍ୟ ଓଡ଼ିଶାର ସନ୍ଥସାଧନାର ଶତ୍ରୁ ହୋଇଗଲେ। ବିଶେଷତଃ, ଯେତେବେଳେ ସନ୍ତଧର୍ମର ତାତ୍ତ୍ୱିକଦୃଷ୍ଟି କ୍ରମେ ପ୍ରଧାନ ହୋଇ ପଡ଼ିଲା, ସେତେବେଳେ ସେମାନେ ଜଗନ୍ନାଥଙ୍କୁ କେବଳ ଠୁଳ କଳ୍ପନା ବୋଲି ଆଗ୍ରହ୍ୟ ଧରିନେଲେ।

ପ୍ରଚଳିତ ଧର୍ମରେ ଯେତେପ୍ରକାର ଆଚାର ରହିଥିଲା, ମହିମାଧର୍ମୀମାନେ ସେ ସକଳର ବିରୋଧରେ ପ୍ରତିବାଦ କଲେ। ସେମାନେ ଯୋଗ, ତନ୍ତ୍ର,ମନ୍ତ୍ର ଓ କୀର୍ତ୍ତନକୁ ପରିତ୍ୟାଗ କଲେ। ସ୍ୱକୀୟ ଧର୍ମକଳ୍ପନାରୁ ସମସ୍ତ ଦେବଦେବୀଙ୍କୁ ବାଦ୍ ଦେଲେ। ଭକ୍ତିଧର୍ମର ପ୍ରଚାର କଲେ। ଏହା ଜାତିଭେଦ ସ୍ୱୀକାର କଲାନାହିଁ। ସଂସାରର ସବୁ ମନୁଷ୍ୟ ପରଂବ୍ରହ୍ମରୁ ଜାତ, ସମସ୍ତେ ତାଙ୍କରି ସନ୍ତାନ ବୋଲି ପ୍ରଚାର କଲା। ସମସ୍ତେ ଆପଣା ମାର୍ଗରେ ଥାଆନ୍ତୁ, ଅଥଚ ଚରମତତ୍ତ୍ୱ ପରଂବ୍ରହ୍ମ ଉପରେ ଆପଣାର ଦୃଷ୍ଟି ନିବଦ୍ଧ କରି ରଖନ୍ତୁ, ଏହି କଥା ବାରମ୍ବାର ଉପଦେଶ ଦେବା ଫଳରେ ସମାଜର ଏହି ଧର୍ମର ଅଭିବୃଦ୍ଧି ହେଲା ଏବଂ ସମାଜର ଅଭ୍ୟୁଦୟ ମଧ୍ୟ ହେଲା।

ମହିମାଧର୍ମର ସାମାଜିକ ପ୍ରତିବଦ୍ଧତା ବିଷୟରେ ସମାଲୋଚକ ଲେଖିଛନ୍ତି ଯେ ‘ମହିମାଧର୍ମର ମାର୍ଗ ମୁଖ୍ୟତଃ ସମାଜମୁଖୀ’ (ତତ୍ରୈବ: ପୃ.୨୯୫)। ମନୁଷ୍ୟର ବାସ୍ତବିକ ସାମାଜିକ ଜୀବନ କ୍ଷେତ୍ରକୁ ପରମାର୍ଥ ସତ୍ୟାଲୋକଦ୍ୱାରା ପରିଶୁଦ୍ଧ ଓ ପରିମାର୍ଜିତ କରିବା ଏହାର ଲକ୍ଷ୍ୟ। ଇହଜଗତର ସକଳ ବୈଷମ୍ୟପୂରଣ ଏହାର ଧର୍ମ ସାଧନାର ଅନ୍ତର୍ଭୁକ୍ତ। ଜଗତର ମଙ୍ଗଳ ଏହାର ଚରମ ଉଦ୍ଦେଶ୍ୟ। ଜଗତର ଦୁର୍ଦ୍ଦିନରେ ଏହାକୁ ରକ୍ଷା କରିବା ପାଇଁ ଭୀମଭୋଇ ଭଗବାନଙ୍କୁ ଜଣାଇଛନ୍ତି:

ଧରଣୀ ଧରି ସମ୍ଭାଳି ସୁସ୍ଥ କର ନୋହିଲେ ଭାସିଲା ନିଶ୍ଚେ।।
ବୁଡ଼ିଲା ସଂସାର ଜଣାଇଲା ନାହିଁ ନ ବୋଲିବ ମୋତେ ପଛେ।।

(ସ୍ତୁତିଚିନ୍ତାମଣି; ୪୩ଶ ବୋଲି)

ଭଗବାନଙ୍କ ପ୍ରତି ସମର୍ପିତ ଅବିଚଳିତ ଅନୁରାଗ ଧରଣୀ ପ୍ରତି ମଙ୍ଗଳ ଦୃଷ୍ଟି ଆପଣାକୁ ଚରିତାର୍ଥ କରିଛି। ସେହି ଅନୁରାଗ ଭୀମଭୋଇଙ୍କୁ ସମାଜ ସହିତ ଏକତ୍ୱ ସୂତ୍ରରେ ଆବଦ୍ଧ କରି ରଖିଛି।

ଜଗତର ମଙ୍ଗଳପାଇଁ ମହିମାଧର୍ମରେ ସନ୍ୟାସ ପନ୍ଥାର ପ୍ରବର୍ତ୍ତନ । ଆପଣାର ସମସ୍ତ କାମନା-ବାସନାର ଉପଶମ କରି ସଂସାର କଲ୍ୟାଣ ଲାଗି ସନ୍ନ୍ୟାସ ଗ୍ରହଣ କରିବାକୁ ହୁଏ,ସଂସାର ଲାଗି ପର୍ଯ୍ୟଟନ କରିବାକୁ ହୁଏ, ସଂସାର ଲାଗି ପ୍ରଭୁଙ୍କ ପାଖରେ ଆବେଦନ କରିବାକୁ ହୁଏ। ‘ଜଗତର ପ୍ରାଣୀମାନଙ୍କୁ ସର୍ବଦା ଅନ୍ନପ୍ରାପ୍ତ ହେଉ, ଜଗତରେ ଅନ୍ନର ଭଣ୍ଡାର ପୂର୍ଣ୍ଣ ହୋଇ ରହିଥାଉ’ – ଭିକ୍ଷାଶେଷରେ ମହିମାଧର୍ମ ସନ୍ନ୍ୟାସୀମାନଙ୍କର ଏହିପରି

ମଙ୍ଗଳବାଞ୍ଛା କରିବାର ବିଧି ରହିଛି। ଅଗ୍ନିରେ ଘୃତାହୂତି ଦେବାର ଯେଉଁ ବିଧି ମହିମାଧର୍ମରେ ରହିଛି, ତାହା ମଧ୍ୟ କେବଳ ପ୍ରାଣୀମାନଙ୍କର ମଙ୍ଗଳ ନିମିତ୍ତ। ଏହି ସବୁ ଦୃଷ୍ଟାନ୍ତ ଦେଇ ସମାଲୋଚକ ପ୍ରମାଣ କରିଛନ୍ତି ଯେ, ମହିମାଧର୍ମ ମୁଖ୍ୟତଃ ସମାଜମୁଖୀ। ମହିମାଧର୍ମ, ମହିମା ଗୋସାଇଁ ଓ ଭୀମଭୋଇଙ୍କ ସଂପର୍କରେ ଆଲୋଚନା କାଳରେ ସେ ଅବଶ୍ୟ ସମଗ୍ର ବିଶ୍ୱର ସମାଜ ପରିବର୍ତ୍ତନର ମୂଳରେ ସକ୍ରିୟ ଧର୍ମୀୟ ବିଚାରର ଚର୍ଚ୍ଚା କରିଛନ୍ତି। ମାତ୍ର କେଉଁ ବିଶେଷ କାରଣଗୁଡ଼ିକ ଯୋଗୁ ସମକାଳୀନ ଓଡ଼ିଶାର ସମ୍ଭ୍ରାନ୍ତମାନେ ମହିମାବିମୁଖ ଅଥବା ଅଜ୍ଞ ହୋଇଛନ୍ତି, ତତ୍‌ସଂପର୍କରେ ସେ ସବିଶେଷ ଚର୍ଚ୍ଚା କରିନାହାନ୍ତି। ଆଲୋଚନାରେ ତଥ୍ୟଗତ ପ୍ରମାଦ ମଧ୍ୟ ରହିଛି। ଏବଂ, ଏହାର କାରଣ ମହିମା ଗୋଷ୍ଠୀର ଅନ୍ୟତମ ସଂସ୍କୃତାୟିତ ମହନ୍ତ ଶ୍ରୀ ବିଶ୍ୱନାଥ ବାବାଙ୍କ ପ୍ରଦତ୍ତ ତଥ୍ୟ ଉପରେ ଅଧିକ ନିର୍ଭରଶୀଳତା। ମାତ୍ର ମହିମାଧର୍ମକୈନ୍ଦ୍ରିକ ଅନ୍ୟ ଏକ ପୁସ୍ତକ *ଦେଖୁ ଦେଖୁ କେବା ସହୁ'*(୨୦୦୨) ରେ ସେ ଅବଶ୍ୟ ଗାଦି, ଗଦିୟାନ ଓ ସେମାନଙ୍କ ଅନୁଚରବର୍ଗ ଧର୍ମବୃକ୍ଷର ଅକାଳ ମରଣରେ କିପରି କାରଣ ହୁଅନ୍ତି ତାହାର ଐତିହାସିକ ଓ ସମାଜତାତ୍ତ୍ୱିକ ବ୍ୟାଖ୍ୟା କରିଛନ୍ତି। ଇତି ମଧ୍ୟରେ ମହିମାଧର୍ମ ଗ୍ରନ୍ଥର ଦ୍ୱିତୀୟ ମୁଦ୍ରଣ ପ୍ରକାଶ ପାଇଛି, ମାତ୍ର ପୁନଃସମାର୍ଜିତ ହୋଇନାହିଁ। ଫଳତଃ, ପ୍ରଥମ ମୁଦ୍ରଣରେ ସ୍ଥାନିତ ତଥ୍ୟଗତ ପ୍ରମାଦ ସୁରକ୍ଷିତ ରହିଛି।

'ସନ୍ଥ ( ଭକ୍ତ) ସାହିତ୍ୟ'ରେ ସନ୍ତମାନଙ୍କର କାବ୍ୟାଦର୍ଶ ବିଷୟରେ ଆଲୋଚନା କରିବାକୁ ଯାଇ ଚିତ୍ତରଞ୍ଜନ ଲେଖିଛନ୍ତି:

> ସନ୍ଥମାନଙ୍କର କାବ୍ୟାଦର୍ଶ ସେମାନଙ୍କର ଜୀବନର ଆଦର୍ଶଠାରୁ ଆଦୌ ଭିନ୍ନ ନଥିଲା। ଯାବତୀୟ କାବ୍ୟବାସନାକୁ ସେମାନେ ସେମାନଙ୍କ ଜୀବନର ଶ୍ରେୟଃବାସନା ଅର୍ଥାତ୍ ଭଗବତବାସନାର ଅଙ୍ଗରୂପେ ରଙ୍ଗାଇ ନେଇଥିଲେ ଓ ଦେଶଭିମୁଖୀ କରି ରଖିଥିଲେ। ଆପଣାର କାବ୍ୟ ମାଧ୍ୟମରେ ସେମାନେ ଆପଣା ଅନ୍ତଃଯାତ୍ରାର ବିବରଣୀ ବଖାଣୁଥିଲେ, ଯେଉଁମାନେ ବାହ୍ୟାଚାରକୁ ଅତି ପ୍ରଧାନ କରି ନିଜ ଜୀବନର ଯାବତୀୟ ଅନ୍ତଃଯାତ୍ରାକୁ ଅତ୍ୟନ୍ତ ମୋହଯୁକ୍ତ ଏବଂ ବ୍ୟାହତ କରି ରଖୁଥିଲେ, ସନ୍ଥମାନେ ସେମାନଙ୍କ ସେହି ପ୍ରବୃତ୍ତିଟିର ସମାଲୋଚନା କରୁଥିଲେ। ସେମାନଙ୍କର ଅନ୍ତର୍ଗତ ଅନୁଭୂତି ପରି ସେମାନଙ୍କର ଭାଷା ମଧ୍ୟ ସହଜ ଓ ସରଳ ଥିଲା। ସେମାନଙ୍କର ଶୈଳୀ ସହଜ ଏବଂ ସଳଖ ଥିଲା, ଜାଣିଶୁଣି କୌଣସି ପ୍ରକାର ଆଳଙ୍କାରିତାର ଗହଳ ଦ୍ୱାରା ସେମାନେ ସ୍ୱାନୁଭୂତ ବକ୍ତବ୍ୟଟିକୁ ଅନ୍ତରାଳ କରି ରଖିବାର ଆଦୌ କୌଣସି ପ୍ରଚେଷ୍ଟା ବା ଶ୍ରମ କରୁନଥିଲେ, XXX କାବ୍ୟ ଯେତେଦୂର ପର୍ଯ୍ୟନ୍ତ ବ୍ରହ୍ମସ୍ମରଣରେ ତଥା ବ୍ରହ୍ମାନୁଭବରେ ସହାୟତ କରିପାରିବ, ସନ୍ତମାନେ ସେତିକି ଦୂର ପର୍ଯ୍ୟନ୍ତ ହିଁ କାବ୍ୟର ମହତ୍ତ୍ୱକୁ ସ୍ୱୀକାର କରିଛନ୍ତି (ଦାସ, ଚିତ୍ତରଞ୍ଜନ:୧୯୮୨, ପୃ.୧୩୬)।

ପୁଣି ସେ ଲେଖିଛନ୍ତି –

ସନ୍ଥ ଯେଉଁ ସାହିତ୍ୟ ଲେଖେ, ତାହା ସଂସାରପାଇଁ ଲେଖେ। ସନ୍ଥମାନେ ସମଗ୍ର ସଂସାରର ଉଦୟ ଇଚ୍ଛା କରୁଥାନ୍ତି ବୋଲି ସଂସାର ଆଗରେ ଆପଣାର ଉଦୟ କାହାଣୀକୁ କହିବା ଲାଗି ଅନୁରାଗ ରଖିଥାନ୍ତି। ତାଙ୍କ ମତରେ " ପୃଥିବୀସାରା ସଚରାଚର ସନ୍ଥ ସାହିତ୍ୟ ହେଉଛି ମୂଳତଃ ଏହି ଉଦୟ କାହାଣୀର ସାହିତ୍ୟ। ସନ୍ଥମାନେ ଯାହା ଲେଖନ୍ତି, ସଂସାରକୁ ଶ୍ରଦ୍ଧା କରୁଥାନ୍ତି ବୋଲି ଲେଖନ୍ତି, ସଂସାରର ଯାବତୀୟ ବର୍ତ୍ତମାନ ଭିତରେ ତା' ଭବିଷ୍ୟତର ମହତ୍ତମ ସମ୍ଭାବନାକୁ ଦେଖିବାର ସମର୍ଥ ହୋଇଥାନ୍ତି ବୋଲି ସନ୍ଥମାନେ ସାହିତ୍ୟ ଲେଖନ୍ତି। (ତତ୍ରୈବ: ପୃ . ୩୫୫)

ଓଡ଼ିଆ ସାହିତ୍ୟରେ ପଞ୍ଚସଖାଙ୍କର ଭୂମିକା ନିରୂପଣ କରିବାକୁ ଯାଇ ସେ ସେହି ସାହିତ୍ୟର ଇତିହାସ ପରିବର୍ତ୍ତେ ସେଥିରେ ଥିବା ସଂସ୍କୃତିର ସୂତ୍ରଗୁଡ଼ିକୁ ଖୋଜିଛନ୍ତି। ସମକାଳରେ ଭାରତବର୍ଷରେ ଅନ୍ୟ କୌଣସି ଏକତା ପ୍ରତିଷ୍ଠିତ ହୋଇ ନ ଥିଲେ ମଧ୍ୟ ଆଧ୍ୟାତ୍ମିକ ଏକତା ରହିଥିଲା। ଭାରତବର୍ଷର ସନ୍ତମାନେ ସେହି ଏକତାକୁ ଜୀବନ୍ତ ଓ ସଚଳ ଭାବରେ ଅନୁଭୂତ କରାଇବାରେ ସବୁଠାରୁ ଅଧିକ ସାହାଯ୍ୟ କରିଥିଲେ। ପଣ୍ଡିତମାନେ କୁକ୍ଷିଗତ କରି ରଖିଥିବା ଶାସ୍ତ୍ରଧନଗୁଡ଼ିକୁ ସେହିମାନେ ହିଁ ଲୋକଙ୍କର ଭାଷାରେ ଅଧିକରୁ ଅଧିକ ଲୋକଙ୍କୁ ସମ୍ମୁଖକୁ ଆଣିବାରେ ସବୁଠାରୁ ଅଧିକ କାର୍ଯ୍ୟ କରିଛନ୍ତି। ଭାରତବର୍ଷର ଧର୍ମ ଓ ସଂସ୍କୃତିକୁ ଲୋକଜୀବନର ନିକଟବର୍ତ୍ତୀ କରାଇ ରଖିଛନ୍ତି।

ଚିତ୍ତରଞ୍ଜନଙ୍କ ମତରେ - ସାନ ଓ ବଡ଼ ନାନା ପୋଥିର ଆକାରରେ ପଞ୍ଚସଖା ଯେଉଁ ସାହିତ୍ୟ ଲେଖି ଯାଇଛନ୍ତି, ତାହା ବୃହତ୍ତର ଭାରତୀୟ ସାହିତ୍ୟ ଓ ଭାବର ପରମ୍ପରାକୁ ସମ୍ଭବତଃ ଓଡ଼ିଶାର ସର୍ବଶ୍ରେଷ୍ଠ ଅବଦାନ। ସେଥିରେ ତଥାକଥିତ ରୀତି ଓ ମାଧୁର୍ଯ୍ୟ ନଥାଇପାରେ; କିନ୍ତୁ ସେହି ସାହିତ୍ୟରେ " ମଣିଷର କଥାଗୁଡ଼ିକ ସବୁଠାରୁ ଅଧିକ ପରିମାଣରେ ଏବଂ ଅଧିକ ଅକୃତ୍ରିମ ତଥା ନିରଭିମାନ ଭାବରେ କୁହାଯାଇ ପାରିଥିଲା"(ତତ୍ରୈବ: ପୃ. ୪୬୪)। 'ଭାଷାର ଲାଳିତ୍ୟ, ମଧୁରତ୍ୱ ଓ ସହଜତ୍ୱ ଏବଂ ସର୍ବୋପରି ଭାବାଧିଗାମିତ୍ୱ' - ସେ ଦେଖିଛନ୍ତି ଅଚ୍ୟୁତାନନ୍ଦଙ୍କର 'ବରଣଚରିତଗୀତା'ରେ। ତାହାର ପ୍ରମାଣ ଦେବାକୁ ଯାଇ ସେଥିରୁ କେତୋଟି ଧାଡ଼ି ସେ ଉଦ୍ଧାର କରିଛନ୍ତି

ନିଚଳ ପଥର ପ୍ରାଏ ହୋଇଥିବ ଥର
ନୀନଖିନ ହୋଇଥିବ ଭଗତି ଭାବର।
ପୂରିଲା କୁମ୍ଭର ପ୍ରାଏ ମନ କରି ଥିର
ବୁଡ଼ି ରହିଥିବ ତୁମ୍ଭେ ଏ ଭବସାଗର।
କଳିକାକୁ କଳ୍ମଷ ନ ଲାଗେ ଯେହ୍ନେ ଅଙ୍ଗ,
କାଇଞ୍ଚ ଯେସନ ଭୂମିଭାଗରୁ ବିଲଗ।
କଣ୍ଟକରୁ କେତକୀ ବା ବିଲବଣେ ରହି,
ହରି ଆଶ୍ରେ କଲା ଜନ ତେମତଟି କହି।

ଏହି ଧାଡ଼ିଗୁଡ଼ିକ ଉପରେ ସେ ନିମ୍ନଲିଖିତ ମତ ପ୍ରଦାନ କରିଛନ୍ତି:

" ଭାବକୁ ଏକ ନିଜସ୍ୱ ଆତ୍ମୀୟତାରେ ପରିଣତ କରିପାରିଲେ ଭାଷାକୁ ଅଧିଗମି ପାରିବାର ଯେଉଁ ସହଜ ଶକ୍ତି ହୃଦୟକୁ ସାମର୍ଥ୍ୟଯୁକ୍ତ କରେ, ଏହି ଧାଡ଼ିଗୁଡ଼ିକ ଆମକୁ ସେହି ଶକ୍ତିର ପରିଚୟ ଦେଇଯିବା ପରି ମନେହୁଏ" (ତତ୍ରୈବ: ପୃ. ୪୭୪)। ସମାଲୋଚକ ଏଠାରେ କୃତିର ସୌନ୍ଦର୍ଯ୍ୟ କିମ୍ବା ଶିକ୍ଷାପ୍ରଦାନ ଦିଗ କଥା କହିନାହାନ୍ତି। ତାଙ୍କର ସମାଲୋଚନା ପାଦାର୍ଥିକ କିମ୍ବା ବ୍ୟାବହାରିକ ପରିବର୍ତ୍ତେ ପ୍ରକାଶାତ୍ମକ ହୋଇଛି।

ଜଣେ ସମାଜତାତ୍ତ୍ୱିକ ସମାଲୋଚକ ଭାବରେ ସେ ପଞ୍ଚସଖା ସାହିତ୍ୟରେ ସାମାଜିକ ବିପ୍ଳବର ସ୍ୱର ଶୁଣିଛନ୍ତି। ପଞ୍ଚସଖାମାନେ ମଣିଷ ଭିତରେ ନୀଚବଡ଼, ଉଚ୍ଚନୀଚ ଭେଦଭାବ ମାନିନାହାନ୍ତି। ସେମାନେ ବିଶ୍ୱାସ କରିଛନ୍ତି ଯେ, ପରଂବ୍ରହ୍ମ ପରମସତ୍ୟ। ସବୁରି ପିଣ୍ଡରେ ସେ ସମ୍ଭାବନା ରୂପେ ପ୍ରଚ୍ଛନ୍ନ ହୋଇ ରହିଥିବାରୁ ଜଗତର ସମସ୍ତେ ସମାନ। ଏହାର ପ୍ରମାଣ ସେ ଦେଇଛନ୍ତି ବଳରାମ ଦାସଙ୍କର ଗୁପ୍ତଗୀତାର ୬ଷ୍ଠ ଅଧ୍ୟାୟରେ:

ବୈଶ୍ୟ ତୋ ନୟନ ଅଟଇ, କ୍ଷତ୍ରିୟ ଶ୍ରବଣକୁ କହି।
ବ୍ରାହ୍ମଣ ନାସାର ପବନ, ଶୂଦ୍ର ଯେ ମୁଖରେ ପ୍ରମାଣ।
ଏମନ୍ତେ ଚାରିଜାତି କହି, ଜ୍ୟୋତି ମଧ୍ୟାରୁ ଜନ୍ମ ହୋଇ।

ସେ 'ଗୀତାବକାଶ' ର ଆଲୋଚନା କରିଛନ୍ତି - କିପରି ବଳରାମ ଦାସ ଓଡ଼ିଶାର ରାଜା ଏବଂ ବ୍ରାହ୍ମଣଙ୍କ ଆଗରେ ଯୁକ୍ତି କରିଛନ୍ତି, ଜାତି ନିର୍ବିଶେଷରେ ବ୍ରହ୍ମକୁ ଚିହ୍ନିଥିବା ଯେକୌଣସି ମଣିଷ ବ୍ରହ୍ମବିଦ୍ୟାର ଅଧିକାରୀ ହୋଇପାରିବ। ଅଚ୍ୟୁତାନନ୍ଦ 'ଶୂନ୍ୟସଂହିତା' ରେ ମଧ ତାହାହିଁ ଦର୍ଶାଇଛନ୍ତି:

ହେଲେ ଜାତିହୀନ ନାହିଁ ତହିଁ ମାନ ଶ୍ରୀକୃଷ୍ଣ ବାସନା ପାଏ
କଲିକତରା ଯେ ପଙ୍କରେ ବୁଡ଼ିଲେ ପଙ୍କ ନ ଲାଗଇ ଦେହେ।

ମହିମାଧର୍ମର କବି ଭୀମଭୋଇଙ୍କ ଉପରେ ଆଲୋଚନା କରି ସେ ଲେଖିଛନ୍ତି :

ଭୀମଭୋଇ ବ୍ରହ୍ମାନୁଭବର କବି। ତେଣୁ ସେହି ବ୍ରହ୍ମଦ୍ୱାରା ପରିପୂର୍ଣ୍ଣ ହୋଇଥିବା ଏହି ସଂସାରର ବି କବି। ସଂସାରର ମଣିଷ ସମାଜ ପ୍ରତି ଅନ୍ତର୍ଗତ ଶ୍ରଦ୍ଧାରଖି ସେହିମାନଙ୍କର ଅତ୍ୟନ୍ତ ସନ୍ନିକଟ ହୋଇ ରହିଥିବା କବି। ଅତ୍ୟନ୍ତ ସ୍ପଷ୍ଟକଥା ଯେ, ଏକ ଅନ୍ତର୍ଗତ ଓ ଭାବଗତ ସଂବେଦନଶୀଳତାଦ୍ୱାରା ସିଏ ଆପଣାର ବ୍ରହ୍ମାନୁଭବ ସହିତ ଏହି ମଣିଷର ସଂସାର ଆଡ଼କୁ ହିଁ ଆକର୍ଷିତ ହୋଇ ଆସିଥିଲେ। ଓଡ଼ିଆ ସାହିତ୍ୟରେ ଏହି ସଂବେଦନଶୀଳତାର ପଟାନ୍ତର ନାହିଁ। ସମ୍ଭବତଃ ବିଶ୍ୱ ସାହିତ୍ୟରେ ତାହା ବିରଳ ହୋଇ ରହିଛି" (ତତ୍ରୈବ: ପୃ. ୫୭୯ - ୮୦)।

ତେଣୁ ବଳରାମ ଦାସ ଅଥବା ଭୀମଭୋଇ ସଂପର୍କରେ ଲେଖିଲା ବେଳେ ମନେହୁଏ, ସେ ସତେ ଯେମିତି ନିଜେ ବଳରାମ ଅଥବା ଭୀମଙ୍କ କବିସତ୍ତା। ଭୀମଭୋଇଙ୍କ କବିତାରେ ସେ ଦେଖିଛନ୍ତି ଏକ ବିରଳ ସମ୍ବେଦନଶୀଳତା ଜଗତ ପାଇଁ, ଜଗତର ମଣିଷମାନଙ୍କ ପାଇଁ। ଏହାର ଉଦାହରଣ ସେ ଦେଇଛନ୍ତି :

କାହିଁ ମୁଁ ଲୁଚିବି କେବଣେ ବଞ୍ଚିବି ପଳାଇବି କେଉଁ ପଥେ,
ଜଗତ କଷଣ କେତେ ମୁଁ ସହିବି ବିପତ୍ତି ପଡ଼ିବ ଯେତେ।

X X X

ଏ ଜନ ଜଗତ ହତ ହୋଇଗଲେ କାହିଁ ପଚାରିବି ମୁହିଁ
ଏଣୁ ବରି ସିନା ପ୍ରଭୁ ଶ୍ରୀଛାମୁକୁ ନିତି ଜଣାଣ କରଇ।

ତାଙ୍କ ବିଚାରରେ ଭୀମଭୋଇ ପିଣ୍ଡ ଓ ବ୍ରହ୍ମାଣ୍ଡର ଯଥାର୍ଥ ପରିଚୟ ପାଇଥିଲେ। ସେ ଜାଣିଥିଲେ, ଏହି ପିଣ୍ଡରେ ଯିଏ, ବ୍ରହ୍ମାଣ୍ଡରେ ମଧ୍ୟ ସିଏ। ସେହି କାରଣରୁ ସେ ବ୍ରହ୍ମାଣ୍ଡକୁ ଲୋଡୁଥିଲେ, ବ୍ରହ୍ମାଣ୍ଡପାଇଁ ଉଚ୍ଛନ୍ନ ହେଉଥିଲେ ଏବଂ ତାକୁ ରକ୍ଷା କରିବାପାଇଁ ନିଜର ସୁଖ ଓ ମୋକ୍ଷ କଥା ନ ଭାବି ଜଗତର ଉଦ୍ଧାରପାଇଁ ବ୍ୟାକୁଳ ହେଉଥିଲେ। ଏହାବୁର ପ୍ରମାଣ ସେ ପାଉଛନ୍ତି ନିମ୍ନଲିଖିତ ପଂକ୍ତି ଗୁଡ଼ିକରୁ:

କ୍ଷତମ ହେଉଛି ଏକୋଇଶି ପୁର ଧାଇଁ ଆସ ଗୁରୁଦେବ
ଖଣ୍ଡା କମ୍ପାତଳେ ପଡୁଅଛି ପୃଥ୍ୱୀ ଉଦ୍ଧରି ଏ ଧର୍ମନାବ।

X X X

ପଞ୍ଚସଖାଙ୍କ ଭଳି ଭୀମଭୋଇ ଜାତିଭେଦ ମାନିନାହାନ୍ତି। ସମାଜର ପ୍ରତ୍ୟେକ କ୍ଷୁଦ୍ରାୟତନକୁ ଭାଙ୍ଗି ଏକ ବୃହତ୍ତର ଧର୍ମଭୂମିରେ ସମସ୍ତଙ୍କୁ ଆଣି ସମ୍ମିଳିତ କରିବାପାଇଁ ମହିମାଧର୍ମରୁ ସେ ଯେଉଁ ପ୍ରେରଣା ପାଇଥିଲେ, ତାହାକୁ ସେ ' ସ୍ତୁତି ଚିନ୍ତାମଣି' ର ୭୦ ତମ ବୋଲିରେ ପ୍ରକାଶ କରିଛନ୍ତି :

ଛତିଶ କୁଳ ଯେ ବାଉନ ପାଟକ ଜାତି ବୋଲା ନାହିଁ ଯାଏ,
ପାଣି ଅନ୍ତର ପାଟକ ସିନା ଏହୁ ସୁପଣ୍ଡିତ କର ନ୍ୟାଏ।
ତିନି ବ୍ରହ୍ମାଣ୍ଡରେ ଲୋଡିଆସ ତୁଣ୍ଡେ ଏକ ଜଣ ଏକ ଜାତି,
ସେହି ସବୁଙ୍କୁ ଶତଜାତି କରିଛି ତାହାର ରଞ୍ଜିଲା ପୃଥ୍ୱୀ।

ଚିତ୍ତରଞ୍ଜନ ଭୀମଭୋଇଙ୍କ ସାହିତ୍ୟରେ ଏକ ଧ୍ୱଂସକାରୀ ଶକ୍ତିର ସନ୍ଧାନ ପାଉଛନ୍ତି। ତାଙ୍କ ମତରେ, ଭୀମଭୋଇଙ୍କ କବିତାରେ ଆମେ ଦେଖୁ ଯେ, ସେ ଜାତି ମାନି ନାହାନ୍ତି, ସମାଜକୁ ମାନି ନାହାନ୍ତି, ସଂପ୍ରଦାୟଗୁଡ଼ିକର ପ୍ରତିଷ୍ଠିତ ଦେବଦେବୀଙ୍କୁ ମଧ୍ୟ ମାନିନାହାନ୍ତି। ତତ୍କାଳୀନ ଓଡ଼ିଶାର ଧର୍ମାୟତନ ଓ ଧର୍ମସୀମାଗୁଡ଼ିକରେ ଇଷ୍ଟଦେବତା ରୂପେ ସ୍ୱୀକୃତି ପାଇଥିବା ଜଗନ୍ନାଥଙ୍କୁ ମଧ୍ୟ ଅତିକ୍ରମ କରି ଆଗକୁ ଯାଇଛନ୍ତି। ମହିମାଧର୍ମାବଲମ୍ବୀମାନଙ୍କ ମଧ୍ୟରେ ପ୍ରଚଳିତ ଏକ କାହାଣୀକୁ ଆଧାରକରି ଭୀମଭୋଇଙ୍କ ସଂପର୍କରେ ସେ ଲେଖିଛନ୍ତି, 'ମହିମା ଗୋସ୍ୱାମୀ ତାଙ୍କ ନୂତନ ଧର୍ମର ପ୍ରଚାର କରିବାକୁ ଆରମ୍ଭ କରନ୍ତେ ନୀଳାଚଳ କ୍ଷେତ୍ରରୁ ସ୍ୱୟଂ ଜଗନ୍ନାଥ ଆସି କପିଳାସଠାରେ ମହିମାଗୋସାଇଁଙ୍କୁ ଭେଟିଥିଲେ ଏବଂ ତାଙ୍କଠାରୁ ବ୍ରହ୍ମଜ୍ଞାନ ଓ ଭକ୍ତିଯୋଗର ଦୀକ୍ଷାଗ୍ରହଣ କରିଥିଲେ। ମହିମାଗୋସାଇଁଙ୍କ ସହିତ ଭେଟ ହେବା ପରେ ଜଗନ୍ନାଥଙ୍କଠାରୁ ଅବତାର ଗ୍ରହଣ ଅପରାଧ କଟିଯାଇଥିଲା। ସେହି ଉପାଖ୍ୟାନକୁ ଭୀମ ଭୋଇଙ୍କ 'ନିର୍ବେଦସାଧନ' ଗ୍ରନ୍ଥର ଭାଷାରେ:

ବୋଲନ୍ତି ଅନାଦି ପୁରୁଷ, ଏପରା ଜଗନ୍ନାଥ ଦାସ।
ବଡ଼ ଦେଉଳେ ବାସ ସ୍ଥିତି, ଏ ଯେ ମାନବ ବିଷ୍ଣୁମୂର୍ତ୍ତି।
ମୁଁ ଯହୁଁ ହେଲି ଅବତାର, ତେଜିଲା ଶ୍ରୀ ନୀଳକନ୍ଦର।

x x x

ତୋ' ଯେଉଁ ଦଶ ଅବତାର, ଗୁରୁ ଦର୍ଶନେ ଗଲା ପାର।
ମାନବି ବିଷ୍ଣୁ ଭଗବାନ, ଏଚାରି ଯୁଗେ ଅବତୀର୍ଣ୍ଣ।
ସେ ପାପମାନ ଏବେ ତୋର, ପୋଡ଼ିଲା ବ୍ରହ୍ମ ଯେ ଅନଳ।

x x x

ଘଟରେ ବ୍ରହ୍ମକୁ ନ ଚିହ୍ନି, ବାହ୍ୟରେ ଭ୍ରମଥାନ୍ତି ପୁଣି।....
ଏ ଘଟେ ଜଗନ୍ନାଥ ଅଛି, ପ୍ରତିମା ମିଛରେ ପୂଜୁଛି।
ମୂର୍ତ୍ତି ପ୍ରତିମା ଶୁଷ୍କ କାଠ, ସେ ପୁଣି ନେବେ କି ବୈକୁଣ୍ଠ।

ଚିତ୍ତରଞ୍ଜନ ଏହି ପଂକ୍ତିଗୁଡ଼ିକର ବିଶ୍ଳେଷଣ କରି ଦେଖାଇଛନ୍ତି , ଭୀମ ଭୋଇ କିପରି ଜଗନ୍ନାଥ ଚେତନାକୁ ପ୍ରତିମାଠାରୁ ଅଲଗା କରିଛନ୍ତି ଏବଂ କିପରି ଅବତାରର ବିହିତ ସୀମାଗୁଡ଼ିକୁ ଲଙ୍ଘନ କରି ପିତୁଳାମାନେ ପୌତ୍ତଳିକତାର ଅତ୍ୟାଗ୍ରହରେ ଶେଷକୁ ମଣିଷମାନଙ୍କୁ ଭ୍ରଷ୍ଟ କରିଛନ୍ତି ଏବଂ ଧର୍ମ ଓ ଉପଲବଧିର ଅସଲ ବାଟଗୁଡ଼ିକୁ ଆହୁରି ଅଧିକ ଦୂରବର୍ତ୍ତୀ କରି ରଖିଛନ୍ତି।

ଜଣେ ସମାଜତତ୍ତ୍ୱବିତ୍‌ର ଦୃଷ୍ଟିକୋଣ ନେଇ ଚିତ୍ତରଞ୍ଜନ ଭୀମଭୋଇଙ୍କୁ ଦେଖିଛନ୍ତି ଏବଂ ତାଙ୍କ ସାହିତ୍ୟର ଆକଳନ କରିଛନ୍ତି। ସେ ଲେଖିଛନ୍ତି:

...ଭୀମଭୋଇ ସେହି ଆଦିବାସୀ ମୂଳଦୁଆ ଭିତରୁ ହିଁ ଜୀବନର ଏକ ଅନ୍ୟ ପତାକା ଓ ଅନ୍ୟ ଘୋଷଣାକୁ ହାତରେ ଧରି ଓଡ଼ିଶାର ଦାଣ୍ଡକୁ ବାହାରିଥିଲେ, ଓଡ଼ିଶାରେ ସାହିତ୍ୟର ଦାଣ୍ଡକୁ ବାହାରିଥିଲେ, ସମାଜର ଦାଣ୍ଡକୁ ବି ବାହାରିଥିଲେ। ସିଏ ମଣିଷକୁ ଭଗବାନଙ୍କର ପୁତ୍ର ବୋଲି ଘୋଷଣା କରିଥିଲେ, ରାଜା, ମହାଜନ, ଓ ତତ୍ତ୍ୱତୁଲ୍ୟ ପରାକ୍ରମୀ ଯାବତୀୟ ବିଶିଷ୍ଟ ବର୍ଗଙ୍କଠାରୁ ଭଗବାନଙ୍କୁ ଆହୁରି ଅଧିକ ବଡ଼ ବୋଲି ଘୋଷଣା କରିଥିଲେ ଓ ସେତେବେଳର ନାନା ଭୟ ଭିତରେ ମଣିଷ ଲାଗି କେତେ ଅଭୟ ବହନ କରି ଆଣିଥିଲେ (ତତ୍ରୈବ: ପୃ.୫୮୯)।

ଭୀମଭୋଇ ଲେଖଛନ୍ତି :

ରାଜାର ପରଜା ନୋହୁ ସିନା ଆମ୍ଭେ ନୋହୁ ସାହୁର ଖାତକ
ଯହିଁ ଗୁରୁ ନେବେ ତହିଁ ଯାଉ ଆମ୍ଭେ କେ ଅବା କରୁ ଅଟକ।

ସମାଲୋଚକଙ୍କ ମତରେ

ଭଗବତ୍ ଶକ୍ତି ଯେଉଁ ଶିଖର ସ୍ତରକୁ ଉଠିଲେ ତାହା ଏହିପରି ଏକ ସହଜ ଅଥଚ ଭୟଶୂନ୍ୟ ଭାଷାରେ ଆପଣାକୁ ଅଭିବ୍ୟକ୍ତ କରିବାକୁ ସମର୍ଥ ହୁଏ, ଭୀମ ଭୋଇ ସେହିପରି ଏକ ଶିଖର ସ୍ତରରେ ରହି ଏହା ଲେଖିଛନ୍ତି। ତଥାପି, ଯେତେ ଉଚ୍ଚରେ ଠିଆ ହୋଇଥିଲେ ମଧ୍ୟ ସିଏ ସତେ ଅବା ମଣିଷ ଭିତରେ, ଆମର ଏହି ସମାଜ ଭିତରେ ଠିଆହୋଇ ଏହିସବୁ କଥା କହିଛନ୍ତି (ତତ୍ରୈବ: ପୃ. ୫୮୯)।

ଚିତ୍ତରଞ୍ଜନ ଭୀମଭୋଇଙ୍କ କବିତାରେ ବ୍ୟବହୃତ ଭାଷାର ଯଥାଯଥ, ସବିଶେଷ

ଆଲୋଚନା ନକରି ଏହା ବିଷୟରେ ଏକ ସାଧାରଣ ମୂଲ୍ୟବାନ ମତ ଦେଉଛନ୍ତି: "ଗୋଟିଏ ପ୍ରକାରର ଭାଷା ମସ୍ତିଷ୍କକୁ ଭଲଲାଗେ,ଆମ ବୁଦ୍ଧିକୁ ଭଲ ଲାଗେ। ଗୋଟିଏ ଭାଷା ଅଛି- ଯାହା ଆଗ ହୃଦୟକୁ ଭଲ ଲାଗେ, ଆମର ସକଳ ବୁଦ୍ଧିକୁ ଏକ ଅପୂର୍ବ ଅନୁରାଗରେ ଅନୁପ୍ରେରିତ କରି ହୃଦୟ ଆଡ଼କୁ ମୁହାଁଇ ନିଏ। ସେହି ଭାଷା ହୃଦୟ ଲାଗି ମଧ୍ୟ ଭାବ ଦିଏ। ଭୀମଭୋଇ ଓଡ଼ିଆ ଭାଷାର ସେହି ଦିଗକୁ ମନ କରିଥିଲେ, ଭାଷାକୁ ସହଜ ହେବାରେ, ଭାବମୟ ହେବାରେ ସାହାଯ୍ୟ କରିଥିଲେ, ଭାଷା ମାଧ୍ୟମରେ ଅନେକ ଉନ୍ମୋଚନ ଲାଗି ସେ ବାଟ କାଢ଼ିଥିଲେ (ତତ୍ରୈବ: ପୃ. ୫୬୯)। ଭାଷା ଉପରେ ସେ ଦେଇଥିବା ଏହି ସାଧାରଣ ମନ୍ତବ୍ୟ ଜଣେ ସମାଲୋଚକର ନୁହେଁ, ଏହା ଜଣେ ଐତିହାସିକର।

ଚିତ୍ତରଞ୍ଜନ ଓଡ଼ିଆ ସାହିତ୍ୟର ଇତିହାସ ମଧ୍ୟ ଲେଖିଛନ୍ତି। ଗୋଟିଏ ' ଓଡ଼ିଆ ସାହିତ୍ୟର ସାଂସ୍କୃତିକ ବିକାଶଧାରା' ଏବଂ ଅନ୍ୟଟି ' ଓଡ଼ିଆ ସାହିତ୍ୟର ଇତିହାସ : ସାମାଜିକ ଓ ସାଂସ୍କୃତିକ ଭିତ୍ତିଭୂମି'। ଦ୍ୱିତୀୟ ପୁସ୍ତକଟି ପ୍ରଥମର ଏକ ସାମାନ୍ୟ ପରିବର୍ତ୍ତିତ ରୂପ। ପୁସ୍ତକ ଦୁଇଟିର ପରିକଳ୍ପନା ପ୍ରୟାସ ଅଭିନବ। କାରଣ ସେ ପ୍ରଥମ କରି ଓଡ଼ିଆ ସାହିତ୍ୟ ଇତିହାସର ସମାଜତାତ୍ତ୍ୱିକ ଅନୁଶୀଳନ କରିଛନ୍ତି। ଏହିଭଳି ଅନୁଶୀଳନ ପୃଥିବୀ ସାହିତ୍ୟ କ୍ଷେତ୍ରରେ ପ୍ରଥମେ କରାଯାଇଥିଲା ହିପୋଲାଇଟ୍ ଟେନ୍‌ଙ୍କଦ୍ୱାରା ୧୮୮୬ ରେ। ସେ ଲେଖିଛନ୍ତି *History of English Literature,* ଏହା ସାହିତ୍ୟର ପ୍ରଥମ ଆଧୁନିକ ସମାଜତାତ୍ତ୍ୱିକ ଆଲୋଚନା। ସେ ସାହିତ୍ୟସୃଷ୍ଟି ମୂଳରେ ଥିବା ଜାତି, ସାମାଜିକ ପରିବେଶ, ସମୟକୁ ସାହିତ୍ୟ ଇତିହାସ ଆଲୋଚନାର ପରିସରକୁ ଆଣିଛନ୍ତି। ସେ କହିଛନ୍ତି " A work of art is determined by an aggregate which is the general state of mind and surrounding circumstances (Traine: ୧୮୮୬, ପ. ୩୦) ଓଡ଼ିଆ ସାହିତ୍ୟର ଇତିହାସ ରଚନା କାଳରେ ଚିତ୍ତରଞ୍ଜନ ଅନୁରୂପ ମତ ଦେଇଛନ୍ତି: ସାହିତ୍ୟ "ଆମରି ଦ୍ୱାରା ଏହି ପୃଥିବୀର ତିଆରି। ପୃଥିବୀକୁ ଅନୁଭବ କରି ଓ ପୃଥିବୀକୁ ବଞ୍ଚି ଆମ ଭିତରେ ସେଗୁଡ଼ିକର ଯେଉଁ ସୃଜନାତ୍ମକ ଅନୁସ୍ପନ୍ଦନମାନ ହୋଇଛି ଏବଂ ଆମ ଭିତରୁ କେତେ ବ୍ୟକ୍ତି ସେହି ଅନୁସ୍ପନ୍ଦନଗୁଡ଼ିକୁ ଯେତେବେଳେ ଭାଷାରେ ବ୍ୟକ୍ତ କରିବାକୁ ନିଜ ଭିତରୁ ଏକ ପ୍ରୟୋଜନ ଅନୁଭବ କରିଛନ୍ତି, ସେତିକିବେଳେ ସାହିତ୍ୟ ସମ୍ଭବ ହୋଇଛି"(ଦାସ, ଚିତ୍ତରଞ୍ଜନ: ୧୯୯୩, ପୃ.୩)

ଜାତି,ସାମାଜିକ ପରିବେଶ, ସମୟ ଭଳି ଚିତ୍ତରଞ୍ଜନ ଆଉ କେତୋଟି ମାନଦଣ୍ଡର ସହାୟତା ନେଇଛନ୍ତି ଓଡ଼ିଆ ସାହିତ୍ୟକୁ କଳନା କରିବାପାଇଁ। ଉତ୍ତରଆଧୁନିକ ନବଇତିହାସବାଦର ଜଣେ ପ୍ରବକ୍ତା ମାଇକେଲ ଫୁକୋ କହିଥିଲେ ଯେ, କ୍ଷମତା ଗୋଟିଏ ଯୁଗର ଚିନ୍ତାଧାରାକୁ ନିୟନ୍ତ୍ରିତ କରି ଏକ ନିର୍ଦ୍ଦିଷ୍ଟ ରୂପଦିଏ। ଏହା ସ୍ଥିରକରେ, କେଉଁଟି ସତ୍ୟ ଏବଂ କାହାକୁ ଜ୍ଞାନ ବୋଲି ବିଚାର କରାଯିବ, ମାନବିକ ଦୃଷ୍ଟିକୋଣରୁ କେଉଁଟି ସ୍ୱାଭାବିକ ବୋଲି କୁହାଯିବ। ସମାଲୋଚକ ଦେରିଦା ତାଙ୍କର ବିଘଟନବାଦ ସମାଲୋଚନାରେ କହିଛନ୍ତି - ପ୍ରତ୍ୟେକ କୃତିରେ ଅନେକ ପରସ୍ପର ବିରୋଧୀ ଅର୍ଥ ଓ ଭାବମାନ ରହିଥାଏ। ଜୁଲିଆ କ୍ରିଷ୍ଟେଭା ତାଙ୍କର ସଂଳାପବାଦରେ ବିଭିନ୍ନ କୃତିରେ ଥିବା

ଅନେକ ସ୍ୱାଧୀନ ଓ ଦ୍ୱନ୍ଦ୍ୱାତ୍ମକ ସ୍ୱର ଥିବା କଥା ମଧ୍ୟ ଉଲ୍ଲେଖ କରିଛନ୍ତି।

ଚିତ୍ତରଞ୍ଜନଙ୍କର ସମାଲୋଚନା ଧାରାରେ ଏ ସମସ୍ତ ଧାରାରେ ମିଶ୍ରଣ ଘଟିଛି। ସେ ଓଡ଼ିଆ ସାହିତ୍ୟର ଇତିହାସ ସାମାଜିକ, ସାଂସ୍କୃତିକ ଭିତ୍ତିଭୂମି ରେ ଲେଖିଛନ୍ତି:

> ବସ୍ତୁତଃ ଏମିତି ମଧ୍ୟ କୁହାଯାଇପାରେ ଯେ, ଗୋଟିଏ ଯୁଗର ଅଧିକାଂଶ ସାହିତ୍ୟିକ ଏବଂ ଲେଖକ ପ୍ରୟୋଜନ ଅନୁସାରେ ଯୁଗର ବୋଲକୁ, ରାଜ୍ୟର ବୋଲକୁ ଅର୍ଥାତ୍ କ୍ଷମତାଧୀଶର ବୋଲକୁ ମାନି ଯାଇଛନ୍ତି ଏବଂ ସେହି ଅନୁସାରେ ସାହିତ୍ୟ ଲେଖିଛନ୍ତି। ତଥାପି ଯୁଗକୁ ବଦଳାଇବାରେ ବା ସମାଜକୁ ବଦଳାଇବାରେ ମଧ୍ୟ ପୃଥିବୀର ସାହିତ୍ୟ ଯୁଗେ ଯୁଗେ କମ୍ ଶକ୍ତିମତ୍ତାର ପରିଚୟ ଦେଇନାହିଁ। ପ୍ରାୟ ପ୍ରତ୍ୟେକ ମଣିଷ ଭିତରେ ଯେମିତି ସବୁକଥାକୁ ମାନି ଯାଉଥିବା ଓ ବୋଲ ଅନୁସାରେ ବାଟ ଚାଲୁଥିବା ବାଧ୍ୟଟିଏ ବା ସୁନାପିଲାଟିଏ ରହିଛି ଏବଂ ତଥାପି ସମାନ୍ତର ଭାବରେ ସ୍ୱୀକୃତ ସତ୍ୟ ହିଁ ବଳଣିଗୁଡ଼ିକର ଔଚିତ୍ୟକୁ ପ୍ରଶ୍ନ କରିପାରୁଥିବା ଓ ସେଗୁଡ଼ିକ ବିଷୟରେ ସଂଶୟ ପ୍ରକାଶ କରୁଥିବା ସାହସୀଟିଏ ମଧ୍ୟ ରହିଛି, ଠିକ୍ ସେହିପରି ପ୍ରତ୍ୟେକ ସାହିତ୍ୟରେ ମାନି ଯାଉଥିବା ଓ ତଥାପି ଆହୁରି ସେ ପାଖକୁ ଦେଖୁଥିବା ଉଭୟ ଉପାଦାନ ପରସ୍ପରରେ ସମାନ୍ତର ହୋଇ ରହିଛି।" (ତତ୍ରୈବ: ପୃ.୧୪-୧୫);

ସମାଲୋଚନାର ଅନ୍ୟ ଏକ ମାନଦଣ୍ଡ, ସାହିତ୍ୟ ସହିତ ସାଧାରଣ ମଣିଷର ସଂପର୍କ। ତାଙ୍କ ମତରେ, ଆମ ଦେଶର ଅଧିକାଂଶ ସାହିତ୍ୟ ପ୍ରଧାନତଃ ଶ୍ରେଣୀସାହିତ୍ୟ,ଅଧିକାଂଶ ମଣିଷଙ୍କର ଅସଲ ପ୍ରଶ୍ନ ଓ ଅସଲ ବକ୍ତବ୍ୟଗୁଡ଼ିକୁ ନେଇ ଖୁବ୍ କମ୍ ସାହିତ୍ୟ ରଚିତ ହେଉଛି।ଏ ସଂପର୍କରେ ତାଙ୍କର ସ୍ପଷ୍ଟମତ:

> ଆମ ସାହିତ୍ୟରେ ଆବେଦନଗୁଡ଼ିକ ଅନେକ ସମୟରେ ଏକ ଶ୍ରେଣୀ ଭିତରେ ସୀମାବଦ୍ଧ ହୋଇ ରହିଯାଇଛି। କେବଳ କେତେକଙ୍କର ହୃଦୟ ବିନୋଦନ ଲାଗି ପ୍ରାୟ ଏକ କଳାତ୍ମକ ପଣ୍ୟ ହୋଇ ରହିଯାଉଛି। ଭାରତବର୍ଷର ରୀତିନୀତି, ରାଷ୍ଟ୍ରଶାସନ, ଜଣେ ନାଗରିକ ନିମନ୍ତେ ଉପଲବଧ ହେଉଥିବା ସୁଯୋଗ ଓ ସୁବିଧାମାନ ଯେପରି ଅଧିକାଂଶ ମଣିଷଙ୍କ ଯାଏ ମୋଟେ ପହଞ୍ଚି ପାରୁନାହିଁ, ଠିକ୍ ସେହିପରି ଭାରତବର୍ଷର ସାହିତ୍ୟ ମଧ୍ୟ ଅନେକଙ୍କ ସକାଶେ ଆକାଶମଣ୍ଡଳ କରଁଆ ଗଛ ପରି ହୋଇଛି। ସେମାନଙ୍କର ଜୀବନର ଚିତ୍ରଣ କରି ବାହାରେ ଥିବା ଉତ୍ତମମାନେ ସାହିତ୍ୟ ଲେଖୁଛନ୍ତି ଓ ତାହାକୁ ପରିବେଷଣ କରି ଆପ୍ୟାୟିତ ହୋଇପାରୁଛନ୍ତି ସତ, ମାତ୍ର ଯେଉଁମାନେ ସେହି ସାହିତ୍ୟର ପାତ୍ର ରୂପେ ବର୍ଣ୍ଣିତ ହେଉଛନ୍ତି, ସେମାନଙ୍କର ବ୍ୟାସଗୁଡ଼ିକ ସେହି ପରିଧିକୁ ସ୍ପର୍ଶ କରିପାରୁନାହିଁ। (ଓଡ଼ିଆ ସାହିତ୍ୟର ଇତିହାସ: ପୃ.୧୮)।

ସାହିତ୍ୟ ସହିତ ସଂସ୍କୃତିର ସଂପର୍କକୁ କେନ୍ଦ୍ରକରି ଚିତ୍ତରଞ୍ଜନ ସ୍ୱତନ୍ତ୍ର ବିଚାର ବ୍ୟକ୍ତ କରିଛନ୍ତି। ତାଙ୍କ ଅବବୋଧରେ କୌଣସି ସମାଜର ସାହିତ୍ୟ ସେହି ସଂସ୍କୃତି ଲାଗି ଏକ ଦର୍ପଣ ରୂପେ କାର୍ଯ୍ୟ କରିବ, ପୁଣି ଏହା ବିଶ୍ୱସଂସ୍କୃତିର ଯୋଗ୍ୟ ହେବା ଉଚିତ। ଯେଉଁ ବିଶ୍ୱସଂସ୍କୃତି ପୃଥିବୀସାରା ମନୁଷ୍ୟର ଜୀବନ ତଥା ସମ୍ବନ୍ଧଗୁଡ଼ିକ ମଧ୍ୟରେ ପ୍ରବେଶ

କରିବା ଲାଗି ଅପେକ୍ଷା କରି ରହିଛି, ତାହାକୁ ସୁସ୍ଥ ଭାବରେ ଆମନ୍ତ୍ରିତ କରି ଆଣିବା ନିମନ୍ତେ ବିଭିନ୍ନ ସାହିତ୍ୟର ଏକ ଅତ୍ୟନ୍ତ ମହତ୍ୱପୂର୍ଣ୍ଣ ଦାୟିତ୍ୱ ରହିଛି। " ସାହିତ୍ୟିକ ନିଜ ଭାଷାରେ ହିଁ ସାହିତ୍ୟ ଲେଖିବ, ନିଜ ଭୂମିଟି ଉପରେ ରହି ହିଁ ସିଏ ସାହିତ୍ୟ ସୃଷ୍ଟି କରିବ, ମାତ୍ର ସମଗ୍ର ବିଶ୍ୱର ସେହି ଅପେକ୍ଷାମାଣ ନିୟତିକୁ ଚକ୍ଷୁ ସମକ୍ଷରେ ଦର୍ପଣ ପରି ଧରିରଖି ହିଁ ସାହିତ୍ୟ ଲେଖିବ" (ତତ୍ରୈବ: ପୃ.୨୬)।

ଶ୍ରୀଯୁକ୍ତ ଦାସଙ୍କ ବିଚାରର ଶେଷ ମାନଦଣ୍ଡ ହେଉଛି ସାହିତ୍ୟର ଅସଲ ଅଭିପ୍ରାୟ ସଂପର୍କିତ। ତାଙ୍କ ମତରେ, ସାହିତ୍ୟର ଅସଲ ଅଭିପ୍ରାୟ ମନୁଷ୍ୟ/ବ୍ୟକ୍ତିକୁ ମୁକ୍ତିଦେବ ଏବଂ ମନୁଷ୍ୟ ସମାଜକୁ ମୁକ୍ତିଦେବ, ଚିତ୍ତ ବିନୋଦନ ଏହାର ପ୍ରକୃତ ଲକ୍ଷ୍ୟ ନୁହେଁ।

> ପ୍ରତ୍ୟେକ ମନୁଷ୍ୟ ଭିତରେ ଏପରି ଏକ ଉପାଦାନ ଅର୍ଥାତ୍ ଅମୂଲ୍ୟ ସମ୍ଭାବନା ରହିଛି, ଯାହାକି କୌଣସି କାଳର ଅଧୀନ ନୁହେଁ, କୌଣସି ସ୍ଥାନୀୟ ଚଳଣି ଅଥବା ସ୍ଥାନୀୟ ସଂସ୍କାରର ମଧ୍ୟ ଅଧୀନ ନୁହେଁ। xxx ସାହିତ୍ୟ ସେହି ସ୍ୱାଧୀନତା ଲାଗି ବାଟ ଫିଟାଇବ। ପ୍ରତ୍ୟେକ ମନୁଷ୍ୟ ଭିତରେ ଯେଉଁ ସୃଜନକାରୀ ଶକ୍ତି ଅଂଶଟି ରହିଛି ଏବଂ ଆପଣାର ଯଥାର୍ଥ ଅଭିବ୍ୟକ୍ତି ଲାଗି ଅପେକ୍ଷା କରିଛି, ବାଟ ଖୋଜୁଛି, ଅସଲ ସାହିତ୍ୟ ତାହାରି ପତାକାକୁ ଉତ୍ତୋଳିତ କରି ଧରିବ, ତାହାରି ଆଗମନକୁ ଘୋଷଣା କରିବ। ଯେଉଁ ସମାଜ ବା ସାମୁହିକ ଜୀବନର ପ୍ରତିଷ୍ଠା ହେଲେ ପୃଥିବୀରେ ମଣିଷ ମାତ୍ରକେ ସମସ୍ତେ ଆପଣାର ସେହି ସମ୍ଭାବନାମୟ ଦେବତ୍ୱକୁ ଆପଣା ଭିତରେ ସୁନିଶ୍ଚିତ ଭାବରେ ଅନୁଭବ କରିପାରିବେ, ତାହାରି ପରିପୂର୍ଣ୍ଣ ବିକାଶକୁ ହିଁ ଆପଣାର ଧର୍ମ ବୋଲି ଗ୍ରହଣ କରିବେ ଓ ସେହି ଦିଗରେ ସତକୁ ସତ କ୍ରିୟାଶୀଳ ହୋଇ ରହିପାରିବେ, ସାହିତ୍ୟ ସେହି ସମାଜର ଯାଚନା କରିବ, ସେହିପରି ଏକ ସାମୁହିକ ଜୀବନର ସ୍ୱପ୍ନ ଦଖିବ, ସେଥିପାଇଁ ପ୍ରେରଣା ଦେବ"(ତତ୍ରୈବ: ପୃ. ୩୨)।

ଓଡ଼ିଆ ସାହିତ୍ୟ ବିକଶିତ ହୋଇ ଆସିଥିବା ସମାଜ ଓ ସଂସ୍କୃତିକୁ ଭିତ୍ତି କରି ସେ ତାର ଅଧ୍ୟୟନ କରିଛନ୍ତି। ଭାରତୀୟ ସଭ୍ୟତାର ଉନ୍ମେଷ, ଓଡ଼ିଶାର ଜନଜାତି, ଓଡ଼ିଶା ଉପରେ ପଡ଼ୋଶୀମାନଙ୍କର ଆକ୍ରମଣ, ବିଭିନ୍ନ ମତବାଦର ସଂକ୍ରମଣ, ଓଡ଼ିଆ ଭାଷାର କ୍ରମବିକାଶ ଆଦି ବହୁ ଦିଗନ୍ତକୁ ତାଙ୍କ ବିଚାର ସ୍ପର୍ଶ କରିଛି। ଓଡ଼ିଶା ନାମକରଣର ସମୟ,ଓଡ଼ିଆର ସମାଜ, ଓଡ଼ିଆମାନଙ୍କର ଆର୍ଥିକଅବସ୍ଥା, ଧର୍ମ, ବିଭିନ୍ନ ସଂପ୍ରଦାୟର ଦେବଦେବୀ, ଜଗନ୍ନାଥ, ଜଗନ୍ନାଥ ଧର୍ମ ଓ ଶାସ୍ତ୍ରଗୁଡ଼ିକର ମଧ୍ୟରେ ଆଲୋଚନା କରିଛନ୍ତି। ସବାଶେଷରେ ସେ ସାହିତ୍ୟ ଆଲୋଚନା କ୍ଷେତ୍ରରେ କଲମ ଧରିଛନ୍ତି। ଫଳତଃ, ତାଙ୍କର ଆଲୋଚନା ଉତ୍ସାହ ପ୍ରଧାନ ନହୋଇ ସମୀକ୍ଷାପ୍ରଧାନ ହୋଇଛି। ତାଙ୍କ ମତରେ, ଓଡ଼ିଆ ସାହିତ୍ୟ ପାଞ୍ଚ ବା ଛଅଶହ ବର୍ଷର ଏକ ସାହିତ୍ୟ।ସେହି ସାହିତ୍ୟକୁ କାଳାନୁକ୍ରମେ ପ୍ରତ୍ୟେକ ପର୍ଯ୍ୟାୟର ସାମାଜିକ ଏବଂ ସାଂସ୍କୃତିକ ଭୂମି ଉପରେ ରଖି ଉତ୍ସାହ ଏବଂ ଅନୁରାଗର ସହ ମୋହମୁକ୍ତ ହୋଇ ଆଲୋଚନା କରିବା ହିଁ ହେବ ତାହାର ପକୃତ ମୂଲ୍ୟାୟନ।

ପୁସ୍ତକ ଦୁଇଟିର ଅଧ୍ୟାୟୀକରଣରେ ମଧ୍ୟ ଆମେ ଗବେଷକଙ୍କ ଅନ୍ତର୍ଦୃଷ୍ଟି ଅନୁଭବ କରିପାରିବା। 'ଓଡ଼ିଆ ସାହିତ୍ୟର ଇତିହାସ : ସାମାଜିକ ଓ ସାଂସ୍କୃତିକ' କୁ ସେ ଲିଖିତ

**ସାହିତ୍ୟର ଆରମ୍ଭକାଳ, ଆଦି ସାହିତ୍ୟ ଓ ଆଦିକବି ସାରଳା ଦାସ, ଓଡ଼ିଶାର ପଞ୍ଚସଖା,ସାହିତ୍ୟରେ ରୀତିଯୁଗ ଏବଂ ଆଧୁନିକ ସାହିତ୍ୟର ପ୍ରଥମ ଶହେବର୍ଷ (୧୮୫୦ - ୧୯୫୨) ଏବଂ ଓଡ଼ିଆ ସାହିତ୍ୟର ସାଂସ୍କୃତିକ ବିକାଶଧାରାକୁ ଅପ୍ରକେତ ସଲୀଳର ଯୁଗ, ଉନ୍‌ମେଷ କାଳର ଅନ୍ୱେଷଣରେ, ଆବିଷ୍କୃତ ସାହିତ୍ୟର ଆଦି ପର୍ଯ୍ୟାୟ, ଅନ୍ତରାନୁସଂଧାନ ଓ ଅନ୍ତରାବିଷ୍କାରର ଏକ ପର୍ଯ୍ୟାୟ - ଓଡ଼ିଶାର ପଞ୍ଚସଖା, ରୀତି ଓ ପ୍ରୀତିର ଦ୍ୱନ୍ଦ୍ୱ - ଅତିକୃତ ବ୍ୟବହାର୍ଯ୍ୟର ସ୍ୱଚ୍ଛତା, ସଂକ୍ରମଣ ସଂଭାବନାର ଶହେଟି ବର୍ଷ (୧୯୧୦ - ୧୯୫୦) ଏବଂ ସ୍ୱାଧୀନତା ପରେ ପ୍ରତାରଣା, ପଳାୟନ ଓ ପ୍ରତିଶ୍ରୁତି** ' ଶୀର୍ଷକରେ ବର୍ଣ୍ଣିତ କରିଛନ୍ତି। ଲିଖିତ ସାହିତ୍ୟର ଆରମ୍ଭକାଳରେ ନାରାୟଣାନନ୍ଦ ଅବଧୂତ ସ୍ୱାମୀଙ୍କର 'ରୁଦ୍ରାସୁଧାନିଧି' ରେ ଠାକୁରମାନଙ୍କୁ ବର୍ଣ୍ଣନା କରାଯାଇଥିବାରୁ ତାହାକୁ କେତେକ ସମାଲୋଚକ ଧର୍ମସାହିତ୍ୟ ବୋଲି କହିଥାନ୍ତି। ଆଲୋଚକ ଚିତ୍ତରଞ୍ଜନଙ୍କ ମତରେ, ଏହା ଉପନ୍ୟାସର ପୁରାତନ ନମୁନା ଅଥବା ଅତ୍ୟନ୍ତ ମୁକ୍ତ ଭାବରେ ଲେଖା ହୋଇଥିବା ଗଦ୍ୟକଳେବରଧାରୀ ରୀତିସାହିତ୍ୟ। ନିଜ ସିଦ୍ଧାନ୍ତପାଇଁ ଯୁକ୍ତି ଉପସ୍ଥାପିତ କରି ସେ ଲେଖିଛନ୍ତି ଯେ, ପ୍ରାଚୀନ ତଥା ମଧ୍ୟ ଯୁଗରେ ସାଧାରଣ ମଣିଷର ସାଂସାରିକ ଜୀବନରେ ପ୍ରେମ, ବିରହ ଓ ଶୃଙ୍ଗାରକୁ ସେତେବେଳର ନୈତିକତାରେ ଅତ୍ୟନ୍ତ ନିମ୍ନସ୍ତରରେ ଥିବା କଥା ବିଚାର କରାଯାଉଥିଲା ଏବଂ ସେଗୁଡ଼ିକୁ ସାହିତ୍ୟ ଭିତରକୁ ଆଣି ବର୍ଣ୍ଣନା କରିବା ସେତେବେଳର ସଂସ୍କାରରେ ଆଦୌ ସମ୍ଭବ ହେଉନଥିଲା। ମାତ୍ର ଦେବତାମାନଙ୍କୁ ପାତ୍ର ଓ ପାତ୍ରୀ ରୂପେ ବ୍ୟବହାର କଲେ ଆଉ ତାହାକୁ କେହି ଗର୍ହିତ ବୋଲି ବିଚାର କରୁନଥିଲେ। ସେଇଥିପାଇଁ ସେ ମନ୍ତବ୍ୟ ଦେଇଛନ୍ତି, 'ଲୌକିକକୁ ଅଲୌକିକ ମଧ୍ୟକୁ ଉତ୍ତୋଳିତ କରି ନେଇ ଏବଂ ଅଲୌକିକକୁ ଲୌକିକ ସ୍ତରକୁ ଟାଣି ଆଣି 'ରୁଦ୍ର ସୁଧାନିଧି'ର ଲେଖକ ଅତ୍ୟନ୍ତ ନିପୁଣତାର ସହିତ ଧର୍ମୀୟ କଥାଗୁଡିକୁ ଉପନ୍ୟାସର ମୋହକତାଦ୍ୱାରା ମଧୁର କରି ପାରିଛନ୍ତି (ତତ୍ରୈବ: ପୃ.୯୮)।

ସମକାଳରେ ରଚିତ ଓଷାବ୍ରତ କଥାଗୁଡ଼ିକରୁ ଆମ ସମାଜ ବିଷୟରେ ଗୁଣାତ୍ମକ ଚିତ୍ର ମିଳିଯାଏ। ସମାଜର ଗୋଟିଏ ଗୋଟିଏ ଜୀବ ହିସାବରେ ଆମମାନଙ୍କୁ ଯେ ମୂଳତଃ ନାନା ଭୟ କାମୁଡ଼ି ଧରିଛି ଏବଂ ସେହି ଭୟରୁ ରକ୍ଷା ପାଇବା ସକାଶେ ଯେ ଆମେ ଓଷା ଓ ବ୍ରତ ପାଳନର ମାଧ୍ୟମରେ ଆଗ ଠାକୁରମାନଙ୍କୁ ପରିତୁଷ୍ଟ କରିବାପାଇଁ ଚେଷ୍ଟା କରୁଛୁ, ଆମ ଓଷାବ୍ରତ କଥାଗୁଡ଼ିକ ତାହାରି ଦ୍ୟୋତକ ହୋଇ ରହିଛି। ପରମ ସତ୍ୟ ଓ ପରମେଶ୍ୱର ଯେ ଆମ ଭିତରେ ରହିଛନ୍ତି, ସେହିଠାରେ ସାକ୍ଷାତ କରିପାରିଲେ ସେ ପରମେଶ୍ୱର ରୂପେ ଆମର ସାଥେ ସାଥେ ରହିଥିବେ, ଆମକୁ ସାହସ ଦେଉଥିବେ; ଜ୍ଞାନ, ଭକ୍ତି ଏବଂ କର୍ମରେ ଆମକୁ ସେ ଅଧିକରୁ ଅଧିକ ବଳଯୁକ୍ତ କରି ନେଉଥିବେ, ଭାରତବର୍ଷର ମଣିଷଠାରୁ ସେହି ଅଧ୍ୟାତ୍ମସତ୍ୟଟିକୁ ଆମର ଓଷା, ବ୍ରତ ଏବଂ ଉପାସନା ଅପହରଣ କରିନେବାରେ ସହାୟତା କରିଛନ୍ତି। ଏଗୁଡ଼ିକ୍ ଆମ ଆଖିରେ ଆମ ଭଗବାନଙ୍କୁ ଏକ ଅତ୍ୟନ୍ତ ସାଧାରଣ ସ୍ତରକୁ ଓହ୍ଲାଇ ନେଇ ଆସିଛନ୍ତି।

ସାରଳା ସାହିତ୍ୟକୁ ସେ ଏକ ପ୍ରତିବାଦ ସାହିତ୍ୟ ରୂପରେ ଦେଖିଛନ୍ତି। ଏହା ପଣ୍ଡିତ ସାମ୍ପ୍ରଦାୟିକ ଉତ୍ସାହ ଓ ସଂସ୍କୃତ ସାହିତ୍ୟର କୃପଣ ପରମ୍ପରା ବିରୋଧରେ ପ୍ରତିବାଦ।

ସାରଳା ଦାସଙ୍କ ସଂପର୍କରେ ତାଙ୍କର ମତ ହେଉଛି:

ସିଏ ବୃହତ୍ତର ସମାଜକୁ କାବ୍ୟ ଭିତରକୁ ପ୍ରବିଷ୍ଟ କରାଇ ଆଣିଥିଲେ। ପାତ୍ର ଓ ପାତ୍ରୀମାନଙ୍କର ନାମଗୁଡ଼ିକୁ ଓ ସଂସ୍କୃତ ଗ୍ରନ୍ଥର ପୃଷ୍ଠଭୂମିଟିକୁ ସେ ନିଜର ମୂଳପୁଞ୍ଜି ରୂପେ ଗ୍ରହଣ କରିଥିଲେ ଏବଂ ସେମାନଙ୍କୁ ଓ ତାହାକୁ ଲୋକଜୀବନର କେତେ କେତେ କ୍ଷେତ୍ର ଏବଂ ଉପକ୍ଷେତ୍ର ମଧ୍ୟକୁ ଲଟାଇ ନେଇଗଲେ। ସେ ଠାକୁରମାନଙ୍କୁ ଜୀବନ୍ୟାସ ଦେଇ ମଣିଷ କଲେ, ସେମାନଙ୍କୁ ନିଜ କାଳର ଅଧିକ ନିକଟବର୍ତ୍ତୀ କରାଇ ଆଣିଲେ। x x x ସିଏ ଯେ ଅତ୍ୟନ୍ତ ଉଦାର ଓ ଅତ୍ୟନ୍ତ ଉନ୍ମୁକ୍ତଭାବରେ ସର୍ବପ୍ରଥମେ ଜୀବନର ଜଣେ ପରମ ଭକ୍ତ ଓ ପରମ ଅନୁରାଗୀ ଥିଲେ, ତାଙ୍କର ରଚନାଗୁଡ଼ିକରୁ ଆମକୁ ତାହାରି ଭୁରି ଭୁରି ପ୍ରମାଣ ଅବଶ୍ୟ ମିଳିଯିବ। ଜୀବନର ଜଣେ ଭକ୍ତ ହିସାବରେ ସେ ସ୍ୱୀକୃତ କେତେକେତେ ବାଡ଼କୁ ଡେଇଁଯାଇ ପାରିଥିଲେ(ତତ୍ରୈବ: ପୃ .୧୧୧)।

ପଞ୍ଚସଖାମାନଙ୍କ ସାହିତ୍ୟର ଅନୁଶୀଳନ କାଳରେ, ସଖାମାନେ କିପରି ପ୍ରଥମଥର ପାଇଁ ମଣିଷକୁ ସାହିତ୍ୟ ଭିତରକୁ ଆଣିଛନ୍ତି, ମଣିଷ ଭିତରେ ଥିବା ଦିବ୍ୟତାକୁ ସ୍ୱୀକାର କରିଛନ୍ତି ଏବଂ ସେହି ବିଶେଷ ସ୍ୱୀକୃତିର ସାହିତ୍ୟକୁ ଏକ ଶକ୍ତିଶାଳୀ ବାହନ ରୂପେ ବ୍ୟବହାର କରିଛନ୍ତି, ତାହା ସେ ପ୍ରତିପାଦନ କରିଛନ୍ତି। ଆପଣା ଆପଣା ବିଚାର ଓ ଅଭିବ୍ୟକ୍ତିରେ ପଞ୍ଚସଖାମାନେ କେତେ ମାତ୍ରାରେ ସମାଜ ଅନୁରକ୍ତ ଥିଲେ, ସେମାନଙ୍କ ସୃଷ୍ଟିର ଭାଷାକୁ ଲକ୍ଷ୍ୟ କରି ସେ ମତବ୍ୟକ୍ତ କରିଛନ୍ତି ଯେ – "ସାରଳାଦାସ ଏବଂ ପଞ୍ଚସଖାଙ୍କ ସମୟରେ ଲୋକମୁହଁର ଚଳନ୍ତିଭାଷା ସାହିତ୍ୟର ପରିସର ଭିତରକୁ ଆସିବାରୁ କଥିତ ଭାଷା ଏବଂ ଶାସ୍ତ୍ରରଭାଷା ମଧ୍ୟରେ ରହି ଆସିଥିବା ବ୍ୟବଧାନ କ୍ରମେ କ୍ରମେ ହ୍ରାସ ହୋଇ ଆସୁଥିଲା। ରୀତିଯୁଗର କବିମାନେ ପୁନର୍ବାର ସାହିତ୍ୟକୁ ନେଇ ସଂସ୍କୃତ ଶାସ୍ତ୍ରଭାଷାର ଗହନରେ ପୂରାଇଦେଇ ବ୍ୟବଧାନଗୁଡ଼ିକୁ ପୁନଃ ପ୍ରତିଷ୍ଠିତ କଲେ। ଓଡ଼ିଆ ଭାଷାରେ ରୀତିର କବିମାନେ ଯେତିକି ସଂସ୍କୃତ ଶବ୍ଦ ଏବଂ ତତ୍ସମ ଶବ୍ଦ ବ୍ୟବହାର କରିଛନ୍ତି, ସେଗୁଡ଼ିକ ସବୁଯାକ ସେତେବେଳେ ଓଡ଼ିଆ ଭାଷାରେ ଆଦୌ ଚଳୁ ନ ଥିଲା।"

ରୀତିଯୁଗର କାବ୍ୟଗୁଡ଼ିକରେ କାବ୍ୟିକ ପ୍ରେରଣା ଯେତିକି ନଥିଲା, ସଂସ୍କୃତ କାବ୍ୟସୂତ୍ରଗୁଡିକୁ ଅନୁସରଣ କରିବାର ଉତ୍ସାହ ତା' ଠାରୁ ଅଧିକ ପରିମାଣରେ ଥିଲା। ରୀତିଯୁଗର କବିତା ଶୃଙ୍ଗାରପ୍ରଧାନ। 'ଲାବଣ୍ୟବତୀ' କାବ୍ୟରେ ଉପେନ୍ଦ୍ରଭଞ୍ଜ ସଂସାର ପାଇଁ ଅନୁସୂଚୀତ ହୋଇଥିବା ଯାବତୀୟ ସୁଖ ମଧରୁ ଶୃଙ୍ଗାର ଏବଂ କାମସମ୍ଭୋଗକୁ ସର୍ବଶ୍ରେଷ୍ଠ ସୁଖ ବୋଲି ମାନିଛନ୍ତି। ସମାଲୋଚକଙ୍କ ମତରେ " ରୀତି ହେଉଛି ସାହିତ୍ୟର ବାହ୍ୟ ଅଙ୍ଗ; ସେହିପରି କାମୁକତା ମଧ୍ୟ ପ୍ରୀତିର ସମଗ୍ର ଭୁବନଟି ମଧ୍ୟରେ ଏକ ଅତ୍ୟଳ୍ପ ଅଂଶମାତ୍ର। ଅଥବା ଯେଉଁଠି ଅସଲ ପ୍ରୀତି ସମ୍ଭବ ନହୁଏ, ସେଠାରେ ଅସମର୍ଥ ମଣିଷମାନେ କେବଳ ଏକ ଆତୁରତା ବା କାମୁକତାରେ ହିଁ ଆନନ୍ଦ ଅନୁଭବ କରନ୍ତି, ସେହିପରି, ଅସଲ ସାହିତ୍ୟ ବିଷୟରେ ଏକ ଅସମର୍ଥତା ରହିଥିଲେ ଜଣେ ସାହିତ୍ୟକାରର ସମ୍ଭବତଃ ରୀତି ଆଡ଼କୁ ଅତିରିକ୍ତ ଭାବରେ ଆସକ୍ତ ହୋଇପଡ଼େ (ତତ୍ରୈବ: ପୃ.୧୫୧)।

ପୂର୍ବରୁ ସଂସ୍କୃତଭାଷା ସାହିତ୍ୟକୁ ଗୋଷ୍ଠୀଗତ କରି ରଖିଥିଲା। ଓଡ଼ିଆ ସାହିତ୍ୟର ରୀତିଯୁଗ ମଧ୍ୟ ଓଡ଼ିଆ ଭାଷା ଏବଂ ଓଡ଼ିଆ ସାହିତ୍ୟକୁ ପ୍ରଧାନତଃ ଏକ ଗୋଷ୍ଠୀର ଭାଷା

ଏବଂ ସାହିତ୍ୟ କରି ରଖିବାର ଚକ୍ରାନ୍ତ ଲାଗି ଭୂମି ରୂପେ କାର୍ଯ୍ୟ କରିଥିଲା। ରୀତି ସାହିତ୍ୟରେ ପ୍ରାୟ ଏକ ନିୟମ ସଦୃଶ ଛାନ୍ଦ ଏବଂ ସଙ୍ଗୀତକୁ ପୂରାଇ ଦିଆଯାଇଥିଲା ଏବଂ ତାହାରି ବଳରେ ତାହା ଜନପ୍ରିୟ ହୋଇଥିଲା। କିନ୍ତୁ ଜନସାଧାରଣ ରୀତି ସାହିତ୍ୟର କେବଳ ସଙ୍ଗୀତ ପକ୍ଷକୁ ହିଁ ଗ୍ରହଣ କରିଥିଲେ। ସାରଳା ଦାସ ଏବଂ ପଞ୍ଚସଖାଙ୍କ ସମୟରେ ଓଡ଼ିଆ ସାହିତ୍ୟ ସଭାକୁ ଛାଡ଼ି ଜନଜୀବନ ମଧ୍ୟରେ ପ୍ରବେଶ କରିପାରିଥିଲା। ରୀତିଯୁଗର ଅନ୍ୟ ପ୍ରଭାବ ଫଳରେ ତାହା ପୁନରାୟ ଜନଜୀବନକୁ ଛାଡ଼ି ସଭାକୁ ଫେରି ଆସିଥିଲା। ଏହା ଜନମାନଙ୍କୁ ଛାଡ଼ି ସୁଜନ ଅର୍ଥାତ୍ ଶାସ୍ତ୍ର ପଢିଥିବା ଜନମାନଙ୍କ ପାଖକୁ ଆସିଲେ। ଏକ କ୍ଷୁଦ୍ର ପରିଧି ଭିତରେ ଆପଣାର ଅହଂ ପ୍ରତିଷ୍ଠାପାଇଁ ଅନ୍ଧକାରାୟିତ ହୋଇଥିଲା।

ଭାରତ ପଶ୍ଚିମ ପୃଥିବୀ ସଂପର୍କରେ ଆସିବା ପରେ ସାହିତ୍ୟରେ ଆଧୁନିକ ଯୁଗର ଆରମ୍ଭ ହୋଇଛି। ଓଡ଼ିଶା କ୍ଷେତ୍ରରେ ମଧ୍ୟ ସେଇଆ ହିଁ ହୋଇଛି। ଏହି ପ୍ରଭାବ ଫଳରେ ଓଡ଼ିଆ ସାହିତ୍ୟକୁ ଗଦ୍ୟ, ନାଟକ, ଗଳ୍ପ, ଉପନ୍ୟାସ, ପ୍ରବନ୍ଧ ଓ ସମାଲୋଚନା ଆସିଛି, ସ୍ୱୀକୃତ ଏବଂ ଆଦୃତ ହୋଇଛି। ସାହିତ୍ୟ ମାଧମରେ ଆଗରୁ ବ୍ୟକ୍ତ ହୋଇପାରୁନଥିବା ଜୀବନର କେତେ କେତେ କ୍ଷେତ୍ର ସାହିତ୍ୟ ଭିତରକୁ ଆସିଛି। ଓଡ଼ିଆ ଆଧୁନିକ ସାହିତ୍ୟର ସେହି ପ୍ରଥମ ଉଦ୍ୟମ କାଳରେ (୧୮୫୦ - ୧୯୫୦) ସମାଲୋଚକ ପ୍ରଥମେ କବିବର ରାଧାନାଥ, ଭକ୍ତକବି ମଧୁସୂଦନ ଏବଂ ଫକୀରମୋହନ ସେନାପତିଙ୍କୁ ଭେଟିଛନ୍ତି।

ଯଦିଚ କବିବର ରାଧାନାଥ ରାୟ ତାଙ୍କ କାବ୍ୟଗୁଡ଼ିକରେ ପାଶ୍ଚାତ୍ୟ କାବ୍ୟଗୁଡ଼ିକର କଥାବସ୍ତୁକୁ ଆଣି ବ୍ୟବହାର କରିଛନ୍ତି, ତଥାପି ସମାଲୋଚକଙ୍କ ମତରେ ପାଶ୍ଚାତ୍ୟ କାବ୍ୟ ଏବଂ ପାଶ୍ଚାତ୍ୟ ଜଗତର ଜୀବନବାଦୀ ଆବେଦନମାନ ରାଧାନାଥଙ୍କୁ ସତେଅବା ଆଦୌ ସ୍ପର୍ଶ କରିନାହିଁ। ଇଉରୋପୀୟ ଚେତନା, ଇଉରୋପୀୟ ସମାଜ ଏବଂ ଇଉରୋପର ମନୁଷ୍ୟ ସେହି ସମୟକୁ ଭାବ ତଥା ସ୍ୱପ୍ନର ସ୍ତରରେ ଯେଉଁଠାରେ ପହଞ୍ଚି ସାରିଥିଲେ, ରାଧାନାଥ ସମ୍ଭବତଃ ତାହାର କୌଣସି ପତ୍ତା ମଧ୍ୟ ପାଇନାହାନ୍ତି। ତେବେ ସେ ରାଧାନାଥଙ୍କର କେବଳ 'ଦରବାର' କାବ୍ୟକୁ ଏକ ବ୍ୟତିକ୍ରମ ଭାବରେ ନେଇଛନ୍ତି। କାରଣ ଏଥିରେ ହିଁ କେବଳ ତତ୍କାଳୀନ ସମାଜର ସମୀକ୍ଷା ରହିଛି।

ମଧୁସୂଦନଙ୍କ ବିଷୟରେ ସମାଲୋଚକଙ୍କର ମତ ହେଉଛି: ମଧୁସୂଦନଙ୍କର କବିତାବଳୀରେ ପଦ୍ମଅଛି, ଆକାଶ ଅଛି, ବର୍ଷର ଛଅଟିଯାକ ଋତୁ ଅଛନ୍ତି ଏବଂ ଜୀବନ ବିଷୟରେ ଚିନ୍ତା ମଧ୍ୟ ରହିଛି, ମାତ୍ର ମଣିଷମାନେ କେଉଁଠି ହେଲେ ନାହାନ୍ତି। ସେତେବେଳର ନବଜାଗରଣ କହିଲେ ପ୍ରକୃତରେ ସବା ଆଗ ଯେଉଁସବୁ ଉଦବେଳନକୁ ବୁଝିଉଥିଲା,ମଧୁସୂଦନଙ୍କର ସାହିତ୍ୟରେ ତାହାର ସଙ୍କେତ ମଧ ସତେଅବା ଅଦୃଶ୍ୟ ହୋଇ ରହିଥିଲା(ତତ୍ରୈବ : ୧୮୫)।

ଅବଶ୍ୟ ବ୍ରହ୍ମର ବିଶ୍ୱମୟ ତୁଙ୍ଗ କଳ୍ପନା କରି ସେ ଏକ ବିଶ୍ୱମୟ ମାନବିକତାର କଳ୍ପନା କରିଛନ୍ତି। କ୍ଷୁଦ୍ରକୁ ଛାଡ଼ି ବୃହତକୁ ଆଶ୍ରା କରିବାଦ୍ୱାରା ହିଁ ଆମର ଯାବତୀୟ ଦୁଃଖ ଦୂର ହୋଇପାରିବ ବୋଲି ସେ ତାଙ୍କ ସାହିତ୍ୟ ମାଧମରେ ସ୍ୱପ୍ନ ଦେଖୁଛନ୍ତି। ଜାତୀୟତାର ଉନ୍ମେଷଣାର ଯୁଗରେ ଅଧିକାଂଶ ଭାବନା ବେଳେବେଳେ ସଂକୀର୍ଣ୍ଣ ହୋଇ ନିଜର

ତଥାକଥିତ ଭୂମିଟି ଆଡ଼କୁ ନିବେଶିତ ରହିଥିବା ବେଳେ ମଧୁସୂଦନ ଆମ ଚେତନାକୁ ବୃହତ୍ତର ବିଶ୍ୱ ଆଡ଼କୁ ଉଦଧାବିତ କରିବାକୁ ଚେଷ୍ଟା କରିଛନ୍ତି।ଆଧୁନିକ ସାହିତ୍ୟ କାଳରେ ସେହି ପ୍ରଥମ ଯୁଗରେ ତାହା ତାଙ୍କର ବିଶିଷ୍ଟ ଅବଦାନ। ସମାଲୋଚକଙ୍କ ମତ ହେଉଛି ଯେ, ମାନବଜାତି ଯେ ଜୀଅନ୍ତା ମାନବମାନଙ୍କୁ ନେଇ ଗଠିତ, ସେହି ଭାବନାଟି ମଧୁସୂଦନଙ୍କ ଲେଖାରେ ଆମେ ସ୍ପଷ୍ଟ ଭାବରେ ଆଦୌ ଦେଖିବାକୁ ପାଇବା ନାହିଁ (ତତ୍ରୈବ: ପୃ.୧୮)।

ଫକୀରମୋହନ ସଂସ୍କାରଧର୍ମୀ ଥିଲେ। ହିନ୍ଦୁଧର୍ମ ନାମରେ ଯେଉଁସବୁ ଜଡ଼ତା ଏବଂ ଗ୍ରହଣକାତରତା ପ୍ରାୟ ପାରମ୍ପରିକ ଭାବରେ ଆମକୁ ଅନ୍ଧାରଜର୍ଜ୍ଜର କରି ରଖିଥିଲା, ଫକୀରମୋହନ ସେଗୁଡ଼ିକୁ ବର୍ଜନ କରିବାର ଲକ୍ଷ୍ୟ ନେଇ ଅନେକ କ୍ଷୁଦ୍ରଗଳ୍ପ ଲେଖିଛନ୍ତି। ଆଧୁନିକ ଶିକ୍ଷା,ଆଧୁନିକ ସଂସ୍କାର ଏଗୁଡ଼ିକ ଲାଗି ସମାଜରେ ବାଟ ଛାଡ଼ି ଦିଆଯାଉ ବୋଲି ଉପନ୍ୟାସ ଓ କବିତାଗୁଡ଼ିକରେ ଘୋଷଣା କରିଛନ୍ତି। ସମାଲୋଚକଙ୍କ ମତରେ', ଧର୍ମ ଓ ଆଚାର ନାମରେ ସମାଜରେ ମନୁଷ୍ୟମାନଙ୍କୁ କେଡ଼େ ଅସହାୟ ଭାବରେ ଗଧ କରି ରଖା ଯାଇଥିଲା, ଫକୀରମୋହନ ସେହି ବିଷୟରେ ଅତ୍ୟନ୍ତ ସଚେତନ ଥିଲେ ଏବଂ ଆପଣାର ଶାଣିତ ଅଥଚ ବିନୋଦପୂର୍ଣ୍ଣ ଶୈଳୀରେ ତଥା ତଦନୁରୂପ ଏକ ଭାଷାରେ କଥାଗୁଡ଼ିକୁ କହିବାକୁ ସେ ଆଦୌ କୌଣସି କାର୍ପଣ୍ୟ କରୁ ନଥିଲେ। ମନୁଷ୍ୟ ବିଷୟରେ ତାଙ୍କର ଚେତନାରେ ଯେଉଁ ଚିତ୍ରଟି ସବୁବେଳେ ରହିଥିଲା, ତାହାହିଁ ତାଙ୍କର ଗଦ୍ୟ ଏବଂ ପଦ୍ୟକୁ ଅନୁରୂପ ଭାବରେ ପରିଚାଳିତ କରି ନେଇଥିଲା।

ଗୋପବନ୍ଧୁଙ୍କର ସାହିତ୍ୟର ସେ ଜଣେ ମୁଗ୍ଧ ପ୍ରଶଂସକ। କାରଣ ସେଥିରେ ଜୀବନର ସମଗ୍ର ଭୂମିଟି ସାହିତ୍ୟର ବିଚରଣ ଭୂମି ହୋଇଛି। ସେଥିରେ ମନୁଷ୍ୟର

> ସର୍ବମୂଳ ମହିମାଟି ବିଷୟରେ ହିଁ ସମାଜରେ ସର୍ବୋଚ୍ଚ ଭାବଗୁଡ଼ିକର ଉଚ୍ଚାରଣ କରାଯାଇଛି। ସାହିତ୍ୟର ସବାଆଗ ଯେ ଏକ ଅଙ୍ଗୀକାରବଦ୍ଧତା ରହିଛି, ଗୋପବନ୍ଧୁ ସେତେବେଳେ ଓଡ଼ିଆ ସାହିତ୍ୟରେ ଆପଣାର ସମକାଳୀନମାନଙ୍କୁ ସେହି ବିଷୟରେ ସଚେତନ ଓ ଉଦବୁଦ୍ଧ କରାଇ ପାରିଛନ୍ତି। ଓଡ଼ିଆ ସାହିତ୍ୟର ସବୁଜ ସାହିତ୍ୟିକଙ୍କର ସମାଜ ପ୍ରତି ପ୍ରକୃତ ପ୍ରତିବଦ୍ଧତା ନଥିଲା। ସେମାନେ ଘଡ଼ିଏ ବିପ୍ଳବର କଥା କହୁଥିଲେ ଓ ଆରଘଡ଼ିକୁ ଆଉ କୁଆଡ଼େ ପଳେଇଯିବାକୁ ମନ କରୁଥିଲେ। ସବୁଜଗୋଷ୍ଠୀର କବିମାନେ ପୁରୁଣା ସମାଜକୁ ମାନିବେ ନାହିଁ ଓ ଲୋକମତକୁ ପାଦରେ ଦଳିଦେବେ ବୋଲି ପଣ କରିଥିଲେ। ମର୍ତ୍ତ୍ୟରେ ଅମରାବତୀ ଗଢ଼ିବାକୁ ଓ ଜଡ଼ ଦେହରେ ଜୀବନର ସ୍ପନ୍ଦନ ଆଣି ଦେବାକୁ ଜିଦକରି ବସିଥିଲେ। ଏହି ସବୁ କିଛି ସେହି କବିତା ଭିତରେ ରହିଗଲା ଏବଂ ସବୁଜମାନେ ଅକାଳରେ ହଳଦିଆ ହୋଇଗଲେ। (ତତ୍ରୈବ: ପୃ.୨୧୦)

ସ୍ୱାଧୀନତା ପରବର୍ତ୍ତୀ ସମୟରେ ଭାରତବର୍ଷରେ ଏକ ସମୂଳ ଏବଂ ସମଗ୍ର ସାମାଜିକ ଏବଂ ଆର୍ଥିକ ପରିବର୍ତ୍ତନ ଆସିଥାନ୍ତା। ଭାରତର ନେତୃତ୍ୱ ଏଥିଲାଗି ପ୍ରସ୍ତୁତ ନଥିଲା। ସେତିକିବେଳେ ଭୋଗବାଦ ଆସିଲା, ଭୀରୁତା ବଢ଼ିଲା ଏବଂ କ୍ଷମତା ହିଁ ଅସଲ ସୌନ୍ଦର୍ଯ୍ୟ ରୂପେ ଉପସ୍ଥାପିତ ହେଲା। ଭୋଗୀମାନେ ସାହିତ୍ୟ କଲେ। ପଶ୍ଚିମରୁ ଶବ୍ଦ ଓ ସଂଜ୍ଞା ଆଣି ସେହି ସାହିତ୍ୟକୁ ଆଧୁନିକ କହିଲେ। ଆଧୁନିକ ସାହିତ୍ୟ ସେମାନଙ୍କ ହାତରେ ପଡ଼ି ସମ୍ପୂର୍ଣ୍ଣତଃ ଏକ ରୀତିରେ ପରିଣତ ହେଲା। ଏକ ଚାତୁରୀ ଏବଂ ଚତୁରତାରେ ହିଁ ପରିପୂର୍ଣ୍ଣ ହୋଇ ରହିବାକୁ ବାଧ୍ୟ ହେଲା।

ଚିତ୍ତରଞ୍ଜନଙ୍କ ମତରେ ଏହି ସମୟରେ ଓଡ଼ିଶାର ସାହିତ୍ୟ ଏକ ବିଳାସରେ ପରିଣତ ହୋଇଛି। "ଶହେ ବର୍ଷ ତଳେ ଅଶିକ୍ଷିତ କବି କେଡ଼େ ବଡ଼ ହୃଦୟ ଓ କେଡ଼େ ବଡ଼ ଆଖିରେ "ମୋ ଜୀବନ ପଛେ ନର୍କେ ପଡ଼ିଥାଉ ଜଗତ ଉଦ୍ଧାର ହେଉ" ବୋଲି କହିଥିଲେ। ଶିକ୍ଷିତ ସାହିତ୍ୟିକମାନଙ୍କର ତଥାକଥିତ ଆଧୁନିକ ଯୁଗରେ ସେହି ଆଖି କୁଆଡ଼େ ବୁଜି ହୋଇଗଲା ( ଓଡ଼ିଆ ସାହିତ୍ୟର ସାଂସ୍କୃତିକ ବିକାଶଧାରା, ପୃଷ୍ଠା୨୭୦)। ସ୍ୱାଧୀନତା ପୂର୍ବରୁ କେତେକ କବିଙ୍କର ନିର୍ଦ୍ଦିଷ୍ଟ ଜୀବନବିଶ୍ୱାସ ଥିଲା ଓ ଅନ୍ତର ଭିତରେ ଏକ ଆନ୍ତରିକ ସଂକଳ୍ପ ଥିଲା, କିନ୍ତୁ ସେମାନେ ମଧ୍ୟ ସ୍ୱାଧୀନତା ଆସିବାପରେ " ଅଧିକରୁ ଅଧିକ ନିପୁଣ ଭାବରେ ଶୈଳୀ ସମୁଦ୍ରରେ" ଝାସ ଦେଇଛନ୍ତି।

ସେକାଳର କବିତାରେ ମାନବ ସଚେତନତା ବଦଳରେ ଇଉରୋପରୁ ଆମଦାନୀ ହୋଇଥିବା ମୃତ୍ୟୁ-ସଚେତନତା ଏବଂ ବେଦନା-ସଚେତନତା ଖୁବ୍ ବହୁଳ ଭାବରେ ଦେଖିବାକୁ ମିଳେ। କବିମାନଙ୍କ ବିଷୟରେ ସମାଲୋଚକଙ୍କ ମତ ହେଉଛି- " ପାଶ୍ଚାତ୍ୟ ସାହିତ୍ୟରେ ଇଲିଅଟୀ କବିତାଯୁଗ ଅତିକ୍ରାନ୍ତ ହୋଇ ଯାଇଥିବା ସମୟରେ ସେମାନେ ପ୍ରାୟ ଏକ ଅଭୁତପୂର୍ବ ସରାଗରେ ଇଲିଅଟୀ ବେହରଣ ପକାଇ ହାଟକୁ ବାହାରିଲେ"(ତତ୍ରୈବ: ପୃ.୨୭୮)। "କବିମାନେ ନୂଆ କବିତାର ବଣଭୋଜୀ କରିବା ଲାଗି ଆପଣାର ସ୍ୱତନ୍ତ୍ର କ୍ଲବଘରମାନଙ୍କୁ ଚାଲିଗଲେ। ରୀତି ସହିତ ରତି କଲେ, ନାନା ଆମଦାନୀ ଦ୍ରବ୍ୟ ଓ ଦୃଶ୍ୟରେ ରୀତିକୁ ସଜାଇବାରେ ମନଦେଲେ। ମଣିଷ ପଛରେ ପଡ଼ି ରହିଲା, ଜୀବନ ଉପେକ୍ଷିତ ହୋଇ ରହିଗଲା"(ତତ୍ରୈବ: ପୃ.୨୭୯)।

ଓଡ଼ିଆ ଗଳ୍ପ ଓ ଉପନ୍ୟାସ ବିଷୟରେ ଆଲୋଚନା କରି ସେ କହିଛନ୍ତି – ଏଗୁଡ଼ିକ ମଧ୍ୟ " ଜୀବନ ବେଦନର ଆହୁରି କେତେକେତେ ସୀମାକୁ ମୋଟେ ମନ ବଳାଇନାହିଁ,ବା ମନ ବଳାଇବାକୁ ଆଦୌ କୌଣସି ସାହସ କରିନାହିଁ। xxx ଓଡ଼ିଆ ଗଳ୍ପ ଏବଂ ଉପନ୍ୟାସ ସାହିତ୍ୟ ଆମର ମନୋରଞ୍ଜନ ଓ ବିସ୍ମୋରଣ ଲାଗି ହିଁ ଆପଣାକୁ ଉଦ୍ଦିଷ୍ଟ କରି ରଖିଛି। ଜୀବନର ସମ୍ମୁଖୀନ ହେବାକୁ ଅର୍ଥାତ୍ ଜୀବନର ସମ୍ଭାବ୍ୟ ସୋପାନଗୁଡ଼ିକ ଲାଗି ଆମକୁ ଏକ ସମୂହ ହିସାବରେ ଯଥାର୍ଥରେ ପ୍ରସ୍ତୁତ ହେବାକୁ ପ୍ରେରଣା ଯୋଗାଇଦେବା ଅପେକ୍ଷା ତାହା ଆମକୁ ଗୁଡ଼ାଏ ମିଛ ସମସ୍ୟାର ଅରଣ୍ୟ ଭିତରେ ଆଣି ଭୂଆଁ ବୁଲାଇଛି ଏବଂ ଆମକୁ ଭାରି ଅଲିଅଳ ଓ ଶୈଳୀଯୁକ୍ତ ଭାବରେ ଭୁଲାଇ ରଖିବାକୁ ଚେଷ୍ଟା କରିଛି"(ତତ୍ରୈବ: ପୃ .୨୮୩)।

ସମାଲୋଚକଙ୍କର ସ୍ୱାଧୀନତା ପରବର୍ତ୍ତୀ ଓଡ଼ିଆ ସାହିତ୍ୟ ଆଲୋଚନାରେ କୌଣସି ସାହିତ୍ୟିକ କିମ୍ବା ସେମାନଙ୍କର ନିର୍ଦ୍ଦିଷ୍ଟ କୃତିର ଆଲୋଚନା କରିନାହାନ୍ତି। କିନ୍ତୁ ସେ ଯେଉଁ ସାଧାରଣ ମତାମତ ଦେଇଛନ୍ତି, ତାହା ସେହି ସମୟର ଅଧିକାଂଶ ସାହିତ୍ୟକୃତି ପ୍ରତି ପ୍ରଯୋଜ୍ୟ। ତେବେ ସ୍ୱାଧୀନତା ପରବର୍ତ୍ତୀ ସମୟରେ, ବିଶେଷତଃ ଗଳ୍ପ ଓ ଉପନ୍ୟାସ କ୍ଷେତ୍ରରେ କିଛି ଭଲ ସାହିତ୍ୟ ରଚିତ ହୋଇଛି। ସେଥିରେ ମଣିଷର କଥା ରହିଛି, ସମାଲୋଚକ ତାକୁ କାହିଁକି ଉପେକ୍ଷା କରିଛନ୍ତି, ତାହା ଜଣାପଡୁନାହିଁ।

ଚିତ୍ତରଞ୍ଜନ ବିଭିନ୍ନ ସମୟରେ ସାହିତ୍ୟର ଗୁଣ, ଦୋଷ, ଲକ୍ଷ୍ୟ ଓ ଅସଲ ସମ୍ବନ୍ଧଗୁଡ଼ିକ ବିଷୟରେ ସଂଖ୍ୟାଧିକ ପ୍ରବନ୍ଧ ଲେଖିଛନ୍ତି। ସେଗୁଡ଼ିକ ପଢ଼ିଲେ ସାହିତ୍ୟ ପ୍ରତି

ତାଙ୍କ ଦୃଷ୍ଟିଭଙ୍ଗୀର କଳନା କରିହୁଏ। ଏହି ପ୍ରବନ୍ଧଗୁଡ଼ିକ ମଧ୍ୟରୁ ଷୋଳଟି ସଂକଳିତ ହୋଇଛି " ସାହିତ୍ୟ ଓ ..." (୧୯୮୯) ଶୀର୍ଷକ ପୁସ୍ତକରେ। ସେଗୁଡ଼ିକ ମଧ୍ୟରୁ 'ସାହିତ୍ୟ ଓ ସାନ ଓଡ଼ିଶା', 'ସାହିତ୍ୟ ଓ ଅସାହିତ୍ୟିକତା', ସାହିତ୍ୟ ଓ ସଂସ୍କୃତି', 'ସାହିତ୍ୟ ଓ ଶୁକ୍ଳାଭିସାର','ସାହିତ୍ୟ ଓ ସାଧୁତା', ସାହିତ୍ୟ ଓ ଶ୍ଳୀଳତା', ' ସାହିତ୍ୟ ଓ ଅଙ୍ଗୀକାରବଦ୍ଧତା' କେତେଗୋଟି ଉଲ୍ଲେଖନୀୟ ଆଲୋଚନା। " ସାହିତ୍ୟ ଓ ..." ପୁସ୍ତକର ଭୂମିକାରେ ସମାଲୋଚକ ଲେଖିଛନ୍ତି : "ସାହିତ୍ୟ ସହିତ 'ଓ' ଅଲବତ ରହିବ। ଏହି ଓ ଗୁଡ଼ିକ ବିସ୍ତୃତ ହୋଇ ଯାଉଥିବା ସଙ୍ଗେ ସଙ୍ଗେ ଜଣେ ଲେଖକର ସାହିତ୍ୟ ଆଖିରେ ମଧ୍ୟ ବିସ୍ତାର ସମ୍ଭବ ହେଉଥିବ। ଏହି ବିସ୍ତାର ହୃଦବିସ୍ତାର ଭାଜନ କରାଇବ।

'ସାହିତ୍ୟ ଓ ସାନ ଓଡ଼ିଶା' ପ୍ରବନ୍ଧରେ ସେ ଓଡ଼ିଆ ସାହିତ୍ୟର ସଂକୀର୍ଣ୍ଣତା, ତଥାକଥିତ ନିଃସଙ୍ଗତାବୋଧ, ହୀନମନ୍ୟତା, ନବ୍ୟସାମନ୍ତବାଦ, ଅସମ୍ବେଦନଶୀଳତା, ଅଣଅଙ୍ଗୀକାରବଦ୍ଧତା; ଓଡ଼ିଶା,ଓଡ଼ିଆଭାଷା ଏବଂ ଓଡ଼ିଆ ସାହିତ୍ୟ ପ୍ରତି ହତାଦାର ବିଷୟରେ ଆଲୋଚନା କରିଛନ୍ତି। ସମାଲୋଚକ ଦୁଃଖ କରିଛନ୍ତି ଯେ, ଭାରତବର୍ଷରେ ଓଡ଼ିଶା ସମ୍ଭବତଃ ସର୍ବପ୍ରଥମ ରାଜ୍ୟ, ଯେଉଠାରେ କି "ଉଚ୍ଚପଦସ୍ଥ ଉଚ୍ଚଗାଦିଆମାନେ" ଓଡ଼ିଆ ଭାଷାକୁ ଭାରି ସାନଭାଷାଟିଏ ବୋଲି ଦେଖନ୍ତି। ସେହି ସାଆନ୍ତମାନଙ୍କ "ସେମାନଙ୍କୁ ଓଡ଼ିଆ ଭାଷା ମୋଟେ ଅଣ୍ଟୁନାହିଁ। ଆମ ଆକାଶଗୁଡ଼ାକ ସେମାନଙ୍କୁ ଭାରି ସାନ ଦେଖାଯାଉଛି। ଆମ ବେଦନାର ଗଣ୍ଡଗୁଡ଼ାକ ସେମାନଙ୍କୁ ସତେଅବା ତୁଚ୍ଛା କୌଣସି ଶୁଖିଲା ନଈପରି ଦିଶୁଛି" ("ସାହିତ୍ୟ ଓ", ପୃଷ୍ଠା. ୧୦)। ଯେଉଁମାନେ ସାହିତ୍ୟ ଭିତରେ ରହିଛନ୍ତି, ସେମାନଙ୍କୁ 'ଅତ୍ୟନ୍ତ ନ୍ୟାୟସଙ୍ଗତ ଭାବରେ' ଓଡ଼ିଶା ଭାରି ସାନ ହୋଇ ଦେଖାଯାଉଛି। କାରଣ ଏହା ଏକ ଛୋଟ ରାଜ୍ୟ, ଏଠାରେ ଅଧିକାଂଶ ଅଶିକ୍ଷିତ ଏବଂ ଏଠାରେ ସବୁକିଛି ପୁରୁଣା ଢ଼ଙ୍ଗରେ ଚାଲିଛି। ଏହି ଆଧୁନିକ ନବ୍ୟସାମନ୍ତବାଦୀମାନେ ସମାଜର ସାହିତ୍ୟକୁ ଏକ ନବ୍ୟରୀତିବାଦଦ୍ୱାରା କଣ୍ଟାଫୋଡ଼ି ରଖିଛନ୍ତି ଏବଂ ମୂଳତଃ ଆପଣାକୁ କାମନା କରୁଛନ୍ତି। ଏହି ଭୂଇଁରେ ସେମାନଙ୍କୁ କେବେ ଯଥେଷ୍ଟ ପରିମାଣରେ ଅଧିକରୁ ଅଧିକ ମଣିଷ ସତକୁ ସତ ବୁଝିବେ ବୋଲି ସେମାନଙ୍କ ବିଶ୍ୱାସ ନାହିଁ।

ଫରାସୀ ପଣ୍ଡିତ ଜାଁ ମେରୀ ଗୁୟାଭ ତାଙ୍କର ପୁସ୍ତକ Art from the Point of View of Sociology (1887)ରେ ଲେଖିଥିଲେ ଯେ, ମହାନ୍ କଳା ଅପରିହାର୍ଯ୍ୟ ଭାବରେ ସମାଜୀୟ ଏବଂ ଯେଉଁ କଳାକାର ସମାଜଠାରୁ ବିଚ୍ଛିନ୍ନ ହୋଇ ବ୍ୟକ୍ତିଗତ ଆନନ୍ଦ ପାଇଁ ସୃଷ୍ଟି କରେ, ସେ ହେଉଛି ଜଣେ କ୍ଷୟପ୍ରାପ୍ତ କଳାକାର। ଏହି ପ୍ରବନ୍ଧରେ ପ୍ରାୟ ସେହିଭଳି ମତପୋଷଣ କରିଛନ୍ତି ଚିତ୍ତରଞ୍ଜନ: "ସ୍ଥାନୀୟ ଭୂମିଟି ଉପରେ ଯେଉଁଠାରେ ରୁଚି ଏବଂ ଦୃଷ୍ଟି ଉଭୟେ ଆନ୍ତର୍ଜାତିକ, ଅର୍ଥାତ୍ ସାର୍ବମାନବିକ ହୋଇପାରିଛନ୍ତି, ସାହିତ୍ୟରେ ସେହିଠାରେ ହିଁ ଯଥାର୍ଥ ଉଜ୍ଜ୍ୱଳତା ସମ୍ଭବ ହୋଇପାରିଛି"। (ତତ୍ରୈବ: ପୃ.୧୩) କିନ୍ତୁ

ଆତ୍ମକର୍ମୀ ସାହିତ୍ୟିକମାନେ 'ଅତ୍ୟନ୍ତ ବିକଳ ଭାବରେ ଖଣ୍ଡିଆ ହୋଇ ରହିଥାଆନ୍ତି।'(ତତ୍ରୈବ: ପୃ.୨୦)।

କେବଳ ଶବ୍ଦ ଓ ଶୈଳୀ ସାହିତ୍ୟ ସୃଷ୍ଟି କରେନାହିଁ ବୋଲି ସେ ' ସାହିତ୍ୟ ଓ ଅସାହିତ୍ୟିକ' ପ୍ରବନ୍ଧରେ ମତ ଦେଇଛନ୍ତି। ସାହିତ୍ୟ ସଂପର୍କିତ ରସାନୁଭୂତିର ଏକ ଗଭୀରତା ରହିଛି। ସେଥିରେ ଆନ୍ତରିକତାର ମଧ୍ୟ ଏକ ପ୍ରସ୍ଥ ରହିଛି। ଯଥାର୍ଥ ଅନୁଭୂତି ଆମକୁ ଲୁଚାଇ ରଖେନାହିଁ, ପ୍ରକାଶିତ କରାଏ। "ଯଥାର୍ଥ ଅନୁଭୂତି ଭିତରେ ଏକ ସଂକ୍ରମଣ - ସାମର୍ଥ୍ୟ ମଧ୍ୟ ରହିଥାଏ, ଯାହାକି ବାହାରଟାକୁ ଆମର ଏକାନ୍ତ ଭିତରକୁ ସଂକ୍ରମିତ କରିଆଣେ ଏବଂ ଭିତରଟାକୁ ମଧ୍ୟ ବାହାର ଭିତରକୁ ସଂକ୍ରମିତ କରିନିଏ"(ତତ୍ରୈବ: ପୃ.୨୫)। ଲେଖକର ସାହିତ୍ୟ ତା'ର ଜୀବନକୁ ସ୍ପର୍ଶ ନକଲେ, ତା' ଜୀବନର ସବୁଯାକ ଶ୍ରଦ୍ଧା ସାହିତ୍ୟକୁ ନ ଲୋଡ଼ିଲେ ତାହା ସାହିତ୍ୟ ନୁହେଁ, ସାହିତ୍ୟ ଅନୁଭବ ନ ବଢ଼ାଇଲେ, ଅନୁଭୂତି ଆଣି ନ ଦେଲେ, ଭିତରକୁ ତଥା ବାହାରକୁ ପ୍ରବୋଧିତ କରାଇବା ନଶିଖାଇଲେ, ତାହା ଅସାହିତ୍ୟ। 'ସାହିତ୍ୟ ଭିତରେ ରହି ମଧ୍ୟ ସଂସାରର କାମରେ ଲାଗି ନପାରିବା, ଭଗବାନଙ୍କ କାମରେ ଲାଗି ନ ପାରିବା, ଏହାକୁ ଅସାହିତ୍ୟିକତା ବ୍ୟତୀତ ଆଉ କ'ଣ କୁହାଯାଇପାରିବ?"(ତତ୍ରୈବ: ପୃ. ୩୦) ଯେଉଁମାନେ ଯଶଃପାଇଁ ସାହିତ୍ୟର କାମନା କରନ୍ତି, ସେମାନେ ଅସାହିତ୍ୟିକ।

'ସାହିତ୍ୟ ଓ ଅତିସାହିତ୍ୟିକତା'ରେ ସମାଲୋଚକ କହିଛନ୍ତି - ସାହିତ୍ୟପାଇଁ ଜୀବନ ନୁହେଁ, ଜୀବନପାଇଁ ହିଁ ସାହିତ୍ୟ। ସାହିତ୍ୟ ଜୀବନରେ ଉଦ୍ଦୀପନା ଆଣିଦିଏ, ଉନ୍ମୋଚନ ଆଣିଦିଏ, ନିଜ ଭିତରକୁ ପୂର୍ବରୁ ଅନାବିଷ୍କୃତ ହୋଇ ରହିଥାବା ନାନା ବାଟ ଫିଟାଇ ଦେଇଯାଏ। ଆମେ ସାହିତ୍ୟକୁ ଧର୍ମତଃ ଜୀବନୋଦୟ ଏବଂ ଜୀବନ ଉତ୍ତୋଳନର ଏକ ସାଧନ ବୋଲି ହିଁ ମାନିବା। ଜୀବନର ବୃହତ୍ତର ବିଭବକୁ ଆଢୁଆଳରେ ରଖି କିମ୍ବା ଉପେକ୍ଷା କରି କଦାପି ଆମର ସାହିତ୍ୟକୁ ଅତି ପ୍ରୀତିଗୁଡ଼ାକଦ୍ୱାରା ତାକୁ ଢ଼ାଙ୍କି ପକାଇବା ନାହିଁ। "ସାହିତ୍ୟେ ମୋର ଜୀବନ, ମୋ କବିତା ହେଉଛି ମୋର ସବୁକିଛି, ନାନା ପ୍ରୟୋଜନରେ ପଡ଼ି ଅତ୍ୟନ୍ତ ଭାବ-କାମୁକ ଭାବରେ ଏକଥା କହୁଥିବା କବି ଅଥବା ସାହିତ୍ୟିକର ଏହି ପ୍ରବୃତ୍ତିକୁ ଆମେ କେବଳ ଏକ ଅତିସାହିତ୍ୟିକତା ବୋଲି ହିଁ କହି ପାରିବା। (ତତ୍ରୈବ: ପୃ. ୪୬) ସାହିତ୍ୟକୁ ଛାଡ଼ି ଅତିସାହିତ୍ୟିକତା ଭିତରେ ପଶିଥିବା ସାହିତ୍ୟ-ବେଶୀ-କବି ଓ ଲେଖକମାନେ ଆପଣା ଲାଗି ଜୀବନ ବାହାରେ ଏକ ସ୍ୱତନ୍ତ୍ର ଦରବାରରେ ଶୈଳୀଗୁଡ଼ାକୁ ନେଇ ଖେଳିଥାନ୍ତି। ସେମାନେ ସତ୍ୟ, ମୂଲ୍ୟବୋଧ, ପ୍ରୀତି କିମ୍ବା ବିଶ୍ୱାସ କ'ଣ ଜାଣନ୍ତି ନାହିଁ। କୌଣସି ବ୍ୟାକୁଳତା ବା ଅଙ୍ଗୀକାରବଦ୍ଧତା ନଥାଇ ମଧ୍ୟ ଶବ୍ଦଗୁଡ଼ାକୁ ନେଇ ଖେଳୁଖେଳୁ କବିତା ଲେଖନ୍ତି ଓ ସାହିତ୍ୟ କରନ୍ତି। ଆଧୁନିକ ଜୀବନରୁ ତାହାର ସ୍ୱଭାବପ୍ରେରିତ ଗ୍ରହଣଶୀଳତା ବା ସମ୍ବେଦନକୁ ହରଣ କରିନେବାରେ ଓ ସାହିତ୍ୟକୁ ଏକ ଉପେକ୍ଷାମୟ ସ୍ୱତନ୍ତ୍ର ମୃଗୟାରେ ପରିଣତ କରି କରିବାରେ ଅତିସାହିତ୍ୟିକର

ଅପରିମିତ ଅବଦାନ ଅବଶ୍ୟ ରହିଛି ।(ତତ୍ରୈବ: ପୃ.୫୦)

'ସାହିତ୍ୟ ଓ ସଂସ୍କୃତି' ପ୍ରବନ୍ଧରେ ସାହିତ୍ୟ ଓ ସଂସ୍କୃତି ମଧ୍ୟରେ ରହିଥିବା ସମ୍ବନ୍ଧକୁ ଆଲୋଚନା କରାଯାଇଛି । " ସାହିତ୍ୟ ହୁଏ, ମାତ୍ର ଖାଲି ଲେଖିଦେଲେ ହିଁ କଦାପି ସଂସ୍କୃତି ହୁଏ ନାହିଁ । " ଆମ ଅଭାବଗୁଡ଼ିକର ଗାତଭିତରେ ମାତ୍ର କେତେକ୍ଷଣ ନିମନ୍ତେ କାଳିସୀ ଲାଗିଥିବା ସମୟରେ ଆମେ ଗୁଳ୍ଚି ଗଛାଇ କିଛି ଲେଖିକରି ଥୋଇଦେଲେ ତଦ୍ଦ୍ୱାରା ଯେଉଁ ସାହିତ୍ୟ ରଚନା ହୁଏ, ତାହା ଆମ ଜୀବନ ଏବଂ ସଂସ୍କୃତିର ଅଳିନ୍ଦଗୁଡ଼ିକୁ ମୋଟେ ସ୍ପର୍ଶ କରିପାରେ ନାହିଁ" (ତତ୍ରୈବ: ପୃ . ୮୨) । ତାଙ୍କ ବିଚାରରେ ସଂସ୍କୃତି ଆମ ଭିତରେ ଥିବା କୌଣସି ଯଥାର୍ଥ ବିମୋଚନର କାରଣ । ଆମ ସମ୍ବନ୍ଧ ଜଗତଟି ଯଦି ପ୍ରକୃତରେ ଯଥାର୍ଥ ସଂସ୍କୃତିର ଅନ୍ତରଙ୍ଗ ଭାବପ୍ରେରଣାଦ୍ୱାରା ପରିଚାଳିତ ହେଉଥାନ୍ତା, ତେବେ ସମ୍ବେଦନଶୀଳତା ହିଁ ଆମ ପାରସ୍ପରିକ ଜୀବନର ଅନ୍ତରଙ୍ଗ ସନ୍ତକ ହୋଇ ରହିଥାନ୍ତା । ସେତେବେଳେ ମଣିଷ ସାହିତ୍ୟ ବୋଲି ଯାହା କିଛି ଲେଖନ୍ତା, ତାହା ଅନ୍ୟପ୍ରକାର ହୋଇଥାଆନ୍ତା । ସେଥିରେ ନଥାନ୍ତା କପଟତା, ଅସ୍ୱୀକୃତି ଏବଂ ପଳାୟନର ଫନ୍ଦି ।

ଚିତ୍ତରଞ୍ଜନ ବିଶ୍ୱାସ କରନ୍ତି ଯେ, ସାହିତ୍ୟିକ ମନକଲେ ସମସ୍ତ ପ୍ରତିକୂଳତା ସତ୍ତ୍ୱେ ସଂସ୍କୃତିକୁ ମନକରି ପାରନ୍ତା । ମାତ୍ର ସେଥିପାଇଁ ତାକୁ ସୃଜନଶୀଳତାର ସଂଜ୍ଞାକୁ ବଦଳାଇବାକୁ ପଡ଼ନ୍ତା । " ଗୋଟାଏ ଗୋଟାଏ ବିହ୍ୱଳ ମୁହୂର୍ତ୍ତର ପଳାୟନପଟୁତାର ଯାବତୀୟ ପରିପାଟୀ ସହିତ କିଛି ଲେଖି ପକାଇବାକୁ ହିଁ ସୃଜନଶୀଳତା ବୋଲି କହିବାକୁ ମୋଟେ ମନ କରନ୍ତା ନାହିଁ । ଯିଏ ସୃଜନାତ୍ମକ ଜୀବନଟିଏ ବଞ୍ଚିବାକୁ ଓ ତାର ସାନବଡ଼ ସକଳ ସମ୍ବନ୍ଧକୁ ଯଥାସମ୍ଭବ ଅଧିକ ସୃଜନାତ୍ମକ କରି ରଖିବାକୁ ହିଁ ଜୀବନର ସର୍ବପ୍ରଥମ ଧର୍ମ ବୋଲି ଆପଣା ଭିତରୁ ହିଁ ମାନିନିଅନ୍ତା"(ତତ୍ରୈବ: ପୃ. ୮୫) । ସମାଲୋଚକ ଚାହାନ୍ତି, "ସାହିତ୍ୟ ଆମ ବର୍ତ୍ତମାନ ପୃଥିବୀର ଯାବତୀୟ ସତ୍ୟକାତରତାକୁ ଦୂର କରିବାରେ ଆୟୁଧ ହେଉ, ପଳାୟନକୁ ପଳାୟନ ବୋଲି ଘୋଷଣା କରୁ । ଉପେକ୍ଷା ବିରୁଦ୍ଧରେ ଏକ ସ୍ପଷ୍ଟ ସ୍ୱର ଉତ୍ତୋଳନ କରୁ । ତେବେ ଯାଇ ତାହା ସଂସ୍କୃତିର ପରିକର ରୂପେ ନିଜର ଯଥାର୍ଥ କର୍ତ୍ତବ୍ୟଟିକୁ କରିପାରିବ । କେବଳ ସେହିଭଳି ସାହିତ୍ୟ ବଢ଼ିଲେ ଯାଇ ମଣିଷର ସଂସ୍କୃତି ମଧ୍ୟ ବଢ଼ିବ ।"

'ସାହିତ୍ୟ ଓ ସାଧୁତା'ରେ ସାହିତ୍ୟ କ୍ଷେତ୍ରରେ ସାଧୁତାର ଆବଶ୍ୟକତା ଉପରେ ପ୍ରାଧାନ୍ୟ ଦିଆଯାଇଛି । ସାହିତ୍ୟ ଜୀବନକୁ ଦେଖେ, ଜୀବନକୁ ଏକ ବିଶେଷ ଭାବରେ ଅଭିବ୍ୟକ୍ତ କରିବାକୁ ସାହିତ୍ୟ କୁହାଯାଏ । "ଅଭିବ୍ୟକ୍ତ କରିବା, ଅର୍ଥାତ୍ ଆପଣାକୁ ଅନାବୃତ୍ତ କରିଦେବା; ନିଜକୁ ଅନାବୃତ୍ତକରି, ଅକପଟ କରି ଆଲୋକ ସମକ୍ଷରେ ଉତ୍ତୋଳିତ କରି ଧରିବା,ତାହାହିଁ ସମ୍ଭବତଃ ସାହିତ୍ୟର ଯଥାର୍ଥ ସନ୍ତକ, ସାହିତ୍ୟର ଯଥାର୍ଥ ଲଜ୍ଜା । ସାହିତ୍ୟକୁ ମନକରିବାକୁ ହେଲେ ସବାଆଗ ସେହି ଲାଜଟିକୁ ରଖିବାକୁ ହୁଏ"(ତତ୍ରୈବ: ପୃ . ୧୦୪) । ସାହିତ୍ୟ ସାଧୁ ହେଲେ ତାହା ଜୀବନକୁ ଅର୍ଥାତ ଜୀବନ ସମ୍ବନ୍ଧଗୁଡ଼ାକୁ ଭାରି ବିଡ଼ମ୍ବିତ କରି ରଖିଥିବା ନିଃସଙ୍ଗତାଗୁଡ଼ିକୁ ଆହ୍ୱାନ ଦିଏ । ସାହିତ୍ୟ ସାଧୁ ହେଲେ ସଙ୍ଗ ଲୋଡ଼େ, ନିଃସଙ୍ଗତାକୁ ନେଇ କାବ୍ୟିକତା ବାହାର କରେନାହିଁ । ଅତ୍ୟନ୍ତ ସ୍ପଷ୍ଟ ସ୍ୱରରେ ସେ କହିଛନ୍ତି -ଲେଖକ ସାଧୁ ହେଉ । ସେ ଆମର ହୋଇ ରହୁ । ଜୀବନ ପକ୍ଷରେ , ଶ୍ରଦ୍ଧା ପକ୍ଷରେ ରହୁ । ଯେଉଁ

ସତ୍ୟ ମୁହୂର୍ତ୍ତଗୁଡ଼ିକ ଆସୁଛି, ସିଏ ସେହି ସତ୍ୟର ପଟରେ ରହିବ ବୋଲି ନିଃଶଙ୍କ ଭାବରେ ଘୋଷଣା କରୁ। ସିଏ ଆପଣା ଭିତରେ ଆପଣାକୁ ଯୋଡୁ, ଆପଣାର ବାହାରେ ସମସ୍ତଙ୍କ ସହିତ ଆପଣାକୁ ଯୋଡ଼ି ବାହାରୁ। ସେହି ଅନୁସାରେ ସେ ନିଜର ଶବ୍ଦ ଓ ଶୈଳୀକୁ ବାଛିନେଉ।

'ସାହିତ୍ୟ ଓ ଶ୍ଲୀଳତା' ପ୍ରବନ୍ଧରେ ଲେଖକ ଶ୍ଲୀଳତା ଓ ଅଶ୍ଲୀଳତାର ଏକ ଭିନ୍ନ କିନ୍ତୁ ଉପଯୁକ୍ତ ସଂଜ୍ଞା ପ୍ରଦାନ କରିଛନ୍ତି। ସମାଜରେ ସବୁକାଳେ ଯୌନ ସମ୍ଭୋଗକୁ ହିଁ ସାଧାରଣତଃ ବଡ଼ ଅଶ୍ଲୀଳତା ବୋଲି ଘୋଷଣା କରାଯାଇଛି। ଯେଉଁ କାର୍ଯ୍ୟଟିକୁ ସମାଜର ଅଧିକାଂଶ ତତସମର୍ଥ ମଣିଷ ସବୁଠାରୁ ଅଧିକ ପରିମାଣରେ କରିଛନ୍ତି ବା କରୁଛନ୍ତି, ତାହାକୁ ହିଁ ଶ୍ଲୀଳତାର ଶାସ୍ତ୍ରରେ ସବୁଠାରୁ ଅଧିକ ଅଶ୍ଲୀଳ କାର୍ଯ୍ୟ ବୋଲି କୁହାଯାଇଛି। ସ୍ୱାଭାବିକ ଯୌନବାସନା ପଛରେ ସର୍ବଦା ଏକ ପ୍ରୀତିବାସନା ରହିଥାଏ। ପ୍ରୀତିବାସନାକୁ ମନୋବିଜ୍ଞାନୀମାନେ ମନୁଷ୍ୟ ଭିତରେ ପ୍ରଚ୍ଛନ୍ନ ହୋଇ ରହିଥିବା ସମଗ୍ର ଜୀବନ ବାସନାର ପରିପ୍ରକାଶ ବୋଲି କହିଛନ୍ତି। ଭଲ ପାଇବାର ଅର୍ଥ ହେଉଛି ଆପଣାକୁ ଦେବା, ଆଉ କାହାର ହୋଇଯିବା, ଆପଣା ବୃତ୍ତର ବାହାରକୁ ଯାଇ ଶ୍ରଦ୍ଧାର ସହିତ କୌଣସି ଏକ ବୃହତ୍ତର ବସ୍ତୁ ଲାଗି ଜୀବନ ବଞ୍ଚିବା। ଏହି ଶ୍ରଦ୍ଧା, ସଂପ୍ରସାରଣ ଓ କାହା ପାଖରେ ଆପଣାକୁ ଦେଇ ଦେବାର କୋମଳ ବାସନାଟି ପ୍ରାୟ ସେହି ଗୋଟିଏ ପ୍ରକ୍ରିୟାଦ୍ୱାରା ହିଁ ପ୍ରେରିତ ହୋଇ ଦେହର ସ୍ତରକୁ ମଧ୍ୟ ଆନୀତ ହୋଇଆସେ। ସେତିକିବେଳେ 'ଲଭ୍' ଭିତରେ 'ସେକସ' ପ୍ରବେଶ କରେ। ସେଥିରେ ଅଧିକାଂଶ ସ୍ଥଳରେ ଆଦୌ କୌଣସି ଅପବିତ୍ରତା ନଥାଏ, କୌଣସି ଅନ୍ଧତା ମଧ୍ୟ ନଥାଏ। ବ୍ୟକ୍ତିଗତ ଓ ସାମୂହିକ ନାନା କାରଣ ଓ ଅକାରଣ ହେତୁ ଯେଉଁଠି ଜୀବନବାସନାକୁ ବହୁ ସଂକୋଚନକାରୀ ଆକଟ ଭିତରେ ରଖା ଯାଇଥାଏ, ସେହିଠାରେ ହିଁ ମଣିଷ ପାପିଷ୍ଠ ହେବାର ମୋହରେ ପଡ଼ି ଅସୁସ୍ଥ ହୁଏ, ଉପଦ୍ରବ କରିବାକୁ ଅସଲ ଉପଭୋଗ ବୋଲି ବିଶ୍ୱାସ କରେ। ସେ ଉଗ୍ର ହୁଏ ଏବଂ ତାର ଯୌନବାସନା ମୂଳ ପ୍ରୀତିବାସନାରୁ ବିଚ୍ଛିନ୍ନ ହୋଇ କେବଳ ଏକ ଅସୁସ୍ଥ ଜାନ୍ତବତା ବା ଜନ୍ତୁ ସ୍ୱଭାବ ଭିତରକୁ ଅଧୋଗତ ହୁଏ। ପୁଣି ଆପଣା ଜୀବନବାସନା କ୍ଷେତ୍ରରେ ଆଘାତ ପାଇଲେ ମନୁଷ୍ୟ ପ୍ରୟୋଜନରେ ପଡ଼ି ନିଜ ଭିତରେ ଥିବା ଅସଲ ମଣିଷଟି ବିରୁଦ୍ଧରେ ବିଦ୍ରୋହ କରେ ଏବଂ ନାନାଭାବେ ହିଂସ୍ର ଓ ଜ୍ୱରଗ୍ରସ୍ତ ଭାବରେ କାମାତୁର ହୁଏ। ଆତୁରତାର ଫାଶରେ ପଡ଼ି କେତେକ ଲୋକ ଜୀବନ ଭିତରୁ ପଳାୟନ କରି ପଇସା, କ୍ଷମତା ଏବଂ ଯଶ ପଛରେ ଗୋଡ଼ାଇଥାନ୍ତି। ସେମାନେ କାହାରି ହୋଇପାରନ୍ତି ନାହିଁ। ସେତେବେଳେ ସେମାନେ ଏବଂ ସେମାନଙ୍କର କାର୍ଯ୍ୟକଳାପ ଅଶ୍ଲୀଳ ହୋଇଯାଆନ୍ତି।

ସ୍ୱାଭାବିକ ଯୌନଲାଳସା ଅଶ୍ଲୀଳ ନୁହେଁ। ପ୍ରବଳ ଅର୍ଥ, କ୍ଷମତା ବା ଯଶ ଲାଳସା ହେଉଛି ପ୍ରକୃତ ଅଶ୍ଲୀଳତା। ଲେଖକଙ୍କ ମତରେ ଯୌନଗତ ତଥାକଥିତ ଅଶ୍ଲୀଳତା ବିଷୟରେ ଯେତେ ଅଧିକ ଲେଖା ଯାଉଛି ବା ଯାଉଛି, ଅର୍ଥାତୁରତା ଏବଂ କ୍ଷମତାତୁରତାର ବର୍ବରତାଗୁଡ଼ାକ ଅଶ୍ଲୀଳ ବୋଲି ଘୋଷଣା କରି ସେତିକି ଲେଖା ହୋଇପାରିନାହିଁ। ସଂସାରରେ ଅଧିକ ମଣିଷ ଦାରିଦ୍ର୍ୟ ଭିତରେ ପରିତ୍ୟକ୍ତ ଓ ସମ୍ମାନହୀନ ହୋଇ

ରହିଥିବାବେଳେ ଯେଉଁମାନେ ଅଧିକରୁ ଅଧିକ କମାଇ ରଖିବାର ଔଦ୍ଧତକୁ ହିଁ ଜୀବନର ପରମ ପୁରୁଷାର୍ଥ ବୋଲି ବିଶ୍ୱାସ କରନ୍ତି, ସେମାନେ ହେଉଛନ୍ତି ଅଶ୍ଳୀଳ।

"ବର୍ତ୍ତମାନର ସାହିତ୍ୟ ଭିତରେ ରହି ଯିଏ ତଥାପି ଆଗକୁ ଅନାଇ ବହୁ ଦୂରଯାଏ ଦେଖିପାରୁଥିବ, ସଂସାରରେ ମଣିଷର ଜୀବନ କହିଲେ ଯିଏ ବହୁସୂତ୍ରୀ ପାରସ୍ପରିକତାକୁ ବୁଝିଥିବ, ଯିଏ ନିଜ ବାହାରେ ଏବଂ ନିଜ ଭିତରେ କପଟଗୁଡ଼ାକୁ ଅତିକ୍ରମ କରିବାକୁ ହିଁ ସୁସ୍ଥ ଭାବରେ ବାଟ ଚାଲିବାର ଅସଲ ଉପାୟ ଅନୁଭବ କରୁଥିବ, ସେହି ସତକୁ ସତ ମନେକଲେ ଅଶ୍ଳୀଳତାକୁ ଏକ ଅନ୍ୟ ପ୍ରସ୍ଥ ଦେଇ କଳନା କରିବାକୁ ସମର୍ଥ ହୋଇ ପାରିବ"(ତତ୍ରୈବ: ପୃ.୧୨୫-୨୬)।

ସାହିତ୍ୟ ସମାଲୋଚନା ପରି ସାହିତ୍ୟଗ୍ରନ୍ଥ ସମୀକ୍ଷା କ୍ଷେତ୍ରରେ ସେ ନୂତନ ରୀତିର ପ୍ରବର୍ତ୍ତକ। ଓଡ଼ିଆ ଓ ଇଂରାଜୀ ଭାଷାରେ ଲିଖିତ ଶତାଧିକ ଗ୍ରନ୍ଥର ସେ ସମୀକ୍ଷା କରିଛନ୍ତି। ସମୀକ୍ଷାଗୁଡ଼ିକ 'ଗ୍ରନ୍ଥ-ମନ୍ଥନ' ନାମକ ଏକ ସଂକଳନରେ ପତ୍ରସ୍ଥ ହୋଇଛି। ତାଙ୍କ ମନ୍ଥନ ଦୃଷ୍ଟି - ବସ୍ତୁନିଷ୍ଠ, ଆନ୍ତର୍ବିଦ୍ୟାଭିତ୍ତିକ ଓ ବିଶ୍ଳେଷଣାତ୍ମକ। ଗ୍ରନ୍ଥମାନଙ୍କୁ ସେ ଶ୍ରଦ୍ଧାରେ ପଢ଼ନ୍ତି। ଜଣେ ସହୃଦୟ ପରି ସେମାନଙ୍କ ଭିତରକୁ ଭେଦନ୍ତି। ଗ୍ରନ୍ଥକର୍ତ୍ତାଙ୍କୁ ଆଡ଼ ଆଖିରେ ବି ଅନିଷା କରନ୍ତିନି। ମାତ୍ର ଗ୍ରନ୍ଥ ବିଷୟରେ କହିବାବେଳେ ଜଣେ ଅସଲ ସହୃଦୟ ପରି ଆପଣା ଅନୁଭବ, ଅଧ୍ୟୟନ ଓ ବିଚାରକୁ ଆଧାର କରି ଗ୍ରନ୍ଥସ୍ଥ ବିତ୍ତକୁ ଏତେ ମୋହମୁକ୍ତ ଭାବରେ ବୀପଣିସ୍ଥ କରିଦିଅନ୍ତି ଯେ, ଗ୍ରାହକମାନେ ସେହି ଗ୍ରନ୍ଥ ଓ ତାହାର କର୍ତ୍ତା - ଉଭୟଙ୍କ ବର୍ତ୍ତମାନକୁ ଅନୁଭବ କରନ୍ତି। ଆପଣା ବିଚାରର ସ୍ୱଚ୍ଛ ପ୍ରକାଶନରେ ସେ ସାମାନ୍ୟ ଉପ୍ରୋଧ ରଖନ୍ତି ନାହିଁ। ସମଗ୍ରକୁ ଆଲୋକିତ କରନ୍ତି। ତେଣୁ ତାଙ୍କ ମନ୍ଥନ-ସମ୍ଭୂତ ନିର୍ଯ୍ୟାସକୁ ପଢ଼ିଲା ବେଳେ ମନେ ହୁଏ, ତାହା ମୂଳ ଗ୍ରନ୍ଥରେ ଅଭିବ୍ୟକ୍ତ ବିଭବର ସତେ ଯେପରି ଅନ୍ୟଏକ ଅନୁପମ ଅନୁସୃଜନ। ମନ୍ଥନକାରୀ ଜଣେ ସ୍ରଷ୍ଟା ଅଥବା ତା' ସୃଷ୍ଟିର ପ୍ରଶଂସକ କି ନିନ୍ଦୁକ ନୁହେଁ, ଉଭୟଙ୍କ ଆତ୍ମାକୁ ଭେଦିଥିବା ଜଣେ ମହାନୁଭବ ଗ୍ରାହକ, ସହୃଦୟ, ମଧ୍ୟସ୍ଥ ଚିତ୍ତରଞ୍ଜନ ତାହାହିଁ ଯେପରି ପ୍ରତିପାଦନ କରିଛନ୍ତି। ବିଦ୍ୟା-ଭାଣ୍ଡ ମନ୍ଥନ ପରି ମନ୍ଥନ ପରି ଏକ ବିପଦଜନକ କାର୍ଯ୍ୟକୁ ସନ୍ନ୍ୟାସୀର ସତକର୍ମ ଭାବରେ ବିବେଚନା କରିଛନ୍ତି। ମିତ୍ରଦୃଷ୍ଟି ହୋଇଛି ତାଙ୍କ ମାନସ ମନ୍ଥନର ମାନଦଣ୍ଡ। ଏଥି ଯୋଗୁଁ ସେ ଅବଶ୍ୟ ଆପଣା ପାଇଁ ବହୁ ଅମିତ୍ର ଅମଳ କରିଛନ୍ତି। ମାତ୍ର ନିଜ ଅନୁଭବ ଓ ବିଚାରର ସ୍ୱଚ୍ଛ ଉଚ୍ଚାରଣରେ ସାମାନ୍ୟତମ ଦୈତ୍ୟଭାବ ପ୍ରକାଶ କରିନାହାନ୍ତି। ଏବଂ, ବିଦ୍ୟାର ଆୟତନ ଓ ବିଦ୍ୟାବନ୍ତର ବିଚାର ତଥାପି ଯେ ଅମଥିତ, ଅତ୍ୟନ୍ତ ଶ୍ରଦ୍ଧାର ସହିତ ଏହା ସେ ସ୍ୱୀକାର କରିଛନ୍ତି।

ଚିତ୍ତରଂଜନ ଓଡ଼ିଆ ବ୍ୟତୀତ ଇଂରାଜୀ ଭାଷାରେ ମଧ୍ୟ ବହୁ ଗ୍ରନ୍ଥ ରଚନା କରିଛନ୍ତି। Studies on Medieval Religion and Literature of Orissa (1951), Glimpses of Oriya Literature (1986) ଇଂରାଜୀରେ ଲିଖିତ ଦୁଇଟି ଭିନ୍ନସ୍ୱାଦର ଗ୍ରନ୍ଥ। ଏଗୁଡ଼ିକୁ ଆମେ ତାଙ୍କ ମଧ୍ୟଯୁଗୀୟ "ଓଡ଼ିଆ ସନ୍ଥ ସାହିତ୍ୟ" ଓ "ଓଡ଼ିଆ ସାହିତ୍ୟର ଇତିହାସ : ସାମାଜିକ ଓ ସାଂସ୍କୃତିକ"ର ଇରାଜୀ ଭାବାନ୍ତର, ଅନୁବାଦ ନୁହେଁ ବୋଲି କହିପାରିବା। Balaram Das I Bhakta Charan ପୁସ୍ତକ ଦୁଇଟି ମଧ୍ୟଯୁଗୀୟ

କବିମାନଙ୍କ ଜୀବନ ଓ ସାହିତ୍ୟର ମୂଲ୍ୟାୟନ, ମନୋଗ୍ରାଫ। ଉଭୟ ବଳରାମ ଓ ଭକ୍ତ ଚରଣ ମଧ୍ୟଯୁଗୀୟ ଓଡ଼ିଆ ସାହିତ୍ୟର ସାମନ୍ତବାଦୀ ସ୍ରୋତରେ ଯେ କେତେ ଭାବରେ ବ୍ୟତିକ୍ରମ, ଚିତ୍ତରଞ୍ଜନ ସେମାନଙ୍କର ଜୀବନାୟନ କାଳରେ ଏହାହିଁ ପ୍ରତିପାଦନ କରିଛନ୍ତି।

ଚିତ୍ତରଞ୍ଜନଙ୍କ ସାହିତ୍ୟ ସମାଲୋଚନା ଆଧୁନିକ ଯୁଗର ସମାଲୋଚନାଠାରୁ ଯଥେଷ୍ଟ ଭିନ୍ନ। ଆଧୁନିକ ଯୁଗ ବିଶେଷଜ୍ଞମାନଙ୍କର ଯୁଗ ଏବଂ ଏଯୁଗର ସମାଲୋଚକମାନେ ମଧ୍ୟ ବିଶେଷଜ୍ଞ, ସମାଲୋଚନା ବିଶେଷଜ୍ଞ। ନିଜ ନିଜର ସମାଲୋଚନା ପଦ୍ଧତିରେ ବିଶେଷ ଦକ୍ଷତା ଅର୍ଜନ କରିଥିବା ଏହି ସମାଲୋଚକମାନଙ୍କର ସାମଗ୍ରିକ ଦୃଷ୍ଟିଭଙ୍ଗୀ ନଥାଏ। ସେମାନେ ସାହିତ୍ୟକ ଏବଂ ପାଠକମାନଙ୍କ ମଧ୍ୟରେ ମଧ୍ୟସ୍ଥ ଭୂମିକା ଗ୍ରହଣ ନକରି ଉଭୟଙ୍କଠାରୁ ବହୁଦୂରରେ ନିଜ ନିଜକୁ ଅବସ୍ଥାପିତ କରିଥାନ୍ତି। ବିଭିନ୍ନ ଅମର କୃତିରେ ପ୍ରତିଫଳିତ ମାନବୀୟ ଆଦର୍ଶକୁ ପାଠକ ସମ୍ମୁଖକୁ ଆଣି ସେମାନଙ୍କ ରୁଚିକୁ ମାର୍ଜିତ କରିବା ପରିବର୍ତ୍ତେ ନିଜର ସମାଲୋଚନୀୟ ଆଦର୍ଶକୁ ବରଂ ଲଦି ଦିଅନ୍ତି। ଶ୍ରଦ୍ଧାଯୁକ୍ତ ଓ ସଂବେଦନଶୀଳ ହୋଇ ସେମାନେ କୌଣସି କୃତିକୁ ଅଧ୍ୟୟନ କରନ୍ତିନାହିଁ। ସେମାନେ ଖୋଜନ୍ତି କୃତିର ଦୋଷ ଦୁର୍ବଳତା। ସୃଷ୍ଟି ଭିତରୁ ଲୁକ୍କାୟିତ ଅର୍ଥ ଖୋଜନ୍ତି, ଯାହାକୁ ସ୍ରଷ୍ଟା ମଧ୍ୟ ଜାଣିନାହିଁ। ଉଦ୍ଦେଶ୍ୟ ହେଉଛି, ସ୍ରଷ୍ଟାର ସ୍ଥିତିକୁ ନିଜ ସ୍ଥିତିଠାରୁ ନିମ୍ନରେ ରଖିବା। ସେଇଥିପାଇଁ ଆଜିର ସମାଲୋଚକମାନେ ଅଦ୍‌ଭୁତ ଭାବରେ ଆତ୍ମକୈନ୍ଦ୍ରିକ ହୋଇ ପଡ଼ିଛନ୍ତି। ନିଜ ଉପରେ ଯେତେ ଗୁରୁତ୍ୱ ଦେଇଛନ୍ତି, ନିଜ ଅଧ୍ୟୟନ ପରିସର ଭିତରକୁ ଆଣୁଥିବା କଳାକୃତି ଉପରେ ସେତେ ଗୁରୁତ୍ୱ ଦେଇନାହାନ୍ତି। ନିଜର ନୀତି, ନିୟମ ଓ ଆଦର୍ଶକୁ କଳାକୃତି ଉପରେ ଲଦି ଦେଉଛନ୍ତି। ସମାଲୋଚନାର ଏହି ମାଦଦଣ୍ଡ ଓ ପରିଭାଷାକୁ ସମସ୍ତେ ବୁଝିପାରୁ ନଥିବାରୁ ଆଜିର ସମାଲୋଚକ ସମଧର୍ମୀ ସମାଲୋଚକମାନଙ୍କୁ ସମ୍ବୋଧନ କରି ସେମାନଙ୍କର ପ୍ରଣୟପ୍ରାର୍ଥୀ ହେଉଛନ୍ତି। ସମାଲୋଚନା ପରିଭାଷାରେ ସେମାନେ ହେଉଛନ୍ତି ଏକାଡ଼େମିକ କ୍ରିଟିକ୍‌ସ।

ଚିତ୍ତରଞ୍ଜନଙ୍କ ସମାଲୋଚନା ତାଙ୍କ ସାହିତ୍ୟିକ ଭାବାଦର୍ଶର ପ୍ରୟୋଗଶାଳା। ଏହା ମାନବକୈନ୍ଦ୍ରିକ ଏବଂ ସାମାଜିକ ପ୍ରତବଦ୍ଧତାର ହିଁ ପ୍ରତିଫଳନ। କେଉଁ କୃତି କେଉଁ ଭାବରେ ଏବଂ କେତେ ପରିମାଣରେ ସାଧାରଣ ମଣିଷ ସହିତ ସଂପର୍କିତ, ତାହା ଦେଖାଇବା ତାଙ୍କ ସମାଲୋଚନାର ଆଦର୍ଶ। ତାଙ୍କର ବ୍ୟାଖ୍ୟାନ ରୀତି ମଧ୍ୟ ସହଜ, ବୋଧଗମ୍ୟ ଓ ସ୍ୱାଭାବିକ। ଅନୁଶୀଳନ ଉଦ୍ଦେଶ୍ୟରେ ସେ ନିର୍ବାଚନ କରିଥିବା ଗ୍ରନ୍ଥ ଓ ପ୍ରସଙ୍ଗ ମଧ୍ୟ ଭାବାଦର୍ଶ ଅନୁରୂପ। ସନ୍ଥସାହିତ୍ୟ, ପଞ୍ଚସଖାଧର୍ମ, ମହିମାଧର୍ମ ଉପର୍ଯ୍ୟୁକ୍ତ ଆଦର୍ଶର ଉଦାହରଣ। ପୁନଶ୍ଚ ତାଙ୍କ ସମାଲୋଚନା ଶୈଳୀ ସୂଚନାଧର୍ମୀ ଅଥବା ସମ୍ବାଦଧର୍ମୀ ନୁହେଁ। କୌଣସି କୃତିକୁ ଏକ ନିର୍ଦ୍ଦିଷ୍ଟ ଛାଞ୍ଚରେ ପକାଇ ତାହାର ବିବିଧ ଗୁଣ ଓ ବାର୍ତ୍ତା ପ୍ରତି ଉଦାସୀନ ରହିବା ମଧ୍ୟ ତାଙ୍କ ବିଚାରର ଆଦର୍ଶ ହୋଇନାହିଁ। କୃତି ଅଥବା ପ୍ରସଙ୍ଗର ବିଶେଷତାକୁ ପ୍ରଥମେ ନିଜେ ବୁଝି ପରେ ପାଠକଙ୍କୁ ବୁଝାଇବାକୁ ସାଧନା କରିଛନ୍ତି। ଆପଣା ଅବବୋଧ ମାଧ୍ୟମ ଦେଇ ସେ ସାରଳା, ବଳରାମ, ଅଚ୍ୟୁତ, ଜଗନ୍ନାଥ, ଅରକ୍ଷିତ, ଭୀମଭୋଇ ଏବଂ ଗଙ୍ଗାଧରଙ୍କ ରଚନାରେ ପ୍ରତିଫଳିତ ଦର୍ଶନ ଓ ମେଟାଫିଜିକ୍‌ସର ଜଟିଳ ତତ୍ତ୍ୱକୁ ବୁଝିଛନ୍ତି ଏବଂ ଅନୁରୂପ ଶବ୍ଦରେ ବ୍ୟାଖ୍ୟା କରିଛନ୍ତି। ଏବଂ, ବ୍ୟାଖ୍ୟାନ କାଳରେ

ମନୋବିଜ୍ଞାନ, ସମାଜବିଜ୍ଞାନ, ଧର୍ମ, ଦର୍ଶନ, ସଂସ୍କୃତି ଆଦି ବିଦ୍ୟାକୁ ସୂତ୍ରାୟିତ କରିଛନ୍ତି। ସାହିତ୍ୟ ଯେ ସକଳ ବିଦ୍ୟା ସହିତ ସୂତ୍ରାୟିତ, ସାହିତ୍ୟର ଘର ଯେ ଦକ୍ଷିଣଦୁଆରୀ - ଚିତ୍ତରଞ୍ଜନ ଆପଣାର ସମାଲୋଚନାରେ ତାହାହିଁ ପ୍ରତିପାଦନ କରିଛନ୍ତି।

ତେବେ ଚିତ୍ତରଞ୍ଜନଙ୍କ ବ୍ୟକ୍ତବ୍ୟ ଶୈଳୀ ଅନେକ ସମୟରେ ପୁନରାବୃତ୍ତିରେ ଭାରାକ୍ରାନ୍ତ। ତାଙ୍କ ଦୃଷ୍ଟିଭଙ୍ଗୀରେ ବିଚାରଗତ ଅଗ୍ରଗତି, ବିବର୍ତ୍ତନ ଓ କ୍ରମବିକାଶ ପ୍ରାୟତଃ ଅନୁଭୂତ ହୁଏନାହିଁ। ସାଧାରଣତଃ , ବୟସ ବଢ଼ିବା ସଂଗେ ସଂଗେ ବ୍ୟକ୍ତିର ଦୃଷ୍ଟିକୋଣ ମଧ୍ୟ ବଦଳିଯାଏ। ସେ ଏକଦା ଯାହାକୁ ନିଶ୍ଚିତ ବୋଲି ଭାବୁଥାଏ, ତାକୁ ପ୍ରତ୍ୟାଖ୍ୟାନ, ପରିବର୍ତ୍ତନ ଅଥବା ପରିମାର୍ଜନ ପ୍ରତ୍ୟାସୀ ହୋଇଥାଏ। ଚିତ୍ତରଞ୍ଜନ ଅନୁରୂପ ଆଦର୍ଶର ଜଣେ ବ୍ୟତିକ୍ରମ। ତାଙ୍କ ସମାଲୋଚନୀୟ ବିଚାର ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ମାବକକୈନ୍ଦ୍ରିକ, ସମାଜତାତ୍ତ୍ୱିକ ଏବଂ ମନସ୍ତାତ୍ତ୍ୱିକ (ଅବଶ୍ୟ ସେ ନିଜକୁ ଜ୍ଞାତସାରରେ କୌଣସି ନିର୍ଦ୍ଦିଷ୍ଟ ଶ୍ରେଣୀର ଅନ୍ତର୍ଭୂକ୍ତ କରିବା ପାଇଁ କୌଣସି କାଳରେ ଚାହିଁ ନାହାନ୍ତି)। ସାହିତ୍ୟ ସାଧାରଣ ମଣିଷର କଥା କହିବ, ସାଧାରଣ ମଣିଷ ପାଇଁ ଲେଖାଯିବ, ସମାଜ ପରିବର୍ତ୍ତନର ବିକାଶ ପ୍ରକ୍ରିୟାରେ ଅଣୁଘଟକ ହେବ - ଏହା ହୋଇଛି ତାଙ୍କ ସାହିତ୍ୟ -ସମାଲୋଚନାର ଭାବାଦର୍ଶ।

ସାହିତ୍ୟର ନାନ୍ଦନିକ ଅବବୋଧକୁ ଯେ ପ୍ରାୟତଃ ସମାଲୋଚନାର ଅନ୍ତର୍ଭୁକ୍ତ କରିନାହାନ୍ତି, ଯଦିଚ ତାଙ୍କ ସମାଲୋଚନା ବେଳେ ବେଳେ କାବ୍ୟିକ ଉତ୍‌କର୍ଷତାରେ ପାଠକକୁ ଆନନ୍ଦ ବିଭୋର କରେ। ସାହିତ୍ୟକୃତିଗୁଡ଼ିକର ଫର୍ମ ଓ ପ୍ରସାଧନ ( ଯାହା ଭାବ ସହିତ ସମ୍ମିଳିତ ହୋଇ ପାଠକକୁ ଆନନ୍ଦ ଦିଏ) କୁ ସେ ଭୁଲି ଯାଇଛନ୍ତି।

ସାହିତ୍ୟ ସମାଜର ହିତପାଇଁ ଉଦ୍ଦିଷ୍ଟ ହେଲେ ମଧ୍ୟ ଏହା ସୌନ୍ଦର୍ଯ୍ୟବୋଧ ସହିତ ସଂପର୍କିତ। ସୌନ୍ଦର୍ଯ୍ୟବୋଧ ଏକ ଚିରନ୍ତନ ଅନୁଭବ। ଏହି ଅନୁଭବକୁ ପ୍ରକାଶ କରିବାକୁ ଯାଇ ମଣିଷ କଳାକୃତିମାନ ସୃଷ୍ଟିକରିଥାଏ। ଏହା ରସାତ୍ମକ ଆନନ୍ଦ ପରିବେଷଣ କରେ। ଚେତନାକୁ ଉଚ୍ଚକିତ କରେ ଏବଂ ଏହାର ଅନୁଭବ ତୀବ୍ରତାର କାରଣ ହୁଏ। ଯାହା ଆନନ୍ଦ ଦିଏ, ତାହା ଇନ୍ଦ୍ରିୟ ପର୍ଯ୍ୟବେଶିତ ନୁହେଁ। ଲୋକୋତ୍ତର କଳାର ଆଦର୍ଶ ହେଉଛି ମଣିଷକୁ ଆନନ୍ଦ ଓ ଶିକ୍ଷାଦେବା ଏବଂ ଚେତନାକୁ ଉନ୍‌ମିଳିତ କରିବା। ବେଦ ଭଳି ପ୍ରାଚୀନ ଗ୍ରନ୍ଥ, ରାମାୟଣ ଓ ମହାଭାରତ ଭଳି କାଳଜୟୀ କାବ୍ୟ ଏବଂ ହୋମର, କାଳିଦାସ, ସେକ୍‌ସିପିଅର, ମିଲ୍‌ଟନ୍, ଗେଟେଙ୍କ ଭଳି ସାହିତ୍ୟିକମାନଙ୍କର କୃତିରେ ଏହା ବିଶେଷ ପରିଲକ୍ଷଣୀୟ। ସେମାନେ ସାଧାରଣ ମଣିଷର ପାର୍ଥିବ ସୁଖଦୁଃଖ କଥା ମାର୍କସୀୟ ଆଦର୍ଶରେ କହିନଥିଲେ ମଧ, ମଣିଷର ଚିରନ୍ତନ ଆବେଗ ଓ ଅନୁଭବକୁ କଳାତ୍ମକ ରୀତିରେ କହିଛନ୍ତି। ଚିତ୍ତରଞ୍ଜନ ଆପଣାର ସାହିତ୍ୟ ସମାଲୋଚନାରେ ସାହିତ୍ୟର ଏହି ନିନ୍ଦିନିକ ଅବବୋଧକୁ ପ୍ରାଧାନ୍ୟ ଦେଇନାହାନ୍ତି।

ଏହା ସତ୍ତ୍ୱେ ଚିତ୍ତରଞ୍ଜନଙ୍କ ସମୀକ୍ଷାଦୃଷ୍ଟି ଓଡ଼ିଆ ସମାଲୋଚନା କ୍ଷେତ୍ରରେ ଅନନ୍ୟ। ତାଙ୍କ ସମାଲୋଚନା ସାହିତ୍ୟରେ ପ୍ରତଫଳିତ ମାନବପ୍ରୀତି, ସମାଜିକ ପ୍ରତିବଦ୍ଧତା, ସାହିତ୍ୟିକ ସମ୍ବେଦନଶୀଳତା, ବୋଧି, ଜିଜ୍ଞାସା ପାଠକଙ୍କୁ ବିସ୍ମିତ କରେ। ଏହା ସବୁଶ୍ରେଣୀର ପାଠକମାନଙ୍କ ପାଇଁ ଉଦ୍ଦିଷ୍ଟ। ଏହା ସମାଲୋଚକୀୟ ଭୋଜବାଜୀ ଓ ବୌଦ୍ଧିକ ବିଳାସରେ ବିକୃତାୟିତ ନୁହେଁ। ତାଙ୍କ ଭାଷା ଲୋକ ଓ ଶିଷ୍ଟଜନ କଥିତ ଶବ୍ଦର କଳାତ୍ମକ ସମବାୟ। ତାଙ୍କ ବିଚାର ଯୁକ୍ତିନିଷ୍ଟ, ମିତ୍ରଭାବାଶ୍ରୟୀ; ତେଣୁ ହୃଦୟଗ୍ରାହୀ। ତାଙ୍କ ଅନ୍ତର୍ଦୃଷ୍ଟି ଆମ ସମୟର

ସମାଲୋଚନା - ଅରଣ୍ୟ ଏବଂ ଓଡ଼ିଶା ଭୂମିର ସମାଲୋଚନା ମରୁଭୂମିର ବାହାରେ ଥିବା ଏକ ସୁରମ୍ୟ - ସମାଲୋଚନା-ମୂଳକର ଧାରଣା ଦିଏ।

**ସହାୟକ ଗ୍ରନ୍ଥସୂଚୀ**


ଦାଶ ଗୌରାଙ୍ଗ ଚରଣ, ସଂପାଦିତ (୧୯୯୧) **ଆତ୍ମକଥନିକା**, ନରସିଂହପୁର, ହଂସ ପ୍ରକାଶନୀ

ଦାସ, ଚିତ୍ତରଞ୍ଜନ (୧୯୯୧,୧୯୫୨), **ଓଡ଼ିଶାର ମହିମାଧର୍ମ**, କଟକ, ଧର୍ମଗ୍ରନ୍ଥ ଷ୍ଟୋର

------(୧୯୯୭/୧୯୫୧), **ଅଚ୍ୟୁତାନନ୍ଦ ଓ ପଞ୍ଚସଖା - ଧର୍ମ**, କଟକ: ଏସ୍ ବି ପବ୍ଲିକେଶନସ୍

------୧୯୮୨, **ସନ୍ଥ (ଭକ୍ତି) ସାହିତ୍ୟ**, ଭୁବନେଶ୍ୱର, ଓଡ଼ିଶା ସାହିତ୍ୟ ଏକାଡେମୀ

------୧୯୮୧, **ଓଡ଼ିଆ ସାହିତ୍ୟର ସଂସ୍କୃତିକ ବିକାଶଧାରା**, ଭୁବନେଶ୍ୱର : ଓଡ଼ିଶା ରାଜ୍ୟ ପାଠ୍ୟପୁସ୍ତକ ପ୍ରଣୟନ ଓ ପ୍ରକାଶନ ସଂସ୍ଥା

------୧୯୯୩, **ଓଡ଼ିଆ ସାହିତ୍ୟର ଇତିହାସ : ସାମାଜିକ ସଂସ୍କୃତିକ ଭିତ୍ତିଭୂମି** କଟକ: ଶବ୍ଦାଲୋକ

------୧୯୮୯, **ସାହିତ୍ୟ ଓ ..................**, ବ୍ରହ୍ମପୁର, କଟକ : ପୁସ୍ତକ ଭଣ୍ଡାର

Abrams, M.H. 1993, *A Glossary of Literary Terms*, Sixth Edition,Bangalore : Prism Books Pvt Ltd.

Hbrecht Miltoric. James H. Barnett and Mason Grift : eds 1982,*The Socialogy of Art and Literature* : *A Reader,* London : Gerald Duck Worth & Company Limited

Taine. H. 1886,*History of English Literature* in, Albereht, Miltion (ed.) *Sociology of Art and Literature : A Reader.*


**ଚିତ୍ତ ରଞ୍ଜନ ଦାସଙ୍କ ପ୍ରକାଶିତ ସମାଲୋଚନା ପୁସ୍ତକ**

ବଳରାମ ଦାସଙ୍କ ଗୀତା, ସଂପାଦନା (୧୯୫୦), ବିଶ୍ୱଭାରତୀ : ଶାନ୍ତିନିକେତନ

*Studies on Medieval Religion and Literature of Orissa*,(1951),ବିଶ୍ୱଭାରତୀ : ଶାନ୍ତିନିକେତନ

**ଅଚ୍ୟୁତାନନ୍ଦ ଓ ପଞ୍ଚଶଖା ଧର୍ମ** (୧୯୫୧), ବିଶ୍ୱଭାରତୀ: ଶାନ୍ତିନିକେତନ

**ଓଡ଼ିଶାର ମହିମାଧର୍ମ** (୧୯୫୧), ବିଶ୍ୱଭାରତୀ : ଶାନ୍ତିନିକେତନ

**ସମାଜ ଗବେଷଣାର ପଦ୍ଧତି** (୧୯୭୮), ଭୁବନେଶ୍ୱର : ରାଜ୍ୟ ପାଠ୍ୟପୁସ୍ତକ ପ୍ରଣୟନ ସଂସ୍ଥା

**ଓଡ଼ିଆ ସାହିତ୍ୟର ସାଂସ୍କୃତିକ ବିକାଶ ଧାରା** (୧୯୮୧), ଭୁବନେଶ୍ୱର : ରାଜ୍ୟ ପାଠ୍ୟପୁସ୍ତକ ପ୍ରଣୟନ ସଂସ୍ଥା

**ସନ୍ଥ (ଭକ୍ତି) ସାହିତ୍ୟ** (୧୯୮୨), ଭୁବନେଶ୍ୱର : ଓଡ଼ିଶା ସାହିତ୍ୟ ଏକାଡେମୀ

**Balaram Das** (1982), New Delhi, Sahitya Akademi
ଓଡ଼ିଆ ସାହିତ୍ୟର ଇତିହାସ : ସାମାଜିକ ଓ ସାଂସ୍କୃତିକ ପୃଷ୍ଠଭୂମି (୧୯୮୩), କଟକ, ଶବ୍ଦଲୋକ
**A Glimpses into Oriya Literature** (1986), Orissa Sahitya Academy
ସାହିତ୍ୟ ଓ ....... (୧୯୮୯) କଟକ, ପୁସ୍ତକ ଭଣ୍ଡାର
**Bhakta Charan Das** (1989), New Delhi, Sahitya Akademi
ଗ୍ରନ୍ଥ ମନ୍ଥନ (୧୯୮୬) କଟକ, ସୁହୃତ୍ ପ୍ରକାଶନୀ
ଦେଖୁ ଦେଖୁ କେବା ସହୁ (୨୦୦୨) ଭୁବନେଶ୍ୱର : ଶିକ୍ଷା ସନ୍ଧାନ
ଅରକ୍ଷିତ ଓ ମହୀମଣ୍ଡଳ ଗୀତା (୧୯୯୬) ଭୁବନେଶ୍ୱର : ଓଡ଼ିଶା ସାହିତ୍ୟ ଏକାଡେମୀ



୭ ନଭେମ୍ବର, ୧୯୨୭ - ୭ ମାର୍ଚ୍ଚ ୨୦୦୫

## ପ୍ରତୀକବାଦୀ ସମାଲୋଚକ ଚିନ୍ତାମଣି ବେହେରା

ବସନ୍ତ କୁମାର ପଣ୍ଡା

ସତ୍ୟନିଷ୍ଠା ସହ ସମାଲୋଚକର ରସବୋଧର ନିର୍ମଳ ଓ ଘନିଷ୍ଠ ସଂପର୍କ ବିଦ୍ୟମାନ। ବିଭିନ୍ନ ସାହିତ୍ୟରେ ବିଚରଣ ଓ ରସଚର୍ଚ୍ଚା ଫଳରେ ସମାଲୋଚକର ମନ ହୁଏ ଉଦାର ଓ ସମୃଦ୍ଧ। ରସବୁଦ୍ଧି ଓ ଯୁକ୍ତିବୁଦ୍ଧି ଉଭୟର ସମ୍ମିଶ୍ରଣ ଫଳରେ ତା'ର ମନୋଭୂମି ହୁଏ ଦୀପ୍ତ ଓ ପରିପୁଷ୍ଟ। ତେଣୁ ଉପଯୁକ୍ତ ସମାଲୋଚକ ହେବା ପାଇଁ ପ୍ରସ୍ତୁତି ସର୍ବଦା ପ୍ରୟୋଜନ। ଏଥିପାଇଁ ଅଧ୍ୟୟନ, ଚିନ୍ତନ, ବିଚାର ଓ ସୌନ୍ଦର୍ଯ୍ୟର ଅନୁଶୀଳନ ସହ ତାଙ୍କୁ ଜ୍ଞାନ ଅନୁଶୀଳନ କରିବାକୁ ପଡିବ।

– ସମାଲୋଚକର ଭୂମିକା, ଚିନ୍ତାମଣି ବେହେରା

ଚିନ୍ତାମଣି ବେହେରା ଜଣେ ଭାବୟିତ୍ରୀ ପ୍ରତିଭା। କବିତା ତାଙ୍କର ସ୍ୱତନ୍ତ୍ର ଅଧିତ କ୍ଷେତ୍ର। ଆଧୁନିକ ଓଡ଼ିଆ ସାହିତ୍ୟ ଇତିହାସରେ ଅନ୍ୟତମ ପ୍ରତିତାବାଦୀ କବି। ଏବଂ, କବି-ସମାଲୋଚକ। କବିତା ସହିତ କ୍ଷୁଦ୍ରଗଳ୍ପ, ପ୍ରବନ୍ଧ ଓ ନାଟକ ଆଦି ଅନେକ ବିଷୟରେ ମୌଳିକ ଆଲୋଚନା ଲେଖି ସେ ଓଡ଼ିଆ ସମାଲୋଚନା ସାହିତ୍ୟକୁ ସମୃଦ୍ଧ କରିଛନ୍ତି। ବହୁ ଶାସ୍ତ୍ରଦର୍ଶିତା ସହିତ ସୂକ୍ଷ୍ମ ବିଚାରବୋଧ, କୌତୁକାନ୍ୱିତ ଅନ୍ୱେଷା ସହିତ ବୈଦଗ୍ଧ୍ୟ, ବିପୁଳ ଜୀବନ-ଜିଜ୍ଞାସା ସହିତ ନାନ୍ଦନିକ ଦୃଷ୍ଟିର ସେ ସମୀକରଣ। ମନେହୁଏ ଓଡ଼ିଆ ସମାଲୋଚନା ସାହିତ୍ୟରେ ନୀଳକଣ୍ଠଙ୍କ ପାଣ୍ଡିତ୍ୟ, ମାନସିଂହଙ୍କ କବିତ୍ୱ, ସୁରେନ୍ଦ୍ରଙ୍କ କଥାଗୁମ୍ଫନଶୈଳୀ ଓ ନଟବରଙ୍କ ଐତିହାସିକ ତଥ୍ୟବିଚାରକୁ ସାମଗ୍ରିକ ଭାବରେ ଆତ୍ମସାତ କରି ସର୍ଜନଶୀଳ ସମାଲୋଚନା ଶୈଳୀ ନିର୍ମାଣ କରିଛନ୍ତି। ଏହା ସାହିତ୍ୟର ଇତିହାସରେ ତାଙ୍କୁ ଅସାମାନ୍ୟ ମର୍ଯ୍ୟାଦା ପ୍ରଦାନ କରିଛି। ଆପଣା ଆପଣା ସାହିତ୍ୟର ଇତିହାସ ଗ୍ରନ୍ଥରେ ଏକଥା ଉଭୟ ମାୟାଧର ମାନସିଂହ ଓ ସୁରେନ୍ଦ୍ର ମହାନ୍ତି ସପ୍ରସଙ୍ଗ ସ୍ୱୀକାର କରିଛନ୍ତି।

କବିତା ରଚନା ବା ସମାଲୋଚନା--କୌଣସିଥିରେ ଚିନ୍ତାମଣି ବହୁପ୍ରସୂ ନଥିଲେ। ସେ ସର୍ବତ୍ର ସର୍ବଦା ଥିଲେ ସୀମିତ, ସୁନିର୍ଦ୍ଦିଷ୍ଟ ଓ ସାରବନ୍ତ। କବି ଜୀବନର ରୋମାଣ୍ଟିକ ବ୍ୟକ୍ତିତ୍ୱବୋଧ, କଳ୍ପନାର କାରୁକାର୍ଯ୍ୟ,ବିସ୍ମୟ ସହିତ ସୌନ୍ଦର୍ଯ୍ୟର ସମନ୍ୱୟ ତାଙ୍କ ସମାଲୋଚନାରେ କଠିନ ଗଦ୍ୟକୁ ତରଳ ଓ ଲଳିତ କରିଦେଉଥିଲା। ବିଶ୍ୱର ସବୁ ଶ୍ରେଷ୍ଠ କବି-ସମାଲୋଚକଙ୍କ ପରି ସେ ଥିଲେ ପ୍ରମାଣତଃ ଓ ପ୍ରଧାନତଃ କବି ଓ ତା'ପରେ ଗୁଣଗ୍ରାହୀ ବିଦଗ୍ଧ ପାଠକ ଓ ସମାଲୋଚକ। ରୋମାଣ୍ଟିକ ଯୁଗରେ କବି ୱାର୍ଡସୱାର୍ଥ ଓ କୋଲେରିଜଙ୍କ 'ଲିରିକାଲ ବାଲାଡ଼ାସ' ର ମୁଖବନ୍ଧ, ସେଲୀଙ୍କର *ଡିଫେନସ୍ ଅଫ୍ ପୋଏଟ୍ରି* ଆଧୁନିକ କାଳରେ ଇଲିୟଟଙ୍କ 'ସେକ୍ରେଡ଼ ଉଡ଼'ର ପ୍ରବନ୍ଧାବଳୀ, ରବୀନ୍ଦ୍ର ନାଥଙ୍କ 'ପ୍ରାଚୀନ ସାହିତ୍ୟ' ଓ 'ଆଧୁନିକ ସାହିତ୍ୟ', ମାନସିଂହଙ୍କ 'କବି ଓ କବିତା', ସଚ୍ଚି ରାଉତରାୟଙ୍କ କବିତା - ୧୯୬୨ର ପୃଷ୍ଠବନ୍ଧ ଆଦି ସମୃଦ୍ଧ ସମାଲୋଚନା ବିଶିଷ୍ଟ କବିମାନଙ୍କଦ୍ୱାରା

ଲିଖିତ। ଆଳଂକାରିକ ଭାମହ କହିଥିଲେ, "ଗଦ୍ୟଂ କବିନାଂ ନିକଷା ବଦନ୍ତି", ଗଦ୍ୟ ରଚନା ହେଉଛି କବିମାନଙ୍କର କଷଟିପଥର। ଏହି ଅନବଦ୍ୟ ପରଂପରାର ଉତ୍ତରସାଧକ - କବି ସମାଲୋଚକ ଚିନ୍ତାମଣି ବେହେରା। କବିତା ତାଙ୍କର ସୁନ୍ଦର, ସମାଲୋଚନା ସୁନ୍ଦରତମର।

ଚିନ୍ତାମଣିଙ୍କ ସୃଷ୍ଟିଜଗତ ସାତଟି କାବ୍ୟଗ୍ରନ୍ଥ ଓ ପାଞ୍ଚଟି ସମାଲୋଚନାରେ ସୀମିତ। *ଶ୍ୱେତପଦ୍ମ, ସ୍ୱସ୍ତିକା, ନୂତନ ସ୍ୱାକ୍ଷର, ହେ ବୈଦେହୀ ଭୁଲିଯାଅ, ତୃତୀୟ ଚକ୍ଷୁ* ଓ *ନୀଳଲୋହିତ*। ପରବର୍ତ୍ତୀ ସମୟରେ ଏସବୁ କାବ୍ୟ ଗ୍ରନ୍ଥରୁ ନିର୍ବାଚିତ କବିତାର ଗୋଟିଏ ସଙ୍କଳନ ପ୍ରକାଶ ପାଇଛି 'ନିଜେ ନିଜର ସାକ୍ଷୀ' ନାଁରେ। ଅନ୍ତିମ ପର୍ଯ୍ୟାୟରେ କିଛି **ସାଂପ୍ରତିକୀ** ଓ କିଛି ପୁରାତନୀ କବିତାକୁ ଏକତ୍ରିତ କରି ପ୍ରକାଶିତ ହୋଇଛି କବିଙ୍କର ଶେଷ କାବ୍ୟଗ୍ରନ୍ଥ 'ଉଦାୟାସ୍ତର କାବ୍ୟ'(୨୦୦୩)। ଏସବୁ କବିତାରେ ସାମଗ୍ରିକ ଭାବେ ରୋମାଣ୍ଟିକ ଭାବାବେଗ, ପ୍ରଣୟ, ପ୍ରତ୍ୟୟ ଓ ପ୍ରତୀକଚେତନା, ନିଖିଳ ମାନବପ୍ରତି ଶ୍ରଦ୍ଧା, ନିପୀଡିତ ମାନବତ୍ମା ପ୍ରତି ସମ୍ବେଦନା ପ୍ରକାଶିତ। ଏପରିକି ଇତର ପ୍ରାଣୀ ବଣି, ଚିଲ ପରି ବେଙ୍ଗ, କଚ୍ଛପ, ସାପ, ବୁଢ଼ିଆଣୀ, ଉଇ ଆଦି ନଗଣ୍ୟ ଜୀବଙ୍କୁ ନେଇ ସେ ମାର୍ମିକ କବିତା ରଚନା କରିଛନ୍ତି।

ଚିନ୍ତାମଣି ବେହେରାଙ୍କର ଛଅଟି ସମାଲୋଚନା ଗ୍ରନ୍ଥ-*କାବ୍ୟ ଓ କଳାକାର* (୧୯୬୬), ଆଧୁନିକତାର *କ,ଖ ଓ ଅନ୍ୟାନ୍ୟ ଆଲୋଚନା* (୧୯୭୩), *ବିଦଗ୍ଧ ପାଠକ* (୧୯୭୬), *କଳାଦୃଷ୍ଟି* (୧୯୮୨), *ସାହିତ୍ୟ ଚିନ୍ତା* ଓ ଅନ୍ତିମ ପର୍ଯ୍ୟାୟରେ *ଚିତ୍ର ଓ ଚରିତ୍ର* (୨୦୦୩)। ସାମଗ୍ରିକ ଭାବେ ଆକଳନ କଲେ ଏସବୁ ଆଲୋଚନା ଗ୍ରନ୍ଥରେ ମୁଖ୍ୟତଃ ଚାରି ପ୍ରକାର ରଚନା ରହିଛି। ୧. ଶିଳ୍ପ ଓ ସାହିତ୍ୟତତ୍ତ୍ୱ ସଂପର୍କିତ, ୨. ସାହିତ୍ୟିକ ବିଭାବ ଓ ଆଭିମୁଖ୍ୟ ସଂପର୍କିତ, ୩. ଶ୍ରେଷ୍ଠ ସାହିତ୍ୟ ସ୍ରଷ୍ଟା ଓ ସୃଷ୍ଟି ସଂପର୍କିତ, ୪. ସମାଜ, ସଂସ୍କୃତି ଓ ସାହିତ୍ୟ ସଂପର୍କିତ। ଆଧୁନିକତାର କ'ଖ ଗ୍ରନ୍ଥର କେତେକ ପ୍ରବନ୍ଧ କଳାଦୃଷ୍ଟି ସଂକଳନରେ ପୁନଃମୁଦ୍ରିତ। ପ୍ରଥମ ଗ୍ରନ୍ଥ *କାବ୍ୟ ଓ କଳାକାର* ଏବଂ *କଳାଦୃଷ୍ଟି* ଗ୍ରନ୍ଥରେ ସଂକଳିତ ଅନେକ ଗଭୀର ଚିନ୍ତାଦ୍ୟୋତକ ଓ ତାତ୍ତ୍ୱିକ ପ୍ରବନ୍ଧ ପ୍ରଥମ ବିଭାଗର। ଏଥିରେ 'କବି ଓ କବିତ୍ୱ', 'କବିର ମୁକ୍ତି', 'ସ୍ରଷ୍ଟାର ସ୍ୱଧର୍ମ', 'ଶିଳ୍ପ, ଶିଳ୍ପୀର ଜୀବନ', 'ଆଧୁନିକ ଶିଳ୍ପଦୃଷ୍ଟି' ଆଦି ଆଲୋଚନା ସ୍ଥାନିତ। ଏଥିରେ ତତ୍ତ୍ୱାନୁସନ୍ଧାନ, ସୂକ୍ଷ୍ମ ବିଶ୍ଳେଷଣ ଦକ୍ଷତା ଓ ବହୁ ଶାସ୍ତ୍ରଦର୍ଶିତା ସହିତ ପ୍ରକାଶରେ ପରିମିତିବୋଧ ଓ ଲଳିତ ଗଦ୍ୟଶୈଳୀ ସୁସ୍ପଷ୍ଟ। 'କବିର ମୁକ୍ତି' ପ୍ରବନ୍ଧର ଉପସଂହାର ଏହିପରି,

> କବି ସୃଷ୍ଟିକରେ ନିଜ ଆତ୍ମାର ମୁକ୍ତି ପାଇଁ - ଅନ୍ୟର ଆତ୍ମାକୁ ଉଦାରତା ଓ ମହନୀୟ କରି ତୋଳିବା ପାଇଁ - ନିଜେ ମୁକ୍ତ ହୋଇ ଅନ୍ୟକୁ ଦିଏ ମୁକ୍ତିର ଆସ୍ୱାଦ - ନିଜେ ମରି ଅନ୍ୟକୁ ବୁଝାଇଦିଏ ସେ ଜୀବନର ଅର୍ଥ - He must accept the contrary experience and drink with Secrates the deadly cup - ସେ ମରି ମଧ୍ୟ ମରଣଜୟୀ - ଅନ୍ୟର ବିଷ ହରଣକରି ସେ ମହାକାଳ - ସେ ସର୍ବବ୍ୟାପୀ- ହରିହର ମୂର୍ତ୍ତିର ପ୍ରତୀକ- ସେ ମୁକ୍ତ ଓ ଅମର।

*କବି ଓ କବିତା* ଓ *କବିର ମୁକ୍ତି* ଏଇ ଦୁଇଟି ପ୍ରବନ୍ଧରେ କବିର ବ୍ୟକ୍ତିସତ୍ତା ଓ ସ୍ରଷ୍ଟା ଭାବରେ ତାଙ୍କ ଅଭିବ୍ୟକ୍ତିର ସମତ୍ତ୍ୱ ଆଲୋଚିତ। କବି ଜୀବନର ବ୍ୟକ୍ତିକ ଅନୁଭୂତି ଓ ଅଭିଜ୍ଞତାର ପ୍ରକାଶ ପାଇଁ ସୃଷ୍ଟିକ୍ଷମ କବିମାନସ ଦ୍ୱାରା କିପରି ଚିର ଉନ୍ମୁକ୍ତ, ତାହା ବିଶ୍ଳେଷିତ। 'ସ୍ରଷ୍ଟାର ସ୍ୱଧର୍ମ' ପ୍ରବନ୍ଧରେ ସ୍ୱଧର୍ମର ସ୍ୱରୂପ ବୁଝାଇବା ପାଇଁ ଲିଖିତି ବାକ୍ୟଟି ପ୍ରତିଧାନଯୋଗ୍ୟ, "ସାହିତ୍ୟ ସୃଷ୍ଟି ବା ଶିଳ୍ପକର୍ମ ମୁଖ୍ୟତଃ ଆତ୍ମବ୍ୟାଖ୍ୟା, ଆତ୍ମସନ୍ଧାନ ଓ ଆତ୍ମୋପଲବ୍ଧିର ମାର୍ଗ ଓ ମାଧମ ହୋଇଥିବାରୁ ସ୍ରଷ୍ଟାର ଆତ୍ମ ପରିତ୍ରାଣ ଜନିତ ପ୍ରଚ୍ଛନ୍ନ ଅଭିଳାଷ ହିଁ ସୃଷ୍ଟି କ୍ରିୟାର ମୌଳିକ ଲକ୍ଷ୍ୟ।" ପୁଣି 'ଆଧୁନିକ ଶିଳ୍ପଦୃଷ୍ଟି'ର ବ୍ୟାଖ୍ୟା କରି ଲେଖକ କୁହନ୍ତି, " ଏଯୁଗର ଶିଳ୍ପୀ ନୂତନ ଦେବତା ଓ ନୂତନ ମାନବତାର ସୃଷ୍ଟି ପାଇଁ ସଂଗ୍ରାମରତ, ତେଣୁ ଶିଳ୍ପସୃଷ୍ଟିର ବିଭିନ୍ନ କ୍ଷେତ୍ରରେ ଏ ଯୁଗର ଶିଳ୍ପୀ ନିଜର ଶିଳ୍ପାଦର୍ଶ ପ୍ରତି ସଚେତନ ରହିବା କର୍ତ୍ତବ୍ୟ। ଏଥିପାଇଁ ଶକ୍ତିସଞ୍ଚୟ, ସାଧନା ଓ ଆତ୍ମାହୂତିର ଆବଶ୍ୟକତା ରହିଛି, ତା' ପ୍ରତି ମଧ୍ୟ ଶିଳ୍ପୀ କେବେ ପରାଙ୍ମୁଖ ହେବା ଉଚିତ ନୁହେଁ। ନଚେତ ତାର ଶିଳ୍ପସୃଷ୍ଟି ଶକ୍ତି-ହୀନ, ପ୍ରାଣହୀନ ଓ ଆଦର୍ଶ ଦୃଷ୍ଟିରୁ କ୍ଷୁଣ୍ଣ ହେବା ଅତି ସ୍ୱାଭାବିକ। ବାସ୍ତବତା ସହିତ ଆଦର୍ଶର ମଧୁର ସମନ୍ୱୟ ହିଁ ଉଚ୍ଚାଙ୍ଗ ଶିଳ୍ପସୃଷ୍ଟିର ମୂଳମନ୍ତ୍ର।" ଏପରି ପ୍ରଥମ ପ୍ରକାରର ତାତ୍ତ୍ୱିକ ପ୍ରବନ୍ଧଗୁଡିକ ସାହିତ୍ୟ-ସମାଲୋଚନା ଅପେକ୍ଷା ଅଧିକ ଚିନ୍ତାଦ୍ୟୋତକ ପ୍ରବନ୍ଧ ପର୍ଯ୍ୟାୟର। ଏଥିରେ ଲେଖକଙ୍କର ଆହରଣରେ ମୌଳିକତା ଓ ବିଶ୍ଳେଷଣରେ ସୂକ୍ଷ୍ମଦର୍ଶିତାର ପରିଚୟ ସ୍ପଷ୍ଟ।

ଦ୍ୱିତୀୟ ପ୍ରକାର ରଚନାଗୁଡ଼ିକ ସାହିତ୍ୟିକ ବିଭାବ ଓ ଆଭିମୁଖ୍ୟ ସଂପର୍କିତ। ଏହି ପର୍ଯ୍ୟାୟରେ 'କ୍ଲାସିକ ଓ ରୋମାଣ୍ଟିକ୍', 'ଅଭ୍ୟୁଦୟ ସାହିତ୍ୟ', 'ୟୁରୋପୀୟ ଟ୍ରାଜେଡ଼ି ଓ ଭାରତୀୟ କରୁଣରସ', 'କବିତାର ଭାଷାନ୍ତର ପ୍ରସଙ୍ଗ', 'ଓଡ଼ିଆ ପ୍ରବନ୍ଧ ସାହିତ୍ୟର ଆଭିମୁଖ୍ୟ', 'ଓଡ଼ିଆ କ୍ଷୁଦ୍ରଗଳ୍ପ : ଏକ ସଂକ୍ଷିପ୍ତ ଅଧ୍ୟୟନ', 'ଓଡ଼ିଆ ସାହିତ୍ୟରେ ଛାୟାବାଦ ଯୁଗର କାବ୍ୟ ପରଂପରା ଓ 'ଯାତ୍ରାଯୁଗରେ ଓଡ଼ିଆ ରଙ୍ଗମଞ୍ଚ' ପ୍ରଭୃତି ରଚନାକୁ ଅନ୍ତର୍ଭୂକ୍ତ କରାଯାଇ ପାରିବ। ଏ ପ୍ରକାର ରଚନାରେ ତୁଳନାତ୍ମକ ସାହିତ୍ୟ-ସମାଲୋଚନା ଓ ଐତିହାସିକ ଦୃଷ୍ଟିକୋଣ ଅଧିକ ଲକ୍ଷ୍ୟଣୀୟ। ସାହିତ୍ୟ ଆଲୋଚନାର ମୁଖ୍ୟତଃ ଦୁଇଟି ଧାରା। ଗୋଟିଏ ସାହିତ୍ୟର ଇତିହାସ ସଂପର୍କିତ ଆଲୋଚନା ଓ ଅପରଟି ସାହିତ୍ୟର ବିଶୁଦ୍ଧ ସମାଲୋଚନା - ଯାହା ଶୈଳୀ ଆଧାରିତ। ଚିନ୍ତାମଣି ବେହେରା ଏ ଉଭୟ ଧାରାର ଲେଖକ। କିନ୍ତୁ ପ୍ରଥମଟି ଅପେକ୍ଷା ଦ୍ୱିତୀୟଟିରେ ତାଙ୍କ ପ୍ରତିଭାର ପରିଚୟ ଅଧିକ ପ୍ରତିଭାତ। ତଥାପି ବିଭାବ ଓ ଆଭିମୁଖ୍ୟ ସଂପର୍କିତ ଆଲୋଚନାରେ ମଧ୍ୟ ତାଙ୍କର ଦୃଷ୍ଟିକୋଣର ନୂତନତା ଅନାୟସରେ ଲକ୍ଷ୍ୟ କରିହେବ। ପ୍ରଗତିବାଦୀ ସାହିତ୍ୟର ନାମକରଣ କରିଛନ୍ତି ଲେଖକ, 'ଅଭୁଦୟ ସାହିତ୍ୟ'ରେ। ତତ୍ତ୍ୱକୁ ବୁଝାଇବାକୁ ଯାଇ ଲେଖକ କହିଛନ୍ତି, " ପୁଞ୍ଜିପତି ଉତ୍ପାଦନ ପ୍ରଣାଳୀ ଯେକୌଣସି ନୈତିକ ସୃଜନର ବିରୋଧୀ। ତାହା ମଧ୍ୟରେ କଳା ଓ କବିତା ମଧ୍ୟ ଅନ୍ତର୍ଗତ।" ୟୁରୋପୀୟ ଟ୍ରାଜେଡିର ସ୍ୱରୂପକୁ ବୁଝାଇବାକୁ ଯାଇ ଲେଖକ କହିଛନ୍ତି, " ଧ୍ୱଂସର ପଦ୍ଧତିଟି ଓ ତାହା ମଧ୍ୟରେ ଯେଉଁ ରସଟି ତାହାକୁ ଘେନି ଟ୍ରାଜେଡିର ଜନ୍ମ। ବସ୍ତୁ ବସ୍ତୁର ସଂଘର୍ଷରେ କିପରି ଚୂର୍ଣ୍ଣୀଭୂତ ହୋଇ ଯାଉଛି, ଘଟଣା

ସହିତ ସଂପୃକ୍ତ ହୋଇ କିପରି ପ୍ରଳୟର ନାନ୍ଦୀ ରଚନା କରୁଛି, ଜଗତ ମଧ୍ୟରେ ଏବଂ ମନୁଷ୍ୟ ମଧ୍ୟରେ ରୁଦ୍ରର ଯେଉଁ ତାଣ୍ଡବ ନୃତ୍ୟ ଅହରହ ପ୍ରଦର୍ଶିତ ହେଉଛି, ତାହାରି ଆଲେଖ୍ୟ ଅଙ୍କନ କରୁଛି ଟ୍ରାଜେଡ଼ି।" ସେହିପରି  କବିତାର ଭାଷାନ୍ତର ପ୍ରସଙ୍ଗରେ ଲେଖକ କୁହନ୍ତି, "କିବିତାର ପ୍ରାଣଶକ୍ତି ଯଦି ଅର୍ଥ ଓ ସଂଗୀତ, ଅନୁଭୂତି ଓ ଧ୍ୱନି ମଧ୍ୟରେ ନିହିତ, ତା'ହେଲେ ସ୍ପଷ୍ଟ ଯେ କବିତା ଭାବାନ୍ତରିତ ହେବା ସମୟରେ ନିଜର ସହଜାତ ସଙ୍ଗୀତମାଧୁରୀ ବହନ କରି ନେବାକୁ ଅସମର୍ଥ ହୋଇଥାଏ। ସେତେବେଳେ ତାହା ନୂତନ ଧ୍ୱନି ଗ୍ରହଣ କରେ ଏବଂ ଏଇ ନୂତନ ଧ୍ୱନି ମୌଳିକ ସୌନ୍ଦର୍ଯ୍ୟର ସମଧର୍ମୀ ହୁଏତ ହୋଇ ନ ପାରେ।" 'ଓଡ଼ିଆ ପ୍ରବନ୍ଧ ସାହିତ୍ୟର ଆଭିମୁଖ୍ୟ' ଓ ' ଓଡ଼ିଆ କ୍ଷୁଦ୍ରଗଳ୍ପ: ଏକ ସଂକ୍ଷିପ୍ତ ଅଧ୍ୟୟନ' - ଏ ଦୁଇଟି ଆଲୋଚନାରେ ଲେଖକ ଅଧିକ ନିଷ୍ଠୁର ଓ ବାସ୍ତବ ଚିତ୍ର ଦେଖାଇଛନ୍ତି ସମକଳୀନ ଓଡ଼ିଆ ପ୍ରବନ୍ଧ ଓ କ୍ଷୁଦ୍ରଗଳ୍ପର। କିନ୍ତୁ ଅର୍ଦ୍ଧଶତାବ୍ଦୀ ପୂର୍ବେ ଲିଖିତ ଏଇ ଦୁଇଟି ଆଲୋଚନା ବେଳର ସ୍ଥିତି ଆଦି ଯେ ଶୋଚନୀୟ ଭାବେ ଅପରବର୍ତ୍ତିତ,  ତାହା ଅନୁଭବ୍ୟ। ଲେଖକଙ୍କ ମତ,

> ଯଥାର୍ଥ ପ୍ରାବନ୍ଧିକଙ୍କ ଅଭାବ ତରୁଣ ଗୋଷ୍ଠୀ ମଧ୍ୟରେ ଆଜି ପରିଲକ୍ଷିତ। ପ୍ରତ୍ରପତ୍ରିକାରେ ସାମୟିକ ଭାବେ ଗୋଟିଏ ଅଧେ ପ୍ରବନ୍ଧ ଆମ ଆଖି ଆଗରେ ପଡିଥାଏ। ମାତ୍ର ପ୍ରବନ୍ଧ ସାହିତ୍ୟ ରଚନାରେ ଲେଖକର ଆଶାନୁରୂପ ଶ୍ରଦ୍ଧା ଆଜି ରହୁନାହିଁ। ରୁଚିର ସଂସ୍କାର, ମାବବିକ ମୂଲ୍ୟବୋଧର ମାନଦଣ୍ଡ ପ୍ରଦର୍ଶନ ଓ ଜୀବନଧାରାରେ ସହନଶୀଳତାର ବିକାଶ ପାଇଁ ପ୍ରବନ୍ଧ ଯେ ଆଜିର ସାରସ୍ୱତ ଦରବାରରେ ଧ୍ୱାନୀ ହେବା ଆବଶ୍ୟକ। ସେଥିପାଇଁ ସେମାନେ ବଳିଷ୍ଠ ବ୍ୟକ୍ତିତ୍ୱ ସହିତ ଗଭୀର ଅଧ୍ୟୟନ ସ୍ପୃହା, ସୂକ୍ଷ୍ମତା ଓ ସ୍ୱଚ୍ଛ ନନ୍ଦନ-ପ୍ରବୃତ୍ତିର ଅଧିକାରୀ ହେବା  ବାଞ୍ଛନୀୟ।

କ୍ଷୁଦ୍ରଗଳ୍ପ ସଂପର୍କରେ ମଧ୍ୟ ଲେଖକଙ୍କର ଅଭିମତ ଯାହା ଥିଲା, ତାହା ପ୍ରଧାନତଃ ଅପରିବର୍ତ୍ତିତ। ସେ ଲେଖିଛନ୍ତି, "ଆମର ତରୁଣ ଗାଳ୍ପିକଙ୍କ ସଂଖ୍ୟା ଆଜି ସାହିତ୍ୟର ଅନ୍ୟାନ୍ୟ କ୍ଷେତ୍ରପରି ଗଳ୍ପ କ୍ଷେତ୍ରରେ ପ୍ରଚୁର ହେଲେ ହେଁ ସେମାନଙ୍କ ଲେଖନୀରୁ ଉଚ୍ଚକୋଟୀର ସୃଜନ କ୍ଷମତାର ପରିଚୟ କ୍ୱଚିତ ମିଳୁଛି ଏବଂ ଏହାର ଏକମାତ୍ର କାରଣ ଆମର ତରୁଣ ସ୍ରଷ୍ଟାମାନଙ୍କର ସାଧନା ଓ ଅଧ୍ୟବସାୟର ଅଭାବ, ଅଧ୍ୟୟନର ଅଭାବ,ଜୀବନ - ନିଷ୍ଠାର ଅଭାବ ଓ ଆତ୍ମଶ୍ଳାଘା ମନୋବୃତ୍ତି।" ଏ ଉକ୍ତି ନୈରାଶ୍ୟଜନକ ହେଲେ ମଧ୍ୟ ଆଜି ବି ବାସ୍ତବ ସତ୍ୟ। ଏହି କାରଣରୁ ପରିମାଣାତ୍ମକ ପ୍ରାଚୁର୍ଯ୍ୟରେ ଆମେ ନିଜକୁ ସମୃଦ୍ଧ ମନେକଲେ ମଧ୍ୟ ଗୁଣାତ୍ମକ ସୃଷ୍ଟି ଦିଗରୁ ଆମର ଦାରିଦ୍ର୍ୟ ଅନସ୍ୱୀକାର୍ଯ୍ୟ।

ଚିନ୍ତାମଣି ବେହେରାଙ୍କର ସମାଲୋଚନା ସଂଗ୍ରହ ଭିତରେ ତୃତୀୟ ପ୍ରକାର ଅର୍ଥାତ୍ ଶ୍ରେଷ୍ଠ ସାହିତ୍ୟ ସ୍ରଷ୍ଟା ଓ ସୃଷ୍ଟି ସଂପର୍କିତ ପ୍ରବନ୍ଧଗୁଡିକ ଉଚ୍ଚକୋଟିର। ଏଥିରେ 'ମେଘଦୂତ ଓ ତାହାର ଅନୁବାଦ' 'ରୀତିଯୁଗ ଓ ରସକଲ୍ଲୋଳ' ଓ ' ଆଧୁନିକତା ଓ ଉପେନ୍ଦ୍ର ଭଞ୍ଜ' ପରି ଅଳ୍ପ କେତୋଟି ଆଲୋଚନା ବ୍ୟତୀତ ଅନ୍ୟ ପ୍ରବନ୍ଧଗୁଡ଼ିକ ଆଧୁନିକ ଓଡ଼ିଆ  ସାହିତ୍ୟ ଉପରେ କେନ୍ଦ୍ରୀଭୂତ। ' ରୂପପ୍ରାଣ ରାଧାନାଥ', ' ରାଧାନାଥ ଶିଳ୍ପମାନସ', 'ଗଙ୍ଗାଧରଙ୍କ

ରସରତ୍ନାକର ଓ କବିମାନସ', 'କର୍ମବୀର ଗଙ୍ଗାଧର', 'ଗୋପବନ୍ଧୁ କବିତାରେ ଇନ୍ଦ୍ରିୟ ଓ ଅତୀନ୍ଦ୍ରିୟ', 'ଗୋଦାବରୀଶଙ୍କ କାବ୍ୟ ପ୍ରତିଭା', 'କାନ୍ତକବିଙ୍କ ଜୀବନ ସଙ୍ଗୀତ', 'କାବ୍ୟ ସଂଚୟନ ଓ କବି ବୈକୁଣ୍ଠନାଥ', 'ମାନସିଂହଙ୍କ କାବ୍ୟପ୍ରତିଭା' ଓ 'କବି ସଚ୍ଚିଦାନନ୍ଦ ରାଉତରାୟ' ଆଦି ସ୍ରଷ୍ଟାଙ୍କ ଉପରେ ଆଧାରିତ ଥିଲାବେଳେ, 'ଉତ୍କଳିକା', 'କାବ୍ୟନାୟିକା', 'ପାଷାଣୀର ପ୍ରାଣ', 'ପଶୁପକ୍ଷୀର କାବ୍ୟ' ଓ ' ଏକ ଅସମାପ୍ତ କରୁଣ କାବ୍ୟ' ଆଦି ଆଧୁନିକ ଓଡ଼ିଆ ସାହିତ୍ୟର ବିଭିନ୍ନ କାବ୍ୟକୃତି ସଂପର୍କରେ ଅନବଦ୍ୟ ଆଲୋଚନା। ଏସବୁ ଆଲୋଚନା ଭିତରେ କେବଳ ସ୍ରଷ୍ଟାଜୀବନର ଐତିହାସିକ ତଥ୍ୟ ବା ସୃଷ୍ଟି ଭିତରେ ନିହିତ ବିଷୟବସ୍ତୁର ଭାବ-ନିଃଶ୍ୱାସ ସ୍ଥାନ ପାଇନାହିଁ। ଜଣେ ସୃଜନଜିଜ୍ଞାସୁ କବି - ସମୀକ୍ଷକଙ୍କର ନାନ୍ଦନିକ ଅବବୋଧ ପ୍ରତ୍ୟେକ ଆଲୋଚନାକୁ କରିଛି ମଂଜୁଳ ଓ ଭାବଗମ୍ଭୀର। ପାଠକ ଓ ଗବେଷକ ଅଭିନବ ଭାବରେ ଆବିଷ୍କାର କରୁଛନ୍ତି, ଆଲୋଚିତ ସ୍ରଷ୍ଟା ଓ ସୃଷ୍ଟିକୁ। ମନ ରସାପ୍ଳୁତ ହେବ। କବି ଓ କାବ୍ୟଜିଜ୍ଞାସା ରସୋତୀର୍ଣ୍ଣ ହୋଇ ଗଭୀର କାବ୍ୟୋପଲବ୍ଧି ପାଇଁ ପାଠକକୁ ବିହ୍ୱଳିତ କରିବ। ଏଥିରେ ଲେଖକଙ୍କର ଅଭିଜ୍ଞତା, ଚିନ୍ତାର ପରିପକ୍ୱତା, ରସଚର୍ଚ୍ଚା ଓ ଅନୁଶୀଳନର ସୂକ୍ଷ୍ମ ଅବବୋଧ, ଜୀବନସାଧନାର ପ୍ରାଚୁର୍ଯ୍ୟ ଓ ବହୁଶାସ୍ତ୍ରଦର୍ଶିତାକୁ ଅନାୟାସରେ ଲକ୍ଷ୍ୟ କରିହେବ। 'ରୂପପ୍ରାଣ ରାଧାନାଥ'ଙ୍କୁ ଲେଖକ ରୋମାଣ୍ଟିକ ଚେତନାର ଶ୍ରେଷ୍ଠ ବାହକ ଭାବରେ ପ୍ରତିଷ୍ଠା କରି ଲେଖିଛନ୍ତି ,

' ରାଧାନାଥ ମାନସର ମୂଳଧାରା ହେଉଛି ରୂପପ୍ରାଣତା ଏବଂ ରାଧାନାଥଙ୍କ ଜୀବନ-ଦର୍ଶନର ମୁଖ୍ୟ ବିଭାବ ହେଉଛି ସୌନ୍ଦର୍ଯ୍ୟପ୍ରଣତା। ନିଜର ଶିଳ୍ପୀସୁଲଭ ରୂପଦୃଷ୍ଟା କେତେବେଳେ ସେ ପୂରଣ କରିଛନ୍ତି ପ୍ରକୃତିର କଳ୍ପଲୋକରେ ପ୍ରକୃତିକୁ ଆତ୍ମାରୂପେ ବରଣକରି, କେତେବେଳେ ବା ପୂରଣ କରିଛନ୍ତି ଜୀବନର ଅତଳ ଗଭୀର ସ୍ରୋତରେ ଅବଗାହନ କରି, ଅନୁଭବ କରିଛନ୍ତି ଦୁଃଖର ଆବର୍ତ୍ତତଳେ ଜୀବନର ରହସ୍ୟ ଓ ମଙ୍ଗଳବାର୍ତ୍ତା। ଦୁଃଖର ସମସ୍ତ ଆଘାତ ଓ ଅଦୃଶ୍ୟର ସକଳ ଅଟ୍ଟହାସ ମଧ୍ୟରେ କବି ପ୍ରାଣରେ ଅକ୍ଷୁଣ୍ଣ ରହିଛି ଏହି ରୂପପ୍ରେମ ଓ ସୌନ୍ଦର୍ଯ୍ୟବୋଧ।

'କର୍ମବୀର ଗଙ୍ଗାଧର'ରେ ଗଙ୍ଗାଧରଙ୍କ ଜୀବନର ମହତ୍ୱ ପ୍ରତିପାଦନ କରି ଲେଖିଛନ୍ତି, "କବି ଓ କର୍ମୀର, ଭୋଗୀ ଓ ତ୍ୟାଗୀର,ବାସ୍ତବବାଦୀ ଓ ଆଦର୍ଶବାଦୀର ଯୁଗପତ୍ ସମନ୍ୱୟ କେହି ଯଦି ଦେଖିବାକୁ ଋହାନ୍ତି, ସେ ଥରେ ବାଣୀ ଭବନକୁ ନିରୀକ୍ଷଣ କରନ୍ତୁ। ଦେଖିବେ ତାଙ୍କର ଜୀବନବାଣୀ ଓ ବାଣୀ ଜୀବନ କିପରି ଅଖଣ୍ଡ କର୍ମଯୋଗ ଓ କର୍ମତ୍ୟାଗର ମନୋଜ୍ଞ ରାକ୍ଷୀବନ୍ଧନରେ ଗ୍ରଥିତ।" ଇନ୍ଦ୍ରିୟ ଓ ଅତିନ୍ଦ୍ରୀୟର କବି ଭାବେ ଗୋପବନ୍ଧୁଙ୍କୁ ମୂଲ୍ୟାୟନ କରି ଲେଖିଛନ୍ତି,

" ମୋର ମନେହୁଏ, ଏହି ସହଜ ଓ ମନୁଷ୍ୟ ପ୍ରାଣ ହିଁ ତାଙ୍କ କବିତାର ସାଧାରଣ ଓ ଅବ୍ୟୟ ଭୂମିକା। ଏବଂ, ଏହି ଭୂମିକା ଇନ୍ଦ୍ରିୟ ସ୍ପର୍ଶରେ ଯେପରି ଆବେଗମୟ ଓ ମୁଖର, ଅତୀନ୍ଦ୍ରିୟର ଦୀପ୍ତିରେ ସେହିପରି ଅମ୍ଳାନ ମୂକ ଓ ନୀରବ"।

ଗୋଦାବରୀଶଙ୍କ ସମ୍ପର୍କରେ ଲେଖିଛନ୍ତି " କବି ଗୋଦାବରୀଶଙ୍କ ପ୍ରତିଭା ଏକ ମହତ୍ କାବ୍ୟ ପ୍ରତିଭାର ଖଣ୍ଡିତ ସିଦ୍ଧି।" କାନ୍ତକବିଙ୍କ ଜୀବନ-ସଙ୍ଗୀତ ସମ୍ପର୍କରେ ଲେଖିଛନ୍ତି

– " ଜୀବନ ସଙ୍ଗୀତର ପ୍ରତ୍ୟେକ ସଙ୍ଗୀତ କରୁଣ ରସଘନ ଓ ମଧୁର। ପ୍ରତି ସଙ୍ଗୀତର ମୂର୍ଚ୍ଛନା ପାର୍ଥିବ ଜୀବନର ଦୁଃଖ କ୍ଲେଶକୁ ଅତିକ୍ରମ କରି, ମରଣ ଜୀବନର ଅଶ୍ରୁ ଅବଗାହନରେ ସ୍ନାତ, ନିର୍ମଳ ଓ ଉର୍ଦ୍ଧ୍ୱୟିତ ହୋଇ ଏକ ଅମର, ଅତୀନ୍ଦ୍ରିୟ ଓ ଅପାର୍ଥିବ ରାଜ୍ୟର ଅସୀମ ଭାବ ଦ୍ୟୋତନାର ବ୍ୟକୁଳତା ମଧ୍ୟରେ ଲୟ ଲାଭ କରିଅଛି। କବି ବୈକୁଣ୍ଠନାଥଙ୍କ ସଂପର୍କରେ ଲେଖିଛନ୍ତି। 'ବୈକୁଣ୍ଠନାଥ ପ୍ରଜ୍ଞାର କବି, ପ୍ରାଣର ନିଛକ ପ୍ରୀତି-ତର୍ପଣ ଅପେକ୍ଷା ପ୍ରଜ୍ଞାର ଜ୍ଞାନ-ତପସ୍ୟା ତାଙ୍କ କବିତାରେ ଅଧିକ ପରିଦୃଶ୍ୟ। ଇନ୍ଦ୍ରିୟର ଭିତର ଦେଇ ଅତୀନ୍ଦ୍ରିୟକୁ ସନ୍ଧାନ କରିବା ଅପେକ୍ଷା ଅତୀନ୍ଦ୍ରିୟର ଦର୍ପଣରେ ଇନ୍ଦ୍ରିୟ ଜଗତକୁ ଦେଖିବା ପାଇଁ ଅଧିକାଂଶ ସ୍ଥଳରେ ସେ ସ୍ପୃହଣୀୟ ଓ ଶ୍ରେୟସ୍କର ମଣିଛନ୍ତି।" ' ମାନସିଂହଙ୍କ କାବ୍ୟ ପ୍ରତିଭା' ଚିନ୍ତାମଣିଙ୍କର ଏକ ସ୍ମରଣୀୟ ପ୍ରବନ୍ଧ। ଏହା ମାନସିଂହଙ୍କ ଓଡ଼ିଆ ସାହିତ୍ୟର ଇତିହାସର ଶେଷଭାଗରେ ସନ୍ନିବେଶିତ। ଏଥିରୁ ଏହାର ଗୁରୁତ୍ୱ ଅନୁଭବ୍ୟ। 'ମାନସିଂହଙ୍କ ସଂପର୍କ'ରେ ସେ ଲେଖିଛନ୍ତି, "କେବଳ ମନ ଅନ୍ତରର ବାଣୀ ନୁହେଁ, ସହସ୍ର ନିର୍ବାକ ପ୍ରାଣର ମୌନଭାଷା ଓ ବିଶ୍ୱ ପୁସ୍ତକର ମର୍ମବାଣୀ ଅଧ୍ୟୟନ କରି ସୁନ୍ଦର ଶିଳ୍ପ ମାଧ୍ୟମରେ ପ୍ରକାଶ କରି ପାରିଥିବାରୁ ହିଁ ତ ମନୁଷ୍ୟ ଦିବ୍ୟସ୍ରଷ୍ଟା ଓ କ୍ରାନ୍ତଦର୍ଶୀ କବି ପଦବାଚ୍ୟ। ସେ ଦିବ୍ୟଦୃଷ୍ଟି ଲାଭର ସୌଭାଗ୍ୟ ସାକ୍ଷୀ ହେଉଛି ମାନସିଂହଙ୍କ ଅଜସ୍ର କାବ୍ୟ-କବିତା।" ସଚ୍ଚିଦାନନ୍ଦ ରାଉତାରାୟଙ୍କ ସଂପର୍କରେ ଚିନ୍ତାମଣିଙ୍କ ମୂଲ୍ୟାୟନ ଏହିପରି। ରାଉତରାୟଙ୍କ ଶିଳ୍ପ ସୃଷ୍ଟି ସହିତ ମୋର ଆତ୍ମୀୟତା ଅଧିକ ଅନ୍ତରଙ୍ଗ। ଏହି ଅନ୍ତରଙ୍ଗତାର ପ୍ରଥମ ଓ ପ୍ରଧାନ କାରଣ ହେଉଛି ତାଙ୍କ ଶିଳ୍ପସୃଷ୍ଟି ମଧ୍ୟରେ ମୋର ଆତ୍ମସତ୍ତା ମୁଁ ଅଧିକତର ଆବିଷ୍କାର କରିଛି,କବି ରାଉତରାୟଙ୍କର ଶିଳ୍ପ ମୋର ଶିଳ୍ପ ରୁଚିର ଅଧିକତର ନିକଟବର୍ତ୍ତୀ। ତାଙ୍କ ସୃଷ୍ଟିଜଗତର ସାମଗ୍ରିକ ମୂଲ୍ୟାୟନ କରି ଲେଖିଛନ୍ତି, "ଆଧୁନିକ ଯୁଗର ନାନା ବିପର୍ଯ୍ୟୟ, ବିଭ୍ରାନ୍ତି, ଅବକ୍ଷୟ ଓ କ୍ଲାନ୍ତିର ସ୍ୱର ତାଙ୍କ କଳା ସୃଷ୍ଟିରେ ଯେପରି ଲକ୍ଷ୍ୟଣୀୟ,କଳାର ସାମୟିକ କାଳସୀମାକୁ ଅତିକ୍ରମ କରି ଏକ ବଳିଷ୍ଠ,ମୁକ୍ତ ଓ ପ୍ରଗତିପ୍ରାଣ ମାନବ ଶିଳ୍ପୀର କବିସ୍ୱର ତାଙ୍କ କଳାପୁରୀରେ ସେହିପରି ପ୍ରତିଧ୍ୱନିତ।" ଏସବୁ ଆଲୋଚନା ବ୍ୟତୀତ କେତେକ ସାହିତ୍ୟ ସୃଷ୍ଟି ଉପରେ ସମୀକ୍ଷାତ୍ମକ ଆଲୋଚନା ମଧ୍ୟ ଲେଖିଛନ୍ତି ଚିନ୍ତାମଣି। କିନ୍ତୁ ସେସବୁ ଗତାନୁଗତିକ ନ ହୋଇ ମୌଳିକତା ଓ ବୌଦ୍ଧିକତାରେ ଭାସ୍ୱର। ଅମର ଶିଳ୍ପୀ ଗୋପାଳ କାନୁନଗୋ ଓ ତାଙ୍କ 'ଓମାର ଖୟାମ୍' ଅନୁବାଦ ପ୍ରସଙ୍ଗରେ ଦୁଇଟି ପ୍ରବନ୍ଧ ଲେଖକଙ୍କର ଶିଳ୍ପ-ଜିଜ୍ଞାସା ଓ ରସିକତାର ପରିଚୟ ଦିଏ।

ଚିନ୍ତାମଣିଙ୍କ ପ୍ରବନ୍ଧ ସୃଷ୍ଟିର ଚତୁର୍ଥ ଭାଗଟି ସମାଜ, ସଂସ୍କୃତି ଓ ସାହିତ୍ୟର ସଂପର୍କ ସଂକ୍ରାନ୍ତ ଆଲୋଚନା। "ଯନ୍ତ୍ର, ଗଣତନ୍ତ୍ର ଓ ଶିଳ୍ପ ଜୀବନ' ' ସାହିତ୍ୟ ଓ ସଂସ୍କୃତି', 'ରାଷ୍ଟ୍ର, ଶିଳ୍ପ ଓ ବ୍ୟକ୍ତିସ୍ୱାତନ୍ତ୍ର୍ୟ' ଓ 'ପଣ୍ୟ ଓ ପ୍ରତିଭା' ଆଦି ରଚନା ଏଥିରେ ଅନ୍ତର୍ଭୁକ୍ତ। ଏସବୁ ଅଧିକ ଚିନ୍ତାଦ୍ୟୋତକ ଓ ବୌଦ୍ଧିକ। ଚିନ୍ତାମଣିଙ୍କ ଅନ୍ୟସବୁ ରଚନାର ଆବେଶ ହୃଦୟ ହେଲେ, ଏହି ରଚନାଗୁଡ଼ିକର ପରିସର ମସ୍ତିଷ୍କ। ସାହିତ୍ୟ ଯେ ସମାଜ ଓ ସଂସ୍କୃତିର ଅଙ୍ଗ, ତାହା କେବଳ ନାନ୍ଦନିକ ଅବବୋଧ ଉପରେ ପର୍ଯ୍ୟବେସିତ ନୁହେଁ, ସାମାଜିକ ବାସ୍ତବତା ସହିତ ସଂପର୍କିତ – ଏକଥା ବୁଝାଇଦେବା ଏହି ସକଳ ରଚନାର ଉଦ୍ଦେଶ୍ୟ। ଯନ୍ତ୍ରର

କଳାରୂପ ବିଷୟରେ ଲେଖକ କହିଛନ୍ତି : ଏହି ଯନ୍ତ୍ରର ଉପାସନା ମନୁଷ୍ୟର ଆଜି ଏତେ ପ୍ରବଳ ଓ ପ୍ରଚଣ୍ଡ ହୋଇଉଠିଛି ଯେ, ମନୁଷ୍ୟ ଜୀବନର ମର୍ମବାଣୀ,ଜୀବନର ସ୍ନିଗ୍ଧକୋମଳ ସ୍ପର୍ଶ ଓ ହୃଦୟରେ ଅନୁରାଗଭରା ଅଶ୍ରୁ, ହାସ୍ୟର ରାଗିଣୀ ଯନ୍ତ୍ରର କୋଳାହଳ ତଳେ ଅବରୁଦ୍ଧ।" 'ପଣ୍ୟ ଓ ପ୍ରତିଭା' ରେ ପୁଣି ସେ କହିଛନ୍ତି - " ମଣିଷର ଭାବରାଜ୍ୟରେ ତେଣୁ ଆଜି ସାଂସ୍କୃତିକ ସଂକଟର ପରିପ୍ରକାଶ। ସୂକ୍ଷ୍ମ ଓ କୋମଳ ମାନବୀୟ ପ୍ରବୃତ୍ତି ଓ ବୋଧଶକ୍ତି ମଣିଷର ହୃଦୟରୁ କ୍ରମଶଃ ଅବଲୁପ୍ତ ହେବାକୁ ବସୁଛି। ଆଜିର କଳାଚେତନା ତେଣୁ ଅଧିକାଂଶରେ କୃତ୍ରିମ, ସ୍ୱତଃସ୍ଫୁର୍ତ୍ତତାଶୂନ୍ୟ ଓ ଅସ୍ୱଚ୍ଛନ୍ଦ।" 'ସାହିତ୍ୟ ଓ ସଂସ୍କୃତି' ପ୍ରବନ୍ଧରେ ସଂସ୍କୃତିର ସ୍ୱରୂପ ନିର୍ଦ୍ଧାରଣ କରି ଲେଖକ କହିଛନ୍ତି -- ସଂସ୍କୃତି କେବଳ ମନର ବିଳାସ ନୁହେଁ, ମନର ସୃଷ୍ଟି ସପଦ ନୁହେଁ ବା ଦର୍ଶନର ଆତ୍ମାନୁଭୂତି ନୁହେଁ। ଜୀବନର ବାସ୍ତବ ପ୍ରୟୋଜନରେଏହାର ଜନ୍ମ ହୁଏ, ମନୁଷ୍ୟର ଜୀବନ ସଂଗ୍ରାମରେ ଏହା ଶକ୍ତି ଯୋଗାଏ, ଜୀବନ-ଯାତ୍ରାର ବାସ୍ତବ ଉଦ୍ଦେଶ୍ୟକୁ ସିଦ୍ଧ କରେ ଏବଂ ସେହି ଜୀବନଯାତ୍ରାର ଘାତ ପ୍ରତିଘାତରେ ସଂସ୍କୃତିର ରୂପ ଓ ରଙ୍ଗ ପରିବର୍ତ୍ତିତ ହୁଏ।" ଏହିପରି ଅନେକ ଚିନ୍ତାଦ୍ୟୋତକ ପ୍ରବନ୍ଧ ରଚନା ଭିତରେ ଚିନ୍ତାମଣିଙ୍କର ସାହିତ୍ୟ ନିଷ୍ଠା ସହିତ ଅପରାପର ବିଦ୍ୟାର ବିନିଯୋଗ ଘେନି ପାରଦର୍ଶିତା ଲକ୍ଷ୍ୟଣୀୟ।

ଚିନ୍ତାମଣି ବେହେରା ଥିଲେ କଲିକତା ବିଶ୍ୱବିଦ୍ୟାଳୟର ଛାତ୍ର। ନିଜର ଅଧ୍ୟୟନ -ପିପାସା ତାଙ୍କୁ ବିଜ୍ଞ ଓ ବିଶେଷଜ୍ଞରେ ପରିଣତ କରିଥିଲା। ଓଡ଼ିଆ ସହିତ ଇଂରାଜୀ ଓ ବଙ୍ଗଳା ଭାଷାର ଗ୍ରନ୍ଥ ସଂଗ୍ରହ କରି ଏକ ବ୍ୟକ୍ତିଗତ ସମୃଦ୍ଧ ଗ୍ରନ୍ଥାଗାର ସେ କରିଥିଲେ ନିଜ ବାସଗୃହରେ। ସମାଲୋଚନାରେ ତାଙ୍କର କେବେ କେବେ ବଙ୍ଗଳାର ପ୍ରଭାବ ଲକ୍ଷ୍ୟ କରାଯାଏ। ତେବେ ତାହା ପ୍ଳାଗିଆରିଜିମ୍ ପର୍ଯ୍ୟାୟର ନୁହେଁ, ସଂରଚନାମୂଳକ। ଦୁଇଟି ଅତି ଉଲ୍ଲେଖଯୋଗ୍ୟ ପ୍ରବନ୍ଧ କଥା ମନକୁ ଆସେ। ଗୋଟିଏ 'କ୍ଲାସିକ ଓ ରୋମାଣ୍ଟିକ' ଓ ଆଉ ଗୋଟିଏ 'ଆଧୁନିକତା ଓ ଉପେନ୍ଦ୍ରଭଞ୍ଜ'। ପ୍ରଥମଟି ବିଶିଷ୍ଟ ବଙ୍ଗଳା ବିଦ୍ୱାନ ଶିବନାରାୟଣଙ୍କ ପ୍ରବନ୍ଧର ଆହରଣରେ ସମୃଦ୍ଧ। ଦ୍ୱିତୀୟଟି ଅବଙ୍ଗାଳୀ ହୋଇ ବଙ୍ଗଳା ସାହିତ୍ୟର ଅତି ପ୍ରତିଷ୍ଠିତ ସମାଲୋଚକ ଭାବେ ନିଜକୁ ନିର୍ମାଣ କରି ପାରିଥିବା ଆବୁ ସୟେଦ୍ ଆୟୁବଙ୍କ 'ଆଧୁନିକତା ଓ ରବୀନ୍ଦ୍ରନାଥ' ଗ୍ରନ୍ଥ ପଠନର ପ୍ରତିରୂପ । ଏସବୁ ଆହରଣରେ ମୌଳିକତାର ମୁଦ୍ରାଙ୍କ ଓ ନିଜସ୍ୱ ଅନୁଶୀଳନୀ-ଶକ୍ତିର ପରିଚୟ ସ୍ପଷ୍ଟ।

ସାମଗ୍ରିକ ଭାବରେ ଜଣେ କୃତବିଦ୍ୟ ସାହିତ୍ୟ ସମାଲୋଚକ ଭାବେ ଚିନ୍ତାମଣିଙ୍କ କୃତି ଓ କୃତିତ୍ୱର ମୂଲ୍ୟାୟନ କରିବାକୁ ଗଲାବେଳେ ତାଙ୍କ ନିଜ ଦୃଷ୍ଟିରେ ଜଣେ 'ସମାଲୋଚକର ଭୂମିକା'ରେ ନିର୍ଦ୍ଦେଶିତ ମାନଦଣ୍ଡକୁ ନିୟାମକ ଭାବେ ନିଆଯାଇପାରେ। ତାଙ୍କ ବିଚାରରେ ସମାଲୋଚକ ଏକାଧାରାରେ ହେବେ ଭୋକ୍ତା, ବୋଦ୍ଧା ଓ ବିଚାରକ। ସାହିତ୍ୟରସର ନାନ୍ଦନିକ ଉପଭୋଗ କରିବାର ସାମର୍ଥ୍ୟ ଓ ଆଗ୍ରହ ସମାଲୋଚକର ପ୍ରଥମ ଯୋଗ୍ୟତା, ଦ୍ୱିତୀୟ ଯୋଗ୍ୟତା ତାଙ୍କର ଜ୍ଞାନ ଓ ତୃତୀୟଟି ସମାଲୋଚକଙ୍କର ବିଚାର ବୁଦ୍ଧି, ଯାହାର ଉପଯୋଗରେ ସେ ସାହିତ୍ୟ ସୃଷ୍ଟିର ମୂଲ୍ୟାୟନ କରିବେ। ଏ ସମସ୍ତ ଯୋଗ୍ୟତାର ଚିନ୍ତାମଣି ଯେ ଅଧିକାରୀ, ଓଡ଼ିଆ ସାହିତ୍ୟର ଇତିହାସ ଏହା ଅବଶ୍ୟ ସ୍ମରଣ

ରଖିବ। ସମାଲୋଚକର ଦ୍ୱିତୀୟ କର୍ତ୍ତବ୍ୟ ହେଉଛି, ସତ୍ୟନିଷ୍ଠତା ଓ ନିର୍ଭୀକତା। ଏ ଦିଗରୁ ଚିନ୍ତାମଣି ଥିଲେ ଅବିଚଳିତ। ସେଥିପାଇଁ ଜୀବନରେ ତାଙ୍କୁ କେତେ ସମସ୍ୟାର ସମ୍ମୁଖୀନ ହେବାକୁ ପଡିଛି। କିନ୍ତୁ ସର୍ବଦା ସେ ନିର୍ଭୀକ ଭାବେ ସତ୍ୟ ଉପସ୍ଥାପନ କରିଛନ୍ତି। ସମାଲୋଚକର ମସ୍ତିଷ୍କରେ ରସବୁଦ୍ଧି ଓ ଯୁକ୍ତିବୁଦ୍ଧିର ସମ୍ମିଶ୍ରଣ ଘଟିଥାଏ। ଚିନ୍ତାମଣି କବି ଓ ସମାଲୋଚକ। କବିଭାବେ ରସବୁଦ୍ଧି ତାଙ୍କର ସରସ ଓ ସମାଲୋଚକ ଭାବେ ଯୁକ୍ତିବୁଦ୍ଧି ତାଙ୍କର ମାର୍ଜିତ ଓ ତୀକ୍ଷଣ। ସମାଲୋଚକର ଅନ୍ୟ ଏକ ବିଶିଷ୍ଟ ଗୁଣ ଭାବେ ତାଙ୍କ ଭିତରେ ଅଧ୍ୟୟନ ଓ ଚିନ୍ତନର ସମିଶ୍ରଣ ଘଟିଛି। ସୌନ୍ଦର୍ଯ୍ୟ ସହିତ ମହତ୍ୱକୁ ସମନ୍ୱିତ କଲେ ଅସାଧାରଣ ଗାରିମା ଫୁଟିଉଠେ। ନିଜ ନିକିତିରେ ନିଜକୁ ତଉଲିବାର ସୁଯୋଗ କ୍ୱଚିତ ମିଳେ। ଚିନ୍ତାମଣିଙ୍କ ସମାଲୋଚନାର ବିଶିଷ୍ଟ ଦିଗଗୁଡିକୁ ବିଚାର କଲେ ସମସ୍ତ କଥା ସହଜରେ ଅନୁମେୟ।

ଜଣେ ସଫଳ ସମାଲୋଚକର ବୈଶିଷ୍ଟ୍ୟ ବିଚାର କାଳରେ କେତେକ ବିଶିଷ୍ଟ ଦିଗ ପ୍ରତି ସଚେତନତା ଆବଶ୍ୟକ। ତନ୍ମଧ୍ୟରୁ ପ୍ରଥମ, ନନ୍ଦନ ଦୃଷ୍ଟି; ଦ୍ୱିତୀୟ: ଜୀବନାନୁଭୂତି; ତୃତୀୟ, ଐତିହାସିକ ଜ୍ଞାନ; ଚତୁର୍ଥ, ଉତ୍ସସନ୍ଧାନ ପ୍ରଭାବ ଓ ପଞ୍ଚମ ହେଉଛି ସମାଲୋଚନା ପଦ୍ଧତି ଓ ସମସ୍ୟା। ଏ ସବୁର ଆହରଣ ଓ ରୂପାୟନରେ ଚିନ୍ତାମଣି ଥିଲେ ଅତ୍ୟନ୍ତ କୁଶଳୀ। ପ୍ରତ୍ୟେକ ସମାଲୋଚନାରେ ତାଙ୍କର ଦୁଇଟି ଉପାଦାନ ଅନୁଭବ୍ୟ। ପ୍ରଥମଟି ସାହିତ୍ୟକୃତିର ଯଥାଯୋଗ୍ୟ ମୂଲ୍ୟାୟନ ଓ ଦ୍ୱିତୀୟ, ସାହିତ୍ୟର ଇତିହାସରେ ସେହି କୃତିର ସ୍ରଷ୍ଟାଙ୍କର ସ୍ଥାନ କଳନା ଓ ଦାନ। ଏଥିପାଇଁ ପ୍ରୟୋଜନ ହେଉଥିବା ତିନୋଟି ଗୁଣରେ ସେ ଗରୀୟାନ । ପ୍ରଥମ, ବିଚାରର ମାନକ ନିଦାନ; ଦ୍ୱିତୀୟ, ସାହିତ୍ୟକୃତିର ସଂପୂର୍ଣ୍ଣ ଅବବୋଧ ଶକ୍ତି ଓ ଆଗ୍ରହ ଏବଂ ତୃତୀୟ, ସାଂସ୍କୃତିକ ଅବଧାରଣା – ଏସବୁରେ ଚିନ୍ତାମଣିଙ୍କ ପ୍ରତିଭା ସମୃଦ୍ଧ।

ପ୍ରତୀକବାଦୀ ସମାଲୋଚନାର ସୂତ୍ରପାତ ହେଲାବେଳକୁ କବି ବୋଦଲେୟାରଙ୍କ କାବ୍ୟଦର୍ଶନ ପ୍ରତିଷ୍ଠିତ ହୋଇ ସାରିଛି। ବ୍ୟକ୍ତିଗତ ପ୍ରବୃତ୍ତି ସହିତ ପ୍ରେରଣାର ସମନ୍ୱୟ, ପ୍ରତୀକତନ୍ତ୍ରୀ ବ୍ୟଞ୍ଜନା ସହିତ ଐତିହାସିକ ସଚେତନତାର ସମ୍ମିଶ୍ରଣ ସମାଲୋଚକର ଯେଉଁ ନିଗୂଢ଼ ବ୍ୟକ୍ତିତ୍ୱକୁ ଜନ୍ମ ଦେଇଥିଲା, ଚିନ୍ତାମଣି ଥିଲେ ସେଇ ଧାରାର ଉତ୍ତରାଧିକାରୀ। ବୋଦଲେୟାରଙ୍କ ଭାବଶିଷ୍ୟ, କବିତା ଓ ସମାଲୋଚନା ଉଭୟରେ ପ୍ରତୀକତନ୍ତ୍ରୀ ବ୍ୟଞ୍ଜନା ଓ ଶବ୍ଦ ତନ୍ମାତ୍ରା ଯେପରିକି ଥିଲା ଚିନ୍ତାମଣିଙ୍କର ଶ୍ରେଷ୍ଠ ଆୟୁଧ। ରୋମାଣ୍ଟିକ-ମାନସରେ ବ୍ୟଞ୍ଜନା ପ୍ରତି ଅନୁରାଗର କ୍ରମହ୍ରାସମାନତା ଲକ୍ଷ୍ୟକରି ନୂତନ ଭାବରେ ତା' ପ୍ରତି ଦୃଷ୍ଟି ଆକର୍ଷଣ କରାଇବାରେ ଚେଷ୍ଟିତ ଥିଲେ ପ୍ରତୀକବାଦୀ ଆଲୋଚକଗଣ। କବିତାର ଫଳ ଆନନ୍ଦ, ଜ୍ଞାନ କିମ୍ବା ନୀତିବାଦ ନୁହେ। ଏହି ଆନନ୍ଦର ଜନ୍ମ ଇନ୍ଦ୍ରିୟଜାତ ଆବେଗକୁ ଭାବଧୃତ ବ୍ୟଞ୍ଜନାରେ ରୂପାନ୍ତରିତ କରିବାରେ ନିହିତ। ଏହି ପ୍ରତୀକବାଦୀ ଦର୍ଶନକୁ କାବ୍ୟଦର୍ଶନ ଭାବେ ଗ୍ରହଣ କରିଛନ୍ତି ଚିନ୍ତାମଣି। ବ୍ୟଞ୍ଜନା ସାମର୍ଥ୍ୟରେ ଶ୍ରେଷ୍ଠତମ କବି ବୋଦଲେୟାର ଥିଲେ ତାଙ୍କର କାବ୍ୟଗୁରୁ। ସମାଲୋଚନାରେ ମଧ୍ୟ ସେଇ ଦର୍ଶନର ପ୍ରଭାବ ପ୍ରତିଭାତ। ସ୍ୱଳ୍ପଶବ୍ଦକୁ ନେଇ ଆନନ୍ଦମୟ ଗୂଢ଼ ପ୍ରତୀକର ଉଦ୍‌ଭାବନା କବିତାରେ ଓ ସାରସଂକ୍ଷିପ୍ତ ଉପସ୍ଥାପନ ସମାଲୋଚନାରେ -- ଏହାହିଁ ଥିଲା ଚିନ୍ତାମଣିଙ୍କର ଅଭିଜ୍ଞତାର

ସନ୍ଧି । ଅନୁସନ୍ଧାନ ସହିତ କୌତୁକବୋଧର ସଂଯୋଗ ସଂବୃଦ୍ଧ ତାଙ୍କ ସମାଲୋଚନା ଯେଉଁ ନୂତନ ଜୀବନ ଦେଇଛି, ଓଡ଼ିଆ ସାହିତ୍ୟ ଇତିହାସ ଚିରକାଳ ତାଙ୍କୁ ସ୍ମରଣ ରଖିବ ।

**ଚିନ୍ତାମଣି ବେହେରାଙ୍କ ସମାଲୋଚନା ଗ୍ରନ୍ଥସୂଚୀ**

କାବ୍ୟ ଓ କଳାକାର (୧୯୬୬), କଟକ : ଜଗନ୍ନାଥ ରଥ

ଆଧୁନିକତାର କ,ଖ ଓ ଅନ୍ୟାନ୍ୟ ଆଲୋଚନା (୧୯୭୩), କଟକ : ଫ୍ରେଣ୍ଡସ ପବ୍ଲିସରସ

ବିଦଗ୍ଧ ପାଠକ (୧୯୭୬),

କଳାଦୃଷ୍ଟି (୧୯୮୨),

ସାହିତ୍ୟ ଚିନ୍ତା (୧୯୯୨), କଟକ : ଫ୍ରେଣ୍ଡସ ପବ୍ଲିସରସ

ଚିତ୍ର ଓ ଚରିତ୍ର (୨୦୦୩)



୨୩ ଅକ୍ଟୋବର ୧୯୨୯ - ୧୩ ଜୁଲାଇ ୨୦୧୬

## ସମୀକ୍ଷକ ନରେନ୍ଦ୍ରନାଥ ମିଶ୍ର

ସୁଧୀର ଚନ୍ଦ୍ର ବେହୁରା

ସ୍ୱାଧୀନତା ପରବର୍ତ୍ତୀ ଓଡ଼ିଆ ସମାଲୋଚନା ସାହିତ୍ୟକୁ ସମୃଦ୍ଧ କରିବାରେ ଉଚ୍ଚତର ଶିକ୍ଷାସହ ସଂପୃକ୍ତ ଓଡିଆ ଭାଷା-ସାହିତ୍ୟର ଅଧ୍ୟାପକମାନଙ୍କ ଭୂମିକା ଅନସ୍ୱୀକାର୍ଯ୍ୟ। ଛାତ୍ର-ଶୁଶ୍ରୂଷା ଲକ୍ଷ୍ୟରେ ଟୀକାଟିପ୍ପଣୀ ସର୍ବସ୍ୱ, ପାସ୍-ଲକ୍ଷ୍ୟ-ଲାଂଛିତ, ପାଠ୍ୟସହାୟକ ପୁସ୍ତକଠାରୁ ଆରମ୍ଭ କରି ଗବେଷଣା ଡିଗ୍ରୀ ଲାଭ ବା ସତ୍ୟାନୁସନ୍ଧାନ ନିମନ୍ତେ ଉଦ୍ଦିଷ୍ଟ ସମୀକ୍ଷାଗ୍ରନ୍ଥ ଯାଏଁ ରଚନା କରି ଆବଶ୍ୟକତା ଓ ଆଗ୍ରହର ପରିପୂର୍ତ୍ତି କରିଛନ୍ତି ସେମାନେ। ପରିମାଣ ଦିଗରୁ ଅଗ୍ରଣୀ ଓ ଗୁଣ ଦିଗରୁ ପଶ୍ଚାତ୍‌ପଦ ବୋଲି ସେହି ସମୀକ୍ଷା ସମ୍ବନ୍ଧରେ ଯେତେ ବିରୁଦ୍ଧ ମନ୍ତବ୍ୟ ପ୍ରକାଶ ପାଇଲେ ବି ସେହିମାନଙ୍କ ଶ୍ରଦ୍ଧାକୁ ସମ୍ବଳ କରିବାକୁ ପଡିଛି ଆଜିର ସମାଲୋଚନା-ସାହିତ୍ୟକୁ। ଅବଶ୍ୟ ଯେଉଁମାନେ କେବଳ ବିଷୟନିଷ୍ଠ ହୋଇଛନ୍ତି, ସେମାନେ ଦୃଷ୍ଟିନିଷ୍ଠ ସମାଲୋଚକଙ୍କଠାରୁ ଊଣାସ୍ୱୀକୃତି ଲାଭ କରିଛନ୍ତି। ସେହି ଅଧ୍ୟାପକ ଗୋଷ୍ଠୀ ମଧ୍ୟରେ ଯେଉଁ ଅଳ୍ପ କେତେଜଣ ଦୃଷ୍ଟିନିଷ୍ଠ ସମୀକ୍ଷାକୁ ଆପଣା ଜୀବନର ବ୍ରତ କରି ସାହିତ୍ୟ-ଗବେଷଣାର ଗୁଣାତ୍ମକ ବିକାଶରେ ନିୟୋଜିତ ହୋଇଛନ୍ତି ଓ ଆଶାନୁରୂପ ସିଦ୍ଧିର ଅଧିକାରୀ ହୋଇଛନ୍ତି, ସେମାନଙ୍କ ମଧ୍ୟରେ ନରେନ୍ଦ୍ରନାଥ ମିଶ୍ର ଅନ୍ୟତମ।

ନରେନ୍ଦ୍ରନାଥ(୧୯୨୯) ଆଲୋକ-ସନ୍ଧାନୀ ଦୃଷ୍ଟିର ଅଧିକାରୀ। ନିମ୍ନ ମଧ୍ୟବିତ୍ତ ପରିବାରର ସନ୍ତାନ, ସ୍ୱଳ୍ପ ସମ୍ବଳ; ତଥାପି ବିଜୁଳୀବତୀ ସନ୍ଦର୍ଶନର ଅଭୀପ୍ସା ନେଇ ଛାତ୍ର ଜଣକ ୧୯୪୩ ମସିହାରେ ନିଜ ଜିଲ୍ଲାର ବାଲେଶ୍ୱର ଜିଲ୍ଲା ସ୍କୁଲ୍ ଛାଡି ସୁଦୂର ବାରିପଦା ହାଇସ୍କୁଲ୍‌କୁ ଯାଇଛନ୍ତି ମାଟ୍ରିକ୍ ପାଠ ପଢ଼ିବାପାଇଁ, ସମଗ୍ର ଜୀବନ ସେଇ ମାନସିକତାକୁ ଜୀବନର ବ୍ରତ କରିଛନ୍ତି। ହାଇସ୍କୁଲ୍‌ର ଛାତ୍ର ଥିବାବେଳେ ଶିକ୍ଷକ-ସାହିତ୍ୟିକ କୁଞ୍ଜବିହାରୀ ଦାଶ ଓ ପ୍ରହ୍ଲାଦ ପ୍ରଧାନଙ୍କ ସାନ୍ନିଧ୍ୟ ଲଭିଛନ୍ତି। ୧୯୪୬ରୁ ୧୯୪୯ ପର୍ଯ୍ୟନ୍ତ ବାଲେଶ୍ୱର ଫକୀରମୋହନ କଲେଜରେ ଇତିହାସ ଅନର୍ସ ଛାତ୍ର ଥିବା ସମୟରେ କବି ଅଧ୍ୟାପକ ବୈକୁଣ୍ଠନାଥ ପଟ୍ଟନାୟକଙ୍କ ସାନ୍ନିଧ୍ୟ ଓ ନବଗଠିତ 'ଫକୀରମୋହନ ସାହିତ୍ୟ ପରିଷଦ'ରୁ ପ୍ରେରଣା ଲଭି ସେ ଆପଣାର ସାହିତ୍ୟ-ରୁଚି ଗଠନ କରିଛନ୍ତି। ସେହି ସମୟରେ ତାଙ୍କର **'ବିଶ୍ୱ ସମସ୍ୟା ସମାଧାନରେ ଐତିହାସିକ ବିଚାରକୋଣ'** ପ୍ରବନ୍ଧ 'ସହକାର'ରେ ପ୍ରକାଶ ପାଇଛି, ଶୁଭେଚ୍ଛୁ ଅଧ୍ୟାପକଗଣଙ୍କ ଦୃଷ୍ଟି ଆକର୍ଷଣ କରିଛି। ସାହିତ୍ୟିକ ଅଭୀପ୍ସା ଯେତେବେଳେ ଦାନା ବାନ୍ଧି ଆସୁଥିଲା, ସେତେବେଳେ ଶୁଭେଚ୍ଛୁ ଅଧ୍ୟାପକ କୁଞ୍ଜବିହାରୀ ଦାଶଙ୍କ ଡାକରା ପାଇ, ରେଭେନ୍‌ସା କଲେଜ୍‌ରୁ ଇତିହାସ ସ୍ନାତକୋତ୍ତର ଶିକ୍ଷା ଅପୂର୍ଣ୍ଣ ରଖି, ଶାନ୍ତିନିକେତନସ୍ଥ ବିଶ୍ୱଭାରତୀରେ ଓଡିଆ ବିଭାଗର ଗବେଷଣା ସହକାରୀ ଭାବରେ

ଯୋଗ ଦେଇଛନ୍ତି । ଗବେଷଣା ସହକାରୀ ଓ ଏମ୍.ଏ ଛାତ୍ର ଭାବରେ ସେ ଶାନ୍ତିନିକେତନରେ ରହିଯାଇଛନ୍ତି କେତୋଟି ବର୍ଷ । ତାହା ତାଙ୍କ ଗବେଷକ ଜୀବନର ପ୍ରସ୍ତୁତି ପର୍ବ । ସେତେବେଳେ ସେ ବିଶ୍ୱଭାରତୀଙ୍କର ବନ୍ଦନା ପାଇଁ ସୁଯୋଗ ଲଭି ଆପଣା ଜ୍ଞାନର ଦିଗ୍‌ବଳୟ ସଂପ୍ରସାରିତ କରିଛନ୍ତି । ଅଧ୍ୟାପକ କୁଞ୍ଜବିହାରୀ ଦାଶଙ୍କ ପ୍ରେରଣାଦାୟୀ ବ୍ୟକ୍ତିତ୍ୱର ପ୍ରଭାବ ଓ ଦିଗ୍‌ଦର୍ଶନ ଏବଂ ପରବର୍ତ୍ତୀ ଜୀବନରେ ବିଶ୍ୱଭାରତୀରେ ଓଡ଼ିଆ ଭାଷା-ସାହିତ୍ୟ ବିଭାଗର ଅଧ୍ୟାପନା-ବୃତ୍ତି ତାଙ୍କ ସାହିତ୍ୟ-ନିଷ୍ଠାକୁ ଉଜ୍ଜୀବୀତ କରି ରଖିଛି ।

ନରେନ୍ଦ୍ରନାଥ କେତୋଟି ମୌଳିକ କବିତା(ସବୁଜ ଘାସ ଓ ଆସ୍ତାଚଳ ସୂର୍ଯ୍ୟ- ୨୦୦୮), ଗଳ୍ପ ଓ ଭ୍ରମଣ କାହାଣୀ 'କଳାପାଣି' (୧୯୮୨) ରଚନା କରିଛନ୍ତି । ସେଗୁଡ଼ିକ ତାଙ୍କ ସର୍ଜନଶୀଳ ମାନସର ସାମୟିକ ପରିପ୍ରକାଶ । ତାଙ୍କର ପ୍ରାୟ ସମସ୍ତ ଶକ୍ତି ସାହିତ୍ୟ-ସମୀକ୍ଷାରେ ନିୟୋଜିତ । ସମାଲୋଚନା କ୍ଷେତ୍ରରେ ସେ ଆପଣାର ସର୍ଜନଶୀଳତା ଓ ମନନଧର୍ମିତାର ପରିଚୟ ପ୍ରଦାନ କରିଛନ୍ତି । ସାମୟିକ ସାହିତ୍ୟପତ୍ରଗୁଡ଼ିକରେ ପ୍ରକାଶିତ ସାହିତ୍ୟାଲୋଚନାର ସଙ୍କଳନ ଓ ବିଧିବଦ୍ଧ ଗବେଷଣା ଗ୍ରନ୍ଥ ରୂପେ ଅଦ୍ୟାବଧି ତାଙ୍କର ଚଉଦ ଖଣ୍ଡି ସମୀକ୍ଷାଗ୍ରନ୍ଥ ପ୍ରକାଶିତ । ଉକ୍ତ ଗ୍ରନ୍ଥ ସମୂହର ରଚନା ଓ ପ୍ରକାଶକାଳ ଷଷ୍ଠ ଦଶକରୁ ବର୍ତ୍ତମାନ ପର୍ଯ୍ୟନ୍ତ ବ୍ୟାପ୍ତ । ଦୀର୍ଘ ପାଂଚ ଦଶନ୍ଧିର ତାଙ୍କ ସାଧନାର ସ୍ୱଷ୍ଟ ଚିତ୍ର ନ ଜାଣିଲେ, ସିଦ୍ଧି କଳନା କରିବା ଅସମ୍ଭବ ।

"ବଳରାମ ଦାସ ଓ ଓଡ଼ିଆ ରାମାୟଣ" (୧୯୫୫) ମିଶ୍ରଙ୍କ ପ୍ରଥମ ସମୀକ୍ଷାଗ୍ରନ୍ଥ । ଆଗରୁ ବିକ୍ଷିପ୍ତ ଭାବରେ ବିଭିନ୍ନ ବିଷୟରେ ଉତ୍କଳ ସାହିତ୍ୟ, ଝଙ୍କାର ଆଦିରେ କେତୋଟି ପ୍ରବନ୍ଧ ପ୍ରକାଶିତ ହୋଇଥିଲେ ହେଁ ଉକ୍ତ ଗ୍ରନ୍ଥ ତାଙ୍କର ବିଧିବଦ୍ଧ ଗବେଷଣା ଓ ସାହିତ୍ୟ ସମୀକ୍ଷାର ପ୍ରଥମ ଫଳଶ୍ରୁତି । ଏହାରି ମାଧ୍ୟମରେ ଶିକ୍ଷାଗୁରୁ ଡଃ କୁଞ୍ଜବିହାରୀ ଦାଶଙ୍କ ପାଖରେ ସାହିତ୍ୟାନୁଶୀଳନର ଶିକ୍ଷାନବୀଶ କରିଛନ୍ତି ନରେନ୍ଦ୍ରନାଥ । ଏହା ତାଙ୍କ ସ୍ନାତକୋତ୍ତର ଶିକ୍ଷାକାଳୀନ ରଚନା । ପରୀକ୍ଷକ ଡଃ ଦାଶ ଓ ପଣ୍ଡିତ ନୀଳକଣ୍ଠଙ୍କ ଉଚ୍ଚ ଅଭିମତ ଓ ସୁପାରିଶ୍ ପାଇ ବିଶ୍ୱଭାରତୀର ଗବେଷଣା ଗ୍ରନ୍ଥ ପ୍ରକାଶନ ବିଭାଗ ଆନୁକୂଲ୍ୟରେ ପ୍ରକାଶିତ । ଓଡ଼ିଆ **ଜଗମୋହନ ରାମାୟଣ ଓ କବି ବଳରାମଦାସ** ଆଲୋଚନାର କେନ୍ଦ୍ରବିନ୍ଦୁ ହେଲେ ହେଁ ଏହାର ପରିଧି ସମଗ୍ର ଭାରତୀୟ ରାମକଥାମୂଳକ ସାହିତ୍ୟ । ଆଧୁନିକ ଭାରତୀୟ ଭାଷାସମୂହରେ ପ୍ରକାଶିତ ରାମାୟଣକୁ ବିଚାରକୁ ନେଇ ସେ ବଳରାମଙ୍କ ସମକାଳୀନ ସମାଜ, ସାହିତ୍ୟ, ଧର୍ମ ଆଦିର ନାନା - ଦିଗରୁ ଆଲୋଚନା କରିଛନ୍ତି । ଜଗମୋହନ ରାମାୟଣର ମୂଲ୍ୟ କଳନା କରି ସେ ବଳରାମଙ୍କୁ ଜଣେ ସମର୍ଥ ସ୍ୱତଃସ୍ଫୂର୍ତ୍ତ ମହାକାବ୍ୟକାରର ଗୌରବ ପ୍ରଦାନ କରିଛନ୍ତି । ସେଥିପାଇଁ ତୁଳନାମୂଳକ, ନନ୍ଦନତାତ୍ତ୍ୱିକ ଓ ଐତିହାସିକ ସମୀକ୍ଷା ପଦ୍ଧତିର ଅବଲମ୍ବନ କରିଛନ୍ତି । ସହାୟକ ପୁସ୍ତକ- ନିର୍ଭରତା, ଚିନ୍ତାର ଅସ୍ୱଚ୍ଛତା ଆଦି ଗବେଷକ ଜୀବନର ପ୍ରାଥମିକ ପର୍ଯ୍ୟାୟର ସ୍ୱାଭାବିକ ଦୁର୍ବଳତା ସତ୍ତ୍ୱେ ଏହା ସମୀକ୍ଷକଙ୍କ ଉଜ୍ଜ୍ୱଳ ଭବିଷ୍ୟତର ପ୍ରତିଶ୍ରୁତି ପ୍ରଦାନ କରିଛି ।

ମାତ୍ର ଅଠେଇଶି ପୃଷ୍ଠାର କ୍ଷୁଦ୍ର କଳେବର ବିଶିଷ୍ଟ "ଜ୍ଞାନକୋଷ" (୧୯୫୭) ଆଲୋଚନା ପ୍ରବନ୍ଧଟି ପୁସ୍ତିକା ଆକାରରେ ଓଡିଆ ସରକାରଙ୍କ ସାମାଜିକ ଶିକ୍ଷା ବିଭାଗ କର୍ତ୍ତୃକ ଲୋକକଲ୍ୟାଣ ଗ୍ରନ୍ଥମାଳା'ର ଚତୁର୍ଥ ଖଣ୍ଡ ଭାବରେ ପ୍ରକାଶିତ। ଶିକ୍ଷିତ ଲୋକମାନଙ୍କର ଜ୍ଞାନ-ବିଜ୍ଞାନ ସମ୍ବନ୍ଧୀୟ ଧାରଣାର ବିକାଶ ନିମନ୍ତେ ଆକର-ଗ୍ରନ୍ଥ ଭାବରେ ଏନ୍‌ସାଇକ୍ଲୋପିଡିଆର ଉପଯୋଗିତା ଓ ବିଶ୍ୱର ବିଭିନ୍ନ ରାଷ୍ଟ୍ରରେ ଏହି କୋଷଗ୍ରନ୍ଥ ସଙ୍କଳନର ଇତିହାସ ତଥା ଆଭିମୁଖ୍ୟ ପ୍ରାଞ୍ଜଳ ଭାବରେ ଉକ୍ତ ପ୍ରବନ୍ଧରେ ବର୍ଣ୍ଣିତ।

"ଶୈଳ ଓ ସୀମାନ୍ତ" (୧୯୫୮) ନଅଟି ଆଲୋଚନା ପ୍ରବନ୍ଧର ଏକ ମନୋଜ୍ଞ ସଙ୍କଳନ। ଆଲୋଚ୍ୟ ବିଷୟର ପରିସର ସମଗ୍ର ପାଞ୍ଚଶହ ବର୍ଷର ପ୍ରାଚୀନ ଓ ଆଧୁନିକ ଓଡିଆ ସାହିତ୍ୟ। ନବୀନ ସମୀକ୍ଷକ ଉକ୍ତ ଗ୍ରନ୍ଥରେ ନିଜସ୍ୱ ଦୃଷ୍ଟି ଘେନି ଓଡିଆ ସାହିତ୍ୟ - ରାଜ୍ୟର 'ଶ୍ରୀ' ସନ୍ଦର୍ଶନ କରିଛନ୍ତି। ତାଙ୍କ ଦୃଷ୍ଟି ଆକର୍ଷଣ କରିଥିବା ସାରଳା, ବଳରାମ, ଫକୀରମୋହନ , ଲକ୍ଷ୍ମୀକାନ୍ତଙ୍କ ଭଳି ଉତ୍ତୁଙ୍ଗ ଶୈଳସମୂହ ଓ ପଞ୍ଚସଖା, ଆଧୁନିକ କାବ୍ୟ ତଥା ନିବନ୍ଧ ସାହିତ୍ୟ ଭଳି ବିସ୍ତୃତ ସୀମାନ୍ତର ସେ ସମୀକ୍ଷା କରିଛନ୍ତି। 'ଆଧୁନିକ ଓଡିଆ ସାହିତ୍ୟର ଆଧୁନିକତା' ଓ 'ଓଡିଆ ସାମାଜିକ ଇତିହାସର ଉପାଦାନ' ଉକ୍ତ ସଙ୍କଳନରେ ସଂଯୁକ୍ତ ଦୁଇଟି ଆକର୍ଷଣୀୟ ପ୍ରବନ୍ଧ।

"ଆଧୁନିକ ଓଡିଆ କାବ୍ୟଧାରା : ଆଦିଯୁଗ" (୧୯୬୪) ନରେନ୍ଦ୍ରନାଥଙ୍କ ପିଏଚ.ଡି. ଡିଗ୍ରୀ ନିମନ୍ତେ ଉଦ୍ଦିଷ୍ଟ ନିବନ୍ଧର ଗ୍ରନ୍ଥରୂପ। ଆଧୁନିକ ଓଡିଆ ସାହିତ୍ୟ ସମ୍ପର୍କିତ ପ୍ରଥମ ଚର୍ଚ୍ଚା ନିବନ୍ଧ ଭାବରେ ଏହା ୧୯୬୦ରେ ବିଶ୍ୱଭାରତୀର ଅନୁମୋଦନ ଲାଭ କରିଛି ଏବଂ ପରବର୍ତ୍ତୀ କାଳରେ ବିଶ୍ୱଭାରତୀ ଗବେଷଣା ପ୍ରକାଶନ ସମିତି ଆନୁକୂଲ୍ୟରେ ପ୍ରକାଶ ପାଇଛି। ନରେନ୍ଦ୍ରନାଥଙ୍କ ବିଶ୍ଲେଷଣୀ ବିଶ୍ୱଦୃଷ୍ଟିର ଏହା ସଫଳ ଅଭିବ୍ୟକ୍ତି। ଆଧୁନିକ ଓଡିଆ କାବ୍ୟ ସାହିତ୍ୟର ଚର୍ଚ୍ଚା ନିମନ୍ତେ ଏହା ଏକ ମାନକ ଗ୍ରନ୍ଥ ହେଉଛି। ଆଧୁନିକ ଓଡିଆ ସାହିତ୍ୟର ଆଦି ପ୍ରବକ୍ତା-ତ୍ରୟୀ ରାଧାନାଥ, ମଧୁସୂଦନ, ଫକୀରମୋହନ ତଥା ତତ୍କାଳୀନ ଗୌଣ କବିଗଣଙ୍କ ବିଶ୍ଲେଷଣ ଏବଂ ଆଧୁନିକତାର ଅଭ୍ୟୁଦୟକାଳୀନ କାବ୍ୟର ସାମଗ୍ରିକ ମୂଲ୍ୟାଙ୍କନ।

ଓଡିଆ ସାହିତ୍ୟର ବିଭିନ୍ନ ବିଭାବ ଓ ଓଡିଆ ଭାଷା ବିକାଶର କେତେକ ସମସ୍ୟା ଉପରେ ଆଲୋକପାତ ଲକ୍ଷ୍ୟରେ ଲିଖିତ ଏବଂ ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶିତ ଉଣେଇଶ ଗୋଟି ପ୍ରବନ୍ଧର ସଙ୍କଳିତ ରୂପ "ଓଡିଆ ଭାଷା ଓ ସାହିତ୍ୟ: ଏକ ଅଧ୍ୟୟନ" (୧୯୬୮)। ଏହି ଆଲୋଚନା ଗ୍ରନ୍ଥ କଟକର ପ୍ରକାଶନ ସଂସ୍ଥା 'ଜଗନ୍ନାଥ ରଥ' କର୍ତ୍ତୃକ ପ୍ରକାଶିତ। ଏହାକୁ "ଶୈଳ ଓ ସୀମାନ୍ତ" (୧୯୫୮)ର ପରିବର୍ଦ୍ଧିତ ଦ୍ୱିତୀୟ ସଙ୍କଳନ କହିଲେ ଅତ୍ୟୁକ୍ତି ହେବ ନାହିଁ। ଏଥିରେ ନବ ସଂଯୋଜିତ ପ୍ରବନ୍ଧଗୁଡିକରୁ ନରେନ୍ଦ୍ରନାଥଙ୍କ ବୀକ୍ଷାମାନସର ପରିଚୟ ମିଳେ। ନୀଳକଣ୍ଠ ଓ ଓଡିଆ ଭାଷା ସାହିତ୍ୟର ଅଧ୍ୟାପନା - ଗବେଷଣା ସମ୍ପର୍କିତ ପ୍ରବନ୍ଧଗୁଡିକରୁ ଜଣାପଡେ, ନରେନ୍ଦ୍ରଙ୍କପାଇଁ ଗବେଷଣା ବୃତ୍ତିର

ପୋଷାକ ନୁହେଁ, ଜୀବନ-ଦୃଷ୍ଟି। ଓଡିଆ କାବ୍ୟଧାରାର ନବଜାଗରଣ ପର୍ବ ସଂକ୍ରାନ୍ତ ସନ୍ଦର୍ଭର ପ୍ରସ୍ତୁତି ପର୍ବର ଆଭାସଚିତ୍ର ଉକ୍ତ ସଙ୍କଳନାନ୍ତର୍ଗତ ଆଧୁନିକ କବିତାତତ୍ତ୍ୱ ଓ ଗଙ୍ଗାଧର ପ୍ରତିଭା ସଂକ୍ରାନ୍ତ ଆଲୋଚନାରେ ଅଙ୍କିତ।

"ଆଧୁନିକତା ଓ ଆଧୁନିକ ସାହିତ୍ୟ" (୧୯୭୮) ମିଶ୍ରଙ୍କ ବିଭିନ୍ନ ସମୟରେ ରଚିତ ଉଣେଇଶ ଗୋଟି ସାହିତ୍ୟାଲୋଚନାର ସଙ୍କଳିତ ରୂପ। କଟକର ଫ୍ରେଣ୍ଡସ୍ ପବ୍ଲିଶର୍ସ୍ ଏହାର ପ୍ରକାଶକ। ରବୀନ୍ଦ୍ରନାଥ,ନୀଳକଣ୍ଠ ପ୍ରମୁଖ ଏକକ ସାହିତ୍ୟିକଙ୍କ ଆଲୋଚନାଗୁଡ଼ିକୁ ବାଦ୍‌ଦେଲେ, ଅନ୍ୟଗୁଡ଼ିକ ଆଧୁନିକ ଓଡିଆ କାବ୍ୟଧାରାର ସମକାଳୀନ ସାହିତ୍ୟ ସମ୍ପର୍କିତ। ବୋଧହୁଏ, ଏଗୁଡ଼ିକ ମାଧ୍ୟମରେ ସମକାଳୀନ ଯୁଗ ସମ୍ପର୍କିତ ସମୀକ୍ଷାଗ୍ରନ୍ଥର ପ୍ରାକ୍ ପ୍ରସ୍ତୁତି କରିଛନ୍ତି ସମୀକ୍ଷକ। ଆଧୁନିକତା ଓ ସମକାଳୀନ କବିତାର ଅବବୋଧ ଓ ତତ୍ତ୍ୱାବଗାହନ ନିମନ୍ତେ ଉକ୍ତ ସଙ୍କଳନସ୍ଥ ପ୍ରବନ୍ଧାବଳୀର ଉପଯୋଗିତା ଅନସ୍ୱୀକାର୍ଯ୍ୟ। ଆଧୁନିକ ଓଡିଆ କବିତାର କ୍ରମବିକାଶର ଇତିହାସ ଅନୁସନ୍ଧିତ୍ସାର ଏକ ସୋପାନ ଭାବରେ ଏହାର ବିଶିଷ୍ଟତା।

"ଆଧୁନିକ ଓଡିଆ କାବ୍ୟଧାରା: ଆଦିଯୁଗ" ର ସ୍ୱୀକୃତି ଓ ଗ୍ରାହକତା ନରେନ୍ଦ୍ରଙ୍କୁ ବେଶ୍ ଉତ୍ସାହିତ କରିଛି। ଊନବିଂଶ ଶତାବ୍ଦୀରୁ -- ତାଙ୍କର ଯାତ୍ରା। ବିଂଶ ଶତାବ୍ଦୀର ଆଦ୍ୟ ପାଦର ସତ୍ୟବାଦୀ ଗୋଷ୍ଠୀ ଓ ତତ୍‌କାଳୀନ ସାହିତ୍ୟ ତାଙ୍କ ସମୀକ୍ଷା-ମାନସକୁ ଉଦ୍‌ବୁଦ୍ଧ କରିଛନ୍ତି। ବିଚାରର ଗ୍ରନ୍ଥ ରୂପ "ଆଧୁନିକ କାବ୍ୟଧାରା: ନବଜାଗରଣଯୁଗ" (୧୯୭୮)। ଏହା ମଧ୍ୟ ବିଶ୍ୱଭାରତୀ ଗବେଷଣା ପ୍ରକାଶନ ସମିତି କର୍ତ୍ତୃକ ପ୍ରକାଶିତ। ଏକ ସାମଗ୍ରିକ ଦୃଷ୍ଟି ଘେନି ନବଜାଗରଣ ଯୁଗର କବିତାର ମୂଲ୍ୟାୟନ ଉକ୍ତ ନିବନ୍ଧ ରଚନାର ଉଦ୍ଦେଶ୍ୟ। ନବଜାଗରଣ କବିଗଣଙ୍କ କେନ୍ଦ୍ର ବିନ୍ଦୁରେ ପଣ୍ଡିତ ଗୋପବନ୍ଧୁ ଦାସଙ୍କୁ ଆଲୋଚକ ଅବସ୍ଥାପିତ କରିଛନ୍ତି।

ଓଡିଆ ସାହିତ୍ୟ ଏକାଡେମୀ କର୍ତ୍ତୃପକ୍ଷ ରଜତ ଜୟନ୍ତୀ ପାଳନ ଅବକାଶରେ ବହୁ ଭାଗରେ ବିଭକ୍ତ ବିଭାଗୀକୃତ ଓଡିଆ ସାହିତ୍ୟର ଇତିହାସ ପ୍ରଣୟନ ଯୋଜନା କରିଥିଲେ। ସେହି ଯୋଜନାର ଅଂଶବିଶେଷ ଭାବରେ "ଆଧୁନିକ ଓଡିଆ କଥା ସାହିତ୍ୟ : ଉପନ୍ୟାସ" (୧୯୮୨) ଗ୍ରନ୍ଥ ମିଶ୍ରଙ୍କଦ୍ୱାରା ରଚିତ ଓ ଓଡିଆ ସାହିତ୍ୟ ଏକାଡେମୀ କର୍ତ୍ତୃକ ଓଡିଆ ସାହିତ୍ୟ ଗ୍ରନ୍ଥମାଳାର ଅଷ୍ଟମ ଖଣ୍ଡ ଭାବରେ ପ୍ରକାଶିତ। ଊନବିଂଶ ଶତାବ୍ଦୀର ଶେଷପାଦରେ ଉଦ୍ଭୂତ ଏହି ନବଗଦ୍ୟ ରୂପର ପୃଷ୍ଠପଟ୍ଟ, ଉନ୍ମେଷ ଓ ଉତ୍ତରଣର ପର୍ଯ୍ୟାଲୋଚନା କାଳରେ ନରେନ୍ଦ୍ରନାଥ, ସଂକ୍ଷିପ୍ତ ପରିସରରେ, ତତ୍ତ୍ୱବ୍ୟାଖ୍ୟାନ କରିଛନ୍ତି ଓ ଯୁଗାନ୍ତକାରୀ ଉପନ୍ୟାସ ସମୂହ ସମ୍ପର୍କରେ ସ୍ୱମନ୍ତବ୍ୟ ପ୍ରଦାନ କରିଛନ୍ତି। ଆଭିମୁଖ୍ୟ ଦିଗରୁ ବିଚାର ନ କରି ଔପନ୍ୟାସିକଙ୍କୁ ଏକକ ଭାବେ ଗ୍ରହଣ କରିଛନ୍ତି। ସୀମାବଦ୍ଧ ସମୟ ଓ ସଂକ୍ଷିପ୍ତ ପରିସର ଉକ୍ତ ଗ୍ରନ୍ଥକୁ ଉପନ୍ୟାସର ପୂର୍ଣ୍ଣାଙ୍ଗ ଇତିହାସ ନ କରି 'ଇତିହାସର ଖସଡା'ରେ ପରିଣତ କରିଛି ବୋଲି ସ୍ୱୟଂ ଲେଖକ ସ୍ୱୀକାର କରିଛନ୍ତି।

"ପଣ୍ଡିତ ନୀଳକଣ୍ଠ, ଜୀବନୀ ଓ କୃତି (୧୯୮୩) ଶୀର୍ଷକ ଜୀବନୀ ଗ୍ରନ୍ଥଟି 'ପଣ୍ଡିତ ନୀଳକଣ୍ଠ ସ୍ମୃତି କମିଟି' ଆନୁକୂଲ୍ୟରେ ପ୍ରକାଶିତ। ଏଥିରେ ନୀଳକଣ୍ଠଙ୍କ ଜୀବନର ବହୁ

ଆୟାମ ରୂପାୟିତ ହୋଇଛି। ତାଙ୍କର ବହୁମୁଖୀ ପ୍ରତିଭାର କଳନାପାଇଁ ଚେଷ୍ଟା କରାଯାଇଛି। ସାହିତ୍ୟିକ ନୀଳକଣ୍ଠଙ୍କୁ ଜାଣିବାପାଇଁ ଓ ନରେନ୍ଦ୍ରନାଥଙ୍କ କୃତିତ୍ୱ କଳନାପାଇଁ ଏ ଗ୍ରନ୍ଥର ଉପଯୋଗିତା ଯଥେଷ୍ଟ। ଏଥିପାଇଁ କୁଞ୍ଜବିହାରୀ ଦାଶ ଏହାର ମୁଖବନ୍ଧରେ ଲେଖିଛନ୍ତି 'ଡଃ ନରେନଦ୍ର ନୀଳକଣ୍ଠଙ୍କ ପ୍ରସିଦ୍ଧ ବିଦ୍ୱତ୍ ଗୋଷ୍ଠୀର ଜଣେ - ବୋଧେ ଶେଷ ଜଣକ। ତାଙ୍କ ବିଦ୍ୱତ୍ ବ୍ୟକ୍ତିତ୍ୱ ଓ ଭୂଇଁ ଫଟାଇ ଉଠିଥିବା ତାଙ୍କର ରଚନା ରୀତିର ଜଣେ ଯୋଗ୍ୟ ସମଜଦାର ଓ ବିଦ୍‌ଗ୍ଧ। ତେଣୁ ନୀଳକଣ୍ଠୀ ମନୀଷାର ଯଥାର୍ଥ ରୂପାୟନ କରିବାକୁ ସେ ସମର୍ଥ ହୋଇଛନ୍ତି।"

ପଣ୍ଡିତ ନୀଳକଣ୍ଠ ଦାସଙ୍କ ଜୀବନ ଓ ସାଧନା ସମ୍ବଳିତ ମନୋଗ୍ରାଫ୍ ସାହିତ୍ୟ ଏକାଡେମୀ, ନୂଆଦିଲ୍ଲୀ ଆନୁକୂଲ୍ୟରେ Makers of Indian Literature ସିରିଜ୍‌ରେ ୧୯୯୮ ମସିହାରେ ପ୍ରକାଶ ଲାଭ କରିଛି। ବିଷୟବସ୍ତୁ ମୁଖ୍ୟତଃ ପୂର୍ବାଲୋଚିତ ଗ୍ରନ୍ଥଭିତ୍ତିରେ ଉଲ୍ଲେଖ କରାଯାଇଥିଲେ ମଧ୍ୟ, ବୃହତ୍ତର ନିଖିଳ ଭାରତୀୟ ପ୍ରେକ୍ଷାପଟରେ ଉପସ୍ଥାପନପାଇଁ ବିଷୟ ବିନ୍ୟାସ, ଐତିହାସିକ ପୃଷ୍ଠପଟର ବ୍ୟାଖ୍ୟା ନରେନ୍ଦ୍ରନାଥଙ୍କ ଇଂରାଜୀ ଭାଷାଜ୍ଞାନ ଓ ଇତିହାସବୋଧର ପ୍ରବୀଣତା ପ୍ରଦର୍ଶନ କରେ।

ସେହିପରି ନିଜର ଶିକ୍ଷାଗୁରୁ *ଲୋକରତ୍ନ କୁଞ୍ଜବିହାରୀ ଦାଶ* (୨୦୦୬) ଜୀବନୀ ଓ କୃତିତ୍ୱକୁ ନେଇ ରଚିତ ହୋଇଛି ଅନ୍ୟ ଏକ ମନୋଗ୍ରାଫ୍। ତାହା ଓଡ଼ିଶା ସାହିତ୍ୟ ଏକାଡେମୀ, ଭୁବନେଶ୍ୱରଦ୍ୱାରା ପ୍ରକାଶିତ। କୁଞ୍ଜବିହାରୀଙ୍କ ବହୁମୁଖୀ ପ୍ରତିଭାର ତହିଁରେ ଯଥୋଚିତ ଆକଳନ କରାଯାଇଛି। ସାମାଜିକ ସଂପର୍କକୁ କିପରି ସାହିତ୍ୟିକ ସାନ୍ନିଧରେ ରୂପାନ୍ତରିତ କରାଯାଇପାରେ, ଉକ୍ତ ରଚନା ତା'ର ଏକ ଦୃଷ୍ଟାନ୍ତ। ଏହି କଥା ବସ୍ତୁକୁ ନେଇ କଂଚିତ ପରିବର୍ତ୍ତିତ ବାଗ ଓ ରାଗରେ ଇଂରାଜୀରେ Makers of Indian Literature ସିରିଜ୍‌ରେ କେନ୍ଦ୍ରସାହିତ୍ୟ ଏକାଡେମୀ ପକ୍ଷରୁ Lokaratna Kunjabihari Das(୨୦୦୯) ପ୍ରକାଶିତ ଓ ଭାରତୀୟ ସାହିତ୍ୟ ସମୀକ୍ଷକଙ୍କଦ୍ୱାରା ଆଦୃତ।

ଏହାବ୍ୟତୀତ ନରେନ୍ଦ୍ରନାଥ ଆଶୁତୋଷ ଭଟ୍ଟାଚାର୍ଯ୍ୟଙ୍କ ଲୋକସଂସ୍କୃତି(୧୯୯୫) ଓ 'ସାହିତ୍ୟର ସଂକଟ'(୧୯୯୯) ସମୀକ୍ଷାଗ୍ରନ୍ଥ ଦ୍ୱୟ ଅନୁବାଦ କରିଛନ୍ତି। ଏଗୁଡ଼ିକ ନ୍ୟାସନାଲ୍ ବୁକ୍‌ଟ୍ରଷ୍ଟ, ନୂଆଦିଲ୍ଲୀ ଓ ଆର୍ଯ୍ୟପ୍ରକାଶନୀ, କଟକଦ୍ୱାରା ପ୍ରକାଶିତ। ଉକ୍ତ ଗ୍ରନ୍ଥଦ୍ୱୟରୁ ତାଙ୍କର ବଂଗଭାଷା ଓ ସଂସ୍କୃତି ଏବଂ ଓଡ଼ିଆ ଭାଷା-ସଂସ୍କୃତି ପ୍ରତି ଦାକ୍ଷିଣ୍ୟ ଭାବ ପ୍ରକଟିତ ହୁଏ।

ନରେନ୍ଦ୍ରନାଥ ସ୍ୱାଧୀନତା-ପରବର୍ତ୍ତୀ ପର୍ଯ୍ୟାୟର ବୋଧହୁଏ ପ୍ରଥମ ଅଧ୍ୟାପକ, ଯେ କି ଆଧୁନିକ ଓଡିଆ ସାହିତ୍ୟ ଚର୍ଚ୍ଚାରେ ମନୋନିବେଶ କରିଛନ୍ତି। ସମସାମୟିକ ବା ତା'ର ନିକଟ ଅତୀତର ସାହିତ୍ୟଠାରୁ ନିରାପଦ ଦୂରତ୍ୱରେ ରହିବାକୁ ଯେତେବେଳେ ଅଧିକାଂଶ ସମୀକ୍ଷକ ଶ୍ରେୟ ମଣୁଥିଲେ, ସେତେବେଳେ ଶ୍ରୀ ମିଶ୍ର ସମସ୍ତ ଅସୁବିଧାକୁ ବରଣ କରି ଆଧୁନିକ ଓଡିଆ ସାହିତ୍ୟର ଆଦି ପର୍ବକୁ ଆପଣାର ଗବେଷଣା ବିଷୟ ରୂପେ ଗ୍ରହଣ

କରିଛନ୍ତି। ଯଦିଚ ତାହା ଇତିହାସଧର୍ମୀ ଗବେଷଣା ଏବଂ ତାହାର ପରିସର ବ୍ୟାପକତର ଥିଲା, ତଥାପି ତାହାର ପୃଷ୍ଠପଟ୍ଟର ପ୍ରକୃତ ଚିତ୍ର ଆଙ୍କିବାରେ ସେ କୃତିତ୍ୱ ପ୍ରଦର୍ଶନ କରିଛନ୍ତି। ତାଙ୍କ ପୂର୍ବରୁ ଚଳି ଆସୁଥିବା ଯୁଗ ବିଭାଜନ ରୀତିରେ ପରିବର୍ତ୍ତନ ଆଣିବାକୁ ଚେଷ୍ଟା କରିଛନ୍ତି। କୌଣସି ବ୍ୟକ୍ତିବିଶେଷଙ୍କ ନାମରେ ନାମିତ ନ କରି ଆଭିମୁଖ୍ୟ ଦୃଷ୍ଟିରୁ, ବିଶେଷ ଯୁକ୍ତିଯୁକ୍ତ ଭାବରେ 'ଆଧୁନିକ ଯୁଗ' ବୋଲି ଗ୍ରହଣ କରିଛନ୍ତି।

ଆଧୁନିକ ସାହିତ୍ୟ ସଂପର୍କରେ ଗବେଷଣା କରିଥିବାରୁ ସେ ପ୍ରାଚୀନ ସାହିତ୍ୟ ପ୍ରତି ବିମୁଖ ନୁହନ୍ତି। କାରଣ ତାଙ୍କ ମତରେ "ଅତୀତ ଭିତ୍ତିରେ ବର୍ତ୍ତମାନକୁ ଓ ବର୍ତ୍ତମାନ ଉପରେ ଠିଆ ହୋଇ ଭବିଷ୍ୟତକୁ ପୁରୋଦୃଷ୍ଟିରେ ଦେଖିବା ଏକମାତ୍ର ପନ୍ଥା।" ରାଧାନାଥଙ୍କୁ ନ ବୁଝି ଯିଏ ଭଞ୍ଜଙ୍କୁ ବୁଝନ୍ତି ବା ସଚ୍ଚି ରାଉତରାଙ୍କୁ ନ ବୁଝି ଯେ ରାଧାନାଥଙ୍କୁ ବୁଝନ୍ତି, ଅତୀତକୁ ନ ବୁଝି ଯେ ବର୍ତ୍ତମାନଙ୍କୁ ବୁଝନ୍ତି, ସେ ବର୍ତ୍ତମାନକୁ କି ଅତୀତକୁ ପ୍ରକୃତରେ କାହାକୁ ବୁଝନ୍ତିନାହିଁ। ଏହିଭଳି ଯୁକ୍ତିଯୁକ୍ତ ଧାରଣାର ବଶବର୍ତ୍ତୀ ହୋଇ ନରେନ୍ଦ୍ରନାଥ, ସାରଳା, ପଞ୍ଚସଖାଙ୍କ ରଚିତ ଓଡିଆ ସାହିତ୍ୟର ପ୍ରାଚୀନ ସମ୍ପଦ ଓ ରାଧାନାଥ-ମଧୁସୂଦନ -ଫକୀରମୋହନଙ୍କଠାରୁ ଗୋପବନ୍ଧୁ ପ୍ରମୁଖଙ୍କ ପର୍ଯ୍ୟନ୍ତ ସ୍ପଷ୍ଟ ଆଧୁନିକ ଓଡିଆ ସାହିତ୍ୟର ବିଚାର ଆଲୋଚନା କରିଛନ୍ତି। ଏକ ଦିଗରେ " ବଳରାମ ଦାସ ଓ ଓଡିଆ ରାମାୟଣ" ଓ ଅନ୍ୟ ଦିଗରେ "ଆଧୁନିକ ଓଡିଆ କାବ୍ୟଧାରା"ର ବିଶିଷ୍ଟତା ତାଙ୍କ ସବ୍ୟସାଚିତ୍ୱର ପ୍ରମାଣ ଦିଏ।

ନରେନ୍ଦ୍ରନାଥଙ୍କ ସମୀକ୍ଷା ଗ୍ରନ୍ଥସମୂହରେ ବିଶେଷ ଗୁଣମାନ ପରିଲକ୍ଷିତ। ପ୍ରଥମତଃ, ତାଙ୍କ ସମାଲୋଚନା-ସାହିତ୍ୟର ସର୍ବତ୍ର ଗବେଷକର ଭୂୟୋଦୃଷ୍ଟି ବର୍ତ୍ତମାନ। ବଳରାମ ଦାସଙ୍କ ପୁରାଣ ହେଉ ବା ରାଧାନାଥଙ୍କ କାବ୍ୟକୃତିର ବିଚାର ହେଉ, ସେଥିପାଇଁ ସେ ମୂଳଗ୍ରନ୍ଥ ଓ ତତ୍‌ସମ୍ପର୍କିତ ଆଲୋଚନାରାଜି ତନ୍ନତନ୍ନ କରି ଅଧ୍ୟୟନ କରିଛନ୍ତି। ଅଧ୍ୟୟନ ବେଳକୁ ଉପଲବ୍ଧ ସମସ୍ତ ଉପାଦାନକୁ ବିଶ୍ଳେଷଣ କରି ନିରାସକ୍ତ ଭାବରେ ସ୍ୱକୀୟ ମନ୍ତବ୍ୟ ଦେଇଛନ୍ତି। ଫଳରେ, ତାଙ୍କର ପୂର୍ବବର୍ତ୍ତୀ ଦ୍ରଷ୍ଟାମାନଙ୍କ ଦୃଷ୍ଟିର ପରିଧି ଓ ପରିସର ହୋଇଛି ବିସ୍ତାରିତ। କୁଞ୍ଜବିହାରୀ ଦାଶଙ୍କ ଭାଷାରେ କହିଲେ- ଘଟଛି "ବହୁ ଧାରା ସହ ଆତ୍ମାଧାରାର ବିପୁଳ ଯୋଗ"।

ଆଧୁନିକତା ଓ ରେନେସାଁ ସମ୍ପର୍କରେ ସ୍ପଷ୍ଟ ଧାରଣାପାଇଁ ଶ୍ରୀ ମିଶ୍ର ଇଂରାଜୀ ଓ ଫରାସୀ ଭାଷାରେ ପ୍ରକାଶିତ ଉଲ୍ଲେଖନୀୟ ଗ୍ରନ୍ଥଗୁଡିକର ସହାୟତା ନେଇଛନ୍ତି। ଇଉରୋପୀୟ ରେନେସାଁ ଓ ଭାରତୀୟ ରେନେସାଁର ସ୍ୱରୂପ, ପ୍ରକୃତି ମଧ୍ୟରେ ଥିବା ଭେଦାଭେଦ ବ୍ୟକ୍ତ କରିଛନ୍ତି। ଆମେରିକା ବିପ୍ଳବ (୧୭୭୫-୧୭୮୩), ଫରାସୀ ବିପ୍ଳବ (୧୭୮୯-୧୮୧୫), ଲାଟିନ୍ ଆମେରିକା ବିପ୍ଳବ (୧୮୦୦-୧୮୨୫), ମେଧାବିପ୍ଳବ ଓ ଶିଳ୍ପବିପ୍ଳବ ପ୍ରଭାବରେ କିପରି ଆଧୁନିକ ଭାବଧାରାର ସୂତ୍ରପାତ ହେଲା ଏବଂ ତାର ଅମୃତମୟୀ ପ୍ରଭାବ କ୍ରମଶଃ ବିଶ୍ୱମୟ ହେଲା, ତା'ର ସ୍ପଷ୍ଟଚିତ୍ର ଇତିହାସ ଓ ସମାଜତତ୍ତ୍ୱ ଦୃଷ୍ଟିରୁ ବିଚାର କରିଛନ୍ତି। "ସୁନିର୍ବାଚିତ ଉଦ୍ଧୃତି, ସୁଚିନ୍ତିତ ମନ୍ତବ୍ୟ, ସୁବିନ୍ୟସ୍ତ

ଭାଷାର ଉପାଦାନରେ ବିଷାଦ-ବିଧୁର, ଆନନ୍ଦ-ଉଜ୍ଜ୍ୱଳ, ଆହରଣ-ପୁଷ୍ଟ, ଆବେଦନରେ ଚିରନ୍ତନ, ଆକର୍ଷଣରେ ନିତ୍ୟନୂତନ, ଆଧୁନିକ ଉତ୍କଳର କାବ୍ୟଆତ୍ମା ଗ୍ରନ୍ଥଟିରେ ଜୀବନ୍ତ ବିଗ୍ରହ ଲାଭ କରିଅଛି। କବିତା ଏକ ସଭ୍ୟ ଜାତିର ସାଂସ୍କୃତିକ ପରମ୍ପରା ଓ ଐତିହାସିକ ମୂଲ୍ୟବୋଧର ଶ୍ରେଷ୍ଠ ନିଦର୍ଶନ। ଆଧୁନିକ କବିତାର କବିମାନେ ଏକ ବିଶ୍ୱଜନୀନ ଦୃଷ୍ଟିର ଅଧିକାରୀ। ଲେଖକ ଆଧୁନିକ ଓଡିଆ କବିତାର ଅଧ୍ୟୟନ କରିବାକୁ ଯାଇ ଆଧୁନିକ ଜଗତରେ ସାଂସ୍କୃତିକ ପରିପ୍ରେକ୍ଷୀତରେ ସ୍ୱଦେଶ ସଂସ୍କୃତିର ଗଭୀର ସମୀକ୍ଷା କରିଛନ୍ତି।" ସେଥିପାଇଁ ତାଙ୍କୁ ସମୀକ୍ଷା ନିମନ୍ତେ ଇତିହାସ, ମନୋବିଜ୍ଞାନ, ସମାଜବିଜ୍ଞାନ ଆଦି ଆନୁଷଙ୍ଗିକ ବିଦ୍ୟାର ଦ୍ୱାରସ୍ଥ ହେବାକୁ ପଡିଛି। ସାହିତ୍ୟ ସମୀକ୍ଷାର ଅନ୍ତର୍ବିଦ୍ୟା-ଭିତ୍ତିର ଆଭାସ ତାଙ୍କ ଆଲୋଚନାରୁ ମିଳେ। ସାହିତ୍ୟ ଶୂନ୍ୟରୁ ସମ୍ଭବେ ନାହିଁ। ସାହିତ୍ୟିକର ମାନସଭୂମି ଓ ମନନ ସ୍ଥାନ - କାଳ ପ୍ରଭାବର ଏକ ଫଳଶ୍ରୁତି। ଏହାକୁ ଦେଖାଇବାକୁ ସେ ସଶ୍ରଦ୍ଧ ଉଦ୍ୟମ କରିଛନ୍ତି।

ଦ୍ୱିତୀୟ ବିଶେଷତ୍ୱ, ନରେନ୍ଦ୍ରନାଥଙ୍କ ମୁକ୍ତଦୃଷ୍ଟି। ଏତେ ଅଧ୍ୟୟନ, ଅନୁଶୀଳନ ତାଙ୍କ ବିଚାରକୁ ପ୍ରଭାବିତ କରି ପାରିନାହିଁ। ଆପଣାର ସୁଚିନ୍ତିତ ମନ୍ତବ୍ୟ, ଯେତେ ରୁକ୍ଷ ହେଲେ ବି, ସେ ଦେବାକୁ ପଛାଇ ନାହାନ୍ତି। ପ୍ରତିଷ୍ଠିତ ମତ ଖଣ୍ଡନପାଇଁ କ୍ଷୁରଧାର-ମେଧାର ପ୍ରୟୋଗ କରିଛନ୍ତି। କେଉଁଠି ଯେ ସେ ପୂର୍ବମତର ପୋଷାକତା କରିନାହାନ୍ତି, ଏପରି ନୁହେଁ। ଯେଉଁମତ ଗ୍ରହଣ କରିଛନ୍ତି, ଆପଣାର ବିଶ୍ଳେଷଣ ଜରିଆରେ ସେଗୁଡ଼ିକୁ ସବଳିତ କରିଛନ୍ତି। ଦୃଷ୍ଟାନ୍ତ ସ୍ୱରୂପ କେତୋଟି ଅଭିନବ ମନ୍ତବ୍ୟର ଉଲ୍ଲେଖ କରାଯାଇପାରେ :

କ) ସେମାନଙ୍କର (ଊନବିଂଶ ଶତକର ଶେଷ ପାଦର ଆଧୁନିକ ଲେଖକମାନଙ୍କର) ବାଣୀ ଆରାଧନା ଏକ ମାନସିକ ବିଳାସ ନ ଥିଲା, ଥିଲା ଜୀବନ ସାଧନାର ଅଙ୍ଗ। (ଆ.କା.ଧା. ଆଦିଯୁଗ ଦ୍ୱିତୀୟ ସଂସ୍କରଣ/ ପୃ. ୬୬)

ଖ) ରାଧାନାଥ ଆମ ସାହିତ୍ୟର ବିରାଟ ସମ୍ଭାବନା ଓ ବିପୁଳ ବ୍ୟର୍ଥତାର ମୂର୍ତ୍ତି ପ୍ରତିନିଧି ଥିଲେ। (ଏଜନ୍ / ପୃ. ୨୦୦)

ଗ) ତାଙ୍କ (ଫକୀର ମୋହନଙ୍କ) ଦାନରେ ଓଡିଆ କାବ୍ୟଧାରା ହୁଏତ କଳା ଦିଗରୁ ସମୃଦ୍ଧ ହୋଇନାହିଁ। ମାତ୍ର କବିତା ଅପେକ୍ଷା ଜୀବନ ମୂଲ୍ୟବାନ୍। ଏହି ଜୀବନର ଭାସ୍କର ରୂପେ ଫକୀରମୋହନ ମହନୀୟ। (ଏଜନ୍/ପୃ.୨୧୮)

ଘ) ଏ ଯୁଗରେ (ବିଂଶ ଶତକର ଆଦ୍ୟ ନବଜାଗରଣ ପର୍ବରେ) କବିତା ପ୍ରତି କ୍ୱଚିତ୍ କାହାର ପୂର୍ଣ୍ଣ ନିଷ୍ଠା ଥିଲା। (ଆ.କା.ଧା. ନବଜାଗରଣ ଯୁଗ (୧୯୭୮) ପୃ. - ୫୪)

ଙ) ଆଧୁନିକ ଓଡ଼ିଆ କବିତାରେ ସର୍ବଶ୍ରେଷ୍ଠ ସମ୍ମାନିତ କବି ରୂପେ ରାଧାନାଥ, ଗଙ୍ଗାଧରଙ୍କ ସର୍ବପ୍ରଥମ ଲିଖିତ କାବ୍ୟ କବିତାର ବହୁଳ ପ୍ରଶଂସା କରି ନୂତନ କବିଙ୍କୁ ଯେପରି ଉତ୍ସାହିତ କରିଛନ୍ତି, ସେହିପରି ନିଜ ଜୀବନର କରୁଣ-ଅନୁଭୂତି, ଅନ୍ତରର ଗଭୀର-

ନୈରାଶ୍ୟବାଣୀ ଶୁଣାଇ ତାଙ୍କୁ କମ୍ ନିରୁତ୍ସାହିତ କରିନାହାନ୍ତି। ମାତ୍ର ଏହି ନୈରାଶ୍ୟ ମଧ୍ୟରେ ନିଜର ଦୃଢ଼ ମନୋବଳ ଓ ଆଧ୍ୟାତ୍ମିକ ଚେତନା ବଳରେ ଗଙ୍ଗାଧର ଜୀବନରେ ସତତ ଆଶାର ଦୀପ୍ତି ଅନୁଭବ କରିଛନ୍ତି।

ଚ) ଗୋପବନ୍ଧୁଙ୍କ କବିତାରେ ଏକ ବଡ ଦୋଷ ବା ଗୁଣ ହେଉଛି, ଏହା ଗଦ୍ୟ ଭଳି ପ୍ରାଞ୍ଜଳ, ଅନେକ ଗଦ୍ୟ ଲକ୍ଷଣାକ୍ରାନ୍ତ ଅଥବା ସ୍ୱଚ୍ଛଗଦ୍ୟର ପଦ୍ୟରୂପ ମାତ୍ର। (ଏଜନ୍/ ପୃ. ୧୭୫)

ଆପାତଃ ଦୃଷ୍ଟିରୁ ବିଚାର କଲେ, ଉପର ଉଲ୍ଲିଖିତ ମନ୍ତବ୍ୟଗୁଡିକରେ 'ସାପ ନ ମରୁ ବାଡି ନ ଭାଙ୍ଗୁ' ନୀତି ଅବଲମ୍ବିତ ହୋଇଥିବା ଭଳି ଲାଗିଲେ ବି, ଏହା ମୂଳରେ ଆଧୁନିକ ଯୁଗର ଆଲୋଚକଙ୍କ ସ୍ୱଭାବସୁଲଭ ଅସନ୍ତୋଷ ଭାବ ଓ ସମତୁଲ ମନ୍ତବ୍ୟଦାନ ପ୍ରବୃତ୍ତିର ସୂଚନା ମିଳେ। ଆଲୋଚକ ଅଯଥାରେ କାହାକୁ ଆକାଶରେ ଉଡାଇ ନାହାନ୍ତି, କି ସାଗରରେ ବୁଡାଇ ନାହାନ୍ତି, ସାଧନା ପରଖି ସିଦ୍ଧିର ସୋପାନରେ ସଂସ୍ଥାପନ କରିଛନ୍ତି।

ତୃତୀୟତଃ, ଆହରଣ ଓ ନିଜସ୍ୱୀକରଣରେ ନରେନ୍ଦ୍ରନାଥ ପାରଦର୍ଶିତା ପ୍ରଦର୍ଶନ କରିଛନ୍ତି। ଆପଣାର ଚର୍ଚ୍ଚା ନିବନ୍ଧର 'ଉପାଦାନ ମୌଳିକ ବା ପ୍ରତ୍ୟକ୍ଷ ନୁହେଁ, ଅପ୍ରତ୍ୟକ୍ଷ, ପରପ୍ରସାଦ ଗୃହୀତ' ବୋଲି ସ୍ୱୀକାରୋକ୍ତି ପ୍ରକାଶ କରିଥିଲେ ବି କୌଣସିଠାରେ ତାହା ବୟନ ବା ବକ୍ତବ୍ୟକୁ ବିରୂପ କରିନାହିଁ। ପରପ୍ରସାଦକୁ ଆତ୍ମସ୍ଥ କରି ତା'ର ନିର୍ଯ୍ୟାସ ଦେବାକୁ ସେ ପ୍ରାୟ ସର୍ବତ୍ର କ୍ଷମ ହୋଇଛନ୍ତି। ଅକ୍ଷମ ହୋଇଥିଲେ, ତାଙ୍କ ସମୀକ୍ଷାଗ୍ରନ୍ଥ ଅଧମ ସମୀକ୍ଷକଙ୍କ ରଚନା ଭଳି ତଥ୍ୟର ଭଣ୍ଡାର ହୋଇଥାନ୍ତା ସିନା, ଭାବର ଆଗାର ହୋଇପାରିନଥାନ୍ତା। ଏଠାରେ, ଦୃଷ୍ଟାନ୍ତ ସ୍ୱରୂପ, ଦୁଇଟି ଭାବବାହୀ କିନ୍ତୁ ଆହରଣପୁଷ୍ଟ ମନ୍ତବ୍ୟର ଉଦାହରଣ ଦିଆଯାଇପାରେ -

" ଅନ୍ୟ ସହିତ ନିଜକୁ ତୁଳନା କରିବା, ଅନ୍ୟର ସହଯୋଗୀ ଭାବରେ କର୍ମକ୍ଷେତ୍ରରେ ଅବତରଣ କରିବା, ବ୍ୟଷ୍ଟି ସହିତ ସମଷ୍ଟିର, ସ୍ୱଦେଶ ସହିତ ସର୍ବଦେଶର, ସ୍ୱକାଳ ସହିତ ସର୍ବକାଳର ସମ୍ବନ୍ଧ ସ୍ଥାପନ କରି ଆପେକ୍ଷିତ ଦୃଷ୍ଟି ଲାଭ କରିବା, ସତ୍ୟ ସନ୍ଧାନ କରିବା, ଆଦର୍ଶ ସ୍ଥାପନ କରିବା ଓ ଏହି ଆଦର୍ଶର ପ୍ରତିଷ୍ଠା, ସତ୍ୟର ଉପଲବ୍ଧି ପାଇଁ ପ୍ରୟୋଜନ ହେଲେ ଆତ୍ମବଳି ଦେବା ଥିଲା ଏଇ ଜାଗରଣ ଚେତନାର ମର୍ମବାଣୀ।" (ଆଧୁନିକ ଓଡିଆ କାବ୍ୟଧାରା : ନବଜାଗରଣ ଯୁଗ (୧୯୭୮/ ପୃ.୫୪)

"ଆଧୁନିକ ମଣିଷ ବିପଥଗାମୀ, ପଥଶୂନ୍ୟ। ତାହାର ଲଜିକ୍ ହୋଇଛି ଏବ୍‌ସାର୍ଡ, ଫିଜିକ୍ ହୋଇଛି ଏବନରମାଲ୍, ଏଥିକ୍ ହୋଇଛି ଇମ୍‌ମୋରାଲ୍, ଏସ୍‌ଥେଟିକ୍ ହୋଇଛି ଅଗ୍‌ଲି।"(ଆଧୁନିକତା ଓ ଆଧୁନିକ ସାହିତ୍ୟ: ୧୯୭୬/ ପୃ. ୭୬)

ଏହିଭଳି ନରେନ୍ଦ୍ରନାଥଙ୍କ ସମାଲୋଚନାର ଭାଷା ଗାମ୍ଭୀର୍ଯ୍ୟପୂର୍ଣ୍ଣ, ସୁବିନ୍ୟସ୍ତ, ସାବଲୀଳ, ପ୍ରସାରଣକ୍ଷମ, ଅବବୋଧ-ଉଦ୍ଦୀପକ। ପ୍ରକାଶ ଭଙ୍ଗୀରେ ଶାଣିତ ମେଧାର ମହନୀୟ ମୁଦ୍ରାଙ୍କ। ଆମୂଳଚୂଳ କଳାତ୍ମକ ସୌଷ୍ଠବ ସୁରକ୍ଷିତ।

ନରେନ୍ଦ୍ରନାଥଙ୍କ ରଚନାରେ "ଶିରୋଭୂଷଣ" ଗ୍ରହଣ ଏକ ବିଶେଷ ରୀତି। ପ୍ରାୟ ପ୍ରତ୍ୟେକ ପ୍ରବନ୍ଧରେ, ଏପରିକି ଗବେଷଣା ଗ୍ରନ୍ଥର ପ୍ରତି ଅଧ୍ୟାୟ ଆରମ୍ଭରେ ବକ୍ତବ୍ୟର ପୋଷକ ଏକ ଉଦ୍ଧୃତି ପ୍ରଦାନ କରି ପାଠପ୍ରବେଶ ପୂର୍ବରୁ ପାଠକର ଧ୍ୟାନ ଆକର୍ଷଣ ଓ ବକ୍ତବ୍ୟ ପ୍ରତି ଶ୍ରଦ୍ଧା ଜାଗ୍ରତ କରିବାରେ ଶ୍ରୀ ମିଶ୍ର ସିଦ୍ଧହସ୍ତ। ଅନାବଶ୍ୟକ ଉଦ୍ଧୃତି ଉପଯୋଗରେ ତାଙ୍କ ବକ୍ତବ୍ୟର ପ୍ରଭାବ ଊଣା କରିବାର ଅବକାଶ କୌଣସିଠାରେ ଲକ୍ଷ୍ୟ କରାଯାଏ ନାହିଁ। ସ୍ୱମତ ମଣ୍ଡନପାଇଁ ମୌଳିକ ରଚନାର ଉଦ୍ଧାର ଓ ଅନ୍ୟ ଭାଷାରୁ ଗୃହୀତ ଉଦ୍ଧୃତିକୁ ନିଜ ଶୈଳୀରେ ଅନୁବାଦ କରି ପ୍ରୟୋଗ କରୁଥିବାରୁ ଭାଷାର ସାବଲୀଳତା ସର୍ବତ୍ର ସୁରକ୍ଷିତ।

ଗବେଷକ ନରେନ୍ଦ୍ରନାଥଙ୍କ ସାହିତ୍ୟିକ ବ୍ୟକ୍ତିତ୍ୱ ବିକାଶରେ ଦୁଇ ଜଣଙ୍କ ପ୍ରଭାବ ସୁସ୍ପଷ୍ଟ ହୁଏ। ଜଣେ ଶିକ୍ଷାଗୁରୁ, କବି କୁଞ୍ଜବିହାରୀ ଦାଶ ଓ ଅନ୍ୟଜଣକ ପଣ୍ଡିତ ନୀଳକଣ୍ଠ ଦାସ। କୁଞ୍ଜବିହାରୀଙ୍କର ପ୍ରିୟ ଛାତ୍ର ଭାବେ ସେ ତାଙ୍କଠାରୁ ବ୍ୟକ୍ତିଗତ ଜୀବନରେ ସ୍ନେହ, ଶ୍ରଦ୍ଧା, ଗଠନମୂଳକ ପରାମର୍ଶ ଓ ଗବେଷଣା କ୍ଷେତ୍ରରେ ଦିଗ୍‌ଦର୍ଶନ ପାଇଛନ୍ତି ଏବଂ ପ୍ରିୟ ପାଠକ ଭାବରେ ନୀଳକଣ୍ଠଙ୍କ ଅନୁଭବସିଦ୍ଧ ପ୍ରଜ୍ଞାର ଚାରୁ ପ୍ରକାଶ ଓ ଜାତୀୟ ଜୀବନର ବୌଦ୍ଧିକ ବିକାଶକାରୀ ଲେଖନୀ ପ୍ରତି ତାଙ୍କର ରୁଚିଗତ ଆକର୍ଷଣ ଜାତ ହୋଇଛି। ଏଣୁ ଉଭୟଙ୍କ ସାହିତ୍ୟର ସାର ବା ନିର୍ଯ୍ୟାସ ନରେନ୍ଦ୍ରନାଥଙ୍କ ରଚନାବଳୀରେ ସୁଲଭ। କୁଞ୍ଜବିହାରୀଙ୍କ ରମ୍ୟବୋଧ ଓ ନୀଳକଣ୍ଠଙ୍କ ପ୍ରାଜ୍ଞଦୃଷ୍ଟି ତାଙ୍କ ସମୀକ୍ଷା-ଅବବୋଧର ଆଦର୍ଶ।

ନରେନ୍ଦ୍ରନାଥଙ୍କ ବ୍ୟକ୍ତିତ୍ୱର ଅନ୍ୟ ଏକ ଦିଗ, ସେ ଅଳ୍ପରେ ସୁଖୀ ନୁହନ୍ତି। ତାଙ୍କ ବିଚାରରେ ବିଶ୍ୱରେ ଜ୍ଞାନ-ବିଜ୍ଞାନର ଯେଉଁ ପ୍ରଭୂତ ବିକାଶ ସାଧିତ ହୋଇଛି, ତାହା ସହ ପରିଚିତ ହୋଇ ଓଡ଼ିଆ ସାହିତ୍ୟର ଦାରିଦ୍ର୍ୟ ଦୂର କରାଯାଇପାରେ। ଏ ସମ୍ବନ୍ଧରେ ଆପଣା ମାନସିକତାର ସ୍ପଷ୍ଟ ଚିତ୍ର ପ୍ରଦାନ କରି ସେ 'ପଣ୍ଡିତ ନୀଳକଣ୍ଠଙ୍କ ସାଧନା' ପ୍ରବନ୍ଧରେ ଲେଖିଛନ୍ତି", "ବ୍ୟକ୍ତି ଜୀବନର ସାହିତ୍ୟରୁଚି ଅକସ୍ମାତ୍ ଫୁଟେ ନାହିଁ। ଏହା ଏକ ଆହରଣର କ୍ରମପରିଣାମ। ସବୁ କ୍ରମପରିଣାମ ସହିତ କିଛି ନା କିଛି ଇତିହାସ ଜଡ଼ିତ। ଓଡ଼ିଆ ସାହିତ୍ୟର ମୋର ଏହି ଆହରଣର ଇତିହାସ କ୍ରମବର୍ଦ୍ଧମାନ ଅସନ୍ତୋଷର ଇତିହାସ।" ଯାହା ପାଇଛନ୍ତି ତାହା ନ ପଢ଼ି, ଅନେକ କିଛି ବଛାବଛି କରି ସବୁ ଜିନିଷକୁ ତା'ର ଯଥାର୍ଥ ମୂଲ୍ୟରେ ଗ୍ରହଣ କରିବାକୁ ଚାହିଁଥିବାରୁ ତାଙ୍କର ଏ ଅସନ୍ତୋଷ ଭାବ। ଚିନ୍ତା ଓ ଚରିତ୍ରରେ, ଅଭିନବ ଶିଳ୍ପସୃଷ୍ଟିରେ ସୁମହାନ ବଳିଷ୍ଠ ଲେଖା ତାଙ୍କର କାମ୍ୟ। ତହିଁରେ ସେ ଏକାଧାରରେ ଦେଖିବାକୁ ଚାହାନ୍ତି, ବିଶ୍ୱଜ୍ଞାନକୋଷର ନିର୍ଯ୍ୟାସ, ସୁଦୂରପ୍ରସାରୀ ପରମ୍ପରାର ପ୍ରବାହ, ସର୍ଜନଶୀଳ ମନର ଗ୍ରାହିକାଶକ୍ତିର ପ୍ରକାଶ, ଆଧୁନିକ ଜୀବନର ଛନ୍ଦ ଓ ଗତି। ଏହିଭଳି ସାଧକଙ୍କ ନିରବଚ୍ଛିନ୍ନ ସାଧନାର ଅଭାବ ଓ ଅପରିଣତ ଅପସାରଣ ତାଙ୍କ ମର୍ମଦାହର କାରଣ। ଏହିଭଳି ନୈରାଶ୍ୟଜନକ ପରିସ୍ଥିତିରୁ ମୁକ୍ତି ଲଭିବାପାଇଁ ବିଶ୍ୱବିଦ୍ୟାଳୟ ସ୍ତରରେ ଓଡ଼ିଆ ଭାଷା - ସାହିତ୍ୟ ଶିକ୍ଷାର ମାନୋନ୍ନତି, ସରକାରୀ ବା ବେସରକାରୀ ଆନୁକୂଲ୍ୟରେ ଗବେଷଣା

ଅନୁଷ୍ଠାନ ଗଠନ, ଲାଇବ୍ରେରୀ ଓ ପ୍ରୟୋଗଶାଳା ସଂସ୍ଥାପନ ତଥା ଓଡିଆ ଭାଷା ପ୍ରତି ଶିକ୍ଷିତ ସମାଜର ଉନ୍ନାସିକ ଭାବ ପରିତ୍ୟାଗ ନିମନ୍ତେ ସେ ମତପୋଷଣ କରିଛନ୍ତି।

ଏବେ ପ୍ରାୟ ସର୍ବତ୍ର ସାହିତ୍ୟ-ସମାଲୋଚକ ଅଧ୍ୟାପକମାନଙ୍କ ଡିଗ୍ରୀ ଲାଭକାଳୀନ ସମ୍ବର୍ଦ୍ଧନାର ଉତ୍ତରରେ ଏହି ମର୍ମର ମନ୍ତବ୍ୟ ଶୁଣିବାକୁ ମିଳେ - "ଏହା ମୋ ପେଟ ପାଟଣା କଥା .. ଯାହିତାହି କ'ଣ କରିଦେଇଛି। ଏହା ମୋ' ପତ୍ନୀର ନୁଖୁରା କେଶକୁ ନଡିଆ ତେଲ ଗିନାଏ। ମୋ' ପ୍ରେମିକା ଆଉ ଜଣେ, ତା' ଉଜୁଡା ଜୁଡ଼ାପାଇଁ ମୁଁ କେତେ ରକମର ବାସନା ତେଲ ରଖିଛି। ପଛରେ ସେ ଶିଶିର ଠିପି ଖୋଲିବି ଯେ, ଦେଶ ମହକି ଯିବ।" କିନ୍ତୁ କେବେ ସେ ଠିପି ଖୋଲେ ନାହିଁ, କି ବାସନା ତେଲରେ ପ୍ରଣୟିନୀର ଉଜୁଡ଼ା ଜୁଡ଼ା ଜୁଡୁବୁଡୁ ହୁଏନାହିଁ, ଅସଜଡ଼ା ହିଁ ରହିଯାଏ। ପ୍ରକୃତରେ ପ୍ରଣୟିନୀ ଥାଏ କି ନାହିଁ, ସନ୍ଦେହ। ଅଧ୍ୟାପକ ବାବୁ ଆମର ନା ହୋଇ ପାରନ୍ତି ଯଥାର୍ଥ ପତି, ନା ପ୍ରେମିକ। ଏପରି ସ୍ଥଳେ ଆଜିର ସମାଲୋଚନା କ୍ଷେତ୍ରରେ ଅବତୀର୍ଣ୍ଣ ବୃତ୍ତିଧାରୀ ଅଧ୍ୟାପକଙ୍କ ମଧ୍ୟରେ ନରେନ୍ଦ୍ରନାଥ ଜଣେ ସଚ୍ଚୋଟ ଏବଂ ଯଥାର୍ଥ ପ୍ରଣୟୀ ଓ ପରିଣେତା ପରି ପ୍ରତୀୟମାନ ହୁଅନ୍ତି।

**ନରେନ୍ଦ୍ରନାଥ ପ୍ରଣୀତ ଗ୍ରନ୍ଥସୂଚୀ**

**ବଳରାମ ଦାସ ଓ ଓଡ଼ିଆ ରାମାୟଣ**(୧୯୫୫), ବିଶ୍ୱଭାରତୀ ଗବେଷଣା ପ୍ରକାଶନ, ଶାନ୍ତିନିକେତନ।

**ଜ୍ଞାନକୋଷ**(୧୯୫୭), ଲୋକ କାହାଣୀ ଗ୍ରନ୍ଥମାଳା, ଭୁବନେଶ୍ୱର: ପ୍ରୌଢ଼ଶିକ୍ଷା ବିଭାଗ, ଓଡ଼ିଶା ସରକାର।

**ଶୈଳ ଓ ସୀମାନ୍ତ**(୧୯୫୯), କଟକ: ରାଜହଂସ।

**ଆଧୁନିକ ଓଡ଼ିଆ କାବ୍ୟଧାରା:ଆଦିଯୁଗ**(୧୯୬୪), ଶାନ୍ତିନିକେତନ:ବିଶ୍ୱଭାରତୀ ଗବେଷଣା ପ୍ରକାଶନ।

**ଓଡ଼ିଆ ଭାଷା ସାହିତ୍ୟ: ଏକ ଅଧ୍ୟୟନ**(୧୯୬୮), କଟକ: ଜଗନ୍ନାଥ ରଥ।

**ଆଧୁନିକତା ଓ ଆଧୁନିକ ସାହିତ୍ୟ**(୧୯୭୬), କଟକ: ଫ୍ରେଣ୍ଡସ ପବ୍ଲିସର୍ସ।

**ଆଧୁନିକ ଓଡ଼ିଆ କାବ୍ୟଧାରା: ନବଜାଗରଣ ଯୁଗ**(୧୯୭୯), ଶାନ୍ତିନିକେତନ: ବିଶ୍ୱଭାରତୀ ଗବେଷଣା ପ୍ରକାଶନ।

**ଆଧୁନିକ ଓଡ଼ିଆ କଥାସାହିତ୍ୟ- ଉପନ୍ୟାସ**(୧୯୮୨),ଭୁବନେଶ୍ୱର:ଓଡ଼ିଶା ସାହିତ୍ୟ ଏକାଡେମୀ।

**ପଣ୍ଡିତ ନୀଳକଣ୍ଠ: ଜୀବନୀ ଓ କୃତି**(୧୯୮୩), ଭୁବନେଶ୍ୱର: ପଣ୍ଡିତ ନୀଳକଣ୍ଠ ସ୍ମୃତି କମିଟି।

**ବଙ୍ଗୀୟ ଲୋକସଂସ୍କୃତି**(୧୯୯୫), ଆଶୁତୋଷ ଭଟ୍ଟାଚାର୍ଯ୍ୟଙ୍କ Folklore of Bengal ବହିର ଅନୁବାଦ, New Delhi: National Book Trust.

ସାହିତ୍ୟର ସଂକଟ(୧୯୯୬), ଅନ୍ନଦାଶଙ୍କର ରାୟଙ୍କ ମୂଳରଚନାର ଅନୁବାଦ, କଟକ: ଆର୍ଯ୍ୟ ପ୍ରକାଶନୀ।

**Nilakantha Das**(୧୯୯୮),New Delhi: Sahitya Akademi.

ଲୋକରତ୍ନ କୁଞ୍ଜବିହାରୀ ଦାଶ(୨୦୦୬), ଓଡ଼ିଶା ସାହିତ୍ୟ ଏକାଡେମୀ, ଭୁବନେଶ୍ୱର।

**Kunja Bihari Das**(୨୦୦୯), New Delhi: Sahitya Akademi.



୧୪ ଜୁନ, ୧୯୩୬

## ସମାଲୋଚକ ଦାଶରଥି ଦାସ

କୁମୁଦ ଚନ୍ଦ୍ର ଦାସ

## ଏକ

ଆଲେକ୍‌ଜାଣ୍ଡର ପୋପ କହିଥିଲେ - Seldom comes the poet here, critics rares still । କବିଙ୍କ ଆବିର୍ଭାବ ଏକ ବିରଳ ବ୍ୟାପାର, ସମାଲୋଚକଙ୍କ ଆବିର୍ଭାବ ଆହୁରି ବିରଳ, ଅର୍ଥାତ ବିରଳତର । କବି କାରୟିତ୍ରୀ ଓ ସମାଲୋଚକ ଭାବୟିତ୍ରୀ ପ୍ରତିଭାର ଅଧିକାରୀ । ଉଭୟ ପୁଣି ପରସ୍ପର ସାପେକ୍ଷ । କବିଙ୍କୁ ତ କୁହାଯାଏ First critics । ସମୀକ୍ଷାବୋଧ ବ୍ୟତୀତ ସୃଷ୍ଟିସାଧନା ସମ୍ଭବ ନୁହେଁ । ସେହିପରି ଗଭୀର ଅନ୍ତର୍ଦୃଷ୍ଟି ଓ ରସବୋଧ ସମାଲୋଚନାର ଅପରିହାର୍ଯ୍ୟ ଗୁଣ । ସମାଲୋଚନାକୁ କେତେକ ସାହିତ୍ୟର ଅନ୍ତର୍ବର୍ତ୍ତୀ ବୋଲି ଗ୍ରହଣ ନ କରୁଥିବା ବେଳେ, ବହୁ ପ୍ରାଜ୍ଞ ସାହିତ୍ୟିକ ତାର ସୃଷ୍ଟିଶୀଳତା ଓ ସୃଜନଧର୍ମିତାକୁ ଅକୁଣ୍ଠିତ ସ୍ୱୀକାର କରିଛନ୍ତି । ପ୍ରତ୍ୟକ୍ଷ ଜୀବନ ଅନୁଶୀଳନ ସୃଷ୍ଟିର ସ୍ୱଧର୍ମ । ସମାଲୋଚନା ଏ ଦୃଷ୍ଟିରୁ ଅବଶ୍ୟ ଜୀବନସମ୍ପୃକ୍ତ ନୁହେଁ । ସମାଲୋଚନା ଅନ୍ୟସୃଷ୍ଟ ସାହିତ୍ୟର ଭିତ୍ତି ଉପରେ ନିର୍ଭରଶୀଳ । ଦାଶରଥି ଦାସଙ୍କ କ୍ଷୋଭପୂର୍ଣ୍ଣ ଭାଷାରେ "ଏ ସାହିତ୍ୟ ପରଗୋଡାଣିଆ । ଅନ୍ୟର ଆଲୋଚନା କରୁ କରୁ ସେମାନେ ଚିର ଅନାଲୋଚିତ ହୋଇ ରହିଯାଆନ୍ତି" । ଦାଶରଥିଙ୍କ ଅଦୃଷ୍ଟ ଏହାଠାରୁ ବିଶେଷ କିଛି ଭିନ୍ନ ହୋଇପାରିନାହିଁ । ଓଡ଼ିଆ ସାହିତ୍ୟର ସେ ବିରଳତମ, ମହାର୍ଘତମ ସାହିତ୍ୟ ସମାଲୋଚକ; ଅଥଚ ତାଙ୍କ ସମାଲୋଚନାର ଏକ ସାଧାରଣ ବିଗ୍ରହମୂଳକ ଆଲୋଚନା ଏବେ ବି ଅପେକ୍ଷିତ । ଖଣ୍ଡିଏ ଦୁଇଖଣ୍ଡ ବହିର ରିଭ୍ୟୁ ଅଛି ଅବଶ୍ୟ । ଆମ ସାହିତ୍ୟର ବହୁ ତଥାକଥିତ ସ୍ରଷ୍ଟାମାନଙ୍କ ସମ୍ପର୍କରେ ସେମାନେ ପରିଣତିର ପରିଚୟ ଦେବାର ବହୁପୂର୍ବରୁ ଗବେଷଣାର ଆୟୋଜନ କରାଯାଉଛି । ଅଥଚ ବର୍ଷୀୟାନ ସାହିତ୍ୟ ସମାଲୋଚକମାନେ ଉପେକ୍ଷାର ଶରବ୍ୟ ହେଉଛନ୍ତି ଶେଷ ପର୍ଯ୍ୟନ୍ତ । ସମୀକ୍ଷାବୋଧର ଏହି ଅଭାବ ସାମଗ୍ରିକ ଭାବେ ଓଡ଼ିଆ ସମାଲୋଚନାର ଦାରିଦ୍ର୍ୟର ହିଁ ପରିଚାୟକ ।

ସ୍ୱାଧୀନତା ପରବର୍ତ୍ତୀ କାଳରେ ସମାଲୋଚନା ନାମରେ ସୃଷ୍ଟିହୋଇଛି ସ୍ତୁପୀକୃତ ଆବର୍ଜନା । ସାଧନା ଓ ଆନ୍ତରିକତାଶୂନ୍ୟ ରାଶି ରାଶି ଗବେଷଣାଗ୍ରନ୍ଥ ଆତ୍ମପ୍ରକାଶ କରୁଛି । ନଟବର ସାମନ୍ତରାୟଙ୍କ ଭାଷାରେ କହିଲେ - ଆମ ଆଲୋଚକମାନେ ସତେ ଯେପରି 'ହସ୍ତାକ୍ଷର ଅଭ୍ୟାସ' କରିବାକୁ ଆଲୋଚନା ଲେଖୁଛନ୍ତି । ସମାଲୋଚନା ଗଭୀର ପ୍ରଜ୍ଞାସାପେକ୍ଷ କାର୍ଯ୍ୟ । କିନ୍ତୁ ଦାଶରଥି ଦାସଙ୍କ ଯଥାର୍ଥ ଆକଳନରେ ଆମ ସମାଲୋଚନା "ଅଶିକ୍ଷିତ ପ୍ରଗଳଭପଟୁତ୍ୱର" ଏକ ଦୟନୀୟ ପ୍ରଦର୍ଶନୀ ମାତ୍ର । ଓଡ଼ିଆ ଭାଷା ସାହିତ୍ୟର ଅଧ୍ୟୟନ ଓ ଅଧ୍ୟାପନା କ୍ଷେତ୍ରରେ ସ୍ୱାଧୀନତା ପରେ ଯେଉଁ ବ୍ୟାପକ କ୍ଷେତ୍ର ଉନ୍ମୁକ୍ତ ହୋଇଛି,

ତା'ଫଳରେ ସମାଲୋଚନାର ଆପାତତଃ ବିକାଶ ଘଟିଥିବା ସତ୍ତ୍ୱେ ତାହା ମୁଖ୍ୟତଃ ପରିମାଣାତ୍ମକ, ଆଦୌ ଗୁଣାତ୍ମକ ନୁହେଁ। ସେସବୁ, ନଟବର ସାମନ୍ତରାୟଙ୍କ ଭାଷାରେ ଛାତ୍ର ପାସ ଲକ୍ଷ୍ୟ ଲାଂଛିତ, ହେଲେ ଦାଶରଥି ଦାସଙ୍କ ଭାଷାରେ ନିରର୍ଥକ 'ଛାତ୍ର ଶୁଶ୍ରୁଷା' ମାତ୍ର। ଏହି କୋଳାହଳମୟ ପରିବେଶ ଭିତରେ ଦାଶରଥି ଦାସ ପ୍ରାୟ ଏକ ନିଃସଙ୍ଗ ଯାତ୍ରୀ। ତାଙ୍କ ଭୂମିକା ପ୍ରାୟତଃ ଅକ୍ଷରଶଃ ଅତୁଳନୀୟ। ଏକଦା ସେ ଏକ ଆଲୋଚନାରେ ଜଣେ ପାଶ୍ଚତ୍ୟ ସମାଲୋଚକଙ୍କ ମତର ଉଲ୍ଲେଖ କରି ସାହିତ୍ୟର ଆଧୁନିକ ଯୁଗକୁ ଏକ ସମାଲୋଚନାର ଯୁଗ ବୋଲି କହିଥିଲେ। ଓଡ଼ିଆ ସାହିତ୍ୟରେ ଆଧୁନିକ ଯୁଗରେ ସମ୍ପୃକ୍ତ କ୍ଷେତ୍ରରେ ଦାଶରଥି ଦାସଙ୍କ ନିରଳସ ପ୍ରଚେଷ୍ଟା ସାର୍ଥକ ସିଦ୍ଧିର ଶୃଙ୍ଗାରୋହଣ କରିବାକୁ ଯେ ସମର୍ଥ ହୋଇଛି, ଏଥିରେ ସନ୍ଦେହ ନାହିଁ।

ଦାଶରଥି ଦାସଙ୍କ ଜନ୍ମ ୧୯୩୬ ମସିହା। ୧୯୫୯ ମସିହାରେ ଓଡ଼ିଆ ଭାଷା ସାହିତ୍ୟରେ ସ୍ନାତକୋତ୍ତର ଏବଂ ସେହିବର୍ଷ ଅଧ୍ୟାପନା ବୃତ୍ତି ସହ ପରିଣୀତ। ତାଙ୍କ ସମୀକ୍ଷା ସାଧନାର ଆରମ୍ଭକାଳ ଆପାତତଃ ୧୯୬୦ ମସିହା। 'ପ୍ରଥମଗ୍ରନ୍ଥ' କାବ୍ୟସମ୍ବାଦ'(୧୯୭୨) ର ପ୍ରବନ୍ଧଗୁଡ଼ିକ ୧୯୬୦ ରୁ ୧୯୬୫ ମସିହା କାଳଖଣ୍ଡର ରଚନା। ୧୯୬୦ ମସିହା ବେଳକୁ 'ରାଧାନାଥ ସାହିତ୍ୟରେ ଆନନ୍ଦଯୋଗ' ବୋଲି ସମ୍ଭବତଃ ଏକ ପ୍ରବନ୍ଧ ଲେଖିଛନ୍ତି, ଯହିଁରୁ ତାଙ୍କର ବିଲକ୍ଷଣ ସ୍ୱାତନ୍ତ୍ର୍ୟବୋଧର ସୂଚନା ମିଳିଥାଏ। ପ୍ରବନ୍ଧଟି ବୋଧହୁଏ 'ରାଧାନାଥ ପରିଚିତି' ଗ୍ରନ୍ଥରେ ସଂକଳିତ। ଏହି ସମୟ ବେଳକୁ ଓଡ଼ିଆ ସମାଲୋଚନାର ପରିସ୍ଥିତି ଖୁବ୍ ଆଶାପ୍ରଦ ନ ଥିଲେ ହେଁ ସମ୍ଭାବନାର ଏକ ପୂର୍ବସୂଚନା ପ୍ରକାଶ କରୁଥିଲା। ପଣ୍ଡିତ ନୀଳକଣ୍ଠ ଦାସ 'ଓଡ଼ିଆ ସାହିତ୍ୟର କ୍ରମ ପରିଣାମ' (୧୯୪୭ ରୁ ୧୯୫୪) ପ୍ରକାଶ କରୁଥିଲେ ଓ ତାଙ୍କର ପୂର୍ବବର୍ତ୍ତୀ କେତେକ ପ୍ରବନ୍ଧର ସଂକଳନ ଛାତ୍ରମାନଙ୍କ ଉଦ୍ଦେଶ୍ୟରେ ୧୯୫୩ରେ ଓଡ଼ିଆ ଭାଷା ଓ ସାହିତ୍ୟ ନାମରେ ପ୍ରକାଶ ପାଇଥିଲା। ସାଂସ୍କୃତିକ ପ୍ରାସଙ୍ଗିକତା (Cultural Context) କୁ ନେଇ ପଣ୍ଡିତଜୀଙ୍କ ଆଲୋଚନା ଆପାତତଃ ବିଶୃଙ୍ଖଳ ହେଲେ ମଧ୍ୟ ଅଭିନବ। ଦାଶରଥିଙ୍କ ଭାଷାରେ ତାଙ୍କର ମହାନ୍ ଗ୍ରନ୍ଥ, କ୍ରମପରିଣାମରେ 'କ୍ରମ' ଓ ପରିଣାମ କିଛି ନ ଥିଲେ ମଧ୍ୟ କୃଷ୍ଣଚରଣ ସାହୁ ପଣ୍ଡିତଜୀଙ୍କୁ ଓଡ଼ିଆ ସାହିତ୍ୟର ପ୍ରକୃତ 'ଆଦି ସମୀକ୍ଷକ' ବୋଲି ସମ୍ବାଦପତ୍ର ପୃଷ୍ଠାରେ ଏକ ପ୍ରବନ୍ଧରେ ଲେଖିଥିଲେ। ଏଥିରୁ ସ୍ପଷ୍ଟ ଯେ, ଦାଶରଥିଙ୍କ ମୌଳିକ ଦୃଷ୍ଟି ଅନେକ ସମୟରେ ବିପ୍ଳବାତ୍ମକ। ନୀଳକଣ୍ଠଙ୍କ ଆଲୋଚନାରେ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ପାଇଥିବା **ଜଗନ୍ନାଥ ସଂସ୍କୃତି** ଦାଶରଥିଙ୍କ ମତରେ ଓଡ଼ିଆ ସଂସ୍କୃତି ନୁହେଁ। ପୁଣି ଓଡ଼ିଆ ସାହିତ୍ୟରେ ମଧ୍ୟ ଯୁଗ କାହିଁ ? -ବୋଲି ମଧ୍ୟ ସେ ପ୍ରଶ୍ନ କରିଛନ୍ତି। ଏସମୟର ଆଉ ଜଣେ ଆଲୋଚନା ମାୟାଧର ମାନସିଂହ, **କବି ଓ କବିତା, 'ଓଡ଼ିଆ ସମାଜ ଓ ସାହିତ୍ୟ' ମାଟିର ମହାକବି ସାରଳା ଦାସ** ' ଆଦି ଗ୍ରନ୍ଥ ପରେ ସେତେବେଳକୁ ଇଂରାଜୀରେ 'History of Oriya Litieture' ଲେଖୁଥିଲେ, ସାହିତ୍ୟ ଏକାଡ଼େମୀ ପାଇଁ, ଯାହା ୧୯୬୨ରେ ପ୍ରକାଶିତ ହେବା ପରେ୧୯୬୭ ରେ ଓଡ଼ିଆରେ ନୂତନ ରୂପରେ ପ୍ରକାଶ ପାଇଥିଲା ଓ ତୀବ୍ର

ବାଦାନୁବାଦର ସମ୍ମୁଖୀନ ହୋଇଥିଲା। ମାନସିଂହଙ୍କ ଆଲୋଚନା ବହୁ ସମୟରେ ତଥ୍ୟ ଓ ତତ୍ତ୍ୱବର୍ଜିତ ହେଲେ ହେଁ ତାଙ୍କର ରୋମାଣ୍ଟିକ ପ୍ରତୀତିବାଦ, ରସଦୃଷ୍ଟି, ବିଦଗ୍ଧତା ଓ ତୁଳନାତ୍ମକ ଅବଧାରଣା ଉଲ୍ଲେଖଯୋଗ୍ୟ। ସାହିତ୍ୟର ଇତିହାସକୁ ସେ ଏକ ' କବିତାଲିକା' (କୃଷ୍ଣପ୍ରସାଦ ଚୌଧୁରୀ ସ୍ମରଣୀୟ) ରେ ପରିଣତ କରି ନଥିଲେ ଓ ଥିଲେ ଏକାନ୍ତ ଭାବ ନିର୍ବାଚନଶୀଳ। ଓଡ଼ିଆରେ ଯେତେ 'ଓଡ଼ିଆ ସାହିତ୍ୟର ଇତିହାସ' ଆଜି ପର୍ଯ୍ୟନ୍ତ ପ୍ରକାଶ ପାଇଛି, ସେଥିରୁ ଅଧିକାଂଶ ସୁରେନ୍ଦ୍ର ମହାନ୍ତିଙ୍କ ଶବ୍ଦରେ, 'ଭୋଟରଲିଷ୍ଟ' ପର୍ଯ୍ୟାୟଭୁକ୍ତ ଓ ଦାଶରଥି ଦାସଙ୍କ ମତରେ ପ୍ରାୟ କେହି ଓଡ଼ିଆ ସାହିତ୍ୟ ସମ୍ପୂର୍ଣ୍ଣ ଭାବେ ଅଧ୍ୟୟନ କରି ଲେଖିନାହାନ୍ତି। ସୂର୍ଯ୍ୟନାରାୟଣ ଦାସଙ୍କ ପରି ଅଧ୍ୟୟନ-ଅବଗାହୀମାନଙ୍କ ଲେଖାରେ ମୂଲ୍ୟାୟନର ଅଭାବ ରହିଛି। ଚିତ୍ତରଞ୍ଜନ ଦାସଙ୍କ ଅପୂର୍ବ ବିଦଗ୍ଧତା ସତ୍ତ୍ୱେ ତାଙ୍କର ଭାରସାମ୍ୟହୀନ ନେତିବାଚକ ମତ ଓ ମନ୍ତବ୍ୟ ଦାଶରଥି ଦାସଙ୍କ ପାଇଁ ପୀଡ଼ାଦାୟକ।

## ଦୁଇ

ଦାଶରଥିଙ୍କ ସମାଲୋଚନା ଉଭୟ ଗୁଣାତ୍ମକ ଓ ପରିମାଣାତ୍ମକ ଦୃଷ୍ଟିରୁ ଉଲ୍ଲେଖଯୋଗ୍ୟ। ସମଗ୍ର ଜୀବନ ସେ ନିରଳସଭାବେ ଲେଖନୀ ଚାଳନା କରିଛନ୍ତି ଏବଂ ବିପୁଳ ପରିମାଣରେ ପାଠ୍ୟସାମଗ୍ରୀ ଉପହାର ଦେଇଛନ୍ତି ବିଦଗ୍ଧ ପାଠକଗୋଷ୍ଠୀଙ୍କୁ। ଅଦ୍ୟାବଧି ସେ ତେରଟି ସମୀକ୍ଷା ଗ୍ରନ୍ଥର ସ୍ରଷ୍ଟା । କାଳାନୁକ୍ରମିକ ଗ୍ରନ୍ଥଗୁଡ଼ିକର ପରିଚୟ ଏହିପରି।

୧. କାବ୍ୟସମ୍ବାଦ(୧୯୭୩)
୨. ଆଧୁନିକ କାବ୍ୟ ଜିଜ୍ଞାସା: ଚିତ୍ରକଳ୍ପ(୧୯୭୪)
୩. ସାହିତ୍ୟସନ୍ଧାନ (୧୯୭୫)
୪. କବିସୂର୍ଯ୍ୟ କାବ୍ୟବିଭା(୧୯୭୮)
୫. ମୃତ୍ୟୁଲୋକରେ ଋତୁସପ୍ତମ( ୧୯୭୯)
୬. ବିବିଧ ସମାଲୋଚନା (୧୯୮୧)
୭. ଚିହ୍ନାମାଟି: ଅଚିହ୍ନା ଆକାଶ (୧୯୮୭)
୮. ନାନା ନିବନ୍ଧ ( ୧୯୯୨)
୯. ବିବିଧ ପ୍ରସ୍ତାବ (୧୯୯୩)
୧୦. ସାହିତ୍ୟ ବିବେକ (୧୯୯୬)
୧୧. ବିଦଗଧ ମାନସ (୨୦୦୨)
୧୨. ଐତିହ୍ୟ ଓ ଆଧୁନିକତା (୨୦୦୮)
୧୩. ପ୍ରସଙ୍ଗ ପୁରୁଣା: ଭାବନା ନୂଆ (୨୦୧୫)

ଏଥିରେ ରହିଛି ପାଞ୍ଚଟି ସ୍ୱୟଂସମ୍ପୂର୍ଣ୍ଣ ଗ୍ରନ୍ଥ ସହିତ ଶତାଧିକ ଉଲ୍ଲେଖଯୋଗ୍ୟ ଦୀର୍ଘ ପ୍ରବନ୍ଧ। ତାଙ୍କର ସମୀକ୍ଷାକୃତି ଆନୁଷ୍ଠାନିକ ସ୍ୱୀକୃତିପ୍ରାପ୍ତ। କ୍ଲାସିକ୍ ସୃଷ୍ଟି ' କାବ୍ୟସମ୍ବାଦ' ପାଇଁ ଓଡ଼ିଶା ସାହିତ୍ୟ ଏକାଡ଼େମୀ ଓ ' ବିଦଗଧ ମାନସ' ପାଇଁ ସାରଳା ପୁରସ୍କାର ,

ଅତିବଡ଼ି ପୁରସ୍କାର ଓ ସାମଗ୍ରିକ ସାଧନାପାଇଁ ବିଷୁବ ପୁରସ୍କାର ପରି ମର୍ଯ୍ୟାଦାଜନକ ସ୍ୱୀକୃତି ମଧ୍ୟ ତାଙ୍କୁ ମିଳିଛି ।

ସମାଲୋଚକ ଶ୍ରୀ ଦାସ ସମାଲୋଚନାର ସଂଜ୍ଞା, ସ୍ୱରୂପ ଓ ଆଭିମୁଖ୍ୟ ସମ୍ପର୍କରେ, ସମାଲୋଚନାର ପ୍ରୟୋଗ ଓ ପ୍ରୟୋଜନ ସମ୍ପର୍କରେ ସଂକ୍ଷିପ୍ତ ପ୍ରବନ୍ଧଟିଏ ଲେଖିଛନ୍ତି । ପ୍ରବନ୍ଧଟି ରହିଛି ତାଙ୍କ 'ନାନା ନିବନ୍ଧ' ଗ୍ରନ୍ଥର ପ୍ରାରମ୍ଭରେ । ପ୍ରବନ୍ଧଟିର ନାମ **ସମାଲୋଚନା ସାହିତ୍ୟର ସ୍ୱରୂପ ଓ ଆଭିମୁଖ୍ୟ ।** ସେ ସମାଲୋଚନାର ସୃଷ୍ଟିଧର୍ମିତା ବା ଶିଳ୍ପ ପ୍ରବଣତା ସମ୍ପର୍କରେ କହିଛନ୍ତି, "ସମାଲୋଚନା ଏକ ଉଦ୍ଭାସନ । ରସ ଓ ସୌନ୍ଦର୍ଯ୍ୟବୋଧ ଜାଗ୍ରତ କରେ, ଜଡ଼ ପାଠକ ଚିତ୍ତରେ ଅପୂର୍ବ ସଂବେଦନ ସୃଷ୍ଟିକରେ । ସହଜ କବିତ୍ୱ ସମ୍ଭବ, ମାତ୍ର ସହଜ ସମାଲୋଚନ ସମ୍ଭବ ନୁହେଁ । ସୃଷ୍ଟି ଉପରେ ଭିତ୍ତିଶୀଳ ଏହି ପ୍ରୟାସକୁ ସାହିତ୍ୟିକ, ପୁଣି ଅତିସାହିତ୍ୟିକଙ୍କୁ ନାନା ଜ୍ଞାନର ପରିଶୀଳନ କରିବାକୁ ହୋଇଥାଏ ।" ଶ୍ରୀ ଦାସ ଯତ୍‌ପରୋନାସ୍ତି ସମାଲୋଚନା-ପରମ୍ପରାର ବିଶ୍ୱମୟ ଧାରା ସହିତ ନିଜର ସମ୍ପୃକ୍ତି ପ୍ରକାଶ କରିଛନ୍ତି । ପ୍ରଥମ ବିଶ୍ୱଯୁଦ୍ଧର ପୂର୍ବ ଓ ପରବର୍ତ୍ତୀ କାଳର ପାଶ୍ଚାତ୍ୟ ସମାଲୋଚନାର ଭିନ୍ନତାର ସ୍ୱରୂପ ଆକଳନ କରିଛନ୍ତି । ପ୍ରଥମ ବିଶ୍ୱଯୁଦ୍ଧ ପରେ ବିକଶିତ ବିଭିନ୍ନ ସମୀକ୍ଷା ପଦ୍ଧତିର ଭୂମି ଓ ଭୂମିକାକୁ ନେଇ ନିଜର ବାସ୍ତବ ଦୃଷ୍ଟିଭଙ୍ଗୀ ପ୍ରକାଶ କରିଛନ୍ତି । ତାଙ୍କ ଆଲୋଚନାରୁ କିଞ୍ଚିତ୍ ଏଠାରେ ଉଦ୍ଧାର କରାଯାଇପାରେ । ସେ ଲେଖିଛନ୍ତି -"ସମାଲୋଚନା ମୂଲ୍ୟାୟନଶୀଳ କୁଶଳୀ ଓ ଦାୟିତ୍ୱସମ୍ପନ୍ନ କାମଟିଏ । ଏହା ଚିନ୍ତା ଓ ଜ୍ଞାନ କ୍ଷେତ୍ରରେ ସୁଦୂର ପ୍ରସାରୀ ଓ ପ୍ରଚାରଧର୍ମୀ ମଧ୍ୟ । ଆଧୁନିକ ସମାଲୋଚନାର ସର୍ବସ୍ୱୀକୃତ ଚିହ୍ନ ତିନୋଟି । ୧. ସମାଲୋଚନା ମାନେ ମୂଲ୍ୟାୟନ । ୨. ଏହା କୌଣସି ନା କୌଣସି ଥିଓରୀ ବା ଭାବୟିତ୍ରୀ ଜ୍ଞାନର ଆଲୋକ ସମ୍ପାତରେ ମୂଲ୍ୟବିଚାର କରେ । ୩. ମୂଲ୍ୟାୟନ ମାଧ୍ୟମରେ ଏହା ଭଲମନ୍ଦ ଜ୍ଞାନ ପ୍ରଚାର କରିଥାଏ ।" ମୂଲ୍ୟାୟନ ସହିତ ତୁଳନାଶୀଳତାର ନିଗୂଢ଼ ସଂପର୍କ ରହିଛି । ଏଲିୟଟଙ୍କ ପରି ବିଶ୍ଳେଷଣ ଓ ତୁଳନା ମାଧ୍ୟମରେ ମୂଲ୍ୟାୟନ ହିଁ ସମାଲୋଚନା ବୋଲି ସେ ବିଶ୍ୱାସ ରଖନ୍ତି । କିନ୍ତୁ ଏକ ସମ୍ବେଦନଶୀଳ ସୁଦୃଢ଼ ପ୍ରଶିକ୍ଷିତ ବ୍ୟକ୍ତିତ୍ୱ ବ୍ୟତୀତ ଓ ସମାଲୋଚନା ଯେ ସାର୍ଥକ ହେବା ସମ୍ଭବ ନୁହେଁ, ଏପରି ବିଶ୍ୱାସ ତାଙ୍କର ଏହି ଆଲୋଚନାରେ ସ୍ଥାନ ପାଇଛି । "ମୁଁ କାହିଁକି ଲେଖେ" ପ୍ରବନ୍ଧରେ (ବିଦଗଧମାନସ ଦ୍ରଷ୍ଟବ୍ୟ) ଏଲିୟଟଙ୍କ ସହିତ ମାଥ୍ୟୁ ଆନୋଲ୍‌ଡଙ୍କୁ ମଧ୍ୟ ସମାଲୋଚନା ପ୍ରସଙ୍ଗରେ ସ୍ମରଣ କରିଛନ୍ତି ।

"ଆର୍ନୋଲ୍‌ଡଙ୍କ ସଂଜ୍ଞାଟି ମନେପଡ଼େ । ପୃଥିବୀରେ ଯାହା କିଛି ଶ୍ରେଷ୍ଠ ଓ ପ୍ରକୃଷ୍ଟ ବୋଲି ଜ୍ଞାତ ହୋଇଛି ବା ଭାବାଯାଇଛି, ସେହି ସବୁକୁ ଜାଣିବା ଓ ପ୍ରଚାର କରିବାର ନିଷ୍କାମ ପ୍ରୟାସ ହିଁ ସମାଲୋଚନା । ଏହି ପ୍ରୟାସଟି ସହିତ ଆଉ ଦୁଇଟି ମାତ୍ରା ଯୋଡ଼ିଛନ୍ତି କବି-ସମାଲୋଚକ ଟି.ଏସ୍. ଏଲିୟଟ । ତାଙ୍କ ମତରେ - ସମାଲୋଚନା ହେଉଛି ସାହିତ୍ୟସୃଷ୍ଟିର ଉଜ୍ଜଳ ବ୍ୟାଖ୍ୟା ଓ ରୁଚି ମାର୍ଜିତ ଜ୍ଞାନାଦି, ମୂଲ୍ୟାୟନ ଓ ସତ୍‌ରୁଚିର ପ୍ରଚାର ସ୍ପୃହାରୁ ସମାଲୋଚନା ଲେଖାଯାଏ, ଯେଉଁଠି ଗୁଣଗ୍ରାହିତା ଓ ମୂଲ୍ୟାୟନ ଉଭୟ ତଥ୍ୟାନୁଗ

ଓ ଯୁକ୍ତି ସମ୍ମତ ଭାବରେ ହାତ ଧରାଧରି ହୋଇ ଚାଲିଛନ୍ତି।" (୨୦୦୨: ପୃ-୨୩୫) ଲେଖାଟିରେ ଲେଖକ ବହୁ ଚମତ୍କାର କଥା କହିଛନ୍ତି। ଗୋଟିଏ ଅଂଶ ଏଠାରେ ଉଦ୍ଧାର କରାଯାଉଛି। "ପ୍ରଥମ କାରଣଟି" ତେଣୁ, ଜାଣି ଅନ୍ୟକୁ ଜଣାଇବା କଥା। ତେବେ ଅନ୍ୟକୁ ଜଣାଇବା ଅପେକ୍ଷା ଜାଣିବାର ଉଦ୍ୟମ ମୋ ଲେଖାର ମୂଳସୂତ୍ର। ଅଧିକାଂଶ ଲେଖା ମୋର ଏହି ଉଦ୍ୟମର ଫଳ। ସବୁଥିରେ ଜ୍ଞାନାର୍ଜନ ସହିତ ମୂଲ୍ୟଜ୍ଞାନ ଓ ସଦ୍‌ରୁଚି ପ୍ରଚାର ସ୍ପୃହା ବର୍ତ୍ତମାନ। ଯଥାସାଧ୍ୟ ମୂଲ୍ୟାୟନ ଓ ଗୁଣଗ୍ରାହିତାକୁ ତଥ୍ୟାନୁଗ ଓ ଯୁକ୍ତିସମ୍ମତ ଭାବରେ ଉପସ୍ଥାପନ କରିବାକୁ ଚେଷ୍ଟା ସମୁଦ୍ୟତ ଥାଏ। ସଦସତ୍ ଓ ଶ୍ରେଷ୍ଠ ନିକୃଷ୍ଟର ଜ୍ଞାନ ନ ଥିଲେ ମୂଲ୍ୟାୟନ କରାଯାଇପାରେ ନାହିଁ। ତେଣୁ ଜ୍ଞାନାର୍ଜନର ଭୂମିକାକୁ ମୁଁ ବଡକରି ଦେଖେ। ସେହି ଜ୍ଞାନ ଏକ ପକ୍ଷରେ ହେବ ପୁଣି କୌଣସି ନା କୌଣସି ଥିଓରୀ ବା ଭାବୟିତ୍ରୀ ଜ୍ଞାନ ସହିତ ସଂଶ୍ଳିଷ୍ଟ, ଅନ୍ୟ ପକ୍ଷରେ ହେବ କୌଣସି ନା କୌଣସି ଦାର୍ଶନିକ ତତ୍ତ୍ୱ ସହିତ ସମ୍ପୃକ୍ତ। ବିଦ୍ୟାଭାରହୀନ ଜ୍ଞାନ, ନିର୍ଭରହୀନ କବିସତ୍ତା ପୃଥିବୀ ଓ ମଣିଷ ମଧ୍ୟରେ ଯେଉଁଠି ଉଭା ହୋଇଥାଏ, ସେହି ଭୂମିହିଁ କବିତାର ଜନ୍ମସ୍ଥାନ। ସେଠାରେ ନୀରବତା ନୀରବ। କିନ୍ତୁ ସମାଲୋଚନାର ଜନ୍ମସ୍ଥାନ ଏକ ପ୍ରକାର ଯୁଦ୍ଧକ୍ଷେତ୍ର, ଚାରିପାଖରେ ଅସ୍ତ୍ରର ଝନତ୍କାର ଅନାୟସଶ୍ରାବ୍ୟ। (Vision Armed) ଗୋଟିଏ ସମାଲୋଚନାତ୍ମକ ବହିର ନାମ ଅଛି The Armed Vision ସମାଲୋଚନାରେ ଶିଳ୍ପସୃଷ୍ଟି ଓ ପାଠକ ମଝିରେ ଛିଡ଼ା ହୋଇଥାଏ ସମାଲୋଚନା। ସେଠାରେ ଅନେକ ତତ୍ତ୍ୱ, ଅନେକ ପଦ୍ଧତି, ଅନେକ ଦୃଷ୍ଟିକୋଣ, ଅନେକ ସୂତ୍ର ଓ ଅଭିମତରେ ଶବ୍ଦ ଏତେ ଯେ, ପ୍ରକୃତରେ ଲେଖକ ରୁଦ୍ଧଶ୍ୱାସ ହୋଇଉଠେ। ଏଠାରେ ମନେରଖିବାକୁ ହୁଏ ଯେ, ବିଂଶ ଶତାବ୍ଦୀଟି ଥିଲା ସାହିତ୍ୟରେ ସମାଲୋଚନାର ଶତାବ୍ଦୀ। ଘନ ଘନ ପଦ୍ଧତି ବଦଳିଛି, କୌଣସି ସିଦ୍ଧାନ୍ତ ସର୍ବଜନଗ୍ରାହ୍ୟ ହୋଇ ଅଧିକ କାଳ ରହିପାରିନାହିଁ। ସ୍ୱଳ୍ପ ସମୟର ବ୍ୟବଧାନରେ ଗୋଟିଏ ଗୋଟିଏ ପଦ୍ଧତି ବା ସିଦ୍ଧାନ୍ତ ବଦଳୁଥିବାରୁ ସେଗୁଡ଼ିକ କେତେ ଖାଣ୍ଟିବିଚାର ବୁଦ୍ଧିର ଫଳ, ସେ ଘେନି ସନ୍ଦେହ ଉପୁଜୁଛି।"(୨୦୦୨: ପୃ.୨୩୭)

ସେ ସ୍ରଷ୍ଟା ଓ ସମାଲୋଚକଙ୍କ ଆପେକ୍ଷିକ ସ୍ଥିତି ନେଇ ସମାଲୋଚକର ଦୁର୍ଭାଗ୍ୟର କଥା କହିଛନ୍ତି। କିନ୍ତୁ ସମାଲୋଚକ ଯେ ଚେତନାର ଗଭୀର ସ୍ତରରେ ଏକ ସ୍ୱୟଂ ଶିଳ୍ପପ୍ରବଣ ଓ ଶିଳ୍ପୀର ଦିବ୍ୟଦୃଷ୍ଟିର ଅଧିକାରୀ, ସେଥିରେ ସେ ଗଭୀର ବିଶ୍ୱାସ ସ୍ଥାପନ କରିଛନ୍ତି।

କେହି କେହି ତାଙ୍କ ସମାଲୋଚନା ବିରୋଧରେ ପାଶ୍ଚାତ୍ୟ -ପ୍ରବଣତାର ଅଭିଯୋଗ କରିଥାନ୍ତି ବୋଲି ସମାଲୋଚକ ଶ୍ରୀ ଦାସ ତାଙ୍କ ପ୍ରବନ୍ଧରେ ଲେଖିଛନ୍ତି। କିନ୍ତୁ ଓଡ଼ିଆ ସମାଲୋଚନାର କ୍ଷୀଣ ପ୍ରାଚ୍ୟଧର୍ମୀ ପ୍ରାଚୀନ ପରମ୍ପରା ଥିବା ସତ୍ତ୍ୱେ (ଆଲୋଚକ ତାର ଆଲୋଚନା କରିଛନ୍ତି) ଓଡ଼ିଆ ସମାଲୋଚନା ଅର୍ଥାତ୍ ଗଦ୍ୟନିବଦ୍ଧ ଆଧୁନିକ ସମାଲୋଚନା ପାଶ୍ଚାତ୍ୟ ପ୍ରଭାବ ଓ ପ୍ରେରଣାର ହିଁ ଫଳଶ୍ରୁତି। ପୁଣି ଆଧୁନିକ ଓଡ଼ିଆ ସାହିତ୍ୟର ଭାବ, ଭାଷା, ଶୈଳୀ, ପଦ୍ଧତି, ପ୍ରକରଣ-ସବୁକିଛି ପ୍ରତ୍ୟକ୍ଷତଃ ପାଶ୍ଚାତ୍ୟଭିତ୍ତିକ। ସେହି ପରିପ୍ରେକ୍ଷୀରେ ଓଡ଼ିଆ ଆଲୋଚନା ଆଉ ପ୍ରାଚ୍ୟଧର୍ମୀ ହେବା ବସ୍ତୁତଃ ସମ୍ଭବ ନୁହେଁ

ବୋଲି କୁହାଯାଇପାରେ।  ଶ୍ରୀ ଦାସଙ୍କର ମାଟିପ୍ରୀତି ବା ସାହିତ୍ୟ ପ୍ରବଣତା ନାହିଁ ବୋଲି ନୁହେଁ। ତାଙ୍କର ମଧ୍ୟ ପର୍ଯ୍ୟାପ୍ତ ସ୍ୱାଧୀନ ମାନସିକତା ବିଦ୍ୟମାନ। ଠାଏ ସେ କହିଛନ୍ତି - "ବ୍ରିଟିସକୁ ଛାଡିଲେ, ବ୍ରିଟିସ ସମାଲୋଚନାକୁ ଗ୍ରହଣ କରିବା କାହିଁକି ?" ଏହି ଦୃଷ୍ଟିରୁ ସମସ୍ତ ସଚେତନତା ସତ୍ତ୍ୱେ ନିର୍ଦ୍ଦିଷ୍ଟ କୌଣସି ପାଶ୍ଚାତ୍ୟ ସମାଲୋଚନା ପଦ୍ଧତି ପ୍ରତି ସେ ଅଙ୍ଗୀକାରବଦ୍ଧତା ପୋଷଣ କରିନାହାନ୍ତି। ଆନୁଷଙ୍ଗିକ ଭାବେ ବିଭିନ୍ନ ପଦ୍ଧତିର ଆଂଶିକ ପ୍ରୟୋଗ ମାତ୍ର କରିଛନ୍ତି। ତାଙ୍କ ଆଲୋଚନାରେ ଐତିହାସିକ ସମୀକ୍ଷାପଦ୍ଧତି (Historical Criticism), ପ୍ରଜାତିତାତ୍ତ୍ୱିକ ସମୀକ୍ଷାପଦ୍ଧତି (Generic Crritism) ଆଦିବିମ୍ବୀୟ ସମାଲୋଚନା (Archetypal or Myth Criticism) ନୂତନ ସମାଲୋଚନା (New Criticisim), ଆନ୍ତଃବିଦ୍ୟାଭିତ୍ତିକ ସମାଲୋଚନା (Inter-disciplinary Criticisim), ସଂରଚନାବାଦ (Structuralism), ବାମାବାଦ (Feminism) ଓ ଚେତନାବାଦ (Criticisim of consciousnes) ଇତ୍ୟାଦିର ପରିଚୟ ପାର୍ଶ୍ୱିକଭାବେ ଉପଲବ୍ଧ। ବିଗଠନବାଦ (Deconrstuction) ତାଙ୍କ ବିରକ୍ତିର ଶରବ୍ୟ। ତାଙ୍କ ପୂର୍ବରୁ ଓଡ଼ିଆରେ ଏତିହାସିକ ସମୀକ୍ଷା ପଦ୍ଧତିର କିଛି ଦୃଷ୍ଟାନ୍ତ ରହିଛି। **କାବ୍ୟସଂବାଦ ଓ କବିସୂର୍ଯ୍ୟ କାବ୍ୟବିଭା** ରେ ଏହାର ସଂଯତ ପ୍ରୟୋଗଥିଲେ ମଧ୍ୟ ସେ ଏଥିପ୍ରତି ବିଶେଷ ଆଗ୍ରହ ପ୍ରକାଶ କରିନାହାନ୍ତି। ଚିତ୍ରକଳ୍ପର ବ୍ୟାପକ ଓ ଗଭୀର ଚର୍ଚ୍ଚା ତାଙ୍କୁ  ନୂତନ ସମାଲୋଚନା ସହ ସଂଶ୍ଳିଷ୍ଟ କରେ।

ବିଶ୍ୱ ବା ପ୍ରକୃତି (Nature), କୃତି (Work), ଶିଳ୍ପୀ (Artist) ଓ ସହୃଦୟ (Audience) କୁ ନେଇ ସମୀକ୍ଷାତତ୍ତ୍ୱରେ ଚାରୋଟି ସ୍ୱଷ୍ଟ କେନ୍ଦ୍ରୀୟତା ରହିଛି।

ଆରିଷ୍ଟୋଟଲଙ୍କ 'Poetics'ରେ ମିଶ୍ରପଦ୍ଧତି ଭିତରେ ଏହି ତତ୍ତ୍ୱର ଆଦିରୂପ 'ଟ୍ରାଜେଡ଼ି' ର ଅନୁଶୀଳନରେ ଲକ୍ଷ୍ୟ କରାଯାଏ। ଅଷ୍ଟାଦଶ ଓ ଊନବିଂଶ ଶତାବ୍ଦୀରେ ଏହି ଦୃଷ୍ଟିଭଙ୍ଗୀ ସ୍ୱଷ୍ଟ। କବିତାର ବାହ୍ୟନିରପେକ୍ଷ ରୂପର ଉପଲବ୍ଧି ପରିଲକ୍ଷିତ ହୋଇଛି। କ୍ୟାଣ୍ଟଙ୍କ ଚିନ୍ତାଧାରାକୁ ଭିତ୍ତିକରି କେତେକ ଜର୍ମାନ ଆଲୋଚକ କବିତାର ସ୍ୱାଧୀନ ସତ୍ତାର ବିଶ୍ଳେଷଣ କରିଛନ୍ତି। ଆମେରିକାର କବି ଏଡ୍‌ଗାର ଆଲେକ୍ ପୋ ଏହି ଦୃଷ୍ଟିଭଙ୍ଗୀ ସମ୍ପର୍କରେ କହିଛନ୍ତି, " poem ' per se' .... written solely for the poems sake" କବିତା ପାଇଁ 'କଳାତତ୍ତ୍ୱ' ସହିତ ଏହା ବୋଧହୁଏ ସମ୍ବନ୍ଧିତ ହୋଇଉଠିଛି। ବିଂଶ ଶତାବ୍ଦୀର ମଧ୍ୟଭାଗରେ ଏହାର ସବିଶେଷ ସ୍ୱୀକୃତି। ଏଲିୟଟ କହିଛନ୍ତି, " When we are considering poetry we must consider primarily as poetry and not another thing" । ସେ ତାଙ୍କର ପ୍ରସିଦ୍ଧ Tradition and the Individual Talent ପ୍ରବନ୍ଧରେ କହିଛନ୍ତି - Honest criticism and sensitive appreciation is devicted not upon the poet but upon the poetry, (Selected Essays: page-17) ମ୍ୟାକଲିସ କହିଛନ୍ତି, "A Poem should not mean but be" । ନୂତନ ସମାଲୋଚକ ଜନ କ୍ରୋ ରାନସମ (John Crowe Ransom) କବିତାର " The autonomy of work itself as existing for its own sake' କଥା ସ୍ୱଷ୍ଟ

କରିଦେଇଛନ୍ତି । ରେନେଓ୍ୱାଲେକ୍ ଓ ଅଷ୍ଟି ଓ୍ୱାରେନଙ୍କ 'The Theory of Literature' ର ଦୃଷ୍ଟିଭଙ୍ଗୀ ମଧ୍ୟ ସ୍ମର୍ତ୍ତବ୍ୟ । ଦାଶରଥି ଦାସ ଐତିହାସିକ ବା ନୈତିକ ସମାଲୋଚନା ଇତ୍ୟାଦିର ବହିରଙ୍ଗଭିତ୍ତିକ ଦୃଷ୍ଟିକୋଣକୁ ତ୍ୟାଗକରି ଏହି ବସ୍ତୁନିଷ୍ଠ ଦୃଷ୍ଟିଭଙ୍ଗୀ ଉପରେ ଗୁରୁତ୍ୱ ଦେଇଛନ୍ତି । ଏହା ତାଙ୍କ ସମାଲୋଚନାରେ ଆଧୁନିକତାବୋଧ ପ୍ରତିପାଦିତ କରେ ।

ସତ୍ୟର ଅନ୍ୱେଷଣ ଓ ପ୍ରତିଷ୍ଠା ଜଣେ ସମାଲୋଚକର ସର୍ବପ୍ରଧାନ ଧ୍ୟେୟ । ଦାଶରଥି ସେଥିପ୍ରତି ନିରନ୍ତର ଯତ୍ନଶୀଳ ରହି ପ୍ରାଚ୍ୟ-ପାଶ୍ଚାତ୍ୟ ସମଗ୍ର ସାହିତ୍ୟର ବିସ୍ତୃତ ପରିପ୍ରେକ୍ଷୀ ସହିତ ତାଦାତ୍ମ୍ୟ ପ୍ରତିଷ୍ଠା କରିଛନ୍ତି । ଏଲିୟଟୀୟ ପରମ୍ପରାବୋଧରେ ପ୍ରାଚୀନ ଓ ଆଧୁନିକତାର ସୀମାରେଖା ଘୁଞ୍ଚି ଯିବା ପରି ସେ ସାହିତ୍ୟର ସମ୍ପର୍କ-ରୂପର ଉପଲବଧିପାଇଁ ଉଭୟବିଧ ଉପାଦାନର ସମକାଳୀନ ସଂଶ୍ଲେଷିତପାଇଁ ଆଗ୍ରହୀ ହୋଇଛନ୍ତି । କାଳିଦାସଙ୍କ ମାର୍ଗଦର୍ଶନରେ ବିଶ୍ୱାସ ରଖି ସମ୍ଭବତଃ ସେ କହିବେ

ପୁରାଣମିତ୍ରେବ ନ ସାଧୁ ସର୍ବଂ
ନ ଚ୍ୟପି କାବ୍ୟଂ ନବମିତ୍ୟ ବଦ୍ୟଂ
ସନ୍ତଃ ପରୀକ୍ଷା ନ୍ୟରେତ ଭଜନ୍ତେ
ମୂଢ଼ଃ ପର ପ୍ରତ୍ୟୟନେୟ ବୁଦ୍ଧିଃ ( ମାଳବିକାଗ୍ନିମିତ୍ର)

ପ୍ରାଚୀନ ଓ ଆଧୁନିକ ସବୁ ପ୍ରକାର ସାହିତ୍ୟ ସଂପର୍କରେ ସେ ଅଳ୍ପବେଶି ଆଲୋକପାତ କରିଛନ୍ତି । ନିମ୍ନ ଅନୁକ୍ରମରେ ତାଙ୍କର ସେହି ସମୀକ୍ଷା ସକଳ ବିଚାର କରାଯାଇପାରେ

କ- ସାହିତ୍ୟତତ୍ତ୍ୱ, ଖ- ତୁଳନାତ୍ମକ ସାହିତ୍ୟ,ଗ - ପ୍ରାଚୀନ ଓ ମଧ୍ୟକାଳୀନ ସାହିତ୍ୟ, ଘ-ଆଧୁନିକ ଓଡ଼ିଆ ସାହିତ୍ୟ, ଙ- ଆଧୁନିକବାଦୀ ଓଡ଼ିଆ କବିତା,
ଚ- ଓଡ଼ିଆ ସାହିତ୍ୟ-ସମାଲୋଚନା ।

ଓଡ଼ିଶାରେ ସାହିତ୍ୟ ଚର୍ଚ୍ଚା ବହୁତ ହୁଏ, କିନ୍ତୁ ସେଥିରେ ସାହିତ୍ୟତତ୍ତ୍ୱର ସ୍ଥାନ ଏକାନ୍ତ ଗୌଣ । ସାହିତ୍ୟତତ୍ତ୍ୱ ଯାହା ବା ଆଲୋଚିତ, ଜଟିଳ ପ୍ରସଙ୍ଗର ତାତ୍ତ୍ୱିକ ବିଚାର ଗଭୀର ଅନୁସନ୍ଧିତ୍ସାସାପେକ୍ଷ । ସେହି ସାଧନା, ଧୈର୍ଯ୍ୟ ଓ ବୈଦଗଧ କ୍ୱଚିତ କାହାର ଅଛି । ଦାଶରଥି ଦାସ ସମ୍ପୃକ୍ତ କ୍ଷେତ୍ରରେ ତାଙ୍କର ଏହି ତତ୍ତ୍ୱାନୁସନ୍ଧିତ୍ସାର ଶ୍ରେଷ୍ଠ ଦୃଷ୍ଟାନ୍ତ । ଆଧୁନିକ କବିତାର ଚିତ୍ରକଳ୍ପକୁ କେନ୍ଦ୍ର କରି ସେ ଲେଖିଛନ୍ତି **'ଆଧୁନିକ କାବ୍ୟଜିଜ୍ଞାସା: ଚିତ୍ରକଳ୍ପ'** ଗ୍ରନ୍ଥ । ଆଧୁନିକ କବିତା ସମ୍ପର୍କିତ ଆଲୋଚନା ପ୍ରସଙ୍ଗରେ ୧୫ ଟି ଦୀର୍ଘ ପ୍ରବନ୍ଧ ଲେଖିଛନ୍ତି, ଯାହା ତାଙ୍କର ବିଭିନ୍ନ ଗ୍ରନ୍ଥରେ ସଂକଳିତ । ଯଥା ୧. କବିତାର ଅନ୍ତର୍ଦେବତା, ୨. ଶବ୍ଦାର୍ଥସାହିତ୍ୟତତ୍ତ୍ୱ ୩. ପାଠକର ଦାୟ ଓ ଦାୟିତ୍ୱ (ପ୍ରସଙ୍ଗ ପୁରୁଣା ଭାବନା ନୂଆ) ୪. ଚମତ୍କାରବାଦ: ସୀମା ଓ ସମ୍ଭାବନା ( ବିଦଗ୍ଧମାନସ), ୫. ମେଲୋଡ୍ରାମା, ୮. ଗ୍ରନ୍ଥରଚନା ଓ ରଚନାଶୈଳୀ(ବିବିଧ ପ୍ରସ୍ତାବ ), ୯. କାବ୍ୟାନୁବାଦ, ୧୦. ଗଳ୍ପ ଓ ସତ୍ୟ ୧୧. ଜୀବନ ଓ ସାହିତ୍ୟରେ ହସର ଭୂମିକା (ନାନାନିବନ୍ଧ),୧୨. ଏକାଙ୍କିକା (ବିବିଧ

ସମାଲୋଚନା), ୧୩. ଶିକ୍ଷା ଓ ସାହିତ୍ୟ, ୧୪. ପଦ୍ୟ ଓ କବିତା, ୧୫. କବିତା ଓ ନାଟକ(ସାହିତ୍ୟସନ୍ଧାନ) ଓ ୧୬. ପ୍ରତୀକବାଦ (ଆଧୁନିକ କବିତାର ଦିଗଦର୍ଶନ,ସଂ: ଅପୂର୍ବରଞ୍ଜନ ରାୟ) ଏବଂ ୧୭. କାବ୍ୟେଷୁ ନାଟକଂ ରମ୍ୟଂ ଇତ୍ୟାଦି।

'କବିତାର ଅନ୍ତର୍ଦେବତା' ପ୍ରବନ୍ଧର ବିଷୟବସ୍ତୁ - ଦୈବୀପ୍ରେରଣା ସାହିତ୍ୟର ସୃଜନ ଲୀଳା କ୍ଷେତ୍ରରେ କି ଭୂମିକାର ଅଧିକାରୀ, ତାହାର ବିଶଦ ବିଚାର। ହୋମର, ଭର୍ଜିଲ, ଦାନ୍ତେ, ସେକସପିୟର, ମିଲଟନ୍, ବ୍ଲେକ, ଓ୍ୱାଡସୱାର୍ଥ, ଇଏଟସ୍, ଏଲିୟଟଙ୍କ ପରି ପାଶ୍ଚାତ୍ୟ କବି; ସଂସ୍କୃତରେ କାଳିଦାସ ଏବଂ ଓଡ଼ିଆ ସାହିତ୍ୟର ସାରଳା, ବଳରାମ,ଜଗନ୍ନାଥ,ଅଚ୍ୟୁତାନନ୍ଦ, ଦେବଦୁର୍ଲଭ, ଦୀନକୃଷ୍ଣ, ରାଧାନାଥ, ଫକୀରମୋହନ, ଗଙ୍ଗାଧର, ରମାକାନ୍ତ ରଥ ଓ ମନୋଜ ଦାସ ପ୍ରମୁଖଙ୍କ ପ୍ରସଙ୍ଗ ଏଥିରେ ସ୍ଥାନ ପାଇଛି। ସକ୍ରେଟିସ, ପ୍ଲାଟୋ, ଆରିଷ୍ଟଟଲ ପ୍ରମୁଖ ପାଶ୍ଚାତ୍ୟ ଦାର୍ଶନିକ, ଫ୍ରୟେଡ଼ଙ୍କ ପରି ମନସ୍ତତ୍ତ୍ୱବିଦ୍ ଏବଂ ଆହୁରି ଅନେକ ପ୍ରାଜ୍ଞ ଲେଖକଙ୍କ ମତ ମତାନ୍ତରର ସମ୍ୟକ ବିଶ୍ଳେଷଣ ରହିଛି ଏ ପ୍ରବନ୍ଧରେ। ଈଶ୍ୱର ଓ ନିରୀଶ୍ୱର -ଉଭୟ ଗୋଷ୍ଠୀର ଦୃଷ୍ଟିଭଙ୍ଗୀର ଅନୁଶୀଳନ କରିଛନ୍ତି ଓ ପ୍ରସଙ୍ଗରେ ରହସ୍ୟହୀନ ଧର୍ମ ନିରପେକ୍ଷ ମତକୁ ପ୍ରାୟ ଅସ୍ୱୀକାର କରିଛନ୍ତି। ଫ୍ରୟେଡଙ୍କ ଅବଚେତନତତ୍ତ୍ୱକୁ ଦୈବୀ ପ୍ରେରଣାର ବିକଳ୍ପ ଭାବେ ଗ୍ରହଣ କରିବାକୁ ଶ୍ରୀଦାସ ଆଗ୍ରହୀ ହୋଇନାହାନ୍ତି। ପ୍ରସଙ୍ଗକ୍ରମେ ମାର୍କସବାଦ କଥା ମଧ୍ୟ ଆସିଛି। ପ୍ରବନ୍ଧଟି ଆରମ୍ଭ ହୋଇଛି ରାମକୃଷ୍ଣ ପରମହଂସଙ୍କ ରହସ୍ୟଧର୍ମୀ ଅନୁଭବର ଉପସ୍ଥାପନାରୁ । ପାଶ୍ଚାତ୍ୟ ମିଉଜ ଓ ଆମ ଦେବଦେବୀଙ୍କ କଥା ମଧ୍ୟ ବିଶ୍ଳେଷିତ ହୋଇଛି। ଏହିପରି ଏ ଦୈବୀପ୍ରେରଣାର ବିକଳ୍ପ ଭାବେ ଆଧୁନିକବାଦୀମାନଙ୍କ ମାଦକ ଉପାସନାତତ୍ତ୍ୱକୁ ମଧ୍ୟ ଲେଖକ ଆଲୋଚନାର ଅନ୍ତର୍ଭୁକ୍ତ କରିଛନ୍ତି। ପ୍ରବନ୍ଧରେ ଚିତ୍ତାକର୍ଷକ ଅଂଶ ଥିଲେ ମଧ୍ୟ ଏଠାରେ ଗୋଟିଏ ସାଧାରଣ ଉଦ୍ଧୃତି ଦିଆଯାଇପାରେ। ଲେଖକଙ୍କ ଭାଷାରେ, ଅନ୍ତର୍ଦେବତା ଅଛନ୍ତି। ବିଶେଷ ବିଶେଷ ଅବସ୍ଥାରେ ବିଶେଷ ମଣିଷଙ୍କ ଉପରେ ଦେବତାଟି ଅବତାରଣ କରନ୍ତି। କାହାକୁ କରନ୍ତି ପ୍ରଫେଟ ଓ କାହାକୁ କରନ୍ତି କବି। ବହୁ ବିଦ୍ୱାନ ଏହି କଥାଟିକୁ ସ୍ୱୀକାର କରନ୍ତି ସଦର୍ଥକରୂପେ। କବି ଓ ପ୍ରଫେଟ ଉଭୟେ ବିଶ୍ୱପ୍ରପଞ୍ଚରେ ଅନ୍ତରାଳରେ ଥିବା 'ଝବମଵବରଙ୍ଘ ଞଙ୍ଛଵଵରଙ୍ଛ' କୁ ଦର୍ଶନ କରିଥାନ୍ତି। ପବିତ୍ର ଈଶ୍ୱରଙ୍କର ରହସ୍ୟଟିକୁ ପ୍ରଫେଟ ବ୍ୟବହାର କରିଥାନ୍ତି ନୈତିକ ନିହିତାର୍ଥ ଖୋଜି, କବି ତାହାର ନାନ୍ଦନିକ ତାତ୍ପର୍ଯ୍ୟ ଘେନି କବିତା ଲେଖନ୍ତି। କବିଏ ପ୍ରାୟ ଅନୁପ୍ରେରିତ ମଣିଷ। କବିତା ରଚନା ସମୟରେ ସେମାନେ ଅଲୌକିକ ଏକ ଈଶ୍ୱର ଶକ୍ତିର ମାଧ୍ୟମ ଭାବେ କାର୍ଯ୍ୟ କରଥାନ୍ତି। (ପ୍ରସଙ୍ଗ ପୁରୁଣା: ଭାବନା ନୂଆ - ପୃ ୯) ଏଥିରେ ପ୍ରତିଭାର ଐଶ୍ୱରିକତା ପ୍ରସଙ୍ଗ ଆଲୋଚିତ, ଯାହା ଆମ ଗୋପୀନାଥ ମହାନ୍ତିଙ୍କ ଭାଷାରେ 'କଳାଶକ୍ତି'।

'ଶବ୍ଦାର୍ଥ ସାହିତ୍ୟତତ୍ତ୍ୱ' ପ୍ରବନ୍ଧରେ ପ୍ରାଚ୍ୟ ଓ ପାଶ୍ଚାତ୍ୟ ବହୁ ମନୀଷୀଙ୍କ ବିଚାରଧାରା ଉପସ୍ଥାପିତ ହୋଇଛି ଏବଂ ଆମ ସୁପ୍ରାଚୀନ କାବ୍ୟସଜ୍ଞା 'ଶବ୍ଦାର୍ଥ ସହିତୌ କାବ୍ୟଂ' ତତ୍ତ୍ୱଟି

ଯେ ଶେଷ ପର୍ଯ୍ୟନ୍ତ ଅଭ୍ରାନ୍ତ ମନେକରିବାର ଯଥେଷ୍ଟ କାରଣ ରହିଛି, ତାହା ଲେଖକ ପ୍ରକାଶ କରିଛନ୍ତି । ଚମତ୍‌କାରବାଦର ସୀମା ଓ ସମ୍ଭାବନା ପ୍ରବନ୍ଧରେ ବିଶ୍ୱନାଥ କବିରାଜଙ୍କ ପ୍ରପିତାମହ ପଣ୍ଡିତ ନାରାୟଣଙ୍କ ଅଦ୍ଭୁତ-ସମ୍ବନ୍ଧିତ ରସର ବିଶିଷ୍ଟ ଗୁଣ ସମ୍ପର୍କରେ ଲେଖକ ବିସ୍ତୃତ ବିଚାର ଉପସ୍ଥାପିତ କରି ସାହିତ୍ୟତତ୍ତ୍ୱ କ୍ଷେତ୍ରରେ ଓଡ଼ିଆ ଆଚାର୍ଯ୍ୟଙ୍କ ବିଶିଷ୍ଟ ଭୂମିକାର ଅବତାରଣା କରିଛନ୍ତି । 'ଶୃଙ୍ଗାରୀଚେତ୍ କବିଃ' - ଏହି ବହୁ ପରିଚିତ କାବ୍ୟାଂଶ ପଛରେ ପ୍ରକୃତରେ କିପରି ଗଭୀର ତତ୍ତ୍ୱ ରହିଛି, ତାହା ଲେଖକ ବିବୃତ କରିଛନ୍ତି । ଶୃଙ୍ଗାର କେବଳ କାମୋପଭୋଗ ନୁହେଁ, ସ୍ରଷ୍ଟାର ସ୍ୱକୀୟତା ସମ୍ପନ୍ନ ଆତ୍ମଚେତନା ବୋଲି ଏଥିରେ କୁହାଯାଇଛି । 'ଶ୍ରୀ ଚନ୍ଦ୍ରାବଳୀ' ପ୍ରବନ୍ଧରେ ବୈଷ୍ଣବତତ୍ତ୍ୱ ଦୃଷ୍ଟିରୁ ଚନ୍ଦ୍ରାବଳୀଙ୍କ ମହତ୍ତ୍ୱ ଅତ୍ୟନ୍ତ ମନୋଜ୍ଞ ଭାବେ ବିଶ୍ଳେଷିତ । ପ୍ରବନ୍ଧଟି ପଢ଼ିବାବେଳେ ପ୍ରଖ୍ୟାତ ସାହିତ୍ୟ-ସମାଲୋଚକ ନଟବର ସାମନ୍ତରାୟଙ୍କ 'ଲଳିତା' ପ୍ରବନ୍ଧଟି ମନକୁ ଆସିଥାଏ । କିନ୍ତୁ ଲଳିତା ସୃଷ୍ଟିଧର୍ମୀ ହୋଇଥିବା ବେଳେ ' ଶ୍ରୀ ଚନ୍ଦ୍ରାବଳୀ' ତତ୍ତ୍ୱାଭିମୁଖୀ ପ୍ରଜ୍ଞାଧର୍ମୀତାର ହିଁ ପରିଚାୟକ ।

'ପଦ୍ୟ ଓ କବିତା' ପ୍ରବନ୍ଧରେ ଆଧୁନିକ କବିତାର ଗଦ୍ୟମୁଖିନତାର ପରିପ୍ରେକ୍ଷୀରେ ଲେଖକ ପଦ୍ୟର ଆପାତ ଅପ୍ରାସଙ୍ଗିକତା ସତ୍ତ୍ୱେ ତା'ର ଅପରିହାର୍ଯ୍ୟତା ପ୍ରତିପାଦନ କରିଛନ୍ତି । ସେହିପରି 'କବିତା ଓ ନାଟକ' ପ୍ରବନ୍ଧର ନାଟକର ଗଦ୍ୟଧର୍ମିତା ପରିବର୍ତ୍ତେ କାବ୍ୟ ପ୍ରବଣତାର ପ୍ରୟୋଜନୀୟତା ଉପସ୍ଥାପିତ । **ଶିକ୍ଷା ଓ ସାହିତ୍ୟ**ରେ ଆଧୁନିକ ଯନ୍ତ୍ରଯୁଗ ପରିପ୍ରେକ୍ଷୀରେ ଶିକ୍ଷାରେ ସାହିତ୍ୟର ଅପରିହାର୍ଯ୍ୟ ଆବଶ୍ୟକତା ଉପରେ ଲେଖକଙ୍କ ମତ ପ୍ରକାଶପାଇଛି । ' କାବ୍ୟାନୁବାଦ' କାବ୍ୟ ଅନୁବାଦର ଆପାତ ଅସମ୍ଭାବ୍ୟତା ଓ ସୀମିତ ସୀମା ଭିତରେ ତାହାର ସମ୍ଭାବନା ବହୁ ପାଶ୍ଚାତ୍ୟ ଆଲୋଚକଙ୍କ ଅଭିମତର ସମ୍ୟକ ଅନୁଶୀଳନ ମାଧମରେ ଲେଖକ ପ୍ରକାଶ କରିଛନ୍ତି । 'ମେଲୋଡ୍ରାମା' ଠାରୁ 'ପ୍ରତୀକବାଦ' ପର୍ଯ୍ୟନ୍ତ ସର୍ବତ୍ର ଲେଖକ ନିଜ ଅନନ୍ୟ ସାଧାରଣ ବିଦବତ୍ତାର ପରିଚୟ ଦେଇଛନ୍ତି ।

ବିଶ୍ଳେଷଣ ଓ ତୁଳନା ମାଧମରେ ମୂଲ୍ୟାୟନ ହିଁ ସମାଲୋଚନା ବୋଲି ଇଲିୟଟ କହିଥିବା କଥା ପୂର୍ବରୁ କୁହାଯାଇଛି । ଉପସ୍ଥିତ ସମାଲୋଚକ ପ୍ରାରମ୍ଭରୁ ହିଁ ତୁଳନାପ୍ରବଣ ଓ ଅଦ୍ୟାବଧି ତାଙ୍କର ସେହି ପ୍ରବଣତା ପ୍ରତ୍ୟକ୍ଷ ଓ ପରୋକ୍ଷଭାବେ କ୍ରିୟାଶୀଳ । ଏହି ତୁଳନାକୁ ନେଇ ଏବେ ତୁଳନାତ୍ମକ ସାହିତ୍ୟ କଥା ସର୍ବତ୍ର କୁହାଯାଉଛି ଏବଂ ଓଡ଼ିଆରେ ସମ୍ପୃକ୍ତ କ୍ଷେତ୍ରରେ କେତୋଟି ପୁସ୍ତକ ମଧ୍ୟ ପ୍ରକାଶିତ । କିନ୍ତୁ ଦାଶରଥି ଦାସଙ୍କ ପ୍ରଥମ ସମୀକ୍ଷାକୃତି ' କାବ୍ୟସମ୍ବାଦ' ଗ୍ରନ୍ଥଟିକୁ ନିର୍ବିବାଦରେ ଓଡ଼ିଆ ସମାଲୋଚନା କ୍ଷେତ୍ରରେ ସ୍ପଷ୍ଟତଃ ତୁଳନାତ୍ମକ ସାହିତ୍ୟର ପର୍ଯ୍ୟାୟଭୁକ୍ତ ହୋଇପାରିବ । କାରଣ ସେଥିରେ ଦୁଇ ଭିନ୍ନ ଭିନ୍ନ ଭାଷାର କାବ୍ୟକୃତିକୁ ସାମ୍ୟ ଓ ବୈଷମ୍ୟରେ ତୁଳନା କରାଯାଇଛି । ସମାଲୋଚକ କିନ୍ତୁ ଗ୍ରନ୍ଥଟିର ପରିକଳ୍ପନା ଓ ପ୍ରକାଶନ ସମୟରେ ତୁଳନାତ୍ମକ ସାହିତ୍ୟ ସମ୍ପର୍କରେ କିଛି କହିନାହାନ୍ତି, କହିଛନ୍ତି କେବଳ ତୁଳନାତ୍ମକ ଅଧ୍ୟୟନ କଥା । ଏହି ତୁଳନାତ୍ମକ ଅଧ୍ୟୟନ 'ପ୍ରଭାବ' ବିଚାରର ନାମାନ୍ତର, ଯାହା ଆନନ୍ଦବର୍ଦ୍ଧନଙ୍କ ଭାଷାରେ 'କାବ୍ୟସମ୍ବାଦ' । ଧ୍ୱନ୍ୟାଲୋକର ଏଇ ଶ୍ଳୋକରେ ରହିଛି -

ସମ୍ବାଦୋହ୍ୟନ୍ୟ ସାଦୃଶ୍ୟଂ ତତ୍ ପୁନଃ ପ୍ରତିବିମ୍ବବତ୍
ଆଲେଖାକାର ବତ୍ତୁଲ୍ୟଦେହିବତ୍ ଶରୀରିଣାମ୍
ସମ୍ବାଦୋହି କାବ୍ୟାର୍ଥସୋତ୍ୟତେ ଯଦ୍ୟନ୍ୟେନ କାବ୍ୟବସ୍ତୁନା ସାଦୃଶ୍ୟଂ

ଧ୍ୱନାଲୋକ ୪/୨:

ଗ୍ରନ୍ଥର ପ୍ରବେଶିକାଟି ' କାବ୍ୟସମ୍ବାଦ' ନାମରେ ରଚିତ ଓ ଏଥିରେ ପ୍ରଭାବର ତତ୍ତ୍ୱ ବିଶ୍ଳେଷିତ।ପ୍ରଭାବିତ ହେବା ଯେ ଅଗୌରବର କଥା ନୁହେଁ,ତାହା ଲେଖକ ସବୁବେଳେ କହିଛନ୍ତି। ଏବେତ ସାହିତ୍ୟତତ୍ତ୍ୱ ସବୁ ରଚନାକୁ ଉଦ୍ଧୃତି ଚିହ୍ନ ନଥିବା ଉଦ୍ଧୃତି ବୋଲି କହୁଛି ଓ ସାହିତ୍ୟକ୍ଷେତ୍ରରେ Intertextuality ପ୍ରତିଷ୍ଠିତ ହୋଇଛି। ଆନନ୍ଦବର୍ଦ୍ଧନଙ୍କର ଏଇ ଶ୍ଳୋକଟି ପ୍ରସଙ୍ଗତଃ ଗୁରୁତ୍ୱପୂର୍ଣ୍ଣ।

ଦୃଷ୍ଟପୂର୍ବା ଅପିହ୍ୟର୍ଥାଃ କାବ୍ୟେ ରସ ପରିଗ୍ରହାତ୍
ସର୍ବେ ନବାଇବା ଭାନ୍ତି ମଧୁମାସ ଇବା ଦ୍ରୁମା

ଲେଖକଙ୍କ ଭାଷାରେ " ଲୋକରେ ପ୍ରତ୍ୟକ୍ଷତଃ ଦୃଶ୍ୟମାନ ଅଥବା କାବ୍ୟ ପ୍ରବନ୍ଧରେ ପୂର୍ବବର୍ଣ୍ଣିତ ଅର୍ଥାବଳୀ ରସଯୋଜନାର ବିଲକ୍ଷଣତା ବଳରେ ଅପୂର୍ବ ବୋଲି ପ୍ରକଟିତ ହୋଇଥାନ୍ତି, ଠିକ୍ ଯେପରି ବସନ୍ତ ସ୍ପର୍ଶରେ ବନ ଉପବନର ପୁରୁଣା ବୃକ୍ଷଲତା ନବ ରାଗରଙ୍ଗରେ ପୁଲକିତ ହୋଇଉଠନ୍ତି" (କାବ୍ୟ ସମ୍ବାଦ: ପୃ ୫) ନିଛକ ଆତ୍ମସର୍ବସ୍ୱ ତଥାକଥିତ ମୌଳିକତା ଯେ ବେଶି ବାଟ ଯାଇପାରେ ନାହିଁ , ତାହା ଲେଖକ Alexander Lindey ଙ୍କ ଏହି ମତଦ୍ୱାରା ସାବ୍ୟସ୍ତ କରିଛନ୍ତି। "The initation of other artists is one of the means by which person enriches and finally establishes his own individuality and on the whole such imitation is more promising than incing of originality that hardens too quickly. ( Plagearism and Origiality) ଉତ୍ସ ନିରୂପଣ ପ୍ରବଣତାକୁ ଅନେକ ଏକ ବ୍ୟାଧି ବୋଲି କହନ୍ତି ଓ ଚୌର୍ଯ୍ୟାପରାଧର ଅଭିଯୋଗ ବସ୍ତୁତଃ ଏକ ଅଶାଳୀନତା କୁହାଯାଇପାରେ।

ଆମ ସମାଲୋଚକ ଗ୍ରନ୍ଥଟିର ପରିକଳ୍ପନାର ସୂତ୍ର ରବୀନ୍ଦ୍ରନାଥଙ୍କ ' ପ୍ରାଚୀନ ସାହିତ୍ୟ' ଓ ଶଶିଭୂଷଣ ଦାସଗୁପ୍ତଙ୍କ 'ତ୍ରୟୀ ଗ୍ରନ୍ଥରୁ ଆହରଣ କରିଥିବା କଥା ସ୍ୱୀକାର କରିଛନ୍ତି। ଗ୍ରନ୍ଥରେ ଏଇ ଆଠଟି ପ୍ରବନ୍ଧ ଅଛି - ୧. ବାଣଭଟ୍ଟ ଓ ଭଞ୍ଜୀୟ କାବ୍ୟଶ୍ରୀ, ୨. ନୈଷଧ ଓ କୋଟିବ୍ରହ୍ମାଣ୍ଡସୁନ୍ଦରୀର ରୂପରାଗ, ୩. ଅଭିମନ୍ୟୁ ଓ ଗୋପାଳକୃଷ୍ଣଙ୍କ ବିରହ ବର୍ଣ୍ଣନା, ୪. ଗୀତଗୋବିନ୍ଦ ଓ ଚମ୍ପୂର ରାଧାପ୍ରେମ ୫. କାଳିଦାସ ଓ ତପସ୍ୱିନୀ: ନିଃସର୍ଗ ଭାବଚେତନା, ୬. ଭବଭୂତି ଓ ତପସ୍ୱିନୀର ପ୍ରଣୟଭାବ ଚେତନା, ୭. ରାଥାନାଥ ଓ କବି ନୀଳକଣ୍ଠଙ୍କ ଜାତୀୟଭାବଚେତନା, ୮. ରବୀନ୍ଦ୍ରନାଥ ଓ ମାନସିଂହଙ୍କ ମର୍ତ୍ତ୍ୟପ୍ରୀତି।

ଉଭୟ ଶାସ୍ତ୍ରୀୟ ଓ ସ୍ୱାଧୀନ ରୀତିରେ ଲେଖକ ତୁଳନା କର୍ମରେ ଆତ୍ମପ୍ରକାଶ କରିଛନ୍ତି। ଗୋଟିଏ ଦୃଷ୍ଟାନ୍ତ ଦିଆଯାଇପାରେ।

" ବାଣଭଟ୍ଟ ଓ ଉପେନ୍ଦ୍ର ଦୁହେଁ ଶବ୍ଦସମ୍ରାଟ। କଳ୍ପନା ଲଘୁପକ୍ଷ ବିସ୍ତାର କରି

ଯାଉଥିବାବେଳେ ଶବ୍ଦର ଅଦ୍ଭୁତ ପ୍ରବାହ ରଚନା କରିବାରେ ଦୁହେଁ ସିଦ୍ଧହସ୍ତ। ତେଣୁ ଦୁହେଁ ସଂସ୍କୃତ କାବ୍ୟରାଜ୍ୟର ପାଞ୍ଚାଳୀ ଶୈଳୀର କବି ବୋଲି ମନେହୁଅନ୍ତି। xxx ବାଣଭଟ୍ଟ ଓ ଉପେନ୍ଦ୍ର ଶବ୍ଦର ଯାଦୁଶକ୍ତି ସମ୍ପର୍କରେ ସଚେତନ ଥିଲେ। ଶବ୍ଦର ବିଚିତ୍ର ଗତିଛଳରେ ଯେତେ ମଞ୍ଜୁଳ ଆନନ୍ଦ ସଞ୍ଚାର କରାଯାଇପାରେ, ତାର ପୂର୍ଣ୍ଣ ସ୍ୱରୂପ ପ୍ରକଟନ କରିବାକୁ ଦୁହେଁ ସଂସ୍କୃତ ଆଳଙ୍କାରିକ ରୀତିରେ ନିଜର ସମସ୍ତ ଶକ୍ତି ପ୍ରୟୋଗ କରିଛନ୍ତି। (କାବ୍ୟ ସମ୍ବାଦ: ବାଣଭଟ୍ଟ ଓ ଭଞ୍ଜୀୟ କାବ୍ୟଶ୍ରୀ: ପୃ ୪୫-୪୬)।

ସମ୍ବେଦନଶୀଳତା ସହିତ ଲେଖକ ଅକୁଣ୍ଠିତ ଭାବେ ସତ୍ୟର ଆବିଷ୍କାର କରିଛନ୍ତି। ସୀମାବଦ୍ଧତା ତାଙ୍କର ଦୃଷ୍ଟି ପଥାରୂଢ଼ ହୋଇଛି। **କୋଟିବ୍ରହ୍ମାଣ୍ଡସୁନ୍ଦରୀ** ନୈଷଧର ସବୁ ପ୍ରଶଂସାର ଭାଜନ ନୁହେଁ ବୋଲି କହିଛନ୍ତି। ପ୍ରବନ୍ଧ ଦୁଇଟି ଭଞ୍ଜ ସାହିତ୍ୟ ଅଧ୍ୟୟନ କ୍ଷେତ୍ରରେ ଲେଖକଙ୍କର ଦୁଇଟି ଅମୂଲ୍ୟକୃତି।

ଅଭିମନ୍ୟୁ ଓ ଗୋପାଳକୃଷ୍ଣଙ୍କ ତୁଳନାକ୍ରମରେ ଗୋପାଳକୃଷ୍ଣ ଆପେକ୍ଷିକ ଭାବେ ଅଧିକ ମୌଳିକତାର ଅଧିକାରୀ। " କେବଳ ରାଧାଙ୍କ ଦେହଧର୍ମ ଓ ମନୋଧର୍ମରେ ନୁହେଁ, ଦୁଇ କାବ୍ୟର ଆଙ୍ଗିକ ଓ ପ୍ରାଣଧର୍ମରେ ମଧ୍ୟ ସୁଗଭୀର ସାମ୍ୟ ବିଦ୍ୟମାନ ରହିଛି।" ( ତତ୍ରୈବ: ପୃ. ୨୨୫)। ଗଙ୍ଗାଧର ମେହେର ନିଃସର୍ଗ ଭାବଚେତନା କ୍ଷେତ୍ରରେ କାଳିଦାସଙ୍କ ନିକଟବର୍ତ୍ତୀ ହୋଇପାରିନାହାନ୍ତି। ମାତ୍ର ପ୍ରଣୟ ଭାଜନ କ୍ଷେତ୍ରରେ ଭବଭୂତିଙ୍କର ସମଧର୍ମୀ ।

ଜାତୀୟଭାବଚେତନା କ୍ଷେତ୍ରରେ ରାଧାନାଥ ଓ ନୀଳକଣ୍ଠଙ୍କ ଭିନ୍ନତା ପ୍ରତିପାଦନ କ୍ଷେତ୍ରରେ ଶ୍ରୀ ଦାସ ଲଙ୍ଗଫେଲୋଙ୍କ ଏହି ଉଦ୍ଧୃତିଟି ବ୍ୟବହାର କରିଛନ୍ତି " All that is beat in the great poets of all contries is not what is national in them, but what is universal" ରାଧାନାଥ ଏଥିରେ ବିଶ୍ୱାସୀ ଥିଲେ, କିନ୍ତୁ ନୀଳକଣ୍ଠ ଜାତୀୟଭାବାବେଗ ପାଖରେ କାବ୍ୟକବିତାର ବହୁ ପ୍ରୟୋଜନ ବିସର୍ଜନ କରିଛନ୍ତି।

ରବୀନ୍ଦ୍ରନାଥ ଓ ମାନସିଂହଙ୍କ ମର୍ତ୍ତ୍ୟପ୍ରୀତିର ତୁଳନା କଲାବେଳେ ଲେଖକ ଆମକୁ କହି ରଖିଛନ୍ତି -

"ପ୍ରଭାବ ସଚେତନ ସାହିତ୍ୟଶିଳ୍ପ ସବୁବେଳେ ଅକ୍ଷମ ଅନୁକରଣ ମାତ୍ର ନୁହେଁ। କବି ମାନସିଂହ ମଧ୍ୟ ଶକ୍ତିହୀନ ନୁହନ୍ତି। ତେଣୁ ଯେଉଁ ପ୍ରଭାବ ଯୁଗେ ଯୁଗେ ପରବର୍ତ୍ତୀ ସାହିତ୍ୟକୁ ଶ୍ରୀ ସମ୍ପନ୍ନ କରିଥାଏ, ସେହି ପ୍ରଭାବ ସେ ସ୍ୱୀକାର କରିଛନ୍ତି, ସ୍ୱୀକରଣ ଓ ଅନୁସରଣ ଲଜ୍ଜାକର ନୁହେଁ। ମାନସିଂହଙ୍କ ମର୍ତ୍ତପ୍ରୀତିର ଅନ୍ୟତମ ବଳିଷ୍ଠ ଉତ୍ସ ହେଉଛି ରବୀନ୍ଦ୍ର ଭାବକଳ୍ପନା। ତେବେ ସେହି ଭାବକଳ୍ପନା ତାଙ୍କ କବିତାର ଭାବ ଓ ପାରିପାର୍ଶ୍ୱିକ ପରିମଣ୍ଡଳରେ ଏପରି ସଞ୍ଚାରିତ ହୋଇଛି ଯେ ସବୁଠି ତାକୁ ନୂତନ ଆଶ୍ରୟରୁ ସ୍ୱତନ୍ତ୍ର କରି ଦେଖିହୁଏ ନାହିଁ। ପୂର୍ବର ଭାବକଳ୍ପନାକୁ ସମ୍ଭବତଃ ସେ ନିଜର କରିବାକୁ ଚାହିଁଛନ୍ତି। ତେଣୁ ତାଙ୍କ ରଚନାକୁ ମୌଳିକତାର ପ୍ରାପ୍ୟ ଦେବାକୁ ବିଶେଷ କୁଣ୍ଠିତ ହେବାର କିଛି ନାହିଁ।" (ତତ୍ରୈବ: ପୃ. ୩୩୧)

ଓଡ଼ିଆ ସାହିତ୍ୟ-ସମାଲୋଚନା କ୍ଷେତ୍ରକୁ ଏ ପ୍ରତ୍ୟେକ ପ୍ରବନ୍ଧ ଲେଖକଙ୍କର ଏକ ଏକ ଅମୂଲ୍ୟ ଅବଦାନ।

**ଛରି**

ପ୍ରାଚୀନ ଓ ମଧ୍ୟକାଳୀନ ସାହିତ୍ୟ, ପୁଣି ଆଧୁନିକ ସାହିତ୍ୟ - ସବୁ ପ୍ରକାର ସାହିତ୍ୟର ଅନୁଶୀଳନରେ ଶ୍ରୀ ଦାସ ସ୍ୱକୀୟ ଦକ୍ଷତାର ପରିଚୟ ଦେଇଛନ୍ତି। ମଧ୍ୟକାଳୀନ ସାହିତ୍ୟର ଜଣେ ମହାନ୍ ସ୍ରଷ୍ଟା କବିସୂର୍ଯ୍ୟ ବଳଦେବଙ୍କ ସମ୍ପର୍କରେ ସେ ଏକ ବୃହତ ସମୀକ୍ଷାଗ୍ରନ୍ଥ ' କବିସୂର୍ଯ୍ୟ କାବ୍ୟବିଭା' ରଚନା କରିଛନ୍ତି। ତା' ବ୍ୟତୀତ ତାଙ୍କର ଏସମୟର ସାହିତ୍ୟ ସମ୍ପର୍କରେ ଅନ୍ୟୂନ ୨୦ଟି ପ୍ରବନ୍ଧ ବିଭିନ୍ନ ସଂକଳନରେ ଉପଲବ୍ଧ। ସେଗୁଡ଼ିକ - ୧. **ଲକ୍ଷ୍ମୀପୁରାଣ : ପୁନର୍ପାଠ ଓ ପୁନର୍ବିବେଚନ**, ୨. **ମହୀମଣ୍ଡଳ ଗୀତା : ଆତ୍ମକଥନ ଓ ବ୍ରହ୍ମମନନ**, ୩. **କବି ଭୀମଭୋଇଙ୍କ ବେଦାନ୍ତମାର୍ଗର ଏକ ସମ୍ଭାବ୍ୟ ଭୂମିକା** (ପ୍ରସଙ୍ଗ ପୁରୁଣା: ଭାବନା ନୂଆ), ୪. **ଯୌନାଚାରର ଅନୁଷ୍ଠାନ ଓ ଦୁର୍ଗାପୂଜା**,୫. **ଓଡ଼ିଆ ଭାଗବତର ଧ୍ରୁବଚରିତ ସମସ୍ୟା**, ୬. **ପୂର୍ଣ୍ଣତମ ଚନ୍ଦୋଦୟର ତତ୍ତ୍ୱ ସୌନ୍ଦର୍ଯ୍ୟ**, ୭. **ରାମଜନ୍ମ : ଏକ ସାହିତ୍ୟିକ ଅନୁଚିନ୍ତା** (ଐତିହ୍ୟ ଓ ଆଧୁନିକତା), ୮. **ଶ୍ରୀ ମଲ୍ଲୀନାଥ : ବ୍ୟାଖ୍ୟାର ଚକ୍ରବର୍ତ୍ତୀ**,୯. **ପ୍ରେମପଞ୍ଚାମୃତ: ପ୍ରେମଦୃଷ୍ଟି**,୧୦. **ଓଡ଼ିଆ ପୁରାଣ: କାଞ୍ଚିକାବେରୀ** (ବିଦଗଧମାନସ), ୧୧. **ପ୍ରାଚୀନ ସାହିତ୍ୟରେ ଅନଙ୍ଗ ଓ ଅନଙ୍ଗରଙ୍ଗ** (ସାହିତ୍ୟବିବେକ), ୧୩. ଦିବାକର **ଦାସଙ୍କ ଜଗନ୍ନାଥ ଦାସ** , ୧୩. **ନୀଳାଦ୍ରୀଶ ଚଉତିଶା କ'ଣ ଉପେନ୍ଦ୍ର ଭଞ୍ଜଙ୍କ ଲେଖା ?** ,୧୪. **ପ୍ରସଙ୍ଗ : ଟେକ୍ନୋବିକାଶ**, ୧୫. **ପ୍ରାଚୀନ ଓଡ଼ିଆ କାବ୍ୟଜିଜ୍ଞାସାର ନନ୍ଦନତତ୍ତ୍ୱ** , ୧୬. **କାଞ୍ଚିକାବେରୀ: ମିଥରୁ ରୋମାନସ୍** , ୧୭. **ଲାବଣ୍ୟବତୀର ଭାଷା**, ୧୮. **ଓଡ଼ିଶାର ଦୁଇଟି ବିଷ୍ଣୁମୂର୍ତ୍ତି।** (ବିବିଧ ପ୍ରସ୍ତାବ) ,୧୯. ହାସ୍ୟରସ ବିଭାଗରେ ବଡଜେନା (ନାବ ନିବଂଧ), (୨୦) **ପ୍ରାଚୀନ ସାହିତ୍ୟରେ ଋତୁସାଧନା:** ବସନ୍ତ (ବିବିଧ ସମାଲୋଚନା)।

ପଞ୍ଚସଖା ସାହିତ୍ୟ ସମ୍ପର୍କିତ ପ୍ରବନ୍ଧ **ଲକ୍ଷ୍ମୀପୁରାଣର** ଆଲୋଚନାରେ ନାନା ନୂତନ ଉପାଦାନ ଆଲୋଚନା ଭିତରକୁ ଆସିଛି, ଯେପରି ନାରୀବାଦ ବା feminism ପ୍ରସଙ୍ଗ। ଏଥିରେ ସେ ପର୍ଯ୍ୟାପ୍ତ ନୂତନ ବିଚାରର ଆଲୋକପାତ କରିଛନ୍ତି। ଜଗନ୍ନାଥ ଦାସଙ୍କ ଭାଗବତରେ ଚତୁର୍ଥସ୍କନ୍ଧରେ ଅପ୍ରତ୍ୟାସିତ ଭାବେ ରହିଥିବା ଚତୁର୍ଦ୍ଦଶାକ୍ଷରୀ ଛନ୍ଦରେ **ଧ୍ରୁବ ଚରିତ** ପ୍ରସଂଗରେ ବିଭିନ୍ନ ଦୃଷ୍ଟିକୋଣରୁ ଆଲୋଚନା କରି ତାହାକୁ ପ୍ରକ୍ଷିପ୍ତ କହିଛନ୍ତି। ଦିବାକର ଦାସଙ୍କ **ଶ୍ରୀ ଜଗନ୍ନାଥ ଚରିତାମୃତରେ** ଅତିବଡି ପ୍ରସଙ୍ଗରେ ତାହା ଆଦୌ ଉପାଧି ନୁହେଁ, ବୟସସୂଚକ ଏକ ବିଶେଷଣ ବୋଲି କହିଛନ୍ତି। ଏ ଆଲୋଚନା ନଟବର ସାମନ୍ତରାୟ ଓ ସଚ୍ଚିଦାନନ୍ଦ ମିଶ୍ରଙ୍କ ପଞ୍ଚସଖା ଆଲୋଚନା ପର୍ଯ୍ୟାୟର ଓ ପାରମ୍ପରିକ ଗବେଷଣା ପରମ୍ପରାରେ ଶ୍ରୀ ଦାସଙ୍କ ସମସ୍ପର୍ଦ୍ଧୀ ପ୍ରତିଭାର ପରିଚାୟକ। ସେହିପରି ଉପେନ୍ଦ୍ର ଭଞ୍ଜଙ୍କ 'ନୀଳଦ୍ରୀଶ ଚଉତଶା' ର ପିତୃତ୍ୱ ନିରୂପଣ ପ୍ରସଙ୍ଗରେ ସେ ବିଚାର ଦକ୍ଷତାର ପରିଚୟ ଦେଇଛନ୍ତି। **ପୂର୍ଣ୍ଣତମଚନ୍ଦ୍ରୋଦୟ, ପ୍ରେମପଞ୍ଚାମୃତ, କାଞ୍ଚିକାବେରୀ** ଓ

**ଚୈତନ୍ୟବିଳାସ** ସମ୍ପର୍କରେ ତାଙ୍କର ଆଲୋଚନା ଅତି ସୂକ୍ଷ୍ମ ଅନୁଶୀଳନର ଦୃଷ୍ଟାନ୍ତ। ସେହିପରି ତାଙ୍କ ସାଂସ୍କୃତିକ ଜିଜ୍ଞାସାର ଅଭ୍ରାନ୍ତ ଆଲେଖ୍ୟ ବହନ କରିଛି **ଯୌନାଘର ଓ ଦୁର୍ଗାପୂଜା** ସମ୍ପର୍କିତ ପ୍ରବନ୍ଧ। **'ଲାବଣ୍ୟବତୀର ଭାଷା'** ପ୍ରବନ୍ଧରେ ଲାବଣ୍ୟବତୀର କାବ୍ୟିକ ଭାଷାଦର୍ଶ ନୂତନ ଦୃଷ୍ଟିକୋଣରୁ ଆଲୋଚିତ ହୋଇଛି। ଆଧୁନିକ ଆଭିମୁଖ୍ୟ ଦୃଷ୍ଟିରୁ ଉପେନ୍ଦ୍ରଭଞ୍ଜଙ୍କ ଗ୍ରହଣୀୟତା ତହିଁରେ ସୂଚିତ। ବଡଜେନାଙ୍କ ହାସ୍ୟରସ ନେଇ ତାଙ୍କର ଆଲୋଚନା ମୌଳିକ ଅନ୍ତର୍ଦୃଷ୍ଟିର ଅଭିଜ୍ଞତାରେ ସାର୍ଥକତାମଣ୍ଡିତ। ବସନ୍ତ ଋତୁକୁ ନେଇ ପ୍ରାଚୀନ ସାହିତ୍ୟରେ ରସଚର୍ଯ୍ୟାର ଯେଉଁ ପରମ୍ପରା ବୈଦିକ ଯୁଗରୁ ରହି ଆସିଛି, ତାହା ଶ୍ରୀଦାସ ଅତ୍ୟନ୍ତ ଆବେଗ-ଜଡିତ ଭାଷାରେ ପ୍ରକାଶ କରିଛନ୍ତି। ସଂସ୍କୃତ ସାହିତ୍ୟର କାଳିଦାସ, ଜୟଦେବ; ଓଡିଆ ସାହିତ୍ୟର ଭଞ୍ଜ, ଦୀନକୃଷ୍ଣ, ରାଧାନାଥ, ଗଙ୍ଗାଧର; ବଙ୍ଗଳା ସାହିତ୍ୟର ରବୀନ୍ଦ୍ରନାଥ, ଇଂରାଜୀ ସାହିତ୍ୟର ବିଭିନ୍ନ କବି ଓ କବିତାର ବିଚାର ଏଥିରେ ସ୍ଥାନ ପାଇଛି। ପ୍ରାଚୀନ ସାହିତ୍ୟରେ ଅନଙ୍ଗ ଓ ଅନଙ୍ଗରାଗରେ କନ୍ଦର୍ପଙ୍କର ସାହିତ୍ୟିକ ଉନ୍ମେଷ ଓ ଉତ୍ତରଣର ଧାରା ଅଭିବ୍ୟଜିତ ହୋଇଛି। **ଶ୍ରୀ ମଲ୍ଲୀନାଥ : ବ୍ୟାଖ୍ୟାତୃ ଚକ୍ରବର୍ତ୍ତୀ,** ସଂସ୍କୃତ ସାହିତ୍ୟର ଏହି ବିଖ୍ୟାତ ଭାଷ୍ୟକାରଙ୍କର ଏକ ମନୋଜ୍ଞ ବିଚାର। ପ୍ରାଚୀନ ଓଡ଼ିଆ ସାହିତ୍ୟରେ ନିନ୍ଦନତତ୍ତ୍ୱର ପରମ୍ପରା ତାଙ୍କ ଅନ୍ତର୍ଦୃଷ୍ଟିସମ୍ପନ୍ନ ସମୀକ୍ଷାରେ ରାଧାନାଥଙ୍କ ପର୍ଯ୍ୟନ୍ତ ପରିବ୍ୟାପ୍ତ ଓ ରାଧାନାଥଙ୍କ ସୃଷ୍ଟିରେ ନୂତନଦୃଷ୍ଟିର ଆବିର୍ଭାବ ପ୍ରଦର୍ଶିତ।

ସନ୍ଥ ସାହିତ୍ୟର ଆଲୋଚନା ପ୍ରସଙ୍ଗରେ ଶ୍ରୀ ଦାସ ଅରକ୍ଷିତ ଓ ଭୀମଭୋଇଙ୍କୁ ଗ୍ରହଣ କରିଛନ୍ତି। ବିଶେଷତଃ, ଭୀମଭୋଇଙ୍କ ସମ୍ପର୍କରେ ତାଙ୍କର ବିଚାରଧାରା ଏକାନ୍ତ ବିଲକ୍ଷଣ। ତୁଳନାତ୍ମକ ଧର୍ମତତ୍ତ୍ୱର ଏକ ବିଶଦ ପ୍ରବାହ ଏଠାରେ ପରିଲକ୍ଷିତ। ସେ ଭୀମଭୋଇଙ୍କ ଭିତରେ ରେନାଁସାସର ସ୍ପନ୍ଦନ ଦେଖିଛନ୍ତି। ତାଙ୍କ କବିତା ସମକାଳୀନ ବିଶ୍ୱକବି ବୋଦଲେୟାଲଙ୍କ କବିତାର ସମଧର୍ମୀ। ତାଙ୍କ ଦୃଷ୍ଟିରେ ଭୀମଭୋଇଙ୍କ କବିତାର ଆଧୁନିକତା ସୁସ୍ପଷ୍ଟ । ପ୍ରସଙ୍ଗ କ୍ରମେ ସେ **ବଳିଷ୍ଠ ଆଧୁନିକ** କବି ରମାକାନ୍ତଙ୍କ ଶ୍ରୀରାଧାର କଥା କହିଛନ୍ତି ଏବଂ ରମାକାନ୍ତଙ୍କ ଭୀମଭୋଇଙ୍କ ସମ୍ପର୍କିତ ପ୍ରବନ୍ଧ 'ଭୀମ ଭୋଇଙ୍କ ଦୃଷ୍ଟାନ୍ତ' ର ରହସ୍ୟ ବିଶ୍ଳେଷଣ କରିଛନ୍ତି। ଭୀମ ଭୋଇଙ୍କ ସମ୍ପର୍କରେ ଏପରି ସୂକ୍ଷ୍ମଦର୍ଶୀ ଗଭୀର ଅନୁଶୀଳନ ପୂର୍ବରୁ କେହି କେବେ କରିଥିବା ମନେହୁଏ ନାହିଁ।

"କବିସୂର୍ଯ୍ୟ କାବ୍ୟବିଭା' ପାଖାପାଖି ୫୦୦ ପୃଷ୍ଠାର ଏକ ବିରାଟ ଗ୍ରନ୍ଥ। ଏହା ପାଞ୍ଚଟି ଅଧ୍ୟାୟରେ ବିଭକ୍ତ। ୧. ଜୀବନଚରିତ, ୨. କାବ୍ୟସାଧନର ପୃଷ୍ଠଭୂମି, ୩. କାବ୍ୟବିଭା, ୪. ଦୃଷ୍ଟିଭଙ୍ଗୀ ଓ ଶିଳ୍ପ ପ୍ରବଣତା, ୫. କବିସୂର୍ଯ୍ୟ ଓ ଗୋପାଳକୃଷ୍ଣ। ସମ୍ପୃକ୍ତ କ୍ଷେତ୍ରରେ ପଣ୍ଡିତ କୁଳମଣି ଦାଶ ଓ ଶ୍ରୀ ସଚ୍ଚିଦାନନ୍ଦ ମିଶ୍ରଙ୍କ ସାଧନାକୁ ସ୍ୱୀକୃତି ଦେଇ ସେ ଅଗ୍ରସର ହୋଇଛନ୍ତି। କବିସୂର୍ଯ୍ୟଙ୍କ ସମ୍ପର୍କରେ ପ୍ରଚଳିତ କିମ୍ବଦନ୍ତୀ ଓ ଜନଶ୍ରୁତି ଭିତରେ ତାଙ୍କର ଜୀବନଚରିତ ଯେପରି ଅବିଶ୍ୱାସ୍ୟ ରୂପ ଧାରଣା କରିଥିଲା, ବିଶ୍ଳେଷଣ ମାଧ୍ୟମରେ ସେଗୁଡ଼ିକୁ ଖଣ୍ଡନ କରି ତାହାର ପୁନର୍ନିର୍ମାଣ କରିଛନ୍ତି। ସଚ୍ଚିଦାନନ୍ଦ ମିଶ୍ରଙ୍କ ଆଲୋଚନା ପରିପ୍ରେକ୍ଷୀରେ ତାଙ୍କର ଜନ୍ମକାଳ ୧୭୭୯ ଓ ଦେହାନ୍ତକାଳ ୧୮୪୫ ବୋଲି ନିର୍ଦ୍ଧାରଣ

କରିଛନ୍ତି। ଦ୍ୱିତୀୟ ଅଧ୍ୟାୟରେ, ରୀତିଯୁଗୀୟ କାବ୍ୟାଦର୍ଶର ପରମ୍ପରା ପ୍ରସଙ୍ଗରେ ସାମାଜିକ, ରାଜନୀତିକ ଓ ସାଂସ୍କୃତିକ ପରିଦୃଶ୍ୟର ପରିଚର୍ଚ୍ଚା ଅତ୍ୟନ୍ତ ଉଲ୍ଲେଖଯୋଗ୍ୟ। ଏ ଯୁଗର ନଷ୍ଟମୂଲ୍ୟବୋଧ ଓ ଅନ୍ତଃସାରଶୂନ୍ୟ ନିଷ୍ଫଳତା ଲେଖକଙ୍କ ଆଲୋଚନାରେ ସ୍ଥାନପାଇଛି। ଚମ୍ପୂ ସମ୍ପର୍କୀୟ ଆମ ପାରମ୍ପରିକ ଧାରଣାର ବ୍ୟବଚ୍ଛେଦ କରି ଲେଖକ ଏଥିରେ ନୂତନ ଦୃଷ୍ଟିର ପରିଚୟ ଦେଇଛନ୍ତି। ସଂସ୍କୃତରେ **କିଶୋରଚନ୍ଦ୍ରାନନ୍ଦ ଚମ୍ପୂ**ରେ ଯେଉଁ ରଚନାଟି ରହିଛି, ଅଳଂକାରତତ୍ତ୍ୱ ଦୃଷ୍ଟିରୁ ତାହା ଗଦ୍ୟପଦ୍ୟାତ୍ମକ ହୋଇଥିବା ଯୋଗୁଁ ଚମ୍ପୂଆଖ୍ୟାର ଅଧିକାରୀ। ମାତ୍ର ଆମେ 'କ' ଠାରୁ କ୍ଷ ପର୍ଯ୍ୟନ୍ତ ଅକ୍ଷରକ୍ରମରେ ଏଥି ସହିତ ସଂଯୁକ୍ତ ଗୀତ ବା ଚଉପଦୀଗୁଡିକୁ ଚମ୍ପୂ ବୋଲି ଭାବିଥାଉ। ଏହା କିନ୍ତୁ ପ୍ରକୃତରେ ଚଂପୂ ନୁହେଁ, ବରଂ 'କବିତା'। କବିସୂର୍ଯ୍ୟଙ୍କ ସଙ୍ଗୀତକଳାର ସେ ମନୋଜ୍ଞ ବିଚାର ଉପସ୍ଥାପିତ କରିଛନ୍ତି। ସବୁଠାରୁ ଚମତକାର , କବିସୂର୍ଯ୍ୟ ଓ ଗୋପାଳକୃଷ୍ଣଙ୍କ ତୁଳନା। କବିସୂର୍ଯ୍ୟ ଅଙ୍ଗୀକାରବଦ୍ଧ ଗୌଡୀୟ ବୈଷ୍ଣବ ନ ହୋଇଥିବାବେଳେ, ଗୋପାଳକୃଷ୍ଣ କିନ୍ତୁ ବିଶୁଦ୍ଧ ଭକ୍ତ । କବିସୂର୍ଯ୍ୟ ଜୟଦେବ ପରଂପରାର ଧର୍ମ ନିରପେକ୍ଷ କବି, କିନ୍ତୁ ଗୋପାଳକୃଷ୍ଣ ଚୈତନ୍ୟଙ୍କର ରାଗାନୁଗା ଭକ୍ତିର ଉପାସକ, ଧର୍ମନିରପେକ୍ଷ ଓ ଧର୍ମାନୁଗ-ଉଭୟ ପରମ୍ପରାର। ପାଣ୍ଡିତ୍ୟପୂର୍ଣ୍ଣ ଆଲୋଚନା ମାଧ୍ୟମରେ ଲେଖକ ସେମାନଙ୍କ ଭୂମିକା ନିରୂପଣ କରିଛନ୍ତି। ଲେଖକଙ୍କ ଭାଷାରେ "କବିସୂର୍ଯ୍ୟ ଶିଳ୍ପୀ। ଗୋପାଳକୃଷ୍ଣ ଶିଳ୍ପୀ ଓ ସାଧକ"। (କ.କା: ପୃ. ୩୯୧) ସେ ବୈଷ୍ଣବ କବିତା ପ୍ରସଙ୍ଗରେ ରବୀନ୍ଦ୍ରନାଥଙ୍କ ତୁଳନାଦୃଷ୍ଟିର ସଦୁପଯୋଗ କରିଛନ୍ତି। କବିସୂର୍ଯ୍ୟଙ୍କ କବିତାରେ ଆଧୁନିକତାର ସୂଚନା ଲକ୍ଷ୍ୟ କରିଛନ୍ତି।

ଆଧୁନିକ ଓଡ଼ିଆ ସାହିତ୍ୟର ଅନୁଶୀଳନରେ ସମାଲୋଚକ ଭାବେ ଶ୍ରୀ ଦାସଙ୍କ ବିଚାର ଆପେକ୍ଷିକ ଦୃଷ୍ଟିରୁ ମହତ୍ତର। ଏକ ଆଲୋଚନାରେ ସେ ଆଧୁନିକ ଓଡ଼ିଆ ସାହିତ୍ୟର ଯୁଗନିର୍ଣ୍ଣୟ ନିମ୍ନମତେ କରିଛନ୍ତି -୧. ପୁନରୁତଥାନ ଯୁଗ (୧୮୭୦ - ୧୯୨୦),୨. ରୋମାଣ୍ଟିକ ଯୁଗ,(୧୯୨୧ - ୧୯୩୫), ୩. ପ୍ରଗତିଶୀଳ ଯୁଗ (୧୯୩୫ - ୧୯୬୦),୪. ଆଧୁନିକ ଯୁଗ ( ୧୯୬୦ - ୧୯୮୫)।

ଓଡ଼ିଆ ସାହିତ୍ୟ ଚର୍ଚ୍ଚାକ୍ଷେତ୍ରରେ ଆଧୁନିକ ଯୁଗର ଯୁଗସ୍ରଷ୍ଟା କିଏ -ତତ୍ ସଂକ୍ରାନ୍ତରେ ମତ-ମତାନ୍ତର ରହିଛି। କେହି କେହି ରାଧାନାଥଙ୍କୁ (ନଟବର ସାମନ୍ତରାୟ) ଯୁଗସ୍ରଷ୍ଟା କହୁଥିବାବେଳେ, କେହି ଫକୀରମୋହନଙ୍କୁ (ସୁରେନ୍ଦ୍ରମହାନ୍ତି,ସର୍ବେଶ୍ୱର ଦାଶ) ଯୁଗସ୍ରଷ୍ଟା ବୋଲି କହନ୍ତି। କିନ୍ତୁ ଦାଶରଥି ଦାସ ରାଧାନାଥ କି ଫକୀରମୋହନ, କାହାକୁ ଯୁଗସ୍ରଷ୍ଟା କହିବାକୁ ପ୍ରସ୍ତୁତ ନୁହନ୍ତି। ଏ ମତ ନୂତନ ଏବଂ ପ୍ରକୃତରେ ଗ୍ରହଣୀୟ। ସତ୍ୟବାଦୀ ସାହିତ୍ୟକୁ ସେ ଏକ ଯୁଗର ମାନ୍ୟତା ମଧ୍ୟ ଦେଇନାହାନ୍ତି ଏବଂ ଏ ସାହିତ୍ୟ ପ୍ରତି ତାଙ୍କର ଶ୍ରଦ୍ଧାହୀନତା ପ୍ରକାଶ ପାଇଛି। ଶ୍ରୀ ଚିନ୍ତାମଣି ଦାଶଙ୍କ ପରି ସତ୍ୟବାଦୀ ଭକ୍ତ ତାଙ୍କ ଆକ୍ଷେପର ଶିକାର ହୋଇଛନ୍ତି। ସେହିପରି ପ୍ରଗତିଶୀଳ ସାହିତ୍ୟପ୍ରତି ମଧ୍ୟ ସମାଲୋଚକ ବିଶେଷ ଅନୁରାଗ ପ୍ରକାଶ କରିନାହାନ୍ତି। ସମାଜଚେତନା ତାଙ୍କପାଇଁ ବଡ ଏକ ସାହିତ୍ୟଚେତନା ନୁହେଁ। (ଆଧୁନିକ କାବ୍ୟ ଜିଜ୍ଞାସା: ଚିତ୍ରକଳ୍ପ ଦ୍ରଷ୍ଟବ୍ୟ)। ଶ୍ରୀ ଦାସ କଳାପାଇଁ କଳା ତତ୍ତ୍ୱର

ଉପାସକ ଭଳି ମନେହୁଅନ୍ତି।

ଆଧୁନିକବାଦୀ ବା ପ୍ରୟୋଗବାଦୀ କବିତା ବ୍ୟତୀତ ଆଧୁନିକ ସାହିତ୍ୟ ସମ୍ପର୍କରେ ସେ ପ୍ରାୟ ଚାଳିଶଟି ପ୍ରବନ୍ଧ ଲେଖିଛନ୍ତି। ସାହିତ୍ୟର ପ୍ରଜାତି ଦୃଷ୍ଟିରୁ ସେଗୁଡ଼ିକର ଏକ ତାଲିକା ଏଠାରେ ପ୍ରସ୍ତୁତ କରାଯାଇପାରେ।

କ. ସାହିତ୍ୟ: ୧. ଓଡ଼ିଆ ଭାଷା ଓ ସାହିତ୍ୟ ଉପରେ ଶିକ୍ଷାୟନର ପ୍ରଭାବ ଓ ପ୍ରତିକ୍ରିୟା (ଐତିହ୍ୟ ଓ ଆଧୁନିକତା) ୨. ସତ୍ୟବାଦୀ ସାହିତ୍ୟ, ୩. ଊନବିଂଶ ଶତାବ୍ଦୀର ଓଡ଼ିଆ ପତ୍ରପତ୍ରିକା (ବିବିଧ ପ୍ରସ୍ତାବ),

ଖ. ନାଟକ: ୧. ଓଡ଼ିଆ ନାଟକ ଓ ରାମଶଙ୍କର (ନାନା ନିବନ୍ଧ), ୨.ନାଟ୍ୟକାର ମନୋରଞ୍ଜନ (ନାନାନିବନ୍ଧ), ୩. ନନ୍ଦିକାକେଶରୀ : ସାମର୍ଥ୍ୟ ଓ ସୀମାବଦ୍ଧତା (ସାହିତ୍ୟ ବିବେକ),

ଗ. ଉପନ୍ୟାସ:୧. ଫକୀରମୋହନଙ୍କ ଉପନ୍ୟାସରେ ମୃତ୍ୟୁଶୁଶ୍ରୂଷା,୨. ଆମେରିକାରେ ଫକୀରମୋହନ , ୩. ପରଜାର ଭିନ୍ନ ଏକ ଚରିତ୍ର (ପ୍ରସଙ୍ଗ ପୁରୁଣା: ଭାବନା ନୂଆ), ୪. ଭୂମିକା : ଛମାଣ ଆଠଗୁଣ୍ଠ,୫. ରବୀନ୍ଦ୍ର ଆଲୋକରେ ମାଟିର ମଣିଷ, ୬. ଐତିହାସିକ ଉପନ୍ୟାସ ( ବିଦଗଧ ମାନସ)

ଗ. କ୍ଷୁଦ୍ରଗଳ୍ପ: ସୃଜ୍ୟମାନ ଓଡ଼ିଆ କ୍ଷୁଦ୍ରଗଳ୍ପ, ୧୯୭୨, ୨. ଜଗନ୍ନାଥ ପ୍ରସାଦ ଦାସଙ୍କ କ୍ଷୁଦ୍ରଗଳ୍ପ (ନାନାନିବନ୍ଧ), ୩. ଶ୍ୱାଶତ କାଳର ଗାଁ ଓ ଗନ୍ଧର୍ବ ଅଭିଶପ୍ତ, ୪. ଓଡ଼ିଆ ଗାଳ୍ପିକଙ୍କ ଦୃଷ୍ଟିଭଙ୍ଗୀରେ ସମାଜର ପୁନର୍ଗଠନ (ବିଦଗଧ ମାନସ)

ଘ. ପ୍ରବନ୍ଧ: ୧. କୃଷ୍ଣଚନ୍ଦ୍ର ପାଣିଗ୍ରାହୀ : ବୁଦ୍ଧି, ବିବେକ ଓ ସୌନ୍ଦର୍ଯ୍ୟବୋଧ(ବିଦଗଧ ମାନସ) ,୨. ପ୍ରାବନ୍ଧିକ ଡଃ ବ୍ରଜବିହାରୀ ମହାନ୍ତି, ୩. ଗୋବିନ୍ଦ ତ୍ରିପାଠୀଙ୍କ ଚିନ୍ତାଜଗତ (ସାହିତ୍ୟ ବିବେକ) , ୩. ବିକଳ୍ପ ସଂସ୍କୃତି ସଂଧାନରେ ଶରତକୁମାର ମହାନ୍ତି (ଐତିହ୍ୟ ଓ ଆଧୁନିକତା), ୪. ମନସ୍ୱୀ ଚିତ୍ତରଞ୍ଜନ ।

ଙ. ଆତ୍ମକଥା:୧. ସେନାପତିଙ୍କ ପଞ୍ଚମ ଉପନ୍ୟାସ (ବିବିଧ ପ୍ରସ୍ତାବ), ୨. ଆତ୍ମକଥାର ଆଲୋକରେ ମହତାବ (ବିଦଗଧ ମାନସ)।

ଚ. ଭ୍ରମଣସାହିତ୍ୟ: ୧. ଓଡ଼ିଆ ଭ୍ରମଣସାହିତ୍ୟରେ ପ୍ରଫେସର ଧଳଙ୍କ ଭୂମିକା (ସାହିତ୍ୟ ବିବେକ)

ଛ. ବୈଜ୍ଞାନିକ ସାହିତ୍ୟ: ୧. ଜୀବନ ଓ ଜଗତ : ଆଇନଷ୍ଟାଇନ୍, ୨. ବୈଜ୍ଞାନିକ ସାହିତ୍ୟ ( ବିବିଧ ସମାଲୋଚନା)

ଜ. କବିତା : ରାଧାନାଥ ରାୟଙ୍କ ଠାରୁ ରାଧାମୋହନ ଗଡନାୟକଙ୍କ ପର୍ଯ୍ୟନ୍ତ କବିମାନଙ୍କ ସମ୍ପର୍କରେ ତାଙ୍କର ପ୍ରବନ୍ଧ ଏହିପରି :

୧. କବି ରାଧାନାଥ ଓ ଊନବିଂଶ ଶତାବ୍ଦୀର ଓଡ଼ିଆ କାବ୍ୟଚିନ୍ତା, ୨. କବି ରାଧାନାଥ – ଦ୍ୱନ୍ଦ୍ୱ ଓ ମୂଲ୍ୟାୟନ(ବିଦଗ୍ଧ ମାନସ), ୩. ଓଡ଼ିଆ ସାହିତ୍ୟର ପୁନରୁଜ୍ଜୀବନ ଓ କବି ରାଧାନାଥ, ୪. ମହଯାତ୍ରା କାବ୍ୟାଲୋଚନାର ଭୂମିକା(ସାହିତ୍ୟ ବିବେକ), ୫.

କବି ଶ୍ରୀ ମଦୁସୂଦନ (ସାହିତ୍ୟ ବିବେକ), ୬. ଆଧୁନିକତା ଓ କବି ଗଙ୍ଗାଧର, ୭. ତପସ୍ୱିନୀର ଗଠନଶୈଳୀ (ବିଦଗଧ ମାନସ), ୮. ନବଚେତନାର ନାନ୍ଦୀକାର କବି ଡିରୋଜିଓ(ସାହିତ୍ୟ ବିବେକ), ୯. ବର୍ଷାର କବି ନନ୍ଦକିଶୋର, ୧୦. ନନ୍ଦକିଶୋର( ?) (ଝଙ୍କାର),୧୧. କବି ଦୃଷ୍ଟିରେ ଗୋପବନ୍ଧୁ (ବିବିଧ ସମାଲୋଚନା),୧୨. ଭାରତ ଭାଗ୍ୟ ବିଧାତା (ବିବିଧ ସମାଲୋଚନା), ୧୩. ଓଡ଼ିଆ କବିତାର ସବୁଜଚେତନା (ନାନା ନିବନ୍ଧ),୧୪. ବୈକୁଣ୍ଠନାଥ : କବି ମନୀଷୀପରିଭୂଃ (ବିବିଧ ପ୍ରସ୍ତାବ),୧୫.ଡଃ ମାୟାଧର ମାନସିଂହଙ୍କ ସ୍ଥାନ ଓ ଦାନ (ଐତିହ୍ୟ ଓ ଆଧୁନିକତା),୧୬. ନିଃସର୍ଗର ଉଦ୍‌ଗାତା ମାନସିଂହ (ନାନା ନିବନ୍ଧ), ୧୭. ରୂପ ଓ ସୌନ୍ଦର୍ଯ୍ୟର କବି ମାନସିଂହ (ନାନା ନିବନ୍ଧ), ୧୮. ରାଧାମୋହନଙ୍କ କବିତାର ଧ୍ୟାନ ଓ ଧ୍ୱନି (ପ୍ରସଙ୍ଗ ପୁରୁଣା : ଭାବନା ନୂଆ) ଓ ୨୧. ପ୍ରେମର ଅଭିଷେକ (ସାହିତ୍ୟ ବିବେକ)।

ଶ୍ରୀ ଦାସ ଆଲୋଚନା କ୍ଷେତ୍ରରେ ସେ ସର୍ବସ୍ପର୍ଶୀ, ତାହା ଉପର୍ଯ୍ୟୁକ୍ତ ବିଷୟଚୟନରୁ ସ୍ପଷ୍ଟ । ଫକୀରମୋହନ ଓ ଗୋପୀନାଥ ମାହାନ୍ତିଙ୍କ ପରି ବିଶିଷ୍ଟ ଔପନ୍ୟାସିକଙ୍କ ସମୀକ୍ଷାରେ ସେ ଅତୁଳନୀୟ ପ୍ରଜ୍ଞାର ପରିଚୟ ଦେଇଛନ୍ତି। ଉପନ୍ୟାସ ସମାଲୋଚନାର ଆଧୁନିକତମ ତତ୍ତ୍ୱ ସହିତ ସେ ସୁପରିଚିତ। **ଆମେରିକାରେ ଫକୀରମୋହନ** ପ୍ରବନ୍ଧରେ ସେ ସର୍ବାଧୁନିକ ଦୃଷ୍ଟିକୋଣର ପରିଚୟ ଦେଇଛନ୍ତି। ଫକୀରମୋହନଙ୍କ ମୃତ୍ୟୁଚିନ୍ତାର ଅନୁଶୀଳନ ଓଡ଼ିଆ ଆଲୋଚନାର ପୂର୍ଣ୍ଣତଃ ଏକ କଳ୍ପନାଗତ ବ୍ୟାପାର। ରାମଶଙ୍କର ଓ ମନୋରଞ୍ଜନଙ୍କ ନାଟକର ବିଚାର ସେହିପରି ଅନନ୍ୟସାଧାରଣ। ମନୋରଞ୍ଜନଙ୍କ **ନନ୍ଦିକାକେଶରୀ** ନାଟକକୁ ସେ ଯେପରି ଯୁଦ୍ଧନାଟକ (Theartre of war) ଭାବେ ଆଲୋଚନା କରିଛନ୍ତି, ତାହା ଏକାନ୍ତ ଉଲ୍ଲେଖଯୋଗ୍ୟ। ସେନାପତିଙ୍କ ପଞ୍ଚମ ଉପନ୍ୟାସ ଭାବରେ ଫକୀରମୋହନଙ୍କ **ଆତ୍ମଜୀବନଚରିତ**କୁ ହିଁ ଗ୍ରହଣ କରାଯାଇଛି। ଉପନ୍ୟାସ ପରି ବହୁ କାଳ୍ପନିକତାରେ ଏହା ପୂର୍ଣ୍ଣ। ବିଶ୍ୱସାହିତ୍ୟ ଓ ସାହିତ୍ୟବିଶ୍ୱରେ ଆଲୋଚକଙ୍କ ଗଭୀର ପ୍ରବେଶର ପ୍ରମାଣ ସର୍ବତ୍ର ଉପଲବ୍ଧ ହୋଇଥାଏ।

କବିତା ବିଚାର କ୍ଷେତ୍ରରେ ସେ ଅଧିକ ସଫଳତାର ଅଧିକାରୀ। ସ୍ୱତନ୍ତ୍ର ଗ୍ରନ୍ଥ ନ ଲେଖିଥିଲେ ହେଁ ସେ ରାଧାନାଥଙ୍କର ଶ୍ରେଷ୍ଠ ଆଲୋଚକ। **ମହାଯାତ୍ରା** ତାଙ୍କ ଦୃଷ୍ଟିରେ ମହାକାବ୍ୟ ନୁହେଁ ଓ ସେ ଭବଭୂତି ନୁହନ୍ତି, ଜୟଦେବଙ୍କ ଶିଷ୍ୟ। ରାଧାନାଥଙ୍କ 'କଳ୍ପନାତତ୍ତ୍ୱ'ର ଆଦିଉତ୍ସ ସେ ନିରୂପଣ କରିଛନ୍ତି। ସେହିପରି ମଧୁସୂଦନଙ୍କ କବିତା ଯେ କେବଳ ଉପନିଷଦ ଅନ୍ତର୍ବାଣୀର ମନୋଜ୍ଞ ମଧୁଭଣ୍ଡାର (ନଟବର ସାମନ୍ତରାୟ) ନୁହେଁ, ତାହା ସେ ପ୍ରତିପାଦିତ କରିଛନ୍ତି। ଗଙ୍ଗାଧରଙ୍କ ସରସ୍ୱତୀଙ୍କର ନୂତନ ତର୍ଜମା ତାଙ୍କର କୃତିତ୍ୱ। ନନ୍ଦକିଶୋରଙ୍କ କବିତାରେ ସେ ରବୀନ୍ଦ୍ରସାହିତ୍ୟର ପ୍ରଥମ ପ୍ରତିଫଳନ ଦେଖିଛନ୍ତି। ' ସବୁଜ କବିତା' ସମ୍ପର୍କରେ ସେ ଯେଉଁ ପ୍ରବନ୍ଧଟି ଲେଖିଛନ୍ତି, ତାହିଁରେ ସବୁଜ କବିତାର ବଙ୍ଗୀୟ ଉତ୍ସ ସୁନିରୂପିତ। ଏଥିରେ ସବୁଜ କବିତାର ଭାବଧର୍ମ ଓ ଶିଳ୍ପ ପ୍ରକରଣ ସମ୍ପର୍କରେ ଯେଉଁ ତାଲିକାଟି ଦିଆଯାଇଛି, ତାହା ସମ୍ପୂର୍ଣ୍ଣ ଭାବେ ନୂତନ। ରୋମାଣ୍ଟିକ କବି ଭାବେ ମାନସିଂହଙ୍କ

ଉଜ୍ଜ୍ୱଳ କୃତିତ୍ୱ ସେ ଏକାଧିକ ପ୍ରବନ୍ଧରେ ଉପସ୍ଥାପିତ କରିଛନ୍ତି । ରାଧାମୋହନ ଗଡ଼ନାୟକଙ୍କ କବିତାର ବିଚାର ମଧ୍ୟ ଏକାନ୍ତ ତାତ୍ପର୍ଯ୍ୟପୂର୍ଣ୍ଣ। ସେ ରାଧାମୋହନଙ୍କ କବିତାର ଭାବଗତ ଅଗଭୀରତା ଲକ୍ଷ୍ୟ କରିଛନ୍ତି।

ଏଲିୟଟ କହିଛନ୍ତି, " The age of poetry is also the age of criticism" । ସମାଲୋଚନା ଯଦି ସମକାଳୀନ ସର୍ଜନାଦର୍ଶଠାରୁ ଦୂରରେ ରହେ ,ତେବେ ସାର୍ଥକ ବା ମୂଲ୍ୟବାନ ହୋଇପାରିବା ପ୍ରାୟତଃ ସମ୍ଭବ ନୁହେଁ। ଫରାସୀ ପ୍ରତୀକବାଦୀ କବି ରାମ୍ବୋଂକ ବିଚାରର ସେ ସମର୍ଥକ 'We should be absolutely modern' । ତେଣୁ ଆଧୁନିକତାକୁ ବୁଝି ବୁଝାଇବାରେ ତାଙ୍କର ନିଷ୍ଠାପର ଯତ୍ନ ଅତ୍ୟନ୍ତ ଉଲ୍ଲେଖଯୋଗ୍ୟ। ଓଡ଼ିଆ ଆଧୁନିକବାଦୀ ବା ପ୍ରୟୋଗବାଦୀ କବିତାର ସେ ହିଁ ହେଉଛନ୍ତି ନିର୍ବିବାଦରେ ସର୍ବଶ୍ରେଷ୍ଠ ବ୍ୟାଖ୍ୟାକାର। ତିନୋଟି ସ୍ୱୟଂସମ୍ପୂର୍ଣ୍ଣ ଗ୍ରଂଥ ସହିତ ପାଖାପାଖି କୋଡିଏଟି ପ୍ରବନ୍ଧ ସେ ରଚନା କରିଛନ୍ତି। ସେଗୁଡ଼ିକ - ୧. **ଆଧୁନିକ କାବ୍ୟଜିଜ୍ଞାସା : ଚିତ୍ରକଳ୍ପ,** ୨. **ମୃତ୍ୟୁଲୋକରେ ଋତୁ ସପ୍ତମ,** ଓ ୩. **ଚିହ୍ନାମାଟି: ଅଚିହ୍ନା ଆକାଶ**। ପ୍ରବନ୍ଧଗୁଡିକ : ୧. ରମାକାନ୍ତ ରଥଙ୍କ କବିତା : ଏପାଖ ସେପାଖର କ୍ରିୟା ପ୍ରତିକ୍ରିୟା (ପ୍ରସଙ୍ଗ ପୁରୁଣା : ଭାବନା ନୂଆ), ୨. ରମାକାନ୍ତ ରଥ : ଶ୍ରୀ ରାଧା (ନାନା ନିବନ୍ଧ) , ୩. ଶ୍ରୀ ପଳାତକ ପ୍ରସଂଗ ଓ ପ୍ରକରଣ (ବିଦଗ୍ଧ ମାନସ), ୪. ସାରା ଜୀବନ, କବି ସୀତାକାନ୍ତ (ଐତିହ୍ୟ ଓ ଆଧୁନିକତା) , ୫. ଚିତ୍ରନଦୀର କୂଳେ କୂଳେ(ବିବିଧ ସମାଲୋଚନା), ୬. ସୀତାକାନ୍ତଙ୍କ ସମୁଦ୍ର -୪ (ସାହିତ୍ୟ ସନ୍ଧାନ), ୭. ସୌଭାଗ୍ୟକୁମାର ମିଶ୍ର : ଦ୍ୱାସୁପର୍ଣ୍ଣା (ନାନା ନିବନ୍ଧ), ୮. କବି ରାଜେନ୍ଦ୍ର କିଶୋର : ମାଟିରେ କାମ ଓ ବର୍ଗରେ ବାମ (ଐତିହ୍ୟ ଓ ଆଧୁନିକତା), ୧୦. ସ୍ୱାଧୀନତା ପରବର୍ତ୍ତୀ ଓଡ଼ିଆ କବିତାରେ ସାମାଜିକ ଓ ସଂପ୍ରଦାୟିକ ସଂପ୍ରୀତି (ଐତିହ୍ୟ ଓ ଆଧୁନିକତା), ୧୧. ସ୍ୱାଧୀନତା ପରବର୍ତ୍ତୀ ଓଡ଼ିଆ କବିତାରେ ଆଧୁନିକତା (ସାହିତ୍ୟ ବିବେକ), ୧୨. ଆଧୁନିକ ଓଡ଼ିଆ କବିତାରେ ରୋମାଣ୍ଟିକ ଚେତନା (ନାନାନିବନ୍ଧ), ୧୩. ଆଧୁନିକ ଓଡ଼ିଆ କବିତାରେ ଲୋକ-ଐତିହ୍ୟ (ନାନା ନିବନ୍ଧ),୧୪. ଆଧୁନିକ ଓଡିଆ କବିତାରେ ସୌନ୍ଦର୍ଯ୍ୟଚେତନା (ବିବିଧ ସମାଲୋଚନା), ୧୫. ପ୍ରେମ ଫ୍ରେମ ବାଜେ ସବୁ (ବିବିଧପ୍ରସ୍ତାବ) ଓ ହେ ମୋର ଦୁଃଖ, ପ୍ରାଜ୍ଞ ହୁଅ (ନାନା ନିବନ୍ଧ) ଇତ୍ୟାଦି।

ଚିତ୍ରକଳ୍ପ ଆଧୁନିକବାଦୀ କବିତାର କେନ୍ଦ୍ରୀୟ ତତ୍ତ୍ୱ। ଆଧୁନିକ କବିତାର ବିଖ୍ୟାତ କବି ଏଲିୟଟ ଓ ଏଜରା ପାଉଣ୍ଡ ପ୍ରମୁଖ ଚିତ୍ରକଳ୍ପର ବିଶିଷ୍ଟ ପ୍ରବକ୍ତା। ଏଜରା ପାଉଣ୍ଡ କହୁଥିଲେ " It is better to present one image in a life time than to produce voluminous works" ଚିତ୍ରକଳ୍ପର ମହତ୍ୱ ଏଥିରୁ ସୂଚିତ। ସେ ପୁଣି କହନ୍ତି, "An image is that which presents intellectual and emotional complex in an instant of time" ଇତ୍ୟାଦି । ଇମେଜିଷ୍ଟ ଆନ୍ଦୋଳନଠାରୁ ଚିତ୍ରକଳ୍ପର ଧାରଣା ପରବର୍ତ୍ତୀ କାଳରେ ବହୁ ଦୂରକୁ ଗତି କରିବା ପୂର୍ବରୁ ବିକ୍ଷିପ୍ତ ଭାବରେ କେତୋଟି ପ୍ରବନ୍ଧ ହୁଏତ ଥିଲା। ସଚ୍ଚି ରାଉତରାୟ ଅବଶ୍ୟ ବିଭିନ୍ନ ଗ୍ରନ୍ଥରେ ଏହାର ବହୁ ବ୍ୟାଖ୍ୟା କରିଥିଲେ।

କିନ୍ତୁ ଚିତ୍ରକଳ୍ପର ଦିଗଦିଗନ୍ତ ବ୍ୟାପୀ ବିପୁଳ ତାତ୍ପର୍ଯ୍ୟର ସମ୍ୟକ୍ ଉପଲବ୍ଧି କେଉଁଠାରେ ହେଲେ ନଥିଲା।ଦାଶରଥିଙ୍କ ଉଦ୍ୟମ ଏ କ୍ଷେତ୍ରରେ ସମ୍ପୂର୍ଣ୍ଣଭାବେ ନୂତନ ବୋଲି ପ୍ରଫେସର ଯତୀନ୍ଦ୍ର ମୋହନ ମହାନ୍ତି ବହିଟିର ସମୀକ୍ଷା ପ୍ରସଙ୍ଗରେ ଯାହା କହିଛନ୍ତି, ସେଥିରେ ତିଳେମାତ୍ର ଅତିରଞ୍ଜନ ନାହିଁ। ଚିତ୍ରକଳ୍ପର ଇତିହାସ ଓ ପରମ୍ପରା, ସଂଜ୍ଞା, ସ୍ୱରୂପ, ଆଭିମୁଖ୍ୟ, ବହୁ ଆୟତନଧର୍ମୀ ତାତ୍ପର୍ଯ୍ୟ - ଏହି ବିରାଟକାୟ ଗ୍ରନ୍ଥରେ ସୂକ୍ଷ୍ମାତିସୂକ୍ଷ୍ମ ଭାବେ ଉପସ୍ଥାପିତ ହୋଇଛି। ଏହାର ପ୍ରତୀକ, ମେଟାଫର,ଉପମା ସହିତ ସମ୍ପର୍କ ନିରୂପିତ ହୋଇଛି। ଆର୍କିଟାଇପତତ୍ତ୍ୱ,କବିତାର ମନସ୍ତାତ୍ତ୍ୱିକ ପୃଷ୍ଠଭୂମି, ଏଲିୟଟଙ୍କ ଅବଜେକ୍ଟିଭ କୋରେଲେଟିଭର ପ୍ରାସଙ୍ଗିକତା, କବିତାର କଂକ୍ରିଟନେସ, ସ୍ଥୂଳତଃ ଆଧୁନିକବାଦୀ କବିତା ସହିତ ସମ୍ପୃକ୍ତ ସମସ୍ତ ତତ୍ତ୍ୱର ବିଶଦ ବିବରଣୀ ଏଥିରେ ସ୍ଥାନିତ। ଏହା, ବସ୍ତୁତଃ,ଏକ ଆକରଗ୍ରନ୍ଥରେ ପରିଣତ ହୋଇଛି। ବହୁ ପାଶ୍ଚାତ୍ୟ କବି ଓ କବିତା ସହିତ ଓଡ଼ିଆ କବି ସଚ୍ଚି ରାଉତରାୟ, ବିନୋଦ ନାୟକ, ଗୁରୁପ୍ରସାଦ ମହାନ୍ତି, ଭାନୁଜୀ ରାଓ, ରମାକାନ୍ତ ରଥ, ସୀତାକାନ୍ତ ମହାପାତ୍ର, ବେଣୁଧର ରାଉତ ଓ ସୌଭାଗ୍ୟ କୁମାର ମିଶ୍ରଙ୍କର ବହୁ କବିତା ବିଶ୍ଳେଷିତ ହୋଇଛି। ମ୍ୟାକଲିସଙ୍କ □ □□□□ □□□□□□□ □□□ □□□□ □□□ □□ ତତ୍ତ୍ୱ, ଯାହା କବିତାର ରୂପନିଷ୍ଠ ଆଦର୍ଶ, ସେଇଠାରୁ ଗ୍ରନ୍ଥର ଆରମ୍ଭ। ଆମ ପାରମ୍ପରିକ ଧାରଣା 'ବାକ୍ୟଂ ରସାତ୍ମକଂ କାବ୍ୟମ୍' କୁ ଗ୍ରନ୍ଥର ପ୍ରଥମରୁ ଅସ୍ୱୀକାର କରାଯାଇ 'ରସ ନୁହେଁ ରୂପ' - ଏହି ଆଧୁନିକ ଦର୍ଶନର ପ୍ରଚାର କରାଯାଇଛି। ଏହା ପଣ୍ଡିତରାଜ ଜଗନ୍ନାଥଙ୍କ 'ରମଣୀୟାର୍ଥ ପ୍ରତିପାଦକ ଶବ୍ଦଃ କାବ୍ୟ' ର ସମର୍ଥନ। ଗ୍ରନ୍ଥଟିର ମହତ୍ତ୍ୱ ବଢାଇଛି ତାର ପଞ୍ଚମ ପରିଚ୍ଛେଦ । ଆଧୁନିକ ଓଡ଼ିଆ କବିତାର ବିଚାର ପ୍ରସଙ୍ଗରେ ଆଧୁନିକ କବିତାର ଭାବଧର୍ମ ଓ ଶିଳ୍ପ ପ୍ରକରଣର ଏକ ତାଲିକା ସହିତ ଜୀବନବୋଧର ବିଭିନ୍ନ ଦିଗ, କ୍ଲାସିକ ଓ ରୋମାଣ୍ଟିକ ପ୍ରସଙ୍ଗ, ପାଶ୍ଚାତ୍ୟ ପ୍ରଭାବ ଓ ଦୁର୍ବୋଧତା ଆଦିର ବିଚାର ସେଥିରେ ସ୍ଥାନ ପାଇଛି। ଗ୍ରନ୍ଥଟି ଦାଶରଥି ଦାସଙ୍କର ସର୍ବଶ୍ରେଷ୍ଠ କୃତି।

'ମୃତ୍ୟୁଲୋକରେ ଋତୁସପ୍ତମ' ରମାକାନ୍ତଙ୍କ କବିତା ସମ୍ପର୍କରେ ରଚିତ ଏକ ଅନନ୍ୟ ଗ୍ରନ୍ଥ । ଏହା ଶ୍ରୀ ଦାସଙ୍କ ଅନ୍ତର୍ମୁଖୀ ବିଶ୍ଳେଷଣପ୍ରବଣ ପ୍ରଜ୍ଞାର ସାର୍ଥକ ନିଦର୍ଶନ। ଏଥିରେ ରମାକାନ୍ତଙ୍କ କବିତାର ଚେତନାଚର୍ଯ୍ୟାର ଯେପରି ଘନିଷ୍ଠ ଉପଲବ୍ଧି ସ୍ଥାନ ପାଇଛି। ଏହାର ଅନୁଶୀଳନ ଆଦର୍ଶ ଏଲିୟଟଙ୍କ 'Heroic Sincerity' କଥା ସ୍ମରଣ କରାଇଦିଏ। ରମାକାନ୍ତଙ୍କୁ ସେ ମୁଖ୍ୟତଃ ଏଲିୟଟଚକ୍ରର କବିଭାବେ ଆଲୋଚନା କରିଛନ୍ତି ଏବଂ କାମ୍ୟୁ, କାଫକା ଓ ସାର୍ତ୍ତ ପ୍ରମୁଖ ସ୍ଥିତବାଦୀ ଦାର୍ଶନିକଙ୍କ ଶିଳ୍ପସାଧନାର ମଧ୍ୟ ମୌଳିକ ଓ ମନୋଜ୍ଞ ରୂପ ଏଥିରେ ପ୍ରତିଫଳିତ ହୋଇଛି। ସେ ଏଥିରେ ଚେତନାବାଦୀ ସମୀକ୍ଷା ପଦ୍ଧତିର ସୂଚନା ଦେଇଛନ୍ତି।

'ଚିହ୍ନା ମାଟି ଅଚିହ୍ନା ଆକାଶ' ଆଧୁନିକବାଦୀ କବିତାର ଅନ୍ୟତମ ଚର୍ଚ୍ଚିତ କବି ସୀତାକାନ୍ତ ମହାପାତ୍ରଙ୍କ କବିତାର ବିଶଦ ବିଚାର। ଏହାକୁ ପୂର୍ବୋକ୍ତ ଗ୍ରନ୍ଥର ପରମ୍ପରାରେ

ଗ୍ରହଣ କରିବାକୁ ଲେଖକ ଅନୁରୋଧ କରିଛନ୍ତି।ଏହା ତଥାକଥିତ ଗବେଷଣା ପ୍ରତି ବିମୁଖ ମନୋଭାବ ପ୍ରଦର୍ଶନ କରୁଥିବା ଦାଶରଥିଙ୍କର ଗବେଷଣା ଗ୍ରନ୍ଥ (ଡି.ଲିଟ ନିବନ୍ଧ)। କିନ୍ତୁ ନିବନ୍ଧର ବିରକ୍ତିକର ଯାନ୍ତ୍ରିକ ରୂପକୁ ମୁକ୍ତକରି ସେ ଏହାକୁ ପ୍ରକାଶ କରିଛନ୍ତି ଶବ୍ଦ, କବିତା ଓ ନିରବତା, ଅନ୍ତରେ ନଦୀ ସମୁଦ୍ରବଳି ଚତୁର୍ଦ୍ଦିଗ, ଇନ୍ଦ୍ରଧନୁ ସଂପର୍କର, ନୂତନ ପୃଥିବୀ ଓ ସୀମାହୀନ ସୂର୍ଯ୍ୟାଲୋକ,ଶିଳ୍ପଶ୍ରୀ ଆଦି ବିଭାଗରେ । ଏ ଗ୍ରନ୍ଥ ଲେଖକଙ୍କ ଅନନ୍ୟ ପ୍ରଜ୍ଞାର ସ୍ୱାକ୍ଷର। ସର୍ବତ୍ର ତାଙ୍କ ମୌଳିକତାର ଅଭ୍ରାନ୍ତ ସ୍ୱାକ୍ଷର ଲିପିବଦ୍ଧ।

ଏକକ ପ୍ରବନ୍ଧଗୁଡ଼ିକରେ ରମାକାନ୍ତ ଓ ସୀତାକାନ୍ତ ସହିତ କବି ସୌଭାଗ୍ୟ ମିଶ୍ର, ରାଜେନ୍ଦ୍ର କିଶୋର ପଣ୍ଡା ଓ ପ୍ରତିଭା ଶତପଥୀଙ୍କର ବିଚାର ରହିଛି। ରମାକାନ୍ତଙ୍କ ଶ୍ରୀରାଧାର ମହତ୍ତ୍ୱ,ସୀତାକାନ୍ତଙ୍କ ନୂତନ ସରଳତାର ତାତ୍ପର୍ଯ୍ୟ, ରାଜେନ୍ଦ୍ରରେ ବାମମାର୍ଗ, କାମସଂକଳ୍ପ ଓ ସାମ-ସଂପ୍ରୀତିର ବିଚାର ଏକାନ୍ତ ଉଲ୍ଲେଖଯୋଗ୍ୟ। ସାଧାରଣ ପ୍ରବନ୍ଧଗୁଡିକ ମଧ ତାତ୍ପର୍ଯ୍ୟପୂର୍ଣ୍ଣ। ଆଧୁନିକ କବିତା ସହିତ ପ୍ରେମ, ବିଷାଦ, ଲୋକସାହିତ୍ୟ, ସୌନ୍ଦର୍ଯ୍ୟ ଓ ରୋମାଣ୍ଟିସିଜିମର ଜଟିଳ ସମ୍ପର୍କ ସେଥିରେ ବିବେଚିତ ହୋଇଛି।

ଦାଶରଥି ଦାସ ଜଣେ ତୀକ୍ଷ୍ଣଦର୍ଶୀ ସଚେତନ ସମାଲୋଚକ। ସେହି ପରିପ୍ରେକ୍ଷୀରେ ନିଜର ପୌର୍ବାପର୍ଯ୍ୟର ଉପଲବଧିପାଇଁ ସେ ବିଭିନ୍ନ ସମୟରେ ଓଡ଼ିଆ ସାହିତ୍ୟ ସମାଲୋଚନା ଓ ସମାଲୋଚକମାନଙ୍କ ପ୍ରସଙ୍ଗକୁ ନେଇ ସ୍ୱକୀୟ ବିଚାର ଉପସ୍ଥାପିତ କରିଛନ୍ତି। ସମ୍ପୃକ୍ତ କ୍ଷେତ୍ରରେ ତାଙ୍କର ୧୦ ରୁ ଅଧିକ ପ୍ରବନ୍ଧ ରହିଛି। ଶ୍ରୀ ଦାସଙ୍କ ସମାଲୋଚନାର ମର୍ମୋପଲବଧି ପାଇଁ ଏପରି ପ୍ରବନ୍ଧଗୁଡ଼ିକର ଅନୁଶୀଳନ ଅପରିହାର୍ଯ୍ୟ । ପ୍ରବନ୍ଧଗୁଡ଼ିକ - ୧. ସମାଲୋଚନା ସାହିତ୍ୟର ସ୍ୱରୂପ ଓ ଆଭିମୁଖ୍ୟ (ନାନା ବିବିଧ), ୨. ପ୍ରାଚୀନ ଓଡ଼ିଆ ସାହିତ୍ୟରେ ସମାଲୋଚନା (ନାନା ନିବନ୍ଧ), ୩. ଓଡ଼ିଆ ସାହିତ୍ୟ ସମାଲୋଚନା :୧୯୩୬ ରୁ ୧୯୮୬ (ନାନା ନିବନ୍ଧ), ୪. ଓଡ଼ିଆ ସାହିତ୍ୟ ସମାଲୋଚନା ପରମ୍ପରା ଓ ପୁରୋଦୃଷ୍ଟି (ଝଙ୍କାର, ଏପ୍ରିଲ୍ ୨୦୧୬), ୫. ସାହିତ୍ୟ ସମାଲୋଚକ ଶ୍ରୀ ଶ୍ୟାମସୁନ୍ଦର (ସାହିତ୍ୟ ବିବେକ), ୬. ସାହିତ୍ୟ ସମୀକ୍ଷକ ଗୋପୀନାଥ : ଶ୍ରୀ ଭାରତ ଦର୍ପଣ (ସାହିତ୍ୟ ବିବେକ), ୭. ପଣ୍ଡିତ ନୀଳକଣ୍ଠ ଦାସ : ଓଡ଼ିଆ ସାହିତ୍ୟର କ୍ରମପରିଣାମ(ନାନା ନିର୍ବନ୍ଧ), ୮. ନୀଳକଣ୍ଠଙ୍କ ସୃଷ୍ଟିରେ ଓଡ଼ିଆ ସଂସ୍କୃତିର ସ୍ୱରୂପ (ବିବିଧ ପ୍ରସ୍ତାବ), ୯. ଆର୍ତ୍ତବଲ୍ଲଭ :ଶ୍ରୀଗୁରୁ ପ୍ରଣାମ (ଝଙ୍କାର ୨୦୧୪) ,୧୦. ଗବେଷକ ଡଃ ମାନସିଂହ (ବିବିଧ ମାନସ),୧୧. ପୁରସ୍କାର ସପକ୍ଷରେ, ୧୨. ସାହିତ୍ୟ ଏଷ୍ଟାବ୍ଲିସମେଣ୍ଟ (ବିବିଧ ପ୍ରସ୍ତାବ)। ପ୍ରାକ୍-ସ୍ୱାଧୀନ ଯୁଗରେ ଯେତେବେଳେ ଓଡ଼ିଆ ସମାଲୋଚନା ନିଜର ରୂପ ପରିଗ୍ରହ କରିବାକୁ ଆରମ୍ଭ କରୁଥିଲା, ସେସମୟରେ ପାଞ୍ଚଜଣ ବିଶିଷ୍ଟ ଆଲୋଚକଙ୍କ ସମ୍ପର୍କରେ ଶ୍ରୀ ଦାସ ସ୍ୱତନ୍ତ୍ର ପ୍ରବନ୍ଧ ଲେଖିଥିବା ତାତ୍ପର୍ଯ୍ୟପୂର୍ଣ୍ଣ।

ଶ୍ୟାମସୁନ୍ଦର ରାଜଗୁରୁଙ୍କ ସମ୍ପର୍କରେ ଶ୍ରୀ ଦାସ ଲେଖିଛନ୍ତି,

" ଶ୍ୟାମସୁନ୍ଦରଙ୍କ ଉଦ୍ୟମ ଉଦ୍ୟମ, ସ୍ତରରେ ରହିଯାଇଛି, କିନ୍ତୁ ବ୍ୟର୍ଥ ହୋଇନାହିଁ। ଓଡ଼ିଆ ସମାଲୋଚନା କ୍ଷେତ୍ରରେ ସେ ଯେଉଁ ଯୁକ୍ତିପ୍ରବଣ ବିଚାରଶୀଳ ଆଧୁନିକ ମନନର

ସୂତ୍ରପାତ କରିଛନ୍ତି, ଇତିହାସ-ସଚେତନ ଗବେଷଣାତ୍ମକ ଦୃଷ୍ଟିଭଙ୍ଗୀ ସହିତ ଯେପରି ସୂକ୍ଷ୍ମ ସାହିତ୍ୟବୋଧର ସଂଯୋଗ ଘଟାଇଛନ୍ତି, ସେସବୁର ସୁଦୂରପ୍ରସାରୀ ପ୍ରଭାବ ବିଦ୍ୟମାନ। ସାହିତ୍ୟ-ସମାଲୋଚନା କ୍ଷେତ୍ରରେ ଯେଉଁ ଐତିହାସିକ ପଦ୍ଧତି ଅଛି, ଓଡ଼ିଆ ସାହିତ୍ୟ ବିଚାର କ୍ଷେତ୍ରରେ ତାହାର ପ୍ରଥମ ପ୍ରବର୍ତ୍ତକ ସେ। ଅଧିକନ୍ତୁ ସେଠାରେ ଭାବାଲୁତା ଶୂନ୍ୟ ଯେଉଁ ନିଷ୍କାମ ପ୍ରୟାସ ନିଃଶ୍ରେୟସ ତାହାର ବିଦ୍ୱାନ ପଥିକୃତ ବି ସେ। ତାଙ୍କର ସାରସ୍ୱତ ଉତ୍ତରସୂରୀ ଭାବରେ ଡକ୍ଟର ନଟବର ସାମନ୍ତରାୟଙ୍କୁ ଚିହ୍ନିତ କଲେ ଭୁଲ ହେବ ନାହିଁ। ତାଙ୍କର ସେହି ଅଳ୍ପ କେତୋଟି ପ୍ରବନ୍ଧରୁ ଯେବେ ଭବିଷ୍ୟତରେ ଗୋଟିଏ ନଟବର ସାମନ୍ତରାୟ ଭୂମିଷ୍ଠ ହୋଇପାରନ୍ତି, ତାହା କିଛି କମ୍ କଥା ନୁହେଁ। ଦୁହେଁ scholar - critic (ସାହିତ୍ୟ ବିବେକ ପୃ ୩୭),

ଶ୍ରୀ ଦାସ ଏହି ପ୍ରବନ୍ଧରେ Taine ଙ୍କ ଠାରୁ ଆରମ୍ଭ ହୋଇଥିବା ଐତିହାସିକ ସମୀକ୍ଷା ପଦ୍ଧତିର ବିଚାର ଉପସ୍ଥାପିତ କରିଛନ୍ତି ଓ ଏହାର Document ପ୍ରିୟତାକୁ ଅସ୍ୱୀକାର କରି ସ୍ୱୀୟ ‘monument’ ପ୍ରିୟତାକୁ ଉପସ୍ଥାପିତ କରିଛନ୍ତି।

ଗୋପୀନାଥ ନନ୍ଦ ଆଦ୍ୟ ସମୀକ୍ଷକ ଭାବେ ଓଡ଼ିଆ ସାହିତ୍ୟରେ ଆଜିର ତୁଳନାତ୍ମକ ସାହିତ୍ୟର ବିଧିବଦ୍ଧ ପ୍ରବର୍ତ୍ତକ ଓ ପ୍ରତିଷ୍ଠାତା ମଧ୍ୟ ବୋଲି - ଶ୍ରୀ ଦାସ ମତବ୍ୟକ୍ତ କରିଛନ୍ତି। ସ୍ୱୟଂ ଜଣେ ଶକ୍ତିଶାଳୀ ସମାଲୋଚକ ହୋଇଥିବା ଯୋଗୁଁ ସେ **ଶ୍ରୀଭାରତଦର୍ପଣ**ର ଅନନ୍ୟ ସାଧାରଣ ମହତ୍ତ୍ୱ କଳନାରେ ସୁଗଭୀର ଅନ୍ତର୍ଦୃଷ୍ଟିର ପରିଚୟ ଦେଇଛନ୍ତି। ସେ ସାରଳା ସାହିତ୍ୟ ଓ ତତପରବର୍ତ୍ତୀ ବଳରାମ ଓ ଜଗନ୍ନାଥ ପ୍ରମୁଖଙ୍କ ରଚନାର ଆପେକ୍ଷିକ ଭୂମିକା ନିରୂପଣ କରିଛନ୍ତି। ନୀଳକଣ୍ଠଙ୍କ ସମ୍ପର୍କିତ ପ୍ରବନ୍ଧ ଦୁଇଟି ଆହୁରି ଚିତ୍ତାକର୍ଷକ । ନୀଳକଣ୍ଠଙ୍କୁ ପ୍ରଶଂସା କରିବାକୁ ଯିବା ପୂର୍ବରୁ ସେ ତାଙ୍କ ଓଡ଼ିଆ ସାହିତ୍ୟର କ୍ରମ ପରିଣାମ ଓ ସଂସ୍କୃତି ଭିତ୍ତିକ ରଚନାବଳୀର ସୂକ୍ଷ୍ମ ବ୍ୟବଚ୍ଛେଦ କରିଛନ୍ତି। ସଂସ୍କୃତି ପ୍ରସଙ୍ଗରେ ଦାଶରଥି ନୀଳକଣ୍ଠଙ୍କ ସହ ଏକମତ ହୋଇପାରିନାହାନ୍ତି। ଆର୍ତ୍ତବଲ୍ଲଭଙ୍କ ଆଲୋଚନାରେ ସେ Textual Criticismର ଭୂମିକା, ଭାରତରେ ଏହାର ପରମ୍ପରା ଓ ଓଡ଼ିଶାରେ ତାର ଗତି, ପ୍ରକୃତି ଓ ଆଲୋଚନାର ସ୍ୱରୂପ ସମ୍ପର୍କରେ ବିଶଦ ପ୍ରଜ୍ଞାଗର୍ଭିତ ବିଚାର ଅନୁଶୀଳନ ଉପସ୍ଥାପିତ କରିଛନ୍ତି।

ମାନସିଂହଙ୍କ ସର୍ମ୍ପକିତ ପ୍ରବନ୍ଧରେ ମାନସିଂହଙ୍କ ତୁଳନାତ୍ମକ ଗବେଷଣା ଗ୍ରନ୍ଥ Kalidasa and Shakespeare ଆଲୋଚିତ ହୋଇଛି। ପ୍ରସଙ୍ଗକ୍ରମେ, ଆଲୋଚକ ତୁଳନାର ଅପରିହାର୍ଯ୍ୟ ଭୂମିକା ନିରୂପଣ କରିଛନ୍ତି ଏବଂ ସାହିତ୍ୟ ବିଚାର କ୍ଷେତ୍ରରେ ଉଚ୍ଚକୋଟୀର ସାହିତ୍ୟ ସମ୍ପର୍କରେ ଧ୍ୟାନ ଧାରଣା ଥିବା ଆବଶ୍ୟକ ବୋଲି କହିଛନ୍ତି। ଓଡ଼ିଶାରେ ଏହା ନ ଥିବାରୁ ମାନସିଂହଙ୍କ ‘ଓଡ଼ିଆ ସାହିତ୍ୟର ଇତିହାସ’ ଅପବାଦ ପାଇଲା ବୋଲି ଶ୍ରୀ ଦାସ ଉଲ୍ଲେଖ କରିଛନ୍ତି।

ଓଡ଼ିଆ ସାହିତ୍ୟ ସମାଲୋଚନାର ଇତିହାସ ସମ୍ପର୍କୀୟ ତାଙ୍କର ଦୁଇଟି ପ୍ରବନ୍ଧ ଅତ୍ୟନ୍ତ ଉଲ୍ଲେଖଯୋଗ୍ୟ। ସାହିତ୍ୟ-ସମାଲୋଚନାର ଆଦର୍ଶ ସମ୍ପର୍କରେ ତାଙ୍କର ଏହି ଦୃଷ୍ଟିଭଙ୍ଗୀ ତାଙ୍କ ନିଜ ଆଲୋଚନାର ବିଚାରବେଳେ ଉପାଦେୟ ମନେହୁଏ। ସେ ଲେଖିଛନ୍ତି

"ସମାଲୋଚନା-ସାହିତ୍ୟର ଉଦ୍ଦେଶ୍ୟ ସାହିତ୍ୟଶିଳ୍ପର ଉଜ୍ଜ୍ୱଳ ବ୍ୟାଖ୍ୟା ଓ ରୁଚିମାର୍ଜନା - The elucidation of works of art and correction of taste (Eliot) । ଅଭିଜ୍ଞତା-ଅଭିଜ୍ଞତା ଭିତରେ ଥିବା ତାରତମ୍ୟ ବିଚାର ଓ ମୂଲ୍ୟାୟନ ସେଠାରେ ବଡ କଥା । ସେଠାରେ ଗଭୀରତାର ଆବଶ୍ୟକତା ରହିଛି । ନିର୍ବାଚନ ଓ ମୂଲ୍ୟାୟନ ଶେଷକଥା । ଜ୍ଞାନ, ରୁଚି ଓ ଉପଲବ୍ଧି ପ୍ରଶସ୍ତ ଓ ପ୍ରଶିକ୍ଷିତ ହୋଇ ନ ଥିଲେ ସାହିତ୍ୟ-ସମାଲୋଚନା ଲେଖିହୁଏ ନାହିଁ । ସମାଲୋଚକଙ୍କୁ ସାହିତ୍ୟଶିଳ୍ପ ଓ ଜୀବନ ସମ୍ବନ୍ଧରେ ବିସ୍ତୀର୍ଣ୍ଣ ଅଭିଜ୍ଞତା ଅର୍ଜିବାକୁ ପଡେ, ଜ୍ଞାନ ବିଜ୍ଞାନର ନବଦିଗନ୍ତ ସମ୍ବନ୍ଧରେ ପ୍ରତୁଳ ପାଣ୍ଡିତ୍ୟ ଲାଭ କରିବାକୁ ହୁଏ, ସମ୍ବେଦନା ଓ ସହାନୁଭୂତ ଶକ୍ତିକୁ ତୀକ୍ଷ୍ଣ ଓ ଶାଣିତ କରିନେବାକୁ ପଡେ । ତାଙ୍କପାଇଁ ଅନ୍ତର୍ଦୃଷ୍ଟି, ମାତ୍ରାଜ୍ଞାନ, ନିଷ୍ଠା ଓ ଆନ୍ତରିକତା ମଧ୍ୟ କିଛି କମ୍ ଗୁରୁତ୍ୱପୂର୍ଣ୍ଣ ନୁହନ୍ତି । ଏସବୁ ମଧ୍ୟରୁ ଯେ କୌଣସି ଗୋଟିକର ଅଭାବରେ ସାହିତ୍ୟର ସ୍ୱାଦ, ସୌନ୍ଦର୍ଯ୍ୟ ଓ ତାତ୍ପର୍ଯ୍ୟ ଅନୁଦ୍‌ଘାଟିତ ରହିଯିବାର ଆଶଙ୍କା ଅଛି । (ଓଡ଼ିଆ ସାହିତ୍ୟ ସମାଲୋଚନା - ୧୯୩୬ ରୁ ୧୯୮୬: ନାନା ନିବନ୍ଧ, ପୃ. ୨୭)

ଓଡ଼ିଆ ସମାଲୋଚନା ସମ୍ପର୍କରେ ତାଙ୍କର ମନୋଭାବ ମୁଖ୍ୟତଃ ନୈରାଶ୍ୟଜନକ ବୋଲି କୁହାଯାଇପାରେ । ସେ ଲେଖିଛନ୍ତି " ଦ୍ୱିତୀୟ ପର୍ବର ଓଡ଼ିଆ-ସମାଲୋଚନାରେ ନିଷ୍ଠା ଓ ପ୍ରତିପତ୍ତି ଦୂରର କଥା; ଜ୍ଞାନ, ରୁଚି ଓ ସମ୍ବେଦନା ମଧ୍ୟ ଠିକ୍ ଦେଖିବାକୁ ମିଳେ ନାହିଁ । ଫଳତଃ ସମାଲୋଚନା ନାମରେ ଯାହାସବୁ ପ୍ରକାଶ ପାଉଛି, ସେଥିରେ କେଉଁଠି ଧର୍ମ କି ଦର୍ଶନ କଥା ଆଲୋଚିତ ହୋଇଥାଏ ତ, ଆଉ କେଉଁଠି ବିଷୟବସ୍ତୁର ସାର ସଂକଳିତ ହୋଇଥାଏ । ଆଉ କେଉଁଠି ବା ଭାବବସ୍ତୁ ବିଶ୍ଳେଷଣ କରାଯାଇଥାଏ । ଏ ସବୁଠିଁ ଠିକ୍ କଥା କୁହାଯାଇଥିବ ବୋଲି ମଧ୍ୟ କୌଣସି ପ୍ରକାର ଗ୍ୟାରେଣ୍ଟି ନାହିଁ । ବୁଦ୍ଧି ପ୍ରାୟ ଅପରିଣତ । କେଉଁଠି କେମିତି ଜ୍ଞାନ ଥିଲେ ବି କାଣ୍ଡଜ୍ଞାନ ପ୍ରାୟ ନାହିଁ । ଅଭିଜ୍ଞତା-ଅଭିଜ୍ଞତା ଭିତରେ ଥିବା ତାରତମ୍ୟ ବିଚାରର ପ୍ରଶ୍ନ ଉଠୁନାହିଁ । ଏଣୁ ଏବେ ଓଡ଼ିଆ ସାହିତ୍ୟ-ସମାଲୋଚନା କିଛି ଅଛି ବୋଲି ଅନେକେ ବିଶ୍ୱାସ କରନ୍ତି ନାହିଁ । ପ୍ରକାଶିତ ସମାଲୋଚନାରୁ ଅଧିକାଂଶ ହାସ୍ୟକର ଓ ଅପାଠ୍ୟ, ଅବ୍ୟାପ୍ତି କି ଅତିବ୍ୟାପ୍ତି ଦୋଷଦୁଷ୍ଟ । ଦୃଷ୍ଟିଭଙ୍ଗୀ ଅସ୍ୱଚ୍ଛ ନ ହେଲେ ସଂକୀର୍ଣ୍ଣତା ସମାଚ୍ଛନ୍ନ, ପକ୍ଷପାତଦୁଷ୍ଟ ନ ହେଲେ ତୋଷାମଦ ପ୍ରବଣ । ଅବସ୍ଥା ଶୋଚନୀୟ ।" (ତତ୍ରୈବ - ପୃ. ୨୮)

ଝଙ୍କାରରେ ସଦ୍ୟ ପ୍ରକାଶିତ ତାଙ୍କ ପ୍ରବନ୍ଧରେ ଆନ୍ତର୍ଜାତିକ କ୍ଷେତ୍ରରେ ସମକାଳୀନ ସମାଲୋଚନାର ପ୍ରବୃତ୍ତି, ବିଶେଷତଃ, ବିଭିନ୍ନ ପଦ୍ଧତି ବା ଆପ୍ରୋଚ ପ୍ରସଙ୍ଗ ଭିତ୍ତିରେ ଓଡ଼ିଆ ସମାଲୋଚନାର ଦୈନ୍ୟ ପ୍ରସଙ୍ଗ ପ୍ରକଟିତ । ତଥାକଥିତ ଆନୁଷ୍ଠାନିକ ଗବେଷଣା ତାଙ୍କପାଇଁ ଏକ ନିର୍ବୋଧ ପ୍ରୟାସର ନାମାନ୍ତର ମାତ୍ର ।

ଏକ ସଂକ୍ଷିପ୍ତ ପ୍ରବନ୍ଧରେ ସମାଲୋଚକ ଦାଶରଥି ଦାସଙ୍କ ମୂଲ୍ୟାୟନ ଅତୁକ୍ତି ହେବ । ଏକ ପ୍ରାରମ୍ଭିକ ଉଦ୍ୟମ ଭାବେ ତାଙ୍କର ବ୍ୟକ୍ତିତ୍ୱର ବିଚାର କାଳରେ ପରମ୍ପରା ଓ ପୁରୋଦୃଷ୍ଟି ଭିତରେ ତାଙ୍କ ପ୍ରାଜ୍ଞ ଭୂମିକାର ଅନନ୍ୟ ସାଧାରଣ ଔଜଲ୍ୟ ସମସ୍ତଙ୍କର ଦୃଷ୍ଟି

ଆକର୍ଷଣ କରିଥାଏ। ଏଲିୟଟ ଯାହାକୁ Elucidation ବୋଲି କହିଛନ୍ତି, ସେହି ଉଦ୍ଭାସନ ବା ଉଜ୍ଜ୍ୱଳ ବ୍ୟାଖ୍ୟା ହିଁ ତାଙ୍କ ପ୍ରକୃତ ଆଦର୍ଶ । ସେ ଉଭୟ ବିଶ୍ଳେଷଣ ଓ ସଂଶ୍ଳେଷଣରେ ସୁଦକ୍ଷ। ତାଙ୍କ ଅଧ୍ୟୟନଶୀଳତା ସୁଗଭୀର। ସେହି ଅଧ୍ୟୟନଲବ୍ଧ ଜ୍ଞାନରାଶି ନିଜର ଆନନ୍ଦ ସହିତ ପାଠକମାନଙ୍କ ଆନନ୍ଦପାଇଁ ସେ ସଂଚିତ କରି ରଖିଛନ୍ତି, ଅତ୍ୟନ୍ତ ଆଗ୍ରହର ସହିତ। ଏଲିୟଟ କଥିତ Information, Knowledge ଓ Wisdom – ଏ ପ୍ରତ୍ୟେକ ସ୍ତରରେ ସେ ସଫଳ ସିଦ୍ଧିର ପରିଚୟ ଦେଇଛନ୍ତି। ତାଙ୍କ ଆଲୋଚନା ବିରୋଧରେ ଯେ କୌଣସି ଅଭିଯୋଗ ନ ହୁଏ, ତାହା ନୁହେଁ। ତାଙ୍କ ଲେଖାର ସଂଗ୍ରହ ପ୍ରାଚୁର୍ଯ୍ୟକୁ ଅନେକ ବଡ ଅସହିଷ୍ଣୁ ଦୃଷ୍ଟିରେ ଦେଖନ୍ତି। କିନ୍ତୁ ପାଠକମାନଙ୍କ ତରଫରୁ ସେଥିପାଇଁ ସେ ଶ୍ରମ ସ୍ୱୀକାର କରନ୍ତି। ଆଉ କେତେକ କହନ୍ତି, ତାଙ୍କ ଲେଖାରେ ଆନୁଷ୍ଠାନିକ ଗବେଷଣା ରୀତିର ଅଭାବ, କିନ୍ତୁ ଆମ ତଥାକଥିତ ଗବେଷଣାର ଅନ୍ତଃସାରଶୂନ୍ୟ ଆକୃତି ସର୍ବସ୍ୱତାକୁ ସେ ବୁଝନ୍ତି। ତାଙ୍କ ଭାଷାର ଆବେଗୋଚ୍ଛଳ ଅଭିବ୍ୟକ୍ତି କଥା ହୁଏତ କେହି କେହି କହନ୍ତି। କିନ୍ତୁ ଭାଷାରେ ସେ ସତର୍କ ଭାବେ ଦୃଷ୍ଟିଶୀଳ ଓ ତାଙ୍କ ସୃଷ୍ଟିଶୀଳତା ଦୃଷ୍ଟିଶୀଳତାକୁ କେବେ ବଳି ପକାଇ ଅଗ୍ରସର ହୁଏନାହିଁ। ଆଧୁନିକ କବିତା ପରି ତାଙ୍କ ଆଲୋଚନାରେ ବୁଦ୍ଧି ଆବେଗାନ୍ୱିତ ଓ ଆବେଗ ବୁଦ୍ଧିଦୀପ୍ତ। ଓଡ଼ିଆ ସମାଲୋଚନାରେ ସେ ସ୍ୱୟଂସମ୍ପୂର୍ଣ୍ଣ ଏକ ଉଜ୍ଜ୍ୱଳ ଅଧ୍ୟାୟ। ତାଙ୍କ କୃତିତ୍ୱର ବହୁମୁଖୀ ବିଶ୍ଳେଷଣ ଓଡ଼ିଆ ସମାଲୋଚନାର ବିକାଶ ପାଇଁ ଅପରିହାର୍ଯ୍ୟ। ଅର୍ଦ୍ଧଶତାବ୍ଦୀରୁ ଊର୍ଦ୍ଧ୍ୱକାଳ ଧରି ତପସ୍ୟାରତ ଏଇ ଅତନ୍ଦ୍ର-ସାଧକଙ୍କର ଉପଲବ୍ଧି ପାଇଁ ପ୍ରଚେଷ୍ଟା କାହିଁ? ତାଙ୍କ ପ୍ରଦର୍ଶିତ ମାର୍ଗର ଉତ୍ତରଣ ସାଧନା ପାଇଁ ତାଙ୍କ ଉତ୍ତର ପିଢ଼ୀର କେତେଜଣ ଆଲୋଚକ ବା ସାଧନମଗ୍ନ ଅଛନ୍ତି? ସ୍ୱନାମଧନ୍ୟ ସାହିତ୍ୟ – ସମାଲୋଚକ ଦାଶରଥିଙ୍କ ସ୍ୱପ୍ନର ସୀମାନ୍ତକୁ ସ୍ପର୍ଶ କରିବାକୁ କେତେଜଣ ଆଗ୍ରହୀ? ଏହି ଆଲୋଚକଙ୍କ ସ୍ୱଚ୍ଛ ଓ ପ୍ରଜ୍ଞାଦୀପ୍ତ ବିଚାରଧାରାର ସମ୍ୟକ୍ ଅନୁଶୀଳନ ଉପରେ ହିଁ ଓଡ଼ିଆ ସାହିତ୍ୟ-ସମାଲୋଚନାର ସାର୍ଥକ ଭବିଷ୍ୟତ ନିର୍ଭରଶୀଳ – ଏହା ସ୍ୱୀକୃତ ସତ୍ୟ।

**ଦାଶରଥି ଦାସଙ୍କ ପ୍ରକାଶିତ ସାହିତ୍ୟ – ସମାଲୋଚନା ପୁସ୍ତକ**

**କାବ୍ୟ ସମ୍ବାଦ:** (୧୯୭୩) କଟକ, ଫ୍ରେଣ୍ଡସ ପବ୍ଲିସରସ

**ଆଧୁନିକ କାବ୍ୟଜିଜ୍ଞାସା : ଚିତ୍ରକଳ୍ପ** (୧୯୭୪) କଟକ, ଅଗ୍ରଦୂତ

**ସାହିତ୍ୟ ସନ୍ଧାନ:** (୧୯୭୫) କଟକ, ଅଗ୍ରଦୂତ

**କବିସୂର୍ଯ୍ୟ କାବ୍ୟବିଭା:** (୧୯୭୮) କଟକ, ଅଗ୍ରଦୂତ

**ମୃତ୍ୟୁଲୋକରେ ଋତୁସପ୍ତମ:** (୧୯୭୯) କଟକ, ଅଗ୍ରଦୂତ

**ଚିହ୍ନାମାଟି : ଅଚିହ୍ନାଆକାଶ:** (୧୯୮୭) କଟକ, ଅଗ୍ରଦୂତ

**ବିବିଧ ପ୍ରସ୍ତାବ:** (୧୯୯୩) କଟକ, ଅଗ୍ରଦୂତ

**ସାହିତ୍ୟ ବିବେକ:** (୧୯୮୬) କଟକ, ଅଗ୍ରଦୂତ

**ବିଦଗ୍ଧ ମାନସ:** (୨୦୦୨) କଟକ, ଅଗ୍ରଦୂତ

**ଐତିହ୍ୟ ଓ ଆଧୁନିକତା:** (୨୦୦୮) କଟକ, ଅଗ୍ରଦୂତ

**ପ୍ରସଙ୍ଗ ପୁରୁଣା: ଭାବନା ନୂଆ** (୨୦୧୫) କଟକ, ଫ୍ରେଣ୍ଡସ ପବ୍ଲିସରସ



୨୫ ଅକ୍ଟୋବର ୧୯୩୭

## ସାହିତ୍ୟ - ସମୀକ୍ଷକ ନିତ୍ୟାନନ୍ଦ ଶତପଥୀ

ଶତ୍ରୁଘ୍ନ ପାଣ୍ଡବ

ନିତ୍ୟାନନ୍ଦ ଶତପଥୀଙ୍କୁ ଆଧୁନିକ କବିତା ସମାଲୋଚନା କ୍ଷେତ୍ରରେ ଜଣେ ତଦବିତ୍ ବା ବିଶେଷଜ୍ଞ ଭାବରେ ଗ୍ରହଣ କରାଯାଏ। ବିଗତ ଅର୍ଦ୍ଧଶତାବ୍ଦୀ ( ୧୯୬୫ - ୨୦୧୬) ଅବଧିରେ ସେ ଏହି କ୍ଷେତ୍ରରେ ବେଶ ପ୍ରତିବଦ୍ଧ ଓ କ୍ରିୟାଶୀଳ ବ୍ୟକ୍ତିତ୍ୱ। ଏମିତିରେ ସେ ସାରଳା ଦାସ, ଉପେନ୍ଦ୍ର, ନବନାଟ୍ୟ ଆନ୍ଦୋଳନ, ଗଳ୍ପ, ଉପନ୍ୟାସ ଆଦିର ସମୀକ୍ଷାରେ ମଧ୍ୟ ହାତ ଦେଇଛନ୍ତି। ଗଳ୍ପଚର୍ଚ୍ଚା ସଂପର୍କରେ 'ଗଳ୍ପ ଓ ଗାଳ୍ପିକ (୧ମ ଭାଗ : ୧୯୮୬), ବୃହତ କଳେବର ସଂପନ୍ନ ପାଞ୍ଚଗୋଟି ଓଡ଼ିଆ ଉପନ୍ୟାସକୁ ନାତିଦୀର୍ଘ କଳେବର ସଂପନ୍ନ କରି ତା' ଉପରେ ଆଲୋକପାତ କରିଛନ୍ତି " ମେଗା ଓଡ଼ିଆ ଉପନ୍ୟାସ: ବୀକ୍ଷା ଓ ସମୀକ୍ଷା" (୨୦୧୫) ଶିରୋନାମାରେ।

ନିତ୍ୟାନନ୍ଦଙ୍କର ସାଧନା ପର୍ବର ଆଦ୍ୟ -ଅଭିସାର ଥିଲା କବିତା। ତା'ର ଫଳଶ୍ରୁତି ସ୍ୱରୂପ ୧୯୬୨ ମସିହାରେ ପ୍ରକାଶିତ ଯୁଗ୍ମ କବିତା ସଂକଳନ ' ଆମ କବିତା'ର ଗୋଟିଏ ଭାଗ ଥିଲା ତାଙ୍କର, ଆର ଭାଗଟି ବିବାହବନ୍ଧନରେ ଆବଦ୍ଧ ହେବାକୁ ଯାଉଥିବା କବି ପ୍ରତିଭା ଶତପଥୀଙ୍କର। ନିଜ ସାହିତ୍ୟସାଧନା ମଝିରେ କବିତାର ଯେଉଁ ପ୍ରେରଣା ଆସିଛି, ତା'ର ଫଳଶ୍ରୁତି ନିକଟ ଅତୀତରେ ପ୍ରକାଶିତ କବିତା ଗ୍ରନ୍ଥ 'ସବା ସାନ ପ୍ରେମିକା'। ବିଭିନ୍ନ ସମୟରେ ବହୁ ଗ୍ରନ୍ଥ ସଂପାଦନା ସହିତ ପୂଜ୍ୟପୂଜା ସଂସଦଦ୍ୱାରା ପ୍ରକାଶିତ ବିଭିନ୍ନ ଉଲ୍ଲେଖଯୋଗ୍ୟ ବିଶେଷାଙ୍କ ଗ୍ରନ୍ଥ ଓ ପ୍ରାୟ ଚାରି ଦଶନ୍ଧି ଧରି ସର୍ଜନଶୀଳ ସମୀକ୍ଷା-ସମୃଦ୍ଧ-ତ୍ରୈମାସିକ ପ୍ରତ୍ରିକା 'ଇସ୍ତାହାର' ର ସଂପାଦନା ତାଙ୍କ ଅଧ୍ୟୟନ, ମନନ, ଅବବୋଧ, ନିଷ୍ଠା ଓ ପ୍ରତିବଦ୍ଧତାକୁ ସାବ୍ୟସ୍ତ କରେ। ବିଭିନ୍ନ ସଂପାଦକୀୟ ଓ ମୌଳିକ ପ୍ରବନ୍ଧ ଗ୍ରନ୍ଥ ସହ ପ୍ରକାଶିତ ହୋଇଛି ଏକାଧିକ ଆତ୍ମଜୀବନୀ ଗ୍ରନ୍ଥ, ଭ୍ରମଣକାହାଣୀ : 'ୟୁରୋପ: ସଂସ୍କୃତି ଓ ବିସ୍ମୟ', ଉପନ୍ୟାସ ଅନିକେତ' (୧୯୯୦), ଗଳ୍ପ ସଂକଳନ : 'କାଳ ଓ କର୍ଣ୍ଣିକା' , 'ଯେ ନଦୀ ମରୁପଥେ'; ଗୋପବନ୍ଧୁଙ୍କ ଜୀବନଗାଥା 'ହେ ସାଥି ! ହେ ସାରଥି !'। ଏଗୁଡ଼ିକ ନିତ୍ୟାନନ୍ଦଙ୍କ ମୌଳିକ ସୃଜନଶୀଳତାର ନାନାପ୍ରସ୍ତ ଉନ୍ମୋଚନ କରେ।

ନିତ୍ୟାନନ୍ଦଙ୍କ ଆଦ୍ୟ କବିତା ସମୀକ୍ଷାଗ୍ରନ୍ଥ 'କବିତା ଯୁଗେ ଯୁଗେ' (୧୯୭୬) ବିଭିନ୍ନ ସମୟର କବିତାର ସମୀକ୍ଷା। 'ଆଧୁନିକ ସାହିତ୍ୟ : ଚିନ୍ତା ଓ ଚେତନା' (୧୯୮୪) ସାହିତ୍ୟର ବିଭିନ୍ନ ଦିଗ ଓ ବିଭାଗର ମୂଲ୍ୟାୟନ। ତେବେ ମୁଁ ଚର୍ଚ୍ଚାରେ ନିତ୍ୟାନନ୍ଦଙ୍କ କବିତା ସଂପର୍କିତ ଗବେଷଣା ଗ୍ରନ୍ଥ ' ସବୁଜରୁ ସାଂପ୍ରତିକ' (ପ୍ରଥମ ସଂସ୍କରଣ : ୧୯୭୯), 'ସତୁରୀରୁ ସହସ୍ରାବ୍ଦୀ' (୨୦୦୩), 'କବିତା ସେତୁ' (୨୦୦୬), କାବ୍ୟଦୃଷ୍ଟି: କାବ୍ୟବିଚାର' (୨୦୧୫) କୁ ଗ୍ରହଣକରିଛି। ଏଠାରେ ସୂଚାଇଦେବା ପ୍ରାସଙ୍ଗିକ ଯେ,

ତାଙ୍କ ରଚିତ 'ପ୍ରମୁଖ କବି କତିପୟ' (୧୯୮୫) ଓ 'ସତ୍ୟବାଦୀ ଯୁଗ: ସ୍ରଷ୍ଟା ଓ ସୃଷ୍ଟି, (୧୯୯୯)ଗ୍ରନ୍ଥରେ ଉପସ୍ଥାପିତ ତଥ୍ୟ ପ୍ରମୁଖତଃ 'ସବୁଜରୁ ସାଂପ୍ରତିକ' ଓ 'ସତୁରୀରୁ ସହସ୍ରାବ୍ଦୀ' ଗ୍ରନ୍ଥର ବିସ୍ତାରିତ ଉପସ୍ଥାପନ। 'କାବ୍ୟଦୃଷ୍ଟି: କାବ୍ୟ ବିଚାର' ଗ୍ରନ୍ଥ ୧୯୯୩ ରେ ପ୍ରକାଶିତ 'କାବ୍ୟପ୍ରକରଣ' ର ପରିବର୍ଦ୍ଧିତ ନୂତନ ସଂସ୍କରଣ।

ନିତ୍ୟାନନ୍ଦ ଉଭୟ ପ୍ରାଚ୍ୟ ଓ ପାଶ୍ଚାତ୍ୟ ସମୀକ୍ଷାତତ୍ତ୍ୱ ଓ ଧାରା ଅବଗାହୀ। ତାଙ୍କ କବିତା ସମୀକ୍ଷାର ପରିସର ମୁଖ୍ୟତଃ କବି ରାଧାନାଥ ରାୟଙ୍କଠାରୁ ସମକାଳର କବି ଆଶୁତୋଷ ପରିଡ଼ାଙ୍କ ଯାଏ ପରିବ୍ୟାପ୍ତ। ପ୍ରମୁଖ ସମୀକ୍ଷା ଗ୍ରନ୍ଥ **'ସବୁଜରୁ ସାଂପ୍ରତିକ'** ରୁ **କବିତା ସେତୁ** ପର୍ଯ୍ୟନ୍ତ ୧୯୨୦ ରୁ ୨୦୧୦ ଯାଏ କବିତାର ମୂଲ୍ୟାୟନ- ଅର୍ଥାତ୍ ବିଂଶ ଶତାବ୍ଦୀର କବିତା। କିନ୍ତୁ ଏହାର ସମୀକ୍ଷା ପରିଧି ଚର୍ଯ୍ୟା ସାହିତ୍ୟଠୁଁ ସମକାଳ ଯାଏ ପ୍ରସାରିତ। ସମୀକ୍ଷାକର୍ମର ଆଦର୍ଶ ଭାବେ ନଟବର ସାମନ୍ତରାୟଙ୍କୁ ସେ ବିଶେଷ ମାନ୍ୟତା ଦିଅନ୍ତି। ସମୀକ୍ଷଣର ବିଭିନ୍ନ ପର୍ଯ୍ୟାୟରେ ଯେଉଁ ଯେଉଁ ଆଲୋଚକ କାବ୍ୟକବିତା ଉପରେ ବିଶେଷ ଅଭିମତ ରଖିଛନ୍ତି, ସେଥିରୁ ନିର୍ଯ୍ୟାସ ବା ଉଦ୍ଧୃତି ଉଲ୍ଲେଖ କରି ଯୁକ୍ତିନିଷ୍ଠ ଭାବରେ ମତ ପ୍ରତିଷ୍ଠା ଦିଗରେ ସେ ବ୍ରତୀ ହୋଇଛନ୍ତି।

'ସବୁଜରୁ ସାଂପ୍ରତିକ' (୧୯୭୬, ପ୍ରକାଶକାଳ : ୧୯୭୯) ପ୍ରକାଶନ ବେଳକୁ ଆଧୁନିକ ଓଡ଼ିଆ କବିତା ସମୀକ୍ଷଣ ନିର୍ଦ୍ଦିଷ୍ଟ ଓ ବ୍ୟାପକ ହୋଇ ନ ଥିଲା। କବି-ସମୀକ୍ଷକ ମାୟାଧର ମାନସିଂହ 'ଓଡ଼ିଆ ସାହିତ୍ୟର ଇତିହାସ' ରେ କାବ୍ୟସ୍ରଷ୍ଟାଙ୍କ ଉପରେ ତାତ୍ପର୍ଯ୍ୟପୂର୍ଣ୍ଣ ଅଭିମତ ରଖିଥିଲେ। ନଟବର ସାମନ୍ତରାୟ,ନରେନ୍ଦ୍ର ନାଥ ମିଶ୍ର ଆଧୁନିକ କବିତା ଚର୍ଚ୍ଚାର ଭିତ୍ତି ସ୍ଥାପନ କରିଥିଲେ। ପତ୍ରିକା ପୃଷ୍ଠାରେ ବିଭିନ୍ନ ସାମୟିକ ମତାମତ ଭିନ୍ନ ଚିନ୍ତାମଣି ବେହେରାଙ୍କ ବିଧିବଦ୍ଧ ଚର୍ଚ୍ଚା, ପତ୍ରିକା ଓ ଗ୍ରନ୍ଥ ମଣ୍ଡନ କରିଥିଲା। ପ୍ରକାଶ ପାଇଥିଲା, ସମାଲୋଚକ ଦାଶରଥି ଦାସଙ୍କ ' ଆଧୁନିକ କାବ୍ୟଜିଜ୍ଞାସା : ଚିତ୍ରକଳ୍ପ', 'ମୃତ୍ୟୁଲୋକରେ ଋତୁ ସପ୍ତମ' ଗ୍ରନ୍ଥ। ଯତୀନ୍ଦ୍ର ମୋହନ ମହାନ୍ତି ଓ ସୌରୀନ୍ଦ୍ର ବାରିକଙ୍କ କବିତା ସଂପର୍କୀୟ ଚର୍ଚ୍ଚା, କତିପୟ କବି ଓ କାବ୍ୟ ବିଭବକୁ ଆଲୋକିତ କରିଥିଲା। ଅବଶ୍ୟ ରାଧାନାଥଙ୍କ ସମକାଳର କାବ୍ୟଯୁଗ, ସତ୍ୟବାଦୀ ଓ ସବୁଜ ସଂପର୍କରେ ଯତକିଂଚିତ ଚର୍ଚ୍ଚାକୁ ଆଧୁନିକ କବିତାର ଚର୍ଚ୍ଚା ବୋଲି କୁହାଯାଉଥିଲା। 'ସବୁଜର ସାଂପ୍ରତିକ' ର 'ମୁଖଶାଳା'ରେ ନିତ୍ୟାନନ୍ଦ କହନ୍ତି - " ସତ୍ୟବାଦୀ ସାହିତ୍ୟ ଯୁଗ ତା'ର ଐକାନ୍ତିକ ଆତ୍ମନିଷ୍ଠା ଓ ମୂଲ୍ୟବୋଧ ନେଇ ୧୯୦୯ ଠାରୁ ୧୯୨୦ ପର୍ଯ୍ୟନ୍ତ ପ୍ରତିଷ୍ଠିତ। ନଟବର ସାମନ୍ତରାୟ ତାଙ୍କ ଗବେଷଣା ନିବନ୍ଧ "ଓଡ଼ିଆ ସାହିତ୍ୟର ଇତିହାସ (୧୮୦୩ - ୧୯୨୦)" ରେ ଏଇ ପର୍ଯ୍ୟନ୍ତ ଦୃଷ୍ଟିପାତ କରିଛନ୍ତି। ତେଣୁ ଏ ନିବନ୍ଧରେ ମୁଁ ୧୯୨୦ ଠାରୁ ୧୯୬୭ ପର୍ଯ୍ୟନ୍ତ ସମୟର କାବ୍ୟଧାରାକୁ ଅନୁଧ୍ୟାନ କରିବାକୁ ଉଦ୍ୟମ କରିଛି। ଏହାକୁ 'ସବୁଜ - ସାଂପ୍ରତିକ' ଭାବେ ନାମିତ କରାଯାଇପାରେ।"

ସ୍ନାତକୋତ୍ତର ଶ୍ରେଣୀରେ ଅଧ୍ୟାପକ ହେତୁ ତାଙ୍କୁ କାବ୍ୟ କବିତାର ଐତିହାସିକ

ଧାରା ସହ ଏହାର ପ୍ରକୃତି ଓ ପ୍ରବୃତ୍ତି,କବିମାନସର ଉନ୍ମେଷ ଓ ବିବର୍ତ୍ତନର ଅଧ୍ୟୟନ ଏବଂ ଆଧୁନିକ କବିତା ସଂପର୍କିତ ବିଶେଷ ପତ୍ରର ବୀକ୍ଷଣପାଇଁ ଉଭୟ ତାତ୍ତ୍ୱିକ ଓ ବିଶ୍ଳେଷଣାତ୍ମକ ରୀତି ଅନୁସରଣ କରିବାକୁ ପଡିଛି। ବିଭିନ୍ନ ସମୀକ୍ଷା ଗ୍ରନ୍ଥର ଭୂମିକାରେ ଏହା ସଂପର୍କରେ ସେ ସୂଚନା ମଧ୍ୟ ଦେଇଛନ୍ତି। କବିତା-ସମୀକ୍ଷା କ୍ଷେତ୍ରରେ କବିତାର ଅର୍ଥ ଓ ଆବେଦନକୁ ଆବିଷ୍କାର କରିବା, ସ୍ଥାନ ଓ କାଳ ପରିପ୍ରେକ୍ଷୀରେ ତା'ର ତାତ୍ପର୍ଯ୍ୟକୁ ଚିହ୍ନିତ କରିବାପାଇଁ ଯେଉଁ ସମୀକ୍ଷା ପଦ୍ଧତି ବା ଧାରା ସହଜାତ, ତାକୁ ଆପଣାଇଛନ୍ତି। ସେଥିରେ ନିର୍ଦ୍ଦିଷ୍ଟତା ଖୋଜିବା ପ୍ରାସଙ୍ଗିକ ମନେହୁଏ ନାହିଁ। ସେଥିରେ ଲେଖାଟିର ପ୍ରକାଶନ କାଳ ଆଧାରିତ ଐତିହାସିକ ସମୀକ୍ଷାଧାରା, କବିତାର ନିର୍ଯ୍ୟାସକୁ ଉତଖାତ କରିବାପାଇଁ ବିଶ୍ଳେଷଣାତ୍ମକ ସମୀକ୍ଷାଧାରା; କବିତାର ତାତ୍ପର୍ଯ୍ୟ, ବ୍ୟାପ୍ତି ଓ ନୂତନତାକୁ ଚିହ୍ନାଇବାପାଇଁ ତୁଳନାତ୍ମକ ସମୀକ୍ଷଣ, ବିଭିନ୍ନ ସାହିତ୍ୟିକ ବାଦ ଓ ତତ୍ତ୍ୱର ପ୍ରୟୋଗକୁ ଦର୍ଶାଇବାପାଇଁ ପ୍ରାୟୋଗିକ ମୂଲ୍ୟାୟନର ଧାରା ସମନ୍ୱିତ ହୋଇଛି। ଏବକୁ ୨୫/୩୦ ବର୍ଷଧରି ବିଶ୍ୱ ସମୀକ୍ଷା ଧାରାରେ ନାନା ପରିବର୍ତ୍ତନ ଓ ପଦ୍ଧତି ଆସିଲାଣି। ୧୯୭୦-୭୫ ସମୟ ପରିସରର କଥା ନିଆରା। ତେବେ ବିଭିନ୍ନ କବି ଓ କବିତା ଗ୍ରନ୍ଥର ବିଚାର ପର୍ଯ୍ୟାୟରେଏକକ କବିତାର ପ୍ରାୟୋଗିକ ମୂଲ୍ୟାୟନ ହିଁ ତା'ର ସ୍ଥାନ ଓ ତାତ୍ପର୍ଯ୍ୟ, ଦୁର୍ବଳତା ଓ ବୈଶିଷ୍ଟ୍ୟ ନିରୂପଣରେ ମଧ୍ୟ ପ୍ରାଧାନ୍ୟ ପାଇଛି। କୌଣସି କାଳର କବି ଓ କବିତାର ସାମାଜିକ ଓ ସାଂସ୍କୃତିକ ପୃଷ୍ଠଭୂମିର ଅବତାରଣା ମଧ୍ୟ ନିତ୍ୟାନନ୍ଦଙ୍କ କବିତା ଚର୍ଚ୍ଚାରେ ସହଜାତ ଭାବେ ପରିଲକ୍ଷିତ। କବିର ଆହରଣ ଓ ପ୍ରେରଣାର ଉତ୍ସକୁ ଖୋଜବା ସହିତ କ୍ଷେତ୍ର ବିଶେଷରେ କାବ୍ୟକୃତିକୁ ନେଇ ପ୍ରାଚୀନ କାବ୍ୟଧାରା, ପାଶ୍ଚାତ୍ୟ ତଥା ପ୍ରାନ୍ତୀୟ କାବ୍ୟଧାରା ସହିତ ତୁଳନାତ୍ମକ ବିଚାର ବିମର୍ଶ ତିଆରି କରିଛନ୍ତି।

କବିତା ସମୀକ୍ଷଣ କ୍ଷେତ୍ରରେ କୌଣସି ନିର୍ଦ୍ଦିଷ୍ଟ ଯୁଗ ବା ସମୟର ଅବଦାନ ରହିଛି; କିନ୍ତୁ ତାହା ଜଣେ କାବ୍ୟସ୍ରଷ୍ଟାର ବୈୟକ୍ତିକ ଅବଦାନରେ ସମୃଦ୍ଧ। ଏଣୁ ଏକକ କବିଙ୍କର ସାମଗ୍ରିକ ଅଧ୍ୟୟନ ହିଁ ନିତ୍ୟାନନ୍ଦଙ୍କ ସମୀକ୍ଷା ଧାରାରେ ବିଶେଷ ଭାବେ ପରିଲକ୍ଷିତ ହୁଏ। ଏହା ସତ୍ତ୍ୱେ ସେ ତତ୍‌କାଳର ସାହିତ୍ୟ ଧାରା ଓ ତା'ର ତାତ୍ତ୍ୱିକ ଦିଗକୁ ଚର୍ଚ୍ଚାକରି ଗୋଟିଏ ସମୟଖଣ୍ଡର ନିଷ୍କର୍ଷ ବା ନିର୍ଯ୍ୟାସ ଉପସ୍ଥାପିତ କରନ୍ତି। ଆମ ସମୀକ୍ଷାଧାରାରେ ପ୍ରଚଳିତ ବିଭିନ୍ନ ମୌଳିକ ତତ୍ତ୍ୱର ସଂଜ୍ଞା,ସ୍ୱରୂପ ତଥା ଓଡ଼ିଆ କବିତାରେ ତା'ର ପ୍ରୟୋଗ ବିଶେଷତାକୁ ସେ ଦର୍ଶାଇଛନ୍ତି। ଏତଦ୍‌ଭିନ୍ନ, ଓଡ଼ିଆ କବିତାର ଭାବ-ଜଗତ ଓ କଳା କାରିଗରିରେ ପରିଦୃଶ୍ୟମାନ ବିଭିନ୍ନ ବିବିଧତାକୁ ବିଶ୍ଳେଷଣ କରି ତା'ର ନୂତନତା ଓ ଅର୍ଥବହତାକୁ ପ୍ରକାଶ କରିଛନ୍ତି। ଏହି ଦୃଷ୍ଟିରୁ 'ସବୁଜରୁ ସାମ୍ପ୍ରତିକ' 'ସତୁରୀରୁ ସହସ୍ରାବ୍ଦୀ' 'କବିତା ସେତୁ' ଗୋଟିଏ ଧାରାର। 'କାବ୍ୟ ପ୍ରକରଣ'ର ପରିବର୍ଦ୍ଧିତ ରୂପ 'କାବ୍ୟଦୃଷ୍ଟି: କାବ୍ୟ ବିଚାର' ଗ୍ରନ୍ଥ ବିଭିନ୍ନ ପାଶ୍ଚାତ୍ୟ ସାହିତ୍ୟ ତତ୍ତ୍ୱ ଓ ସେଗୁଡ଼ିକର ପ୍ରାୟୋଗିକ ମୂଲ୍ୟାୟନ ବିଷୟକ। ୧୯୬୦ ପରବର୍ତ୍ତୀ ସୃଷ୍ଟିଶୀଳ କାବ୍ୟସ୍ରଷ୍ଟାଙ୍କ କୃତି ଉପରେ ଅନେକ କ୍ଷେତ୍ରରେ ଏକ ଅନ୍ତିମ ନିର୍ଣ୍ଣୟାତ୍ମକ ମତ ରଖିବା ସମ୍ଭବ ହୋଇନାହିଁ। ଯଦିଓ କାବ୍ୟଗ୍ରନ୍ଥ ଓ ଏକକ

କବିତାର ବିଶ୍ଳେଷଣ ଉପରେ ନିର୍ଦ୍ଦିଷ୍ଟ ମତ ରହିଛି। କବିର କାବ୍ୟ ପରମ୍ପରା ଆଧାରରେ ତାର ମୌଳିକତା ଓ ନୂତନତା ସଂପର୍କରେ ବହୁ ଉଦ୍ଧୃତିଯୋଗ୍ୟ ମତ ତାଙ୍କ ସମୀକ୍ଷାକୁ ମଣ୍ଡନ କରିଛି।

ନିତ୍ୟାନନ୍ଦ ମୂଳତଃ ଏକ ସର୍ଜନଶୀଳ ସତ୍ତା। ତେଣୁ ତାଙ୍କ ସମୀକ୍ଷାର ଦୃଷ୍ଟିଭଙ୍ଗୀ ଓ ଭାଷା ସର୍ଜନାତ୍ମକ। ଏ ପ୍ରକାର ସର୍ଜନାତ୍ମକତା ଓଡ଼ିଆ ସମୀକ୍ଷାଧାରାରେ ମାନସିଂହ, କୁଞ୍ଜବିହାରୀ ଦାଶ, ସୁରେନ୍ଦ୍ର ମହାନ୍ତି, ଚିନ୍ତାମଣି ବେହେରା, ଦାଶରଥି ଦାସ, ଆଦିକନ୍ଦ ସାହୁ, ହରପ୍ରସାଦ ଦାସଙ୍କ ଲେଖାରେ ପରିଲକ୍ଷିତ । ନିତ୍ୟାନନ୍ଦଙ୍କ ସମୀକ୍ଷଣରେ ସର୍ଜନଶୀଳତା ପରିପ୍ରେକ୍ଷୀରେ କହିହେବ ଯେ, କୌଣସି କବିଙ୍କ କୃତିର ବ୍ୟାଖ୍ୟା କଲାବେଳେ ତା'ର ରସବୋଧ ଓ ମାଧୁର୍ଯ୍ୟ ସହ ସେ ଏକାତ୍ମ ହୋଇ ଯାଇଛନ୍ତି ଏବଂ ଅଭିମତ ରଖିଲାବେଳେ ଏକ ଅନାସକ୍ତ ଦ୍ରଷ୍ଟାର ଭୂମିକାକୁ ଓହ୍ଲାଇ ଆସିଛନ୍ତି।
କ୍ଷେତ୍ର ବିଶେଷରେ କୌଣସି ନିର୍ଦ୍ଦିଷ୍ଟ ଲେଖାର ଅନନ୍ୟତା ପ୍ରସଙ୍ଗରେ ପୂର୍ବ ସମୀକ୍ଷକଙ୍କ ମତରେ ସାରବତ୍ତା ବା ତାତ୍ପର୍ଯ୍ୟ ଦର୍ଶାଇଲା ବେଳେ ତାଙ୍କର ଅଭାବ ଓ ଏକଦେଶଦର୍ଶିତାକୁ ନମ୍ର ଭାବରେ ପ୍ରକାଶ କରିବାର ଉଦାରତା ଓ ସ୍ପର୍ଦ୍ଧା ମଧ୍ୟ ପୋଷଣ କରିଛନ୍ତି। ଅନ୍ୟୂନ ଅଢେଇ ହଜାର ପୃଷ୍ଠା (ଡିମାଇ ସାଇଜର) କବିତା ସମୀକ୍ଷା – ଏକାଧିକ ବିଶେଷ ସନ୍ଦର୍ଭର ଅପେକ୍ଷା ରଖେ। ଏ ପ୍ରସଙ୍ଗରେ ଆଉ ଏକ କଥା, ସେ ରାଧାନାଥ ରାୟଙ୍କଠୁ ଦିବଂଗତ ସଚ୍ଚି ରାଉତରାୟଙ୍କ ପର୍ଯ୍ୟନ୍ତ କାବ୍ୟସ୍ରଷ୍ଟାଙ୍କ ସାମଗ୍ରିକତା, ପୂର୍ଣ୍ଣାଙ୍ଗ ମୂଲ୍ୟାୟନପାଇଁ ପ୍ରଯତ୍ନ କରିଛନ୍ତି। ଉଦାହରଣ ସ୍ୱରୂପ, ତାଙ୍କର ତିନିଗୋଟି ଚର୍ଚ୍ଚାଗ୍ରନ୍ଥରେ କବି ରାଉତରାୟଙ୍କ ସଂପର୍କରେ ଶତାଧିକ ପୃଷ୍ଠାର ଚର୍ଚ୍ଚା ରହିଛି। ଏହି କ୍ରମରେ କବି ଗୁରୁପ୍ରସାଦ, ଭାନୁଜୀ, ରଘୁନାଥ, ରମାକାନ୍ତ, ସୀତାକାନ୍ତ, ସୌରୀନ୍ଦ୍ର, ଚିନ୍ତାମଣି, ବ୍ରଜନାଥ, ଦୀପକ, ଜଗନ୍ନାଥ ପ୍ରସାଦ, ରଜନୀକାନ୍ତ ଦାସ, ହରିହର ମିଶ୍ର ପ୍ରମୁଖଙ୍କ ସଦ୍ୟତମ ଗ୍ରନ୍ଥକୁ ଯଥାସମ୍ଭବ ନିଜ ଆକଳନ ପରିସରଭୁକ୍ତ କରିଛନ୍ତି। ସାଂପ୍ରତିକ ପରିଭାଷାରେ update କରିବା ମାନସିକତା। ଭାବ ଓ କଳା କାରିଗରିଗତ ବିଭବରେ ସେ ଅନେକଙ୍କର ଚର୍ଚ୍ଚା କରିଥିଲେ ବି କେତେକ କାବ୍ୟଶିଳ୍ପୀ ତାଙ୍କ ଚର୍ଚ୍ଚା ଆଢୁଆଳରେ ରହିଯାଇଛନ୍ତି। ଓଡ଼ିଆ କବିତାର ବିଭିନ୍ନ ସମୟରେ ଆସିଥିବା ବିଭିନ୍ନ ବାଦ (ରୋମାଣ୍ଟିସିଜିମ୍‌ଠାରୁ ଉତ୍ତର ଆଧୁନିକତା ପର୍ଯ୍ୟନ୍ତ) ର ପ୍ରୟୋଗଗତ ତାତ୍ପର୍ଯ୍ୟକୁ ଚିହ୍ନିତ କରିବାରେ ମଧ୍ୟ ତାଙ୍କର ଶ୍ରଦ୍ଧା ରହିଛି ।

ନିତ୍ୟାନନ୍ଦଙ୍କ କବିତା ସମୀକ୍ଷଣପାଇଁ ଦୁଇ ବୃହତ୍ତମ ଗ୍ରନ୍ଥ ' ସବୁଜରୁ ସାଂପ୍ରତିକ' ଓ ସତୁରୀରୁ ସହସ୍ରାବ୍ଦୀ' ଏବଂ 'କବିତାସେତୁ' ଓ 'କାବ୍ୟଦୃଷ୍ଟି: କାବ୍ୟବିଚାର' କୁ ନିଆଯାଇଛି। ୧୯୭୬ ରେ ନିବନ୍ଧ ଭାବେ ସ୍ୱୀକୃତ 'ସବୁଜରୁ ସାଂପ୍ରତିକ' ୧୯୭୯ରେ ପ୍ରକାଶିତ ହୁଏ। ଗ୍ରନ୍ଥରେ ରହିଛି ଏଗାର ଗୋଟି ସ୍ୱତନ୍ତ୍ର ପରିଚ୍ଛେଦ, କବିତା ସଂପର୍କିତ ତଥ୍ୟ, ମସିହା, ମାସ ଭିତ୍ତିକ ହୋଇ ତତକାଳୀନ ପତ୍ରିକାରୁ ବହୁ ଆୟାସରେ ସଂଗୃହୀତ ହୋଇଛି । ଏବଂ ସେଇ ଆଧାରରେ କବିର ବୈଶିଷ୍ଟ୍ୟ, ବିକାଶ – ଉତ୍ତରଣ ଓ କାବ୍ୟଯୁଗର ସାମଗ୍ରିକ ବୈଶିଷ୍ଟ୍ୟକୁ ପ୍ରତିପାଦନ କରିବାରେ ଗ୍ରନ୍ଥଟି ପ୍ରାମାଣିକ। ନଟବର ସାମନ୍ତରାୟଙ୍କ

**ଓଡ଼ିଆ ସାହିତ୍ୟର ଇତିହାସ (୧୮୦୩ - ୧୯୨୦)** ପରେ ଏଇ ଧାରା ଓ ପାଟବର ଗ୍ରନ୍ଥଟିଏ ଓଡ଼ିଆ ଗବେଷଣା ଓ ସମୀକ୍ଷା କ୍ଷେତ୍ରରେ ଅମିଳକ । ଏହାକୁ ଛାତ୍ରସେବ୍ୟ ଓ ଏକାଡ଼େମିକ କହିବା ଧୃଷ୍ଟତା ହେବ, ଯଦିଓ ଗ୍ରନ୍ଥର ଷଷ୍ଠ ସଂସ୍କରଣ ପ୍ରକାଶିତ ଏବଂ ଛାତ୍ର ଓ ଅଧ୍ୟାପକ-ସମାଜପାଇଁ କବିତାର ଅବବୋଧ ଓ ଇତିହାସ ଜାଣିବାଲାଗି ଏହା ସର୍ବୋତ୍ତମ ସହାୟକ ଗ୍ରନ୍ଥ । ସାତଗୋଟି ଗୁରୁତ୍ୱପୂର୍ଣ୍ଣ ପ୍ରସଙ୍ଗ, ପଚିଶିରୁ ଊର୍ଦ୍ଧ୍ୱ ପ୍ରମୁଖ କବିଙ୍କ କାବ୍ୟଜଗତ, ଚାଳିଶିରୁ ଊର୍ଦ୍ଧ୍ୱ ସୁପରିଚିତ ଗୌଣକବିଙ୍କ ମୂଲ୍ୟାୟନକୁ ଏ ଗ୍ରନ୍ଥର କଳେବର ମଣ୍ଡନ କରିଛି । ସବୁଜ କାବ୍ୟଶିଳ୍ପୀଙ୍କଠାରୁ ଯଦିଚ ଚର୍ଚ୍ଚାରେ ଆରମ୍ଭ, ସ୍ୱରାଜ୍ୟ ଆନ୍ଦୋଳନର ଧାରା ଭିତରେ ଅବଧାରିତ ଭାବେ ସତ୍ୟବାଦୀ ଚେତନାର ସ୍ରଷ୍ଟାମାନେ ଚର୍ଚ୍ଚା ପରିସରକୁ ଆସୁଛନ୍ତି । ଆମ ସମୀକ୍ଷଣରେ ସବୁଜ ସାହିତ୍ୟଧାରାକୁ ସ୍ଥୁଳ ଭାବେ ଯୁଗଟିଏ ବୋଲି କୁହାଯାଇଛି ଏବଂ ଏବେ ବି ଏହା ଯୁଗ ପରିଭାଷାରେ ନାମିତ; କିନ୍ତୁ ଏହାକୁ ଯୁଗ ନୁହେଁ, ଯୁଗାଭାସ କହିବାର ଯୁକ୍ତି ସମ୍ମତ ନିର୍ଣ୍ଣାୟତ୍ମକ ମତ ସର୍ବପ୍ରଥମେ ନିତ୍ୟାନନ୍ଦ ହିଁ ଅବତାରଣା କରିଛନ୍ତି । " ଏମାନଙ୍କ ମଧ୍ୟରେ ଯେତେଥିଲା ବନ୍ଧୁତାର ବନ୍ଧନ, ସେତେ ପ୍ରକୃତରେ ସାହିତ୍ୟିକ ଚେତନାର ଦୃଷ୍ଟିଗତ ବନ୍ଧନ ନଥିଲା ।" (୧୯୬୭, ପୃ -୨) "ଅଥଚ ବିସ୍ମୟର କଥା ଯେ ସବୁଜ ଗୋଷ୍ଠୀର କବିମାନେ ସମୟ, ଜାତି, ଆନ୍ତର୍ଜାତିକ- ଏ ସମସ୍ତ ଅଗ୍ରଗାମୀ ଭାବଧାରା ଓ ଆହ୍ୱାନ ପ୍ରତି ଆଖିବୁଜି ଦେଇଥିଲେ । ଏହି ପରିବେଶରୁ ଖାପଛଡ଼ା ରହି ସ୍ୱପ୍ନ, ପ୍ରଣୟ ଓ କଳ୍ପନାର ପରୀରାଜ୍ୟରେ ସେମାନେ କେତେଦିନ ବିଚରଣ କରିପାରିଥାନ୍ତେ ?" (୧୯୭୬, ପୃ-୫) ସବୁଜ ଠାରୁ ଦୂରତାରେ ରହି ସମସାମୟିକ ସ୍ରଷ୍ଟା ଭାବେ ଏକକ ପ୍ରତିଷ୍ଠା ପାଇଥିବା ପଦ୍ମଚରଣ, କୁନ୍ତଳାକୁମାରୀ, କାନ୍ତକବି, ମାୟାଧର ମାନସିଂହ, ଗଡ଼ନାୟକ ଓ ଗୋଦାବରୀଶ ମହାପାତ୍ର କେଉଁ ଯୁଗ ଆଧାରରେ ଚିହ୍ନିତ ହୁଏନ୍ତେ ବୋଲି ପ୍ରଶ୍ନଟିଏ ଏହି ଚର୍ଚ୍ଚାରୁ ଉଦଭୂତ ହୁଏ । ସବୁଠାରୁ ଗୁରୁତ୍ୱପୂର୍ଣ୍ଣ, ସବୁଜ କବିତାର ସବୁ ଗୁଣ ଓ ବିଭବ ଏବଂ କବିମାନଙ୍କ ଗାରିମା ଓ ଅବଦାନକୁ ଯଥାର୍ଥରେ ଏକ ଐତିହାସିକ ମାନ୍ୟତା ଦେବା । ଅଭିମତଟିଏ ଏହିପରି : "କବି ପଦ୍ମ ଚରଣଙ୍କ କବିତାରେ ଯେଉଁ ସମୟୋଚିତ ଅଙ୍ଗୀକାର ପ୍ରକାଶ ପାଇଛି, ସେହି ସ୍ୱର ସବୁଜ ଗୋଷ୍ଠୀର ଆଲୋଚ୍ୟ ସମୟର କବିତାରେ ଏକାନ୍ତ ଦୁର୍ଲ୍ଲଭ । ଜାତୀୟ ଆଶା ଆକାଂକ୍ଷାଠାରୁ ଦୂରେଇ ଯାଇ ସବୁଜ କବିମାନେ ନୂଆ ସୃଷ୍ଟିର ମୋହରେ ବେଶିଦୂର ଅଗ୍ରସର ହୋଇପାରିଥିବା ମନେହୁଏ ନାହିଁ । (୧୯୭୬, ପୃ-୪) ଏକଦା ସମାଲୋଚକ ଦାଶରଥି ଦାସ ସବୁଜ ସଂପର୍କରେ କରିଥିଲେ "ସବୁଜକୁମ୍ଭର ସମସ୍ତ ଜଳ ରବିତୀର୍ଥରୁ ସଂଗୃହୀତ" ।

ପ୍ରମୁଖ ସବୁଜସାଧକ ଅନ୍ନଦାଶଙ୍କର, କାଳିନ୍ଦୀ ଓ ବୈକୁଣ୍ଠନାଥଙ୍କ କାବ୍ୟଧାରାର ସମସ୍ତ ଆଲୋଚନା ଏଠାରେ ପତ୍ରସ୍ଥ । ଅନ୍ନଦାଶଙ୍କରଙ୍କ ଦ୍ୱନ୍ଦ୍ୱ ଓ ବଂଗଳା ସାହିତ୍ୟକୁ ପଳାୟନ କଥା ଉଲ୍ଲେଖ କରି ସେ କବିତାରେ ଧାବମାନ ଛନ୍ଦ ଓ ମାତ୍ରାବୃତ୍ତ ଛନ୍ଦର ପ୍ରୟୋଗର ଅଗ୍ରଭୂମିକା ଗ୍ରହଣ କରିଥିବା ତଥା କବିତା ଅପେକ୍ଷା ରମ୍ୟରଚନା ଓ ସମାଲୋଚନା କ୍ଷେତ୍ରରେ ଅଧିକ ସିଦ୍ଧିର ଅଧିକାରୀ ବୋଲି ନିତ୍ୟାନନ୍ଦ ଉଲ୍ଲେଖ କରନ୍ତି । କାଳିନ୍ଦୀ ଚରଣଙ୍କ ସଂପର୍କରେ

ସମାଲୋଚକଙ୍କ ଅଭିମତ : "କାଳିନ୍ଦୀଚରଣଙ୍କ କାବ୍ୟ ଜୀବନରେ ପ୍ରାରମ୍ଭ ଓ ବିକାଶ ଅଛି, ପରିଣତି ନାହିଁ। ତଥାପି ସବୁଜଗୋଷ୍ଠୀ ମଧ୍ୟରେ କବି କାଳିନ୍ଦୀଚରଣ ସବୁଠାରୁ ଅଧିକ ସଚେତନ ଶିଳ୍ପୀ। ଯେଉଁ କବି କାବ୍ୟ ଜୀବନର ଉନ୍ମେଷରେ ଥିଲେ ରୋମାଣ୍ଟିକ ଓ ରୂପପ୍ରାଣ, ସେଇ କବି ଜୀବନର ମଧ୍ୟାହ୍ନରେ ଏକ ମାନବବାଦୀ, ବୈପ୍ଳବିକ ଚିନ୍ତାଧାରା ଅନୁସରଣ କରିବାରେ ବିଚିତ୍ରତା ନିଶ୍ଚୟ ଅଛି। ଏହା ହିଁ କାଳିନ୍ଦୀ-କାବ୍ୟ-ସାଧନାର ଏକ ଚମତ୍କାର ଉତ୍ତରଣ।" (୧୯୭୬, ପୃ-୧୫) ବୈକୁଣ୍ଠନାଥଙ୍କର କାବ୍ୟ ଜୀବନର ବିକାଶ ଓ ପରିଣତି ଥିଲେ ବି ସେଥିରେ ଗତିଶୀଳତା ନାହିଁ ବୋଲି ସୂଚାଇ, ସମୀକ୍ଷକ ବହୁ ନିର୍ଣ୍ଣୟାତ୍ମକ ଅଭିମତ ରଖିଛନ୍ତି। ଗୋଟିଏ ଦୁଇଟି ଉଦାହରଣ ନିମ୍ନମତେ : "ଅବଶ୍ୟ ଏ କଥା ସତ୍ୟ ଯେ, ବୈକୁଣ୍ଠ ନାଥ ଭୀମଭୋଇଙ୍କ ପରି ଶୂନ୍ୟବାଦୀ ନୁହନ୍ତି ବା ମଧୁସୂଦନଙ୍କ ପରି ବ୍ରହ୍ମ-ଉପାସନାର ଚିତ୍ର ଦେଇନାହାନ୍ତି। ସାକାର ଈଶ୍ୱରସ୍ଥିତି ପ୍ରତି ତାଙ୍କ ଚିନ୍ତାରେ ରହିଛି ବିପୁଳ ବିଶ୍ୱାସ; କିନ୍ତୁ ଏହି ବିଶ୍ୱାସର ଧାରା ବେଳେବେଳେ ଅତ୍ୟନ୍ତ ପ୍ରଚ୍ଛନ୍ନ। କେବଳ ଅନୁଭୂତି ହିଁ ତା'ର ଉପଲବ୍ଧ।" (୧୯୭୬, ପୃ-୨୯) ଅଥବା "xxx ଅନେକ କବିତାରେ ବୁଦ୍ଧଦେବଙ୍କ ଜୀବନର ଅଶ୍ରୁ କରୁଣ ଅନୁଭୂତି ପୂରିରହିଛି ଓ ତା'ର କରୁଣ ଭାବସତ୍ତା ଏକ ଚିରନ୍ତନ କାଳୋତ୍ତୀର୍ଣ୍ଣ ଆବେଗରେ ପାଠକର ପ୍ରାଣ ଓ ମନକୁ ଦୋହଲେଇ ଦେଉଛି। ବୈକୁଣ୍ଠ ନାଥ ଅନ୍ୟ କୌଣସି କବିତା ନ ଲେଖି ଏଇ କେତୋଟି ଗାଥାକବିତା ପାଇଁ ଓଡ଼ିଆ ସାହିତ୍ୟର ସ୍ମରଣୀୟ ହୋଇପାରିଥାନ୍ତେ। (୧୯୭୬, ପୃ-୩୨)

ସବୁଜଧାରା ସହିତ ଆହରଣ, ଅନୁସରଣ ଓ ସାମ୍ୟ କ୍ରମରେ ନିତ୍ୟାନନ୍ଦ କବି ଓମରଖୟାମ, ବ୍ଲେକ୍, ସେଲି, ୱାର୍ଡସୱର୍ଥ, କାର୍ଡିନାଲ ନିଉମ୍ୟାନ୍, ଜନ ମାସ୍‌ଫିଲଡ୍, ଏଲିଅଟ୍, ମାୟକୋଭସ୍କି ଆଦି ପାଶ୍ଚାତ୍ୟ ସାହିତ୍ୟଶିଳ୍ପୀ; ରବୀନ୍ଦ୍ରନାଥ, ନିରାଲା, ମହାଦେବୀ ଆଦି ଭାରତୀୟ କବି ତଥା ପୂର୍ବପିଢ଼ିର ଓଡ଼ିଆ କବିଙ୍କ ଚର୍ଚ୍ଚା କରିଛନ୍ତି। ସବୁଜଧାରା ସମସାମୟିକ ଅନ୍ୟ ପ୍ରାନ୍ତୀୟ ଭାଷାରେ ବିକଶିତ କଲ୍ଲୋଳଯୁଗ (ବଂଗଳା), ଛାୟାବାଦଯୁଗ (ହିନ୍ଦୀ), ରବିକିରଣମଣ୍ଡଳ (ମରାଠୀ)ର ତୁଳନା ଓଡ଼ିଆ ସମୀକ୍ଷଣ ପରିପ୍ରେକ୍ଷୀରେ ନୂତନ ଓ ତାତ୍ପର୍ଯ୍ୟପୂର୍ଣ୍ଣ। ବୈକୁଣ୍ଠନାଥଙ୍କ ସଂପର୍କରେ ମାନସିଂହଙ୍କ ମତକୁ ନିତ୍ୟାନନ୍ଦ କିପରି ନମ୍ର ଭାବେ ବିରୋଧ କରୁଛନ୍ତି ଲକ୍ଷ୍ୟ କରନ୍ତୁ : "ମୋଟ ଉପରେ ମାନସିଂହଙ୍କ ତଥାକଥିତ ରୁକ୍ଷ ମନ୍ତବ୍ୟ 'ଡଗରେଲ' ଏପରି ଏକ ପୌରାଣିକ କୃତିଠାରେ ଯେ ପ୍ରତିହିତ ହୋଇ ଫେରିଆସିବ, ଏଥିରେ ମୁଁ ନିଶ୍ଚିତ, ଅନ୍ତତଃ ଓଡ଼ିଆ ସାହିତ୍ୟର ଏଇ ଉଦାର ମାନବବାଦୀ କବିଙ୍କୁ ଅଧିକ ଅନୁଧ୍ୟାନ କରିବାପାଇଁ ମାନସିଂହ ଯେ ସମୟ ପାଇନାହାନ୍ତି, ଏହାହିଁ ତାଙ୍କ ମନ୍ତବ୍ୟରୁ ସ୍ପଷ୍ଟ ହୁଏ।" (୧୯୭୬, ପୃ-୩୩)

ସବୁଜ କବିତାର ବୈଶିଷ୍ଟ୍ୟ ଓ ଦୁର୍ବଳତାକୁ ଦର୍ଶାଇବା ସହିତ ନିତ୍ୟାନନ୍ଦ ସବୁଜ ସମସାମୟିକ ଓଡିଆ କବିତାର ଦୁଇଟି ପ୍ରମୁଖ ଦିଗ, ଜାତୀୟବାଦୀ ଚେତନା ଓ ଆଧିଭୌତିକ-ରହସ୍ୟବାଦୀ ସ୍ୱର ପରିପ୍ରେକ୍ଷୀରେ କବି କୁନ୍ତଳା କୁମାରୀ ଓ କାନ୍ତକବି ଲକ୍ଷ୍ମୀକାନ୍ତଙ୍କ ଚର୍ଚ୍ଚା କରିଛନ୍ତି। ଚର୍ଚ୍ଚାରେ ଲକ୍ଷ୍ମୀକାନ୍ତଙ୍କର ସାମାଜିକ ପୃଷ୍ଠଭୂମି, କବି-ବ୍ୟକ୍ତିତ୍ୱ, ଜୀବନଧାରା

ତଥା ଏମାନଙ୍କ ପୂର୍ବପିଢ଼ିର କେତେକ କାବ୍ୟସ୍ୱରଙ୍କୁ ଉଲ୍ଲେଖ କରିଛନ୍ତି । କୁନ୍ତଳା କୁମାରୀଙ୍କୁ କୀଟସ୍ ଓ ମଧୁସୂଦନଙ୍କ ସହ ତୁଳନା କରି ନିତ୍ୟାନନ୍ଦ ଯେଉଁ ନିର୍ଣ୍ଣାୟକ ମତ ରଖିଛନ୍ତି ତାହା ନିମ୍ନମତେ - "ମାତ୍ର ଛଅଟି ଓଡ୍ ରଚନା କରି କିଟସ୍ ଯେପରି ଇଂରାଜୀ ସାହିତ୍ୟରେ ଅପ୍ରତିଦ୍ୱନ୍ଦୀ ଆସନର ଅଧିକାରୀ, କୁନ୍ତଳା କୁମାରୀଙ୍କ 'ଉଚ୍ଛ୍ୱାସ'ର ଏହି ଛଅଟି ଓଡ ସେହି ସମ୍ମାନ ଦାବିକରେ । ଏହି କବିତାଗୁଡ଼ିକର କରୁଣ୍ୟ, ନମନୀୟତା, ହୃଦୟବତ୍ତା ଓ ସର୍ବୋପରି ସମ୍ମୋହିତ ଆତ୍ମଜିଜ୍ଞାସା ଓଡ଼ିଆ ସାହିତ୍ୟର ଶ୍ରେଷ୍ଠ ଓଡ୍‌ଶିଳ୍ପୀ ମଧୁସୂଦନଙ୍କ ପରେ କୁନ୍ତଳା କୁମାରୀଙ୍କୁ ହିଁ ଚରମ ପ୍ରତିଷ୍ଠା ଦେଇପାରିଛି । ମଧୁସୂଦନଙ୍କ କାବ୍ୟମାନସ ଅଧିକ ତତ୍ତ୍ୱ ଓ ଦର୍ଶନାଭିଳାଷୀ; ତେଣୁ ଓଜଃ ଓ ପ୍ରଶାନ୍ତିରେ ମହିମାନିତ୍ୱ, କିନ୍ତୁ କୁନ୍ତଳା କୁମାରୀଙ୍କ ଓଡ଼ଗୁଡ଼ିକ ଆତ୍ମାନୁଭୂତିରେ ସବଳିତ, ଅଶ୍ରୁ ଉଚ୍ଛ୍ୱାସରେ ବିଧୌତ, ପ୍ରେମପୁଲକରେ ଉଚ୍ଛୁଳିତ; ତେଣୁ ଆବେଗଧର୍ମୀ ଓ ପ୍ରାଣବନ୍ତ xxx" (୧୯୭୬, ପୃ- ୫୫) କୁନ୍ତଳା କୁମାରୀଙ୍କ କାବ୍ୟ ଚେତନା ନିର୍ଦ୍ଦିଷ୍ଟ କମିଟ୍‌ମେଣ୍ଟ ଅପେକ୍ଷା ବିବିଧତା ସଂପନ୍ନ ବୋଲି ନିତ୍ୟାନନ୍ଦ ଦର୍ଶାଇଅଛନ୍ତି । ତୁଳନାତ୍ମକ ଚର୍ଚ୍ଚାକ୍ରମରେ କିନ୍ତୁ କବିଙ୍କ **ଜୀବନସଂଗୀତ** ଓ ରବୀନ୍ଦନାଥଙ୍କ **ଗୀତାଞ୍ଜଳିର** ଚର୍ଚ୍ଚା ସବୁଠାରୁ ଗୁରୁତ୍ୱପୂର୍ଣ୍ଣ । ଅଭିମତଟି ଏହିପରି "ରବୀନ୍ଦ୍ରନାଥଙ୍କ କବ୍ୟସ୍ୱରର କାରୁଣ୍ୟ, ଆନନ୍ଦ ଓ ଆବେଗର ଆଧିକ୍ୟରୁ ସଂଜାତ; କିନ୍ତୁ ଲକ୍ଷ୍ମୀକାନ୍ତଙ୍କ କାବ୍ୟସ୍ୱର ଦୁଃଖ ଓ ଯନ୍ତ୍ରଣାର ଅନ୍ଧକାର ମଧ୍ୟରୁ କାରୁଣ୍ୟମୟ ।" (୧୯୭୬. ପୃ-୭୬)

ସବୁଜ ସମସାମୟିକ ଏକକ କାବ୍ୟଶିଳ୍ପୀ ଭାବରେ ନିତ୍ୟାନନ୍ଦ ପ୍ରମୁଖ ଭାବରେ ପଦ୍ମଚରଣ, ମାନସିଂହ, ଗଡ଼ନାୟକ, କୃଷ୍ଣଚନ୍ଦ୍ର ତ୍ରିପାଠୀଙ୍କ ସୁବିସ୍ତୃତ ଚର୍ଚ୍ଚା କରିଛନ୍ତି । କାବ୍ୟଧାରାର ପ୍ରାରମ୍ଭଠାରୁ ଉତ୍ତରଣ ଯାଏ ଦର୍ଶାଇବା ଅଥବା ବହୁବିଧ ଭାବଚେତନାରେ ବୈଶିଷ୍ଟ୍ୟକୁ ପ୍ରତିପାଦନ କରିବା ସମୀକ୍ଷକଙ୍କର ସମୀକ୍ଷାଧାରାରେ ଅନୁସୃତ । ଓଡ଼ିଆ ସାହିତ୍ୟର ଇତିହାସରେ ପଦ୍ମଚରଣ ସତ୍ୟବାଦୀ ଓ ସବୁଜ କାବ୍ୟ ଚେତନା ମଧ୍ୟରେ ଏକ ସଂଯୋଗ ସେତୁ । ତାର ଉଦାହରଣ ଏହି ପର୍ଯ୍ୟାୟରେ ଲକ୍ଷ୍ୟ କରନ୍ତୁ । "ସମାଜର ଅସହାୟ ପ୍ରତି ମାନବବାଦୀ ସହାନୁଭୂତିରେ ଓ ଦୁର୍ବିନୀତ ଉଦ୍ଧତ ପ୍ରତି ଶାଣିତ ଶ୍ଳେଷ ବର୍ଷଣରେ ତାଙ୍କ କାବ୍ୟମାନସ ଗୋଟିଏ ଧନୁର ଦୁଇଟି କୋଟୀକୁ ସ୍ପର୍ଶକରେ । ମଝିରେ ସଂଯୋଜକ ରଜ୍ଜୁ ରୂପେ ଅବସ୍ଥାପିତ ହୁଏ ତାଙ୍କ କବି ପ୍ରାଣର କରୁଣବିକ୍ଷଣ୍ଣ ଜାତିପ୍ରାଣ ବାକ୍ତିତ୍ୱର ଦୃଢ଼ ଆତ୍ମପ୍ରତ୍ୟୟ । ମାନବିକ ସ୍ନିଗ୍ଧତା ଓ ପୌରୁଷୋଚିତ୍ତ ବୈପ୍ଳବିକ ଭୂମିକାରେ ତାଙ୍କ କବିତାର ଭାଷା ଓ ଭାବ ବଦ୍ରୋହର ଶରବର୍ଷଣ କରେ ।" (୧୯୭୬, ପୃ-୯୫) ଧନୁ, ଶର, ଦୁଇକୋଟୀ ଓ ରଜ୍ଜୁ ଇତ୍ୟାଦିର ଚିତ୍ରାତ୍ମକ ପରିକଳ୍ପନା ଓ କବିତାତୁଲ୍ୟ ଭାଷା ନିତ୍ୟାନନ୍ଦୀୟ ।

ମାୟାଧର ମାନସିଂହଙ୍କ ପ୍ରେମଚେତନାର ସ୍ୱରୂପ ନିର୍ଣ୍ଣୟ କରିବାରେ ସମୀକ୍ଷକଙ୍କର ଦୃଷ୍ଟିକୋଣ ଏହିପରି: " xxx ତାଙ୍କ ପ୍ରଣୟ ଚେତନାର ପୃଷ୍ଠଭୂମିରେ ପରିବର୍ତ୍ତନର କୌଣସି ବିପର୍ଯ୍ୟୟ ଆସିନାହିଁ । ସତେ ଯେପରି ଏକଇ କଣ୍ଠରୁ 'ଧୂପ' ଓ 'ହୋମଶସ୍ୟ'ର ସଙ୍ଗୀତ ସମାନ ଆବେଗ, ଯତି ଓ ସମତାଳରେ ନିଃସୃତ ହୋଇଛି । ସ୍ୱକୀୟା ଓ ପରକୀୟା ପ୍ରେମାନୁଭୂତିକୁ ଏତେ ସାର୍ଥକ ଭାବରେ ଓ ସମାନ ଭାବରେ ଧରିରଖିଥିବା କାବ୍ୟାନୁଚିନ୍ତା

ଓଡ଼ିଆ ସାହିତ୍ୟରେ ବିରଳ। ତେଣୁ ନିଃସନ୍ଦେହ ଭାବେ କୁହାଯାଇପାରିବ ଯେ ମାନସିଂହ ଆଗେ ପ୍ରେମିକ, ପରେ କବି। ତେଣୁ ପ୍ରେମ ହିଁ ତାଙ୍କ କବିତାର ଅନ୍ତର୍ନିହିତ ଉତ୍ସ। ନାରୀଠାରୁ ସେ ପ୍ରେମ ସାଧନା ଆରମ୍ଭ କରିଛନ୍ତି।" (୧୯୭୬,ପୃ-୧୧୧) ମାନସିଂହଙ୍କ ବୈଶିଷ୍ଟ୍ୟ ନିରୂପଣରେ ଯେଉଁ ସୃଜନାତ୍ମକତା ଫୁଟିଉଠିଛି, ଆମର କ୍ୱଚିତ ସମୀକ୍ଷକ ସେଇ ଉଚ୍ଚତା ଓ କଳାତ୍ମକତାକୁ ଛୁଅନ୍ତି। ଯଥା : "ଧୂପର ପ୍ରେମସ୍ରୋତ ଯଦି ହୁଏ ବର୍ଷାକଳୀନ ନଦୀପ୍ରବାହ ପରି ଉଦ୍‌ବେଳ ଓ ଖରସ୍ରୋତା, 'ହେମଶସ୍ୟ'ର ପ୍ରଣୟାନୁଭୂତି ଶରତକାଳୀନ ନଦୀଧାରପରି ନିର୍ମଳ ଓ ମୃଦୁ ପ୍ରବାହିତ xxx" (୧୯୭୬, ପୃ-୧୧୨)। "ଉଦ୍ଦାମ ଦେହଜ ପ୍ରଣୟରୁ ଏକ ଅତିନ୍ଦ୍ରୀୟ ଅନୁଚିନ୍ତା ଆଡକୁ ଦ୍ରୁତ ପଳାୟନ ବୋଧହୁଏ ଥିଲା ତାଙ୍କପାଇଁ ଏକମାତ୍ର ସମାଧାନ। ତେଣୁ ପରବର୍ତ୍ତୀ କାବ୍ୟସ୍ୱରରେ ଏଇ ଯେ ଉଲଂଘନ ଓଡ଼ିଆ ସାହିତ୍ୟକୁ 'ଧୂପ'ର ଧୂଆଁ ଓ ଅଗୁରୁ ଗନ୍ଧରେ ନୁହେଁ, ଯଜ୍ଞର ପରମ ପବିତ୍ର ହବିଃ ଗନ୍ଧରେ ଆମୋଦିତ କରିପାରିଛି। କବି ମାନସିଂହ ଏହି ପର୍ଯ୍ୟାୟରେ ଜଣେ ଯାଜ୍ଞିକ ଭାବରେ ଆତ୍ମପ୍ରକାଶ କରିଛନ୍ତି।" (୧୯୭୬, ପୃ-୧୧୫)

ସବୁଜ ସମସାମୟିକ କାବ୍ୟଶିଳ୍ପୀ ଭାବେ ରାଧାମୋହନ ଗଡ଼ନାୟକଙ୍କ ମୂଲ୍ୟାୟନ, ଉଭୟ କାଳାନୁକ୍ରମିକ ଓ ଭାବଚେତନାଭିତ୍ତିକ। ତାଙ୍କ ସଂପର୍କରେ ନିତ୍ୟାନନ୍ଦଙ୍କ ନିର୍ଣ୍ଣୟାତ୍ମକ ଅଭିମତ ଦୁଇଟି ଉଲ୍ଲେଖନୀୟ। 'ଉତ୍କଳିକା' ପ୍ରସଙ୍ଗରେ : " ଏ ଦୃଷ୍ଟିରୁ ଅସଂଖ୍ୟ ପରିତ୍ୟକ୍ତ ଘଟଣାରାଜିକୁ ବିସ୍ମୃତିର ଅବତଳରୁ ସଂଗ୍ରହ କରି ତାକୁ କଳ୍ପନାର ରକ୍ତମାଂସରେ ଜୀବନ୍ତ ଭାବରେ ଗଢ଼ିବାରେ ଗୋଦାବରୀଶ ମିଶ୍ରଙ୍କ ପରେ ବୋଧହୁଏ ଗଡ଼ନାୟକଙ୍କ ପରି ସଫଳତା ଅନ୍ୟ କୌଣସି କବିଙ୍କ ଭାଗ୍ୟରେ ଘଟିନାହିଁ। xxx ତାଙ୍କ କାବ୍ୟକବିତାରେ, ତେଣୁ, କଳା କଳା ଭାବେ ଆତ୍ମପ୍ରକାଶ କରିଛି ଏବଂ ଏହା ବ୍ୟାପ୍ତି ଓ ବିପୁଳତାରେ ପାଠକକୁ ଉଦବୁଦ୍ଧ କରିପାରିଛି।"(୧୯୭୬,ପୃ : ୧୨୬) ତାଙ୍କ ଅନୁବାଦ ପ୍ରସଙ୍ଗରେ : "ଗଡନାୟକ କୌଣସି ମୌଳିକ କବିତା ନ ଲେଖି ଅନୁବାଦ ମଧ୍ୟରେ ଜଣେ ପ୍ରଥମ ଶ୍ରେଣୀୟ କବି ଭାବେ ପରିଚିତ ହୋଇପାରିଛନ୍ତି।" (୧୯୭୬, ପୃ ୧୩୩) ଗଡନାୟକ ପରି କୃଷ୍ଣଚନ୍ଦ୍ର ତ୍ରିପାଠୀଙ୍କ ସଂପର୍କରେ ସୁଦୀର୍ଘ ବିଶ୍ଳେଷଣ ସହ ବହୁ ନିର୍ଣ୍ଣୟାତ୍ମକ ମତ ତାଙ୍କ ଭାବପ୍ରସ୍ଥ ଓ ଆଂଗିକ ଦିଗକୁ ଆଲୋକିତ କରେ। ଗୋଟିଏ ଉଦାହରଣ: " ଏହି କାବ୍ୟମାନସ ଓଡ଼ିଆ ସାହିତ୍ୟରେ କୌଣସି ନୂତନ ଶଙ୍ଖ ପ୍ରତିଷ୍ଠା ନକରିଥିଲେ ମଧ୍ୟ ଅନବରତ ସାଧନାରେ ଏହା ପ୍ରାୟ ୧୯୩୦ ରୁ ୧୯୭୦ ଏପର୍ଯ୍ୟନ୍ତ ଏକନିଷ୍ଠ। ଏହି ସାଧନାକାଳ ମଧ୍ୟରେ ଜୀବନର ଅସଂଖ୍ୟ ଛୋଟ ବଡ ଅନୁଭୂତିକୁ କାବ୍ୟିକ ରୂପଦେବା ତାଙ୍କର ଅକୁଣ୍ଠ ପ୍ରଚେଷ୍ଟା କେଉଁଠି କେଉଁଠି ତାଙ୍କୁ ଅତି କଠିନ ଓ ପୁନରାବୃତ୍ତି ଦୋଷରେ ଦୃଷ୍ଟ ଯେ ନ କରିଛି ତାହା ନୁହେଁ, ତଥାପି ଜଣେ କବିର ଅତି ଖାଣ୍ଟି ଦରଦୀ ମରମ ନେଇ ତାଙ୍କ କବିତାଗୁଡିକ ବେଶ ସଶକ୍ତି ଓ ପ୍ରଭାବଶାଳୀ xxx କବି ମାନସିଂହ ତାଙ୍କ ଇତିହାସରେ ସତ୍ୟବାଦୀ ପରବର୍ତ୍ତୀ ପ୍ରାୟ ସମସ୍ତ ଆଧୁନିକ କବିଙ୍କ ପ୍ରତି ସାମଂଜସ୍ୟପୂର୍ଣ୍ଣ ମନ୍ତବ୍ୟ ପ୍ରକାଶ କରିବା ବେଳେ, ଏହି କବିଙ୍କ ପ୍ରତି ଯେ ଅତ୍ୟନ୍ତ ପ୍ରଶଂସାମୁଖର

ହୋଇଉଠିଛନ୍ତି - ଏହା ଅତ୍ୟନ୍ତ ତାତ୍ପର୍ଯ୍ୟର ବିଷୟ।” (୧୯୭୬, ପୃ-୧୩୫)

ନିତ୍ୟାନନ୍ଦ, ସତ୍ୟବାଦୀ ଚେତନାର ଶେଷ ଦୀପଶିଖା ଭାବରେ ଆଖ୍ୟାୟିତ ଗୋଦାବରୀଶ ମହାପାତ୍ରଙ୍କ ସ୍ଥାନ ଓ ବୈଶିଷ୍ଟ୍ୟ ନିରୂପଣ କରିଛନ୍ତି। ଗୋଟିଏ ଉଦ୍ଧୃତି ଦେବା : “ସବୁଜରୁ ସାଂପ୍ରତିକ ପ୍ରାୟ ଅର୍ଦ୍ଧଶତାବ୍ଦୀର ଓଡ଼ିଆ କବିତା କ୍ଷେତ୍ରରେ ନାନା ଯୁଗର ବହୁ ବିକାଶର ଧାରା, ନାନା ବାଦ-ବିସମ୍ବାଦ, ବହୁ ପ୍ରୟୋଗ ଓ ପରୀକ୍ଷା ଘନଘଟା ସୃଷ୍ଟି ହୋଇଥିଲେ ମଧ୍ୟ, ଗୋଦାବରୀଶ କୌଣସି ନିର୍ଦ୍ଦିଷ୍ଟ ଯୁଗର ଶିଳ୍ପାନୁଭୂତି ଓ ବିଶ୍ୱାସବୋଧରେ ଆତ୍ମ-ସତ୍ତା ହରାଇନାହାନ୍ତି କିମ୍ବା କୌଣସି ଯୁଗର ବିଶ୍ୱାସକୁ ଅସ୍ୱୀକାର ମଧ୍ୟ କରିନାହାନ୍ତି। xxx ୧୯୩୫ ମସିହାରେ ଓଡ଼ିଆ କବିତା କ୍ଷେତ୍ରରେ ଆସିଥିବା ବାମପନ୍ଥୀ ପ୍ରଗତିଶୀଳ ଆଭିମୁଖ୍ୟର ବହୁପୂର୍ବରୁ ଏଇ ଭାବଧାରା ପ୍ରତି ସେ ଯଥୋଚିତ ସମ୍ମାନ ପ୍ରଦର୍ଶନ କରିଛନ୍ତି।” (୧୯୭୬, ପୃ-୯୩)

ସବୁଜ ସମସାମୟିକ ଗୌଣକବି, ଯେଉଁମାନଙ୍କ ଦାନ ସଂପର୍କରେ ଓଡ଼ିଶା ସମାଲୋଚନା ପ୍ରାୟତଃ ନୀରବ, ସେମାନଙ୍କ ସଂପର୍କରେ ନିତ୍ୟାନନ୍ଦଙ୍କ ଏକନିଷ୍ଠ ଚର୍ଚ୍ଚା ଉଲ୍ଲେଖନୀୟ। ସେହି ଶିଳ୍ପୀମାନେ ଚନ୍ଦ୍ରଶେଖର ମିଶ୍ର, କ୍ଷତୀଶଚନ୍ଦ୍ର ଦେ, ହରିଶ୍ଚନ୍ଦ୍ର ବଡ଼ାଲ୍, ନବକିଶୋର ଦାସ, କୁବେଇ ଦଳେଇ, ଡମ୍ବରୁଧର ପରିଡ଼ା, ବଂଶୀଧର ସାମାନ୍ତରାୟ, ପ୍ରତାପ ସେନ୍, ନିର୍ମଳା ଦେବୀ, କୃଷ୍ଣଚନ୍ଦ୍ର କର ପ୍ରମୁଖ। ପ୍ରତାପ ସେନ୍‌ଙ୍କୁ ଓଡ଼ିଆ ଗଦ୍ୟ କବିତାର ଉଦ୍‌ଗାତା ଭାବେ ମାନ୍ୟତାଦେଇ ନିତ୍ୟାନନ୍ଦ ପାଶଂସାମୁଖର ହୋଇଉଠିଛନ୍ତି। “ରୂପକଳ୍ପ ଓ ପ୍ରତୀକର ନୂତନ ପ୍ରୟୋଗଠାରୁ ଗଦ୍ୟକବିତା ଓ ମୁକ୍ତଛନ୍ଦର ପ୍ରଚଳନର କବି ରାଉତରାୟଙ୍କ ସହିତ ସେ ଏକ ସମାନ ଭୂମିକା ଗ୍ରହଣ କରିଥିବା ଓଡ଼ିଆ ସାହିତ୍ୟର ଇତିହାସପାଇଁ ଅତି ତାତ୍ପର୍ଯ୍ୟର ବିଷୟ। ମୋର ଯେପରି ମନେହୁଏ, ଓଡ଼ିଆ ସାହିତ୍ୟରେ ଶ୍ରୀ ପ୍ରତାପ ସେନଙ୍କ ରଚିତ ‘ଏ ଚତୁର୍ଥୀ’ ହିଁ ପ୍ରଥମ ଗଦ୍ୟ କବିତା। xxx କିନ୍ତୁ ଏହି ବଳିଷ୍ଠ କାବ୍ୟପ୍ରତ୍ୟୟ ଧାରାବାହିକ ସୃଷ୍ଟିର ଅଭାବରୁ ଏବଂ ନିୟମିତ କାବ୍ୟନିଷ୍ଠା ଅଭାବରୁ ଝଡିପଡ଼ିଛି ଅତି ପରିତାପର ବିଷୟ।” (୧୯୭୬, ପୃ-୧୭୮)

‘ସବୁଜରୁ ଆଧୁନିକ : କ୍ରିୟା ପ୍ରତିକ୍ରିୟା’ ଓ ‘ସମସାମୟିକ ଓଡ଼ିଆ କବିତାରେ ରବୀନ୍ଦ୍ର କାବ୍ୟ-ମାନସର ପ୍ରତିଫଳକ’ ଶୀର୍ଷକର ଦୁଇଟି ରଚନା ଆଧୁନିକ ଓଡ଼ିଆ କବିତାର ଇତିହାସ ପରିପ୍ରେକ୍ଷୀରେ ଗୁରୁତ୍ୱପୂର୍ଣ୍ଣ। ୧୯୨୪ରେ ଗୋପବନ୍ଧୁଙ୍କ ମାର୍କସବାଦୀ ଆଦର୍ଶ ପ୍ରତି ଅଙ୍ଗୀକାରବଦ୍ଧତାକୁ ନିତ୍ୟାନଂଦ ଚିହ୍ନିତ କରିଛନ୍ତି, ଯାହା ୧୯୩୫ ମସିହା ପରେ ପ୍ରତିଷ୍ଠା ପାଇଛି। ଗାନ୍ଧୀଙ୍କ ଅହିଂସା ଆନ୍ଦୋଳନ ସହିତ ମାର୍କସବାଦ ମିଶି ଯେଉଁ ଦ୍ୱନ୍ଦ୍ୱର ସମ୍ମୁଖୀନ ହୋଇଛି, ଏହାକୁ ଦର୍ଶାଇ ଆଲୋଚକ ପ୍ରଗତିବାଦୀ କାବ୍ୟଚିଂତନର ସଂଜ୍ଞା ସରହଦ ନିର୍ଣ୍ଣୟ କରିଛନ୍ତି। “ତେଣୁ କେବଳ ମାର୍କସୀୟ ବୈପ୍ଳବିକ ଚେତନାକୁ ପ୍ରଗତିବାଦୀ କାବ୍ୟଧାରାରେ ଏକମାତ୍ର ସଂଜ୍ଞା-ଭାବେ ନିର୍ଣ୍ଣୟ କରାନଯାଇ, ତହିଁରେ ଆତ୍ମିକ ଓ ଆଂଗିକ ସମସ୍ତ ନୂତନ ଆଭିମୁଖ୍ୟକୁ ଯୋଗକରିବା ଯୁକ୍ତିସଂଗତ ହେବ।” (୧୯୭୬, ପୃ-୨୫୪) ସବୁଜ କବିତା ନେଇ ନିତ୍ୟାନନ୍ଦ କବି ମାନସିଂହଙ୍କ ସଂପର୍କରେ ଯେଉଁ ଅଭିମତ ବାଢ଼ନ୍ତି,

ତାହା ଏହିପରି: "କିନ୍ତୁ ବିସ୍ମୟର ବିଷୟ ହେଉଛି, ଯେଉଁ କବି ମାନସିଂହ ସବୁଜ କବିତାର ଭାଷା ଓ ବଙ୍ଗଳା କବିତାର ଭାଷାରେ ଏହି ମେଳ ବା ସାମଞ୍ଜସ୍ୟ ତଥା ଉଲ୍ଲେଖ କରିଛନ୍ତି, ସେ ନିଜେ ତାଙ୍କ କାବ୍ୟଚିନ୍ତାରେ ରବୀନ୍ଦ୍ରନାଥଙ୍କୁ ଯେ ସବୁଠାରୁ ଅଧିକ ଅନୁସରଣ କରିଛନ୍ତି – ଏହା ଅତ୍ୟନ୍ତ ତାତ୍ପର୍ଯ୍ୟପୂର୍ଣ୍ଣ ବିଷୟ।" (୧୯୭୬, ପୃ-୨୨୬)

ସଚ୍ଚିଦାନନ୍ଦ ରାଉତରାୟଙ୍କ କାବ୍ୟଚେତନାର ବିକାଶ ଓ ବୈଶିଷ୍ଟ୍ୟ ଚର୍ଚ୍ଚା ଏବଂ ତାଙ୍କ କବିତା ଉପରେ ବହୁ ନିର୍ଦ୍ଦିଷ୍ଟ ଓ ନିର୍ଣ୍ଣାୟାତ୍ମକ ମତ ଅବତାରଣା କରାଯାଇଛି। ଉଦାହରଣ କେତୋଟି ନିମ୍ନମତେ : "ପୁନଶ୍ଚ ଏଇ କ୍ରମରେ ତାଙ୍କୁ କବିତାରେ ମାର୍କସ ପ୍ରବର୍ତ୍ତିତ ବିପ୍ଳବୀ ଭାବଧାରାର ପ୍ରବର୍ତ୍ତକ ଭାବେ ଚିହ୍ନିତ କରିବାରେ ଅସଂଗତି ନାହିଁ।" (୧୯୭୬, ପୃ-୨୬୩) 'ଭାନୁମତୀର ଦେଶ' ଓ 'ଝଡରେ କୃଷ୍ଣଚୂଡ଼ା'ର ପରିକଳ୍ପନାରେ କିନ୍ତୁ କାବ୍ୟର ବିଷୟବସ୍ତୁ ଅପେକ୍ଷା ଶୈଳିକ ସମୃଦ୍ଧି, ରୂପଚେତନା, ଉପମା, ରୂପକର ନୂତନତାରେ ଏ କାବ୍ୟଟି ଓଡ଼ିଆ କବିତା କ୍ଷେତ୍ରରେ ଏକ ଅନନ୍ୟ ପ୍ରତିଶ୍ରୁତି ଦାବୀ କରେ। ଏହି ଚିତ୍ର-ଚେତନା ଆଧୁନିକ କାବ୍ୟ ମନନର ଏକ ଆଙ୍ଗିକ ଓ ଆତ୍ମିକ ଅବଲମ୍ବନ ଭାବେ ଆନ୍ତର୍ଜାତିକ କବିତା କ୍ଷେତ୍ରରେ T.E.Hume, Ezara Paund ଆଦିଙ୍କ ଠାରୁ ଯେଉଁ ପ୍ରତିଷ୍ଠା ଲାଭ କରିଅଛି, ଯୁଦ୍ଧୋତ୍ତର କାଳରେ କବି ରାଉତରାୟ ତାହାରି ବ୍ୟାପକ ପ୍ରଚଳନରେ ପ୍ରୟାସୀ ହୋଇଛନ୍ତି ମାତ୍ର।" (୧୯୭୬ ପୃ-୨୭୧) ସେହିପରି ପ୍ରଗତିବାଦୀ ଚେତନାର ଦୁଇ ପ୍ରମୁଖ ସ୍ୱର ଅନନ୍ତ ପଟ୍ଟନାୟକ ଓ ରଘୁନାଥ ଦାସଙ୍କ କାବ୍ୟଚେତାର ଉନ୍ମେଷ ଓ ବିବର୍ତ୍ତନ ସଚ୍ଚି ରାଉତରାୟଙ୍କ ଅନୁରୂପ ଚିତ୍ରିତ। କିନ୍ତୁ ରଘୁନାଥ ଦାସଙ୍କୁ ମାୟାଧର ମାନସିଂହ କିମ୍ବା ବୃନ୍ଦାବନ ଚନ୍ଦ୍ର ଆଚାର୍ଯ୍ୟ ସେମାନଙ୍କ ସାହିତ୍ୟର ଇତିହାସ ବହିରେ ଉଲ୍ଲେଖ କରିନାହାନ୍ତି ବୋଲି ନିତ୍ୟାନନ୍ଦ କ୍ଷୋଭ ପ୍ରକାଶ କରିଛନ୍ତି। ଓଡ଼ିଆ କବିତାରେ ସବୁଜ ଓ ପ୍ରଗତିବାଦୀ କାବ୍ୟ ଚେତନାର ସମସାମୟିକ ମିଶ୍ରଣ ଭାବେ କୁଞ୍ଜବିହାରୀ ଦାଶ, ବିନୋଦଚନ୍ଦ୍ର ନାୟକ, ଜ୍ଞାନୀନ୍ଦ୍ର ବର୍ମ୍ମା, ପ୍ରାଣକୃଷ୍ଣ ସାମଲ, ହରେକୃଷ୍ଣ ମହତାବ ଓ ବିଦ୍ୟୁତ୍‌ପ୍ରଭା ଦେବୀଙ୍କୁ ବିଶେଷ ଚର୍ଚ୍ଚା କରିଛନ୍ତି। ମନମୋହନ ମିଶ୍ରଙ୍କ କାବ୍ୟ ଚେତନାର ଚର୍ଚ୍ଚାକରି ତାଙ୍କ ଭିତରେ ଥିବା ଉଗ୍ର-ବିପ୍ଳବୀ ବ୍ୟକ୍ତିତ୍ୱକୁ ନିତ୍ୟାନନ୍ଦ ଠାବ କରିଛନ୍ତି। ଉଦ୍ଧୃତଟିଏ : "ଲେଖକ ସାମାଜିକ ଚିନ୍ତନରେ ଓ ରାଜନୀତିକ ମତବାଦରେ ଅତ୍ୟନ୍ତ ଉଗ୍ରପନ୍ଥୀ। ତେଣୁ ତାଙ୍କ କବିତାରେ ସାମାଜିକ ଓ ଆର୍ଥନୀତିକ ଏହି ବୈଷମ୍ୟର ଶେଷ ସମାଧାନ ରୂପେ ରକ୍ତାକ୍ତ ଯୁଦ୍ଧ ଓ ଗୋଳାବନ୍ଧୁକର ଆହ୍ୱାନ ଅତ୍ୟନ୍ତ ତାତ୍ପର୍ଯ୍ୟପୂର୍ଣ୍ଣ। ଅହିଂସ ସଂଗ୍ରାମ ମାଧ୍ୟମରେ ଗାନ୍ଧୀ ସ୍ୱାଧୀନତା ଆଣିଥିଲେ ବି ସାମାଜିକ ନ୍ୟାୟତନ୍ତ୍ର ଓ ଆର୍ଥନୀତିକ ସାମ୍ୟ ପ୍ରତିଷ୍ଠାପାଇଁ ବନ୍ଧୁକ ହିଁ କବିଙ୍କ ମତରେ ଅସ୍ତ୍ର ଭାବରେ ଗୃହୀତ।"(୧୯୭୬: ପୃ-୩୦୪)

ନିତ୍ୟାନନ୍ଦ କବି ବିନୋଦ ନାୟକଙ୍କ କାବ୍ୟଚେତନାର ବିକାଶ ଓ ଉତ୍କର୍ଷ ସଂପର୍କରେ ଅଭିମତ ଏହିପରି "ତାଙ୍କ କାବ୍ୟସ୍ୱର ଯେତିକି ରୋମାଣ୍ଟିକ, ସେତିକି ବାସ୍ତବବାଦୀ; ସେତିକି ଗ୍ରାମ୍ୟ, ସେତିକି ସହରୀ ଓ ଅଭିଜାତ; ଯେତିକି ଆତ୍ମମଗ୍ନ, ସେତିକି ବସ୍ତୁବାଦୀ; ସେତିକି ଆହରଣ ସର୍ବସ୍ୱ, ସେତିକି ମୌଳିକ; ଯେତିକି ଆତ୍ମମଗ୍ନ, ଯେତିକି

ରୂପକଥାକୁ ଆଶ୍ରୟ କରି ସଂଗଠିତ, ସେତିକି ଆଧୁନିକ ଜୀବନର ସ୍ୱର ଓ ସ୍ୱାକ୍ଷରରେ ଭାସ୍ୱର ମଧ୍ୟ। ଏପରିକି ଆଙ୍ଗିକରେ ମଧ୍ୟ ତାଙ୍କ କବିତା ଯେତିକି ଗୀତିମୁଖର, ସେତିକି ଗଦ୍ୟାତ୍ମକ; ସେତିକି ବାକ୍‌ରୀତି ପ୍ରଧାନ, ସେତିକି ମୁକ୍ତ ଓ ସ୍ୱଚ୍ଛନ୍ଦ। ଶ୍ରୀ ନାୟକ ନିର୍ଦ୍ଦିଷ୍ଟ ଭାବେ କୌଣସି ବାଦର ଅନୁସରଣ ନ କରିଥିଲେ ମଧ୍ୟ ସମସ୍ତ ବାଦପାଇଁ ତାଙ୍କ କବିତା ଯେତିକି ଆଧୁନିକ, ସେତିକି ମଧ୍ୟ ପାରମ୍ପାରିକ।" (୧୯୭୬: ପୃ ୩୭୨) ସାମାଜିକ ପୃଷ୍ଠଭୂମି ଓ ବ୍ୟକ୍ତିଗତ **ଜୀବନ ମନନ** ପରିପ୍ରେକ୍ଷୀରେ ନିତ୍ୟାନନ୍ଦ ବିଦ୍ୟୁତପ୍ରଭାଙ୍କୁ ବିଶେଷ ମୂଲ୍ୟାୟନ କରନ୍ତି। ଅଭିମତଟି ନିମ୍ନରେ : 'ସମସାମୟିକ କବିତାର ପ୍ରୟୋଗବାଦୀ ପରୀକ୍ଷାନିରୀକ୍ଷାରୁ ନିଜକୁ ନିରାପଦ ଦୂରତାରେ ରଖି ତଥାପି କାବ୍ୟସ୍ୱରର ଆଡ଼ମ୍ବରହୀନ ଉଚ୍ଚାରଣରେ ଏହି ନାରୀ କବି ଆମ ମନ ଓ ହୃଦୟକୁ ଯେ ଦ୍ରବୀଭୂତ କରି ଯାଇଛନ୍ତି - ତାହା ପାଠକ ସ୍ମୃତିରେ ଆଉ ଏକ ନାରୀକବି କୁନ୍ତଳା କୁମାରୀଙ୍କ ଛବିକୁ ପ୍ରତିଭାତ କରେ। ଆତ୍ମିକ ଅନୁଭବରେ ଓ ଭଗବତ୍ ଅନୁଚିନ୍ତାରେ ଏ ଉଭୟ କବି ପ୍ରାୟ ସମାନ ଅନୁଭବ ଓ ଅଭିଳାଷ ପୋଷଣ କରିଯାଇଛନ୍ତି।"(୧୯୭୬ ପୃ : ୪୦୮)

ସ୍ୱରାଜ୍ୟ ଆନ୍ଦୋଳନ ପୃଷ୍ଠଭୂମିରେ ଗାନ୍ଧୀ-ଗୋପବନ୍ଧୁ ଓ ମଧୁବାବୁଙ୍କ ଭୂମିକା ଏବଂ ଭାରତର ସ୍ୱାଧୀନତା ସଂଗ୍ରାମ ବିଷୟକ ଚର୍ଚ୍ଚା ବେଶ୍ ସାରଗର୍ଭକ। ସମୀକ୍ଷା ବା ସମାଲୋଚନା କିପରି ପ୍ରଶ୍ନ ଓ ପ୍ରତିପ୍ରଶ୍ନ ସବଳିତ ହୋଇ ତା' ଭିତରେ ବହୁ ପ୍ରତିପ୍ରଶ୍ନ, ଉତ୍ତର ଓ ଜିଜ୍ଞାସାବୋଧକୁ ଧରି ରଖେ, ସେପରି ଉପସ୍ଥାପନ ଓଡ଼ିଆ ସମୀକ୍ଷାଧାରାରେ ବ୍ୟତିକ୍ରମ ଏବଂ ବିରଳ। ଗୋପବନ୍ଧୁଙ୍କ 'ବନ୍ଦୀର ଆତ୍ମକଥା' ପ୍ରସଙ୍ଗରେ ସମାଲୋଚକୀୟ ଆତ୍ମନିମଜ୍ଜନର ଉଦାହାରଣଟିଏ ଏହିପରି -"ତେବେ କ'ଣ ସେ କାବ୍ୟ ଶପଥ? କ'ଣ ସେ ଅଭିମୁଖ୍ୟ ? ଖାଲି କ'ଣ ଓଡ଼ିଶାର ଦୁର୍ଗତି ଚିନ୍ତା ଓ ଓଡ଼ିଶାବସୀଙ୍କପାଇଁ ଭବିଷ୍ୟତ କର୍ମପନ୍ଥାର କେତୋଟି ଉଚ୍ଛ୍ୱସିତ ବକ୍ତବ୍ୟ? ଭାରତର ସ୍ୱାଧୀନତା ସଂଗ୍ରାମ ଓ ମହାତ୍ମା ଗାନ୍ଧୀଙ୍କ ଅସହଯୋଗ ଆନ୍ଦୋଳନକୁ ଆଗେଇ ନେବାର ନେତାସୁଲଭ ସାରଗର୍ଭକ ଅଭିଭାଷଣ? ସତ୍ୟ-ଅହିଂସା, ସାମ୍ୟ-ସଂସ୍କାର, ପରମ୍ପରା ଓ ବହୁଚେତନାରେ ଦୀକ୍ଷିତ ହେବାପାଇଁ ତତ୍‌କାଳୀନ ସମାଜ-ରାଜନୀତିକ ସ୍ୱର ସଂଚାର? xxx" (୧୯୭୬ ପୃ-୪୨୫-୪୨୬) ଏ ପ୍ରଶ୍ନ ଆହୁରି ଦୀର୍ଘ। ଏହାପରେ ସ୍ୱରାଜ୍ୟ ଆନ୍ଦୋଳନ ପରିପେକ୍ଷୀରେ ଗୋପବନ୍ଧୁଙ୍କ ସଂପର୍କରେ ବହୁ ନିର୍ଦ୍ଦିଷ୍ଟ ଅଭିମତ ରହିଛି। **ବନ୍ଦୀର ସ୍ୱଦେଶଚିନ୍ତା** ପରିପ୍ରେକ୍ଷୀରେ ଉଦାହରଣଟିଏ ଏହିପରି : "ଏ କବିତାର ମଳୟର ସ୍ୱଦେଶ ପରିକ୍ରମାରେ କବିର କେବଳ ରସିକତା ନୁହେଁ, କାବ୍ୟକଳାର ଚମତ୍କାର ସୌନ୍ଦର୍ଯ୍ୟବୋଧ ପ୍ରତିଷ୍ଠିତ ହୋଇଛି ଓ ବନ୍ଦୀର ସ୍ୱଦେଶଚିନ୍ତା କବିତାକୁ ଏକ କ୍ଲାସିକ ସୃଷ୍ଟିର ମର୍ଯ୍ୟାଦା ଦେଇଛି।" (୧୯୭୬ : ପୃ-୪୨୭) ସ୍ୱରାଜ୍ୟ ଆନ୍ଦୋଳନର କବିତା ପର୍ଯ୍ୟାୟରେ ବାଞ୍ଛାନିଧି ମହାନ୍ତି, ଜାତୀୟ କବି ବୀରକିଶୋର, ନିତ୍ୟାନନ୍ଦ ମହାପାତ୍ର ଓ ବାଞ୍ଛାନିଧି ଦାସ ବିଶେଷ ଚର୍ଚ୍ଚିତ। ନିତ୍ୟାନନ୍ଦଙ୍କ ସର୍ଜ୍ଜନଶୀଳ ସମାଲୋଚନାର ଉଦାହରଣ ନିତ୍ୟାନନ୍ଦଙ୍କ ମହାପାତ୍ରଙ୍କ କବିତା ପ୍ରସଙ୍ଗରେ ଲକ୍ଷ୍ୟ କରନ୍ତୁ : " 'ମରମ'ରୁ ପାଞ୍ଚଜନ୍ୟଙ୍କୁ ଆସିଲାବେଳେ ପାଠକ ଯେପରି

ସଂପୂର୍ଣ୍ଣ ଏକ ବିଚ୍ଛିନ୍ନ ଇଲାକାରେ ଆସି ପହଞ୍ଚିଯାଏ, ଯେଉଁଠି ବ୍ୟକ୍ତିଗତ ପ୍ରେମକାହାଣୀ ସଂପୂର୍ଣ୍ଣ ନିର୍ବାସିତ, ଅଥଚ ତାହା ଅଗଣିତ ସଂଗ୍ରାମୀ ଜନତାର ସାଧନା-ଦୀପ୍ତ ଆତ୍ମବଳିରେ ଏକ ପ୍ରଚଣ୍ଡ ଜାତିପ୍ରେମରେ ରୂପାନ୍ତରିତ ଓ ବିଶ୍ୱାସର ଅଗ୍ନିଶିଖାରେ ଦେଦୀପ୍ୟମାନ।" (୧୯୭୬: ପୃ-୪୩୪)

ଆଧୁନିକ ଓଡ଼ିଆ କବିତାର ବାମପନ୍ଥୀ ଚେତନାର ବିକାଶ - ୧୯୩୬-୪୭-୬୦ ପର୍ଯ୍ୟାୟରେ ଲକ୍ଷ୍ମୀଧର ନାୟକ ଓ ସୁନନ୍ଦ କରଙ୍କଠାରୁ ଆରମ୍ଭ କରି ମନୋଜ ଦାସ, କୃଷ୍ଣଚରଣ ବେହେରା, ରବୀନ୍ଦ୍ରନାଥ ସିଂହ (ରବିସିଂ), ବ୍ରଜନାଥ ରଥ ପ୍ରମୁଖ ବାରଜଣ କାବ୍ୟଶିଳ୍ପୀଙ୍କ ଅବଦାନ ଚିହ୍ନିତ ହୋଇଛି। ଏମାନଙ୍କଠାରୁ ଅର୍ଦ୍ଧାଧିକ କାବ୍ୟଶିଳ୍ପୀଙ୍କ ପରବର୍ତ୍ତୀ ବିକାଶ ବେଶ୍ ସିଦ୍ଧିପ୍ରଦ। ଏହି ପର୍ବରେ ବିଶେଷ ଚର୍ଚ୍ଚିତ ରବିସିଂଙ୍କ ସଂପର୍କରେ ସମାଲୋଚକଙ୍କର ଅଭିମତ ଏହିପରି : "xxx ଆଧୁନିକ ଓଡ଼ିଆ କବିତା ଉତ୍ତର-ପଚାଶ କାଳରେ ନିଜର ବାମପନ୍ଥୀ ଉଗ୍ର ବୈପ୍ଳବିକ ଚେତନାକୁ ପରିହାର କରିବାବେଳେ ଶ୍ରୀ ରବୀନ୍ଦ୍ରନାଥ ସିଂହ ଅମାପ ବିଶ୍ୱାସ ଓ ଅକ୍ଲାଂତ ଧୈର୍ଯ୍ୟ ସହ ସେହି ନିବାତମୁଖୀ ପ୍ରଦୀପରେ ବିଶ୍ୱାସର ତୈଳଢ଼ାଳି ତାହାକୁ ଶିଖାୟିତ କରି ଚାଲିଛନ୍ତି ଏବଂ ଏଇ ସ୍ୱର ସହିତ ସ୍ୱର ମିଳେଇଛନ୍ତି ଶ୍ରୀ ବ୍ରଜନାଥ ରଥ ଓ ଉତ୍ତର ଷାଠିଏର ଆଉ କେତେ ଜଣ କବି।" (୧୯୭୬: ପୃ-୪୬୮)

'ସବୁଜରୁ ସାଂପ୍ରତିକ'ରେ ନିତ୍ୟାନନ୍ଦଙ୍କ ୧୯୬୦ ପରବର୍ତ୍ତୀ (୧୯୬୦-୬୭) କାବ୍ୟଧାରା ସଂପର୍କିତ ଚର୍ଚ୍ଚା ଅପୂର୍ଣ୍ଣାଙ୍ଗ ହେବା ସ୍ୱାଭାବିକ। କାରଣ ଏଥିରେ ଚର୍ଚ୍ଚିତ କାବ୍ୟଶିଳ୍ପୀମାନଙ୍କର ଅଳ୍ପ କେଇବର୍ଷର ସୃଷ୍ଟି ସ୍ୱାକ୍ଷରକୁ ବିଚାରକୁ ନିଆଯାଇଛି। ତେବେ ଏ ପର୍ଯ୍ୟାନ୍ତରେ ଗୁରୁପ୍ରସାଦ ମହାନ୍ତି, ବେଣୁଧର ରାଉତ, ଚିନ୍ତାମଣି ବେହେରାଙ୍କ ସହିତ ଜାନକୀବଲ୍ଲଭ ମହାନ୍ତି, ସତ୍ୟାନନ୍ଦ ଚଂପତିରାୟ, ଦୁର୍ଗମାଧବ ମିଶ୍ର, ଦୁର୍ଗାଚରଣ ପରିଡ଼ା, ବିନୋଦ ରାଉତରାୟ ପ୍ରମୁଖ ଚର୍ଚ୍ଚିତ ହୋଇଛନ୍ତି। ଗୁରୁପ୍ରସାଦ, ବେଣୁଧରଙ୍କ ସିଦ୍ଧି ପରବର୍ତ୍ତୀ ପର୍ଯ୍ୟାୟରେ ଏତେବେଶି ସାମର୍ଥ୍ୟଯୁକ୍ତ ହୋଇ ନଥିବା ସ୍ଥଳେ, ମ୍ଳାନିତ ଭାନୁଜୀ ରାଓ, ରମାକାନ୍ତ ରଥ ଓ ସୀତାକାନ୍ତ ମହାପାତ୍ର ଅଧିକ ସିଦ୍ଧିର ଅଧିକାରୀ ହୋଇଛନ୍ତି। ଓଡ଼ିଆ କବିତାର ପଟପରିବର୍ତ୍ତନ ଏ ପର୍ଯ୍ୟାୟରେ ଗୁରୁତ୍ୱପୂର୍ଣ୍ଣ। ନିତ୍ୟାନନ୍ଦ କହନ୍ତି "ଦ୍ୱିତୀୟ ପୃଥିବୀ ଯୁଦ୍ଧ ପରେପରେ ଆସିଥିବା ଅସ୍ତିତ୍ୱବାଦୀ ଭାବଧାରା ଓ ଅତିବାସ୍ତବବାଦୀ ଆଭିମୁଖ୍ୟ ଯୁଦ୍ଧ ପରବର୍ତ୍ତୀ ଓଡ଼ିଆ କବିତାକୁ କ୍ରମେ ପରମ୍ପରାରୁ କକ୍ଷଚ୍ୟୁତ କରିଦେଇଛି, ଏହା ନିଃସନ୍ଦେହ।" (୧୯୭୬: ପୃ-୪୭୮) ଏ ପର୍ଯ୍ୟାୟରେ ବିଶେଷ ଚର୍ଚ୍ଚିତ ଗୁରୁପ୍ରସାଦଙ୍କ 'କାଳପୁରୁଷ' ସହ ଟି.ଏସ. ଏଲିଅଟଙ୍କ The Waste Land ର ସାମ୍ୟ-ବୈଷମ୍ୟ ଓ ତାହାର ପ୍ରଭାବ-ପ୍ରତିଫଳନ ଖୋଜାଯାଇଛି। ଏହି ପରିପ୍ରେକ୍ଷୀରେ କବିଙ୍କ ଉତ୍କର୍ଷ ପ୍ରତିପାଦନ ସହିତ ତାଙ୍କ ପ୍ରତି ସମାଲୋଚକ ଯତୀନ୍ଦ୍ରମୋହନ ମହାନ୍ତିଙ୍କ ସହ କତିପୟ ସମୀକ୍ଷକଙ୍କ ଏକଦେଶଦର୍ଶୀ ଦୃଷ୍ଟିକୋଣ ଓ ଅତିଶୟ ଆସକ୍ତିକୁ ସମାଲୋଚନା କରିଛନ୍ତି। ଉଦାହରଣଟିଏ ନିମ୍ନରେ : 'ପୁନଶ୍ଚ ପଣ୍ଡିତ ନୀଳକଣ୍ଠଙ୍କ ପରେ ଏପରି ଉତ୍କୃଷ୍ଟ ଓଡ଼ିଆ କବିତା ଆଉ ପ୍ରକାଶ ପାଇନାହିଁ ବୋଲି 'ପ୍ରଜ୍ଞା'ର ସଂପାଦକୀୟ ମନ୍ତବ୍ୟରେ ଓଡ଼ିଆ କବିତାର ୧୯୧୯

('କୋଣାର୍କେ' ରଚନାକାଳ) ଠାରୁ ୧୯୬୦ 'କାଳପୁରୁଷ'ର ପ୍ରକାଶ ସମୟ-ଏହି ୪୦ ବର୍ଷର ଗତିଶୀଳତାକୁ ସ୍ଥାଣୁ ଓ ମୂଲ୍ୟହୀନ ବୋଲି ପରୋକ୍ଷରେ ପ୍ରତିପାଦିତ କରାଯାଇଛି। ଏପରି ଆରୋପିତ ମନ୍ତବ୍ୟରେ ଆଧୁନିକ ଓଡ଼ିଆ କବିତାର ବିକାଶ ଓ ଭିନ୍ନଭିନ୍ନ ସୋପାନ ଅତିକ୍ରମର ସମସ୍ତ ଉଦ୍ୟମ ତଥା ସାଧନକୁ ଅସ୍ୱୀକାର କରାଯାଇଛି।" (୧୯୭୬:ପୃ-୪୯୩) ଏକଦେଶଦର୍ଶୀ ଯତୀନ୍ଦ୍ର ମହାନ୍ତିଙ୍କ ଏ ଆଭିମୁଖ୍ୟକୁ ସମାଲୋଚନା କରି ନିମ୍ନମତେ ତା'ର ଶୋଧନ କରାଯାଇଛି - "ତେଣୁ ଓଡ଼ିଆ କବିତାରେ ଶ୍ରୀ ମହାନ୍ତି (ଗୁରୁପ୍ରସାଦ)ଙ୍କୁ ଶ୍ରେଷ୍ଠ ବୋଲି ନକହି ଜଣେ ଅନ୍ୟତମ ବିଶିଷ୍ଟ କବିଭାବେ ନାମିତ କରାଯିବା ବରଂ ସଂଗତ ହେବ xxx ।" (୧୯୭୬: ପୃ-୪୯୩)

ବିଂଶ ଶତାବ୍ଦୀର ଆଦ୍ୟପାଦରୁ ଷଷ୍ଠ ଦଶକ ଯାଏ ଓଡ଼ିଆ କବିତାର ବିକାଶ, ବିବର୍ତ୍ତନ, ପରୀକ୍ଷା-ପ୍ରୟୋଗ ସହିତ ସ୍ୱରୂପକୁ 'ସବୁଜରୁ ସଂପ୍ରତିକ'ଯଥାର୍ଥଭାବେ ଆଲୋକିତ କରେ। ଓଡ଼ିଆ କବିତାକୁ ବିଭିନ୍ନ ବର୍ଣ୍ଣାଳୀରେ ଅଭିଷିକ୍ତ କରିଥିବା କାବ୍ୟଶିଳ୍ପୀଙ୍କୁ ପାଶ୍ଚାତ୍ୟ ତଥା ପ୍ରାଚ୍ୟ କାବ୍ୟଧାରା ସହ ତୁଳନୀୟ ଭାବେ ପରଖି, କବିତାରେ ଇତିହାସରେ ସେମାନଙ୍କ ବୈୟକ୍ତିକ ଅବଦାନକୁ ନିତ୍ୟାନନ୍ଦ ନିରୂପଣ କରିଛନ୍ତି। ତାଙ୍କ ସମୀକ୍ଷଣରେ ବିଭିନ୍ନ ସମୀକ୍ଷାଧାରାର ସମନ୍ୱୟ ଘଟିଛି। ସମୀକ୍ଷଣର ଭାଷା ପ୍ରାଞ୍ଜଳ, କ୍ଷେତ୍ର ବିଶେଷରେ ସର୍ଜନାତ୍ମକ ଓ ବୌଦ୍ଧିକ। ସମୀକ୍ଷକଙ୍କର ବହୁ ନିର୍ଣ୍ଣାୟାତ୍ମକ ମତ ଓ ଉଦ୍ଧୃତିଯୋଗ୍ୟ ବକ୍ତବ୍ୟ ପ୍ରତିଚର୍ଚ୍ଚା ଓ ପରବର୍ତ୍ତୀ ମୂଲ୍ୟ ଆକଳନପାଇଁ କ୍ଷେତ୍ର ପ୍ରସ୍ତୁତ କରେ।

ଏହି ଚର୍ଚ୍ଚାର ପରବର୍ତ୍ତୀ ପର୍ଯ୍ୟାୟ 'ସତୁରୀରୁ ସହସ୍ରାବ୍ଦୀ' (୨୦୦୩)। 'ସବୁଜରୁ ସାମ୍ପ୍ରତିକ'ରେ ଯାହା ସାମ୍ପ୍ରତିକ ଥିଲା, ତାହା ଷଷ୍ଠ ଓ ସପ୍ତମ ଦଶନ୍ଧିର ପ୍ରାରମ୍ଭ। 'ସତୁରୀରୁ ସହସ୍ରାବ୍ଦୀ' ତାର ପରବର୍ତ୍ତୀ ପ୍ରଭାବ ଓ ପାହାଚ। ଏହାର ବନ୍ଧନୀରେ ସୂଚୀତ ସମୟ ଉତ୍ତର ସତୁରୀ। ଏହା ଉତ୍ତରସତୁରୀ କାବ୍ୟଚେତନା : ୧୯୭୦ ରୁ ୨୦୦୧ର ନୂତନ ଶତାବ୍ଦୀ ବା ସହସ୍ରାବ୍ଦୀ। ଏ ସୁବୃହତ୍ତ ଗ୍ରନ୍ଥର ପ୍ରଥମ ଭାଗ ଦଶଜଣ କାବ୍ୟଶିଳ୍ପୀଙ୍କ ମୂଲ୍ୟାୟନ। ଏହା ପ୍ରକୃତ ପକ୍ଷରେ ଦଶଗୋଟି ସନ୍ଦର୍ଭ। ତାର ପର ପର୍ଯ୍ୟାୟର ପନ୍ଦର ଜଣ କାବ୍ୟଶିଳ୍ପୀଙ୍କ ଅନୁରୂପ ଧାରାରେ ମୂଲ୍ୟାୟନ କରାଯିବ ବୋଲି ନିତ୍ୟାନନ୍ଦ ସୂଚାଇଛନ୍ତି। ସତୁରୀରୁ ସହସ୍ରାବ୍ଦୀର ମୂଲ୍ୟାୟନ ପୂର୍ବବତ୍ ପତ୍ରପତ୍ରିକାର ମସିହା ମାସଭିତ୍ତିକ ନୁହେଁ। ଏହା କାଳାନୁକ୍ରମିକ ଭାବେ ପ୍ରକାଶିତ କବିମାନଙ୍କ କବିତା ଗ୍ରନ୍ଥରେ ସ୍ଥାନିତ ଏକକ କବିତାଗୁଡ଼ିକର ପ୍ରାୟୋଗିକ ମୂଲ୍ୟାୟନ ଭିତ୍ତିରେ ପ୍ରସ୍ତୁତ। ଏହା ବି ଏକ ଶୃଙ୍ଖଳା, ପଦ୍ଧତି ଓ ଧାରା। ଏହି ଗ୍ରନ୍ଥରେ ୧୦୦୦ରୁ ଊର୍ଦ୍ଧ ଏକକ କବିତାର ସୁଦୀର୍ଘ ଓ କ୍ଷେତ୍ର ବିଶେଷରେ ସଂକ୍ଷିପ୍ତ ମୂଲ୍ୟାୟନ କରାଯାଇଛି। କବିତା ଗ୍ରନ୍ଥର ସାମଗ୍ରିକ ଆବେଦନ ଓ ସୌନ୍ଦର୍ଯ୍ୟବୋଧ ଆଧାରରେ କବିଙ୍କ ବ୍ୟକ୍ତିଗତ ବିବର୍ତ୍ତନ ଓ ଉତ୍ତରଣ , ସର୍ବୋପରି ଅବଦାନକୁ ଚିହ୍ନିତ କରାଯାଇଛି। ଏଥିରେ ମଧ୍ୟ ତୁଳନାତ୍ମକ ସମୀକ୍ଷା ଦୃଷ୍ଟି ଅନୁସୃତ। କବିତାର ଅବବୋଧଗତ ଜଟିଳତାକୁ ପ୍ରାଞ୍ଜଳ କରିବା ପ୍ରଯତ୍ନରେ ସମାଲୋଚକ କାବ୍ୟସ୍ରଷ୍ଟାଙ୍କ ସହ ବ୍ୟକ୍ତିଗତ ଆଳାପ ଆଲୋଚନା କରିଛନ୍ତି। ଅବଶ୍ୟ କାବ୍ୟସ୍ରଷ୍ଟାଙ୍କ ମତ ସହ ନିତ୍ୟାନନ୍ଦ ସବୁବେଳେ ସହମତ

ହୋଇପାରନ୍ତି ନାହାନ୍ତି ବୋଲି ସୂଚାଇଛନ୍ତି। କାବ୍ୟସ୍ୱରର ବୈଶିଷ୍ଟ୍ୟ ଓ ବିଶ୍ଳେଷଣ, ଦୁର୍ବଳତାକୁ ଆଲୋକିତ କରି ଓଡ଼ିଆ କବିତା ଧାରାରେ ସ୍ଥାନ ନିର୍ଣ୍ଣୟ ପ୍ରତି ଆଲୋଚକ ପ୍ରୟାସ କରିଛନ୍ତି। 'ସବୁଜରୁ ସାମ୍ପ୍ରତିକ'ରେ ଏହି ସ୍ରଷ୍ଟାମାନଙ୍କ ସାଧନାର ଆଦ୍ୟ ପର୍ଯ୍ୟାୟ ଚର୍ଚ୍ଚିତ ହୋଇଥିବା ସ୍ଥଳେ, ଏଠାରେ ପରିଣତି ପର୍ଯ୍ୟାୟ ଓ ସ୍ଥଳବିଶେଷରେ ଅନ୍ତିମ ପର୍ଯ୍ୟାୟ, ସର୍ବୋପରି ସାମଗ୍ରିକ ଅବଦାନ ଚର୍ଚ୍ଚିତ ହୋଇଛି। ଏହି ପୂର୍ଣ୍ଣାଙ୍ଗ ମୂଲ୍ୟାୟନପାଇଁ ଅଭିଳାଷ ଅବଶ୍ୟ କ୍ରିୟାଶୀଳ କବିଙ୍କୁ ନେଇ ସମ୍ଭବ ନୁହେଁ। ୨୦୦୦ ପରେ ରମାକାନ୍ତ, ସୀତାକାନ୍ତ, ଜଗନ୍ନାଥ ପ୍ରସାଦ, ପ୍ରତିଭା କ୍ରିୟାଶୀଳ ରହିଥିବା ସ୍ଥଳେ ରଘୁନାଥ ଦାସଙ୍କ ୧୯୮୪, ଭାନୁଜୀ ରାଓଙ୍କ (୨୦୦୧), ସଚ୍ଚିଦାନନ୍ଦ ରାୟଙ୍କ (୨୦୦୪), ଗୁରୁପ୍ରସାଦଙ୍କ (୨୦୦୪) ଦେହାନ୍ତ ହୋଇଛି। ୨୦୦୮ରେ ଦୀପକ ମିଶ୍ର ଏବଂ ୨୦୧୪ରେ ବ୍ରଜନାଥ ରଥ ଦିବଂଗତ ହୋଇଯାଇଛନ୍ତି। ପୁସ୍ତକର ଭୂମିକାରେ ଏଇ ମୂଲ୍ୟାୟନର ପୃଷ୍ଠଭୂମି ସଂପର୍କରେ ସମାଲୋଚକ ସାମ୍ନା କରିଥିବା ସମସ୍ୟା ସଂପର୍କରେ ଯେଉଁ ବକ୍ତବ୍ୟ ରଖନ୍ତି, ତାହା ନିମ୍ନମତେ "ଏହି ସମୟର ବିଶିଷ୍ଟ କବିମାନଙ୍କ ଭାବପ୍ରସ୍ଥକୁ ଅବଧାରଣାରେ ଆଣିଲାବେଳେ ଅନେକ ବିରୋଧାଭାସର ସମ୍ମୁଖୀନ ହେବାକୁ ହୋଇଛି। କାରଣ ବହୁ କବିଙ୍କର ବହିରାବରଣରେଏତେ ସଂହତିହୀନତା ଓ ଉଦଭଟତା ରହିଛି, ଯାହାର ଅଭ୍ୟନ୍ତରକୁ ପ୍ରବେଶ ଅଧିକାରପାଇଁ ସ୍ରଷ୍ଟା ବ୍ୟତୀତ ଆଉ କାହାର ଅଧିକାର ନ ଥିବା ପରି ମନେହୋଇଛି। କବିତାର ଗ୍ରହଣଯୋଗ୍ୟ ଅର୍ଥ ପାଇବାପାଇଁ କବିମାନେ କୌଣସି ସୂଚନା (ମନ୍ତବ୍ୟର) ନିଜ କବିତାରେ ପ୍ରାୟ ଦେଇନଥାନ୍ତି। ତେଣୁ ଅବବୋଧର ବିବିଧତା ସମାଲୋଚକ ଓ ପାଠକଙ୍କୁ ପ୍ରାୟ ବିବ୍ରତ କରିଥାଏ।"

ପୂର୍ବରୁ ସୂଚିତ ଯେ, ନିତ୍ୟାନନ୍ଦ କବି ସଚ୍ଚିଦାନନ୍ଦ ରାଉତାରୟଙ୍କ ଉପରେ ଶତାଧିକ ପୃଷ୍ଠାର ଏକ ନିର୍ଣ୍ଣୟାତ୍ମକ ପୂର୍ଣ୍ଣାଙ୍ଗ ମୂଲ୍ୟାୟନ କରିଛନ୍ତି। ଏଥିରେ କବିଙ୍କ ୧୯୭୦ ପରବର୍ତ୍ତୀ ତିନି ଦଶନ୍ଧିର କାବ୍ୟପର୍ବର ବିଶେଷତାକୁ ଚିହ୍ନିତ କଲାବେଳେ, ତାଙ୍କ ଚେତନାର ଅବରୋହ ଓ ଅବକ୍ଷୟକୁ ଦର୍ଶାଇଛନ୍ତି। ଏହି ପ୍ରକ୍ରିୟା ଭିତରେ ବି ତାଙ୍କ କାବ୍ୟିକ ସ୍ଫୁଲିଙ୍ଗ ବା ଝଲକର ତୀବ୍ରତା ତଥା ମୌଳିକତାକୁ ଆବିଷ୍କାର କରିବାର ବିଶେଷ ପ୍ରଯତ୍ନ କରିଛନ୍ତି। ଏଥିରେ କବିଙ୍କର ଆଦ୍ୟ ଚାରିଦଶନ୍ଧିର କବିତାଧାରାକୁ ଉତ୍ତର-ସତୁରୀ କାଳର ତିନିଦଶନ୍ଧିର ଧାରା ସହ ତୁଳନା କରିବାର ଅବକାଶଟିଏ ମଧ୍ୟ ସୃଷ୍ଟି ହୋଇଛି। ବହୁ ଉଦ୍ଧୃତିଯୋଗ୍ୟ ଓ ନିର୍ଣ୍ଣୟାତ୍ମକ ମତରୁ ଦୁଇଟି ଉଦ୍ଧୃତିର ଅବତାରଣା କରେଁ। "ଏହି ସଂକଳନ (କବିତା ୧୯୭୧) ସ୍ଥିତ **ନାଗଭୂଷଣ, ରୋସନରା, ମୁଜିବୁର ରହମାନ, ୟାହିଆ ଖାଁ** ଆଦି କବିତା ଏହି ପ୍ରସଙ୍ଗରେ ପଠିତବ୍ୟ। ଏ ସବୁ କବିତା, ମନେହୁଏ, ଯେପରି ସବୁଯୁଗର ଓ ସବୁକାଳର ମଣିଷଆତ୍ମାର ବ୍ୟଥା ଓ ବେଦନାର ହାହାକାରର ପ୍ରତିନିଧି। ମାନବାତ୍ମାର ମୁକ୍ତିପାଇଁ ଏଇ କେତୋଟି କବିତାର ସାର୍ବଜନୀନ ଆକୁତି ଓ ଆବେଦନ ଅତି ସାର୍ଥକଭାବେ କାଳୋତ୍ତୀର୍ଣ୍ଣ ଓ ରସୋତ୍ତୀର୍ଣ୍ଣ।"(୨୦୦୩ : ପୃ : ୧୦) । କବିତା ୧୯୯୦ ପରିପେକ୍ଷୀରେ "xxx ଉତ୍ତର - ସତୁରୀରେ ରଚିତ ତାଙ୍କର ସମସ୍ତ କବିତା ସଂକଳନ ମଧ୍ୟରେ

'କବିତା୧୯୯୦' ସବୁଠାରୁ ସିଦ୍ଧିପ୍ରଦ ଏକ କାବ୍ୟ ସଂକଳନ, ଯହିଁରେ ସଚ୍ଚିବାବୁଙ୍କ ପ୍ରାକ୍‌୧୯୬୨ କାବ୍ୟ ଚେତନାର ବହୁ ସ୍ୱର ଓ ସଂବେଦନାକୁ ଛୁଇଁ ହୁଏ। xxx 'କବିତା ୧୯୯୦'ରେ ପୁଣିଥରେ ଏଇ ନିବାତମୁଖୀ ହଠାତ୍ ଝଲକରେ ଆଲୋକିତ ହୋଇଉଠିଛି ଓ ପରିପାର୍ଶ୍ୱକୁ ଆଲୋକ ବିକିରଣ କରିଛି ମଧ୍ୟ। ତାଙ୍କ କବିତାରେ ଏଇ ସମୟରେ ପୁଣି ଫେରିଆସିଛି ସେଇ ସାମିଜିକ ପ୍ରତିବଦ୍ଧତା xxx " (୨୦୦୩: ପୃ : ୩୭-୩୮)। କବିଙ୍କ କବିତା ୧୯୭୧, କବିତା ୧୯୭୪, କବିତା ୧୯୮୩, କବିତା ୧୯୮୫, କବିତା ୧୯୯୦, କବିତା ୧୯୯୭, ପ୍ରଭୃତି ସଂକଳନର ପ୍ରାୟ ଦୁଇଶତାଧିକ କବିତାର ବିଶେଷତ୍ୱ ଓ ବିଫଳତାକୁ ଶ୍ରଦ୍ଧାର ସହିତ ବିଶ୍ଲେଷଣ କରାଯାଇଛି।

**'ଗୁରୁପ୍ରସାଦ : ବାସ୍ତବତା ଓ ବିପର୍ଯ୍ୟୟ'** ଶୀର୍ଷକରେ କବି ଗୁରୁପ୍ରସାଦ ମହାନ୍ତିଙ୍କ 'ସମୁଦ୍ରସ୍ନାନ' ପରବର୍ତ୍ତୀ 'ଆଶ୍ଚର୍ଯ୍ୟ ଅଭିସାର' (୧୯୮୫) ତଥା ତତପରବର୍ତ୍ତୀ କବିତା ସମୀକ୍ଷକଙ୍କ ଆକଳନ ପରିସରକୁ ଆସିଛି। ସମକାଳୀନ ପୃଷ୍ଠଭୂମି ତଥା ତାଙ୍କର ପୂର୍ବ କବିତା ଆଧାରରେ ଉତ୍ତର - ସତୁରୀର କବିତାକୁ ବିଶ୍ଲେଷଣ କରାଯାଇଛି। ବହୁ ନିର୍ଣ୍ଣୟାତ୍ମକ ମତ ଓ ଉଦ୍ଧୃତିଯୋଗୀ ଅଭିମତରୁ ଦୁଇଟି ଉଦ୍ଧାର କରାଯାଉ। "ସମଗ୍ର 'ଆଶ୍ଚର୍ଯ୍ୟ ଅଭିସାର'ରେ ଏହିପରି ନିଃସଙ୍ଗତାର ମାନସିକ ଚିତ୍ର ସହିତ କବିମାନଙ୍କର ସ୍ମୃତି, ସଂପର୍କ. ଋତୁଚିତ୍ର, ସମୟ, ମୃତ୍ୟୁ, ତତକାଳୀନତା ସହିତ ଅଭିସାର ରଚନା କରେ - ଏବଂ ଏହି ବିବିଧତା ହିଁ ତାଙ୍କ କବିତାର ଆଶ୍ଚର୍ଯ୍ୟ ବା ବିସ୍ମୟ ହୋଇପାରେ। ତେବେ ଆଶ୍ୱାସନାର ବିଷୟ ଏହି ଯେ, କବିତାଗୁଡିକ ପୂର୍ବର ବୌଦ୍ଧିକ ଚଞ୍ଚଳତା ଓ ମାଳମାଳ ଅନୁଷଙ୍ଗ ପରିହାର କରି ଅଧିକ ସ୍ୱଷ୍ଟ ଓ ଅକପଟ ହେବାକୁ ଚେଷ୍ଟାକରିଛି। (୨୦୦୩: ପୃ : ୪୭) "ବହୁ ବାସ୍ତବତାକୁ ଛୁଇଁ କବିଙ୍କ ଏ ସମୟର କାବ୍ୟଚେତନାର ସଂଚାର ପଥ ବିନିର୍ମିତ ହୋଇଥିଲେ ବି ପ୍ରାକ୍‌ସତୁରୀ କବିତାର ଓଜ ଓ ଦୀପ୍ତି ଯେ ହରେଇ ବସିଛି, ଏ କଥା ପାଠକମାତ୍ରେ ଅନୁଭବ କରିବେ। (୨୦୦୩: ପୃ : ୬୦)

ଉତ୍ତର - ସତୁରି କାବ୍ୟଚେତନା ପର୍ଯ୍ୟାୟରେ **'ନଦୀ, ନାରୀ, ନକ୍ଷତ୍ରର କବି ଭାନୁଜୀ ରାଓ'** ଶୀର୍ଷକ ବେଶ୍ ଅର୍ଥଦ୍ୟୋତକ ଏବଂ ଭାନୁଜୀ ରାଓଙ୍କ କବିତାର ଆତ୍ମିକ ଦିଗନ୍ତକୁ ଚିହ୍ନାଇବାପାଇଁ ସମର୍ଥ। ପୂର୍ବରୁ ' ନୂତନ କବିତା' ଓ ବିଷାଦ ଏକ ଋତୁ' (୧୯୭୩) ର କତିପୟ କବିତା ଆଧାରରେ ଚର୍ଚ୍ଚିତ କବି ଭାନୁଜୀ ଏ ପର୍ଯ୍ୟାୟରେ ପୁନର୍ବାର 'ବିଷାଦ ଏକ ଋତୁ' ର ପୃଷ୍ଠଭୂମିରେ ଚର୍ଚ୍ଚାକୁ ଆସିଛନ୍ତି। ତାଙ୍କର 'ନଈ ଆରପାରି' (୧୯୮୬) ପ୍ରକାଶନ ଠାରୁ ଦେଢଦଶନ୍ଧିର ଅବଧିରେ ଦଶଗୋଟି କବିତା ସଂକଳନର ଯେଉଁ ବିସ୍ମୟୋଦ୍ଦୀପକ ସୃଜନଶୀଳତା ପରିଲକ୍ଷିତ ହୁଏ, ନିତ୍ୟାନନ୍ଦ ତା'ର ବୌଶିଷ୍ଟ୍ୟ ଓ ଅନନ୍ୟତାକୁ ଚିହ୍ନିତ କରିଛନ୍ତି। ରୋମାଣ୍ଟିକ ବାସ୍ତବବାଦୀ ଦୃଷ୍ଟିଭଙ୍ଗୀ, ଅତିବାସ୍ତବବାଦୀ ଆଭିମୁଖ୍ୟ ସହ ନିଃସଙ୍ଗପଣ, ମୃତ୍ୟୁବୋଧ, ସ୍ମୃତି ଓ ଅତୀତ ବିଧୁରତା, ଜହ୍ନ ଓ ନକ୍ଷତ୍ର ଆଦି ତାଙ୍କ ଭାବନିର୍ଯ୍ୟାସ ଭାବେ ପରିଗଣିତ। ବହୁ ଏକକ କବିତା ଓ ସଂକଳନ ସଂପର୍କରେ ସମୀକ୍ଷକଙ୍କର ବହୁ ଅଭିମତ ରହିଛି। ଅନ୍ତିମ ପର୍ଯ୍ୟାୟରେ ମତଟି ଏହିପରି : "ନାରୀ, ନଦୀ

ଓ ନକ୍ଷତ୍ର ହିଁ ତାଙ୍କ କବିତାର ସଂଚାର ପଥ। ସମୟର ନଦୀରେ ଉବୁଟୁବୁ ହୋଇ ସେ କେଉଁ ନାରୀର ଅପାସୋରା ସ୍ମୃତି ପାଖରେ କେବେ ଆତ୍ମସମର୍ପଣ କରନ୍ତି ତ, କେବେ ନକ୍ଷତ୍ରମାନଙ୍କ ଆଡକୁ (ଚନ୍ଦ୍ର ଓ ତାରା) ହାତ ବଢାଇ ରହନ୍ତି। ତାଙ୍କ କବିତାରେ ମୁକ୍ତିର ସ୍ୱର ତଥାପି ପରିଚ୍ଛନ୍ନ ହୁଏ ନାହିଁ। ଉତ୍ତରଣ ଅଭିଳାଷ ପ୍ରଚଣ୍ଡ ପାର୍ଥିବତା ପାଖରେ ବାରମ୍ବାର ଧକ୍‌କାଖାଇ ଫେରିଆସେ। ସେ କେବଳ ଧନ୍ଦି ହୁଅନ୍ତି ଓ କାରୁଣ୍ୟ କରନ୍ତି। କିନ୍ତୁ ଏହି କାରୁଣ୍ୟ ସ୍ୱର ହିଁ ତଥାପି ମଧୁର।" (୨୦୦୩: ପୃ : ୯୦)

ବସ୍ତୁତ ଓ ବିପ୍ଳବୀ ସାମ୍ୟବାଦୀ କବି ରଘୁନାଥ ଦାସଙ୍କ ସାମଗ୍ରିକ ଆକଳନ ଏକ ସ୍ୱାଗତଯୋଗ୍ୟ ପଦକ୍ଷେପ। ୧୯୭୫ ର ଜାତୀୟ ଜରୁରୀକାଳୀନ ପରିସ୍ଥିତି, ବିଂଶସୂତ୍ରୀ କାର୍ଯ୍ୟକ୍ରମ,ନକସଲ ନେତା ନାଗଭୂଷଣ ଆଦି ପ୍ରସଙ୍ଗରେ ରଘୁନାଥ ଦାସଙ୍କ ସମକାଳନିଷ୍ଠତା ଓ ଜାତୀୟ ଜୀବନର ଦୁଃସ୍ଥିତି ଓ ଦୁର୍ଗତି ପ୍ରତି ବେସାଲିସ୍ ବିଦ୍ରୋହର ମାନସିକତାକୁ ନିତ୍ୟାନନ୍ଦ ସ୍ପଷ୍ଟଭାବେ ପ୍ରକାଶ କରିଛନ୍ତି। ପ୍ରଗତିବାଦୀ ଚିନ୍ତନର ଏ ସ୍ରଷ୍ଟା କିପରି ପୁରାଣର ପ୍ରସଙ୍ଗ, ପ୍ରତୀକ ଓ ଚିତ୍ରକଳ୍ପ ଆଧାରରେ ସ୍ୱ ବକ୍ତବ୍ୟ ବଢିଛନ୍ତି ଓ କାବ୍ୟିକ ବିବର୍ତ୍ତନରେ ସେ ଦାର୍ଶନିକ ଭାବାପନ୍ନ ଓ ଅଧ୍ୟାତ୍ମବାଦୀ ହୋଇଉଠିଛନ୍ତି, ତା'ର ଆବିଷ୍କାର ଓ ଉଲ୍ଲେଖ ହିଁ ତାତ୍ପର୍ଯ୍ୟପୂର୍ଣ୍ଣ। ସେ କହନ୍ତି : "ଜୀବନର ରହସ୍ୟ, ଏପରିକି ସୃଷ୍ଟିର ରହସ୍ୟ ଓ ପ୍ରକୃତିର କୌଣସି କୌଣସି ବିଭବରେ ଆଦି ଓ ଆବର୍ତ୍ତନ ଅନ୍ୱେଷଣରେ ସେ ଖୁବ୍ ଗଭୀର ଚିନ୍ତା ଓ ବୌଦ୍ଧିକତାର ପରିଚୟ ଦେଇଛନ୍ତି। ଏହା ହିଁ ଯଥାର୍ଥରେ ତାଙ୍କ ଚେତନାର ପରିଣତ ପର୍ବ। କବିତାରେ ଭଗବତ ବିଶ୍ୱାସ ଓ ଆସ୍ତିକତା ପ୍ରକାଶ ପାଇଛି, ଯାହା ମାର୍କସୀୟ ଚେତନାର ଭିନ୍ନକୋଟୀରେଏକ ବିରୋଧାଭାସ ପରି ମନେହୁଏ। କିନ୍ତୁ କବି ମତବାଦ ଅପେକ୍ଷା ସତ୍ୟକୁ ହିଁ ଗୁରୁତ୍ୱ ଦେଇଛନ୍ତି - ନିଜର ଶେଷ ଜୀବନରେ ଅନୁଭବ ଓ ଉପଲବ୍ଧି ପ୍ରତି ଭାବ-ସତୀତ୍ୱ ଦେଖାଇଛନ୍ତି।" (୨୦୦୩: ପୃ : ୧୦୬) ଅନନ୍ତ ମହାକାଳକୁ ରୂପଦେବାରେ କବିଙ୍କ ଅନାଲୋଚିତ ଦୀର୍ଘକବିତା 'ମହାନାଟକ' ଦାର୍ଶନିକତା ଓ ବାମପନ୍ଥୀ ଚିନ୍ତନର ସମନ୍ୱୟରେ ଓଡ଼ିଆ କବିତା କ୍ଷେତ୍ରରେ ତୁଳନାହୀନ ବୋଲି ସମୀକ୍ଷକ ସୂଚାଇଛନ୍ତି। ଜଣେ ମାର୍କସବାଦୀ କବିର ବିଭୁ ଅବବୋଧ ଓ ରହସ୍ୟବାଦୀ ରୂପାନ୍ତରକୁ ଦର୍ଶାଇଛନ୍ତି ।

**'ପ୍ରେମ, ପ୍ରତାରଣା ଓ ନିଃସଙ୍ଗତାର କବି ଜଗନ୍ନାଥପ୍ରସାଦ ଦାସ'** ଶୀର୍ଷକର ଚର୍ଚ୍ଚା ପ୍ରକୃତ ପକ୍ଷରେ ଜଗନ୍ନାଥପ୍ରସାଦ ଦାସଙ୍କ ଏକ ସାମଗ୍ରିକ ଆକଳନ। ପଞ୍ଚମଦଶକରୁ ଜଗନ୍ନାଥ ପ୍ରସାଦ ଦାସଙ୍କ କାବ୍ୟଯାତ୍ରାର ଅୟମାରମ୍ଭ, ମାତ୍ର ୬/୭ ବର୍ଷ ଲାଗି। ତାର ଅନ୍ୟୂନ ଦେଢଦଶନ୍ଧି ପରେ, ଉତ୍ତର -ସତୁରୀରୁ ଚାରିଦଶନ୍ଧି ଧରି ତାଙ୍କର କାବ୍ୟ ଯାତ୍ରା। ନିତ୍ୟାନନ୍ଦ ତାଙ୍କର 'ପ୍ରଥମ ପୁରୁଷ' (୧୯୭୧)ରୁ 'ପରିକ୍ରମା' (୧୯୯୮) ଯାଏ କାବ୍ୟଗ୍ରନ୍ଥ ଓ ବହୁ ଏକକ କବିତାର ସମୀକ୍ଷା କରିଛନ୍ତି। କବିଙ୍କ ପ୍ରେମଚେତନା, ମୃତ୍ୟୁବୋଧ, ଅତିବାସ୍ତବବାଦୀ ଚିନ୍ତନ, ସମାଜନିଷ୍ଠତା, ସମୟଚେତନା ଓ ଦାର୍ଶନିକ ମନନଶୀଳତାକୁ ସେ କ୍ଷେତ୍ର ବିଶେଷରେ ସମକାଳର କାବ୍ୟସ୍ୱର ଯଥା : ସଚ୍ଚିଦାନନ୍ଦ, ରମାକାନ୍ତ, ସୀତାକାନ୍ତଙ୍କ ସହ ତୁଳନା କରିଛନ୍ତି। ବହୁ ନିର୍ଣ୍ଣାୟାତ୍ମକ ଓ ଉଦ୍ଧାରଯୋଗ୍ୟ ଅଭିମତ ବି ରହିଛି। ଅଭିମତଟିଏ

ଉଦ୍ଧାର କରେଁ । "ଶ୍ରୀ ଦାସ ଇନ୍ଦ୍ରିୟବିଳାସୀ କବି । ଇନ୍ଦ୍ରିୟୋତ୍ତର ଚେତନା ପାଖରେ ପହଞ୍ଚିବାକୁ ଏ ଯାବତ୍ ତାଙ୍କ କାବ୍ୟଚେତନାରେ ଉତ୍କଣ୍ଠା ଆସିନାହିଁ - ତାହା ହିଁ ତାଙ୍କପାଇଁ ଏକାନ୍ତ ବାସ୍ତବତା । xxx ଭାବଜୀବୀ କବି ଶ୍ରୀ ଦାସ ସତେ ଯେପରି ହାତ ବଢେଇ ରହିଛନ୍ତି ଏକ ଅତୀନ୍ଦ୍ରିୟ ଅନୁଭବ ଆଡକୁ, ଯାହା ଏବେ ମଧ୍ୟ ରହିଛି ଅପହଂଚ । ରୂପ ଘେନି ମଧ୍ୟ ଘେନି ନାହିଁ, କଳି ଅବସ୍ଥାରେ ଥିବା ମନର ଉନ୍ମୁଖ କୁସୁମ ତଥାପି ବିକଶିତ ହୋଇନାହିଁ - କବିତାର ଅନୁଭବ ତଥାପି ଦେହ ଓ ମନର ଦେହଳୀ ଭିତରେ ହେଉଛି ଭ୍ରାମ୍ୟମାଣ । ଉତ୍ତରିତ ଏକ ଅନୁଭବର ପ୍ରତ୍ୟାଶା କୁହେଳିକାଛନ୍ନ ହୁଏତ - କିନ୍ତୁ ସୂର୍ଯ୍ୟାଲୋକର ସ୍ୱର୍ଣ୍ଣିମ ବିଭାବୋଧ ହୁଏତ ବେଶି ଦୂରବର୍ତ୍ତୀ ନୁହେଁ । ଏକବିଂଶ ଶତାବ୍ଦୀ ହିଁ ହେବ ତା'ର ପ୍ରତିପାଦକ xxx (୨୦୦୩: ପୃ-୧୮୨) ଉଦ୍ଧରଣକୁ ଚିହ୍ନିତ ହେବା ଦିଗରେ ସମୀକ୍ଷକଙ୍କ ମନ୍ତବ୍ୟ ସହ ସମସ୍ତେ ହୁଏତ ଏକମତ ହୋଇ ନ ପାରନ୍ତି । ଜଗନ୍ନାଥପ୍ରସାଦଙ୍କ ୨୦୦୪ ରେ ପ୍ରକାଶ ପାଇଛି କବିତା ଗ୍ରନ୍ଥ 'ଅସମୟ' ଏବଂ ପରେ 'କବିତାସମଗ୍ର' ରେ ସଂଯୋଜିତ ହୋଇଛି ଆଉ କିଛି କବିତା । କବିତାର ବହୁ ଅନାଲୋଚିତ ଦିଗ ଆମକୁ ଧ୍ୟାନନିଷ୍ଠ କରେ ।

**'ପ୍ରେମ ମୃତ୍ୟୁ ଓ ନିର୍ଜନତାର କବି ରମାକାନ୍ତ ରଥ'** ସନ୍ଦର୍ଭ କବିଙ୍କ ଉତ୍ତର-ସତୁରୀ କାବ୍ୟଚେତନାର ମୂଲ୍ୟାୟନ : ୧୯୭୧ ପ୍ରକାଶିତ 'ସନ୍ଦିଗ୍ଧ ମୃଗୟା' ଠାରୁ 'ଶ୍ରୀ ପଳାତକ' (୧୯୯୮) ଯାଏଁ ୧୪୦ ପୃଷ୍ଠାର ଚର୍ଚ୍ଚା । କବିଙ୍କ କବିତାର ମାଧୁର୍ଯ୍ୟ, ଜଟିଳତା, ବୌଦ୍ଧିକତା ଓ ଆଭିମୁଖ୍ୟ ଆଦି ନେଇ ସମୀକ୍ଷକଙ୍କର କାବ୍ୟଗ୍ରନ୍ଥ ଓ ଏକକ କବିତା ଭିତ୍ତିରେ ଏ ମୂଲ୍ୟାୟନ । କବିଙ୍କ ପ୍ରେମଚେତନାକୁ ଦେହ-ବିଦେହ ଆଧାରରେ ସ୍ୱକୀୟା ଓ ପରକୀୟା ଭେଦରେ ସେ ବିଭକ୍ତ କରିଛନ୍ତି । ପାଶ୍ଚାତ୍ୟ କବିତା, ସମକାଳର ଅନ୍ୟ କାବ୍ୟଶିଳ୍ପୀ, ରବୀନ୍ଦ୍ରନାଥ, ଅଧ୍ୟାତ୍ମସତ୍ତା ଶ୍ରୀମା ଓ ସମୀକ୍ଷାଗୁଡିକର ଅଭିମତ ଭିତ୍ତିରେ ରମାକାନ୍ତଙ୍କ ପ୍ରେମ-ଚେତନା, ମୃତ୍ୟୁବୋଧ ଓ ଦାର୍ଶନିକତାକୁ ନିତ୍ୟାନନ୍ଦ ଆବିଷ୍କାର କରିଛନ୍ତି । ଚର୍ଚ୍ଚାରେ 'ଶ୍ରୀରାଧା' ଓ 'ଶ୍ରୀପଳାତକ' ବହୁ ଭାବେ ଆଲୋଚିତ । 'ଶ୍ରୀ ପଳାତକ' ର ପୃଷ୍ଠବନ୍ଧ କବିଙ୍କ କାବ୍ୟ ଆଭିମୁଖ୍ୟ ଅନୁସାରୀ ନ ହୋଇ, ତାର ପ୍ରାସଙ୍ଗିକତା ଯଥେଷ୍ଟ ଭାବେ ରଖୁନାହିଁ ବୋଲି ସମୀକ୍ଷକ ଯୁକ୍ତି ବାଢିଛନ୍ତି । ନିଜ ବକ୍ତବ୍ୟରେ ଠାଏ ସମୀକ୍ଷକ କହିଛନ୍ତି "ସେଇ ଅନନ୍ୟ ପ୍ରେମ, ଭାବନାର ସାର୍ଥକ କାବ୍ୟକୃତି "ଶ୍ରୀରାଧା" ହିଁ ହେବ ଆମ ପରବର୍ତ୍ତୀ ଅନୁଧ୍ୟାନର ଏକ ବ୍ୟର୍ଥ ପ୍ରୟାସ" (ପୃ: ୨୪୭) ଏହା ବ୍ୟର୍ଥ ପ୍ରୟାସ ବୋଲି ସେ କାହିଁକି ମତ ରଖିଛନ୍ତି, ବୁଝାପଡେ ନାହିଁ । ଚର୍ଚ୍ଚାରେ ସାରଗର୍ଭକ, ନିର୍ଣ୍ଣୟାତ୍ମକ ଓ ଉଦ୍ଧାରଯୋଗ୍ୟ ଅଭିମତଗୁଡ଼ିକ ଏହିପରି : "ସମାଲୋଚନାର ଭାଷାରେ ସେ ପ୍ରେମ ଶ୍ରୀରାଧାଙ୍କର ହୋଇପାରେ, ହୋଇପାରେ ମଧ୍ୟ ଶ୍ରୀ ରମାକାନ୍ତଙ୍କର । କାରଣ ଏଠି ଆବେଗ ଓ ଚେତନା ପରକୀୟାକୁ ଏତେ ବେଶି ମୁଠେଇଧରିଛି, ତହିଁରୁ ନା ଶ୍ରୀରାଧା, ନା ଶ୍ରୀରମାକାନ୍ତ ମୁକୁଳି ନୈର୍ବ୍ୟକ୍ତିକ ହୋଇପାରିବେ ?" (ପୃ: ୪୬) "ପୁରାକଳ୍ପ (myth) ବା ପୌରାଣିକ ପ୍ରସଙ୍ଗ ଓ ଚରିତ୍ରକୁ ଆଧାର କରି ଏଇ କୋଡିଏ ବର୍ଷ ଭିତରେ ଅନେକ କାବ୍ୟ କବିତା

ରଚିତ ହୋଇଛି ଓ ତାହା ପାଠକ ସହ ସିଧାସଳଖ ଯୋଗସୂତ୍ର ସ୍ଥାପନପାଇଁ ମାଧ୍ୟମ ହୋଇଛି। 'ଶ୍ରୀପଳାତକ' ସେଇ ପ୍ରୟାସ ଓ ମାନସିକତାର କାବ୍ୟରୂପ - ତେଣୁ ଜଟିଳ ହେଲେ ବି ଆବେଦନକ୍ଷମ ଏକ ମିଥ୍‌ଧର୍ମୀ କାବ୍ୟଗ୍ରନ୍ଥ। ତାକୁ ପୃଷ୍ଠବଂଧର ସାଧାରଣୀକରଣ ଓ ବିଷୟବିକ୍ଷେପ ପ୍ରୟାସରେ ପାଠକଠାରୁ ଦୂରେଇନେବାର ଉଦ୍ୟମରୁ କବି ପରବର୍ତ୍ତୀ ସଂସ୍କରଣରେ ଦୃଷ୍ଟିଦେବେ ବୋଲି ଆମେ ଅନୁରୋଧ କରିବୁ। ପୁରାକଳ୍ପକୁ ଇତିହାସ ସହିତ ଯୋଡି ନ ଦେଲେ ବି ଆଧୁନିକ ଜୀବନପାଇଁ ତାହା ତଥାପି ପ୍ରାସଙ୍ଗିକ ହୋଇ ରହିବ। xxx 'ଶ୍ରୀପଳାତକ' କାବ୍ୟରୁ ଆଧୁନିକତାର ପ୍ରାସଙ୍ଗିକତା ବହୁ ଭାବେ ଲୋଡ଼ା ଯାଇପାରିବ।" (୨୦୦୩: ପୃ : ୩୨୫)

'ସତୁରୀରୁ ସହସ୍ରାବ୍ଦୀ' ଗ୍ରନ୍ଥର ପରବର୍ତ୍ତୀ ସନ୍ଦର୍ଭ **'ଶବ୍ଦ, ସମୁଦ୍ର, ସମୟ ଓ ସଂପର୍କର କବି ସୀତାକାନ୍ତ ମହାପାତ୍ର'**। ପାଖାପାଖି ୧୦୦ ପୃଷ୍ଠାର ସନ୍ଦର୍ଭରେ 'ଶବ୍ଦର ଆକାଶ' (୧୯୭୧) ଠାରୁ 'କପଟପାଶା'(୨୦୦୦) ପର୍ଯ୍ୟନ୍ତ ଉତ୍ତର-ସତୁରୀ କାଳରେ ପ୍ରକାଶିତ କବିଙ୍କ ଦଶଗୋଟି କାବ୍ୟଗ୍ରନ୍ଥ ଓ ସେଥିରେ ସ୍ଥାନିତ ବହୁ ଏକକ ଓ ବିଶେଷ କବିତାଗୁଡ଼ିକର ମୂଲ୍ୟାୟନ। ସୀତାକାନ୍ତଙ୍କ ମିଥ୍-ପ୍ରୟୋଗ, ଦାର୍ଶନିକତା, ସୌନ୍ଦର୍ଯ୍ୟବୋଧ, ସମୟଚେତନା, ଶବ୍ଦସହିତ ଆତ୍ମୀୟତାବୋଧ, ଈଶ୍ୱର ଅନୁଚିନ୍ତା, ନଦୀ-ମନସ୍କତା, ସମକାଳ-ନିଷ୍ଠତା ଆଦି ଏଥିରେ ବିଶେଷ ଭାବେ ସମୀକ୍ଷିତ। ସମୀକ୍ଷଣରେ ସବୁ କାବ୍ୟଗ୍ରନ୍ଥ ନେଇ ନିର୍ଦ୍ଦିଷ୍ଟ ଓ **ବିରୋଧାତ୍ମକ** ମତ ରହିଛି। ଏଠାରେ ସମୀକ୍ଷକଙ୍କର କବିତା ନିମଜ୍ଜନ ଓ ଦ୍ରଷ୍ଟାତୁଲ୍ୟ ବୀକ୍ଷଣ ନେଇ ଉଦ୍ଧୃତିଟିଏ ଉପସ୍ଥାପନ କରେଁ। "ସୀତାକାନ୍ତଙ୍କ ଉତ୍ତର-ସତୁରୀ କାବ୍ୟ ଚେତନାର ବହୁ ଦିଗ ଓ ଦିଗନ୍ତ ବହୁ ବିସ୍ତାରିତ, ନାନାବିଧ, ବିଚିତ୍ର ଓ ଶବଳିତ ବୋଲି ଆଗରୁ ସୂଚନା ଦିଆଯାଇଛି। ସେ ଚେତନାରେ କେବେ କେବେ କଳାଗତ ସାର୍ଥକତା ଅଛି, କେବେ ବା' ଅଛି ଦୀର୍ଘକାୟ ବିଫଳତା- କିନ୍ତୁ କବିର ଲାଳନା ରହିଛି ସବୁବେଳେ ଅବ୍ୟାହତ - ଏହା ହିଁ ଆଶ୍ୱାସନାର ବିଷୟ। ଉତ୍ତର - ଷାଠିଏ ବୟସରେ ବହୁ ଓଡ଼ିଆ କବି ଅବକ୍ଷୟକୁ ଭେଟିଥିବା ବେଳେ ସୀତାକାନ୍ତ ତଥାପି ଅଛନ୍ତି ସୃଷ୍ଟିପ୍ରବଣ; ହୁଏତ ସେ ମିଥ୍‌ର ଚାର୍ମକୁ ହଜେଇ ବସିଛନ୍ତି, କିନ୍ତୁ ଖୋଜୁଛନ୍ତି ମାଟିର ଗନ୍ଧ ଓ ଆକାଶର ନୀଳ-ବୈଚିତ୍ର୍ୟ।" (୨୦୦୩: ପୃ-୪୧୮) ରମାକାନ୍ତ ରଥଙ୍କ ଚର୍ଚ୍ଚା ଅନୁରୂପ ଶୀର୍ଷରେ 'ପ୍ରେମ, ମୃତ୍ୟୁ ଓ ନିର୍ଜନନତାର କବି-ଦୀପକମିଶ୍ର' : କବିଙ୍କ ଉତ୍ତର-ସତୁରୀ କାବ୍ୟ ଚିଂତନକୁ ନେଇ ଷାଠିଏ ପୃଷ୍ଠାର ସନ୍ଦର୍ଭ। କବିଙ୍କ 'ନିର୍ଜନନକ୍ଷତ୍ର' (୧୯୭୧) ଠୁଁ 'ନିଦାଘ ଯାତ୍ରା' (୧୯୯୯) ପର୍ଯ୍ୟନ୍ତ ନଅଗୋଟି କାବ୍ୟଗ୍ରନ୍ଥ ଓ କେତେକ ଏକକ କବିତାକୁ ଆଧାରକରି ନିତ୍ୟାନନ୍ଦଙ୍କର ମୂଲ୍ୟାୟନ। କବିଙ୍କ ପ୍ରେମ, ଦେହବୋଧ, ମୃତ୍ୟୁଚେତନା, ସମୟ ଓ ସମକାଳନିଷ୍ଠତା, ଅମୂର୍ତ୍ତଭାବନା, ଦାର୍ଶନିକତା, ବୈଦ୍ଧିକତା ଓ ଦୁର୍ବଳତା- ସର୍ବୋପରି ପରୀକ୍ଷାନିରୀକ୍ଷା ନେଇ ସମୀକ୍ଷକ ଚର୍ଚ୍ଚା କରିଛନ୍ତି। ଏଥିରେ ବି ଅଛି ତୁଳନା, ବହୁ ନିର୍ଦ୍ଦିଷ୍ଟ ଓ ନିର୍ଣ୍ଣାୟକ ଅଭିମତ। ଗୋଟିଏ ଅଭିମତ ଏହିପରି । "ତାଙ୍କ କବିତାରେ ନୀଳ ଶବ୍ଦର ଯଥେଚ୍ଛା ବ୍ୟବହାର କେତେବେଳେ ସମ୍ମୋହନ ଅର୍ଥରେ, କେତେବେଳେ

ଆକାଶ/ସମୁଦ୍ରର ବ୍ୟାପ୍ତି ଅର୍ଥରେ, କେତେବେଳେ ମୃତ୍ୟୁ ଅର୍ଥରେ, କେତେବେଳେ ରୋମାଣ୍ଟିକ ଚେତନାକୁ ବହନ କରୁଥିବା କୌଣସି ଭାବବିନ୍ଦୁରେ ଓ ମୁକ୍ତି ଅର୍ଥରେ ପ୍ରଯୁକ୍ତ ହୋଇଛି। ନୀଳ ଶବ୍ଦ ସହିତ ସତେଯେପରି କବିଙ୍କର ଏକ ଅଭେଦ ସଂପର୍କ ପ୍ରତିଷ୍ଠିତ ହୋଇଯାଇଛି। ପୁଣି ନିର୍ଜନତାବୋଧ ତାଙ୍କ କାବ୍ୟଚେତନାର ଏକ ସାମଗ୍ରିକତା। ଏହା କବିତାର ଦୈର୍ଘ୍ୟ ଓ ପ୍ରସ୍ଥକୁ ଆଛନ୍ନକରି ରହିଛି। ସେଥିପାଇଁ ଦେହଜ ପ୍ରେମର ଉଗ୍ରତା ଓ ତାକୁ ହରାଉଥିବାର କାରୁଣ୍ୟ ମଧ୍ୟ ବହୁ କବିତାର ଅନାୟସଲକ୍ଷ୍ୟ। ସେଥିପାଇଁ ତାଙ୍କୁ ମୁଁ ଦେହଜ-ପ୍ରେମ ଓ ନୀଳ ନିର୍ଜନତାର କବି ଭାବେ ଚିହ୍ନିତ କରିଛି।" (୨୦୦୩: ପୃ-୪୭୮)

'କ୍ରାନ୍ତିକାରୀ ରୋମାଣ୍ଟିକ ମାନବବାଦୀ କବି ବ୍ରଜନାଥ ରଥ' ଶୀର୍ଷକର କବି ବ୍ରଜନାଥଙ୍କ ଉତ୍ତର-ସତୁରୀ କାବ୍ୟଚେତନା ବିଷୟକ ସନ୍ଦର୍ଭ ଯେଉଁଠି କବିଙ୍କ ସ୍ରଷ୍ଟା ଜୀବନର ପ୍ରଥମ ଗ୍ରନ୍ଥ 'ମରୁଗୋଲାପ' (୧୯୯୦)ର ସୂଚନାଧର୍ମୀ ଆକଳନଠୁଁ 'ନିଜସ୍ୱ ସଂଳାପ' (୧୯୬୯) ଦେଇ 'ହେ ମୋର ସ୍ୱଦେଶ' (୧୯୯୭) ଯାଏ ଚର୍ଚ୍ଚା ରହିଛି। ରହିଛି ମଧ୍ୟ ୧୯୯୩ ରୁ ୧୯୯୮ ଯାଏ ପତ୍ରପତ୍ରିକାରେ ପ୍ରକାଶିତ କବିତାର ଆକଳନ। ରୋମାଣ୍ଟିକ ବାସ୍ତବବାଦୀ ପର୍ଯ୍ୟାୟରୁ କବିଙ୍କ ସମକାଳ-ନିଷ୍ଠତା, ବ୍ୟଙ୍ଗ ଜଗତ, ଦେଶ ଓ ବିଶ୍ୱସଂପ୍ରୀତି ଆଦି ନାନାପ୍ରସ୍ତକୁ ସମୀକ୍ଷକ ସମାଜ-ରାଜନୀତିକ ଦୃଶ୍ୟପଟ ଆଧାରରେ ଉନ୍ମୋଚିତ କରିଛନ୍ତି। ବିଭିନ୍ନ କାବ୍ୟଗ୍ରନ୍ଥ ଓ ବହୁ ଏକକ କବିତା ଆଧାରରେ ପ୍ରଗତିବାଦୀ କାବ୍ୟଦର୍ଶନ ଓ ପ୍ରୟୋଗବାଦୀ ରଚନାପାଟବ ସମନ୍ୱୟରେ ବ୍ରଜନାଥଙ୍କ କାବ୍ୟଜଗତ ଆଲୋକିତ । ସମୀକ୍ଷକଙ୍କ ଭାଷାରେ : "ପଚାଶବର୍ଷର କାବ୍ୟ ସରଣୀରେ ବ୍ରଜନାଥ ନିଶ୍ଚିତ ଭାବେ ଜଣେ ସିଦ୍ଧିପ୍ରଦ ସଫଳ କବି। ତାଙ୍କ କାବ୍ୟ ସାଧନା ଯେପରି ଅବ୍ୟାହତ, କବିତାକୁ ନେଇ ବଂଚିବାର ପ୍ରୟାସ ସେହିପରି ବିସ୍ମୟକର। ସଂପୂର୍ଣ୍ଣ ପ୍ରାକୃତିକ ପରିବେଶ ମଧ୍ୟରେ ବଂଚୁଥିବା ଏ କବିଙ୍କ କବିତାରେ ତଥାପି ଆଧ୍ୟାତ୍ମିକ ଉତ୍ତରଣ ଆସିନାହିଁ। ବୋଧହୁଏ, ରୂଢ଼ ବାସ୍ତବତା ଓ ଦୃପ୍ତ ମାନବବାଦକୁ ସେ ଏ ପର୍ଯ୍ୟନ୍ତ କାବ୍ୟ ଚେତନାର ଅଂଗୀକାର ଭାବେ ଧରି ରଖିଥିବାରୁ, ସପ୍ତମରତ୍ନ ବା ସପ୍ତମପୃଥିବୀ ପ୍ରତି ଦୃଷ୍ଟିପାତ କରିପାରି ନାହାନ୍ତି। ତଥାପି ତାଙ୍କ କବିତାରେ ସେଇ ଉତ୍ତରଣ ନ ଆସିବ, କହିହେବନି।" (୨୦୦୩: ପୃ-୫୩୦) ନିତ୍ୟାନନ୍ଦଙ୍କ ଏ ଚର୍ଚ୍ଚା ପ୍ରସ୍ତୁତି ପରେ କବିଙ୍କର ୨୦୦୭ରେ ଦୁଇଟି କାବ୍ୟଗ୍ରନ୍ଥ 'ସମୟର ଶବ୍ଦଲିପି' ଓ 'ସାମାନ୍ୟ ଅସାମାନ୍ୟ' ଶୀର୍ଷକରେ ପ୍ରକାଶିତ ହୋଇଛି ଓ ପତ୍ରପତ୍ରିକାରେ ରହିଛି ରାଶି ରାଶି କବିତା। କାବ୍ୟକବିତାର ଉତ୍ତରଣ ଯେଉଁ ସର୍ବୋତ୍ର ଆଧ୍ୟାତ୍ମିକତାସଂପନ୍ନ ବୋଲି ସମୀକ୍ଷଣରେ ଯାହା କୁହାଯାଇଛି, ତାହା ଅବଶ୍ୟ [illegible] ଅଭିମତଟିଏ; ସବୁକ୍ଷେତ୍ରରେ ଏହା ପ୍ରଯୋଜ୍ୟ ହୋଇନପାରେ । କାରଣ କେତେବେଳେ ପରିଣତି ଓ ପରିପକ୍ୱତାର ପରିଭାଷା ବ୍ରଜନାଥ ରଥଙ୍କପାଇଁ ପୃଥକ ଭିନ୍ନ ।

ଚର୍ଚ୍ଚାଗ୍ରନ୍ଥର ଶେଷ ସନ୍ଦର୍ଭ 'ବିଷାଦ ଓ ସମ୍ମୋହନ : କବି ପ୍ରତିଭା ଶତପଥୀ' କବିଙ୍କ 'ସ୍ୱପ୍ନସମୟ' (୧୯୭୪) ଠାରୁ '[illegible]' ([illegible]) ଯାଏ କାବ୍ୟଗ୍ରନ୍ଥ ଓ

ଏକକ କବିତାଗୁଡ଼ିକର ମୂଲ୍ୟାୟନ। ସମଗ୍ର ଚର୍ଚ୍ଚା ଗ୍ରନ୍ଥରେ ରଘୁନାଥ ଦାସ ଓ ବ୍ରଜନାଥ ରଥଙ୍କ ଆଭିମୁଖ୍ୟଗତ ସ୍ୱରସାମ୍ୟ ଥିବା ସତ୍ତ୍ୱେ ଉପସ୍ଥାପନା ଓ ଭାବକଳ୍ପରେ ରହିଛି ବହୁ ଫରକ। ଚର୍ଚ୍ଚିତ ପ୍ରତ୍ୟେକ କାବ୍ୟସ୍ୱରର ଭାବଗତ କିଛି ସାମ୍ୟ ସତ୍ତ୍ୱେ ସମସ୍ତେ ସ୍ୱତନ୍ତ୍ର। ସେହି ଦୃଷ୍ଟିରୁ ନାରୀସ୍ୱର ଭାବେ ପ୍ରତିଭା ଶତପଥୀଙ୍କ କବିତା ବହୁତ ଭିନ୍ନ। ଏଇ ଭିନ୍ନତାକୁ କବିଙ୍କ ସାମାଜିକ-ଆର୍ଥନୀତିକ ପୃଷ୍ଠପଟ ଓ ନାରୀ-ମାନସିକତା ଦୃଷ୍ଟିରୁ ମଧ୍ୟ ଚର୍ଚ୍ଚା କରାଯାଇଛି। ବିଷାଦ ଓ ସମ୍ମୋହନ ସହିତ ପ୍ରତିଭାଙ୍କ ଅସୀମ-ବିଳାସ, ଅଧ୍ୟାତ୍ମଦୃଷ୍ଟି ଓ ସୌନ୍ଦର୍ଯ୍ୟ ଅନୁରାଗ ମଧ୍ୟ ଚର୍ଚ୍ଚାରେ ପ୍ରାଧାନ୍ୟ ପାଇଛି। କବିଙ୍କ କାବ୍ୟିଙ୍କ ବିବର୍ତ୍ତନ ଓ ଉତ୍ତରଣ ପର୍ବରେ 'ଶବରୀ' (୧୯୯୧)ର ବିଶେଷ ଚର୍ଚ୍ଚା ମଧ୍ୟ ଲକ୍ଷଣୀୟ। ଏଥିରେ ମୀରାବାଈ, ମହାଦେବୀ ବର୍ମା, କୁନ୍ତଳାକୁମାରୀ, ରବୀନ୍ଦ୍ରନାଥ ଓ ରମାକାନ୍ତ ରଥଙ୍କ ପ୍ରସଙ୍ଗୋଚିତ ଉଲ୍ଲେଖ ଏକ ତୁଳନାତ୍ମକ ପରିମଣ୍ଡଳ ସୃଷ୍ଟିକରେ। ସମୀକ୍ଷକଙ୍କର ବହୁ ନିର୍ଣ୍ଣୟାତ୍ମକ ମତରୁ ଏଠାରେ ଗୋଟିଏ ଉଲ୍ଲେଖ କରେଁ। "ଧୂଳିଧୂସର ଧରଣୀର ତନ୍ମୟତାରେ ବିଭୋର ହେଉହେଉ କବି ଆକାଶରେ ଦେଖାଯାଉଥିବା ନକ୍ଷତ୍ରମାନଙ୍କ ଆଡକୁ ହାତବଢ଼େଇ ରହନ୍ତି। ଜିଆ ବା ଲାଙ୍ଗୁଡ଼ାପୋକ ପରି ମାଟି ଓ ନର୍ଦ୍ଦମାରେ ଘୁଷୁରନ୍ତି ସତ; କିନ୍ତୁ ଅନ୍ତରର ସୁକୁମାର ଭାବସ୍ପନ୍ଦନକୁ ସବୁବେଳେ ନାକ୍ଷତ୍ରିକ ଅଭିଳାଷରେ ପବିତ୍ରିତ କରି ରଖିଥାନ୍ତି। ମାଟି ତାଙ୍କୁ ବିଷାଦ ଦେଲେ ବି ଆକାଶ ଓ ନକ୍ଷତ୍ରମାଳା ସମ୍ମୋହନରେ ତାଙ୍କ ମାନସିକତାକୁ ଏକ ଊର୍ଦ୍ଧ୍ୱାୟିତ ଚେତନାରେ ଜାରିତ କରି ରଖେ।" (୨୦୦୩: ପୃ-୫୮୫)

'ସତୁରୀରୁ ସହସ୍ରାବ୍ଦୀ' ପ୍ରକୃତ ପକ୍ଷରେ ଦଶଜଣ ପ୍ରମୁଖ କବିଙ୍କ ସଂପର୍କରେ ଦଶଗୋଟି ସନ୍ଦର୍ଭ। କବିତାର ଆତ୍ମା ଓ ଅଭିବ୍ୟକ୍ତି ସହ ପାଠକର ସେତୁ ଯୋଡିବାପାଇଁ ଏକ ମହତ୍ତର ପ୍ରଚେଷ୍ଟା। ମୂଲ୍ୟାୟନ ବହୁ ପର୍ଯ୍ୟାୟରେ ସର୍ଜନାତ୍ମକ। ଏଥିରେ ଓଡ଼ିଆ କାବ୍ୟଐତିହ୍ୟ, ପାଶ୍ଚାତ୍ୟ ଓ ଭାରତୀୟ କାବ୍ୟଧାରାର ପ୍ରସଙ୍ଗୋଚିତ ଉଲ୍ଲେଖ, କବି ଓ କବିତାର ସାମାଜିକ, ସଂସ୍କୃତିକ ପୃଷ୍ଠଭୂମି ଓ କ୍ଷେତ୍ର ବିଶେଷରେ ତୁଳନାତ୍ମକ ବୀକ୍ଷଣ ରହିଛି। 'ସବୁଜରୁ ସାଂପ୍ରତିକ' ପୁସ୍ତକ ପରି ବର୍ଷ ଓ ମାସ ଆଧାରରେ ପତ୍ରିକା ଜଗତରୁ କବିତା ସଂଗ୍ରହ କରି ଅର୍ଦ୍ଧ ଶତାବ୍ଦୀର ଓଡ଼ିଆ କବିତାର ମୂଲ୍ୟାୟନ ଓ ସାଧନାର କଥା ଏଥିରେ ନାହିଁ। ସେହିପରି ସମସ୍ତ କାବ୍ୟଗ୍ରନ୍ଥ ଆଧାରରେ ପ୍ରମୁଖ ଦଶଜଣ କବିଙ୍କ ହଜାର ସଂଖ୍ୟକ ଏକକ କବିତାର ବିଶ୍ଳେଷଣ ଓ ମୂଲ୍ୟାୟନ କ୍ଷେତ୍ରରେ ଗ୍ରନ୍ଥଟି ବି ପ୍ରଥମ। ଆଧୁନିକ କବିତାକୁ ପାଠକପ୍ରିୟ କରାଇ ଦୁର୍ବୋଧ୍ୟତା ତଥା ଜଟିଳତାର ଅବବୋଧରୁ ମୁକ୍ତ କରିବାପାଇଁ ଏହା ଏକ ପ୍ରୟାସ। ଏଭଳି ପ୍ରତିବଦ୍ଧତା ଯଥାର୍ଥରେ ବିରଳ। "ସବୁଜରୁ ସାଂପ୍ରତିକ'ରେ କାବ୍ୟଶିଳ୍ପୀଙ୍କ ଭାବଚେତନା ସହିତ କେଉଁଠି କେଉଁଠି ଆଙ୍ଗିକ ବିଭବ ନେଇ ଚର୍ଚ୍ଚା ପରିଲକ୍ଷିତ, ମାତ୍ର 'ସତୁରୀରୁ ସହସ୍ରାବ୍ଦୀ'ରେ ଆତ୍ମିକ ବିଭବର ଚର୍ଚ୍ଚା ହିଁ ପ୍ରାଧାନ୍ୟ ପାଇଛି।

ଏହି ମୂଲ୍ୟାୟନ ଧାରାରେ ଆଉ ଏକ ସଂଯୋଗ ନିତ୍ୟାନନ୍ଦ ଶତପଥୀଙ୍କ ବିରଚିତ 'କବିତା-ସେତୁ' (୨୦୦୯)। ବାରଗୋଟି ଚର୍ଚ୍ଚା ମଧ୍ୟରୁ 'ସତୁରୀରୁ ସହସ୍ରାବ୍ଦୀ' ଧାରାର

ତିନୋଟି ଚର୍ଚ୍ଚା ସଂଯୁକ୍ତ। ଚର୍ଚ୍ଚାଗୁଡିକର ଶୀର୍ଷକ 'କବି ରାଉତରାୟ ଶେଷତମ ଗ୍ରନ୍ଥ - କବିତା ୨୦୦୩,' 'ରମାକାନ୍ତ : ଉତ୍ତର-ଜୀବନ ଅନୁଚିନ୍ତା - 'ସୀମାନ୍ତବାସ' - 'ଫେରି ଚାହିଁଲେ' - 'ନ ଯା ନ ଯା' କହୁକହୁ, ସୀତାକାନ୍ତଙ୍କର 'ସାରାଜୀବନ ଲୋକଟା।' ଏ ଚର୍ଚ୍ଚା ପରେ ବି ରମାକାନ୍ତଙ୍କର ତିନୋଟି କବିତା ଗ୍ରନ୍ଥ ଏବଂ ସୀତାକାନ୍ତଙ୍କର ଚାରୋଟି କବିତା ଗ୍ରନ୍ଥ ପ୍ରକାଶିତ ହୋଇ ସାରିଲାଣି। ସମକାଳର କବି ହରିହର ମିଶ୍ରଙ୍କ ବିଭିନ୍ନ କବିତା ଗ୍ରନ୍ଥ ଆଧାରରେ 'ହରିହର ମିଶ୍ରଙ୍କ କବିତାରେ ଜଗନ୍ନାଥ ଚେତନା, କବି ସୌରୀନ୍ଦ୍ର ବାରିକଙ୍କ ସାତଗୋଟି କବିତା ଆଧାରରେ 'ପ୍ରେମ, ପ୍ରକୃତି ଓ ପୌରାଣିକତାର କବି ସୌରୀନ୍ଦ୍ର ବାରିକ' ରଚନା କରିବା ସହିତ ନିତ୍ୟାନନ୍ଦ 'ଅକାତକାତ' କବିତା ଗ୍ରନ୍ଥ ଆଧାରରେ ପ୍ରମୋଦ କୁମାର ମହାନ୍ତି ଏବଂ 'ରକ୍ତବର୍ଣ୍ଣ ବାଲି' କବିତା ଗ୍ରନ୍ଥ ଆଧାରରେ ଆଶୁତୋଷ ପରିଡାଙ୍କର ମୂଲ୍ୟାୟନ କରିଛନ୍ତି। 'ସବୁଜରୁ ସାଂପ୍ରତିକ'ରେ ଉପସ୍ଥାପିତ କବି ଚିନ୍ତାମଣି ବେହେରା ଓ ରଜନୀକାନ୍ତ ଦାସଙ୍କ ସଂପର୍କରେ ପରବର୍ତ୍ତୀ କାବ୍ୟ ସଂକଳନଗୁଡ଼ିକର ନିର୍ଦ୍ଦିଷ୍ଟ କବିତାକୁ ନେଇ ଦୁଇଟି ପୂର୍ଣ୍ଣାଙ୍ଗ ଚର୍ଚ୍ଚା 'ପ୍ରେମ ଓ ପରିତାପର କବି ଚିନ୍ତାମଣି ବେହେରା' ଓ 'ବିସ୍ମୃତ କବି ରଜନୀକାନ୍ତ ଦାସ' 'କବିତା-ସେତୁ' ଗ୍ରନ୍ଥରେ ସ୍ଥାନିତ। ସେମାନଙ୍କ ସାମଗ୍ରିକ କାବ୍ୟଜଗତର ଏଗୁଡ଼ିକ ମୂଲ୍ୟାୟନ।

'ଓଡ଼ିଶାରେ ନବଜାଗରଣ ଓ କବି ରାଧାନାଥ', 'ଓଡ଼ିଆ କବିତାକୁ ବାଲେଶ୍ୱରର ଅବଦାନ' ଏ ଗ୍ରନ୍ଥର ଅନ୍ୟ ଦୁଇଟି ସମୀକ୍ଷଣ। ସ୍ୱାଧୀନତା ପୂର୍ବବର୍ତ୍ତୀ ଓଡ଼ିଆ କବିତାର ଆଙ୍ଗିକ ପକ୍ଷ ଗ୍ରନ୍ଥର ଶେଷଚର୍ଚ୍ଚା। ଏହା ପ୍ରାଚ୍ୟ ଓ ବିଶେଷତଃ ପାଶ୍ଚାତ୍ୟ ତତ୍ତ୍ୱ ଆଧାରରେ ଓଡ଼ିଆ କବିତାର ଭାଷା, ରୂପକଳ୍ପ, ପ୍ରତୀକ, ଛନ୍ଦଯୋଜନା ଆଦିର ସ୍ୱରୂପ ନିର୍ଣ୍ଣୟ।

ଏଠାରେ 'କବିତା-ସେତୁ'ର ଏକ ପରିଚୟାତ୍ମକ ସୂଚନା ଦିଆଯାଇପାରେ। ଏହାର ସମୀକ୍ଷଣରେ ନିତ୍ୟାନନ୍ଦଙ୍କ ପୂର୍ବ ଦୁଇ ଚର୍ଚ୍ଚାଗ୍ରନ୍ଥର ସମୀକ୍ଷାଧାରା ଅନୁସୃତ ହୋଇଛି। କବିଙ୍କ ବୈଶିଷ୍ଟ୍ୟ ନିରୂପଣ ସହ ସେମାନଙ୍କ ସଂପର୍କରେ ବହୁ ନିର୍ଣ୍ଣୟାତ୍ମକ ମତ ପୋଷଣ ଏବଂ କ୍ଷେତ୍ର ବିଶେଷରେ ଓଡ଼ିଆ କବିତାରେ ସ୍ଥାନ ନିରୂପଣ - ଏ ସବୁ ଚର୍ଚ୍ଚାରେ ଲକ୍ଷ୍ୟ କରାଯାଇପାରେ। ସଚ୍ଚି ରାଉତରାୟଙ୍କ କବିତା ଗ୍ରନ୍ଥ **କବିତା ୨୦୦୩** ର ମୂଲ୍ୟାୟନ ପ୍ରସଙ୍ଗରେ ଗୋଟିଏ ମାତ୍ର ଉଦ୍ଧୃତି ଉଲ୍ଲେଖ କରେ। "ମୋ ମତରେ ସେ ହିଁ ବିଶ୍ୱକବି , ଯେ ବିଶ୍ୱର ବହୁବିଧ ସମସ୍ୟା ପ୍ରତି ଦୃଷ୍ଟି ସଂଚାଳନ କରିଥାଏ। ବିଶ୍ୱ ମାନବାତ୍ମାର ପ୍ରମୁକ୍ତି ପାଇଁ ତା'ର କବିତାରେ ଥାଏ ଦରଦ ଓ ଦର୍ଶନ; ଦେଶକାଳର ସୀମା-ସରହଦ ଭୁଲି ଯେ ବିଶ୍ୱକୁ ଆପଣାର କରି ଆଉଜେଇ ନିଏ ଏବଂ ବିଶ୍ୱ-ମଣିଷର ଯନ୍ତ୍ରଣା ଦୁକୁଦୁକି ସହିତ ନିଜର ଅଶ୍ରୁ ଓ ଆକୁଳତାକୁ ମିଶାଇ ଦେଇପାରେ। ସେ ଦୃଷ୍ଟିରୁ କବି ରାଉତରାୟଙ୍କୁ ' ବିଶ୍ୱକବି' ଭାବେ ସ୍ୱୀକୃତି ଦେବା ବୋଧହୁଏ ଅଯଥାର୍ଥ ହେବନାହିଁ।(ପୃ : ୩୬, କବିତା - ସେତୁ) ଏହି ମତ କବି ରାଉତରାୟଙ୍କ ପାଇଁ ଉଦ୍ଦିଷ୍ଟ; କିନ୍ତୁ ତା ଭିତରେ ଥିବା ଦୃଷ୍ଟିକୋଣଟି କାବ୍ୟ-ସମାଲୋଚକ ନିତ୍ୟାନନ୍ଦଙ୍କର ଦ୍ରଷ୍ଟା-ସୁଲଭ ଓ ସର୍ଜନାତ୍ମକ, ମୌଳିକ ଓ ଆବେଗାତ୍ମକ।

'କାବ୍ୟଦୃଷ୍ଟି : କାବ୍ୟ ବିଚାର' (୨୦୧୫) ଗ୍ରନ୍ଥର ପନ୍ଦର ଗୋଟି ଆଲୋଚନାରୁ ବାର ଗୋଟି ଆଲୋଚନା ପୂର୍ବପ୍ରକାଶିତ 'କାବ୍ୟପ୍ରକରଣ' (୧୯୯୩) ଗ୍ରନ୍ଥରେ ସ୍ଥାନିତ। ସାହିତ୍ୟରେ, ବିଶେଷ କରି ଆଧୁନିକ କବିତାରେ, ତା'ର ଆତ୍ମିକ ଦିଗନ୍ତ ଓ କଳା କାରିଗରି ନେଇ ଯେଉଁ ପରିବର୍ତ୍ତନ ଓ ପରୀକ୍ଷାନିରୀକ୍ଷାର ସୂତ୍ରପାତ, ତା'ର ଭୂମି ପାଶ୍ଚାତ୍ୟ ଜଗତ, ମୂଳତଃ ୟୁରୋପ। ଇଂଲଣ୍ଡ ଓ ଫ୍ରାନ୍ସର ଅବଦାନ ସେଥିରେ ସର୍ବାଧିକ। ଜ୍ଞାନର ଅବଦାନ କ୍ଷେତ୍ରରେ ଗ୍ରୀସ, ଜର୍ମାନ, ଇଟାଲୀ ଆଦି ୟୁରୋପୀୟ ଦେଶର ଭୂମିକା ମଧ୍ୟ ରହିଛି। ସାହିତ୍ୟ ନେଇ ବିଭିନ୍ନ ଆନ୍ଦୋଳନ, School of Thoughts ଏବଂ ତା'ର ପ୍ରଭାବରେ ବିକଶିତ ବିଭିନ୍ନ ତତ୍ତ୍ୱ ବା ବାଦର ମୂଳଉତ୍ସ , ବିକାଶ ବିବର୍ତ୍ତନ ଓ ପ୍ରୟୋଗଶୀଳତାକୁ ନିତ୍ୟାନନ୍ଦ ସଂଧାନ କରିଛନ୍ତି। ଏଥିନେଇ ତାଙ୍କର ଶାସ୍ତ୍ରଦର୍ଶିତା, ତୁଳନାତ୍ମକ ଅବବୋଧ, ଓଡ଼ିଆ କବିତାଧାରାରେ ତାର ପରୀକ୍ଷା ଓ ପ୍ରୟୋଗଗତ ଅନ୍ୱେଷଣ, ଆହରଣ - ସମୀକରଣ, ଅନୁସରଣ - ଅନୁକରଣ ଏସବୁ ପାଶ୍ଚାତ୍ୟ ସାହିତ୍ୟ ତତ୍ତ୍ୱ ସଂପର୍କରେ ଚର୍ଚ୍ଚା ଲେଖିବାକୁ ଅନୁପ୍ରେରିତ କରିଛି। ଏହାର ଫଳଶ୍ରୁତି କ୍ଲାସିସିଜିମ୍, ରୋମାଣ୍ଟିସିଜିମ, ପ୍ରତୀକବାଦ, କବିତାରେ ଚିତ୍ରକଳ୍ପ, ଅସ୍ତିତ୍ୱବାଦ ଓ ଓଡ଼ିଆ କବିତା , ଅତିବାସ୍ତବବାଦ ଆଦି ରଚନା ବା ଆଲୋଚନା। ସ୍ୱତନ୍ତ୍ର ଚର୍ଚ୍ଚାର ଅପେକ୍ଷା ରଖୁଥିବା ଲେଖାଗୁଡିକ ନିତ୍ୟାନନ୍ଦଙ୍କ ତତ୍ତ୍ୱ-ଅବଗାହନ, ମନନ ଓ ବିଶ୍ଳେଷଣ-ମାନସିକତାର ସୂଚକ।

ପାଶ୍ଚାତ୍ୟ ତତ୍ତ୍ୱର ଚାବିକାଠି ଧରି ତା'ର ପ୍ରୟୋଗ ଓ ସମୀକରଣର ସ୍ପର୍ଶ ଖୋଜିବା ଏ କ୍ଷେତ୍ରରେ ପ୍ରଧାନ କଥା। କ୍ଲାସିସିଜିମ ପ୍ରସଙ୍ଗରେ କ୍ଲାସିକର ଗୁଣକୁ ସେ ମହାଯାତ୍ରା,ତପସ୍ୱିନୀ, ଛ'ମାଣ ଆଠଗୁଣ୍ଠ, ଅମୃତର ସନ୍ତାନ, ଶ୍ରୀରାଧା ଓ ଶବରୀ ଆଦିରେ ସଂଧାନ କରିଛନ୍ତି। ରୋମାଣ୍ଟିସିଜିମର ପ୍ରୟୋଗ ଓ ପ୍ରତିଫଳନ ଅର୍ଥାତ୍ ତାର ବିଭିନ୍ନ ବିଭବର ରୂପରାଗକୁ ରାଧାନାଥ, ଗଙ୍ଗାଧର, ମଧୁସୂଦନ, ସବୁଜ-ସଖା, ପଦ୍ମଚରଣ, ମାନସିଂହ, ଗଡ଼ନାୟକ, ସଚ୍ଚିଦାନନ୍ଦଙ୍କ ଠାରୁ ଆରମ୍ଭ କରି ଉତ୍ତର-ଷାଠିଏ କାଳର କାବ୍ୟ ସ୍ରଷ୍ଟାଙ୍କ ଲେଖାରେ ଚିହ୍ନିତ କରନ୍ତି। ଚିତ୍ରକଳ୍ପ, ପ୍ରତୀକ, ଅସ୍ତିତ୍ୱବାଦ, ଅତିବାସ୍ତବବାଦ ସଂପର୍କରେ ନିତ୍ୟାନନ୍ଦଙ୍କର ନିଜସ୍ୱ ବିଶ୍ଳେଷଣ ଓ ପର୍ଯ୍ୟବେକ୍ଷଣ ରହିଛି। ଚିତ୍ରକଳ୍ପ ଓ ପ୍ରତୀକର ଚର୍ଚ୍ଚା ପରସରରେ ସେ ପ୍ରାଚୀନ ଓ ମଧ୍ୟଯୁଗୀୟ କାବ୍ୟଧାରା ସହିତ ସାଂପ୍ରତିକ କବିତାର ବିଶେଷ ପରିଚର୍ଚ୍ଚା କରିଛନ୍ତି। ବିଶେଷ କରି ଜଟିଳ କାବ୍ୟତତ୍ତ୍ୱ ଅତିବାସ୍ତବବାଦ ସଂପର୍କରେ ତାଙ୍କର ବିଶ୍ଳେଷଣ ବେଶ୍ ପ୍ରାଞ୍ଜଳ ଓ ଯୁକ୍ତିଯୁକ୍ତ। ସେହିପରି ଆଧୁନିକ ଓଡ଼ିଆ କବିତାରେ ଆଧିଭୌତିକ / ରହସ୍ୟବାଦୀ ଚେତନା ସମୀକ୍ଷକଙ୍କ ନିଜସ୍ୱ ମନନ ଓ ଅନୁଶୀଳନର ପରିଚାୟକ। ଉଦାହରଣ ଭାବେ ପ୍ରଦତ୍ତ କବିତା ଓ କାବ୍ୟ ଗ୍ରନ୍ଥର ବିଶ୍ଳେଷଣ ତାଙ୍କର ନିଜସ୍ୱ ଅବବୋଧ, ଉପଲବ୍ଧି ଓ ଦୃଷ୍ଟିକୋଣକୁ ପ୍ରକାଶକରେ।

**ସ୍ୱରାଜ୍ୟ ଆନ୍ଦୋଳନ ଓ ଓଡ଼ିଆ କବିତା**, ସବୁଜରୁ ସାଂପତିକରେ ସ୍ଥାନିତ ପ୍ରସଙ୍ଗର କିଞ୍ଚିତ ବିସ୍ତାର। ସେହିପରି 'ପ୍ରଗତିବାଦୀ ଓଡ଼ିଆ କାବ୍ୟ ଚେତନାର ଇତିହାସ ଓ ପରିସର ତାଙ୍କ 'ସବୁଠାରୁ ସାମ୍ପ୍ରତିକ' ସନ୍ଦର୍ଭ ଓ ଅନ୍ୟ ଆଲୋଚନାର ସମନ୍ୱୟରେ ଏକ

ସ୍ୱତନ୍ତ୍ର ପ୍ରତିବେଦନ। "ପରମ୍ପରା ଓ ଆଧୁନିକତା' ଓ 'ଓଡ଼ିଆ କବିତାରେ ମୃତ୍ୟୁ ଚେତନା'ଶୀର୍ଷକ ଚର୍ଚ୍ଚାଦ୍ୱୟ ନିତ୍ୟାନନ୍ଦଙ୍କ ସମୀକ୍ଷଣର ନିଜସ୍ୱ ଧାରା ଓ ଉପଲବ୍ଧିକୁ ସ୍ପଷ୍ଟକରେ। ଆଧୁନିକ ଓଡ଼ିଆ କବିତା ସଂପର୍କିତ ତିନୋଟି ରଚନା 'ଆଧୁନିକ ଓଡ଼ିଆ କବିତାର ଭାଷା ଓ ଛାନ୍ଦ', 'ଆଧୁନିକ ଓଡ଼ିଆ କବିତାର ସୀମା ଓ ସଜ୍ଞା', "ସାଂପ୍ରତିକ ଓଡ଼ିଆ କବିତାର ଧାରା' ତା'ର ଭାବଜଗତ ଓ ଆଙ୍ଗିକ ପାଟକ ସଂପର୍କରେ ସମୀକ୍ଷକଙ୍କ ନିଜସ୍ୱ ପର୍ଯ୍ୟବେକ୍ଷଣ,ମନନ ଓ ବିଶ୍ଳେଷଣର ପରିପ୍ରକାଶ। **କାବ୍ୟଦୃଷ୍ଟି : କାବ୍ୟ ବିଚାରରେ** ସ୍ଥାନିତ ଉପର୍ଯ୍ୟୁକ୍ତ ଚର୍ଚ୍ଚାଗୁଡିକର ବିଶଦ ଆଲୋଚନାରେ ନିତ୍ୟାନନ୍ଦଙ୍କ ଦୃଷ୍ଟିଭଙ୍ଗୀ ଓ ଆଭିମୁଖ୍ୟକୁ ଚିହ୍ନିତ କରାଯାଇପାରିବ। ଏଠାରେ କେବଳ ଏ ଚର୍ଚ୍ଚାଗୁଡିକର ସ୍ୱରୂପ ଓ ଆଭିମୁଖ୍ୟର ପରିଚିତି ହିଁ ଉପସ୍ଥାପନ କରାଯାଇଅଛି।

ଏଇ ପରିପ୍ରେକ୍ଷୀରେ 'ଉତ୍ତର-ଆଧୁନିକ ଓଡ଼ିଶା କବିତା' ଶୀର୍ଷକରେ ଷାଠିଏ ପୃଷ୍ଠାର ସୁଦୀର୍ଘ ଚର୍ଚ୍ଚା ବହୁ ପ୍ରଶ୍ନ ଉତ୍‌ଥାପନ କରେ। ନିତ୍ୟାନନ୍ଦଙ୍କ ବିଭିନ୍ନ ଚର୍ଚ୍ଚାରେ ଠାଏ ଠାଏ ଉତ୍ତର-ଆଧୁନିକତାର ଉଲ୍ଲେଖ ରହିଛି ଏବଂ ଚର୍ଚ୍ଚାଟି ଏଇ ଧାରାରେ ପୂର୍ଣ୍ଣାଙ୍ଗ ଆଲୋକପାତ। ପାଶ୍ଚାତ୍ୟ ସାହିତ୍ୟ ସମୀକ୍ଷଣର ଆଭିମୁଖ୍ୟକୁ ଉଲ୍ଲେଖ କରି ନିତ୍ୟାନନ୍ଦ କହନ୍ତି - "ଏସବୁ ଭାବନା ସେମାନଙ୍କ ପରିବେଶ ଅନୁଯାୟୀ ନିର୍ଣ୍ଣିତ; ସେଥିରେ ଆମର କିବା ସଂପର୍କ ? ତେବେ କୌଣସି ସଂଜ୍ଞା ଅନୁସାରେ ନୁହେଁ, ବରଂ ମୋ ମତରେ ୧୯୮୦ ପରବର୍ତ୍ତୀ ଓଡ଼ିଆ କବିତା'ରେ ପ୍ରତିଫଳିତ ବିଭିନ୍ନ ଭାବଧାରା ଓ ପ୍ରସଙ୍ଗ ମଧ୍ୟରୁ ଉତ୍ତର ଆଧୁନିକତାର ଉପାଦାନକୁ ଖୋଜିବା ସବୁଠାରୁ ନିରାପଦ ହେବ।" (ପୃ-୨୧୯) ସେ ୧୯୮୦ ପରବର୍ତ୍ତୀ ଓଡ଼ିଆ କବିତାର ନୂତନତା ସଂପର୍କରେ ନଅଗୋଟି ବିଶେଷତ୍ୱର ଉଲ୍ଲେଖ କରିଛନ୍ତି। ପାଶ୍ଚାତ୍ୟ ଭୂମି ଓ ସଂସ୍କୃତି ଭିନ୍ନ ହେଲେ ହେଁ ଏକଦା ଏଠାକୁ ଆସିଥିବା ଆଧୁନିକତା ପରି ଉତ୍ତର-ଆଧୁନିକତାକୁ କବିତାର ଅଙ୍ଗ ଓ ଆତ୍ମାରେ ଖୋଜିବା ତା'ର ପରୀକ୍ଷା ଓ ପ୍ରୟୋଗ ଏଠାରେ କେତେଭାବେ ସଂପନ୍ନ ହୋଇଛି, ତାହାକୁ ନିର୍ଦ୍ଦିଷ୍ଟ କରିବା ନିଶ୍ଚିତ ଭାବେ ଆଉ -ଏକ ବିଚାର। ସମୀକ୍ଷକଙ୍କ ଉତ୍ତର-ଆଧୁନିକତା ସଂପର୍କିତ ଚର୍ଚ୍ଚାରେ ୧୯୮୦ ମସିହା ପରବର୍ତ୍ତୀ ଓଡ଼ିଆ କବିତା ଚର୍ଚ୍ଚିତ ହେଲେ ହେଁ ପ୍ରଦତ୍ତ ଉଦାହରଣରରୁ ବହୁ ପ୍ରସଙ୍ଗ ଏହାର ପୂର୍ବବର୍ତ୍ତୀ ସମୟର ଯଥା : ସୀତାକାନ୍ତ ମହାପାତ୍ରଙ୍କ 'ପରକୀୟା', ଦୀର୍ଘ କବିତା 'ଆରଦୃଶ୍ୟ' (୧୯୮୧)ର ପାଞ୍ଚଗୋଟି ଗୁରୁତ୍ୱପୂର୍ଣ୍ଣ କବିତା, 'ଚିତ୍ରନଦୀ' (୧୯୭୯)ର 'ଘାସଫୁଲ' ଓ 'ବୁଢ଼ାଶିକାରୀ' କବିତା। 'ନଈ ଆଉ ମାଛ, ହଂସ ଓ ସାରସ' କବିତା ଗ୍ରନ୍ଥର ଲୋକଗୀତ ଛନ୍ଦରେ ରଚିତ କବିତା, 'ଶୈଳକଳ୍ପ' (୧୯୮୧)ର 'ଝିଅ ପାଇଁ ଗୋଟିଏ କବିତା', ସମୟ ଚେତନା ନେଇ ରମାକାନ୍ତ ରଥଙ୍କର 'ସନ୍ଦିଗ୍ଧ ମୃଗୟା' ଓ 'ସପ୍ତମଋତୁ'ର କବିତା, ପ୍ରତିଭା ଶତପଥୀଙ୍କର 'ଗ୍ରସ୍ତସମୟ' (୧୯୭୪)ର 'ସାବିତ୍ରୀ ଉବାଚ' କବିତା ପ୍ରଭୃତି। ଏଣୁ ଏ ଚର୍ଚ୍ଚାଟି ୧୯୭୦ ପରବର୍ତ୍ତୀ ୪୦ ବର୍ଷର କବିତାର ନୂତନତାକୁ ହିଁ ସୂଚାଉଛି।

ଆଲୋଚ୍ୟ ଚାରିଗୋଟି ଚର୍ଚ୍ଚା ବା ସମାଲୋଚନା ଗ୍ରନ୍ଥରେ ନିତ୍ୟାନନ୍ଦଙ୍କ ବିଶ୍ଲେଷଣ ଓ ଅଭିମତ ସହିତ ସମସ୍ତେ ଯେ ଏକମତ ହେବେ, ଏହା ଆଶଙ୍କା କରାଯାଇନପାରେ। ବିଂଶ ଶତାବ୍ଦୀର ଓଡ଼ିଆ କବିତାର ବ୍ୟାପ୍ତି ଓ ଦୀପ୍ତିକୁ ଏହା ଆଲୋକିତ କରିଛି, ପାଠକଙ୍କ ବୋଧ ଓ ଆଗ୍ରହକୁ ପ୍ରଚୋଦିତ କରିବାର ବହୁ ଅବକାଶ ସୃଷ୍ଟି କରିଛି। ନିତ୍ୟାନନ୍ଦଙ୍କ ସମୀକ୍ଷଣ ଭିନ୍ନ ମତ  ଓ ପ୍ରତିଚର୍ଚ୍ଚା ସୃଷ୍ଟିକରିବାର ପରିମଣ୍ଡଳ ସୃଷ୍ଟିକରେ। କବିତାର ସମୀକ୍ଷଣରେ ତାଙ୍କ ନିଷ୍ଠା ଓ ପ୍ରତିବଦ୍ଧତା ପରବର୍ତ୍ତୀ ପିଢ଼ିର କବିତା ସୀମକ୍ଷଣ ନିମିତ୍ତ ବିଶେଷ ଭୂମି ଓ ଭୂମିକା ତଥା ମାର୍ଗ ପ୍ରସ୍ତୁତ କରିଛି ବୋଲି କହିବାକୁ ହେବ।

**ନିତ୍ୟାନନ୍ଦ ଶତପଥୀଙ୍କ ପ୍ରକାଶିତ ସାହିତ୍ୟ-ସମାଲୋଚନା ଗ୍ରନ୍ଥସୂଚୀ।**

**କବତା ଯୁଗେ ଯୁଗେ**, ୧୯୭୬, କଟକ, ଗ୍ରନ୍ଥ ମନ୍ଦିର।
**ଆଧୁନିକ ସାହିତ୍ୟ: ଚିନ୍ତା ଓ ଚେତନା**, ୧୯୭୭, କଟକ, ବିଦ୍ୟାପୁରୀ।
**ସବୁଜରୁ ସାଂପ୍ରତିକ**, ୧୯୭୯, କଟକ, ଗ୍ରନ୍ଥ ମନ୍ଦିର।
**ପ୍ରମୁଖ କବି କତିପୟ**, ୧୯୮୫, କଟକ, ନାଳନ୍ଦା।
**ଗଳ୍ପ ଓ ଗାଳ୍ପିକ** (ପ୍ରଥମ ଭାଗ), ୧୯୮୬, କଟକ, ଓଡ଼ିଶା ବୁକ୍ ଷ୍ଟୋରସ୍।
**କାବ୍ୟ ପ୍ରକରଣ**, ୧୯୯୩, କଟକ, ନାଳନ୍ଦା।
**ସତ୍ୟବାଦୀ ଯୁଗ : ସ୍ରଷ୍ଟା ଓ ସୃଷ୍ଟି**, ୧୯୯୯, କଟକ, ଗ୍ରନ୍ଥ ମନ୍ଦିର।
**ସାରଳାରୁ ସଂପ୍ରତି**, ୧୯୯୭, କଟକ, ଆର୍ଯ୍ୟ ପ୍ରକାଶନୀ।
**ସତୁରୀରୁ ସହସ୍ରାବ୍ଦୀ**, ୨୦୦୩, କଟକ, ପ୍ରାଚୀ ସାହିତ୍ୟ ପ୍ରତିଷ୍ଠାନ।
**କବିତା ସେତୁ**, ୨୦୦୯, କଟକ, ଗ୍ରନ୍ଥ ମନ୍ଦିର।
**କାବ୍ୟଦୃଷ୍ଟି : କାବ୍ୟବିଚାର**, ୨୦୧୫, କଟକ, ବିଜୟିନୀ ପବ୍ଲିକେଶନସ୍।
**ମେଗା ଓଡ଼ିଆ ଉପନ୍ୟାସ**, ୨୦୧୫, କଟକ, ପ୍ରବାହ।

**ସଂପାଦନା**

**ଚଳିତ ଶତାବ୍ଦୀର ଓଡ଼ିଆ କବିତା**, ୧୯୯୧, କଟକ, ଗ୍ରନ୍ଥ ମନ୍ଦିର।
**କବି ମନୀଷୀ**, ୧୯୯୩, କଟକ, ଓଡ଼ିଶା ବୁକ୍ ଷ୍ଟୋରସ୍।
**ଲଳିତ ନିବନ୍ଧ**, ୧୯୮୫, କଟକ, ବିଦ୍ୟାପୁରୀ।
**ବିଦ୍ୟୁତ୍‌ପ୍ରଭା ଗ୍ରନ୍ଥାବଳୀ** (ପ୍ରଥମ ଓ ଦ୍ୱିତୀୟ ଭାଗ), ୧୯୮୯, କଟକ, ଓଡ଼ିଶା ବୁକ୍ ଷ୍ଟୋରସ୍।
**ସାମ୍ପ୍ରତିକ ଓଡ଼ିଆ କବିତା**, ୧୮୯୭, ନୂଆଦିଲ୍ଲୀ, ଏନ୍.ବି.ଟି।
**ଅତିବଡି ପରିକ୍ରମା**, କଟକ, ପୂଜ୍ୟପୂଜା ସଂସଦ।
**ଆଚାର୍ଯ୍ୟ ପରିକ୍ରମା**, କଟକ, ପୂଜ୍ୟପୂଜା ସଂସଦ।
**ପ୍ରହରାଜ ପରିକ୍ରମା**, କଟକ, ପୂଜ୍ୟପୂଜା ସଂସଦ।
**ଗୋପବନ୍ଧୁ ପରିକ୍ରମା**, ୧୯୯୭, କଟକ, ପୂଜ୍ୟପୂଜା ସଂସଦ।

ମାନସିଂହ ପରିକ୍ରମା, ୧୯୭୯, କଟକ, ପୂଜ୍ୟପୂଜା ସଂସଦ।
ବୈକୁଣ୍ଠ ପରିକ୍ରମା, କଟକ, ପୂଜ୍ୟପୂଜା ସଂସଦ।
ଗୋଦାବରୀଶ ପରିକ୍ରମା, ୧୯୮୪, କଟକ, ପୂଜ୍ୟପୂଜା ସଂସଦ।
ଗଜପତି ପରିକ୍ରମା, କଟକ, ପୂଜ୍ୟପୂଜା ସଂସଦ।
ନରେନ୍ଦ୍ର ନନ୍ଦନିକା, ବାଲେଶ୍ୱର, ସବୁର୍ଣ୍ଣଶ୍ରୀ ପ୍ରକାଶନୀ।
ଅନେକ ନଈର ସୁଅ, ୨୦୧୧, ଯାଜପୁର, ପ୍ରବାହ।
ଗଳ୍ପ ତ୍ରିଂଶକ, ଯାଜପୁର, ପ୍ରବାହ।
ଆତ୍ମଜୀବନୀ
ପ୍ରେମ ଓ ପ୍ରତାରଣା, କଟକ, ପ୍ରାଚୀ ସାହିତ୍ୟ ପ୍ରତିଷ୍ଠାନ।
ପ୍ରେମ ଓ ପରିତାପ, ସାଲେପୁର, ଚିତ୍ରୋତ୍ପଳା ପ୍ରକାଶନ ।
ଶୈଶବରୁ ଅବସର, କଟକ, ବିଜୟିନୀ ।
ଭ୍ରମଣ କାହାଣୀ, ୨୦୧୪, ୟୁରୋପ : ସଂସ୍କୃତି ଓ ବିସ୍ମୟ, କଟକ, ବିଜୟିନୀ।

ଏକ

ପୁରୁଷାନୁକ୍ରମେ ପାଣ୍ଡିତ୍ୟ ପାଇଁ ସୁପ୍ରସିଦ୍ଧ ଗଂଜାମ ଜିଲ୍ଲା ଜରଡ଼ା ସୁବର୍ଣ୍ଣପୁରର ପଣ୍ଡିତରାୟ ପରିବାରରେ ତା ୨୮.୦୧.୧୯୩୯ ମାଘ ଶୁକ୍ଳପକ୍ଷ ତିଳ ସପ୍ତମୀ ତିଥିରେ ସୁଦର୍ଶନ ଆଚାର୍ଯ୍ୟଙ୍କ ଜନ୍ମ । ତାଙ୍କ ବୃଦ୍ଧ ପ୍ରପିତାମହ ଶ୍ରୀକର **ସାତ୍ୱତ ବ୍ରହ୍ମସଂହିତା, ସୁଭାଷିତ ରତ୍ନଭାଣ୍ଡାଗାର, କବୀନ୍ଦ୍ରବଚନସମୁଚ୍ଚୟ** ପ୍ରଭୃତି ଗ୍ରନ୍ଥର ରଚୟିତା ଓ ସଙ୍କଳକ । ପ୍ରପିତାମହ ନାରାୟଣ ବିଖ୍ୟାତ ପଣ୍ଡିତ; **ଲଘୁଚନ୍ଦ୍ରିକା, ସାରସଂଗ୍ରହ, ପାର୍ଥସାରଥିସ୍ତବ, ମଠାମ୍ନାୟ, ଷଡ଼୍‌ଜୟନ୍ତୀ ବିଧାନ, ନୃସିଂହାର୍ଚନ ଚନ୍ଦ୍ରିକା** ଆଦିର ଲେଖକ । ପିତାମହ ମୋହନ ଲଘୁଚନ୍ଦ୍ରିକାର ସୁବୋଧିନୀ ଟୀକାକାର ରୂପେ ପ୍ରଖ୍ୟାତ । ବହୁଶାସ୍ତ୍ର ପାରଗ ପିତା ଯତିରାଜ ରଚନା କରିଥିଲେ **ମାଧବବିଳା, ଶ୍ରୀକୃଷ୍ଣଚରିତ, କଳାକରବିଳାସ, କଂସନିସୂଦନ ବ୍ୟାୟୋଗ, ସ୍ୟମନ୍ତକାଭ୍ୟୁଦୟ, ବିଦଗ୍‌ଧବଲ୍ଲଭ, ଭୀଷଗ୍‌ବିନୋଦ, ହଂସଦୂତ, ଘଣ୍ଟାପଥ, ଲଘୁସିଦ୍ଧାନ୍ତଚନ୍ଦ୍ରିକା, ମନ୍ତ୍ରରତ୍ନପ୍ରଦୀପ, ସମ୍ପ୍ରଦାୟପ୍ରଦୀପ, ପରମାର୍ଥପ୍ରଦୀପ, ସୁଦର୍ଶନ ଯଜ୍ଞପଦ୍ଧତି, ପ୍ରତିଷ୍ଠାସରଣୀ, ବ୍ୟାକରଣଜୀବାତୁ** ସମେତ ଛତିଶିରୁ ଉର୍ଦ୍ଧ୍ୱ ଗ୍ରନ୍ଥ । ଗ୍ରନ୍ଥ ରଚନାର ପରମ୍ପରା ସଙ୍ଗକୁ ଘରେ ମଧ୍ୟ ଥିଲା ପ୍ରାଚୀନ ପୋଥି ଓ ପୁସ୍ତକ ସମ୍ବଳିତ ପୁରୁଷାନୁକ୍ରମେ ସୁସଜ୍ଜିତ ଏକ ପାଠାଗାର ଏବଂ ବିଦ୍ୱତ୍ ସତ୍‌ସଙ୍ଗର ଜୀବନଧାରା ।

ପଣ୍ଡିତ ପିତା ଓ ବିଦ୍ୱାନ୍ ପରିବେଶ ଲାଳିତ ଆଚାର୍ଯ୍ୟଙ୍କ ପ୍ରତିଭାର ଆଦ୍ୟ ସ୍ଫୁରଣର ସାକ୍ଷୀ ନୂଆପଡ଼ା ଉଚ୍ଚ ବିଦ୍ୟାଳୟର ମୁଖପତ୍ର *ବାହୁଦା*ରେ ମାତ୍ର ଅଷ୍ଟମ ଶ୍ରେଣୀରେ ଅଧ୍ୟୟନ କାଳରେ ପ୍ରକାଶିତ *ପିତାଧର୍ମ* ପ୍ରବନ୍ଧ । ଖଲ୍ଲିକୋଟ ଓ ରେଭେନ୍‌ସା ମହାବିଦ୍ୟାଳୟରେ ଛାତ୍ରତ୍ୱ ତାଙ୍କ ପ୍ରତିଭା ଓ ସାଧନାକୁ ବିସ୍ତୃତି ପ୍ରଦାନ କରିଛି । ଚିନ୍ତାମଣି ଦାସ, ବିଚ୍ଛନ୍ଦ ଚରଣ ପଟ୍ଟନାୟକ, ଚିନ୍ତାମଣି ବେହେରା, ନଟବର ସାମନ୍ତରାୟ, ଗୋବିନ୍ଦଚନ୍ଦ୍ର ଉଦ୍‌ଗାତା, କେଦାରନାଥ ମହାପାତ୍ର ଆଦିଙ୍କ ଶିକ୍ଷା ଓ ସାହଚର୍ଯ୍ୟ ପ୍ରେରଣାଦାୟକ ସାବ୍ୟସ୍ତ ହୋଇଚି । ଗଳ୍ପ ଓ କବିତାମାନ ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶପାଇଚି । ତେବେ ଗବେଷଣାତ୍ମକ ପ୍ରବନ୍ଧ ରଚନାର ଯଥାର୍ଥ ଉନ୍ମେଷ ଘଟିଚି ରେଭେନ୍‌ସା ମହାବିଦ୍ୟାଳୟରେ ଅଧ୍ୟୟନ ସମୟରେ । ଏତିକିବେଳକୁ ତାଙ୍କ ସନ୍ଧାନସ୍ନାତ-ମନୀଷା ଯଥେଷ୍ଟ ମାତ୍ରାରେ ସ୍ୱନିର୍ଭରଶୀଳ ହୋଇସାରିଛି । ଅଧ୍ୟୟନ, ପାରିବାରିକ ସଂସ୍କାର, ଗଭୀର ମନନଶୀଳତା ଓ ଯୁକ୍ତି ସମନ୍ୱିତ ଅନ୍ତର୍ଦୃଷ୍ଟି ସମୁନ୍ନତ ଗବେଷକଙ୍କୁ ଜନ୍ମ ଦେଇଛି । ସାହିତ୍ୟ ଏକାଡେମୀର ମୁଖପତ୍ର *କୋଣାର୍କ*ରେ ପ୍ରକାଶ ପାଇଛି *ପତିଭକ୍ତା ପୁରାଣ ଓ କବି ଦୀନବନ୍ଧୁ* ପ୍ରବନ୍ଧ । ଗୁଣାତ୍ମକ ମାନ ପ୍ରତି ସମାଦରଶୀଳ ତତ୍କାଳୀନ ପତ୍ରିକା ସମ୍ପାଦକବୃନ୍ଦ ଜଣେ ଅଧ୍ୟୟନରତ ଛାତ୍ରଙ୍କ ପ୍ରବନ୍ଧ ସ୍ୱ

ପତ୍ରିକାରେ ସ୍ଥାନାପନ୍ନ କରିବା ପାଇଁ ଆଦୌ କୁଣ୍ଠାବୋଧ କରିନାହାନ୍ତି । କୋଣାର୍କ, ଝଙ୍କାର, ନିର୍ଭୀକ, ରେଭେନ୍ସାଭିଆନ୍ ଆଦି ପତ୍ରିକାରେ ବିଭିନ୍ନ ପ୍ରବନ୍ଧ ପ୍ରକାଶ ପାଇଚି । ଓଡ଼ିଆ ସାହିତ୍ୟର ବହୁ ଅନାଲୋଚିତ ଗ୍ରନ୍ଥ ଓ ଗ୍ରନ୍ଥକାର ଲୋକଲୋଚନକୁ ଆସିବା ସମ୍ଭବ ହୋଇଚି; ପରବର୍ତ୍ତୀ କାଳରେ ଓଡ଼ିଆ ସାହିତ୍ୟର ଇତିହାସ ଗ୍ରନ୍ଥଗୁଡ଼ିକରେ ସେମାନଙ୍କ ସ୍ଥାନ ଲାଭର ପଥ ସୁଗମ ହୋଇପାରିଛି । ସାଧନାର ସୁଫଳ ବି ଆଚାର୍ଯ୍ୟଙ୍କୁ ଅଚିରେ ମିଳିଛି । ମାତ୍ର ସତେଇଶି ବର୍ଷ ବୟସରେ ଝଙ୍କାରର ବିଷୁବ ମିଳନ ଅବସରରେ ଶ୍ରେଷ୍ଠ ପ୍ରାବନ୍ଧିକ ପୁରସ୍କାର ସେ ପ୍ରାପ୍ତ ହେବା ସମ୍ଭବ ହୋଇଛି ।

*ସାହିତ୍ୟ ଓ ସାହିତ୍ୟିକ, ସ୍ରଷ୍ଟା ଓ ସୃଷ୍ଟି, ଓଡ଼ିଆ କାବ୍ୟ କୌଶଳ* ଆଚାର୍ଯ୍ୟଙ୍କ ଗବେଷଣାତ୍ମକ ମନୀଷାର ସାର୍ଥକ ବାହକ । *କଥା ସରିତ ସାଗର, ଜୟଦେବ, ତେଲୁଗୁ ସାହିତ୍ୟର ଇତିହାସ, ନିସର୍ଗ, ପୁରୁଷସୂକ୍ତ ଓ ସ୍ତ୍ରୀସୂକ୍ତ* ତାଙ୍କ ଭାଷାନ୍ତର କୌଶଳର ବର୍ଣ୍ଣାଢ୍ୟ ପ୍ରମାଣ । *ଇନ୍ଦ୍ରଧନୁ, ଜଗନ୍ନାଥ ନାରାୟଣ ଦେବ ଗ୍ରନ୍ଥାବଳୀ, ଫକୀରମୋହନଙ୍କ ରାମାୟଣ ଓ ଜୀବନଚରିତ, ରାମଚନ୍ଦ୍ର ଗ୍ରନ୍ଥାବଳୀ, ଉପେନ୍ଦ୍ର ଭଞ୍ଜଙ୍କ ଚିତ୍ରଲେଖା, ପଦ୍ମନାଭ ନାରାୟଣ ଦେବ ଗ୍ରନ୍ଥାବଳୀ, ଊନବିଂଶ ଶତକର ଦୁଇଟି ବିସ୍ମୃତ ସାହିତ୍ୟପତ୍ର: ଉତ୍କଳ ମଧୁପ ଓ ପ୍ରଦୀପ, ପଣ୍ଡିତ ଗୋପୀନାଥ ନନ୍ଦ ଗ୍ରନ୍ଥାବଳୀ, ଓଡ଼ିଶାର ଅସ୍ମିତା ସନ୍ଧାନ ଓ ଉପେନ୍ଦ୍ରଭଂଜ କାବ୍ୟାଲୋଚନା, ଗୋପାଳଚନ୍ଦ୍ର ପ୍ରହରାଜ: ବ୍ୟକ୍ତି ଓ ବ୍ୟକ୍ତିତ୍ୱ, ଅନ୍ତଃପୁରର ଅଭିଲେଖ: ମଧ୍ୟକାଳର ନାରୀ ପ୍ରତିଭା, ଶ୍ରୀବିଷ୍ଣୁ ପୁରାଣ, ଉଷା ଅଭିଳାଷ, ରେଖା ଓ ରଙ୍ଗରେ ଚଉତିଶା, ମୁକ୍ତିଗୀତିକା, ନବକଳିକା* ଆଦି ଦୁର୍ଲଭ ଓ ମହତ ଗ୍ରନ୍ଥର ସେ ସୁଯୋଗ୍ୟ ସମ୍ପାଦକ । ଗ୍ରନ୍ଥଗୁଡ଼ିକରେ ସଂଯୋଜିତ ମୁଖବନ୍ଧ ସମୂହ ଓଡ଼ିଆ ସମାଲୋଚନା ସାହିତ୍ୟର ଅମୂଲ୍ୟ ସମ୍ପଦ । ବହୁ ଲେଖକଙ୍କ ଲିଖିତ ଓ ସମ୍ପାଦିତ ପୁସ୍ତକ ସମୂହରେ ତାଙ୍କ ପ୍ରଦତ୍ତ ଅଭିମତ ଔପଚାରିକ ଦାୟିତ୍ୱ ନିର୍ବହନ ମାତ୍ର ନୁହେଁ; ଅଧିକନ୍ତୁ ନିବିଡ଼ ମନନଶୀଳ ଦୃଷ୍ଟିର ସମ୍ବାହକ । ସଙ୍ଗକୁ ରହିଚି ଇଂରାଜୀ ଓ ଓଡ଼ିଆରେ ରଚିତ ଶତାଧିକ ପ୍ରକାଶିତ, ଅପ୍ରକାଶିତ, ସଙ୍କଳିତ ଓ ଅସଙ୍କଳିତ ପ୍ରବନ୍ଧ, ପାଠଚକ୍ର ଉପସ୍ଥାପନ, ଆକାଶବାଣୀ ବ୍ୟାଖ୍ୟାନ, ସ୍ମୃତିଚାରଣ ତଥା ସାକ୍ଷାତ୍କାର ।

ସାହିତ୍ୟ ସମାଲୋଚନାର ଏକ ବିଶିଷ୍ଟ ଦିଗ ଗବେଷଣାର ତତ୍ତ୍ୱାବଧାନ । ଆଚାର୍ଯ୍ୟଙ୍କ ତତ୍ତ୍ୱାବଧାନରେ ଗବେଷଣା ସୁଯୋଗ ପ୍ରାପ୍ତି ଏକ ପରମ ସୌଭାଗ୍ୟ ଓ ଚରମ ଗୌରବ । ଗବେଷଣା ନାମରେ ରଚନାଗୁଡ଼ିଏ ଲେଖିପକାଇ ତାଙ୍କ ସୂକ୍ଷ୍ମ ଓ ତୀକ୍ଷ୍ଣ ଦୃଷ୍ଟିରୁ ବର୍ତ୍ତିଯିବା ଆୟାସସାଧ୍ୟ ନୁହେଁ, ଅସାଧ୍ୟ । ବିଷୟନିର୍ବାଚନ, ଅଧ୍ୟୟନ, ଆହରଣ, ଅନୁଶୀଳନ, ସମୀକରଣ ଓ ଉପସ୍ଥାପନ ଆଦି ପ୍ରତିଟି ପର୍ଯ୍ୟାୟରେ ତାଙ୍କ ବରଦହସ୍ତ, ଯୁକ୍ତି ସମନ୍ୱିତ ପାଣ୍ଡିତ୍ୟ ଓ ସସ୍ନେହ ମାର୍ଗଦର୍ଶନ ଅବଶ୍ୟ ପ୍ରସାରିତ ।

କେବଳ ଶିକ୍ଷାଦାନ ଓ ଗବେଷଣା ନୁହେଁ; ସାହିତ୍ୟ ସଙ୍ଗଠନ, ନାଟ୍ୟାନୁଷ୍ଠାନ, ଅଭିନୟ ଓ ଶିକ୍ଷାନୁଷ୍ଠାନ ପରିଚାଳନାରେ ମଧ୍ୟ ଆଚାର୍ଯ୍ୟ ମହାଶୟ ଗଭୀର ଅନୁଭବୀ । ସଦ୍ୟ ସଂସ୍ଥାପିତ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ଅଭିବୃଦ୍ଧିଠାରୁ ଆରମ୍ଭ କରି ଆନ୍ଧ୍ର ବିଶ୍ୱବିଦ୍ୟାଳୟ

ସମେତ ବିଭିନ୍ନ ଶିକ୍ଷାନୁଷ୍ଠାନ, ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗ, ଜାତୀୟ ପୁସ୍ତକ ନ୍ୟାସ, ଓଡ଼ିଶା ସାହିତ୍ୟ ଏକାଡେମୀ, କେନ୍ଦ୍ର ସାହିତ୍ୟ ଏକାଡେମୀ, ପାରିଭାଷିକ ଶବ୍ଦ ସମିତି ପର୍ଯ୍ୟନ୍ତ ସର୍ବତ୍ର ତାଙ୍କ କୁଶଳୀ କାରିଗରିର ଗଭୀର ଛାପ ସୁସ୍ପଷ୍ଟ ।

ନିଷ୍ଠା ଓ ସାଧନାର ଏ ବିସ୍ତୃତି ଓ ଗଭୀରତା ତାଙ୍କୁ କରିଚି ପୁରସ୍କାର ଓ ସମ୍ମାନ ପ୍ରତି ବିମୁଖ । ତଥାପି ଗୁଣମୁଗ୍ଧ ହୃଦୟର ଶ୍ରଦ୍ଧା ନିବେଦନ ନେଇଆସିଚି ପ୍ରଜାତନ୍ତ୍ର ପ୍ରଚାର ସମିତି, ଯଦୁମଣି ସାହିତ୍ୟ ସଂସଦ, ଉତ୍କଳ ପରିଷଦ, ଶିଶୁ ସାହିତ୍ୟ ସଂସଦ, କଳିଙ୍ଗ ସାହିତ୍ୟ ସମାଜ, ମାଣିକ ସଙ୍ଗଠନ, ସିଦ୍ଧାନ୍ତ ସାହିତ୍ୟ ପରିବାର, ସତ୍ୟନାରାୟଣ ରାଜଗୁରୁ ସ୍ମୃତି ସମିତି, ସ୍ୱାଭିମାନ ସାମାଜିକ ସାଂସ୍କୃତିକ ଗବେଷଣା ପ୍ରତିଷ୍ଠାନ ଆଦି ବହୁ ଅନୁଷ୍ଠାନର ସମ୍ମାନ ଓ ପୁରସ୍କାର । ଓଡ଼ିଶା ସାହିତ୍ୟ ଏକାଡେମୀ, କେନ୍ଦ୍ର ସାହିତ୍ୟ ଏକାଡେମୀ, କେନ୍ଦ୍ରୀୟ ଭାରତୀୟ ଭାଷା ସଂସ୍ଥାନ ଆଦି ତାଙ୍କୁ ନିଜ ନିଜର ଶ୍ରେଷ୍ଠ ସମ୍ମାନରେ ଭୂଷିତ କରିଛନ୍ତି । ଶ୍ରୀକାକୁଲଂ ସରକାରୀ ମହାବିଦ୍ୟାଳୟ, ଖଲ୍ଲିକୋଟ ମହାବିଦ୍ୟାଳୟ, ବ୍ରହ୍ମପୁର ବିଶ୍ୱବିଦ୍ୟାଳୟରେ ଅତିବାହିତ ଚାରି ଦଶନ୍ଧିର କର୍ମମୁଖର ଜୀବନ ଆନୁଷ୍ଠାନିକ ଅବସରର ପ୍ରାୟ ଦୁଇ ଦଶନ୍ଧି ପରେ ଆଜି ମଧ୍ୟ ଅଧିକ ସ୍ଫୂର୍ତିଶୀଳ, ଅଧିକ ସାଧନାମଗ୍ନ । ଆନ୍ତରିକତା, ସମସ୍ତଙ୍କ ପ୍ରତି ଶ୍ରଦ୍ଧା, ନିରହଙ୍କାରପଣକୁ ଭିତ୍ତିକରି ଗଢ଼ିଉଠିଥିବା ଆଚାର୍ଯ୍ୟଙ୍କ ବ୍ୟକ୍ତିତ୍ୱ ଯେତିକି ପ୍ରଭାବଶୀଳ ସେତିକି ଅନ୍ୟମାନଙ୍କପାଇଁ ପ୍ରେରଣାର ଉତ୍ସ ।

## ଦୁଇ

ଆଚାର୍ଯ୍ୟଙ୍କ ଲିଖିତ ଓ ପ୍ରକାଶିତ ଶତାଧିକ ପ୍ରବନ୍ଧ ଆଜି ସୁଦ୍ଧା ଅସଙ୍କଳିତ । କେବଳ ସମାଲୋଚକ ଜୀବନର ପ୍ରାଥମିକ ପର୍ଯ୍ୟାୟରେ ଲିଖିତ ପ୍ରବନ୍ଧଗୁଡ଼ିକ ମଧ୍ୟରୁ ଅଧିକାଂଶ ପ୍ରଥମ ଦୁଇଟି ପ୍ରକାଶିତ ଗ୍ରନ୍ଥ-*ସାହିତ୍ୟ ଓ ସାହିତ୍ୟିକ(୧୯୬୮), ସ୍ରଷ୍ଟା ଓ ସୃଷ୍ଟି(୧୯୭୨)*-ରେ ସଙ୍କଳିତ ।

*ସାହିତ୍ୟ ଓ ସାହିତ୍ୟିକ* ପୁସ୍ତକଟି ଶିରୋନାମା ଅନୁସାରେ ଦୁଇ ଭାଗରେ ବିଭକ୍ତ । ପ୍ରଥମ ଭାଗର ତେରଟି ପ୍ରବନ୍ଧର ଉପଜୀବ୍ୟ ବିବିଧ ସାହିତ୍ୟିକ ପ୍ରସଙ୍ଗ । ଦ୍ୱିତୀୟ ଭାଗର ଆଲୋଚ୍ୟ ବିଷୟ ଆଠ ଜଣ ସାହିତ୍ୟିକ ଓ ସେମାନଙ୍କ ଅପ୍ରକାଶିତ ଅମର କୃତି । ସେହିପରି ନଅଟି ମୌଳିକ ସାହିତ୍ୟିକ ପ୍ରବନ୍ଧର ସଂଗ୍ରଥନ *ସ୍ରଷ୍ଟା ଓ ସୃଷ୍ଟି* । ଏ ତିରିଶିଟି ପ୍ରବନ୍ଧ ମଧ୍ୟରୁ ଅଧିକାଂଶର ଆଲୋଚ୍ୟ ପ୍ରସଙ୍ଗ ସେକାଳରେ ସମ୍ପୂର୍ଣ୍ଣ ନୂତନ । ଏପରିକି ଅର୍ଜୁନ ଦାସ, ଉପେନ୍ଦ୍ର ଭଞ୍ଜ, ବ୍ରଜନାଥ ଆଦି ସୁପରିଚିତ ସାହିତ୍ୟକାରଙ୍କୁ ନେଇ ରଚିତ ପ୍ରବନ୍ଧଗୁଡ଼ିକରେ ପ୍ରତିଫଳିତ ଦୃଷ୍ଟିଭଙ୍ଗୀ ତତ୍କାଳୀନ ପ୍ରଚଳିତ ମତବାଦଠାରୁ ପୂରାପୂରି ଭିନ୍ନ । ପ୍ରଚଳିତ ଦୃଷ୍ଟିଭଙ୍ଗୀକୁ ସମ୍ପୂର୍ଣ୍ଣ ଅସ୍ୱୀକାର କରି ଜଣେ ନବାଗତ ତରୁଣ ପ୍ରାବନ୍ଧିକ ସ୍ୱୀୟ ସ୍ୱଚ୍ଛ ମତ ଉପସ୍ଥାପନ କରିବାର ଅକୁତୋଭୟତା *ଗତିଶୀଳ ସାହିତ୍ୟ, ପରିସ୍ଥିତିର ପର୍ଯ୍ୟାଲୋଚନା, ଓଡ଼ିଆ କ୍ଷୁଦ୍ରଗଳ୍ପ-ସାହିତ୍ୟର ଗତି ଓ ପ୍ରକୃତି* ଆଦି ପ୍ରବନ୍ଧର ଲକ୍ଷ୍ୟଣୀୟ ବୈଶିଷ୍ଟ୍ୟ । ଏ ସମସ୍ତ ପ୍ରବନ୍ଧରେ ସାହିତ୍ୟର ଆଲୋଚନା ସାମଗ୍ରିକ; ସୃଷ୍ଟିର ସମ୍ୟକ୍ ଆଲୋଚନା ସହ ସ୍ରଷ୍ଟାଙ୍କ

ବ୍ୟକ୍ତିତ୍ୱ, ତାଙ୍କର ଅନ୍ତର୍ନିହିତ ପ୍ରତିଭା, ସୃଷ୍ଟି ପରିବେଶ ଆଦିର ତନ୍ନତନ୍ନ ବିଶ୍ଳେଷଣ ଓ ସ୍ଥଳ ବିଶେଷରେ ତୁଳନାତ୍ମକ ଅଧ୍ୟୟନ ପରି ଏକ ଯୁକ୍ତି ସମ୍ମତ ଉପସଂହାରରେ ଉପନୀତ ହେବା ଲାଗି ପ୍ରାବନ୍ଧିକଙ୍କ ଆନ୍ତରିକ ପ୍ରୟାସ ଅନାୟାସ ଲକ୍ଷ୍ୟ । ସ୍ୱୀୟ ଆଭିମୁଖ୍ୟକୁ ସ୍ପଷ୍ଟ ଓ ତଥ୍ୟନିଷ୍ଠ କରିବା ଲାଗି ବିଭିନ୍ନ ଶାସ୍ତ୍ର, ପୁରାଣ ଆଦିର ଆଶ୍ରୟ ଗ୍ରହଣରୁ ସମାଲୋଚକଙ୍କ ଶ୍ରମପରାୟଣତା ଓ ବହୁଶାସ୍ତ୍ରଦର୍ଶୀ ପ୍ରତିଭା ସୁସ୍ପଷ୍ଟ । ଆଲୋଚ୍ୟ ପ୍ରବନ୍ଧଗୁଡ଼ିକରେ ପ୍ରାଥମିକ ପର୍ଯାୟର ତ୍ରୁଟି ବିଚ୍ୟୁତି ଯେ ଆଦୌ ନାହିଁ ଏମିତି ନୁହେଁ; ସେସବୁ ସ୍ୱାଭାବିକ ରୂପେ ଯେତିକି ସ୍ଥାନ ସାଧାରଣତଃ ମାଡ଼ିବସନ୍ତି, ତାଠାରୁ ଯଥେଷ୍ଟ କମ ହେଲେ ମଧ୍ୟ ନିଜର ଉପସ୍ଥିତି ଜାହିର କରି ରଚନାର ପ୍ରାଥମିକତା ପ୍ରମାଣ କରନ୍ତି ।' କିନ୍ତୁ ସେମାନେ ଯାହା ଉଚ୍ଚ କଣ୍ଠରେ ଉଚ୍ଚାରଣ କରନ୍ତି, ତାହା ହେଉଚି ଆଚାର୍ଯଙ୍କ ରଚନାଶୈଳୀ ଓ ଦୃଷ୍ଟିଭଙ୍ଗୀର ପରିପକ୍ୱତା । ମୂଳରୁ ଚେଷ୍ଟା କଲେ ଜଣେ ଗବେଷକ ଓ ସମାଲୋଚକ ଯେ ପରିପକ୍ୱତା ହାସଲ କରିପାରିବା ଅସମ୍ଭବ ବ୍ୟାପାର ନୁହେଁ, ଏଗୁଡ଼ିକ ତାହା ହିଁ ପ୍ରମାଣ କରନ୍ତି ।

ଆଲୋଚ୍ୟ ତିରିଶିଟି ପ୍ରବନ୍ଧର ବିଷୟବସ୍ତୁ ନିର୍ବାଚନରୁ ଏହା ମଧ୍ୟ ସ୍ପଷ୍ଟ ଯେ, ସୁଦର୍ଶନ ଭବିଷ୍ୟତରେ ମଧ୍ୟଯୁଗୀୟ ଓଡ଼ିଆ ସାହିତ୍ୟକୁ ହିଁ ଅଧିକତର ଭାବେ ସ୍ୱୀୟ ଆଲୋଚନାର ସାମଗ୍ରୀ ରୂପେ ଗ୍ରହଣ କରିବେ । ସମୟ ଏହା ହିଁ ପ୍ରମାଣ କରିଛି । ସ୍ନାତକୋତ୍ତର ସ୍ତରରେ ଆଧୁନିକ ଓଡ଼ିଆ ସାହିତ୍ୟକୁ ସ୍ୱତନ୍ତ୍ରପତ୍ର ରଖି ଅଧ୍ୟୟନ ସମାପନ କରିଥିବା ଆଚାର୍ଯ୍ୟ ଗୁରୁ ଓ ହିତାକାଙ୍କ୍ଷୀମାନଙ୍କ ପରାମର୍ଶ କ୍ରମେ ବ୍ରହ୍ମପୁରର ସାହିତ୍ୟିକ ପରିବେଶ, ଉପାଦାନ ଓ ତଥ୍ୟମଗୁଡ଼ି ଅଞ୍ଚଳକୁ କର୍ମଭୂମି ରୂପେ ନିର୍ବାଚନ କରିଛନ୍ତି। ମଧ୍ୟଯୁଗୀୟ ଓଡ଼ିଆ ସାହିତ୍ୟକୁ ସ୍ୱୀୟ ଗବେଷଣାର ବିଷୟ ରୂପେ ବାଛି ନେଇଛନ୍ତି । ପ୍ରାୟ ଏକ ଦଶନ୍ଧି ବ୍ୟାପୀ ତାଙ୍କ କୃଚ୍ଛ୍ର ସାଧନାର ଅମୃତ ନିସ୍ୟନ୍ଦିନୀ ଫଳ ସ୍ୱରୂପ ଓଡ଼ିଆ ସାହିତ୍ୟକୁ ପ୍ରାପ୍ତ ହୋଇଚି ଗ୍ରନ୍ଥରତ୍ନ *ଓଡ଼ିଆ କାବ୍ୟ କୌଶଳ(୧୯୮୩)* ।

ଏ ପର୍ଯନ୍ତ କାବ୍ୟଯୁଗର ଆଲୋଚନା ପ୍ରାୟତଃ କବି କ'ଣ କହିଛନ୍ତି, କି ଚମତ୍କାର ବସ୍ତୁ ଉପସ୍ଥାପନ କରିଛନ୍ତି, ତତ୍ ସମ୍ପର୍କିତ ବର୍ଣ୍ଣନା ସୀମିତ ଥିଲା । *ଓଡ଼ିଆ କାବ୍ୟ କୌଶଳ*ର ଆତ୍ମପ୍ରକାଶ ଏ ଧାରାରେ ପରିବର୍ତ୍ତନ ଆଣିବାକୁ ଆନ୍ତରିକ ପ୍ରୟାସ କରିଛି । ଓଡ଼ିଆ ସାହିତ୍ୟ ସମାଲୋଚନା ଓ ଗବେଷଣାର ମୋଡ଼ ବଦଳିଛି । କବି ଯାହା କହିଛନ୍ତି ତାହା କିପରି କହିଛନ୍ତି-କେଉଁ ପୃଷ୍ଠଭୂମିରେ ବା କେଉଁ କାରଣରୁ ବା କାହିଁକି କହିଛନ୍ତି ଆଲୋଚନାରେ ତାର ଗୁରୁତ୍ୱ ବଢ଼ିଛି ।

ଆଚାର୍ଯ୍ୟ ଏଇ କିପରି ଓ କାହିଁକି ପ୍ରଶ୍ନ ଦୁଇଟିକୁ ପ୍ରଥମରୁ ସମ୍ମୁଖୀନ ହୋଇ ସ୍ୱୀୟ ଗବେଷଣା ଆରମ୍ଭ କରିଛନ୍ତି । ତାଙ୍କ ଦୃଷ୍ଟି ସମ୍ମୁଖରେ କାବ୍ୟ ଏକ ସ୍ଥାପତ୍ୟ ଏବଂ କବି ଜଣେ ସ୍ଥପତି ରୂପେ ଉଦ୍‌ଭାସିତ । ସେ ଖୋଜିବାରେ ଲାଗିଚନ୍ତି ମଧ୍ୟକାଳୀନ କାବ୍ୟ ସୌଧର ଉପାଦାନ, ତାହାର ବାହ୍ୟ ଓ ଆତ୍ମିକ ନକ୍‌ସା ଏବଂ ସେଇ ସୌଧ ଦଣ୍ଡାୟମାନ ହୋଇଥିବା ଭୂମିର ଗୁଣାଗୁଣକୁ । କାବ୍ୟ ନିର୍ମାଣର ସମଗ୍ର ପଦ୍ଧତିଟିକୁ ସାଧାରଣ ପାଠକଙ୍କ ସୁଗମ ଅବବୋଧପାଇଁ କାବ୍ୟକୌଶଳ ରୂପେ ସେ ଅଭିହିତ କରିଛନ୍ତି । ଏହାର ସମାର୍ଥକ ରୂପେ *ଓଡ଼ିଆ କାବ୍ୟ କୌଶଳ*ରେ ଅନେକତ୍ର ଗଠନଶିଳ୍ପ ପଦ ବ୍ୟବହୃତ ହୋଇଛି ।

ଭାରତୀୟ ସାହିତ୍ୟଶାସ୍ତ୍ରରେ କବିଙ୍କୁ ମନୀଷୀ ଏବଂ କବିତ୍ୱକୁ ସୁଦୁର୍ଲଭ ଶକ୍ତି ରୂପେ ଗ୍ରହଣକରା ଯାଇଛି । ପ୍ରକାରାନ୍ତରେ କବିତ୍ୱରେ ଐଶ୍ୱରିକ ପ୍ରତିଭା ଅଥବା କରୁଣାର ଉପସ୍ଥିତି ସ୍ୱୀକୃତ । ଏ ସ୍ଥିତିରେ କାବ୍ୟର ଗଠନଶିଳ୍ପର ଆଲୋଚନା ସାମାନ୍ୟ ପ୍ରାସଙ୍ଗିକ ହେଉଥିଲେ ହେଁ ତାର ପୃଷ୍ଠଭୂମିର ଆଲୋଚନା ସମ୍ପୂର୍ଣ୍ଣ ରୂପେ ଅପ୍ରାସଙ୍ଗିକ ଓ ଅସମ୍ଭବ ହୋଇଉଠେ । ପାଶ୍ଚାତ୍ୟ ସାହିତ୍ୟ ସମାଲୋଚନା ଏବଂ ତଦନୁସାରୀ ଆଧୁନିକ ଭାରତୀୟ ସାହିତ୍ୟ ସମାଲୋଚନା ତେଣୁ ଏହି ତତ୍ତ୍ୱକୁ ବହୁଳାଂଶରେ ଅସ୍ୱୀକାର କରେ । ପାଶ୍ଚାତ୍ୟ ମତରେ କବିଙ୍କ ବ୍ୟକ୍ତିତ୍ୱ କବିକର୍ମରେ ଅବଶ୍ୟ ପ୍ରତିଫଳିତ ହୁଏ ଏବଂ ଏହା ପଶ୍ଚାତରେ କ୍ଷୀଣ ହେଉ କି ଗାଢ଼, ପରୋକ୍ଷ ହେଉ କି ପ୍ରତ୍ୟକ୍ଷ— ତାଙ୍କ ପରିବେଶର ଭୂମିକା ନିଶ୍ଚୟ ରହିଥାଏ । କବିଙ୍କ ଜାତି, ଦେଶ, ବଂଶ, ଶିକ୍ଷା, ସ୍ୱାଧ୍ୟାୟ, ଉତ୍ତରାଧିକାର ସୂତ୍ରରେ ପ୍ରାପ୍ତ ଇତିହାସ, ଦର୍ଶନ ସମେତ ଯୁଗରୁଚି ଓ ଯୁଗଚେତନା ଆଦି ସକଳ କ୍ଷୁଦ୍ର-ବୃହତ୍ ସାମାଜିକ ସାଂସ୍କୃତିକ ଶକ୍ତି ଏ ପରିବେଶର ପରିଧିଭୁକ୍ତ । ଏଇ ଆଧାରରୁ ଉଦ୍‌ଭୁତ କବିଙ୍କ ବ୍ୟକ୍ତିତ୍ୱର ପରିପ୍ରକାଶ ତାଙ୍କ କାବ୍ୟ ।

ବ୍ୟକ୍ତି ବିକାଶର ଏ ତତ୍ତ୍ୱ ଉପରେ ଆଚାର୍ଯ୍ୟଙ୍କ *ଓଡ଼ିଆ କାବ୍ୟ କୌଶଳ*ର ନକ୍‌ସା ପରିକଳ୍ପିତ । ଏଇ ଆଧାରରେ ପ୍ରତ୍ୟେକ କବି ଓ ପ୍ରତ୍ୟେକ ସାହିତ୍ୟ ସୃଷ୍ଟି ସ୍ୱୟଂ ସ୍ୱତନ୍ତ୍ର । କିନ୍ତୁ ସାର୍ଦ୍ଧ ତିନି ଶତାବ୍ଦୀ କାଳ ବ୍ୟାପ୍ତ ଓଡ଼ିଆ କାବ୍ୟଯୁଗର ସକଳ କାବ୍ୟର ଅଙ୍ଗ ଓ ଆତ୍ମାରେ ବୈଷମ୍ୟଠୁ ସାମ୍ୟ କାହିଁ କେତେ ଅଧିକ । ପ୍ରତିଭାର ତାରତମ୍ୟ ଯୋଗୁଁ ସୃଷ୍ଟ ବ୍ୟତିକ୍ରମ ବାହ୍ୟାଭାସ ମାତ୍ର । ସକଳ କବି ଅର୍ଜୁନ ଦାସଙ୍କ ନିର୍ମିତ ରାଜବର୍ତ୍ମର ହିଁ ଅକୁତୋଭୟ ପଥିକ । ଏହା ହିଁ ଆଚାର୍ଯ୍ୟଙ୍କ କିପରି ଓ କାହିଁକି ପ୍ରଶ୍ନ ଦୁଇଟିର ସାଧାରଣ ସୂତ୍ରଗୁଡ଼ିକର ସୈଦ୍ଧାନ୍ତିକ ଭିତ୍ତି ।  ଆଧୁନିକ ସମାଲୋଚକର ଦୃଷ୍ଟି ନେଇ ମଧ୍ୟଯୁଗୀୟ ଓଡ଼ିଶାର ସମାଜ, ରାଜନୀତି, ଅର୍ଥନୀତି, ଧର୍ମ, ସଂସ୍କୃତିରେ ସମ୍ବର୍ଧିତ କବିଙ୍କ ମନ, ବୁଦ୍ଧି ଓ ବିଚାରର ସୂକ୍ଷ୍ମ ବିଶ୍ଳେଷଣ ତାଙ୍କ ଆଲୋଚନାର ବୈଶିଷ୍ଟ୍ୟ । ଫଳରେ ସେକାଳ କବିଙ୍କ ବ୍ୟକ୍ତିଗତ ଜୀବନ ସଙ୍ଗକୁ ପାଠକଙ୍କ ସାମାଜିକ ଓ ସାମୁହିକ ସ୍ଥିତି ଏ କାଳ ଗ୍ରାହକଙ୍କ ସମ୍ମୁଖରେ ସ୍ପଷ୍ଟ ଉନ୍ମୋଚିତ ହୋଇପାରିଛି ।

ଓଡ଼ିଆ କାବ୍ୟ ଓ କବିଗୋଷ୍ଠୀର ସାଧାରଣ ପ୍ରକୃତି ପ୍ରଦର୍ଶନ ଦୃଷ୍ଟିରୁ ଆଚାର୍ଯ୍ୟଙ୍କ ଗ୍ରନ୍ଥର ବିଶିଷ୍ଟତା ଅବଶ୍ୟ ସ୍ୱୀକାର୍ଯ୍ୟ । ତାଙ୍କ ଆଲୋଚନାର ଭିତ୍ତି ପାଶ୍ଚାତ୍ୟ ସମାଲୋଚନାର ତତ୍ତ୍ୱ ଆଧାରରେ ସ୍ରଷ୍ଟା - ବ୍ୟକ୍ତିତ୍ୱ ନିର୍ମାଣରେ ସମାଜ ଓ ସଂସ୍କୃତିର ଭୂମିକା ନୁହେ; ଅଧିକନ୍ତୁ ପ୍ରାଚ୍ୟ ଭାବା ଦର୍ଶକୈନ୍ଦ୍ରିକର ସମୂହନିଷ୍ଠତାର ସ୍ୱୀକୃତି । ଏ ଦୃଷ୍ଟିରୁ ସେ ଉପେନ୍ଦ୍ର ଭଞ୍ଜ ଓ କାଳିଦାସଙ୍କୁ ତଉଲିଛନ୍ତି । କାହାରି ପ୍ରତି ପକ୍ଷପାତ ନ କରି ଯୁଗର ରୁଚି ଓ ଅବବୋଧକୁ ହିଁ ସମ୍ମାନ ଦେଇଛନ୍ତି; ତଥ୍ୟ ଭିତ୍ତିରେ ସ୍ୱୀୟ ସିଦ୍ଧାନ୍ତ ଘୋଷଣା କରିଛନ୍ତି । ତାଙ୍କ ଶମନ ସଗୋତ୍ର ନିରପେକ୍ଷ ଦୃଷ୍ଟିରେ ଓଡ଼ିଆ କାବ୍ୟର ଦୋଷ ଦୁର୍ବଳତା ଯେପରି ଧରାଦେଇଛି, ତାର ବଡ଼ପଣ ସେଭଳି ଅଭିନନ୍ଦନ ଲାଭ କରିଛି । ଏଇ କାରଣରୁ ହିଁ ସେ ଗ୍ରନ୍ଥ ନାମକରଣ କୌଶଳରେ ବହୁଳାଂଶରେ ଦୁର୍ବଳତା ଲକ୍ଷ୍ୟ କରିଥିଲେ ମଧ୍ୟ ବିଷୟ

ସଂଯୋଜନରେ ନିପୁଣତା ପାଇଁ ଓଡ଼ିଆ କବିକୁଳଙ୍କୁ ଅଜସ୍ର ପ୍ରଶଂସା କରିଛନ୍ତି; ଚମତ୍କୃତିକୁ ଓଡ଼ିଆ କାବ୍ୟର ଆତ୍ମା ରୂପେ ନିର୍ଦ୍ଦେଶ କରି ତାର ଯଥାର୍ଥ ସମୀକ୍ଷା କରିଛନ୍ତି । ଆଚାର୍ଯ୍ୟଙ୍କ ଏ ଅଧ୍ୟୟନ ଓଡ଼ିଆ ସମାଲୋଚନା କ୍ଷେତ୍ରରେ ଏକ ନୂତନ ଦିଗ । ନୂତନ ଦିଗର ଉନ୍ମୋଚନପାଇଁ ତାଙ୍କ ଶ୍ରମ ଓ ଅଧ୍ୟୟନର ବ୍ୟାପକତାର ପ୍ରମାଣ ଏ ଗ୍ରନ୍ଥର ପରିଶିଷ୍ଟରେ ସୂଚୀତ ଅପ୍ରକାଶିତ କାବ୍ୟସମୂହର ଯଥୋଚିତ ଉପଯୋଗ । *ଓଡ଼ିଆ କାବ୍ୟ କୌଶଳ* ସାହିତ୍ୟ ଆଲୋଚନାର ପୂର୍ଣ୍ଣ ପରିପକ୍ୱତା, ବିଚାରବନ୍ତ ବହୁଦର୍ଶିତା, ନିରପେକ୍ଷତା, ବିଷୟ ବିଶ୍ଲେଷଣରେ ବୈଜ୍ଞାନିକ ତଥ୍ୟଧର୍ମିତାର ଦିଗବାରେଣୀ ସ୍ତମ୍ଭ । ସାହିତ୍ୟର ଏପରି ସୁବିନ୍ୟସ୍ତ ପରିପୂର୍ଣ୍ଣ ଆଲୋଚନା ଓଡ଼ିଶାରେ କ୍ୱଚିତ୍ ସମ୍ଭବ ହୋଇପାରିଚି । ମଧ୍ୟଯୁଗୀୟ ଓଡ଼ିଆ କାବ୍ୟର ବୈଶିଷ୍ଟ୍ୟ ପ୍ରଦର୍ଶନ କ୍ଷେତ୍ରରେ ଏକମାତ୍ର ପ୍ରମାଣିକ କୃତି ରୂପେ ପ୍ରାୟ ଚଉଠ ଶତାବ୍ଦୀ ଧରି ତିଷ୍ଠି ରହିବା ଏକ ପକ୍ଷରେ ଯେପରି ଏ ଗ୍ରନ୍ଥର ବଳିଷ୍ଠତାର ସୂଚକ, ଅପର ପକ୍ଷରେ ସେପରି ଆମ ଚିନ୍ତନଶକ୍ତିର ଦୈନ୍ୟ ଓ ଶ୍ରମକାତରତାର ଅପରିହାର୍ଯ ପରିଣାମ ଓ ପ୍ରମାଣ ।

ତିନି

ଗୁଣ, ପରିମାଣ, ବୈବିଧ୍ୟ ଆଦି ସକଳ ଦୃଷ୍ଟିରୁ ଆଚାର୍ଯ୍ୟଙ୍କ ରଚିତ ସମାଲୋଚନା ପ୍ରବନ୍ଧଗୁଡ଼ିକ ମଧ୍ୟରେ ସର୍ବାଗ୍ରେ ଉଲ୍ଲେଖନୀୟ ତଦୀୟ ମୁଖବନ୍ଧ ସମୂହ । ଏସବୁ ନିମ୍ନ ମତେ ବିଭାଜ୍ୟ:

**ମୁଖବନ୍ଧ**

| **ସ୍ୱଗ୍ରନ୍ଥ** | | **ଅପରଗ୍ରନ୍ଥ** | | |
|---|---|---|---|---|
| **ସମ୍ପାଦିତ** | **ଅନୂଦିତ** | **ସମ୍ପାଦିତ** | **ଅନୂଦିତ** | **ରଚିତ** |

ଆଚାର୍ଯ୍ୟଙ୍କ ସ୍ୱସମ୍ପାଦିତ ଗ୍ରନ୍ଥଗୁଡ଼ିକ ବହୁଳାଂଶରେ ଦୁର୍ଲଭ, ଦୁଷ୍ପ୍ରାପ୍ୟ ଓ ବିସ୍ମୃତ ତାଳପତ୍ର ପୋଥି, ପାଣ୍ଡୁଲିପି ଅଥବା ଜୀର୍ଣ୍ଣ ପତ୍ର-ପତ୍ରିକା ଆଧାରିତ ଏବଂ ଓଡ଼ିଆ ସାହିତ୍ୟର ଯଥାର୍ଥ ଇତିହାସ ରଚନାପାଇଁ ଉପାଦାନ ପ୍ରସ୍ତୁତିଲାଗି ମୂଳତଃ ଅଭିପ୍ରେତ ।

ଏ ମାନସିକତା ପ୍ରଥମ ଅର୍ଘ୍ୟ ଲୁପ୍ତପ୍ରାୟ *ଇନ୍ଦ୍ରଧନୁ(୧୯୯୧)*ର ପୁନରୁଦ୍ଧାର । ଓଡ଼ିଆ ସାହିତ୍ୟର ବିବର୍ତ୍ତନ ଆଲୋଚନା ଏହା ବିନା ଅସମ୍ପୂର୍ଣ୍ଣ । ଆଧୁନିକ ଓଡ଼ିଆ ସାହିତ୍ୟର ଆଲୋଚକ ମାତ୍ରେ ତେଣୁ ଊନବିଂଶ ଶତାବ୍ଦୀର ଶେଷ ଦଶନ୍ଧିରେ ସଂଘଟିତ ଇନ୍ଦ୍ରଧନୁ-ବିଜୁଳି ମସୀ-ସମର ସମ୍ବନ୍ଧରେ ଯତ୍ରତତ୍ର ଉଲ୍ଲେଖ କରନ୍ତି । ଅଥଚ ବିଂଶ ଶତାବ୍ଦୀର ଆଦ୍ୟ ଚରଣରେ ସମାଲୋଚନାରେ ବ୍ୟାପୃତ ସାହିତ୍ୟକାରମାନେ ସୁଦ୍ଧା ଏ ପତ୍ରିକା ଦ୍ୱୟର ସ୍ୱରୂପ ସନ୍ଦର୍ଶନର ସୌଭାଗ୍ୟ ଲାଭ କରିନାହାନ୍ତି । ମୂଳ ଉପାଦାନର ଅଭାବରେ ପ୍ରତ୍ୟେକ ପରୋକ୍ଷ ଉତ୍ସ ଉପରେ ନିର୍ଭରଶୀଳ ହେବାକୁ ବାଧ୍ୟ ହୋଇଛନ୍ତି । ପତ୍ରିକା ଦୁଇଟି ଏକ ପ୍ରହେଳିକା ରୂପେ ହିଁ ପ୍ରାୟ ଏକ ଶତାବ୍ଦୀ ଧରି ପ୍ରତିଭାତ ହୋଇଛି । ଏ ପରିପ୍ରେକ୍ଷୀରେ ସମ୍ଭବତଃ ପଚାଶଟି ସଂଖ୍ୟା ପର୍ଯନ୍ତ ପ୍ରକାଶିତ *ଇନ୍ଦ୍ରଧନୁ*ର ବହୁ ଆୟାସ ଲବ୍ଧ ପନ୍ଦରଟି ସଂଖ୍ୟାର

ସମ୍ପାଦିତ ପ୍ରକାଶନ ଆଚାର୍ଯ୍ୟଙ୍କଦ୍ୱାରା ସମ୍ଭବ ହୋଇପାରିଛି । ଗ୍ରନ୍ଥର ଏକାବନ ପୃଷ୍ଠାର ମୁଖବନ୍ଧରେ ଇନ୍ଦ୍ରଧନୁ-ବିଜୁଳି ମସୀ-ସମରର ଐତିହାସିକ ଆଲୋଚନା ସଙ୍ଗକୁ ଆଧୁନିକ ଓଡ଼ିଆ ସାହିତ୍ୟର ବିକାଶରେ ଏହାର ଅବଦାନ ଆଲୋଚିତ ହୋଇଛି । କୌଣସି ପକ୍ଷ ପ୍ରତି ପକ୍ଷପାତିତା ପ୍ରଦର୍ଶନ ନ କରି ଓଡ଼ିଆ ସାହିତ୍ୟର ସାମଗ୍ରିକତା ଦୃଷ୍ଟିରୁ ସମାଲୋଚକ ଉଭୟର ଗୁଣାଗୁଣ ଆଲୋଚନା କରିଛନ୍ତି ।

ଏ ଶୃଙ୍ଖଳାର ପରବର୍ତ୍ତୀ ପ୍ରକାଶନ *ଊନବିଂଶ ଶତକର ଦୁଇଟି ବିସ୍ମୃତ ସାହିତ୍ୟପତ୍ର: ଉତ୍କଳ ମଧୁପ ଓ ପ୍ରଦୀପ(୨୦୦୯)* ଏବଂ *ଓଡ଼ିଶାର ଅସ୍ମିତା ସନ୍ଧାନ ଓ ଉପେନ୍ଦ୍ରଭଞ୍ଜ କାବ୍ୟାଲୋଚନା(୨୦୧୩)* ।

ଓଡ଼ିଶାର ପ୍ରଥମ ନିରୋଳା ସାହିତ୍ୟ ପତ୍ରିକା ଅଦ୍ୟାବଧି ଦୁଷ୍ପ୍ରାପ୍ୟ ଫକୀରମୋହନଙ୍କ *ବୋଧଦାୟିନୀ* ପରେ ଊନବିଂଶ ଶତାବ୍ଦୀରେ ଓଡ଼ିଆ ଭାଷା ସାହିତ୍ୟର ବିକାଶ ପର୍ଯ୍ୟାଲୋଚନା ପାଇଁ ଯେଉଁ ପାଞ୍ଚଟି ପତ୍ରିକାର ଦାନ ଅବିସ୍ମରଣୀୟ, ସେଗୁଡ଼ିକ ହେଉଛି *ଇନ୍ଦ୍ରଧନୁ, ଉତ୍କଳ ଦର୍ପଣ, ଉତ୍କଳ ମଧୁପ, ପ୍ରଦୀପ ଓ ଉତ୍କଳପ୍ରଭା* । ଏଗୁଡ଼ିକ ପରବର୍ତ୍ତୀ ଓଡ଼ିଆ ସାହିତ୍ୟ ପତ୍ରିକାଗୁଡ଼ିକର ଆଦର୍ଶ । *ବୋଧଦାୟିନୀ* ଓ *ଉତ୍କଳ ଦର୍ପଣ* ପ୍ରକାଶ ପାଇବା ବେଳକୁ ଓଡ଼ିଶାରେ ଆଧୁନିକ ଶିକ୍ଷିତ ଗୋଷ୍ଠୀର ଅଭ୍ୟୁତ୍‌ଥାନ ଘଟି ନ ଥିଲା । ଫଳରେ ଲେଖକମାନଙ୍କ ଅଭାବ ଅନୁଭୂତ ହୋଇଥିଲା; ପତ୍ରିକା ଦୁଇଟିରେ ପ୍ରକାଶିତ ଅଧିକାଂଶ କବିତା ଓ ପ୍ରବନ୍ଧରେ ପାରମ୍ପରିକ ଦୃଷ୍ଟିଭଙ୍ଗୀ ତଥା ବାଙ୍‌ଲାରୁ ଆହରଣ କରିବାର ପ୍ରବୃତ୍ତି ଫୁଟି ଉଠିଛି । ଖ୍ରୀ. ୧୮୭୮ ବେଳକୁ କିନ୍ତୁ ପରିସ୍ଥିତି ବଦଳି ଯାଇଛି । ଇଂଲିଶ୍ ଶିକ୍ଷାର ପ୍ରବର୍ତ୍ତନ ଯୋଗୁଁ ଅଭିନବ ସ୍ୱାଦର ଉନ୍ମେଷ ସଙ୍ଗକୁ ଶିକ୍ଷିତ ଯୁବକ ଗୋଷ୍ଠୀ ସାହିତ୍ୟର ବିବିଧ ପ୍ରାରୂପ ସମ୍ବନ୍ଧରେ ଅବହିତ ହୋଇସାରିଛି । ଓଡ଼ିଆ ସାହିତ୍ୟରେ ଆଧୁନିକତାର ଅନୁପ୍ରବେଶପାଇଁ କ୍ଷେତ୍ର ପ୍ରସ୍ତୁତି ସମ୍ଭବ ହୋଇପାରିଛି । ରେଭେନ୍‌ସାର ଛାତ୍ରମାନଙ୍କ ସଦୁଦ୍ୟମରେ *ଉତ୍କଳ ମଧୁପ* ପ୍ରକାଶନ ଏହି ପ୍ରକ୍ରିୟାର ହିଁ ଅମୃତମୟ ଫଳ । ଏଥିରେ ପ୍ରକାଶିତ ମନନଶୀଳ ପ୍ରବନ୍ଧ, ପାଶ୍ଚାତ୍ୟ ପଦ୍ଧତିରେ ପ୍ରାଚୀନ ସାହିତ୍ୟର ଆଲୋଚନା ଏବଂ ପୁସ୍ତକ ସମାଲୋଚନାଗୁଡ଼ିକରେ ତେଣୁ ବାଙ୍‌ଲାରୁ ଅନୁବାଦ ଅପେକ୍ଷା ତାରି ଆଧାରରେ ରଚିତ ମୌଳିକ କୃତିର ପ୍ରାବଲ୍ୟ ଅଧିକ । ଏସବୁ ଉଦ୍ୟମକୁ ଆଉ ପାଦେ ଆଗେଇ ନେଇଥିଲା ଖ୍ରୀ. ୧୮୮୫ରେ ପ୍ରକାଶିତ ସାହିତ୍ୟ ଓ ସମାଲୋଚନା ପତ୍ରିକା *ପ୍ରଦୀପ* । ସେତେବେଳକୁ ଅତୀତର ସକଳ ବିଫଳତାକୁ ପଛରେ ପକାଇ ଓଡ଼ିଆ ଭାଷା ସାହିତ୍ୟର ପ୍ରଚାର ଓ ପ୍ରତିଷ୍ଠା କଳ୍ପେ କିଛି ଶିକ୍ଷିତ ଓ ଉଦୀୟମାନ ଯୁବକ ଯେଉଁ ସାଗ୍ରହ ପଦକ୍ଷେପ ନେଇଚନ୍ତି, ତାର ତାର୍କିକ ପରିଣତି ଏଇ ପତ୍ରିକା । ପୂର୍ବ ପ୍ରକାଶିତ ତିନୋଟି ସାହିତ୍ୟ ପତ୍ରିକା ଭଳି *ପ୍ରଦୀପ* ଲେଖକମାନଙ୍କ ଅଭାବର ସମ୍ମୁଖୀନ ହୋଇ ନାହିଁ । ଏହାର ଏକ ସ୍ୱୀୟ ଲେଖକ ଗୋଷ୍ଠୀ ଥିଲା । ତନ୍ମଧ୍ୟରୁ ଅନେକ ଥିଲେ ସ୍ନାତକ ଅଥବା ବିଭିନ୍ନ ବିଦ୍ୟାଳୟରେ କାର୍ଯ୍ୟରତ ଶିକ୍ଷକ । ମୌଳିକ ଚିନ୍ତାକୁ ସାହିତ୍ୟର ରୂପ ଦେବାର ସାମର୍ଥ୍ୟ ଏମାନଙ୍କର ଥିଲା । ପାଶ୍ଚାତ୍ୟ ସାହିତ୍ୟର ବିଭିନ୍ନ ପ୍ରାରୂପ ସମ୍ବନ୍ଧରେ ଏମାନେ ଅବହିତ ଥିଲେ । ସମକାଳୀନ ସମସ୍ୟା, ଘଟନାବଳୀ ଓ ଆବଶ୍ୟକତା ଏମାନଙ୍କ

ଚିନ୍ତାରାଜ୍ୟରେ ଆଲୋଡ଼ନ ସୃଷ୍ଟି କରୁଥିଲା । ପ୍ରତିବେଶୀ ବାଙ୍ଗଲା ଭାଷା ସାହିତ୍ୟ ସହ ଓଡ଼ିଆ ଭାଷା ସାହିତ୍ୟକୁ ସମକକ୍ଷ କରିବାପାଇଁ ଏମାନେ ଅଙ୍ଗୀକୃତ ଥିଲେ । ଅତଏବ *ପ୍ରଦୀପ*ରେ ପ୍ରକାଶିତ ଲେଖାଗୁଡ଼ିକ ପୂର୍ବବର୍ତ୍ତୀ ପତ୍ରିକାଗୁଡ଼ିକରେ ପ୍ରକାଶିତ ରଚନାସବୁଠୁ ଥିଲା ଉନ୍ନତମାନର । ଜ୍ଞାନଦୀପ୍ତ ପ୍ରବନ୍ଧକୁ ସାହିତ୍ୟିକ ପ୍ରବନ୍ଧ କୋଟୀକୁ ଉନ୍ନୀତ କରିବା ପାଇଁ ଏ ପତ୍ରିକାର ପ୍ରାବନ୍ଧିକମାନଙ୍କ ଭୂମିକା ଐତିହାସିକ । ସମ୍ପାଦକମାନଙ୍କ ବିଶେଷ ଆଗ୍ରହର ଅଭାବ ସତ୍ତ୍ୱେ ଆଲୋଚ୍ୟ ପତ୍ରିକା ଦୁଇଟିରେ ପ୍ରକାଶିତ କବିତାଗୁଡ଼ିକ ପୁଣି ଭାଷା ବିନ୍ୟାସ, ଛନ୍ଦ, ରଚନାଶୈଳୀ, ବିଷୟବସ୍ତୁ ଆଦି ଦୃଷ୍ଟିରୁ ଆଧୁନିକ ଓଡ଼ିଆ କାବ୍ୟକଳାର ବାର୍ତ୍ତାବହ, ଆଧୁନିକ ଭାଷା ସାହିତ୍ୟର ବିକାଶକ୍ରମର ପ୍ରଥମ ପାଦପ୍ରଦୀପ । ମଧୁପରେ ପ୍ରକାଶିତ ଖଣ୍ଡିତ ଉପନ୍ୟାସ *ସୌଦାମିନୀ* ସଙ୍ଗକୁ ପ୍ରଦୀପରେ ପ୍ରକାଶିତ ସମଗୋତ୍ରର *ଅନାଥିନୀ* ଓ କଥାଧର୍ମୀ *ମଠର ସମ୍ବାଦ*-ଉଭୟ କାଳ ଓ କଳା ଦୃଷ୍ଟିରୁ ଅବିସ୍ମରଣୀୟ । ସାହିତ୍ୟ ସମାଲୋଚନାର ଏକ ସୁସ୍ଥିର ଭିତ୍ତି ପ୍ରତିଷ୍ଠା ଦିଗରୁ ମଧ୍ୟ ଆଲୋଚ୍ୟ ପତ୍ରିକା ଦୁଇଟିର ଭୂମିକା ଅନନ୍ୟ ।

ସାମଗ୍ରିକ ଦୃଷ୍ଟିରୁ ବିଚାର କଲେ ଆଧୁନିକ ଓଡ଼ିଆ ସାହିତ୍ୟର ବିକାଶପାଇଁ ଆଲୋଚ୍ୟ ପତ୍ରିକା ଦୁଇଟିର ଭୂମିକା ଅଦ୍ୟାପି ଅନତିକ୍ରମଣୀୟ ହୋଇରହିଛି । ପ୍ରବନ୍ଧ, କଥାସାହିତ୍ୟ, କବିତା, ସାହିତ୍ୟ-ଆଲୋଚନା ଆଦି ପ୍ରତ୍ୟେକ କ୍ଷେତ୍ରରେ ପତ୍ରିକା ଦୁଇଟି ଓଡ଼ିଆ ସାହିତ୍ୟରେ ଆଧୁନିକତାକୁ ଆଗେଇ ନେଇଛନ୍ତି । ସେମାନଙ୍କ ଲେଖକ ଗୋଷ୍ଠୀର ଦୁଃସାହସିକତା ଯୋଗୁଁ ଉନ୍ନତ ଜାତୀୟ ସାହିତ୍ୟର ପୃଷ୍ଠଭୂମି ନିର୍ମିତ ହୋଇଛି । ଆଧୁନିକ ଓଡ଼ିଆ ସାହିତ୍ୟର ଉନ୍ମେଷ ଓ ବିକାଶ ଆଲୋଚନାପାଇଁ ପତ୍ରିକା ଦୁଇଟିର ଆବଶ୍ୟକତା ତେଣୁ ଅପରିହାର୍ଯ୍ୟ ।

କିନ୍ତୁ, ଗ୍ରାହକମାନଙ୍କ ସଂରକ୍ଷଣ ପ୍ରବୃତ୍ତି ଅଭାବରୁ ହେଉ, କି ବ୍ୟବହୃତ କାଗଜର ନିକୃଷ୍ଟ ମାନ ଯୋଗୁଁ ହେଉ, ସ୍ୱଳ୍ପକାଳ ମଧ୍ୟରେ ଉଭୟ ମଧୁପ ଓ ପ୍ରଦୀପ ପାଠକ, ଆଲୋଚକ ଓ ସଂଗ୍ରାହକମାନଙ୍କ ଦୃଷ୍ଟିପଥରୁ ଅନ୍ତର୍ହିତ ହୋଇଗଲା । ଏପରିକି ଊନବିଂଶ ଶତାବ୍ଦୀରେ ପ୍ରକାଶିତ ପତ୍ରିକାଗୁଡ଼ିକର ସ୍ଥୁଳ ବିବରଣୀ ପ୍ରସ୍ତୁତ କରିବାପାଇଁ ବହୁ ଶ୍ରମ ସ୍ୱୀକାର କରିଥିବା ପଣ୍ଡିତ ମୃତ୍ୟୁଞ୍ଜୟ ରଥ ସୁଦ୍ଧା ଖ୍ରୀ. ୧୯୧୯ ବେଳକୁ *ଉତ୍କଳ ମଧୁପ*ର ଗୋଟିଏ ବି ସଂଖ୍ୟା ସଂଗ୍ରହ କରିବାକୁ ସମର୍ଥ ହୋଇପାରି ନ ଥିବା ତାଙ୍କ ବିବରଣୀରେ ପରିଲକ୍ଷିତ ବିଭ୍ରାନ୍ତିରୁ ସୁସ୍ପଷ୍ଟ । ପରବର୍ତ୍ତୀ କାଳରେ ଏହାର ଛଅଟି ସଂଖ୍ୟା ସଂଗୃହୀତ ହୋଇ ରାଜ୍ୟ ସଂଗ୍ରହାଳୟରେ ସଂରକ୍ଷିତ ହୋଇଥିଲେ ମଧ୍ୟ କୌଣସି ସାଂସ୍କୃତିକ କଳାପାହାଡ଼ଦ୍ୱାରା ସମାଧି ରଚନାରୁ ବର୍ତ୍ତିପାରି ନ ଥିଲା । ଓଡ଼ିଆ ସଂସ୍କୃତିପ୍ରେମୀମାନଙ୍କ ସୌଭାଗ୍ୟବଶରୁ ପତ୍ରିକାଟି ସମ୍ପୂର୍ଣ୍ଣ ନଷ୍ଟ ହୋଇଯିବା ପୂର୍ବରୁ ଆଚାର୍ଯ୍ୟ ମହାଶୟ ଛିନ୍ନ ପୃଷ୍ଠାଗୁଡ଼ିକୁ ଯୋଡ଼ାଯୋଡ଼ି କରି ଯେଉଁ ଫଟୋଚିତ୍ର ପ୍ରସ୍ତୁତ କରିଥିଲେ, ସେସବୁ ଏବଂ ପ୍ରଦୀପ ପତ୍ରିକାର ଉପଲବ୍ଧ ସଂଖ୍ୟାସବୁକୁ ନେଇ ବିଦଗ୍ଧ ସମ୍ପାଦକୀୟ ଆଲେଖ୍ୟ ସହ ପ୍ରକାଶ କରାଇଛନ୍ତି ।

ଆଚାର୍ଯ୍ୟଙ୍କ ପରିପକ୍ୱ ବୈଶିଷ୍ଟ୍ୟର ପଦାଙ୍କ ଏ ପତ୍ରିକା ତିନୋଟିର ସମ୍ପାଦନ ଓ ବିଶ୍ଳେଷଣରେ ସୁସ୍ପଷ୍ଟ । ଏଥିରେ କେବଳ ତତ୍କାଳୀନ ସମୟର ବିଶ୍ଳେଷଣ ନାହିଁ; ଅଛି ମଧ୍ୟ ଭବିଷ୍ୟତର ଆଲୋଚନା ପାଇଁ ସୁନିର୍ଦ୍ଦିଷ୍ଟ ଶଙ୍କୁର ନିର୍ଦ୍ଦେଶ ଏବଂ ଆହୁରି ଅନେକ ବୈଶିଷ୍ଟ୍ୟ । ସମ୍ପାଦନା ପଦ୍ଧତିଟି ସୁସଙ୍ଗତ, ସାମ୍ପ୍ରତିକ ସ୍ଥିତିରେ ସମ୍ପୂର୍ଣ୍ଣ ବୈଜ୍ଞାନିକ । ଜୀର୍ଣ୍ଣଶୀର୍ଣ୍ଣ ଇନ୍ଦ୍ରଧନୁ ଓ ଛିନ୍ନପତ୍ର ଉତ୍କଳ ମଧୁପର ପୁନର୍ମୁଦ୍ରଣ ବେଳେ ମୂଳପାଠକୁ ଯଥାସାଧ୍ୟ ଅବିକୃତ ରଖିବାପାଇଁ ସେ ସଫଳ ପ୍ରଯତ୍ନ କରିଛନ୍ତି । ବନାନ ଓ ବିରାମ ଚିହ୍ନଗୁଡ଼ିକ ଚଳନ୍ତି ପ୍ରୟୋଗ ଦୃଷ୍ଟିରୁ ଠିକ ମନେ ନ ହେଲେ ସୁଦ୍ଧା କୁତ୍ରାପି ପରିବର୍ତ୍ତନ ପାଇଁ ସଚେଷ୍ଟ ହୋଇ ନାହାନ୍ତି । ଯେଉଁ ଅକ୍ଷର, ପଦ, ବାକ୍ୟ, ବାକ୍ୟାଂଶ ଅସ୍ପଷ୍ଟ ବା କୀଟଦ୍ରଂଷ୍ଟ ସେସବୁକୁ ପୂର୍ଣ୍ଣ କରିବା ପାଇଁ ଚେଷ୍ଟା ନ କରି 'X' ଦ୍ୱାରା ସୂଚାଇ ଦେଇଛନ୍ତି । ଯେଉଁ ଶବ୍ଦଟି ସ୍ପଷ୍ଟ ରୂପେ ଜାଣିହେଉଛି, କିନ୍ତୁ ଗୋଟିଏ ଅକ୍ଷର ନଷ୍ଟ ହୋଇଯାଇଛି ଅଥବା ମୁଦ୍ରଣ ବେଳେ ମୂଳପାଠରେ ଛାଡ଼ିଦିଆଯାଇଛି, ତାହାକୁ ବନ୍ଧନୀ ମଧ୍ୟରେ ରଖାଯାଇଛି । ସୌଦାମିନୀ ଉପନ୍ୟାସର ପାଠକୁ ଲେଖକ ରାମଶଙ୍କର ନିଜେ ଯେଉଁଠି ସଂଶୋଧନ କରିଛନ୍ତି, ସେଠାରେ ସଂଶୋଧିତ ପାଠକୁ ଗ୍ରହଣ କରାଯାଇ ପୂର୍ବପାଠକୁ ବନ୍ଧନୀ ମଧ୍ୟରେ ପ୍ରଦାନ କରାଯାଇଛି । କେତେକ ସ୍ଥଳରେ କିନ୍ତୁ ସଂଶୋଧିତ ଶବ୍ଦ ବା ଅକ୍ଷର ଅସ୍ପଷ୍ଟ ହୋଇଯାଇଥିବା ଯୋଗୁଁ ପାଠସଂସ୍କାର ସମ୍ଭବ ହୋଇପାରି ନାହିଁ । ମଧୁପର ପ୍ରଚ୍ଛଦପୃଷ୍ଠାର ଚତୁର୍ପାର୍ଶ୍ୱରେ ଦିଆଯାଇଥିବା ଶ୍ଳୋକଗୁଡ଼ିକର ନିର୍ଭୁଲ ପାଠୋଦ୍ଧାର ଖଣ୍ଡିତ ଓ ଅସ୍ପଷ୍ଟ ପୃଷ୍ଠା ମଧ୍ୟରୁ ପୂର୍ଣ୍ଣତଃ ସଂଗ୍ରହ କରିବା ମଧ୍ୟ ସମ୍ଭବପର ହୋଇନାହିଁ । ପୁରାତନ ଗ୍ରନ୍ଥ ସମ୍ପାଦନ ବେଳେ ଏପରି ବହୁ ବିଡ଼ମ୍ବନାର ସମ୍ମୁଖୀନ ହେବାକୁ ପଡ଼େ । ଏସବୁ ସମ୍ପାଦକଙ୍କ ପହଞ୍ଚ ବାହାରେ । ତେବେ ଆଲୋଚ୍ୟ ସମ୍ପାଦକ ଯଥାସମ୍ଭବ ନିର୍ଭୁଲ ପାଠ ସଂକଳନପାଇଁ ବିକଳ୍ପ ପନ୍ଥାର ଅନ୍ୱେଷଣ କରିଛନ୍ତି । ଖ୍ରୀ. ୧୯୪୦ରେ *ଭଞ୍ଜପ୍ରଦୀପ* ପତ୍ରିକାର ଦଶମ ଭାଗ ଦ୍ୱିତୀୟ ସଂଖ୍ୟାରେ ପ୍ରକାଶିତ ଗୋକୁଳଚନ୍ଦ୍ର ଶତପଥୀଙ୍କ ପ୍ରବନ୍ଧର ସାହାଯ୍ୟ ଲୋଡ଼ିଛନ୍ତି । ପ୍ରଦୀପ ପତ୍ରିକାର ନବମ ସଂଖ୍ୟାଟି ସଂଗ୍ରହ କରି ନ ପାରିଥିଲେ ମଧ୍ୟ ଉପଲବ୍ଧ ସଂଖ୍ୟାଗୁଡ଼ିକର ପୁନର୍ମୁଦ୍ରଣ ବେଳେ ପାଠକୁ ଯଥାସମ୍ଭବ ଅବିକୃତ ରଖିବାପାଇଁ ଅଶେଷ ଶ୍ରମ ସ୍ୱୀକାର କରିଛନ୍ତି । ପତ୍ରିକାଗୁଡ଼ିକ ମୂଳ ପ୍ରଚ୍ଛଦ ପୃଷ୍ଠାର ପଛରେ ଏବଂ ଶେଷ ମଲାଟର ଉଭୟ ପଟରେ ଦିଆଯାଇଥିବା ନିୟମାବଳୀ, ଗ୍ରାହକମାନଙ୍କପାଇଁ ଉଦ୍ଦିଷ୍ଟ ବିଜ୍ଞାପନ ଓ ଅନୁରୋଧ, ମୂଲ୍ୟ, ପ୍ରାପ୍ତି ସ୍ୱୀକାର କିମ୍ବା ସାଧାରଣ ବିଜ୍ଞାପନ, ଇନ୍ଦ୍ରଧନୁର ଲେଖା ଶେଷରେ ଥିବା **ଚଟନୀ** ଆଦିକୁ ପ୍ରସ୍ତୁତ ସଂସ୍କରଣର ପ୍ରତି ସଂଖ୍ୟାରେ ବା ପ୍ରତି ଲେଖା ପରେ ନ ଦେଇ ପାଠକମାନଙ୍କୁ ଶ୍ରମ, ସମୟ ଓ ଅର୍ଥଶ୍ରାଦ୍ଧରୁ ରକ୍ଷା କରିଛନ୍ତି । ତେବେ ଭବିଷ୍ୟତର ଅନୁସନ୍ଧିତ୍ସୁ ପାଠକ, ଗବେଷକ ଓ ଶ୍ରମ ସ୍ୱୀକାର କରିବାକୁ ପ୍ରସ୍ତୁତ ଥିବା ସମାଲୋଚକଙ୍କ ଅବଗତି ତଥା କାର୍ଯ୍ୟାନୁଷ୍ଠାନପାଇଁ ମଧୁପ ଓ ପ୍ରଦୀପର ଗ୍ରାହକମାନଙ୍କ ନାମ ଓ ଠିକଣା ଅନ୍ୟତ୍ର (ପୃ. ୪୫-୪୬, ୧୯୫-୧୯୭) ଦେଇଛନ୍ତି ।

ତାଲିକା ଦୁଇଟି କେବଳ ଗ୍ରାହକମାନଙ୍କ ନାମ ଜାଣିବାପାଇଁ ଉଦ୍ଦିଷ୍ଟ ନୁହେ । ପ୍ରାୟ ଦେଢ଼ଶହ ବର୍ଷ ତଳର ଏ ଗ୍ରାହକମାନେ କିଏ କୁଆଡ଼େ ମରି ହଜି ଗଲେଣି ।

ସେମାନଙ୍କ ପୁତ୍ର, ପୌତ୍ର ଏପରିକି ପ୍ରପୌତ୍ର ବା ବୃଦ୍ଧ ପ୍ରପୌତ୍ରଗଣ ମଧ୍ୟ ଜୀବିତ ଥିବା ସମ୍ଭାବନା ଖୁବ୍ କମ୍ । ତେବେ କୌଣସି ନିଷ୍ଠାବାନ ଗବେଷକ ଯଦି ଏମାନଙ୍କ ବଂଶଧରଙ୍କ ଠିକଣା ସଂଗ୍ରହ କରି ଅକସ୍ମାତ୍ ସେମାନଙ୍କ ପୈତୃକ ବାସଗୃହରେ ପହଞ୍ଚି ପାରନ୍ତି ହୁଏତ କୌଣସି କୋଣରୁ ପତ୍ରିକାଗୁଡ଼ିକର କିଛି ସଂଖ୍ୟା ଉଦ୍ଧାର କରାଯାଇପାରେ । ଏମିତି ତ ଦିନେ ଠୁଙ୍ଗା ଦେହରୁ ପୂର୍ଣ୍ଣଚନ୍ଦ୍ର ଭାଷାକୋଷର ପୁନରୁଦ୍ଧାର ସମ୍ଭବ ହୋଇଥିଲା; ସ୍ୱୟଂ ଆଚାର୍ଯ୍ୟ ମହାଶୟ ଇନ୍ଦ୍ରଧନୁର ପାଞ୍ଚଟି ସଂଖ୍ୟା ପାଇଥିଲେ । ଅତଏବ ଆପାତତଃ ଅନାବଶ୍ୟକ ମନେ ହେଉଥିବା ସୁଦୀର୍ଘ ଗ୍ରାହକ ତାଲିକା ଦୁଇଟି ଯେ ଭବିଷ୍ୟତର ଅନନ୍ତ ସମ୍ଭାବନାର ସୂଚକ-ଏହା ଅନସ୍ୱୀକାର୍ଯ୍ୟ ।

*ଓଡ଼ିଶାର ଅସ୍ମିତା ସନ୍ଧାନ ଓ ଉପେନ୍ଦ୍ରଭଂଜ କାବ୍ୟାଲୋଚନା* ସେଇ ସମାନ ଉଦ୍ଦେଶ୍ୟ -ଓଡ଼ିଆ ସାହିତ୍ୟର ଯଥାର୍ଥ ଇତିହାସ ରଚନାପାଇଁ ଉପାଦାନ ପ୍ରସ୍ତୁତି- ନେଇ ସମ୍ପାଦିତ ହୋଇଥିଲେ ସୁଦ୍ଧା ସ୍ୱରୂପ ଦୃଷ୍ଟିରୁ ପୂର୍ବାଲୋଚିତ ତିନୋଟି କୃତିଠାରୁ ସମ୍ପୂର୍ଣ୍ଣ ଭିନ୍ନ । ଉଲ୍ଲିଖିତ ତିନୋଟି କୃତି ଗୋଟିଏ ଗୋଟିଏ ନିର୍ଦ୍ଦିଷ୍ଟ ପତ୍ରିକା । କିନ୍ତୁ *ଓଡ଼ିଶାର ଅସ୍ମିତା ସନ୍ଧାନ ଓ ଉପେନ୍ଦ୍ରଭଂଜ କାବ୍ୟାଲୋଚନା* ନିର୍ଦ୍ଦିଷ୍ଟ ଲକ୍ଷ୍ୟାଭିସାରୀ ଏକ ସମ୍ପାଦିତ କର୍ମ ।

ବପୁଷ୍ମାନ୍ ଗ୍ରନ୍ଥଟି ଦୁଇ ଭାଗରେ ବିଭକ୍ତ । ପ୍ରଥମ ଶହେ ପୃଷ୍ଠା ଊନବିଂଶ ଶତାବ୍ଦୀର ଉତ୍ତରାଧର୍ଦ୍ଧରେ ଅଙ୍କୁରିତ ହୋଇ ଆସୁଥିବା ଓଡ଼ିଆ ଅସ୍ମିତାର ପୃଷ୍ଠଭୂମି ଓ ସ୍ୱରୂପ ସମ୍ବନ୍ଧରେ ଆଚାର୍ଯ୍ୟ ମହାଶୟଙ୍କ ଅଭିଜ୍ଞ ବିଶ୍ଳେଷଣ ଏବଂ ପରବର୍ତ୍ତୀ ସାତ ଶହ ପୃଷ୍ଠାର ଉପଜୀବ୍ୟ ରେଭରେଣ୍ଡ ଜେ. ଲଙ୍ଗଙ୍କଠାରୁ ଆରମ୍ଭ କରି ଦାମୋଦର ମିଶ୍ରଙ୍କ ପର୍ଯ୍ୟନ୍ତ ଯେଉଁ ଆଲୋଚକମାନେ ଓଡ଼ିଶା ଓ ଓଡ଼ିଶା ବାହାରର ପତ୍ରପତ୍ରିକାରେ ଉପେନ୍ଦ୍ର ସାହିତ୍ୟ ସମ୍ପର୍କିତ ଆଲୋଚନାମାନ ପ୍ରକାଶ କରିଥିଲେ-ସେସବୁର କାଳାନୁକ୍ରମିକ ସଜ୍ଜୀକରଣ ।

ଗ୍ରନ୍ଥର ନାମକରଣରେ ସମାଲୋଚକ ସ୍ପଷ୍ଟ କରିଦେଇଚନ୍ତି ଯେ, ଏହା ଉପେନ୍ଦ୍ର ସାହିତ୍ୟ ସମ୍ପର୍କିତ କତିପୟ ସମାଲୋଚନାର ସଙ୍କଳନଟିଏ ମାତ୍ର ନୁହେଁ । ଏହି ଉଦ୍ୟମ ପଶ୍ଚାତ୍‌ରେ ଓଡ଼ିଶାର ଅସ୍ମିତାର ପ୍ରଶ୍ନ ଜଡ଼ିତ । ଅତଏବ, ସାହିତ୍ୟ ଶ୍ରଦ୍ଧାଳୁମାନଙ୍କୁ ଗ୍ରନ୍ଥଟିକୁ ସେହି ଦୃଷ୍ଟିରୁ ଦେଖିବାକୁ ହେବ । ବ୍ୟକ୍ତି, ଜାତି ଅଥବା ରୁଚି ସହ ଅସ୍ମିତାର ପ୍ରଶ୍ନ ଜଡ଼ିତ ହୋଇଗଲେ ଅଧିକାଂଶ ସମୟରେ ଚକ୍ଷୁ କୁଜ୍‌ଝଟିକା ଆବୃତ୍ତ ହୋଇଯାଏ । ଏପରିକି ଅନ୍ୟଥା ଜ୍ୟୋତିଷ୍ମାନ୍ ଚକ୍ଷୁ ଏ କ୍ଷେତ୍ରରେ ସ୍ୱାଭାବିକ ଜ୍ୟୋତି ହରାଇବସେ । ଏକ ଶତାବ୍ଦୀରୁ ଊର୍ଦ୍ଧ୍ୱକାଳ ଧରି ଚାଲିଆସିଥିବା ଭଞ୍ଜ କାବ୍ୟାଲୋଚନା ମଧ୍ୟ ଏହାର ବ୍ୟତିକ୍ରମ ନୁହେଁ । ଇନ୍ଦ୍ରଧନୁ ଓ ବିଜୁଳି ମଧ୍ୟରେ ଚାଲିଥିବା ମସୀଯୁଦ୍ଧ ଥିଲା କଳିହୁଡ଼ୀ ଗ୍ରାମ୍ୟରମଣୀମାନଙ୍କ ବଚସା ପରି ନିତାନ୍ତ ନିକୃଷ୍ଟ । ବିବାଦ ଅସଲରେ ଆଲୋଚନାମୂଳକ ନ ହୋଇ, ଥିଲା ଦ୍ୱେଷସର୍ବସ୍ୱ, କୁତ୍ସାକୈନ୍ଦ୍ରିକ ଓ ବେଳେବେଳେ ଅଶାଳୀନ । ଏଥିରେ ଉଭୟ ଉପେନ୍ଦ୍ର ଭଞ୍ଜ ଓ ରାଧାନାଥଙ୍କ ପ୍ରତି ଘୋର ପକ୍ଷପାତ ଓ ଅନ୍ୟାୟ କରାଯାଇଥିଲା । ଦଳେ ଅତ୍ୟଧିକ ଆଦିରସ ସମ୍ବଳିତ କବିତାମାନ ବାଛିବାଛି ଉଦ୍ଧାର କରି ଉପେନ୍ଦ୍ରଙ୍କୁ ଗୋଟିପଣେ ଅଶ୍ଳୀଳ, କୁଳାଙ୍ଗାର, ଅକାଳକୁଷ୍ମାଣ୍ଡ, ଅଜାଗଳସ୍ତନ ଓ ଉତ୍କଳଭାରତୀଙ୍କ ଅଯୋଗ୍ୟତମ ପୁତ୍ର ସାବ୍ୟସ୍ତ

କଲେ ତ, ଅପର ଦଳ ନାନା ଅପ୍ରାସଙ୍ଗିକ ଅସାହିତ୍ୟିକ ବିଭାବକୁ ନେଇ ରାଧାନାଥୀ ସୃଷ୍ଟିର କୁତ୍ସା ପ୍ରଚାର କଲେ । ବିଦ୍ୱେଷ ଓ ଅର୍ଥଲୋଭର ସର୍ବଗ୍ରାସୀ ରାକ୍ଷସୀର ଦିଗମ୍ବରୀ ନୃତ୍ୟ ସମକ୍ଷରେ ସୁସ୍ଥ ସାଂସ୍କୃତିକ ମାନସିକତା ଭୂଲୁଣ୍ଠିତ ହେବାକୁ ବାଧ୍ୟ ହେଲା । ଉପେନ୍ଦ୍ର ଭଞ୍ଜଙ୍କୁ ଓଡ଼ିଶାର ଅସ୍ମିତା ସହ ଜଡ଼ିତ କରି ଦେଖୁଥିବା ସାହିତ୍ୟିକ ଓ ଜାତୀୟ ଜୀବନର ସଙ୍ଗଠକମାନେ ଅସଲ ପ୍ରସଙ୍ଗକୁ ଭୁଲି ତାଙ୍କୁ ଆପଣାର ଆରାଧ୍ୟ କଲେ । ପରିଣାମରେ ସେମାନେ ସ୍ୱାଭାବିକ ଦୃଷ୍ଟି ବର୍ଜିତ ହୋଇ ଅମଡ଼ା ମାଡ଼ିଲେ । ସେମାନଙ୍କ ଦୃଷ୍ଟିରେ ଉପେନ୍ଦ୍ର ହୋଇପଡ଼ିଲେ ଖଟୁଳିର ଠାକୁର, ସର୍ବଜ୍ଞାନଜ୍ଞାତା ପୁରୁଷାବତାର ଶାରଦା । ଏ ପ୍ରଚକ୍ଷୁରେ ଉପେନ୍ଦ୍ରଙ୍କ ସାହିତ୍ୟ ସେମାନଙ୍କ ସମକ୍ଷରେ ସକଳ-ଶାସ୍ତ୍ର-ଅନନ୍ୟ-ରତ୍ନାକର ରୂପେ ପ୍ରତିଭାତ ହେଲା । ଅପର ପକ୍ଷଙ୍କ ଚକ୍ଷୁକୁ କିନ୍ତୁ ଉପେନ୍ଦ୍ର ଜଣେ ନ୍ୟୂନ ଅନୁକରଣକାରୀଠାରୁ କିଛି ଅଧିକ ଦେଖାଯାଉ ନ ଥିଲେ । ସେମାନଙ୍କ ଦୃଷ୍ଟିରେ ଭଞ୍ଜ ସାହିତ୍ୟ ଥିଲା କେବଳ ଶବ୍ଦ କସରତ, ରବାଡ଼ମ୍ବର, ରମଣୀ-ନୀବି-ମୋକ୍ଷଣ ଓ ଗଗନସ୍ପର୍ଶୀ ଅସାର କଳ୍ପନା ।

ଉଭୟ ପକ୍ଷଙ୍କ ଅନୁଗାମୀ ଶିଷ୍ୟ ପ୍ରଶିଷ୍ୟଙ୍କ କବଳରେ ଏବେ ମଧ୍ୟ ଓଡ଼ିଆ ସାହିତ୍ୟ ସମାଲୋଚନା ରୁଦ୍ଧଶ୍ୱାସ ।

ପ୍ରଥମ ପକ୍ଷ ଉଦ୍ଦଣ୍ଡ ଭଞ୍ଜଭକ୍ତ । ଭଞ୍ଜ ସାହିତ୍ୟ ଚର୍ଚ୍ଚା ନାମରେ ସେସମୟରୁ ଆଜି ପର୍ଯ୍ୟନ୍ତ ଏମାନେ ଗଣଆନ୍ଦୋଳନଟିଏ ଚଳାଇ ଆସିଛନ୍ତି । ତେବେ ବିଚ୍ଛନ୍ଦଚରଣ ଓ ଆର୍ତ୍ତବଲ୍ଲଭଙ୍କ କାଳଜୟୀ ଉଦ୍ୟମକୁ ଛାଡ଼ିଦେଲେ ଏଥିରୁ ଆଉ କିଛି ଦୀର୍ଘକାଳ ସ୍ଥାୟୀ ଫଳ ମିଳି ନାହିଁ । ଉପେନ୍ଦ୍ରଙ୍କ ଭାଗ୍ୟ ଯେଉଁ ତିମିରେକୁ ସେଇ ତିମିରେ ରହିଆସିଛି । ଅଦ୍ୟାବଧି ଯଥାର୍ଥ ଦୃଷ୍ଟିରେ ଭଞ୍ଜ ଗ୍ରନ୍ଥାବଳୀଟିଏ ସମ୍ପାଦିତ ହେବା ସମ୍ଭବ ହୋଇପାରି ନାହିଁ । ଉପେନ୍ଦ୍ରଙ୍କ ରଚିତ କାବ୍ୟ ଓ ସଙ୍ଗୀତର ସଂଖ୍ୟା କେତେ, ସେଥିରୁ କେତୋଟି ଉପଲବ୍ଧ, କେତୋଟି ଲୁପ୍ତ, ତାହାର ନିର୍ଭୁଲ କି ଯୁକ୍ତିଯୁକ୍ତ ଉତ୍ତର କୌଣସି ତୁଙ୍ଗ ଭଞ୍ଜଭକ୍ତଙ୍କ ପାଖରେ ସୁଦ୍ଧା ନାହିଁ। ଭଞ୍ଜ ସାହିତ୍ୟର ତଥ୍ୟମୂଳକ ଆଲୋଚନା କ୍ୱଚିତ୍ ସମ୍ଭବପର ହୋଇଛି । ଭଣ୍ଡ-ପାଣ୍ଡିତ୍ୟ ଓ ବକଧାର୍ମିକତ୍ୱ ଏହାର ଘୋର କ୍ଷତି ଘଟାଇଆସିଛି । ସ୍ତାବକମାନେ ହିଁ ଏହାର ହିତଶତ୍ରୁ ସାଧିଛନ୍ତି । ସେମାନେ ଧୃତି, ପାଣ୍ଡିତ୍ୟ, ସହୃଦୟତ୍ୱ, ସୂକ୍ଷ୍ମଦୃଷ୍ଟି ଓ ସାଧୁତ୍ୱ ଅଭାବରୁ ସହଜ ମାର୍ଗରେ ଗତିକରିବାକୁ ପରମ ସୁଖ ମଣିଛନ୍ତି । ଗବେଷଣା ନାମରେ ବ୍ୟଭିଚାର ଚାଲିବାର ଯେତେ ପ୍ରକାର ଉପାୟ ଅଛି, ସେସବୁ ଓଡ଼ିଶାରେ ଦୁଇ ଜଣଙ୍କ ଉପରେ ଅହର୍ନିଶ ପ୍ରୟୋଗ କରାଯାଇଆସୁଛି: ଉପେନ୍ଦ୍ର ଓ ଜଗନ୍ନାଥ । ଗଣମାଧ୍ୟମରେ ନାଁ ଯୋଡ଼ିବାର ଇଚ୍ଛା ବଳବତୀ ହେଲେ, ସୁବିଧାରେ ଯଶ( ? ) ଓ ଅର୍ଥ ଉପାର୍ଜନ ପାଇଁ ମନର ଉଚ୍ଚାଟତା ଅସମ୍ଭାଳ ହେଲେ, ଯେ କୌଣସି ମୁହୂର୍ତ୍ତରେ ଯେଉଁଠାରେ ମଧ୍ୟ ଭଞ୍ଜ ଜୟନ୍ତୀଟିଏ, ଜଗନ୍ନାଥଙ୍କ ନାମ ସଂଶ୍ଲିଷ୍ଟ କରି ପାଠଚକ୍ର, ଆଲୋଚନା ନାମିତ ସଭା ଅଥବା ତଥାକଥିତ ଭକ୍ତି ସଙ୍ଗୀତ ସମାରୋହଟିଏ ଆୟୋଜିତ ହୋଇପାରେ । ଏସବୁ ଉଦ୍‌ଯୋଗରେ ଆତ୍ମଘୋଷିତ ଓ ଗୋଷ୍ଠୀସଂପୃକ୍ତ ଭକ୍ତବାନାଧାରୀମାନେ ଯୁଧ୍ୟମାନ ସେନାପତି ଗଡ଼ ପରେ ଗଡ଼ ଜୟ କଲା ଭଳି ପରମ ତୃପ୍ତି ଲଭନ୍ତି । ଚାଟପଣ ଭାଟପଣକୁ ବାଟ ଛାଡ଼ିଦେବାକୁ

ବାଧ୍ୟ ହୁଏ । ଉପେନ୍ଦ୍ରଙ୍କ ସ୍ମୃତି ଓ ଜଗନ୍ନାଥଙ୍କ ମହିମା ସହଜଲଭ୍ୟ ପଣ୍ୟ ହୁଏ । ନିଷ୍ଠା ଓ ଆନ୍ତରିକତା ବାଦ୍ ଯାବତୀୟ ଅସାହିତ୍ୟିକ ଓ ଅଣଆଧ୍ୟାତ୍ମିକ ପ୍ରଚେଷ୍ଟା ସାଫଲ୍ୟର ମାନଦଣ୍ଡ ରୂପେ ଅଭ୍ୟର୍ଥିତ ହୁଏ । ସାହିତ୍ୟ ଓ ଧର୍ମଚର୍ଚ୍ଚା ନାମରେ ଅନାବଶ୍ୟକ ବିଦ୍ୱେଷ, ଜାଲ୍ ଓ ଗାଲ ଆଲୋଚନା ଚାଲେ । ଭଣ୍ଡ ପ୍ରଚାର ପ୍ରବଣତା ପ୍ରେରକଶକ୍ତି ରୂପେ ଅତ୍ୟଧିକ କ୍ରିୟାଶୀଳ ହୁଏ । ପଦ୍ଧତିହୀନତା ଯୋଗୁଁ ଭକ୍ତମାନଙ୍କ ଅକାଳ ପ୍ରଶଂସାସବୁ ବର୍ଷାଋତୁର ଜଳ ଭଳି ବିଶ୍ୱ ଜ୍ଞାନ-ମହାସମୁଦ୍ରରେ ସତ୍ତାଶୂନ୍ୟ ହୋଇଯାଏ । କବି ଓ ଆରାଧ୍ୟଙ୍କ ଅକର୍ମ ଭାଗ୍ୟଶିଳା ଧନମାନାକାଙ୍‌କ୍ଷୀ ସ୍ଥବିର ବିହୃଦମାନଙ୍କ କରାମଳକ ଓ ହସ୍ତଲଗୁଡ଼ ହୋଇ ହିଁ ରହିଯାଏ ।

ଅପର ପକ୍ଷଙ୍କ କାରନାମା ଆହୁରି ବିଚିତ୍ର । ସେମାନଙ୍କ ସୁଦୟାରୁ ସ୍ନାତକ ଓ ତତ୍‌ପରବର୍ତ୍ତୀ ଶ୍ରେଣୀଗୁଡ଼ିକରେ ପାଠ୍ୟକ୍ରମରୁ କେବଳ ଭଞ୍ଜସାହିତ୍ୟ ନୁହେଁ, ସମଗ୍ର ମଧ୍ୟକାଳୀନ ଓଡ଼ିଆ ସାହିତ୍ୟ ପ୍ରାୟ ଉଭାନ ହୋଇସାରିଛି; ସମ୍ପୂର୍ଣ୍ଣ ବିଦାୟ ଦେବାକୁ ଯାହା ସମୟର ପ୍ରତୀକ୍ଷା କରାଯାଉଛି ।

ପ୍ରଥମ ଦୃଷ୍ଟିଟି ଯେଭଳି ପ୍ରମାଦସଙ୍କୁଳ ଅବୈଜ୍ଞାନିକ ମୋହାବିଷ୍ଟତା ଓ ବିକଳ ଅନୁସନ୍ଧିତ୍ସାର ଉପଜ, ଦ୍ୱିତୀୟ ଦୃଷ୍ଟିଟି ସେଭଳି ସ୍ୱାର୍ଥବଶରୁ ପ୍ରତିଭାର ଉଦ୍ଦାମ ଅବମାନନା, ସହଜ ସାଂସ୍କୃତିକ କଳାପାହାଡ଼ୀପଣ । ପରିଣାମରେ ଓଡ଼ିଆ ସାହିତ୍ୟ ସମାଲୋଚନା ଆଜି ଦିଗ୍‌ଭ୍ରାନ୍ତ; ଏ ଭାଷା ଚକ୍ରବର୍ତ୍ତୀଙ୍କ ଦରବାରରେ ହୁଲିଆପ୍ରାପ୍ତ ହେଲେ ସୁଦ୍ଧା ବସ୍ତୁତଃ ବହୁଳାଂଶରେ ଚରମ ଅବଜ୍ଞାର ମୁହୁର୍ମୁହୁ ଶିକାର; ଓଡ଼ିଆର ଯଥାର୍ଥ ପରିଚୟ ଜାତୀୟ ଓ ବିଶ୍ୱ ଦରବାରରେ ଅସ୍ପଷ୍ଟ, ତାର ପଦଚିହ୍ନ ଗଭୀରତାଶୂନ୍ୟ ଓ ପ୍ରାୟ ନିରୁଦ୍ଦିଷ୍ଟ ।

ଏହି ଦୟନୀୟ ପ୍ରେକ୍ଷାପଟରେ ଆଚାର୍ଯ୍ୟଙ୍କ ଆଲୋଚନାର ବୈଶିଷ୍ଟ୍ୟ ହେଉଛି ଦୃଷ୍ଟିଭଙ୍ଗୀରେ ଆସକ୍ତ ଅଥଚ ସତତ୍ ସଚେତନ ନିରପେକ୍ଷତା । ଏହା ତାଙ୍କ ଆଲୋଚନାକୁ ସଶ୍ରଦ୍ଧ, ଯଥାର୍ଥଦର୍ଶୀ ଓ ବିଦ୍ୱେଷଶୂନ୍ୟ କରିଛି । ଆଲୋଚ୍ୟ ଗ୍ରନ୍ଥଟି ଆଦ୍ୟାନ୍ତ ଏ ବୈଶିଷ୍ଟ୍ୟ ସମୂହରେ ମଣ୍ଡିହୋଇଛି ।

ଗ୍ରନ୍ଥର ମଲାଟ ଖୋଲୁଖୋଲୁ ପାଠକଙ୍କ ଦୃଷ୍ଟିପଥାରୂଢ଼ ହୁଏ ଉତ୍ସର୍ଗପତ୍ର । ଆଚାର୍ଯ୍ୟ ମହାଶୟଙ୍କ ବହୁବର୍ଷବ୍ୟାପୀ ଶ୍ରମ, ସାଧନା ଓ ଶ୍ରଦ୍ଧାର ଫଳ ଯେଉଁମାନଙ୍କୁ ସମର୍ପିତ, ସେ ତିନି ହେଁ ତାଙ୍କଠୁ କନୀୟାନ୍ । ସଙ୍କୀର୍ଣ୍ଣ ସ୍ୱାର୍ଥ ଓ ଅକଥନୀୟ ଈର୍ଷ୍ୟା ଯେଉଁଠି ଉତ୍‌ଥାନ ପଥର ଏକମେବ ପାଥେୟ, ସେଇ ଓଡ଼ିଆ ସାହିତ୍ୟ ସମାଲୋଚନା ଓ ଓଡ଼ିଶାର ଅଧ୍ୟାପନା ଜଗତରେ ଏ ଏକ ସମ୍ପୂର୍ଣ୍ଣ ଅବିଶ୍ୱାସ୍ୟ ଅଥଚ ବହୁ ଅପେକ୍ଷିତ ସତ୍ୟ । ସାହିତ୍ୟ ପ୍ରତି ଆଚାର୍ଯ୍ୟଙ୍କ ଶ୍ରଦ୍ଧାର ଅଞ୍ଜଳି ଉତ୍ସର୍ଗ କେତେ ଯେ ମହୀୟାନ୍-ଏ ଉତ୍ସର୍ଗପତ୍ର ତାର ଐତିହାସିକ ପ୍ରମାଣ । ଏ ଶ୍ରଦ୍ଧାର ଗଭୀରତା ଓ ଆନ୍ତରିକତା ନେଇ ସକଳ ସଂଶୟ ଦୂରହୁଏ ସେତିକିବେଳେ ଯେତେବେଳେ, ଆଲୋଚକ ମହୋଦୟ ଉଲ୍ଲେଖ କରନ୍ତି: *ବହୁ ତଥ୍ୟଗତ ଭ୍ରାନ୍ତି ଦୂରକରି ଓଡ଼ିଆ ସାହିତ୍ୟ ସମାଲୋଚନା ଓ ଗବେଷଣା ପାଇଁ ଭିତ୍ତିଭୂମି ପ୍ରସ୍ତୁତ କରିବାରେ ତୁମମାନଙ୍କ ନିରଳସ ଉଦ୍ୟମ ଅଭିନନ୍ଦନୀୟ । ବିଲୁପ୍ତି ଓ ବିସ୍ମୃତିର ଦ୍ୱାରଦେଶରୁ ଫେରିଚନ୍ତି ବହୁ ସାହିତ୍ୟସାଧକ, ଉଦ୍ଧାର ପାଇଛି ବହୁ ଅକ୍ଷରମାଳିନୀ କୀର୍ତ୍ତିର, ସାହିତ୍ୟ*

*ଆଲୋଚନା ପାଇଚି ନୂତନତାର ସ୍ପର୍ଶ । ସାହିତ୍ୟ ସାଧନାର ସ୍ୱୀକୃତି ଓ ଆମ ସାରସ୍ୱତ ସମ୍ପର୍କର ସ୍ମାରକୀ ସ୍ୱରୂପ ପୁସ୍ତକଟି ତୁମମାନଙ୍କ ହାତରେ ଅର୍ପଣ କଲି ।* ଆଗତ ସୂର୍ଯ୍ୟ ପାଇଁ ମଧ୍ୟାହ୍ନ ସୂର୍ଯ୍ୟଙ୍କର ଏ ଅନାବିଳ, ବ୍ୟକ୍ତିଗତ ପ୍ରତ୍ୟାଶାଶୂନ୍ୟ ସ୍ୱୀକୃତି ଓ ଆଶୀର୍ବଚନ ଚିରକାଳ ଅଭିନନ୍ଦନୀୟ । ଉତ୍ତର ପୀଢ଼ିର ସାହିତ୍ୟ ସାଧକଙ୍କ ଉପରେ ଏପରି ଆନ୍ତରିକ ଆସ୍ଥା ସ୍ଥାପନର ଦୃଷ୍ଟାନ୍ତ ମଧ୍ୟ ଅନନ୍ୟ ।

ଗ୍ରନ୍ଥାଦ୍ୟରେ ଆଚାର୍ଯ୍ୟ ମହାଶୟ ଉପେନ୍ଦ୍ର ଭଞ୍ଜଙ୍କୁ ଓଡ଼ିଶାର ସର୍ବାଧିକ ଜନପ୍ରିୟ କବି ରୂପେ ଉଲ୍ଲେଖ କରିଛନ୍ତି । ସ୍ୱୀୟ ବକ୍ତବ୍ୟ ପକ୍ଷରେ ଗୋପବନ୍ଧୁଙ୍କ କବିତାର ପଙ୍‌କ୍ତି ଉଦ୍ଧାର କରିଚନ୍ତି । ଉପେନ୍ଦ୍ରଙ୍କ ବ୍ୟକ୍ତିତ୍ୱ ଓ ସାହିତ୍ୟର ବୈଶିଷ୍ଟ୍ୟ ଚୁମ୍ବକରେ ସୂଚାଇ ଦେଇଛନ୍ତି । ଏ ଜାତିର ସାହିତ୍ୟକୁ ଉଜ୍ଜୀବିତ ରଖିବାରେ, ତାର ଅସ୍ମିତାର ପ୍ରତୀକ ହୋଇ ଉଭା ହେବାରେ କବିଙ୍କ ଭୂମିକାର ଗୁରୁତ୍ୱ ଅନୁଭବ କରିଛନ୍ତି । କିନ୍ତୁ, ସ୍ୱୀୟ ଦୃଷ୍ଟିର ଯଥାର୍ଥ ଜ୍ୟୋତିରେ ଉପେନ୍ଦ୍ରଙ୍କ ସ୍ଥାନ ଆକଳନ କରି ସେ ଯେ ସାରଳା ଦାସ ଓ ଜଗନ୍ନାଥ ଦାସଙ୍କ ପଛକୁ ସ୍ଥାନିତ ହେବାକୁ ଯୋଗ୍ୟ-ଏହା ମଧ୍ୟ ଉଲ୍ଲେଖ କରିଛନ୍ତି; ଏ ତିନି ମହାପ୍ରତିଭାଧରଙ୍କ ପ୍ରତି ଉତ୍ତରଦାୟାଦଙ୍କ ଅବହେଳା ସନ୍ଦର୍ଶନ କରି ବ୍ୟଥିତ ହୋଇଛନ୍ତି; ସେମାନଙ୍କ ଜୀବନବୃତ୍ତ, ଗ୍ରନ୍ଥସଂଖ୍ୟା ଓ ଅମର କୃତିଗୁଡ଼ିକର ଅଦ୍ୟାବତ୍ ଶୁଦ୍ଧପାଠ ନିର୍ଣ୍ଣୟ ହୋଇପାରି ନ ଥିବାରୁ କ୍ଷୋଭ ପ୍ରକାଶ କରିଛନ୍ତି । ଇନ୍ଦ୍ରଧନୁ ବିଜୁଳି ବିବାଦ ବ୍ୟକ୍ତିଗତ ସ୍ତରକୁ ଚାଲିଯିବା ଫଳରେ ସୃଷ୍ଟି ହୋଇଥିବା କଳୁଷିତ ବାତାବରଣ, ଉପେନ୍ଦ୍ର ସାହିତ୍ୟର ଅଶ୍ଳୀଳତା ଅନ୍ୱେଷଣ କରୁକରୁ ସମାଲୋଚକମାନଙ୍କ ଭାଷା ଶାଳୀନତାର ସୀମା ଲଙ୍ଘନ କରିଥିବା ସମ୍ବନ୍ଧରେ ବିଦଗ୍ଧ ଆଲୋଚକ ବୃନ୍ଦ ଉଣା ଅଧିକେ ଅବହିତ । କିନ୍ତୁ, ଆଚାର୍ଯ୍ୟଙ୍କ ଆଲୋଚନାର ବୈଶିଷ୍ଟ୍ୟ ହେଉଛି, ଏ ସମ୍ବନ୍ଧରେ ସଚେତନତା ସଙ୍ଗକୁ ବିବାଦର ବିଶ୍ଳେଷଣ ଓ ଯଥାର୍ଥଧର୍ମୀ ମୂଲ୍ୟାୟନ । ଏହି ଗ୍ରନ୍ଥ ଓଡ଼ିଆ ସାହିତ୍ୟ ଆଲୋଚନାରେ କେବଳ ନବ ଦିଗନ୍ତ ଉନ୍ମୋଚନ କରିନାହିଁ, ଏହାର ଅପୂର୍ଣ୍ଣତା ସମ୍ବନ୍ଧରେ ସମାଲୋଚକଙ୍କ ସଙ୍କେତ ସାମ୍ପ୍ରତିକ ଓ ଭବିଷ୍ୟତ କାଳର ନିଷ୍ଠାବନ୍ତ ସାଧକମାନଙ୍କ ପାଇଁ ଦିଗବାରେଣୀ ସାବ୍ୟସ୍ତ ହେବାର ଅପାର ସମ୍ଭାବନା ମଧ୍ୟ ସ୍ୱ ଗର୍ଭରେ ଧାରଣ କରି ଏକ ମହତ ଗବେଷଣାର କୋଟୀକୁ ଉନ୍ନୀତ ହୋଇ ପାରିଛି।

ଓଡ଼ିଆ ସାହିତ୍ୟର ଯଥାର୍ଥ ଇତିହାସ ରଚନାପାଇଁ ଆଜୀବନ ଉପାଦାନ ପ୍ରସ୍ତୁତି କରୁକରୁ ସମାଲୋଚକ ଆଚାର୍ଯ୍ୟ ବାରମ୍ବାର ଯେଉଁ ଅଗ୍ରସୂରିଙ୍କୁ ଭେଟିଛନ୍ତି, ସେ ହେଉଛନ୍ତି ପଣ୍ଡିତ ଗୋପୀନାଥ ନନ୍ଦ । *ସ୍ରଷ୍ଟା ଓ ସୃଷ୍ଟି*ରେ ତାଙ୍କ ସମ୍ବନ୍ଧରେ ଦୁଇଟି ପ୍ରବନ୍ଧ ସ୍ଥାନିତ; ଅନ୍ୟ ଏକ ପ୍ରବନ୍ଧ *ଅଭିନବ ଭଞ୍ଜଭାରତୀ* ତଥା *ଓଡ଼ିଆ ପ୍ରବନ୍ଧ ଓ ସମାଲୋଚନା ସାହିତ୍ୟର ପରିଚୟ*ରେ । *ସ୍ରଷ୍ଟା ଓ ସୃଷ୍ଟି*ର ପ୍ରବନ୍ଧ ଦୁଇଟି ପୂର୍ବରୁ *କଳିଙ୍ଗ* ଓ *ପ୍ରଜାତନ୍ତ୍ର*ରେ ମଧ୍ୟ ପ୍ରକାଶ ପାଇଥିଲା । ତେବେ ଏ ସମ୍ବନ୍ଧୀୟ ସର୍ବାଧିକ ଗୁରୁତ୍ୱପୂର୍ଣ୍ଣ ସମାଲୋଚନା ଆଚାର୍ଯ୍ୟଙ୍କ ସମ୍ପାଦିତ *ପଣ୍ଡିତ ଗୋପୀନାଥ ନନ୍ଦ ଗ୍ରନ୍ଥାବଳୀ ପ୍ରଥମ ଭାଗ(୨୦୧୧)*ର ମୁଖବନ୍ଧ । ଏଥିରେ ପଣ୍ଡିତ ନନ୍ଦଙ୍କ ଆଜୀବନ ସାଧନା ଓ ଜୀବନ ସଂଘର୍ଷର ଆଲେଖ୍ୟ କେବଳ ନାହିଁ, ସେକାଳର ପୃଷ୍ଠଭୂମିରେ ପଣ୍ଡିତଙ୍କୁ ଓଡ଼ିଆ ସଂପାଦନ ଓ ଅନୁବାଦ କଳାର ଆଦି ପୁରୁଷ ଭାବେ ପ୍ରତିଷ୍ଠା

କରିବାର ନିଷ୍ଠାପର ଉଦ୍ୟମଟିଏ ମଧ୍ୟ ହୋଇଛି ।

ଓଡ଼ିଆ ସାହିତ୍ୟର ଯଥାର୍ଥ ଇତିହାସ ରଚନାପାଇଁ ତାର ପୃଷ୍ଠଭୂମିର ଅନୁସନ୍ଧାନ କରୁକରୁ ସୁଦର୍ଶନ ଏ ସାହିତ୍ୟର ନିର୍ଭୁଲ ପରିଚୟର ଅଭାବ ଅନୁଭବ କରିଛନ୍ତି । ଓଡ଼ିଆ ସାହିତ୍ୟର କେବଳ ପ୍ରାଚୀନ କୀର୍ତିରାଜି ଯେ ଅଜ୍ଞାତ ଓ ଅବଜ୍ଞାତ ସ୍ଥିତିରେ ଅହରହ କାଳ କବଳିତ ହେଉଚି ଏଇଆ ନୁହେଁ, ନିକଟ ଅତୀତର ଅନେକ ଅମର କୃତି ମଧ୍ୟ ଆଗ୍ରହୀ ପାଠକ ଓ ଗବେଷକଙ୍କ ନିକଟରେ ଅନୁଦିନ ଦୁଷ୍ପ୍ରାପ୍ୟ ହୋଇଉଠୁଛି— ଏ ଧାରଣା ତାଙ୍କର ଦୃଢ଼ମୂଳ ହୋଇଛି । ସମସ୍ୟା ସମ୍ମୁଖରେ ନତମସ୍ତକ ନ ହୋଇ ସେ ତାହାର ସମାଧାନର ପନ୍ଥା ଖୋଜିଛନ୍ତି । ଏ ଉଦ୍ୟମରୁ ପ୍ରକାଶିତ ହୋଇଛି ଜୀର୍ଣ୍ଣ ତାଳପତ୍ର ପୋଥିରୁ ଉଦ୍ଧୃତ ବହୁ କୃତି ସଙ୍ଗକୁ ଊନବିଂଶ ଶତାବ୍ଦୀର ଶେଷାର୍ଦ୍ଧ ଓ ବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧର ଅନେକ ଗୁରୁତ୍ୱପୂର୍ଣ୍ଣ ପୁସ୍ତକ ଓ ଗ୍ରନ୍ଥାବଳୀ । ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ଦ୍ୱାରା ଚାରିଭାଗରେ ପ୍ରକାଶିତ ରାମଚନ୍ଦ୍ର ଗ୍ରନ୍ଥାବଳୀ, ଜଗନ୍ନାଥ ନାରାୟଣ ଦେବ ଗ୍ରନ୍ଥାବଳୀ ସମେତ ଫକୀରମୋହନଙ୍କ ରାମାୟଣର ବାଳକାଣ୍ଡ ଓ ଅଯୋଧ୍ୟାକାଣ୍ଡ, ମୁକ୍ତିଗୀତିକା, ଉପେନ୍ଦ୍ର ଭଞ୍ଜଙ୍କ ଆଦ୍ୟ କୃତି ଚିତ୍ରଲେଖା, ନବକଳିକା ପ୍ରଥମ ଭାଗ ଓ ଦ୍ୱିତୀୟ ଭାଗ, ପଦ୍ମନାଭ ନାରାୟଣ ଦେବ ଗ୍ରନ୍ଥାବଳୀ, ଗୋପାଳଚନ୍ଦ୍ର ପ୍ରହରାଜ: ବ୍ୟକ୍ତି ଓ ବ୍ୟକ୍ତିତ୍ୱ, ଉଷା ଅଭିଳାଷ, ରେଖା ଓ ରଙ୍ଗରେ ଚଉତିଶା, ନରେନ୍ଦ୍ର ଯୁବତୀଙ୍କ ଶଶିସେଣା, ନୃପଜେମାଙ୍କ କୋକିଳାବତୀ, କ୍ଷୀରୋଦମାଳୀଙ୍କ ପଦ୍ମନଜନ୍ମ, ଶ୍ରୀବିଷ୍ଣୁପୁରାଣ, ଶ୍ରୀରାମରସାୟନ, କୃଷ୍ଣଚରଣ ପଟ୍ଟନାୟକଙ୍କ କଳ୍କୀପୁରାଣ ଏ ଧରଣର ପ୍ରକାଶନ ।

ଗ୍ରନ୍ଥସବୁର ସମ୍ପାଦନରେ ଆଚାର୍ଯ୍ୟ ମହାଶୟ ପୂର୍ବାଲୋଚିତ ପଦ୍ଧତି ଅନୁସରଣ କରିଛନ୍ତି । ଫଳରେ ଗ୍ରନ୍ଥଗୁଡ଼ିକ ଯଥାସମ୍ଭବ ମୌଳିକ ରୂପରେ ପ୍ରକାଶ ପାଇଛି । କୃତିଗୁଡ଼ିକର ମୁଖବନ୍ଧରେ ଓଡ଼ିଆ ସାହିତ୍ୟର ବହୁ ଅନାଲୋଚିତ ଦିଗ ଉନ୍ମୋଚିତ ହୋଇଛି । ଏଗୁଡ଼ିକ ଯୋଗୁଁ ବହୁ ସାହିତ୍ୟକାର ଓଡ଼ିଆ ସାହିତ୍ୟରେ ପ୍ରସ୍ଥାପିତ ଅଥବା ପୁନଃସ୍ଥାପିତ ହୋଇପାରିଛନ୍ତି । ଓଡ଼ିଆ ସାହିତ୍ୟର ଇତିହାସ ନୂଆ ରୁଚି ଓ ନୂଆ ଦୃଷ୍ଟି ନେଇ ଲେଖିବାପାଇଁ ସମ୍ଭାବନାର ଅନନ୍ତ ଦ୍ୱାର ଉନ୍ମୁକ୍ତ ହୋଇଛି ।

**ରାମଚନ୍ଦ୍ର ଗ୍ରନ୍ଥାବଳୀ**ର ମୁଖବନ୍ଧ ସମୂହ କେବଳ ଲେଖକଙ୍କ ଜୀବନୀ ଓ କୃତିର ପରିଚୟ ଅଥବା ଓଡ଼ିଆ ସାହିତ୍ୟରେ ତାଙ୍କ ବୈଶିଷ୍ଟ୍ୟର ପ୍ରଖ୍ୟାପକ ମାତ୍ର ନୁହେଁ । ଏହା ସାହିତ୍ୟରେ ଶିଶୁସାହିତ୍ୟର ବୈଶିଷ୍ଟ୍ୟ ଓ ପାଠ୍ୟପୁସ୍ତକ ରଚନାର ଯଥାର୍ଥ ଶୈଳୀ ନେଇ ମୁଖର । **ଜଗନ୍ନାଥ ନାରାୟଣ ଦେବ ଗ୍ରନ୍ଥାବଳୀ** ଓଡ଼ିଆ ରାମସାହିତ୍ୟ ପ୍ରତି ପ୍ରକୃଷ୍ଟ ଦାନ ପାଇଁ ବିଶେଷ ପରିଚିତ ଦକ୍ଷିଣ ଓଡ଼ିଶାର କୃଷ୍ଣସାହିତ୍ୟରେ ମହତ୍ତ୍ୱର ଉଦ୍‌ଘୋଷକ । ଫକୀରମୋହନଙ୍କ **ଜୀବନଚରିତ**ର ପୁସ୍ତକଟିଏ ପାଇବାପାଇଁ ଆଚାର୍ଯ୍ୟ ମହାଶୟଙ୍କ ପ୍ରଯତ୍ନ ଓ ଦୁଃସାହସ ରବିନହୁଡ୍ କୋଟୀର । ଜୀବନଚରିତ ଓ ରାମାୟଣର ସମ୍ପାଦକୀୟ ମୁଖବନ୍ଧରେ ଫକୀରମୋହନଙ୍କୁ ନବୀନ ଦୃଷ୍ଟି ନେଇ ଦେଖିବାର ପ୍ରୟାସ ରହିଛି; ଓଡ଼ିଆ ସାହିତ୍ୟରେ ତାଙ୍କର ନବମୂଲ୍ୟାୟନ କରାଯାଇଛି । **ମୁକ୍ତିଗୀତିକା**ରେ କୌଣସି ମୁଖବନ୍ଧ ନାହିଁ; କିନ୍ତୁ

ଗୀତଗୁଡ଼ିକର ନିର୍ବାଚନରୁ ହିଁ ଦୃଷ୍ଟିଭଙ୍ଗୀ ବାରିହୋଇ ପଡୁଛି । କେବଳ ଗ୍ରନ୍ଥର ଆଭ୍ୟନ୍ତରୀଣ ପ୍ରମାଣରୁ ଚିତ୍ରଲେଖାକୁ ଉପେନ୍ଦ୍ରଙ୍କ ଆଦି ରଚନା ରୂପେ ପ୍ରମାଣ କରିବାର ବୈଜ୍ଞାନିକ ପ୍ରୟାସ ଏହାର ମୁଖବନ୍ଧରେ କରାଯାଇଛି । ନବକଳିକାର ଉଭୟ ଭାଗରେ ସମ୍ପାଦକୀୟ ଜଗତରେ ଏକ ନବୀନ ଉଦ୍ୟମର ଅୟମାରମ୍ଭ କରିବାକୁ ଆଚାର୍ଯ୍ୟ ସଚେଷ୍ଟ ହୋଇଛନ୍ତି । ପ୍ରତି ଭାଗରେ ନଅ ନଅଟି ଓଡ଼ିଆ କବିତା ପ୍ରାରୂପର ପରିଚୟ ପ୍ରଦାନ ସଙ୍ଗକୁ ଉଦାହରଣ ଦିଆଯାଇଛି । **ପଦ୍ମନାଭ ନାରାୟଣ ଦେବ ଗ୍ରନ୍ଥାବଳୀ**ର ମୁଖବନ୍ଧରେ କେବଳ ଆଲୋଚ୍ୟ ସ୍ରଷ୍ଟାଙ୍କ ବୈଶିଷ୍ଟ୍ୟ ଉଲ୍ଲେଖ କରାଯାଇ ନାହିଁ, ଅଧିକନ୍ତୁ ତତ୍କାଳୀନ ଓଡ଼ିଶାର ସାହିତ୍ୟିକ ଓ ଐତିହାସିକ ପରିମଣ୍ଡଳରେ ତାଙ୍କର ସାମଗ୍ରିକ ମୂଲ୍ୟାୟନ କରାଯାଇଛି । **ଗୋପାଳଚନ୍ଦ୍ର ପ୍ରହରାଜ: ବ୍ୟକ୍ତି ଓ ବ୍ୟକ୍ତିତ୍ୱ** ଗୋପାଳଚନ୍ଦ୍ରଙ୍କ ଜୀବନର ଅନେକ ଅନାଲୋଚିତ ଦିଗ ଉନ୍ମୋଚନ କରିବାରେ ସଫଳ ହୋଇଛି ।

ଉଲ୍ଲିଖିତ ଅବଶିଷ୍ଟ କୃତି ମଧ୍ୟଯୁଗୀୟ ରଚନାର ସମ୍ପାଦନା । ଏସବୁରେ ପୂର୍ବାଲୋଚିତ ସମ୍ପାଦକୀୟ ରୀତି ଅନୁସୃତ ହୋଇ ପାଠକ ନିକଟରେ ମୌଳିକ ଗ୍ରନ୍ଥକୁ ପହଞ୍ଚାଇବାର ଯଥାସାଧ୍ୟ ଉଦ୍ୟମ କରାଯାଇଛି । ଏ ମଧ୍ୟରୁ ପ୍ରତ୍ୟେକ ସ୍ୱୀୟ ବୈଶିଷ୍ଟ୍ୟରେ ଅନନ୍ୟ । **ଉଷା ଅଭିଳାଷ, ରେଖା ଓ ରଙ୍ଗରେ ଚଉତିଶା** ଓଡ଼ିଶାରୁ ପ୍ରକାଶିତ ଏ ଧରଣର ପ୍ରଥମ କୃତି । ପ୍ରଥମଟିର ମୁଖବନ୍ଧରେ କୌଣସି ବାହ୍ୟ ପ୍ରମାଣ ନୁହେଁ, ଗ୍ରନ୍ଥରେ ଉପଲବ୍ଧ ପ୍ରମାଣ ଓ ଶୈଳୀଦୃଷ୍ଟିରୁ ଶିଶୁ ଶଙ୍କର ଦାସଙ୍କୁ ଓଡ଼ିଆ ସାହିତ୍ୟରେ ପୁନଃଅବସ୍ଥାପିତ କରାଯାଇଛି । **ରେଖା ଓ ରଙ୍ଗରେ ଚଉତିଶା**ର ମୁଖବନ୍ଧ ଚଉତିଶା ସାହିତ୍ୟର ବିଶ୍ୱକୋଷ । **ଅନ୍ତଃପୁରର ଅଭିଲେଖ**ରେ ସ୍ଥାନିତ ତିନୋଟି କାବ୍ୟ ଭାରତୀୟ ସାହିତ୍ୟରେ ନିଜ ନିଜ ଦୃଷ୍ଟିରୁ ଅନନ୍ୟ; ଶୈଳ୍ପିକ ରୂପାୟନ ଦୃଷ୍ଟିରୁ ଓଡ଼ିଆ ସାହିତ୍ୟରେ ଗୋଟିଏ ଗୋଟିଏ ବ୍ୟତିକ୍ରମ । **ଶଶିସେଣା**ର ଆଲୋଚନାରେ ସାହିତ୍ୟ ଚର୍ଚ୍ଚା ଓ ତାର ଐତିହାସିକ, ସାଂସ୍କୃତିକ ପୀଠିକାର ଯଥାର୍ଥ ସମ୍ବନ୍ଧ ନିରୂପଣ କରାଯାଇଛି । **ଶ୍ରୀବିଷ୍ଣୁ ପୁରାଣ** ଓ **ଶ୍ରୀରାମ ରସାୟନ**ର ମୁଖବନ୍ଧରେ ଓଡ଼ିଆ ପୁରାଣ ସାହିତ୍ୟର ନାନା ଦିଗନ୍ତ ଉନ୍ମୋଚିତ ହୋଇଛି ।

ଅନୁବାଦ କୃତିଗୁଡ଼ିକରେ ପରିସ୍ଫୁଟ ଆଚାର୍ଯ୍ୟ ପ୍ରତିଭାର ବିବିଧ ଆୟାମ ସାମ୍ପ୍ରତିକ ଆଲୋଚନାର ବହିର୍ଭୂତ । କିନ୍ତୁ, **କଥାସରିତ ସାଗର**ର ମୁଖବନ୍ଧ ଏଠାରେ ବିଶେଷ ପ୍ରାସଙ୍ଗିକ । ଏ ଶୃଙ୍ଖଳାର ପାଞ୍ଚଟି ମୁଖବନ୍ଧ ପ୍ରତ୍ୟେକେ ନିଜ ନିଜ ଦୃଷ୍ଟିରୁ ଅନନ୍ୟ । ଏସବୁରେ କେବଳ **କଥାସରିତସାଗର**ର ବିଷୟବସ୍ତୁ ବା ବୈଶିଷ୍ଟ୍ୟ ଆଲୋଚନା କରାଯାଇ ନାହି । ମୁଖବନ୍ଧ ସମୂହ କ୍ଷୁଦ୍ର ଓ ବୃହତ୍ ପରମ୍ପରାର ବୈଶ୍ୱକୋଷିକ ପରିକ୍ରମା । ପ୍ରାକୃତ ପରମ୍ପରାର ଗୁଣାଢ୍ୟଙ୍କ ଠାରୁ ଆରମ୍ଭ କରି ଓଡ଼ିଆ ମନୋଜ ଦାସ ଓ ପାଶ୍ଚାତ୍ୟ ମୋଟିଫ୍ ତତ୍ତ୍ୱ ପର୍ଯ୍ୟନ୍ତ ବହୁ କଥା ଏହାର ପରିସରଭୁକ୍ତ । ସାମ୍ପ୍ରତିକ ସାଂସ୍କୃତିକ ଓ ରାଜନୀତିକ ସ୍ଥିତି ଦୃଷ୍ଟିରୁ କଥାର ମହତ୍ତ୍ୱ ଓ ପ୍ରାସଙ୍ଗିକତା ଏଥିରେ ପ୍ରକୀର୍ତିତ । ଏ ମୁଖବନ୍ଧଗୁଡ଼ିକର ରଚନାଶୈଳୀ ଆଚାର୍ଯ୍ୟ ପ୍ରତିଭାର ଭିନ୍ନ ଏକ ଦିଗର ଦ୍ୟୋତକ ।

କେବଳ ସ୍ୱୀୟ ଗ୍ରନ୍ଥଗୁଡ଼ିକରେ ନୁହେଁ, ଅପର ରଚିତ, ସମ୍ପାଦିତ ବା ଅନୂଦିତ

କୃତି ସମୂହରେ ଆଚାର୍ଯ୍ୟ ବହୁ ମୁଖବନ୍ଧ ସଂଯୋଗ କରିଚନ୍ତି । ଏଗୁଡ଼ିକର ସୀମିତ ପରିସରରେ ପ୍ରାଚ୍ୟ କୁନ୍ତକ, ରାମାନୁଜଙ୍କଠୁ ଆରମ୍ଭ କରି ପାଶ୍ଚାତ୍ୟ ମୁକାରୋବସ୍କି, ଭାଲେରି, ବ୍ଲୁଖ୍ଙ୍କ ପର୍ଯ୍ୟନ୍ତ ବହୁ ଚିନ୍ତାନାୟକ ଆଲୋଚିତ ହେବା କେବଳ ସମାଲୋଚକଙ୍କ ଜ୍ଞାନବ୍ୟାପ୍ତିର ପରିଚୟ ନୁହେ, ଅଧିକନ୍ତୁ ଓଡ଼ିଆ ସାହିତ୍ୟ ଆଲୋଚନାରେ ନବ ଦିଗନ୍ତର ପରିଚୟ ।[୨]

ଚାରି

ସମାଲୋଚକ ଜୀବନର ପ୍ରାରମ୍ଭରୁ ଅଦ୍ୟାବଧି ରଚିତ କୃତିସମୂହର ପର୍ଯ୍ୟାଲୋଚନା କଲେ ଆଚାର୍ଯ୍ୟ ପ୍ରତିଭାର ଯେଉଁ ବୈଶିଷ୍ଟ୍ୟ ସର୍ବାଗ୍ରେ ଧରାପଡ଼େ, ତାହା ହେଉଛି ରଚନାଶୈଳୀ ଓ ଦୃଷ୍ଟିଭଙ୍ଗୀର ସଙ୍ଗତି । ଏ ସଙ୍ଗତି କିନ୍ତୁ ବଦ୍ଧ ପଲ୍ୱଳର ନୁହେଁ, ଚିର ପ୍ରବହମାନ ସ୍ରୋତସ୍ୱତୀର । ଧାରାବାହିକତା ସହ ନିତ୍ୟ ନବତ୍ୱର ଏ ସଙ୍ଗମ ଯଥାର୍ଥରେ ଅଭିନନ୍ଦନୀୟ । ଆଚାର୍ଯ୍ୟ ମହାଶୟଙ୍କ ରଚନାଶୈଳୀ ଓ ଦୃଷ୍ଟିଭଙ୍ଗୀ ପ୍ରଥମରୁ ହିଁ ଏକ ପରିପକ୍ୱତା ଲାଭକରିଛି । ଖ୍ରୀ. ୧୯୬୮ରେ ପ୍ରକାଶିତ *ସାହିତ୍ୟ ଓ ସାହିତ୍ୟିକ*ରେ ସଙ୍କଳିତ ଯେକୌଣସି ପ୍ରବନ୍ଧ ସହ ସଦ୍ୟ ପ୍ରକାଶିତ ଏକ ପ୍ରବନ୍ଧର ତୁଳନା କଲେ ଶବ୍ଦପ୍ରୟୋଗ, ବାକ୍ୟଗଠନ, ବିଷୟ ସଜ୍ଜୀକରଣ ଠାରୁ ଆରମ୍ଭକରି ସାହିତ୍ୟ ସମ୍ପର୍କିତ ଦୃଷ୍ଟିଭଙ୍ଗୀରେ ବିଶେଷ ପାର୍ଥକ୍ୟ ଜଣାପଡ଼େ ନାହିଁ । ଏ ଦୃଷ୍ଟିରୁ ଖ୍ରୀ. ୧୯୭୨ରେ ପ୍ରକାଶିତ *ସ୍ରଷ୍ଟା ଓ ସୃଷ୍ଟି*ରେ ସ୍ଥାନିତ **ଚତୁରବିନୋଦ** ସମ୍ପର୍କିତ ଆଲୋଚନା ଓ ପ୍ରାୟ ତିନି ଦଶନ୍ଧି ପରେ ରଚିତ *କଥା ସରିତ ସାଗର*ରେ ମୁଖବନ୍ଧ ମଧ୍ୟରେ ମୌଳିକ ପାର୍ଥକ୍ୟ ଦୁର୍ନିରୀକ୍ଷ । ଏହା ରଚନାଶୈଳୀ ଓ ଦୃଷ୍ଟିଭଙ୍ଗୀରେ ସଙ୍ଗତିର ପ୍ରମାଣ । କିନ୍ତୁ ଦୀର୍ଘ ବର୍ଷର ବ୍ୟବଧାନରେ ଜ୍ଞାନରାଜ୍ୟରେ ଯେଭଳି ତଥ୍ୟ ଓ ପ୍ରମାଣ ପରିବର୍ତ୍ତିତ ହୁଏ, ତାର ଗ୍ରହଣଶୀଳତା ଦୃଷ୍ଟିରୁ ଆଲୋଚ୍ୟ ସମାଲୋଚକ ଖୁବ୍ ଉଦାର । ହିରଣ୍ମୟ ପାତ୍ରରେ ପିହିତ ଅନନ୍ତଆୟାମୀ ସତ୍ୟକୁ ଗ୍ରହଣ କରିବାରେ ତାଙ୍କ ପରି ସେ । ଉଦାହରଣ ସହ ଆଲୋଚନା କଲେ ଆଶୟଟି ଅଧିକ ସ୍ପଷ୍ଟ ହେବ । ଆଚାର୍ଯ୍ୟ ମହାଶୟ ଉପେନ୍ଦ୍ର ଭଞ୍ଜଙ୍କୁ ନେଇ ବିଭିନ୍ନ ସମୟରେ ଭିନ୍ନ ଭିନ୍ନ ପ୍ରବନ୍ଧ ଲେଖିଚନ୍ତି । ସମସ୍ତ ପ୍ରବନ୍ଧର ତଥ୍ୟ କବିଙ୍କ କୃତିର ଆଭ୍ୟନ୍ତରୀଣ ପ୍ରମାଣ ଉପରେ ପ୍ରତିଷ୍ଠିତ । ନୂତନ ତଥ୍ୟ ଅଭାବରୁ ଉପେନ୍ଦ୍ରଙ୍କ ସମ୍ବନ୍ଧରେ ତାଙ୍କ ଦୃଷ୍ଟିଭଙ୍ଗୀରେ ଉଲ୍ଲେଖନୀୟ ପରିବର୍ତନ ଆସି ନାହି । ଏପରିକି ପ୍ରାୟ ଚାରି ଦଶନ୍ଧିର ବ୍ୟବଧାନରେ ରଚିତ ଉପେନ୍ଦ୍ରଙ୍କ ସମ୍ବନ୍ଧିତ ଦୁଇଟି ଆଲୋଚନାରେ ସେ ଗୋପବନ୍ଧୁଙ୍କ ସେଇ ସମାନ କବିତା ପଙ୍‌କ୍ତି ହିଁ ଉଦ୍ଧାର କରିଚନ୍ତି ।[୩] କିନ୍ତୁ, ରସ ପ୍ରସଙ୍ଗରେ ନୂତନ ତଥ୍ୟର ଅଭ୍ୟୁଦୟ ଫଳରେ ବାଇଶି ବର୍ଷ ବ୍ୟବଧାନରେ ପ୍ରକାଶିତ *ଓଡ଼ିଆ କାବ୍ୟ କୌଶଳର* ଦୁଇଟି ସଂସ୍କରଣରେ ସେ ଭିନ୍ନ ଭିନ୍ନ ନିଷ୍କର୍ଷରେ ପହଞ୍ଚିଚନ୍ତି । ଏହାର କାରଣ ସାହିତ୍ୟର ମୌଳିକ ତତ୍ତ୍ୱ ସମ୍ବନ୍ଧରେ ଆଲୋଚ୍ୟ ସମାଲୋଚକଙ୍କ ସୂକ୍ଷ୍ମ ଅବବୋଧ । ସେ ପ୍ରଥମରୁ ହିଁ ଦୃଢ଼ ନିଶ୍ଚିତ ଯେ, ଅପର ଅନେକ ସମାଲୋଚକଙ୍କ ଭଳି ସିଦ୍ଧାନ୍ତରୁ□ତଥ୍ୟ ଆଡ଼କୁ ଗତି କରିବେ ନାହି । ଗବେଷଣାପାଇଁ ବାଟ ଚାଲୁଚାଲୁ ଯେଉଁ ତଥ୍ୟ ସହ ଭେଟ ହେବ ତଦନୁସାରୀ ସିଦ୍ଧାନ୍ତ ଗଢ଼ାଯିବ । ଏହା ଫଳରେ ସାହିତ୍ୟ ସାଧନା ତାଙ୍କପାଇଁ ଆଉ ଏକ ଅବସର ବିନୋଦନ ନ ହୋଇ ଜୀବନ ବ୍ୟାପୀ

ତପୋସାଧନା ଓ ଜାତୀୟ କର୍ତ୍ତବ୍ୟରେ ପରିଣତ ହୋଇଛି;[୪] ସମ୍ପାଦିତ ପୋଥି, ପତ୍ରିକା ଓ ଗ୍ରନ୍ଥଗୁଡ଼ିକରେ ମୂଳ ଭାଷା ଓ ବନାନ ଅକ୍ଷୁଣ୍ଣ ରହିଛି; ଅନେକ ସାହିତ୍ୟିକ ଓ ସାହିତ୍ୟ କୃତି ସମ୍ବନ୍ଧରେ ସ୍ୱୟଂସମ୍ପୂର୍ଣ୍ଣ ଅଥଚ ମନଗଢ଼ା ମନ୍ତବ୍ୟ ପରିବେଷଣ ନ କରି ଅନନ୍ତ ଭବିଷ୍ୟତକୁ ପ୍ରତୀକ୍ଷା କରିବା, ଏକ ସ୍ୱାଭାବିକ ଧାରାରେ ପରିଣତ ହୋଇଛି; ଏପରିକି ବହୁ ପରିକଳ୍ପନା ଓ ଲିଖନ ଯୋଜନା ଦଶନ୍ଧି ଦଶନ୍ଧି ଧରି ଅପୂର୍ଣ୍ଣ ରହିଚି ।

ଅନେକ ସମାଲୋଚକ ନିର୍ଦ୍ଦିଷ୍ଟ ସାହିତ୍ୟିକ ବା ସାହିତ୍ୟ କୃତିକୁ ଏକ ସ୍ୱୟଂସମ୍ପୂର୍ଣ୍ଣ ସୃଷ୍ଟି ରୂପେ ଦେଖନ୍ତି । ଫଳରେ ତାଙ୍କ ନିଜ କୃତି ଅସମ୍ପୂର୍ଣ୍ଣ ଓ ସେଥିରେ ପ୍ରତିଫଳିତ ଦୃଷ୍ଟି ଖଣ୍ଡିତ ହୋଇଯାଏ । କିନ୍ତୁ, ସମାଲୋଚକ ଜୀବନର ପ୍ରାରମ୍ଭରୁ ଆଚାର୍ଯ୍ୟଙ୍କ ଦୃଷ୍ଟିରେ ଏକ ସମଗ୍ରତା ପରିଲକ୍ଷିତ ହୁଏ । ସାହିତ୍ୟିକ, ସାମାଜିକ, ସାଂସ୍କୃତିକ ଓ ଐତିହାସିକ ପୃଷ୍ଠଭୂମି ବିନା ସେ ସାହିତ୍ୟର ସମଗ୍ର ସ୍ୱରୂପ ସନ୍ଦର୍ଶନ କରିପାରନ୍ତି ନାହିଁ । ସେ ପ୍ରଖ୍ୟାତ କବି କାଳିଦାସ କି ଉପେନ୍ଦ୍ର ଭଞ୍ଜ ହୁଅନ୍ତୁ, ଅଥବା ଅନାଲୋଚିତ ଦୀନବନ୍ଧୁ ଓ ରଘୁମଣି, ସେମାନଙ୍କ ଆକଳନ ସାମଗ୍ରିକ ହେବ ହିଁ ହେବ । ପୃଷ୍ଠଭୂମି ଓ ପରିପାର୍ଶ୍ୱର ଆଲୋଚନା ବିନା ତାଙ୍କ ଲେଖନୀ ଆଗକୁ ଘୁଞ୍ଚି ପାରିବା ଅସମ୍ଭବ ।[୫]

ଆଚାର୍ଯ୍ୟଙ୍କ ରଚିତ ଶତାଧିକ ପ୍ରବନ୍ଧର ଅନୁଶୀଳନରୁ ତାଙ୍କ ଦୃଷ୍ଟିର ତୃତୀୟ ବୈଶିଷ୍ଟ୍ୟ ସ୍ପଷ୍ଟ ହୁଏ । ନୂତନ ଚିନ୍ତା ନ ଆସିଲେ ସେ ଲେଖନ୍ତି ନାହି । ତାଙ୍କ ରଚନାରେ ତେଣୁ ଚର୍ବିତଚର୍ବଣ ନାହିଁ । ସେ ସାହିତ୍ୟ ଜଗତରେ ମଧ୍ୟକାଳୀନ ଓଡ଼ିଆ ସାହିତ୍ୟର ମାନିତ ବ୍ୟାଖ୍ୟାକାର ଓ ମୌଳିକ ଚିନ୍ତକ ରୂପେ ଅଧିକ ମାତ୍ରାରେ ସମ୍ମାନିତ ଓ ସୁପରିଚିତ । କିନ୍ତୁ ଯେ କୌଣସି ବିଷୟରେ ଲେଖନୀ ଚାଳନା କରନ୍ତୁ ନା କାହିଁକି, ତାହାର ମୂଳରେ ମୌଳିକ ଚିନ୍ତା ଓ ଭିନ୍ନଦୃଷ୍ଟିଟିଏ ଅବଶ୍ୟ ରହିଥିବ । ଏପରିକି ଆଦ୍ୟ ଯୌବନରେ ଲିଖିତ *ଓଡ଼ିଆ କ୍ଷୁଦ୍ରଗଳ୍ପ-ସାହିତ୍ୟର ଗତି ଓ ପ୍ରକୃତି* ଭଳି ପ୍ରବନ୍ଧ ଏହି ବୈଶିଷ୍ଟ୍ୟର ବାହକ । ଏଥିରେ ଫକୀରମୋହନ ଓ କାଳିନ୍ଦୀଚରଣଙ୍କ ସମ୍ବନ୍ଧରେ ପ୍ରକାଶିତ ବକ୍ତବ୍ୟ ତତ୍କାଳୀନ ପରିପ୍ରେକ୍ଷୀରେ ସମ୍ପୂର୍ଣ୍ଣ ଭାବେ ତାଙ୍କର ନିଜସ୍ୱ ।[୬] ଏହି କାରଣରୁ ପ୍ରାଥମିକ ଉତ୍ସରେ ନ ପହଞ୍ଚିବା ପର୍ଯ୍ୟନ୍ତ ତାଙ୍କ ଲେଖନୀ ଅଧିକ ଅଗ୍ରସର ହେବା ଅସମ୍ଭବ ହୋଇପଡ଼େ ଏବଂ ପ୍ରକାଶିତ ଗ୍ରନ୍ଥ ସଂଖ୍ୟା ଦୃଷ୍ଟିରୁ ସୀମିତ ହୋଇଯାଏ ।

ଆଚାର୍ଯ୍ୟ ମହାଶୟଙ୍କ ସମାଲୋଚନା ଦୃଷ୍ଟିର ଚତୁର୍ଥ ବୈଶିଷ୍ଟ୍ୟ ହେଉଛି ଔପନିବେଶିକ ଚିନ୍ତାଧାରା ବିରୋଧରେ ମୀମାଂସାପୂର୍ଣ୍ଣ ଯୁଦ୍ଧ ଘୋଷଣା । ଆତ୍ମବିଶ୍ୱାସ ଅଭାବରୁ ଅଥବା ଭିତ୍ତିହୀନ ପାଣ୍ଡିତ୍ୟ ପ୍ରଦର୍ଶନ ପ୍ରବଣତା କାରଣରୁ ଅନେକ ଓଡ଼ିଆ ପ୍ରବନ୍ଧ ରଚୟିତା ହିନ୍ଦୀ, ବଙ୍ଗଳା, ଇଂଲିଶ୍; ଏପରିକି ନିଜେ ଲେଖିପଢ଼ି ଜାଣି ନ ଥିବା ଅନେକ ଭାଷାରୁ ବିରାଟ ବିରାଟ ଉଦ୍ଧୃତି ଓ ପାଦଟୀକା ସବୁ ଦେଇଥାନ୍ତି । ଆଚାର୍ଯ୍ୟଙ୍କ ରଚିତ କୌଣସି କୃତିରେ, ଏପରିକି ଆଦ୍ୟ ଜୀବନର ପ୍ରବନ୍ଧଗୁଡ଼ିକରେ ମଧ୍ୟ ଅନାବଶ୍ୟକ ଉଦ୍ଧୃତି କି ପାଦଟୀକାର ବହୁଳ ଆଡ଼ମ୍ବର ଆଦୌ ପରିଲକ୍ଷିତ ହୁଏ ନାହିଁ । ସେ ଅନ୍ୟ କୌଣସି ଭାଷା ପ୍ରତି ବିଦ୍ୱେଷଶୀଳ ନୁହଁନ୍ତି । ଯଥାସ୍ଥାନରେ ଅନ୍ୟକୁ ଗ୍ରହଣ କରିବାର ପ୍ରବଣତା ତାଙ୍କର

ଅଛି । କିନ୍ତୁ, ତାଙ୍କର ଆତ୍ମବିଶ୍ୱାସ ଓ ଅଖଣ୍ଡ ସାଧନା ଅନ୍ୟର ପ୍ରାଦୁର୍ଭାବ କି ଅଯଥା ଆଧିପତ୍ୟକୁ ସ୍ୱୀକାର କରେ ନାହିଁ । ତାଙ୍କ ଦୃଷ୍ଟିରେ ସାହିତ୍ୟ ମାତ୍ରେ ବିଶ୍ୱ ସାହିତ୍ୟ; ସମଗ୍ର ଜଗତର କୋଠସମ୍ପଦ । ଅତଏବ ଚିନ୍ତାଧାରା ଓ ଦୃଷ୍ଟିଭଙ୍ଗୀରେ ସାମ୍ୟ ଏକ ସ୍ୱାଭାବିକ ପ୍ରତ୍ୟାଶା । ତାହା ଆଗପଛ ହୋଇ ସର୍ବତ୍ର ବିଦ୍ୟମାନ । ସତ୍ୟ କେଉଁଠି, କେତେବେଳେ, କିପରି ପ୍ରକାଶିତ ହେବ, ତାହା ତ ଅପ୍ରତ୍ୟାଶିତ । କାହା ଲେଖନୀରେ ଏହା ଆଗ ରୂପ ପାଇଯିବାରେ କି ବାହାଦୁରୀ ଅଛି ! ଆମ ଚିନ୍ତାଧାରାର ମୌଳିକତା, ପରମ୍ପରା ଓ ଐତିହ୍ୟକୁ ଭିତ୍ତି କରି ହିଁ ଗଢ଼ିଉଠିବା ଆବଶ୍ୟକ । ଏହା ତାଙ୍କ ଚିନ୍ତାଧାରାରେ ସ୍ୱଚ୍ଛତାର କାରଣ ହୋଇଛି ।[୭]

ସୁଦର୍ଶନ ଆଚାର୍ଯ୍ୟ ଓଡ଼ିଶାର କୃତବିଦ୍ୟ ସମାଲୋଚକ, ବହୁମାନିତ ସାହିତ୍ୟକାର, ଅନୁବାଦକ, ସମ୍ପାଦକ, ଗବେଷକ ଓ ମାର୍ଗଦର୍ଶକ । ସାହିତ୍ୟିକ ଜୀବନର ଉନ୍ମେଷ କାଳରୁ ହିଁ ପ୍ରାଚୀନ ଓ ମଧ୍ୟକାଳୀନ ସାହିତ୍ୟ ସ୍ରଷ୍ଟାମାନଙ୍କ ପ୍ରତି ତାଙ୍କର ଶ୍ରଦ୍ଧା ଓ ସମ୍ମାନ ସର୍ବବିଦିତ । କିନ୍ତୁ, ସେ ନିଜକୁ ସେତିକିରେ ସୀମିତ କରିଦେଇନାହାନ୍ତି । ତାଙ୍କ ଦୃଷ୍ଟି ସାହିତ୍ୟର ବ୍ୟାପକତା ଓ ବିଶ୍ୱରୂପକୁ ପରଖିଛି । ସ୍ୱୀୟ ଆଦର୍ଶ ପଣ୍ଡିତ ଗୋପୀନାଥ ନନ୍ଦ ଓ ଗୁରୁ ନଟବର ସାମନ୍ତରାୟଙ୍କ ଯଥାର୍ଥ ଉତ୍ତରସୂରି ଭାବେ ଯେଉଁ ବିଷୟରେ ସେ ହସ୍ତକ୍ଷେପ କରିଛନ୍ତି, ତାହାକୁ ସମ୍ଭ୍ରାନ୍ତ, ମୌଳିକ ଏବଂ ଗୁରୁଗମ୍ଭୀର କରିପାରନ୍ତି । ସ୍ୱୀୟ ନିର୍ବାଚିତ ମାର୍ଗରେ ଚାଲୁଚାଲୁ ଅନ୍ୟ ଅନେକଙ୍କପାଇଁ ଏକାଧିକ ମାର୍ଗ ସେ ପ୍ରଶସ୍ତ କରିଦେଇଛନ୍ତି । ଏହା ହିଁ ତାଙ୍କ ସମାଲୋଚକ ଜୀବନର ସାର୍ଥକତା ଏବଂ ଭବିଷ୍ୟତ ପୀଢ଼ିର ଜ୍ୟୋତିଷ୍କମାନଙ୍କ ପାଇଁ ଦାନ ଓ ଆହ୍ୱାନ ।

**ପ୍ରାନ୍ତଟୀକା**

[୧।] ଏକତ୍ରିତ କରି, ହସ୍ତାନ୍ତରିତ କରି, ରୂପାୟିତ କରି, ନିୟନ୍ତ୍ରିତ କରି, ସାଧିତ କରେ, ଜର୍ଜରିତ ହୋଇ, ଉପସ୍ଥାପିତ କଲେ, ସଂଘଟିତ କରି, ସଂଯୋଜନା କରନ୍ତି, ଅବତାରଣା, ପୁନରୁପସ୍ଥାପନା, ସବିଶେଷ, ସମସାମୟିକ, ରାଜନୈତିକ, ଉତ୍କଣ୍ଠିତ ହୃଦୟ, ସୃଜନୀ ଶକ୍ତି, ନିୟନ୍ତ୍ରଣାଧୀନ, ଏତାଦୃଶ, ଉତ୍କର୍ଷତା, ସକ୍ଷମ, ଅନେକ କିଛି, ସର୍ବଶ୍ରେଷ୍ଠ, ନିଜର ସ୍ୱକୀୟ, ଅତିପ୍ରିୟତମ, ନିଗଡ଼ବନ୍ଧନ, ଉପଜୀବ୍ୟ ବିଷୟବସ୍ତୁ, ଅବ୍ୟବହିତ ପୂର୍ବରୁ, ଅବ୍ୟବହିତ ପରେ, ନିର୍ଦ୍ୱନ୍ଦ, ସଠିକ୍, ହୋଇଅଛି, ହେଇଅଛି, କରୁଅଛନ୍ତି ପ୍ରଭୃତି ପ୍ରୟୋଗ; ତଦ୍ଦେଶୀୟ, ଏତଦ୍ଦେଶୀୟ, ଗୁଣ୍ଡିଚୋତ୍ସବ, ପ୍ରତ୍ୟୁତ ଆଦି ତତ୍ସମ ଶବ୍ଦ ବ୍ୟବହାର; କିନ୍ତୁ ଏହା ବ୍ୟତୀତ ଭଳି ଶ୍ରୁତିକଟୁ ପ୍ରୟୋଗ; ଅଗ୍ରଜ ସମାଲୋଚକଙ୍କ ଅନୁସରଣରେ କବି ସାର୍ବଭୌମ ଅଭିବ୍ୟକ୍ତି ।

[୨।] (କ) ରଥ, କାଳୀଚରଣ- ଉପେନ୍ଦ୍ର-କାବ୍ୟ ସମ୍ଭାରରେ ବକ୍ରୋକ୍ତି ଚେତନା, ବ୍ରହ୍ମପୁର, ୧୯୯୭; (ଖ) ପାତ୍ର, ରାଜେନ୍ଦ୍ର ପ୍ରସାଦ(ସଂ.)- ଶ୍ରୀମଦ୍‌ଭଗବଦ୍ ଗୀତା, ବ୍ରହ୍ମପୁର, ୨୦୦୪ [୩।]
ଆଚାର୍ଯ୍ୟ, ସୁଦର୍ଶନ- (କ) ସାହିତ୍ୟ ଓ ସାହିତ୍ୟିକ, ବ୍ରହ୍ମପୁର, ୧୯୬୮, ପୃ.୫୨; (ଖ)

ଓଡ଼ିଶାର ଅସ୍ମିତା ସନ୍ଧାନ ଓ ଉପେନ୍ଦ୍ର ଭଞ୍ଜ କାବ୍ୟାଲୋଚନା, ବ୍ରହ୍ମପୁର, ୨୦୧୩, ପୃ. ୫ ।

[୪] ସଚରାଚର ଦେଖାଯାଏ, କିଛି ହେବା ଆଶାରେ ବହୁ ବ୍ୟକ୍ତି ସାହିତ୍ୟ ସାଧନା କରନ୍ତି । ପ୍ରାପ୍ତ୍ୟାଶା ଫଳବତୀ ହେଲେ ଏଥିରେ ପୂର୍ଣ୍ଣ ବିରାମ ଘଟେ । କିନ୍ତୁ, ଆଲୋଚ୍ୟ ସମାଲୋଚକଙ୍କ ଜୀବନଧାରା ଏହାଠାରୁ ସମ୍ପୂର୍ଣ୍ଣ ଭିନ୍ନ । ବୃତ୍ତିଗତ ଜୀବନର ସର୍ବୋଚ୍ଚ ସୋପାନରେ ଉପନୀତ ହେବା ପରେ ତାଙ୍କ ଆଲୋଚନାର ବ୍ୟାପ୍ତି ଓ ଗଭୀରତା ବୃଦ୍ଧି ପାଇଚି । ପ୍ରଫେସର ପଦ ପ୍ରାପ୍ତି, ବିଶେଷତଃ ଅବସର ଗ୍ରହଣ ପରେ ସେ ସର୍ବାନ୍ତଃକରଣରେ ସାହିତ୍ୟ ସାଧନାରେ ମଗ୍ନ ହୋଇଚନ୍ତି । ସମାଲୋଚକ ଜୀବନର ଆଦ୍ୟ, ମଧ୍ୟ ଓ ଅନ୍ତରେ ଏପରି ସୁସଙ୍ଗତି ବିରଳ ଲଭ୍ୟ ।

[୫] ତାଙ୍କର ଛୋଟ ବଡ଼ ପ୍ରତ୍ୟେକ ଆଲୋଚନାରେ ଏହା ସୁନିରୀକ୍ଷ । ଏପରିକି ଆଦ୍ୟ କାଳର ପ୍ରବନ୍ଧ ସତତିରିଶି ପୃଷ୍ଠାରେ ରଚିତ *ଚତୁର ବିନୋଦର ଗଳ୍ପ-ଗଠନ-କୌଶଳ*ରେ ଏହାର ପୃଷ୍ଠଭୂମି ଓ ପରିପାର୍ଶ୍ୱର ଆଲୋଚନାର ବ୍ୟାପ୍ତି ପ୍ରାୟ ନ ପୃଷ୍ଠା । ଆଚାର୍ଯ୍ୟ, ସୁଦର୍ଶନ- ସ୍ରଷ୍ଟା ଓ ସୃଷ୍ଟି, ବ୍ରହ୍ମପୁର, ୧୯୭୨, ପୃ.୯୦-୧୨୭ ଦ୍ରଷ୍ଟବ୍ୟ ।

[୬] ଆଚାର୍ଯ୍ୟ, ସୁଦର୍ଶନ- ସାହିତ୍ୟ ଓ ସାହିତ୍ୟିକ, ବ୍ରହ୍ମପୁର, ୧୯୬୮, ପୃ.୧୦୫-୧୦୭: ଓଡ଼ିଆ ସାହିତ୍ୟରେ କ୍ଷୁଦ୍ରଗଳ୍ପର ସ୍ରଷ୍ଟା ଭାବରେ ଫକୀରମୋହନ ହିଁ ବରଣୀୟ । .... କିନ୍ତୁ ରେବତୀ, ପେଟେଣ୍ଟ ମେଡ଼ିସିନ୍, ଗାରୁଡ଼ିମନ୍ତ୍ର, ମାଧ ମହାନ୍ତିଙ୍କ କନ୍ୟାସୁନା ପ୍ରଭୃତି ଅଳ୍ପ କେତୋଟି କ୍ଷୁଦ୍ରଗଳ୍ପ ବ୍ୟତୀତ ଅନ୍ୟଗୁଡ଼ିକ ଆଧୁନିକ ଗଳ୍ପ ପାଠକଙ୍କ ସନ୍ତୁଷ୍ଟି ସାଧନପାଇଁ ଅକ୍ଷମ । ଫକୀରମୋହନଙ୍କ ପ୍ରତିଭା ଔପନ୍ୟାସିକ ପ୍ରତିଭା । .... କ୍ଷୁଦ୍ରଗଳ୍ପର ଗଠନକୌଶଳ ଦୃଷ୍ଟିରୁ ବିଚାର କଲେ ଫକୀରମୋହନଙ୍କ ଅଧିକାଂଶ ଗଳ୍ପ ଅତି ଉତ୍କୃଷ୍ଟ ଧରଣର ବୋଲି ମନେହୁଏ ନାହିଁ; କିନ୍ତୁ ବିଷୟବସ୍ତୁ ଦୃଷ୍ଟିରୁ ଏଗୁଡ଼ିକ ପ୍ରକୃତରେ ତତ୍କାଳୀନ ସମାଜ ଓ ସାମାଜିକଙ୍କ ପ୍ରତି ଗୋଟିଏ ଗୋଟିଏ Pointing finger । .... କାଳିନ୍ଦୀ ବାବୁ କେବଳ ଗଳ୍ପର ବିଷୟବସ୍ତୁରେ ନୁହେ, ଆଙ୍ଗିକ ଓ ଆତ୍ମିକ ବୈଚିତ୍ର୍ୟ ସମ୍ପାଦନ କରିବାରେ ମଧ୍ୟ ସଫଳତା ଲାଭ କରିଛନ୍ତି ।

[୭] ଏହାର ପ୍ରମାଣ ଯତ୍ରତତ୍ର ଉପଲବ୍ଧ । ଏପରିକି ଉପର୍ଯ୍ୟୁକ୍ତ ଉଦ୍ଧୃତିଟି ମଧ୍ୟ ଏ ପ୍ରସଙ୍ଗରେ ବିଚାର୍ଯ୍ୟ । କଥାସରିତ ସାଗରର ମୁଖବନ୍ଧଗୁଡ଼ିକରେ ଏହା ଅଧିକ ସ୍ପଷ୍ଟ ।

**ପରିଶିଷ୍ଟ: ଆଚାର୍ଯ୍ୟ ପ୍ରତିଭା ପ୍ରଭା**

ଆଚାର୍ଯ୍ୟ ମହାଶୟଙ୍କ ରଚିତ ସମସ୍ତ କୃତି ଏବେ ଅନୁପଲବ୍ଧ । ଏପରିକି ସେ ନିଜେ ବହୁ ଚେଷ୍ଟା କରି ପୂର୍ବ ପ୍ରକାଶିତ ସମସ୍ତ ପ୍ରବନ୍ଧ, କବିତା, ଗଳ୍ପ, ସାହିତ୍ୟ ସଙ୍କଳନ ଆଦି ସଂଗ୍ରହ କରିବାକୁ ଅସମର୍ଥ । ଯେଉଁ କେତେ ପ୍ରକାଶିତ କୃତିର ଖଣ୍ଡିତ ଅଂଶ, ହସ୍ତଲିପି ଅଥବା ନକଲ ତାଙ୍କ ପାଖରେ ରହିଚି, ତା'ର ପ୍ରକାଶନ କାଳ, ପ୍ରକାଶିତ ଗ୍ରନ୍ଥ ଅଥବା ପତ୍ରିକାର ନାମ ସ୍ମରଣ କରିବା ତାଙ୍କ ପକ୍ଷରେ ଏକ ରକମ ଅସମ୍ଭବ । ନିମ୍ନ ପ୍ରଦତ୍ତ ତାଲିକାଟି ଏ ଦୃଷ୍ଟିରୁ ପ୍ରକୃତରେ ଅସମ୍ପୂର୍ଣ୍ଣ । ଆଚାର୍ଯ୍ୟଙ୍କ କୃତି ସମୂହର ସାମଗ୍ରିକ ପ୍ରକାଶନ ଦିଗରେ ସହାୟକ ହେବା ପାଇଁ ସହୃଦୟଙ୍କ ନିକଟରେ ଉପସ୍ଥାପକ ସାହାଯ୍ୟ ପ୍ରାର୍ଥୀ ।

**ସମାଲୋଚନା ଗ୍ରନ୍ଥ:**

୧. **ସାହିତ୍ୟ ଓ ସାହିତ୍ୟିକ,** ୧୯୬୮, ବ୍ରହ୍ମପୁର, ବିଜୟ ବୁକ୍ ଷ୍ଟୋର୍ ।

୨. **ସ୍ରଷ୍ଟା ଓ ସୃଷ୍ଟି,** ୧୯୬୮, ବ୍ରହ୍ମପୁର, ବିଜୟ ବୁକ୍ ଷ୍ଟୋର୍।

୩. **ଓଡ଼ିଆ କାବ୍ୟ କୌଶଳ,**୧୯୮୩, ପ୍ରଥମ ସଂସ୍କରଣ, ବିନୋଦିନୀ ଆଚାର୍ଯ୍ୟ, ବ୍ରହ୍ମପୁର;୨୦୦୭, ଦ୍ୱିତୀୟ ସଂସ୍କରଣ, କଟକ,ଫ୍ରେଣ୍ଡସ୍ ପବ୍ଲିଶର୍ସ ।

**ସମ୍ପାଦିତ କୃତି:**

୧. **ରାମଚନ୍ଦ୍ର ଗ୍ରନ୍ଥାବଳୀ** (୪ଖଣ୍ଡ),୧୯୯୦-୧୯୯୯, ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ।

୨. **ଜଗନ୍ନାଥ ନାରାୟଣ ଦେବ ରଚନାବଳୀ,** ୧୯୯୨, ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ।

୩. **ଫକୀର ମୋହନ କୃତ ରାମାୟଣ** (ବାଳକାଣ୍ଡ),୧୯୯୩, ବିନୋଦିନୀ ଆଚାର୍ଯ୍ୟ, ବ୍ରହ୍ମପୁର।

୪. **ଫକୀର ମୋହନ କୃତ ରାମାୟଣ** (ଅଯୋଧ୍ୟାକାଣ୍ଡ), ୨୦୦୦, ବିନୋଦିନୀ ଆଚାର୍ଯ୍ୟ, ବ୍ରହ୍ମପୁର।

୫. **ଫକୀରମୋହନଙ୍କ ଜୀବନ ଚରିତ,** ୧୯୯୩, ତାରାତାରିଣୀ ପୁସ୍ତକାଳୟ, ବ୍ରହ୍ମପୁର।

୬. **ଇନ୍ଦ୍ରଧନୁ,** ୧୯୯୧, ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ।

୭. **ନବକଳିକା ପ୍ରଥମ ଭାଗ,** ୧୯୯୫, ତାରାତାରିଣୀ ପୁସ୍ତକାଳୟ, ବ୍ରହ୍ମପୁର।

୮. **ନବକଳିକା ଦ୍ୱିତୀୟ ଭାଗ,** ୧୯୯୫, ତାରାତାରିଣୀ ପୁସ୍ତକାଳୟ, ବ୍ରହ୍ମପୁର।

୯. **ମୁକ୍ତିଗୀତିକା,** ୧୯୯୭, ନ୍ୟାସନାଲ୍ ବୁକ୍ ଟ୍ରଷ୍ଟ ଅଫ ଇଣ୍ଡିଆ।

୧୦. **ଉପେନ୍ଦ୍ର ଭଞ୍ଜଙ୍କ ଚିତ୍ରଲେଖା,** ୨୦୦୧, କଳିଙ୍ଗ ସାହିତ୍ୟ ସମାଜ, ବ୍ରହ୍ମପୁର।

୧୧. **ଊନବିଂଶ ଶତାବ୍ଦୀର ଦୁଇଟି ବିସ୍ମୃତ ପତ୍ରିକା: ଉତ୍କଳ ମଧୁପ ଓ ପ୍ରଦୀପ,** ୨୦୦୯, ପ୍ରଗତି ଉତ୍କଳ ସଂଘ, ରାଉରକେଲା।

୧୨. **ଉଷା ଅଭିଳାଷ** (ଗୌରାଙ୍ଗ ଦାଶଙ୍କ ସହ), ୨୦୧୦, ଓଡ଼ିଶା ରାଜ୍ୟ ସଂଗ୍ରହାଳୟ।

୧୩. **ଗୋପାଳ ଚନ୍ଦ୍ର ପ୍ରହରାଜ: ବ୍ୟକ୍ତି ଓ ବ୍ୟକ୍ତିତ୍ୱ,** ୨୦୧୦, ଫ୍ରେଣ୍ଡସ୍ ପବ୍ଲିଶର୍ସ, କଟକ।

୧୪. **ପଣ୍ଡିତ ଗୋପୀନାଥ ନନ୍ଦ ଗ୍ରନ୍ଥାବଳୀ : ପ୍ରଥମ ଭାଗ,** ୨୦୧୧, ପ୍ରାଚୀ ସାହିତ୍ୟ ପ୍ରତିଷ୍ଠାନ, କଟକ।

୧୫. **ପଦ୍ମନାଭ ନାରାୟଣ ଦେବ ଗ୍ରନ୍ଥାବଳୀ,** ୨୦୧୧, ଜଗନ୍ନାଥ ରଥ, କଟକ।

୧୬. **ଶ୍ରୀବିଷ୍ଣୁ ପୁରାଣ,** (ଗୌରାଙ୍ଗ ଚରଣ ଦାଶ ଓ ଭାଗ୍ୟଲିପି ମଲ୍ଲଙ୍କ ସହ), ୨୦୧୩, ଓଡ଼ିଶା ରାଜ୍ୟ ସଂଗ୍ରହାଳୟ।

୧୭. ରେଖା ଓ ରଙ୍ଗରେ ଚଉତିଶା (ଗୌରାଙ୍ଗ ଚରଣ ଦାଶ ଓ ଭାଗ୍ୟଲିପି ମଲ୍ଲଙ୍କ ସହ),୨୦୧୫, ଓଡ଼ିଶା ରାଜ୍ୟ ସଂଗ୍ରହାଳୟ।

୧୮. **ଅନ୍ତଃପୁରର ଅଭିଲେଖ: ମଧ୍ୟକାଳର ନାରୀପ୍ରତିଭା,** (ଗୌରାଙ୍ଗ ଚରଣ ଦାଶ ଓ ଭାଗ୍ୟଲିପି ମଲ୍ଲଙ୍କ ସହ), ୨୦୧୫, ଓଡ଼ିଶା ରାଜ୍ୟ ସଂଗ୍ରହାଳୟ।

୧୯. **ଶ୍ରୀରାମ ରସାୟନ**, ୨୦୧୫, ଶ୍ରୀରାମଜୀ ମଠ, ଭୀଷ୍ମଗିରି, ଗଞ୍ଜାମ।
୨୦. କଲ୍‌କୀପୁରାଣ (ପ୍ରକାଶୋନ୍ମୁଖୀ) ।
୨୧. ସମ୍ବାଦ ସାହିତ୍ୟ କୋଷ (ଅନ୍ୟମାନଙ୍କ ସହ), ପ୍ରକାଶୋନ୍ମୁଖୀ ।
୨୨. କୋଣାର୍କ (ଅନ୍ୟମାନଙ୍କ ସହ), ଓଡ଼ିଶା ସାହିତ୍ୟ ଏକାଡେମୀ, ଭୁବନେଶ୍ୱର ।
୨୩. History of Indian Literature (Medieval), Co-editor, Sahitya Akademi.

**(ଗ) ଅନୁବାଦ:**

୧. **ସୋମଦେବଙ୍କ କଥାସରିତସାଗର** (୫ ଖଣ୍ଡ), ୨୦୦୪-୨୦୦୭, ଫ୍ରେଣ୍ଡସ୍ ପବ୍ଲିଶର୍ସ, କଟକ।
୨. **ନିସର୍ଗ** (ମିର୍ଜୀ ଆଣ୍ଣା ରାଓ), ୨୦୦୨, ନ୍ୟାସନାଲ୍ ବୁକ୍ ଟ୍ରଷ୍ଟ ଅଫ ଇଣ୍ଡିଆ।
୩. **ତେଲୁଗୁ ସାହିତ୍ୟର ଇତିହାସ**(ଜି. ସୀତାପତି), ସାହିତ୍ୟ ଏତାଡେମୀ।
୪. **ଜୟଦେବ** ( ସୁନୀତି କୁମାର ଚାଟାର୍ଜୀ), ନ୍ୟାସନାଲ୍ ବୁକ୍ ଟ୍ରଷ୍ଟ ଇଣ୍ଡିଆ ।
୫. **ବେତାଳ ପଞ୍ଚବିଂଶତି**, ୨୦୦୬, ବିଦ୍ୟା ପ୍ରକାଶନ, କଟକ।
୬. **ଧୂର୍ତାଖ୍ୟାନ** (ହରିବନ୍ଧୁ ସୁରୀ) ପ୍ରକାଶୋନ୍ମୁଖୀ ।

**ପାଠ୍ୟପୁସ୍ତକ ସଙ୍କଳନ:**

୧. **ପ୍ରବନ୍ଧ ପ୍ରଦୀପ**, ୧୯୯୧-୨୦୧୦, ବିଜୟ ବୁକ୍ ଷ୍ଟୋର, ବ୍ରହ୍ମପୁର।
୨. **ଦଶ ଦଶନ୍ଧିର କବିତା**, ୧୯୯୮, ତାରାତାରିଣୀ ପୁସ୍ତକାଳୟ, ବ୍ରହ୍ମପୁର।

**ସମାଲୋଚନା ଓ ପ୍ରବନ୍ଧ:**

୧. (କ) **ସଂସ୍କୃତ ସାହିତ୍ୟକୁ ଦକ୍ଷିଣ ଓଡ଼ିଶାର ଦାନ;**
(ଖ) **ସଂସ୍କୃତ ସାହିତ୍ୟକୁ ଦକ୍ଷିଣ ଓଡ଼ିଶାର ଦାନ**, ୦୫.୦୧.୧୯୯୦,ସମ୍ବାଦ।
୨. **କ୍ରୀତଦାସୀର କାବ୍ୟ ସମୀକ୍ଷା** ।
୩. ମଧ୍ୟଯୁଗୀୟ ଓଡ଼ିଆ ସାହିତ୍ୟ ଓ ଗଞ୍ଜାମ ।
୪. ଓଡ଼ିଆ ରାମ ସାହିତ୍ୟକୁ ଦକ୍ଷିଣ ଓଡ଼ିଶାର ଦାନ ।
୫. **ଉପେନ୍ଦ୍ର ଦୃଷ୍ଟିରେ କାବ୍ୟଦୋଷ**,୧୯୭୨, ତିନୋଟି ଅଭିଭାଷଣ, ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ।
୬. ସାହିତ୍ୟ ସାଧକ ରାମଚନ୍ଦ୍ର ଆଚାର୍ଯ୍ୟ ।
୭. **ଓଡ଼ିଆ ସାହିତ୍ୟର ରସପ୍ରସଙ୍ଗ**, ୨୦୧୪, ସାହିତ୍ୟପତ୍ର,ରେଭେନ୍‌ସା ବିଶ୍ୱବିଦ୍ୟାଳୟ, କଟକ।
୮. **ସାଧକ ଖଲି ଦାଶ**, ୧୯୭୩, ଖଲି ଦାଶ ସ୍ମୃତି ପରିକ୍ରମା।
୯. **ଉପେନ୍ଦ୍ର ଭଞ୍ଜଙ୍କ କାବ୍ୟରେ ଉତ୍କଳୀୟ ଅଭିନୟ ଶିଳ୍ପ କୌଶଳ**, ଭଞ୍ଜ ସ୍ମରଣିକା ।
୧୦. (କ) **ବକ୍ରବାକ୍ ଚକ୍ରପାଣି ପଟ୍ଟନାୟକ**- ପ୍ରକାଶିତ ପ୍ରବନ୍ଧ ।
(ଖ) **ବକ୍ରବାକ୍ ଚକ୍ରପାଣି ପଟ୍ଟନାୟକ**- ଆକାଶବାଣୀ ବ୍ୟାଖ୍ୟାନ ।
୧୧. ଓଡ଼ିଆ ଅଭିଧାନ ନିର୍ମାଣ ପରମ୍ପରାରେ ପଣ୍ଡିତ ଗୋପୀନାଥ ନନ୍ଦଶର୍ମା ।

୧୨. **କବିସୂର୍ଯ୍ୟ ସୃଷ୍ଟିରେ ସାମାଜିକ ଓ ସାରସ୍ୱତ ପ୍ରତିଶ୍ରୁତିବଦ୍ଧତା**, ୨୦୦୨, ସିଦ୍ଧାନ୍ତ।
୧୩. **ଦି ଗଞ୍ଜାମ ନିୟୁସ୍**, ୨୦୦୯, ସମ୍ରାଟ।
୧୪. **ପ୍ରାଚୀନ ଓଡ଼ିଆ ସାହିତ୍ୟରେ ନୌବାଣିଜ୍ୟର ଚିତ୍ର**, ଶାମୁକା।
୧୫. **ସୁରଭାରତୀଙ୍କ ବିଳାସ ଭୂମି ପାରଳାଖେମୁଣ୍ଡି**, ୨୦୦୨, ଗଜପତି ଉତ୍ସବ ସ୍ମରଣିକା।
୧୬. ଭାରତୀୟ ସ୍ୱାଧୀନତା ଆନ୍ଦୋଳନରେ ଭାରତୀୟ ସାହିତ୍ୟର ଭୂମିକା।
୧୭. ସୁଲୋଚନା ପରିଣୟ।
୧୮. **ସର୍ବ ଭାରତୀୟ ପୃଷ୍ଠଭୂମିରେ ପ୍ରାଚୀନ ଓ ମଧ୍ୟଯୁଗୀୟ ଓଡ଼ିଆ ସାହିତ୍ୟ**, ୨୦୦୬, ଗଜପତି ସ୍ମାରକୀ ବକ୍ତୃତାମାଳା।
୧୯. **ଓଡ଼ିଆ ସାହିତ୍ୟର ଇତିହାସ: ପାରଳାଖେମୁଣ୍ଡିର ଭୂମିକା**, ୨୦୦୬, ଗଜପତି ଉତ୍ସବ ସ୍ମରଣିକା।
୨୦. **ଜରଡ଼ାଗଡ଼**, ୨୦୧୩, ସମ୍ରାଟ।
୨୧. **ବିଷ୍ଣୁପୁରାଣ ଅନୁବାଦ**, ଜୁନ୍-୨୦୧୩, ଏଷଣା-୬୬।
୨୨. ପାଠକ ଓ ପୁସ୍ତକ।
୨୩. **ଓଡ଼ିଆ ଗବେଷଣାର ଭବିଷ୍ୟତ**, ଦକ୍ଷିଣାବର୍ତ୍ତ।
୨୪. **ପ୍ରତିକୂଳତାର ଫଳଶ୍ରୁତି**, ସପ୍ତର୍ଷି।
୨୫. ଓଡ଼ିଶାର ଗ୍ରାମାଞ୍ଚଳ ପାଇଁ ପୁସ୍ତକ ପ୍ରକାଶନ।
୨୬. ସାହିତ୍ୟ ଚର୍ଚ୍ଚାରେ ଗଞ୍ଜାମର ଅତୀତ ଓ ବର୍ତ୍ତମାନ।
୨୭. (କ) ଦକ୍ଷିଣ ଓଡ଼ିଶାର ତନ୍ତ୍ରପୀଠ, ୧୯୮୯, ଝଙ୍କାର।
(ଖ) ଦକ୍ଷିଣ ଓଡ଼ିଶାର ତନ୍ତ୍ରପୀଠ।
୨୮. ଓଡ଼ିଆ ଭାଷା ଓ ସାହିତ୍ୟର କ୍ରମବିକାଶ।
୨୯. **ପରବର୍ତ୍ତୀ କବିମାନଙ୍କ ଉପରେ ପଞ୍ଚସଖା ସାହିତ୍ୟର ପ୍ରଭାବ**, କୋଣାର୍କ ପଞ୍ଚସଖା ବିଶେଷାଙ୍କ।
୩୦. ବୈତରଣୀର ବିରୁପାକ୍ଷ।
୩୧. ଓଡ଼ିଆ ପ୍ରକାଶନର ଅତୀତ, ବର୍ତ୍ତମାନ ଓ ଭବିଷ୍ୟତ।
୩୨. **ନେତାଟିଏ ଲୋଡ଼ା**, ୨୦୦୧, ଓଡ଼ିଶା ଦିବସ ସ୍ମରଣିକା।
୩୩. **ରାଜବଧୂଙ୍କ ଦୃଷ୍ଟିରେ ନାରୀଶିକ୍ଷା**: ବାଳିକାପାଠ, ବହିବିଚାର।
୩୪. **ଓଡ଼ିଶା ଆମର ନା ଆମେ ଓଡ଼ିଶାର**, ୨୦୧୨, ?।
୩୫. **ଆମ ଭାଷା: ବର୍ତ୍ତମାନ ଓ ଭବିଷ୍ୟତ**, ଅନୁପମ ଭାରତ।
୩୬. ମହାବିଷୁବ ସଂକ୍ରାନ୍ତି।
୩୭. ଉଭୟଚର ଦୀନନାଥ, ଦିନନାଥ, ୨୦୧୨।
୩୮. ଅରି ଫେରି ନାହିଁ ଯୁଦ୍ଧ ସରି ନାହିଁ।

୩୯. ଜୀବନୀମୂଳକ କବିତାରେ ଗୋପ ମାନସର ସ୍ୱରୂପ ।
୪୦. **ପତିଭକ୍ତା ପୁରାଣ ଓ କବି ଦୀନବନ୍ଧୁ**, ୧୯୫୮, କୋଣାର୍କ ୧/୨ ।
୪୧. **ଜାନକୀଶବିଳାସ ରାମାୟଣ**, ୧୯୫୯, କୋଣାର୍କ ୧/୩।
୪୨. **ଶ୍ରୀରାମଭକ୍ତି ରତ୍ନାବଳୀ ଓ ତାହାର ଓଡ଼ିଆ ଅନୁବାଦ**,୧୯୬୦, କୋଣାର୍କ ୨/୧ ।
୪୩. **କବିରତ୍ନ ପୁରୁଷୋତ୍ତମ ମିଶ୍ରଙ୍କ ଯମକ ଭାଗବତ ମହାକାବ୍ୟ ଓ ନୀଳାଦ୍ରିନାଥ ଶତକମ୍**, ୧୯୬୧, କୋଣାର୍କ ୨/୩-୪।
୪୪. **ମଦାଳସା: ଏକ ଅଜ୍ଞାତ କାବ୍ୟ**, ଝଙ୍କାର ୧୬/୧୧ ।
୪୫. **ଓଡ଼ିଆ ଗଳ୍ପ ସାହିତ୍ୟର ଗତି ଓ ପ୍ରକୃତି**, ଝଙ୍କାର, ୧୭/୨ ।
୪୬. **ଓଡ଼ିଆ କ୍ଷୁଦ୍ରଗଳ୍ପର ଜନ୍ମଜାତକ**, ଝଙ୍କାର ୧୭/୬ ।
୪୭. **ପ୍ରାଚୀନ ଭାରତର ଗଳ୍ପ**, ଝଙ୍କାର ୧୭/୮,୧୨ ।
୪୮. **ଗଞ୍ଜାମର କାବ୍ୟିକ ପୃଷ୍ଠଭୂମି ଓ ଆଧୁନିକ ଓଡ଼ିଆ ସାହିତ୍ୟ**, ୨୦୦୬, ଦୈନିକ ଆଶା।
୪୯. ଓଡ଼ିଆ ସମାଲୋଚନା ସାହିତ୍ୟକୁ ଗଞ୍ଜାମର ଦାନ ।
୫୦. ଗଞ୍ଜାମ ଜିଲ୍ଲାରେ ପ୍ରାଚୀନ ଶକ୍ତିପୀଠ ଓ ଶକ୍ତି ଉପାସନା ।
୫୧. ଓଡ଼ିଆ କାବ୍ୟର ଇତିହାସ ।
୫୨. ଐତିହାସିକ କାବ୍ୟ ରାଜତରଙ୍ଗିଣୀ ।
୫୩. ଭଞ୍ଜ ସାହିତ୍ୟରେ ଜୀବନର ଜୟଗାନ ।
୫୪. ସ୍ରଷ୍ଟାର ସମ୍ଭାର ଗଞ୍ଜାମ ।
୫୫. ଓଡ଼ିଆରେ ମୌଳିକ ପ୍ରବନ୍ଧ ରଚନା: ବର୍ତ୍ତମାନ ଓ ଭବିଷ୍ୟତ ।
୫୬. ମହାଭାରତ ସମୟର ସମାଜ: ସାମାଜିକ ରୀତିନୀତି ।
୫୭. ଆମ ସଂସ୍କୃତିରେ ବିନାୟକ ପୂଜା ।
୫୮. କୃପାସିନ୍ଧୁ ନରେନ୍ଦ୍ର ଦେବ ।
୫୯. ଓଡ଼ିଶାରେ ସଂସ୍କୃତ ସାହିତ୍ୟ ଅନୁବାଦର ପରମ୍ପରା ।
୬୦. ଓଡ଼ିଆ ଭାଷା: ବର୍ତ୍ତମାନ ଓ ଭବିଷ୍ୟତ ।
୬୧. ଲୋକସାହିତ୍ୟର ମାନବୀୟ ଚେତନା ।
୬୨. ନିଶଙ୍କରାୟ ରାଣୀଙ୍କ ସାହିତ୍ୟିକ ପ୍ରତିଭା ।
୬୩. ଏକବିଂଶ ଶତାବ୍ଦୀର ଓଡ଼ିଆ ଗଦ୍ୟ ସାହିତ୍ୟ ।
୬୪. ଓଡ଼ିଆ ଭାଷାର ଆଦ୍ୟ ରୂପ: ବୌଦ୍ଧଗାନ ଓ ଦୋହା ।
୬୫. ଭଞ୍ଜ ସାହିତ୍ୟରେ ଶ୍ରୀଜଗନ୍ନାଥ ।
୬୬. ବୟସ୍କଙ୍କ ଦୁଃଖ ।
୬୭. ଭଞ୍ଜ ସାହିତ୍ୟର ଅନୁବାଦ ଯୋଗ୍ୟତା ।

୬୮. ପାଠକୀୟ ପ୍ରତିକ୍ରିୟା ଓ ଉପେନ୍ଦ୍ର କାବ୍ୟଶିଳ୍ପର ରୂପଗତ ବିବର୍ତ୍ତନ ।

୬୯. ଦଶପୋଇ ।

୭୦. ଶୋଭାବତୀ ।

୭୧. ନବୀନର ସହଯୋଗୀ ଶିଶିର ।

୭୨. **ସାହିତ୍ୟ ସାଧକ ପଣ୍ଡିତ ଗୋପୀନାଥ ନନ୍ଦଶର୍ମା**, ୧୯୯୨, ଅଭିନବ ଭଞ୍ଜଭାରତୀ-୨, ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ, /**ଓଡ଼ିଆ ପ୍ରବନ୍ଧ ଓ ସମାଲୋଚନା ସାହିତ୍ୟର ପରିଚୟ**, ୨୦୦୯, ଓଡ଼ିଶା ବୁକଷ୍ଟୋର, କଟକ।

୭୩. **ଶ୍ୟାମସୁନ୍ଦର ପ୍ରତିଭାର ଦିଗଦିଗନ୍ତ**, ୧୯୯୩, ଅଭିନବ ଭଞ୍ଜଭାରତୀ-୧, ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ।

୭୪. The Literary Heritage of South Odisha.

୭୫. Ganjam: God's Plenty

୭୬. Bhagyachandra and Bhakti Movement in Eastern Indian Literature, ୧୯୮୭.

୭୭. **Khanja Govinda Das: An unknown Oriya Smruti writer**, 1963, The Orissa Historical Research Journal 9/4.

**ସ୍ମୃତିଚାରଣ**

୧. କେଜେ ଦେଇଥିଲେ ନାଁ ପ୍ରମୋଦ ।

୨. .... ଶେଷରେ ରଜା ହାରିଗଲେ ।

୩. ପ୍ରଥମ ଦେଖାରେ ନିଜର କରି ନେଉଥିବା ଲୋକଟିଏ ।

୪. ମଧୁର ସ୍ମୃତିରେ ମଧୁସୂଦନ ଦେବ, ୨୦୧୩ ।

୫. କୀର୍ତ୍ତିର୍ଯସ୍ୟ ସ ଜୀବତି ।

୬. ପଧାନେ ଥିଲେ ବୋଲି... ।

୭. ଅନ୍ତେବାସୀର ଅନୁଭୂତି ।

୮. ଅଳଙ୍କାର ଶାସ୍ତ୍ରଗୁରୁ ସ୍ୱର୍ଗତ ତ୍ରିପାଠୀ ଶର୍ମା ।

୯. ଆଖିରେ ଆଖିଏ ସ୍ୱପ୍ନ, ଛାତିରେ ଅମାପ ମମତା ।

୧୦. 'ବାପ' ସ୍ମୃତି ତଥାପି ଅଭୁଲା- 'ନା କିସ'।

୧୧. ରସ ଓ ରସାୟନରେ ମହକିତ ସୁବାସ ।

୧୨. ପଣ୍ଡିତ ଶ୍ରୀଧର ଶତପଥୀ: ବ୍ୟକ୍ତି ଓ ବ୍ୟକ୍ତିତ୍ୱ ।

୧୩. ମରିଗଲେ ପିଲାଦିନେ, ହୁଅନ୍ତାଣି ଚାଳିଶି ବରଷ ।

୧୪. ମୋ ଭାଇନା- ଉମା ଭାଇନା ।

୧୫. **କେତୋଟି ଚିଠି**, ୨୦୦୧, କାଳଜୟୀ କଲମ।

୧୬. କଃ ପଣ୍ଡିତଃ ପ୍ରଶସ୍ୟୋ ଯୋଽଟିଟିତି ସଂଶୟଚ୍ଛେଦୀ, ୨୦୧୦ ।

୧୭. ମୋର ପ୍ରିୟ ଛାତ୍ର ଉପେନ୍ଦ୍ର ।

୧୮. **ତସ୍ମୈ ଶ୍ରୀ ଗୁରବେ ନମଃ**, ୨୦୦୫, ରୌପ୍ୟ ଜୟନ୍ତୀ ସ୍ମରଣିକା ।

**ଅନ୍ୟାନ୍ୟ**

୧. ସ୍ୱପ୍ନ (କବିତା), ଚନ୍ଦ୍ରକଳା ।

୨. ଅବୈଧ ଆନନ୍ଦ (କବିତା), ଚନ୍ଦ୍ରକଳା ।

୩. ପରୀକ୍ଷାର୍ଥୀ ଭାଳେଣୀ ଚଉତିଶା (କବିତା) ।

୪. ସାକ୍ଷାତ୍‌କାର ।

**ଶିକ୍ଷାକର୍ମ**

**ଶଶିଭୂଷଣ ରଥ ସରକାରୀ ସ୍ୱୟଂଶାସିତ ମହିଳା ମହାବିଦ୍ୟାଳୟ, ବ୍ରହ୍ମପୁର ।**

**ଚଳଭାଷ:** ୯୪୩୮୧୮୯୪୪୫ ।



୨୫ ନଭେମ୍ବର, ୧୯୪୦

## ସାହିତ୍ୟ ସମାଲୋଚକ ଗଗନେନ୍ଦ୍ର ନାଥ ଦାଶ

ସନ୍ତୋଷ କୁମାର ମହାନ୍ତି

ଗଗନେନ୍ଦ୍ରନାଥ ଦାଶ ଚଳିତ ସମୟରେ ଓଡ଼ିଆ ଭାଷା, ସାହିତ୍ୟ ଓ ଓଡ଼ିଶାର ଇତିହାସ, ସଂସ୍କୃତିଚର୍ଚ୍ଚା କ୍ଷେତ୍ରରେ ଅନ୍ୟତମ ଚର୍ଚ୍ଚିତ ବ୍ୟକ୍ତିତ୍ୱ। ସେ ୧୯୬୨ରୁ ୨୦୦୦ ମସିହା ଅବଧିରେ, ଉତ୍କଳ ବିଶ୍ୱବିଦ୍ୟାଳୟ(୧୯୬୨-୬୭), ବିଶ୍ୱଭାରତୀ(୧୯୬୭-୭୬) ଓ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ(୧୯୭୬-୨୦୦୦)ରେ ଅଧ୍ୟାପନା କରିଛନ୍ତି। ସେ ମଧ୍ୟ ହାର୍ଭାର୍ଡ-ଭୁବନେଶ୍ୱର ପ୍ରକଳ୍ପର ସହଯୋଗୀ(୧୯୬୪-୬୭), ପୁନେସ୍ଥିତ American Institute of Indian Studiesଅନୁଷ୍ଠାନ ମାଧ୍ୟମରେ ଓ ପରେପରେ ବ୍ୟକ୍ତିଗତଭାବେ ଅଣଓଡ଼ିଆମାନଙ୍କୁ ଓଡ଼ିଆ ଭାଷାଶିକ୍ଷା ଦେବାରେ ନିଜର ପାରଦର୍ଶିତା ଦେଖାଇଛନ୍ତି। ଏଥିସହିତ ଆଂଚଳିକ ପରଂପରାର ଉନ୍ମେଷ ଓ ବିକାଶ ସଂପର୍କୀତ ଜର୍ମାନ-ଓଡ଼ିଶା ଗବେଷଣା ପ୍ରକଳ୍ପର ସଦସ୍ୟ (୧୯୭୧-୭୫ ଓ ୧୯୯୯-୨୦୦୫) ଭାବରେ ଏବଂ କିଛି କାଳ କ୍ଷେତ୍ର-ନିର୍ଦ୍ଦେଶକ ରୂପେ କାର୍ଯ୍ୟ କରିଛନ୍ତି।

ତାଙ୍କୁ ପଢ଼ିଲେ ଲାଗେ, ତାଙ୍କ ସମଗ୍ର ଜୀବନ ଜ୍ଞାନସ୍ରୋତର ବହୁତୀର୍ଥରେ ପରିସ୍ନାତ। ୧୯୬୧ ମସିହାରେ ବିଶ୍ୱଭାରତୀରେ ସ୍ନାତକୋତ୍ତର ଓଡ଼ିଆ ବିଭାଗର ଛାତ୍ର ଥିବାବେଳେ 'ଡଗର'ରେ ପ୍ରକାଶିତ **ସମରତରଙ୍ଗ ବର୍ଣ୍ଣିତ ଢେଙ୍କାନାଳ ଯୁଦ୍ଧର ସମୟ ନିରୂପଣ ପ୍ରବନ୍ଧ** ହେଉଛି ତାଙ୍କ ଲେଖକ ଜୀବନର ପ୍ରଥମ କୃତି। ଏହାର ପ୍ରାୟ ୧୮ ବର୍ଷ ପରେ ୧୯୭୯ ମସିହାରେ 'ଜନଶ୍ରୁତି କାଂଚିକାବେରୀ' ବହି ଲେଖି ସେ ଓଡ଼ିଶାର ବୌଦ୍ଧିକ ଜଗତ ଓ ବିଦ୍ୱତ୍ ସମାଜରେ ଆଲୋଡନ ସୃଷ୍ଟି କରିଛନ୍ତି। ଏହା ପୂର୍ବରୁ ତାଙ୍କର(ମିଳିତ ଉଦ୍ୟମରେ) ଖଣ୍ଡିଏ ଇଂରେଜୀ ବହି ସହିତ ଓଡ଼ିଆ, ଇଂରେଜୀ ଭାଷାର ଲିଖିତ ସତର/ଅଠରଟି ପ୍ରବନ୍ଧ ପ୍ରକାଶ ପାଇଛି। ସେ କହନ୍ତି- କାଂଚିକାବେରୀ ହେଉଛି ତାଙ୍କ ଲେଖକ ଜୀବନର ସର୍ବଶ୍ରେଷ୍ଠ କୃତି ବା Magnum Opus। ଏ ବହି ଦେବଭକ୍ତି, ଦେଶପ୍ରୀତି ବା ଜାତିପ୍ରୀତିକୈନ୍ଦ୍ରିକ। ଆଲୋଚନାରେ ସମସ୍ତ ପ୍ରକାର ଭାବପ୍ରବଣତାର ଊର୍ଦ୍ଧ୍ୱକୁ ଯାଇ ସେ ଜନଶ୍ରୁତିର ମୁଖ୍ୟ ଉଦ୍ଦେଶ୍ୟ ଦର୍ଶାଇବା ସହିତ ଜଗନ୍ନାଥଙ୍କୁ କେନ୍ଦ୍ରକରି ଓଡ଼ିଆଙ୍କ ଅସ୍ମିତା ସଂରଚନା ସଂପର୍କରେ ବିଶେଷ ଚର୍ଚ୍ଚା କରିଛନ୍ତି। ଏପରିକି, ଏଥିରେ ରାଧାନାଥ ସାହିତ୍ୟରେ ରଙ୍ଗଲାଲ ବନ୍ଦ୍ୟୋପାଧ୍ୟାୟଙ୍କ ପ୍ରଭାବକୁ ଆବିଷ୍କାର କରିବାରେ ସଫଳ ହୋଇଛନ୍ତି। ତାଙ୍କ ଅନ୍ୟ ସୃଜନଗୁଡ଼ିକ ହେଉଛି- Conversational Oriya(୧୯୭୨ ଦେବୀପ୍ରସନ୍ନ ପଟ୍ଟନାୟକଙ୍କ ସହ), **ଜନଶ୍ରୁତି କାଂଚିକାବେରୀ**(୧୯୮୭୯), Descripitive Morphology of Oriya (୧୯୮୨), **ଓଡ଼ିଆ ଭାଷା-ଚର୍ଚ୍ଚାର ପରମ୍ପରା**(୧୯୮୩), **ଓଡ଼ିଆ ବ୍ୟାକରଣ**(୧୯୯୫ ଓ ୧୯୯୯, ଶରତ ଚନ୍ଦ୍ର ପ୍ରଧାନ ଓ ଅନ୍ୟ ତିନିଜଣଙ୍କ

ସହ),Hindus and Tribals(୧୯୯୮), **ପୁନଶ୍ଚ ଜନଶ୍ରୁତି କାଂଚିକାବେରୀ** (୨୦୧୪)। ୧୯୮୮ ମସିହା ବହିରେ ଦେଉଳତୋଳା, ପତିତପାବନ ଜଗନ୍ନାଥ, କଳାପାହାଡ଼ ଓ ଜଗନ୍ନାଥ ମନ୍ଦିରରେ ଗୀତଗୋବିନ୍ଦ ଗାନ ସଂପର୍କୀତ ଜନଶ୍ରୁତିକୁ ଅନୁଶୀଳନ କରାଯାଇଛି। ଶେଷ ବହିଟି 'ଜନଶ୍ରୁତି କାଂଚିକାବେରୀ'ର ଏକ ପରିବର୍ଦ୍ଧିତ ସଂସ୍କରଣ। ଜାଣିବା କଥା ଯେ, 'ଜନଶ୍ରୁତି କାଂଚିକାବେରୀ'ର ମୂଳ ବକ୍ତବ୍ୟକୁ ସେ 'ପୁନଶ୍ଚ ଜନଶ୍ରୁତି କାଂଚିକାବେରୀ'ରେ କୌଣସି ପରିବର୍ତ୍ତନ କରିନାହାନ୍ତି। କେବଳ ଆବଶ୍ୟକ ସ୍ଥଳେ ତଥ୍ୟ 'ସଂଯୋଜନ', ପ୍ରସଙ୍ଗକ୍ରମେ ଛଅଟି ପ୍ରବନ୍ଧ ପରିଶିଷ୍ଟରେ ଯୋଗ କରିବା ସହିତ ଏକ ନୂତନ ଗ୍ରନ୍ଥ ପ୍ରବେଶ ଲେଖିଛନ୍ତି। ପରିଶିଷ୍ଟର ଛଅଟି ପ୍ରବନ୍ଧରୁ ତିନିଟି **ଜନଶ୍ରୁତି କାଂଚିକାବେରୀ,** ଦୁଇଟି ଓଡ଼ିଆ **ଅସ୍ମିତା ସଂରଚନା** ଏବଂ ଗୋଟିଏ **ରଙ୍ଗଲାଲ ବନ୍ଦ୍ୟୋପାଧ୍ୟାୟ** ବା **ରାଧାନାଥଙ୍କ ଜାତୀୟତାବାଦ** ସଂପର୍କରେ ଲିଖିତ।

ତାଙ୍କର ସଂକଳିତ ବହିଗୁଡ଼ିକ ମଧ୍ୟରେ ORISSA a Classified an Comprehenshive BIBLIOGRAPHY(୧୯୮୧, ହେର୍‌ମାନ୍ କୁଲ୍‌କେ ଓ ଅନ୍ୟ ଦୁଇ ଜଣଙ୍କ ସହ), 'ଖଦ୍ୟୋତର ଦ୍ୟୁତି'(୧୯୮୪), 'ନୀଳକଣ୍ଠ ସ୍ମାରକୀ: ତୃତୀୟ ଖଂଡ଼'(୧୯୮୬) ଓ **Bibliography on Lord Jaggannath**(୧୯୯୨, ପୂର୍ଣ୍ଣଚନ୍ଦ୍ର ମିଶ୍ରଙ୍କ ସହିତ) ଜୈବବିଦ୍ୟା ପରିଭାଷା (ଇଂଲିସ-ଓଡ଼ିଆ, ୨୦୦୩, ଭାଷା ବିଶେଷଜ୍ଞ ଭାବରେ), 'ଓଡ଼ିଆ ଭାଷା-ସୁରକ୍ଷା ଆନ୍ଦୋଳନ'(୧୯୯୩), 'ନିର୍ବାଚିତ ପ୍ରବନ୍ଧ ସଂକଳନ'(୨୦୦୫), 'ସରସ୍ୱତୀ ଫକୀରମୋହନ: ସାହିତ୍ୟ ଓ ବ୍ୟକ୍ତିତ୍ୱ'(୨୦୦୬), 'ନବଦିଗନ୍ତର ଆହ୍ୱାନରେ'(୨୦୧୪), 'ଓଡ଼ିଆର ସ୍ୱାଭିମାନ ଓ ଅନ୍ୟାନ୍ୟ ପ୍ରସଙ୍ଗ'(୨୦୧୫), 'ନବ ଦିଗନ୍ତର ସନ୍ଧାନରେ'(୨୦୧୬) ଓ 'ଅଜଣା ପଥ ଯେ ଡାକେ'(୨୦୧୬) ପ୍ରକାଶିତ। ଉପରେ ସୂଚିତ ୧୯୮୧, ୧୯୮୬ ଓ ୧୯୯୨ ମସିହାରେ ପ୍ରକାଶିତ ତିନିଟି ବହି ବାଦ୍ ଅନ୍ୟ ଆଠଖଣ୍ଡ ହେଉଛି ତାଙ୍କ ପ୍ରବନ୍ଧଗୁଡ଼ିକର ସଂକଳନ।

ସେହିପରି ସଂପାଦିତ ବହିଗୁଡ଼ିକ ମଧ୍ୟରେ 'ଶୈଳୀବିଜ୍ଞାନ'(୧୯୮୯, ପଂଚାନନ ମହାନ୍ତିଙ୍କ ସହ), Jagannath and Gajapati Kings of Orissa: A Compendium of Late Medieval Texts (୨୦୧୦, ରଂଜନ କୁମାର ଦାସଙ୍କ ସହ), Imaging Odisha (୨୦୧୪, ହେର୍‌ମାନ୍ କୁଲ୍‌କେ ଓ ଅନ୍ୟ ୫ଜଣଙ୍କ ସହ) ପ୍ରକାଶପାଇଛି। ୨୦୧୦ ମସିହାରେ ପ୍ରକାଶିତ ବହିରେ ଜଗନ୍ନାଥ ମନ୍ଦିର ସଂପର୍କିତ ପ୍ରାଚୀନ ତାଳପତ୍ର ପୋଥିରୁ ସଂଗୃହୀତ ସେବାକର୍ମାଣି, ଦେଶଖଞ୍ଜା, ରାଜଭୋଗ ଓ କର୍ମାଙ୍ଗୀ ସୁସଂପାଦିତ ହୋଇଛି ଏବଂ ତାହା କିପରି ମାଦଳାପାଂଜିକୁ ନିର୍ଭର କରି ରଚିତ, ସେଥିରେ ସଂପାଦକଦ୍ୱୟ ଅନୁମାନ କରିଛନ୍ତି। ସେହିପରି ଦୁଇଖଣ୍ଡରେ ପ୍ରକାଶିତ 'ଇମେଜିଂ ଓଡ଼ିଶା' ହେଉଛି ଓଡ଼ିଶାର ଇତିହାସ, ସାହିତ୍ୟ, ସ୍ଥାପତ୍ୟ, ଭାସ୍କର୍ଯ୍ୟ, ନୃତ୍ୟ, ସଂଗୀତ, ମେଳା ଓ ଉତ୍ସବ ସଂପର୍କୀତ ଏକ ପ୍ରାମାଣିକ ଗ୍ରନ୍ଥ।

ତେବେ ବହିଗୁଡ଼ିକୁ ବାଦ୍‌ଦେଇ ଓଡ଼ିଆ, ଇଂରେଜୀ ଭାଷାରେ ଲିଖିତ ତାଙ୍କ ପ୍ରବନ୍ଧ, ଫିଚର୍, ପୁସ୍ତକସମୀକ୍ଷା, ମୁଖବନ୍ଧ, ଗପ, କବିତା, ଭ୍ରମଣକାହାଣୀ, ସଂପାଦକଙ୍କୁ ପତ୍ର ଆଦି ମିଶେଇଲେ ୧୫.୬.୨୦୧୬ ସୁଦ୍ଧା ସଂଖ୍ୟା ହେଉଛି ୧୬୯ । ଏଥିମଧ୍ୟରୁ କେତେକ ପ୍ରବନ୍ଧ ତାଙ୍କ ବହିଗୁଡ଼ିକରେ ସଂକଳିତ ହୋଇଛି । ୧୬୯ଟି ମଧ୍ୟରୁ ୩୭ଟି ହେଉଛି ଇଂରେଜୀ ଭାଷାରେ ଲିଖିତ ଓ ଏଥିରୁ ଗୋଟିଏ ପୁସ୍ତକସମୀକ୍ଷା ଓ ଆଉ ଗୋଟିଏ ବହିର ମୁଖବନ୍ଧ । ଗପ, କବିତା ଆଠଟି ଲେଖାଏଁ ଷୋହଳଟି ଓ ଭ୍ରମଣ ଅନୁଭୂତି ଛଅଟି । ତେବେ ଶ୍ରୀଯୁକ୍ତ ଦାଶଙ୍କ ପ୍ରକାଶିତ କୃତିଗୁଡ଼ିକର ସମୟକୁ ଅନୁଧ୍ୟାନ କଲେ ଜଣାଯାଏ, ୧୯୬୧-୨୦୦୬ ମସିହା, ଏହି ଦୀର୍ଘ କାଳ ମଧ୍ୟରେ ଗୋଟିଏଗୋଟିଏ ବର୍ଷ (ଏହିପରି ଦଶ ବର୍ଷ)ମଧ୍ୟରେ, ୧୦ ବର୍ଷ ତାଙ୍କର କୌଣସି ଲେଖା ପ୍ରକାଶିତ ହୋଇନାହିଁ । ସେହିପରି ମୋ ଜାଣିବାରେ ୧୫.୬.୨୦୧୬ ସୁଦ୍ଧା ତାଙ୍କର ଭାଷା, ସାହିତ୍ୟ, ସଂସ୍କୃତି ଓ ଇତିହାସ ଆଦି ସଂପର୍କିତ ଇଂରେଜୀ ରଚନାବଳୀକୁ ଭାରତ ବାହାରର ବା ବିଦେଶୀ ଗବେଷକମାନେ ସେମାନଙ୍କର ଲିଖିତ ୫୦ଟି ପ୍ରସଙ୍ଗରେ ୧୨୬ଟି ସ୍ଥାନରେ ପାଦଟୀକା ବା ରେଫରେନ୍‌ସ ଭାବରେ ଗ୍ରହଣ କରିଛନ୍ତି । ସେହି ବିଦେଶୀମାନଙ୍କ ମଧ୍ୟରେ ଅଛନ୍ତି ଇଂଲଣ୍ଡ, ଆମେରିକା, ଫ୍ରାନ୍‌ସ, ଜର୍ମାନୀ, ସୁଇଜରଲ୍ୟାଣ୍ଡ୍, ଜାପାନ, ନେଦରଲ୍ୟାଣ୍ଡର ୨୭ଜଣ ପ୍ରମୁଖ ଗବେଷକ ବା ବିଦ୍ୱାନ । ସେହିପରି ଜର୍ମାନୀ ଭାଷାରେ ଲିଖିତ ତିନିଟି ଓ ସ୍ପାନିସ୍ ଭାଷାରେ ଲିଖିତ ଗୋଟିଏ ପ୍ରବନ୍ଧ/ବହିରେ ଶ୍ରୀଯୁକ୍ତ ଦାଶଙ୍କ କେତୋଟି ଲେଖାକୁ ଆଧାର ଭାବରେ ନିଆଯାଇଛି । ବିଦେଶୀ ଗବେଷକମାନେ ଶ୍ରୀଯୁକ୍ତ ଦାଶଙ୍କ କେତେକ ମତ ବା ସିଦ୍ଧାନ୍ତକୁ ଗ୍ରହଣକରି ସେଗୁଡ଼ିକୁ ଆପଣା ଆପଣା ଲେଖାରେ ଆଧାର ଭାବରେ ନେଇଛନ୍ତି । ଏଥିରୁ ଶ୍ରୀଯୁକ୍ତ ଦାଶଙ୍କ ପାଣ୍ଡିତ୍ୟ ବା ବିଦ୍‌ବତ୍ତାର ପରିଚୟ ମିଳେ ।

ସେ ଉଭୟ ଆମେରିକୀୟ ଓ ଇଉରୋପୀୟ ଗବେଷକ ବା ବିଦ୍ୱାନଙ୍କୁ ଓଡ଼ିଆ ଭାଷାଶିକ୍ଷା ଦେଇ ଅନ୍ୟ ଭାବରେ ଓଡ଼ିଶାର ଇତିହାସ, ସଂସ୍କୃତି, ଧର୍ମ, ସମାଜ, ସାହିତ୍ୟ ସଂପର୍କିତ ଗବେଷଣା କରିବାପାଇଁ ସହାୟତା କରିଛନ୍ତି । ପୁଣି ସେମାନଙ୍କ ଗବେଷଣା ପ୍ରସଙ୍ଗରେ ସହଯୋଗ କରି ଆମେରିକା ଓ ଜର୍ମାନର ପ୍ରକଳ୍ପଗୁଡ଼ିକରେ ସକ୍ରିୟ ଅଂଶଗ୍ରହଣ ମାଧ୍ୟମରେ ବିଦେଶରେ ଓଡ଼ିଶାର ସାହିତ୍ୟ, ସଂସ୍କୃତି, ସମାଜ, ଭାଷା, ଧର୍ମ ଓ ଇତିହାସ ଆଦି ଚର୍ଚ୍ଚାର ପରିସରକୁ ପ୍ରସାରିତ କରି ସେ ଓଡ଼ିଶା ଓ ପଶ୍ଚିମ ଦେଶଗୁଡ଼ିକ ମଧ୍ୟରେ ସାଂସ୍କୃତିକ ସେତୁର ଭୂମିକା ନିର୍ବାହ କରିଛନ୍ତି । ମୁଖ୍ୟତଃ ଜଣେ ଓଡ଼ିଆ ଅଧ୍ୟାପକଙ୍କ କ୍ଷେତ୍ରରେ ଏହା କମ୍ ଗୁରୁତ୍ୱପୂର୍ଣ୍ଣ କଥା ନୁହେଁ । ସେହିପରି ଗବେଷଣା ପ୍ରସଙ୍ଗ ତଥା ଆଲୋଚନାଚକ୍ର ଓ ପ୍ରବନ୍ଧପାଠରେ ଅଂଶଗ୍ରହଣ କରିବାପାଇଁ ସେ ଏକାଧିକ ଥର ଜର୍ମାନୀ ଓ ଇଂଲଣ୍ଡ ଯାଇଛନ୍ତି । ପୁଣି ଫ୍ରାନ୍‌ସ, ସୁଇଜରଲାଣ୍ଡ୍, ଗ୍ରୀସ୍ ଆଦି ଇଉରୋପର କେତେକ ଦେଶ ପରିଭ୍ରମଣ କରି ନିଜର ଅବଲୋକନକୁ ସଂପ୍ରସାରିତ କରିଛନ୍ତି ।

ତେବେ ତାଙ୍କର ସାହିତ୍ୟ-ସମାଲୋଚନା କ୍ଷେତ୍ରରେ ଅବଦାନର ଆଲୋଚନା ପୂର୍ବରୁ ଅନ୍ୟ କ୍ଷେତ୍ରରେ କରିଥିବା କାର୍ଯ୍ୟ ସଂପର୍କରେ ପାଠକମାନଙ୍କୁ ସାମାନ୍ୟ ସୂଚନା ଦେବା

ଆବଶ୍ୟକ ମନେହୁଏ । ଶ୍ରୀଯୁକ୍ତ ଦାଶ ଉଚ୍ଚତର ଉପାଧି ନିମନ୍ତେ ଆଧୁନିକ ଭାଷାବିଜ୍ଞାନରେ ତାଲିମ ନେବା ପରେ ଓଡ଼ିଆ ଭାଷାର ରୂପତତ୍ତ୍ୱ ସଂପର୍କରେ ଗବେଷଣା କରି ସଂରଚନାତ୍ମକ ଭାଷାବିଜ୍ଞାନର ସିଦ୍ଧାନ୍ତ ଓ ପଦ୍ଧତି ଅନୁସରଣରେ ଅର୍ଥକୁ ପରିହାର କରି ରୂପଭିତ୍ତିକ ସଂରଚନାତ୍ମକ ଓଡ଼ିଆ ବ୍ୟାକରଣ ରଚନାରେ ସେ ଅନ୍ୟତମ ଅଗ୍ରସୂରୀର ଭୂମିକା ଗ୍ରହଣ କରିଛନ୍ତି । ଫଳସ୍ୱରୂପ ତାଙ୍କ ପ୍ରକାଶିତ ବହି ହେଉଛି Descriptive Morphology of Oriya । ସେ ମଧ୍ୟ ପଶ୍ଚିମାଂଚଳୀୟ ଓଡ଼ିଆର ସ୍ୱାତନ୍ତ୍ର୍ୟ ସଂପର୍କରେ ବିଶେଷ ଅନୁଶୀଳନ କରିଛନ୍ତି ଏବଂ ଅଣଓଡ଼ିଆମାନଙ୍କୁ ଓଡ଼ିଆ ଭାଷାଶିକ୍ଷା ଦେବାରେ ବିଶେଷ ପାରଦର୍ଶିତା ପୂର୍ବକ ତାହାକୁ ବିଜ୍ଞାନସମ୍ମତ ଓ ସୁଗମ କରିବାରେ ପାଠ୍ୟ ଉପାଦାନ ପ୍ରସ୍ତୁତ କରିଛନ୍ତି ।

ସେହିପରି ଓଡ଼ିଆ ଅସ୍ମିତା ସଂରଚନା(Construction of Odia Identity) ବିଷୟକ ଅଧ୍ୟୟନରେ ତାଙ୍କର ଅଗ୍ରଗାମିତ୍ୱ ଦେଶ ବିଦେଶରେ ସ୍ୱୀକୃତି ଲାଭ କରିଛି । ଉତ୍ତର ମଧ୍ୟଯୁଗରେ ହିନ୍ଦୁ ଦେବତା ଜଗନ୍ନାଥ କିପରି ଧର୍ମନିରପେକ୍ଷ ଓଡ଼ିଆ ଅସ୍ମିତାର ପ୍ରତୀକରେ ପରିଣତ ହୋଇଥିଲେ, ତତ୍‌ସଂପର୍କିତ Jagannatha and Oriya Nationalism(୧୯୭୮ ଓ ୨୦୧୪) ପ୍ରବନ୍ଧ ଏକ ଉଲ୍ଲେଖନୀୟ କୃତି । ସେହିପରି ୧୯୮୬ରୁ ୧୯୯୦ ମସିହା ମଧ୍ୟରେ ବିଭିନ୍ନ କିସ୍ତିରେ ପ୍ରକାଶିତ ତିନିଟି ପ୍ରବନ୍ଧର ସଂକଳିତ ରୂପ 'ଓଡ଼ିଆ ଭାଷା-ସୁରକ୍ଷା ଆନ୍ଦୋଳନ'(୧୯୯୩)ରେ ଓଡ଼ିଆ ଅସ୍ମିତା ସଂରଚନାର ତାତ୍କାଳିକ କାରଣ ତଥା ପ୍ରାଥମିକ ପର୍ଯ୍ୟାୟ ଗଭୀରଭାବେ ବିଶ୍ଳେଷିତ ହୋଇଛି । ଉକ୍ତ ପ୍ରବନ୍ଧଗୁଡ଼ିକରେ ସେ ପ୍ରଖ୍ୟାତ ଗବେଷକ ଡକ୍ଟର ନଟବର ସାମନ୍ତରାୟଙ୍କ ସହ ବିତର୍କରେ ଅବତୀର୍ଣ୍ଣ ହୋଇ ଆପଣା ଅଧ୍ୟୟନ, ଯୁକ୍ତି, ସାହସ ଓ ସ୍ପଷ୍ଟବାଦିତାର ପରିଚୟ ଦେଇଛନ୍ତି । କେତେକ ବୁଦ୍ଧିଜୀବୀ ଓଡ଼ିଆ, ଏପରିକି ଡକ୍ଟର ସାମନ୍ତରାୟ ଏହାକୁ 'ଭାଷା ବିଲୋପ ଆନ୍ଦୋଳନ'ରେ ନାମିତ କରିଥିବାବେଳେ ଶ୍ରୀଯୁକ୍ତ ଦାଶ ପ୍ରଥମ କରି 'ଭାଷା-ସୁରକ୍ଷା ଆନ୍ଦୋଳନ'ରେ ନାମିତ କରିଛନ୍ତି । ଏବଂ, ଆପଣା ବିଚାରବୋଧକୁ ପ୍ରତିଷ୍ଠା କରିଛନ୍ତି । (ଏଠାରେ ସାମାନ୍ୟ ଅବାନ୍ତର ହେଲେ ବି ସୂଚାଇ ଦିଆଯାଇପାରେ ଯେ, ଡକ୍ଟର ସାମନ୍ତରାୟ ଓ ଡକ୍ଟର ଦାଶଙ୍କ ମଧ୍ୟରେ ଏ ସଂପର୍କିତ ବିତର୍କ ଚାଲୁଥିବା ସମୟରେ ଡ଼. ବଂଶୀଧର ମହାନ୍ତି ଏ ସଂପର୍କିତ ତାଙ୍କର ଏକ ବହି ନାମରେ 'ସୁରକ୍ଷା' ଲେଖିବେ ବି 'ବିଲୋପ' ଲେଖିବେ ଦ୍ୱନ୍ଦ୍ୱରେ ରହି ଶେଷରେ ଦୁଇଟିକୁ ହଟେଇ ରଖିଛନ୍ତି- 'ଓଡ଼ିଆ ଭାଷା ଆନ୍ଦୋଳନ' । ଏଥିରୁ ଡକ୍ଟର ସାମନ୍ତରାୟ ଓ ଡକ୍ଟର ଦାଶଙ୍କ ବିତର୍କର ପ୍ରଭାବ ଅନୁମାନ କରାଯାଇପାରେ । ଏ ବିଷୟ ଓଡ଼ିଆ ସାହିତ୍ୟ-ସମାଲୋଚନା ଜଗତରେ ଅନେକ ଜାଣନ୍ତି) । ସେହିପରି ଓଡ଼ିଆ ଅସ୍ମିତା ସଂରଚନା ପ୍ରସଙ୍ଗରେ ତାଙ୍କର 'ଗୌରୀଶଙ୍କର ଓ ଓଡ଼ିଆ ଭାଷା-ସୁରକ୍ଷା ଆନ୍ଦୋଳନ' ପ୍ରବନ୍ଧ 'ଭାଷା-ସୁରକ୍ଷା ଆନ୍ଦୋଳନ' ବହିର ପରିପୂରକ ଅନୁଶୀଳନ ।

'ଓଡ଼ିଆ ଭାଷାଚର୍ଚ୍ଚାର ପରମ୍ପରା' (୧୯୮୩) ମଧ୍ୟ ଏହି ଓଡ଼ିଆ ଅସ୍ମିତା ସଂରଚନାର ଅନ୍ୟ ଏକ ପରିପୂରକ ଅନୁଶୀଳନ । ଏହି ଗ୍ରନ୍ଥ ମାଧ୍ୟମରେ ସେ ପୁରୁଣା ଓ ନୂଆ ତଥ୍ୟର ଆଧାରରେ ପାଠକମାନଙ୍କୁ ଓଡ଼ିଆ ଭାଷାଚର୍ଚ୍ଚାର ଆପାତତଃ ଏକ ପୂର୍ଣ୍ଣାଙ୍ଗ ଚିତ୍ର(ଆରମ୍ଭରୁ

୧୯୦୦ ମସିହା ଯାଏ) ଦେବାରେ ସଫଳ ହୋଇଛନ୍ତି। ବହିର ଶେଷଅଂଶରେ ଗଦାଧର ବିଦ୍ୟାବାଗୀଶଙ୍କ **ଓଡ଼ିଆ ଭାଷାର ପ୍ରଥମ ବ୍ୟାକରଣ**(ଏପର୍ଯ୍ୟନ୍ତ ହୋଇଥିବା ଗବେଷଣା ଅନୁଯାୟୀ) ପାଣ୍ଡୁଲିପିକୁ ଲଣ୍ଡନସ୍ଥିତ 'ଇଣ୍ଡିଆ ଅଫିସ୍ ଲାଇବ୍ରେରି ଆଣ୍ଡ୍ ରେକର୍ଡସ୍'ରୁ ସଂଗ୍ରହ କରି ଓଡ଼ିଆ ପାଠକମାନଙ୍କପାଇଁ ପ୍ରଥମ କରି ମୁଦ୍ରିତ ରୂପରେ ଉପସ୍ଥାପିତ କରିଛନ୍ତି। ଏହା ତାଙ୍କ ଗବେଷକ ଜୀବନର ଅନ୍ୟ ଏକ ସଫଳତା।

ଏଠାରେ ଏକ ସୂଚନା ଗୁରୁତ୍ୱପୂର୍ଣ୍ଣ ଯେ, ଗଗନେନ୍ଦ୍ରଙ୍କ ଓଡ଼ିଆ ଅସ୍ମିତା ସଂରଚନା ସଂପର୍କରେ 'Jagannatha and Oriya Nationalism' ପ୍ରବନ୍ଧ ପ୍ରକାଶିତ ହେବାର ପ୍ରାୟ ଚାରି ବର୍ଷ ପରେ ଅସ୍ମିତା ସଂରଚନା ସଂପର୍କୀତ ପଥପ୍ରଦର୍ଶକ କେତୋଟି ବହି ଇଂରେଜୀରେ ପ୍ରକାଶପାଇଛି। ଯଥା: ୧୯୮୩ Benedict Andersonଙ୍କ Imagined Communities, E.J. Hobsbasn ଓ Terence Rangerଙ୍କ ସଂପାଦିତ The Invention of Tradition, Ernest Gellenerଙ୍କ Nation and Nationalism since1870 । ଏ ବିଷୟରେ ସେ ଆପଣା 'ପୁନଶ୍ଚ ଜନଶ୍ରୁତି କାଂଚିକାବେରୀ' ବହିରେ ଉଲ୍ଲେଖ କରିଛନ୍ତି। ଏଥିରୁ ସ୍ପଷ୍ଟ, ବିଦେଶରେ ଜାତୀୟତାବାଦ-କୈନ୍ଦ୍ରିକ ସୈଦ୍ଧାନ୍ତିକ ଅନୁଶୀଳନ ପ୍ରକାଶ ପାଇବା ପୂର୍ବରୁ ଓଡ଼ିଶାରେ ତତ୍‌ସଂପର୍କରେ ସେ ପଥପ୍ରଦର୍ଶକ କାର୍ଯ୍ୟ କରିଛନ୍ତି।

ଗଗନେନ୍ଦ୍ର ଆପଣା ବିଚାରରେ ଜନଶ୍ରୁତି ବିଶ୍ଳେଷଣ ମାଧ୍ୟମରେ ଓଡ଼ିଶାର ଇତିହାସ ପୁନର୍ଗଠନ କରିଛନ୍ତି। ଇତିହାସ ରଚନାର ଉପାଦାନ ମାଦଳାପାଞ୍ଜିର ଉତ୍ତର ମଧ୍ୟଯୁଗରେ ଲିଖିତ 'ଉତ୍କଳ ସମ୍ମିଳନୀ ଓ ମଧୁବାବୁ'(୨୦୧୦, ଏହାର ପରିବର୍ଦ୍ଧିତ ଓ ପରିବର୍ତ୍ତିତ ରୂପ ୨୦୧୬- 'ଉତ୍କଳ ସମ୍ମିଳନୀ') ପ୍ରବନ୍ଧରେ ତାଙ୍କର ବକ୍ତବ୍ୟ - ଡିସେମ୍ବର ଚକ୍ରଧରପୁର ଉତ୍କଳ ସମ୍ମିଳନୀରେ ଗୋପବନ୍ଧୁ ମଧୁସୂଦନଙ୍କ ଅନୁପସ୍ଥିତିରେ ସମ୍ମିଳନୀକୁ ଭାଙ୍ଗିଦେଇ ଏହାକୁ ଜାତୀୟ କଂଗ୍ରେସରେ ମିଶେଇ ଦେବାପାଇଁ ଉଦ୍ୟମ କରିଥିଲେ ବୋଲି ସପ୍ରମାଣ ପ୍ରତିଷ୍ଠା କରିଛନ୍ତି।

ଧର୍ମଚର୍ଚ୍ଚା ପ୍ରସଙ୍ଗରେ 'ଚୈତନ୍ୟ ଚରିତାମୃତ'ରେ ରାଧାକୃଷ୍ଣ ଯୁଗଳମୂର୍ତ୍ତି ଉପାସନାର ଉଲ୍ଲେଖ ନାହିଁ ଏବଂ ତାହା ଓଡ଼ିଶାରେ ଆରମ୍ଭ ହୋଇଛି ବୋଲି ଐତିହାସିକ ପରମାନନ୍ଦ ଆଚାର୍ଯ୍ୟଙ୍କ ମନ୍ତବ୍ୟକୁ 'ରାଧାକୃଷ୍ଣ ଯୁଗଳବିଗ୍ରହ ଉପାସନାର ଇତିହାସ' (୧୯୮୬) ପ୍ରବନ୍ଧରେ ଏହାର ବୃନ୍ଦାବନରେ ଆରମ୍ଭ ବୋଲି ସୂଚନା ଦେଇଛନ୍ତି। ସେହିପରି ମଧ୍ୟକାଳରେ ଓଡ଼ିଶାରେ ଶୈବ-ବୈଷ୍ଣବ ଧର୍ମର ବିବାଦ କିପରି ରାଜନୀତି ସହ ଜଡ଼ିତ, ସେବକ ଓ ପୂଜକମାନଙ୍କର ରାଜନୀତି ସହିତ ସଂପର୍କିତ ଏବଂ ଜଗନ୍ନାଥ ମନ୍ଦିରରେ ଗୀତଗୋବିନ୍ଦ ଗାନ ଓ ରଥଯାତ୍ରାର ଛେରାପହଁରା ପ୍ରସଙ୍ଗ ଓଡ଼ିଶାର ରାଜନୀତିକ ଇତିହାସ ପୁନର୍ନିର୍ମାଣରେ ସହାୟକ ହୋଇଛି 'ଓଡ଼ିଶାରେ ଶୈବ-ବୈଷ୍ଣବ ଧର୍ମର ବିବାଦର ଗୋଟିଏ ଅଧ୍ୟାୟ'(୧୯୮୧)। ଏଥିପାଇଁ ସେ ବିଭିନ୍ନ ସମୟରେ ଓ ବିଭିନ୍ନ ପ୍ରସଙ୍ଗରେ ନଟବର ସାମନ୍ତରାୟ, ଗୌରାଙ୍ଗଚରଣ ରାୟ, ଦାଶରଥି ଦାସ, ଧନେଶ୍ୱର ମହାପାତ୍ର, ଶୁଭକାନ୍ତ

ବେହେରା, ହରିହର କାନୁନଗୋ ଓ ପଂଚାନନ ମହାନ୍ତିଙ୍କ ସହିତ ବିତର୍କରେ ଅବତୀର୍ଣ୍ଣ ହୋଇଛନ୍ତି। ଏବଂ, ନିଜର ମତକୁ ଅଭ୍ରାନ୍ତ ବୋଲି ପ୍ରତିଷ୍ଠା କରିଛନ୍ତି।

ସେ ଓଡ଼ିଆ ସମାଲୋଚନା-ସାହିତ୍ୟ ସଂପର୍କରେ ଓଡ଼ିଆରେ ୩୫ଟି, ଇଂରେଜୀରେ ୧୦ଟି ଓ ସାହିତ୍ୟର ବିଭିନ୍ନ ପ୍ରସଙ୍ଗରେ ଛୋଟବଡ଼ ପ୍ରାୟ ୧୦ଟି ପ୍ରବନ୍ଧ ବା ଫିଚର ଲେଖିଛନ୍ତି। ସେଗୁଡ଼ିକ ପ୍ରାୟ ବିଭିନ୍ନ ଗ୍ରନ୍ଥରେ ସଂକଳିତ। ପ୍ରବନ୍ଧଗୁଡ଼ିକ ମୁଖ୍ୟତଃ ପ୍ରାଚୀନ, ମଧ୍ୟଯୁଗୀୟ ଓ ଆଧୁନିକ ଓଡ଼ିଆ ସାହିତ୍ୟକୃତି ସଂପର୍କିତ। ଏଠାରେ ସୂଚନା ଦିଆଯାଇପାରେ ଯେ, ସାହିତ୍ୟ-ସମାଲୋଚନାମୂଳକ ପ୍ରବନ୍ଧଗୁଡ଼ିକ ଭାଷା, ସଂସ୍କୃତି, ଇତିହାସ ସଂପର୍କୀୟ ପ୍ରସଙ୍ଗଗୁଡ଼ିକ ସହିତ ସୂତ୍ରାୟିତ। ତେଣୁ ଜଟିଳ ଓ ଆନ୍ତର୍ବିଦ୍ୟାଭିତ୍ତିକ।

**ପ୍ରାଚୀନ ଓଡ଼ିଆ ସାହିତ୍ୟ ସଂପର୍କିତ ଆଲୋଚନା**

ପ୍ରାଚୀନ ଓଡ଼ିଆ ସାହିତ୍ୟର ସାରଳା ଦାସଙ୍କ ମହାଭାରତ ପ୍ରସଙ୍ଗରେ ସେ ଦୁଇଟି ପ୍ରବନ୍ଧ ଲେଖିଛନ୍ତି। 'ସାରଳା ମହାଭାରତ ଓ ଇତିହାସ'(୧୯୮୮) ପ୍ରବନ୍ଧ କୃଷ୍ଣଚନ୍ଦ୍ର ପାଣିଗ୍ରାହୀଙ୍କ 'ସାରଳା ସାହିତ୍ୟର ଐତିହାସିକ ଚିତ୍ର' ବହିର କେତେକ ପ୍ରମାଦପୂର୍ଣ୍ଣ ତଥ୍ୟର ସ୍ପଷ୍ଟୀକରଣ। ପାଣିଗ୍ରାହୀଙ୍କ ଇତିହାସ ଓ ମହାଭାରତ ମଧ୍ୟରେ ଥିବା ନାମଗତ ଓ ଘଟଣାଗତ ସାମଞ୍ଜସ୍ୟ ଅନେକ ପରିମାଣରେ ଚର୍ଚ୍ଚାରେ କୃତ୍ରିମ ଏବଂ କେତେକ କ୍ଷେତ୍ରରେ ଆକସ୍ମିକ।

ସେହିପରି 'ବିକଳ୍ପ ଆଧୁନିକତା: ଶାରଳା ମହାଭାରତରେ ଏକଲବ୍ୟ ଉପାଖ୍ୟାନ'(୨୦୧୩) ପ୍ରବନ୍ଧରେ ସାରଳା ଦାସଙ୍କ ଏକଲବ୍ୟ/ଜାରା ଉପାଖ୍ୟାନର କଥାବସ୍ତୁଗତ ବା ସଂରଚନାଗତ ସାମ୍ୟ କିପରି ଗୋଦାବରୀଶ ମିଶ୍ରଙ୍କ ଗାଥା କବିତା 'ଅର୍ଜ୍ଜୁନ ସିଂହ', ଭଗବତୀ ଚରଣ ପାଣିଗ୍ରାହୀଙ୍କ କ୍ଷୁଦ୍ରଗଳ୍ପ 'ଶିକାର', ଗୋପୀନାଥ ମହାନ୍ତିଙ୍କ ଉପନ୍ୟାସ 'ପରଜା'ରେ ଉପସ୍ଥିତ, ତାହା ଦର୍ଶାଇଛନ୍ତି। ଉପରୋକ୍ତ ତିନିଟିଯାକ କୃତିର ପରିଣତିରେ ରହିଛି ସାମୟିକ ବିଜୟ, ପରେ ପରାଜୟର ଇଂଗିତ ଓ ବ୍ୟଂଜନା। ଭିନ୍ନ ପ୍ରକାରର ଆଲୋଚନା ସାରଳା ମହାଭାରତର ଏକଲବ୍ୟ ଉପାଖ୍ୟାନ। ସାରଳା ଆଦିମ ଜନଜାତିର ମଣିଷମାନଙ୍କ ପ୍ରତି ଯେ ସହୃଦୟ, ଏହା ସୁସ୍ପଷ୍ଟ। ତେବେ 'ଅର୍ଜ୍ଜୁନ ସିଂହ', 'ଶିକାର' ଓ 'ପରଜା' ମାନବିକ ଆବେଦନରେ ସିକ୍ତ ଓ ଆଧୁନିକ ଚେତନାର ବାର୍ତ୍ତାବହ ଭାବରେ ସ୍ୱୀକୃତ ମାତ୍ର। ପ୍ରାୟ ୫୦୦ ବର୍ଷ ପୂର୍ବେ ରଚିତ ସାରଳା ଦାସଙ୍କ ଏକଲବ୍ୟ ନ୍ୟାୟ ପାଇନାହିଁ; ଯାହା ତା'ର ଅଧିକାର।

**ମଧ୍ୟଯୁଗୀୟ ଓଡ଼ିଆ ସାହିତ୍ୟ ସଂପର୍କିତ ଆଲୋଚନା**

ମଧ୍ୟଯୁଗୀୟ ସାହିତ୍ୟ ଆଲୋଚନାରେ ଗଗନେନ୍ଦ୍ର ନାଥ **ବୈଦେହୀଶବିଳାସ, କପଟପାଶା, ବିଦଗ୍ଧଚିନ୍ତାମଣି, ସମରତରଙ୍ଗ** ଓ **ଦେଉଳତୋଳା** ସଂପର୍କରେ ଆଲୋକପାତ କରିଛନ୍ତି। '**ରାମସାହିତ୍ୟ ବିବର୍ତ୍ତନରେ ବୈଦେହୀଶବିଳାସ**'(୧୯୬୩) ପ୍ରବନ୍ଧ ହେଉଛି ପୁରାଣସାହିତ୍ୟ ଓ ରାମସାହିତ୍ୟର ତୁଳନାତ୍ମକ ବିଚାର। ସଂସ୍କୃତ, ଖଡ଼ିବୋଲି, ବଙ୍ଗଳା ଓ ଓଡ଼ିଆ ଭାଷାର ରାମସାହିତ୍ୟ ଆଧାରରେ ରାମଚନ୍ଦ୍ର ଅବତାର ଓ ଅବତାରୀ ଥିବାର ଏକ ସମୟାନୁକ୍ରମିକ ଚିତ୍ର ରହିଛି। ଭାରତରେ ରାମସାହିତ୍ୟର ପ୍ରଭାବ ସୁସ୍ପଷ୍ଟ।

ଅଲୋଚନା ପ୍ରସଙ୍ଗରେ ପ୍ରାବନ୍ଧିକ ହିନ୍ଦୀରେ ପ୍ରାୟ ୩୦୦, କନ୍ନଡ଼ ଓ ତେଲୁଗୁ ସାହିତ୍ୟରେ ହଜାରରୁ ଅଧିକ ସଂଖ୍ୟକ ରାମକଥା ଆଧାରିତ ରଚନା ଥିବା କଥା ଏ.କେ. ରାମାନୁଜନଙ୍କ ତଥ୍ୟ ଆଧାରରେ ପ୍ରକାଶ କରିଛନ୍ତି। ଭୀମା ଧୀବରଙ୍କ 'କପଟପାଶା'(୧୯୮୯) ପ୍ରବନ୍ଧ ଏକ ଭିନ୍ନ ପ୍ରକାରର ଆଲୋଚନା। କାବ୍ୟରେ ବ୍ୟବହୃତ କେତେକ ସମାପିକା କ୍ରିୟା କିପରି ଅତୀତକାଳ ପରିବର୍ତ୍ତେ ବର୍ତ୍ତମାନ ଓ ଭବିଷ୍ୟତ କାଳରେ ବ୍ୟବହୃତ ହୋଇ କାବ୍ୟକୁ ନାଟକୀୟ ଓ ଚିତ୍ତାକର୍ଷକ କରିପାରିଛି, ତାହା ବିଶ୍ଳେଷିତ। ଏହି କାବ୍ୟରେ 'ବୋଲ' ଧାତୁ ନିଷ୍ପନ୍ନ ସୂଚକ କ୍ରିୟାପଦ ସମୁଦାୟ ୫୬ଥର ବ୍ୟବହୃତ ହୋଇଥିବା ବେଳେ, ସେଥିମଧ୍ୟରୁ ୨୫ ଥର ଅତୀତକାଳ ଓ ୩୧ ଥର ବର୍ତ୍ତମାନ କାଳରେ ବ୍ୟବହୃତ। କେତୋଟି ଇଂରେଜି ବାକ୍ୟ ସହ ଓଡ଼ିଆର ତୁଳନା କରି ସେ ଓଡ଼ିଆ ଭାଷା ମଧ୍ୟରେ ଚକ୍ରାକାରରେ ଆବର୍ତ୍ତମାନ କାଳର କିପରି ସୂଚନା ମିଳିଥାଏ, ତାହା ଏଥିରେ ପ୍ରତିପାଦିତ ପ୍ରସଙ୍ଗ।

'ବିଦଗ୍ଧଚିନ୍ତାମଣି: ଏକ ପୁନର୍ମୂଲ୍ୟାୟନ'(୧୯୮୪) ପ୍ରବନ୍ଧରେ ସେ ଅସଂପୂର୍ଣ୍ଣ କାବ୍ୟର ବିଷୟବସ୍ତୁ ପରିକଳ୍ପନାଗତ ଓ ସଜ୍ଜୀକରଣରେ ବହୁ ତ୍ରୁଟି ସଂପର୍କରେ ଚର୍ଚ୍ଚା କରିଛନ୍ତି। କହିଛନ୍ତି—ଏଥିରେ ପରସ୍ପର ବିରୋଧ ଯୋଗୁଁ କୃଷ୍ଣଙ୍କୁ ନେଇ ରାଧା ତ୍ରିପୁଂସ ଭ୍ରମରେ ପଡ଼ିଛନ୍ତି ଏବଂ ଅପ୍ରାସଙ୍ଗିକ ବିଷୟର ଅବତାରଣା ହେତୁ ଛାନ୍ଦଗୁଡ଼ିକର ଘଟଣାର ଗତି ବା ପ୍ରବାହ ବ୍ୟାହତ ହୋଇଛି। ଏପରିକି, ମଧ୍ୟଯୁଗୀୟ କାବ୍ୟଧାରାର ମାପକାଠିରେ କେତେକ ଛାନ୍ଦ ଅବାନ୍ତର ଓ ଅପ୍ରାସଙ୍ଗିକ। ପୁନରାବୃତ୍ତିର ମାତ୍ରାଧିକତା କେତେକ କ୍ଷେତ୍ରରେ ଅସଂଗତି ହେତୁ ରସସୃଷ୍ଟିରେ ବୈଚିତ୍ର୍ୟ ପ୍ରକଟିତ ହୋଇପାରିନାହିଁ। ତେବେ ସେ ଏହି ପ୍ରବନ୍ଧକୁ ପରବର୍ତ୍ତୀ ସମୟରେ ବିକଶିତ କରିପାରିଥାଆନ୍ତେ। ପ୍ରବନ୍ଧଟି କୃତିକୈନ୍ଦ୍ରିକ ଆଲୋଚନାର ପରିସରଭୁକ୍ତ।

'ସମରତରଙ୍ଗ' ବର୍ଣ୍ଣିତ ଢେଙ୍କାନାଳ ଯୁଦ୍ଧର ସମୟ ନିରୂପଣ'(୧୯୬୧) ପ୍ରବନ୍ଧରେ ଢେଙ୍କାନାଳର ରାଜା ତ୍ରିଲୋଚନ ମହୀନ୍ଦ୍ରଙ୍କ ସହ ରଘୁଜୀ ଭୋନ୍‌ସଲାଙ୍କ ଭାଇ ଚିମନାଜୀ ବାପୁ ଓ ଚେମଣା ବାପୁଙ୍କ ମଧ୍ୟରେ ସଂଘଟିତ ଯୁଦ୍ଧର କାଳ ନିରୂପଣ କରାଯାଇଛି। ଯୁଦ୍ଧର ବର୍ଣ୍ଣନାରେ ସେ ସୁଧାକର ପଟ୍ଟନାୟକ ଓ ଘନଶ୍ୟାମ ଦାଶଙ୍କ ପୂର୍ବ ମତକୁ ଆଗ୍ରାହ୍ୟ କରି ଏହା ୧୭୮୧ ଜାନୁଆରି ମାସରେ ଶେଷ ହୋଇଥିଲା ବୋଲି ସିଦ୍ଧାନ୍ତ କରିଛନ୍ତି। ଏହି ମତର ଅଭ୍ରାନ୍ତତା ଏବେ ବି ସ୍ୱୀକୃତ।

'ଜନଶ୍ରୁତି ଓ ସାମାଜିକ ଇତିହାସ'(୧୯୮୨) ଶିଶୁ କୃଷ୍ଣଦାସଙ୍କ 'ଦେଉଳତୋଳା'ରେ ଶବର ବସୁ ବା ବିଶ୍ୱାବସୁର ଝିଅ ବା ବିଦ୍ୟାପତିଙ୍କ ପତ୍ନୀ ଲଳିତା ଚରିତ୍ର ସୃଷ୍ଟିର ଉତ୍ସ ଆବିଷ୍କାର କରାଯାଇଛି। ସାରଳା ମହାଭାରତର ଲଳିତା, ଆଦିପୂଜକ ଶବରର ପତ୍ନୀ ଥିବାବେଳେ, ଦେଉଳତୋଳାରେ ଶବରର ଝିଅ ବ୍ରାହ୍ମଣ ବିଦ୍ୟାପତିର ପତ୍ନୀ। ତେଣୁ ଜଗନ୍ନାଥଙ୍କ ପୂଜକ ଦଇତାମାନଙ୍କର ଗୋଟିଏ ଉପଗୋଷ୍ଠୀକୁ ବ୍ରାହ୍ମଣର ସ୍ୱୀକୃତି ଦେବା ହେଉଛି ଲଳିତା ଚରିତ୍ର ସୃଷ୍ଟିର ମୁଖ୍ୟ କାରଣ ଏବଂ ଏହି ଛୋଟ ରଚନାଟି ସାରଳା ମହାଭାରତର ଦୁଇ ବା ତିନିଶହ ବର୍ଷ ପରେ ଲେଖାଯାଇଛି।

**ଆଧୁନିକ ଓଡ଼ିଆ ସାହିତ୍ୟ ସଂପର୍କିତ ଆଲୋଚନା**

ଆଧୁନିକ ସାହିତ୍ୟ, ବିଶେଷକରି ଫକୀରମୋହନ ସେନାପତି, ରାଧାନାଥ ରାୟ, ସୁରେନ୍ଦ୍ର ମହାନ୍ତିଙ୍କ କୃତି ସଂପର୍କରେ ଗଗନେନ୍ଦ୍ରଙ୍କର ସ୍ୱତନ୍ତ୍ର ବିଚାର ରହିଛି । 'ଆଧୁନିକତା ଓ ଆଧୁନିକ ଓଡ଼ିଆ ସାହିତ୍ୟ' (୧୯୭୦) ଶୀର୍ଷକ ରଚନା ତାହାର ଉଦାହରଣ । ତାଙ୍କ ବିଚାରରେ ଆଧୁନିକତା ଏକ ଦୃଷ୍ଟିଭଙ୍ଗୀ ଏବଂ ବ୍ୟକ୍ତି ଜୀବନରେ ଆଧୁନିକତା ନ ଆସିଲେ, ତାହା ସାହିତ୍ୟରେ ରୂପାୟିତ ହୋଇପାରେ ନାହିଁ । ଶାସ୍ତ୍ର ନୁହେଁ ବିଜ୍ଞାନ, ବିଶ୍ୱାସ ନୁହେଁ ଯୁକ୍ତି, ଭଗବାନ ନୁହନ୍ତି, ମଣିଷ ଭିତରେ ରହିଛି ଆଧୁନିକତାର ମୂଳମନ୍ତ୍ର ।

ଫକୀରମୋହନଙ୍କ ଗଦ୍ୟରୀତି ଓ ଓଡ଼ିଆ ଭାଷା-ସୁରକ୍ଷା ଆନ୍ଦୋଳନ(୧୯୯୧-୯୨)ର ଇଂରେଜୀ ରୂପ Fakirmohan Senapati's Discovery from Below: Decolonialisation and Search for Linguistic Authentisity(୨୦୦୬) ପ୍ରବନ୍ଧ । ଏହି ପ୍ରବନ୍ଧ ଦୁଇଟିର ବକ୍ତବ୍ୟ, ଫକୀରମୋହନଙ୍କ ନୂତନ ଗଦ୍ୟରୀତି ଆଧୁନିକ ଓଡ଼ିଆ ସାହିତ୍ୟର ଉନ୍ମେଷ ଓ ବିକାଶକୁ ପରୋକ୍ଷରେ ପ୍ରଭାବିତ କରିଛି ଏବଂ ଓଡ଼ିଆ ଭାଷା-ସୁରକ୍ଷା ଆନ୍ଦୋଳନ ଜନ୍ ବୀମ୍ସ ଓ ରେଭରେଣ୍ଡ ହଲ୍ଲମଙ୍କ ଦୁଇଟି ବ୍ୟାକରଣର ପରୋକ୍ଷ ପ୍ରଭାବ । ଏହି ନୂତନ ରୀତିର ପ୍ରେରଣାର ଉତ୍ସ । ଦୁଇ ବ୍ୟାକରଣକାର ସ୍ପଷ୍ଟ କରିଦେଇଛନ୍ତି ଯେ, ସଂସ୍କୃତ ନୁହେଁ, ଚଷାମୁଖର ଭାଷା ହିଁ ପ୍ରକୃତ ଓଡ଼ିଆ ଭାଷା । ଫଳରେ ପରବର୍ତ୍ତୀ ସମୟରେ ଫକୀରମୋହନ ତତ୍ସମ ଶବ୍ଦ ପରିବର୍ତ୍ତେ ଦେଶଜ ଶବ୍ଦର ବ୍ୟବହାର ପ୍ରତି ଯତ୍ନବାନ ହୋଇଛନ୍ତି । ଏହି ଦୁଇଜଣଙ୍କ ସହ ଫକୀରମୋହନଙ୍କ ନିବିଡ଼ ସଂପର୍କର ପ୍ରମାଣ ଆଧାରରେ ଫକୀରମୋହନ ଯେ ସେମାନଙ୍କ ବ୍ୟାକରଣ ବହି ପଢୁଥିବେ, ଏହି ଅନୁମାନ ଯୁକ୍ତିସଂଗତ ମନେହୁଏ । ପୃଷ୍ଠଭୂମି, ପରିବେଶ ଓ ପରିସ୍ଥିତି କିପରି ସ୍ରଷ୍ଟାମାନସକୁ ଗଭୀରଭାବରେ ପ୍ରଭାବିତ କରେ, ଏପରିକି ସ୍ରଷ୍ଟାର କୃତିରେ କିପରି ପ୍ରତିଫଳିତ ହୁଏ; ତାହା ବୁଝାଇବାରେ ଫକୀରମୋହନଙ୍କ ସଂପର୍କିତ ଏହି ପ୍ରବନ୍ଧ ଏକ ଜ୍ୱଳନ୍ତ ଉଦାହରଣ । ଶ୍ରୀଯୁକ୍ତ ଦାଶ ଭାଷାବିଜ୍ଞାନ ଅଧ୍ୟୟନ କରିଥିବାରୁ ବୀମ୍ସ ଓ ହଲ୍ଲମଙ୍କ ବ୍ୟାକରଣରୁ ଏପରି ସଂଭାବନା ଆବିଷ୍କାର କରିବା ତାଙ୍କ ପକ୍ଷେ ସହଜ ହୋଇପାରିଛି । ଅନ୍ୟଥା ଏହା ଅନ୍ୟ ସମାଲୋଚକଙ୍କ କ୍ଷେତ୍ରରେ ହୁଏତ ସହଜ ହୋଇପାରିନଥା'ନ୍ତା ।

'ଫକୀରମୋହନ ଓ ଧରଣୀଧର'(୧୯୯୪) ପ୍ରବନ୍ଧ କେନ୍ଦୁଝର ପ୍ରଜାମେଳିରେ ସଂପୃକ୍ତ ଫକୀରମୋହନ ଓ ଧରଣୀଧର ମାନସିକତାର ତୁଳନାତ୍ମକ ଅନୁଶୀଳନ । ଫକୀରମୋହନ "ରାଜତନ୍ତ୍ରର ପୀଡ଼ନ ଓ ଅତ୍ୟାଚାରରେ ଭୁକ୍ତଭୋଗୀ ନ ଥିବାରୁ ହୁଏତ ସେଇ ରାଜତନ୍ତ୍ରର ସହାୟତାରେ ଭାରତରୁ ବ୍ରିଟିସ ଶାସନ ଅବସାନର ପରିକଳ୍ପନା କରୁଥିଲେ", କିନ୍ତୁ "ଧରଣୀଧର ରାଜତନ୍ତ୍ରର ପୀଡ଼ନ ଓ ଅତ୍ୟାଚାରରେ ପ୍ରତିବିଧାନ ନିମନ୍ତେ ବ୍ରିଟିସ ସରକାରଙ୍କ ଶକ୍ତିମତା ଓ ନ୍ୟାୟପରାୟଣତାର ଉପରେ ଆସ୍ଥା ଓ ବିଶ୍ୱାସ ସ୍ଥାପନ କରିଥିଲେ ।" ଉପର୍ଯ୍ୟୁକ୍ତ ବିଚାରରୁ ଏହା ସ୍ପଷ୍ଟ ଯେ, ଉଭୟ ବ୍ୟକ୍ତିତ୍ୱ ଅପଣା ଆପଣା କାଳର ବିଚରଣ ଭୂମିର ଉତ୍ପାଦନ । ସେହି ନ୍ୟାୟରେ କାହାକୁ ଅହଂପୀଡ଼ିତ ବୋଲି

କୁହାଯାଇପାରିବ ନାହିଁ।

'ଏଇ ହେଲା ଫକୀରମୋହନଙ୍କ ଲଛମନିଆ'(୧୯୯୩) ପ୍ରବନ୍ଧରେ ଡକ୍ଟର ପଂଚାନନ ମହାନ୍ତି ଓ ସ୍ମିତା ମହାନ୍ତି 'ଲଛମନିଆ' ଗଳ୍ପ, 'ଲଛମା' ଉପନ୍ୟାସର ପ୍ରାଥମିକ ରୂପ ବୋଲି ଉଲ୍ଲେଖ କରିଛନ୍ତି। ମାତ୍ର 'ଲଛମନିଆ' ଗଳ୍ପର ମୁଦ୍ରିତ ରୂପର ପ୍ରମାଣ ନ ମିଳିବା ଯାଏ ଏହା ଗ୍ରହଣ କରିବା ଉଚିତ ହେବନାହିଁ ବୋଲି ଶ୍ରୀଯୁକ୍ତ ଦାଶଙ୍କ **ଲଛମା ଓ ଲଛମନିଆ**(୧୯୯୭) ପ୍ରବନ୍ଧର ବକ୍ତବ୍ୟ। ତଥାପି ଏହାର ପୃଷ୍ଠଭୂମିରେ ସେ ଯୁକ୍ତିମୂଳକ ଆଲୋଚନାରେ ଏପରି ହେବାର ସଂଭାବନା ନାହିଁ ବୋଲି ଯାହା ଅନୁମାନ କରିଛନ୍ତି; ତାହା ସତ୍ୟର ଅଧିକ ନିକଟବର୍ତ୍ତୀ। ଫକୀରମୋହନ ସାହିତ୍ୟର ଅନ୍ୟତମ ଗବେଷକ ଦେବେନ୍ଦ୍ର କୁମାର ଦାଶ 'ଫକୀରମୋହନଙ୍କ ସେନାପତିଙ୍କ ଆତ୍ମଚରିତ'(୨୦୧୦) ର ମୁଖବନ୍ଧରେ **ଲଛମନିଆ** ପ୍ରସଙ୍ଗ ମୋହିନୀମୋହନଙ୍କଦ୍ୱାରା ଲିଖିତ ବୋଲି ଅନୁମାନ କରି ସେହି ଅଂଶତକ ବହିରେ ସ୍ଥାନ ଦେଇନାହାନ୍ତି। ତେବେ ମୋହିନୀମୋହନ **ଲଛମନିଆ** ପ୍ରସଙ୍ଗ ବହିରେ ସ୍ଥାନ ଦେବାର କାରଣ କଅଣ ଥିଲା, ତତ୍ ସଂପର୍କରେ ବଳିଷ୍ଠ ଯୁକ୍ତିର ଅଭାବ ରହିଛି।

**ପ୍ରାୟଶ୍ଚିତ ପ୍ରତି ପୁନର୍ଲୋକନ**(୧୯୯୭) ହେଉଛି ଏହି ଉପନ୍ୟାସର କଥାବସ୍ତୁ ପରିକଳ୍ପନା, ଚରିତ୍ରଚିତ୍ରଣ ଏବଂ ସାମାଜିକ ଆଭିମୁଖ୍ୟ ଆଦିର ଉତ୍ସ ନିରୂପଣ। ଏଥିପାଇଁ ଗବେଷକ ଫକୀରମୋହନଙ୍କ ବ୍ୟକ୍ତିଗତ, ପାରିବାରିକ ଜୀବନ ଓ ସମସାମୟିକ ପରିବେଶ ଓ ପରିପାର୍ଶ୍ୱକୁ ଆଧାର କରିଛନ୍ତି। ପୁନଶ୍ଚ **ଫକୀରମୋହନଙ୍କ ଉପନ୍ୟାସ ଓ ଗଳ୍ପର ସାମାଜିକ ଆଭିମୁଖ୍ୟ**(୧୯୯୭) ପ୍ରବନ୍ଧରେ ସେ ଫକୀରମୋହନଙ୍କ ଉପନ୍ୟାସ ଓ ଗଳ୍ପର ଆଭିମୁଖ୍ୟକୁ ମୁଖ୍ୟତଃ ଦୁଇଟି ଭିନ୍ନ ସ୍ରୋତର ମିଶ୍ରଣ ବୋଲି କହିଛନ୍ତି। ଗୋଟିଏ କୃଷି ଓ ପଲ୍ଲୀମୂଳକ ପାରମ୍ପରିକ ସମାଜ ଓ ଅନ୍ୟଟି ଇଂରାଜୀ ଶିକ୍ଷାଦୀକ୍ଷାଯୁକ୍ତ ସହରଭିତ୍ତିକ ନୂତନ ସମାଜରେ ବଂଚୁଥିବା ମଣିଷମାନଙ୍କ ଦ୍ୱନ୍ଦ୍ୱ, ସଂଘର୍ଷ ଓ ସଂଘାତ।

'ଆତ୍ମଜୀବନୀ ନା ଉପନ୍ୟାସ'(୨୦୦୦) ପ୍ରବନ୍ଧ 'ଫକୀରମୋହନଙ୍କ ଆତ୍ମଜୀବନୀ ଏକ ଉପନ୍ୟାସ' ଶୀର୍ଷକ ଦାଶରଥି ଦାସଙ୍କ ଏକ ବିଚାରର ପ୍ରତିବାଦ। ଫକୀରମୋହନଙ୍କ ଆତ୍ମଚରିତରେ କେତେକ ସାମାନ୍ୟ ଭ୍ରମ ଓ ପ୍ରମାଦକୁ ବାଦ୍‌ଦେଲେ, ସେଥିରେ ବର୍ଣ୍ଣିତ "ବିବରଣୀ ମୂଳତଃ ସତ୍ୟଭିତ୍ତିକ ଓ ଅନ୍ୟ ସୂତ୍ରରୁ ସଂଗୃହୀତ ଇତିହାସ ସହିତ ତାହା ମୋଟାମୋଟି ମେଳ ଖାଉଛି" ବୋଲି ସେ ପ୍ରତିପାଦନ କରିଛନ୍ତି। ପ୍ରକୃତରେ କେତେକ କାରଣରୁ ଅଧିକାଂଶ ଆତ୍ମଜୀବନୀରେ ମସିହା ଓ ଘଟଣାର ବିଶ୍ଳେଷଣରେ ତାଳମେଳ ନ ରହିବାର ସଂଭାବନା ଥାଏ। ଏପରିକି ସନ, ତାରିଖର ସଠିକତା ନ ଥାଇ ବି ଇତିହାସ-ଅନୁସନ୍ଧିତ୍ସା ଓ ସମାଜ ଜିଜ୍ଞାସା କ୍ଷେତ୍ରରେ ବଙ୍ଗଳାର ଶିବନାଥ ଶାସ୍ତ୍ରୀଙ୍କ ଆତ୍ମଚରିତ ଊନବିଂଶ ଶତକର ଦ୍ୱିତୀୟାର୍ଦ୍ଧର ଏକ ଚମତ୍କାର ଇତିହାସରେ ପରିଣତ ହୋଇଛି(ଦାଶ, ଦେବେନ୍ଦ୍ର କୁମାର, ୨୦୧୦, ଫକୀରମୋହନ ସେନାପତିଙ୍କ ଆତ୍ମଚରିତ, ପୃ.xix)। କୌଣସି ବ୍ୟକ୍ତିଙ୍କ ସ୍ମୃତିରୁ ଲିଖିତ ଆତ୍ମକଥା ଘଟଣା ଓ ତଥ୍ୟଗତ ପ୍ରମାଦମୁକ୍ତ ରହିବା ଆଦୌ ସମ୍ଭବନୁହେଁ।

ତେଣୁ ଆତ୍ମକଥା ଉପରେ ଉପନ୍ୟାସ ପ୍ରାରୂପର ମୋହର ଏକ ଅନୁଚିତ ଅବବୋଧ। ମଜାକଥା, ଗବେଷକଙ୍କ ଆତ୍ମଜୀବନୀ 'ଝଗଡ଼'ରେ ସଚ୍ଚିଦାନନ୍ଦ ମିଶ୍ର, ଲଳାଟେନ୍ଦୁ ଦାସମହାପାତ୍ର, କୃଷ୍ଣଚନ୍ଦ୍ର ପ୍ରଧାନ ଓ ଅଶୋକ କୁମାର ଦାଶ ମଧ୍ୟ ଯୋଗଦେଇଛନ୍ତି। ଝଙ୍କାର ପୃଷ୍ଠା ଏହାର ମଂଚ ହୋଇଛି। ବସ୍ତୁତଃ, ଦାଶରଥି ବାବୁଙ୍କ 'ଫକୀରମୋହନ'(୨୦୦୨) ପ୍ରବନ୍ଧରେ ପ୍ରଦତ୍ତ ମନ୍ତବ୍ୟକୁ ଗଗନେନ୍ଦ୍ରନାଥ କେନ୍ଦୁଝର ମହାରାଜା ଘଟଗାଁଠାରେ ଗଡ଼ରୁ ଚିଠି ପାଇବା, ଡୋମପଡ଼ା ଗସ୍ତରେ ଯାଇଥିବା ସମୟରେ ଅଦିନ ବର୍ଷା ହେବା, ବନ୍ଦୀରେ ଥିବା ସମୟରେ ଫକୀରମୋହନ ଭୋଳାନାଥ ଖମାରିଆଙ୍କୁ ସାଂକେତିକ ଅର୍ଥରେ ଚିଠି ଲେଖିବା ପ୍ରସଙ୍ଗକୁ ତଥ୍ୟ ଆଧାରିତ ଓ ବିଶ୍ଳେଷଣ ମାଧ୍ୟମରେ ସତ୍ୟ ବୋଲି ପ୍ରତିପାଦନ କରିଛନ୍ତି।

**ଛମାଣ ଆଠଗୁଣ୍ଠ ପରିକଳ୍ପନାର ଉତ୍ସମୁଖ ସନ୍ଧାନରେ** (୨୦୦୪) ପ୍ରବନ୍ଧ ଫକୀରମୋହନ ଚର୍ଚ୍ଚାର ଏକ ସ୍ୱତନ୍ତ୍ର ଅଭିଲେଖ। ଏହି ଉପନ୍ୟାସ ରଚନାର କାରଣ ଉପରେ ସମୀକ୍ଷକମାନେ ବଙ୍କିମଚନ୍ଦ୍ରଙ୍କ 'ବିଷବୃକ୍ଷ', 'ବଙ୍ଗ ଦେଶେର କୃଷକ'; ଲାଲବିହାରୀ ଦେ'ଙ୍କ Bengal Peasant Life ଏବଂ କେନ୍ଦ୍ରାପଡ଼ାର ଏକ ଜମିଦାର କଚେରି ଘରପାଇଁ ଜଣେ ତନ୍ତୀଠାରୁ ବୈଧ ଓ ଅବୈଧ ଉପାୟରେ ଛ'ମାଣ ଆଠଗୁଣ୍ଠ ଜମି ନେବା ଆଦି ଘଟଣା ଉପରେ ଗୁରୁତ୍ୱ ଦେଇଥିଲେ। ମାତ୍ର ଗଗନେନ୍ଦ୍ର, ବର୍ତ୍ତମାନର ଯାଜପୁର ଜିଲ୍ଲା ଦର୍ପଣ ଜମିଦାରି ସଂପର୍କିତ ଷଡ଼ଯନ୍ତ୍ର ଏବଂ ୧୮୭୭ ମସିହାରେ 'ଉତ୍କଳ ଦୀପିକା'ର ଜାନୁଆରି ଓ ଫେବ୍ରୁଆରି ମାସରେ ପ୍ରକାଶିତ ଚାରିଟି ସମ୍ବାଦକୁ ଏହାର କାରଣ କହିଛନ୍ତି। ସେହି ଚାରିଟି ସମ୍ବାଦର ମୁଖ୍ୟାଂଶ "କଟକର ତେଲେଙ୍ଗାବଜାରରେ ଜଣେ ବେଶ୍ୟାର ତଂଟିକୁ କେହି ଜଣେ ଖୁରରେ କାଟି ହତ୍ୟା କରିବା" ଏବଂ ତା ଦେହ ଓ ସିନ୍ଦୁକରୁ ସୁନାଗହଣା, ଟଙ୍କା ଆଦି ନେବା ପରେ ପରେ ଜଣେ ଭଣ୍ଡାରି ଅଭିଯୋଗରେ ଧରା ହେବା ଓ ପରେ ଖଲାସ ହେବା।" ଏହି ଘଟଣା ସହିତ ଫକୀରମୋନଙ୍କ ଉପନ୍ୟାସର ଚମ୍ପା ଓ ଗୋବିନ୍ଦା ଭଣ୍ଡାରି ଉପାଖ୍ୟାନର ସାମଞ୍ଜସ୍ୟ ରହିଛି। ତେବେ 'ବାଲେଶ୍ୱର ସମ୍ବାଦବାହିକା'ର ୨୫.୧୦.୧୯୮୩ ସଂଖ୍ୟାରେ ପକୀରମୋହନ ସେନାପତିଙ୍କ ନାମ ତଳେ 'ଜମିଦାର' ଉଲ୍ଲେଖ ଥାଇ ଏକ ବିଜ୍ଞାପନ ପ୍ରକାଶ ପାଇଛି (ଦ୍ରଷ୍ଟବ୍ୟ: ଦାଶ, ଦେବେନ୍ଦ୍ର କୁମାର, ବେହେରା କୃଷ୍ଣଚରଣ,... ଫକୀରମୋହନ ଗ୍ରନ୍ଥାବଳୀ, ମୁଖବନ୍ଧ)। ସେଥିରେ ଫକୀରମୋହନ ବାଲେଶ୍ୱର ଜିଲ୍ଲାର ସମ୍ବଲପୁର ତାଲୁକର ଅନ୍ତର୍ଗତ ପାଂଚଟି ମୌଜାର ବାସିନ୍ଦାଙ୍କ ଗୋଚରାର୍ଥେ ଖଜଣା ସଂପର୍କିତ ଏକ ବିଜ୍ଞାପନ ଦେଇଛନ୍ତି। ତେଣୁ ଏଥିରୁ ଜଣାଯାଏ ଯେ, ଫକୀରମୋହନଙ୍କର ଜମିଦାରି ସଂପର୍କରେ ଅଭିଜ୍ଞତା ଥିଲା ଏବଂ କଳ୍ପନାର ପୁଟରେ କାହାଣୀଟିଏ ପ୍ରସ୍ତୁତ କରି ସେ ଛ'ମାଣ ଆଠଗୁଣ୍ଠ ଉପନ୍ୟାସର ରୂପ ଦେଇଛନ୍ତି - ଏପରି ସଂଭାବନାକୁ ଆମେ ଅସ୍ୱୀକାର କରିପାରିବା ନାହିଁ।

Fakirmohan and Laxshminath: A Comparative Study of their Short Stories(୨୦୦୪) ପ୍ରବନ୍ଧର ଓଡ଼ିଆ ରୂପାନ୍ତର ହେଉଛି- 'ଫକୀରମୋହନ

ସେନାପତି ଓ ଲକ୍ଷ୍ମୀନାଥ ବେଜବରୁଆଙ୍କ କ୍ଷୁଦ୍ରଗଳ୍ପ: ଏକ ତୁଳନାତ୍ମକ ବିଶ୍ଳେଷଣ'(୨୦୦୪)। ଏଥିରେ ସେ ଫକୀର ମୋହନ ଓ ଆହମୀୟା ଭାଷାର ଲକ୍ଷ୍ମୀନାଥ ବେଜବରୁଆଙ୍କ (ଫକୀରମୋହନଙ୍କଠାରୁ ୨୫ବର୍ଷ ସାନ) କ୍ଷୁଦ୍ରଗଳ୍ପକୁ ତୁଳନାତ୍ମକ ଭାବରେ ବଶ୍ଳେଷଣ କରି ଦୁହେଁ କିପରି ନିଜନିଜର କ୍ଷୁଦ୍ରଗଳ୍ପରେ ଆଧୁନିକ ଶିକ୍ଷା, ନାରୀଶିକ୍ଷା ଆଦି ସମାଜ ସଂସ୍କାରର ବାର୍ତ୍ତା ଦେଇଛନ୍ତି; ତାହାର ବିସ୍ତାରିତ ବ୍ୟାଖ୍ୟା କରିଛନ୍ତି।

ଲେଖକଙ୍କ 'କିଏ ଏହି ରାମଚନ୍ଦ୍ର ମଙ୍ଗରାଜ ?'(୨୦୦୮) ପ୍ରବନ୍ଧର ଏକ ପରିବର୍ଦ୍ଧିତ ବା ବିକଶିତ ରୂପ ହେଉଛି Rediscovering Ramachandra Mangaraj and Historicizing Senapati's Critique of Colonialism(୨୦୧୧)। ଏହି ପ୍ରବନ୍ଧ ଦୁଇଟିରେ ସେ 'ଛ ମାଣ ଆଠଗୁଣ୍ଠ'ର ନାୟକ ରାମଚନ୍ଦ୍ର ମଙ୍ଗରାଜଙ୍କୁ ନୂତନ ମହାଜନ ଗୋଷ୍ଠୀର ପ୍ରତିନିଧି ବୋଲି ଉଲ୍ଲେଖ କରିଛନ୍ତି। ଅତୀତରେ ରାମଚନ୍ଦ୍ର ମଙ୍ଗରାଜ ପ୍ରସଙ୍ଗରେ ନୂତନ ମହାଜନ ସଂପର୍କିତ ଧାରଣାକୁ ଡକ୍ଟର ନଟବର ସାମନ୍ତରାୟ ଠାବ କରପାରିନାହାନ୍ତି। ତେବେ ଡକ୍ଟର ଦାଶ ଗୁନ୍ନେର ମିର୍ଦ୍ଦଲ, ଡାଭିଡ୍ ହାର୍ଡ଼ିମାନ୍ ଓ ରଣଜିତ୍ ଗୁହଙ୍କ ସିଦ୍ଧାନ୍ତ ଆଧାରରେ ରାମଚନ୍ଦ୍ର ମଙ୍ଗରାଜଙ୍କୁ ଓଡ଼ିଶାରେ ନୂତନ ମହାଜନ ଶ୍ରେଣୀର ପ୍ରତିନିଧି ବୋଲି ଚମତ୍କାରଭାବେ ବିଶ୍ଳେଷଣ କରିଛନ୍ତି। ପଶ୍ଚିମବଙ୍ଗରେ ମାହାଲୱାରୀ ଭୂବନ୍ଦୋବସ୍ତ ହେତୁ ସେଠାରେ ଜମିଦାରଙ୍କ ଶକ୍ତି ବୃଦ୍ଧି ହୋଇଥିବା ସମୟରେ ଓଡ଼ିଶାରେ ରୟତୱାରି ଭୂବନ୍ଦୋବସ୍ତ ଫଳରେ ନୂତନ ମହାଜନ ଶ୍ରେଣୀର ଉଦ୍ଭବ ହୋଇଥିଲା। ତେବେ ରାମଚନ୍ଦ୍ର ମଙ୍ଗରାଜ ପ୍ରକୃତରେ ଜମିଦାର ନ ଥିଲେ; ଏହା ଗଗନେନ୍ଦ୍ରଙ୍କ ପ୍ରତିବାଦ ପ୍ରସଙ୍ଗ।

ସେହିପରି 'ରାଧାନାଥଙ୍କ କାବ୍ୟରେ ନାଟକୀୟତାର ସ୍ୱରୂପ'(୧୯୮୪) ପ୍ରବନ୍ଧ କପଟପାଶା ଅଧ୍ୟୟନକୁ ସ୍ମରଣ କରାଇଥାଏ। **ରାଧାନାଥଙ୍କ ଜାତୀୟତାବାଦ:ସ୍ୱରୂପ ଓ ଉତ୍ସ**(୨୦୦୫) ପ୍ରବନ୍ଧ ଗବେଷକ-ସ୍ଥିରୀକୃତ ରାଧାନାଥ ବ୍ରିଟିସ୍‌ବିରୋଧୀ— ଏଇ ସିଦ୍ଧାନ୍ତର ଏକ ପ୍ରତିବାଦ। ରାଧାନାଥଙ୍କ ଜାତୀୟବାଦ ହିନ୍ଦୁ ଜାତୀୟତାବାଦର ଏକ ଅନ୍ତର୍ଲିପି। ଏହାର କାରଣ ବଙ୍ଗୀୟ କବି ରଙ୍ଗଲାଲ ବନ୍ଦ୍ୟୋପାଧ୍ୟାୟ ଓ ନବୀନଚନ୍ଦ୍ର ସେନଙ୍କ ପ୍ରଭାବ। ରାଧାନାଥଙ୍କ 'ମହାଯାତ୍ରା' ଓ 'ନିଜ ସୈନ୍ୟପ୍ରତି ଶିବାଜୀ'/ଶିବାଜୀଙ୍କ ଉତ୍ସାହ ବାକ୍ୟ'/ ଶିବାଜୀଙ୍କ ଉତ୍ସାହ ବାଣୀ'ରେ କେତେକ ଅଂଶ ବାଦ ପଡ଼ିବାର କାରଣ ଓ ଏହାର ପୃଷ୍ଠଭୂମିକୁ ସେ ପୁଙ୍ଖନୁପୁଙ୍ଖ ବିଚାରକୁ ନେଇନଥିବାରୁ ତାଙ୍କ ଆଲୋଚନାର ଦୁର୍ବଳତାକୁ ସେ ଦର୍ଶାଇଛନ୍ତି। ଏବଂ, ରାଧାନାଥ ଜାତୀୟତାବାଦୀ ପ୍ରସଙ୍ଗରେ ନରେନ୍ଦ୍ରନାଥ ମିଶ୍ରଙ୍କ ଅନୁଶୀଳନକୁ ସେ ପ୍ରାୟତଃ ସ୍ୱୀକାର କରିଛନ୍ତି।

'ସାଂପ୍ରତିକ ସାହିତ୍ୟ ସମାଲୋଚନାରେ ଭାବପ୍ରବଣତା'(୧୯୯୭) ପ୍ରବନ୍ଧରେ କେତେକ ସମାଲୋଚକ କିପରି ରାଧାନାଥ ଓ ନଗେନ୍ଦ୍ରବାଳାଙ୍କ ପ୍ରଣୟକାହାଣୀକୁ ନେଇ ଅତ୍ୟନ୍ତ ଆଗ୍ରହ ବା ଭାବପ୍ରବଣତାର ସହ ଲେଖନୀ ଚାଳନା କରୁଛନ୍ତି; ତାହାର ଏକ କଳାତ୍ମକ କଟାକ୍ଷ। ସେ ସ୍ପଷ୍ଟ କରିଦେଇଛନ୍ତି, ରାଧାନାଥଙ୍କ ବ୍ୟକ୍ତିତ୍ୱ ସଂରଚନାରେ ରଙ୍ଗଲାଲ ବନ୍ଦ୍ୟୋପାଧ୍ୟାୟ ଅନ୍ୟତମ ଆଦର୍ଶ। ଏବଂ, ରାଧାନାଥ-ନଗେନ୍ଦ୍ରବାଳାଙ୍କ ସଂପର୍କକୁ କେନ୍ଦ୍ରକରି

ଦୁଇ ମୂର୍ଦ୍ଧନ୍ୟ ଗବେଷକ ଦାଶରଥି ଓ ଗଗନେନ୍ଦ୍ରଙ୍କ ମସୀଯୁଦ୍ଧ ବାସ୍ତବତା ଅବଲୋକନରେ ପାଠକମାନଙ୍କୁ ଆମୋଦିତ କରିଛି।

**ସତ୍ୟବାଦୀ ଯୁଗ ପରିକଳ୍ପନାର ଯଥାର୍ଥ**(୧୯୮୯) ପ୍ରବନ୍ଧରେ ସେ ଓଡ଼ିଆ ସାହିତ୍ୟର ଇତିହାସ ରଚନା କ୍ଷେତ୍ରରେ ସତ୍ୟବାଦୀଯୁଗ ପରିକଳ୍ପନାର ବିରୋଧ କରିଛନ୍ତି। ଏପରି କଳ୍ପନା କ୍ଷେତ୍ରରେ ବାରବର୍ଷିଆ ଯୁଗର ଧାରଣାକୁ ଅସ୍ୱୀକାର କରିଛନ୍ତି। ଏହା ସାଧକମାନଙ୍କ ପ୍ରତି ଅବିଚାର। କାରଣ ସତ୍ୟବାଦୀ ସାହିତ୍ୟସାଧକ ଗୋଷ୍ଠୀଙ୍କ ବଂଶସ୍ତମ୍ଭ ବିଂଶଶତାବ୍ଦୀର ପ୍ରଥମ ଦଶକରୁ ଆରମ୍ଭ କରି ପ୍ରାୟ ଅର୍ଦ୍ଧଶତାବ୍ଦୀ ଧରି ସାହିତ୍ୟର ପ୍ରକାଶଭଙ୍ଗୀରେ ନୂତନତା ଅବଶ୍ୟ ଆଣିଛନ୍ତି। ଲୋକଚିତ୍ତକୁ ମୁଗ୍ଧ, ଅନୁପ୍ରେରିତ, ପ୍ରଚୋଦିତ, ଉଦ୍ଭାସିତ, ଆଲୋଡ଼ିତ କରିଛନ୍ତି। ସେହି ନ୍ୟାୟରେ ସେମାନଙ୍କ ସାଧନାକାଳକୁ ସତ୍ୟବାଦୀ ଚିନ୍ତାସ୍ରୋତ କୁହାଯାଇପାରିବ। ଏହି ଚିନ୍ତାସ୍ରୋତର ପ୍ରଚ୍ଛନ୍ନ ଉତ୍ସ ପଣ୍ଡିତ ହରିହର ଦାଶ। ସେ ସତ୍ୟବାଦୀ ବିଦ୍ୟାଳୟର ପରିକଳ୍ପନା, ସ୍ଥାନ ଚିହ୍ନଟ; ଏପରିକି ସତ୍ୟବାଦୀ ସାହିତ୍ୟ ସୃଷ୍ଟିର ଅନ୍ତରାଳର ଅନ୍ୟତମ ପ୍ରେରଣାର ଉତ୍ସ। ଓଡ଼ିଶାରେ ଆଧୁନିକ ଶିକ୍ଷାର ପ୍ରସାର, ସମାଜସଂସ୍କାର, ଓଡ଼ିଆ ଜାତି ସଂରଚନା କ୍ଷେତ୍ରରେ ହରିହରଙ୍କ ଉଜ୍ଜ୍ୱଳ ଦାନକୁ ଲେଖକ ତାଙ୍କର 'ନବୋନ୍ମେଷର ଅଗ୍ରଦୂତ ସତ୍ୟବାଦୀ-ଚିନ୍ତାସ୍ରୋତର ଗଙ୍ଗୋତ୍ରୀ: ପଣ୍ଡିତ ହରିହର'(୨୦୦୬) ପ୍ରବନ୍ଧରେ ଆଲୋକପାତ କରିଛନ୍ତି। ଏବଂ, ପ୍ରସଙ୍ଗକ୍ରମେ ସତ୍ୟବାଦୀ ଓ ଶାନ୍ତିନିକେତନ ମଧ୍ୟରେ ସଂପର୍କକୁ 'ଶାନ୍ତିନିକେତନ ଓ ସତ୍ୟବାଦୀ'(୧୯୬୯-୭୦) ପ୍ରବନ୍ଧରେ ସେ ସ୍ପଷ୍ଟ କରିଦେଇଛନ୍ତି।

ପଣ୍ଡିତ ନୀଳକଣ୍ଠଙ୍କ ସାହିତ୍ୟ ବା ସାହିତ୍ୟ-ସମାଲୋଚନାର ସେ ଜଣେ ବିମୁଗ୍ଧ ପାଠକ। **ନୀଳକଣ୍ଠଙ୍କ ସମାଲୋଚନା ବୈଶିଷ୍ଟ୍ୟ** (୧୯୮୩) ପ୍ରବନ୍ଧ ତାହାର ଉଦାହରଣ। ଜଣେ ସ୍ରଷ୍ଟାକୁ ବୁଝିବାକୁ ହେଲେ ତାଙ୍କ ସୃଷ୍ଟିକୁ କେତେ ଆଗ୍ରହ, ନିଷ୍ଠା ଓ ଅନୁସନ୍ଧିତ୍ସା ସହିତ ଅଧ୍ୟୟନ କରାଯାଏ; ଗଗନେନ୍ଦ୍ରନାଥଙ୍କ ଏହି ପ୍ରବନ୍ଧଟି ତାହାର ଏକ ବଳିଷ୍ଠ ପ୍ରମାଣ। ତାଙ୍କ ସମାଲୋଚନା ଥିଲା ଗଡ୍ଡାଳିକା ପ୍ରବାହମୁକ୍ତ; ଦୃଷ୍ଟିଭଙ୍ଗୀ ମୌଳିକ ଅନ୍ତର୍ଦୃଷ୍ଟିସମ୍ପନ୍ନ; ଦେଶପ୍ରୀତି ଓ ଭାବପ୍ରବଣତାମୁକ୍ତ ଏବଂ ସଂସ୍କୃତି, ପରମ୍ପରା ଓ ପରିବେଶକୁ ଭୂମିକରି ଗତିଶୀଳ। ଗଗନେନ୍ଦ୍ରନାଥ ଦାସଙ୍କ ଉପରୋକ୍ତ ପ୍ରବନ୍ଧ ତାହାର ମର୍ମକଥା।

ଗଗନେନ୍ଦ୍ର ଐତିହାସିକ ବା ପ୍ରତ୍ନତତ୍ତ୍ୱବିଦ୍ ଭାବରେ ପରିଚିତ ପରମାନନ୍ଦ ଆଚାର୍ଯ୍ୟଙ୍କ ଓଡ଼ିଆ ସାହିତ୍ୟ ସମାଲୋଚନା ଦୃଷ୍ଟିର ଅନ୍ୟତମ ମୁଗ୍ଧ ଆଲୋଚକ। ରାଧାନାଥଙ୍କ 'ପାର୍ବତୀ' କାବ୍ୟର ଉତ୍ସ ସନ୍ଧାନ, 'କିମ୍ବଦନ୍ତୀ ଓ ମେହେର ସାହିତ୍ୟ' ଓ ସୁରେନ୍ଦ୍ର ମହାନ୍ତିଙ୍କ 'ନୀଳଶୈଳ' ଉପନ୍ୟାସ ସଂପର୍କୀତ ତିନିଟି ପ୍ରବନ୍ଧର ପ୍ରତ୍ୟକ୍ଷ୍ୟ ଅବଦାନ ସହିତ ପ୍ରତିଭା ସୃଷ୍ଟିରେ ଓଡ଼ିଆ ସମାଲୋଚନା ସାହିତ୍ୟର ଉଜ୍ଜ୍ୱଳ ପୁରୁଷ ଡକ୍ଟର ନଟବର ସାମନ୍ତରାୟଙ୍କ ପରୋକ୍ଷ ଅବଦାନକୁ 'ସତ୍ୟ ପରମାନନ୍ଦ'(୧୯୯୯-୨୦୦୬) ପ୍ରବନ୍ଧରେ ସେ ଆଲୋକପାତ କରିଛନ୍ତି।

**'ଭାତ' ଓ 'ପରକଲମ'ର ପୃଷ୍ଠଭୂମି ସନ୍ଧାନରେ**(୨୦୧୪) ପ୍ରବନ୍ଧ ଗଗନେନ୍ଦ୍ରଙ୍କ ସମାଲୋଚନାରେ ଇତିହାସବୋଧର ଉଦାହରଣ। କୁହାଯାଏ, କାଳୀଚରଣଙ୍କ 'ଭାତ'

ନାଟକର ମୁଖ୍ୟ ବକ୍ତବ୍ୟ ସାମନ୍ତବାଦବିରୋଧୀ। ଗୋପାଳ ଛୋଟରାୟଙ୍କ 'ପରକଲମ' ଗଣତନ୍ତ୍ରକୈନ୍ଦ୍ରିକ। **ଭାତର** ପୃଷ୍ଠଭୂମିରେ ୧୯୪୩-୪୪ ମସିହାର ବଙ୍ଗ ଦୁର୍ଭିକ୍ଷ – ପ୍ରାବନ୍ଧିକ କେତେକ ଆତ୍ମଚରିତ ବା ସ୍ମୃତିକଥା ଆଧାରରେ ଏହା ପ୍ରମାଣ କରିଛନ୍ତି। ବଙ୍ଗ ଦୁର୍ଭିକ୍ଷର ଚିତ୍ର ସାର୍ ଜନ ଉଡଲ୍ୟାଣ୍ଡଙ୍କ( ? ) ଅଧକ୍ଷତାରେ ପ୍ରସ୍ତୁତ ତଦନ୍ତ ରିପୋର୍ଟରେ ସ୍ପଷ୍ଟ। ତେବେ ଓଡ଼ିଶାରେ ତାହାର ପ୍ରଭାବ ଏତେ ନଥିଲା- ଅନ୍ନାଭାବ ଓ ବହୁ ଆବଶ୍ୟକ ଦ୍ରବ୍ୟର ଅଭାବ ଏହାର କାରଣ ବୋଲି ରିପୋର୍ଟରେ ସୂଚିତ। ଦୁର୍ଭିକ୍ଷରେ ବଙ୍ଗଳାର ପ୍ରାୟ ୧୦ରୁ ୨୦ଲକ୍ଷ ଲୋକଙ୍କ ଅକାଳ ବିୟୋଗ ହୋଇଥିଲା (ତତ୍ରୈବ, ପୃ.୧)। ପ୍ରକୃତରେ ଏହି ଦୁର୍ଭିକ୍ଷର ପ୍ରଭାବ ଓଡ଼ିଶାରେ କେତେ ଥିଲା; ତାହା ଅନୁସନ୍ଧାନ ବା ଗବେଷଣା ସାପେକ୍ଷ। ତେବେ ଦୈନିକ 'ସମାଜ' ୨୪ ଡିସେମ୍ବର ୧୯୪୩ ମସିହା ସଂସ୍କରଣର ପୃଷ୍ଠା ୨ରେ **'ବିପନ୍ନ ଓଡ଼ିଶାର କରୁଣ ଚିତ୍ର'** ନାମକ ଏକ ସମ୍ବାଦରୁ ଜଣାଯାଏ ଯେ, ଭାରତର ବଡଲାଟ୍ ଲର୍ଡ ୱାଭେଲ୍ ଗଞ୍ଜାମ ଓ ବାଲେଶ୍ୱର ପରିଦର୍ଶନ କରି ଏହି ଦୁଇ ଜିଲାର ଅବସ୍ଥା ବଙ୍ଗଳା ସହ ସମାନ ବୋଲି ମତ ଦେଇଛନ୍ତି। ତେଣୁ ଏକଥା ସତ୍ୟ ଯେ, ବଙ୍ଗର ପରିସ୍ଥିତି ସୁଧାରିବା ପାଇଁ ଓଡ଼ିଶାରୁ ଧାନ ଚାଉଳ ଆଦି ପଶ୍ଚିମବଙ୍ଗକୁ ଚାଲାଣ ହୋଇଛି। ସେହି ସମୟରେ ସଂଭବତଃ ଯୋଗାଣ ମନ୍ତ୍ରୀ ଗୋଦାବରୀଶ ମିଶ୍ର। ତାଙ୍କ ବିରୋଧରେ ନୀଳକଣ୍ଠ ଦାସ ଉତ୍କୋଚ ନେବାର ଅଭିଯୋଗ କରିଛନ୍ତି। ପଣ୍ଡିତ ଗୋଦାବରୀଶଙ୍କ 'ଅନ୍ନଛତ୍ର', 'ସେବତୀର ଶବ', 'ପୁଆଣିଘର' ନାମକ ତିନିଟି ଗଳ୍ପରେ ଦୁର୍ଭିକ୍ଷର ଚିତ୍ର ରହିଛି। ତେବେ ସେହି ଦୁର୍ଭିକ୍ଷର ଚିତ୍ର ସମକାଳୀନ ବା ପରବର୍ତ୍ତୀ ସାହିତ୍ୟକୃତିରେ ବିଶେଷଭାବେ ଚିତ୍ରିତ ହୋଇପାରିନାହିଁ; ଯାହା ଖାଲି ପାଦଚିହ୍ନ ଛାଡ଼ି ଯାଇଛି।

ଗଗନେନ୍ଦ୍ର ସୁରେନ୍ଦ୍ର ମହାନ୍ତିଙ୍କ ସର୍ଜନ-କର୍ମର ଅନ୍ୟତମ ବିଦଗ୍ଧ ଚର୍ଚ୍ଚାକାର। ପ୍ରବନ୍ଧଗୁଡ଼ିକ 'ମରାଳର ମୃତ୍ୟୁ:ଏକ ଅଧ୍ୟୟନ'(୧୯୭୯), 'କୂଳବୃଦ୍ଧ: ଏକ ଦୃଷ୍ଟିପାତ'(୧୯୮୧), କ୍ଷୟିଷ୍ଣୁ ସାମନ୍ତବାଦ ଓ କଥାକାର ସୁରେନ୍ଦ୍ର ମହାନ୍ତି(୧୯୮୩), 'ଶତାବ୍ଦୀର ସୂର୍ଯ୍ୟ ଏବଂ ଊନବିଂଶ ଶତାବ୍ଦୀ'୧୯୮୪, 'ଶତାବ୍ଦୀରର ସୂର୍ଯ୍ୟ: ଏକ ଦୃଷ୍ଟିପାତ'୧୯୮୭। **ମରାଳର ମୃତ୍ୟୁ** ସଂକ୍ରାନ୍ତ ଚର୍ଚ୍ଚା ଓଡ଼ିଶାର ସାଂସ୍କୃତିକ ଇତିହାସ ସହିତ ସଂପର୍କିତ। ପାରଂପରିକ-ଯୋଗ ଆଶ୍ରିତ ଜ୍ଞାନବାଦର ପ୍ରତୀକ ମରାଳ ଏବଂ ବୈଦିକ ସାହିତ୍ୟକୁ ଏହା କଳିଙ୍ଗର ଦାନ(ନୀଳକଣ୍ଠ ଦାସ)। ମାତ୍ର ସୁରେନ୍ଦ୍ରଙ୍କ ମରାଳ ଆଧୁନିକ ବ୍ୟକ୍ତିଜୀବନର କାମୋନ୍ମତ୍ତତାର ପ୍ରତୀକ। ଏହା ଜଡ଼ବାଦ ଓ ଆଧ୍ୟାତ୍ମିକ ଜ୍ଞାନ ମଧ୍ୟରେ ଦ୍ୱନ୍ଦ୍ୱର ଚିତ୍ର। ପୁନଶ୍ଚ, ଶ୍ରୀ ମହାନ୍ତିଙ୍କ **ବହୁଗଳ୍ପ** ସାମନ୍ତବାଦର କଳାତ୍ମକ ଚର୍ଚ୍ଚା ଏବଂ ଏହି କ୍ଷେତ୍ରରେ କଥାକାର ଫକୀରମୋହନଙ୍କ ଯଥାର୍ଥ ଉତ୍ତରାଧିକାରୀ— ଗଗନେନ୍ଦ୍ର ଏକଥା ସ୍ପଷ୍ଟ ଭାବରେ ଲକ୍ଷ୍ୟ କରିଛନ୍ତି। ସୁରେନ୍ଦ୍ରଙ୍କ ମଧୁସୂଦନ ଦାସ ସଂକ୍ରାନ୍ତରେ ତିନିଗୋଟି ବିଚାର ପ୍ରସ୍ତୁତ କରିଛନ୍ତି ଶ୍ରୀ ଗଗନେନ୍ଦ୍ର। ଏବଂ, ସକଳ ଚର୍ଚ୍ଚାରେ ଆଲୋଚକଙ୍କ ଇତିହାସବୋଧ ପ୍ରତୀକିତ। ମଧୁବାବୁଙ୍କ ଚରିତ୍ର ନିର୍ମାଣରେ ବହୁ ଶୂନ୍ୟତାକୁ ଗଗନେନ୍ଦ୍ର ଉଦ୍‌ଘାଟନ କରିଛନ୍ତି। ପ୍ରସଙ୍ଗକ୍ରମେ ୧୯୧୮ ମସିହାରେ ଅନୁଷ୍ଠିତ ଉତ୍କଳ ସମ୍ମିଳନୀର

ବାର୍ଷିକ ଅଧିବେଶନ ଓ ରାମଚନ୍ଦ୍ର ଭଞ୍ଜଦେଓ ଗୋପବନ୍ଧୁଙ୍କ ସମ୍ମିଳନୀ ପ୍ରତି ଅନାସକ୍ତିର କାରଣକୁ ସ୍ପଷ୍ଟ କରିଦିଆଯାଇଛି । ପୁନଶ୍ଚ, ଶତାବ୍ଦୀର ସୂର୍ଯ୍ୟ ଗ୍ରନ୍ଥରେ ଥିବା ୩୦ସଂଖ୍ୟାକ ତଥ୍ୟଗତ ପ୍ରମାଦର ସୂଚନା ଓ ବ୍ୟାଖ୍ୟା ରହିଛି । ଏବଂ, ଏହି ତଥ୍ୟଗତ ପ୍ରମାଦ ମଧ୍ୟ ବିଶ୍ଳେଷଣରେ ସୁରେନ୍ଦ୍ରଙ୍କୁ ଦିଗ୍‌ଭ୍ରାନ୍ତ କରିଦେଇଛି । ଶତାବ୍ଦୀର ସୂର୍ଯ୍ୟ, କୁଳବୃଦ୍ଧ ଅବଶ୍ୟ ଚରିତ ଉପନ୍ୟାସ । ମାତ୍ର ଉପନ୍ୟାସ ଆଳରେ ଇତିହାସକୁ ଅମର୍ଯ୍ୟାଦା ଯେ ଅନୁଚିତ- ଅତ୍ୟନ୍ତ ସ୍ପଷ୍ଟ ଭାଷାରେ ଗଗନେନ୍ଦ୍ର ପ୍ରକାଶ କରିଛନ୍ତି । ପୁଣି ଉପନ୍ୟାସ-କଳା ଦୃଷ୍ଟିରୁ ଏଥିରେ ସୂଚୀତ ପାଦଟୀକା, ନିଜସ୍ୱ ମତ ଓ ତଥ୍ୟ-ବିଶ୍ଳେଷଣ ଅପ୍ରାତିକର ବୋଲି ସ୍ପଷ୍ଟ କରି ଦେଇଛନ୍ତି । **ଦେଶ କାଳ ପାତ୍ର: ତଥ୍ୟନିଷ୍ଠତା**(୨୦୦୨) ପ୍ରବନ୍ଧ ଅନ୍ୟ ଏକ ତଥ୍ୟନିଷ୍ଠ ରଚନା । ଏଥିରେ 'ସମ୍ବେଦନଶୀଳତା, ନାଟକୀୟତା ଓ ସର୍ଜନଶୀଳତାର ରଙ୍ଗ, ପୁଟ, ରସ, ଗନ୍ଧ ଓ ସ୍ପର୍ଶ' ଦେଇ ଇତିହାସକୁ ସାହିତ୍ୟ, ବହିକୁ ସତ୍ୟନିଷ୍ଠ ବୋଲି ଦାବି କରୁଥିବା ଗ୍ରନ୍ଥକର୍ତ୍ତା ଜଗନ୍ନାଥ ପ୍ରସାଦ ଦାସଙ୍କୁ ସମୀକ୍ଷକ ଶ୍ରୀଯୁକ୍ତ ଦାଶ ସମାଲୋଚନା କରିଛନ୍ତି । ଗ୍ରନ୍ଥ ସଂଯୋଜିତ ବ୍ୟକ୍ତି, ସ୍ଥାନ ଓ ବହିର ନାମ; ମସିହା, ସମୟ ବା କାଳ ଆଦି ବିଭିନ୍ନ ତଥ୍ୟଗତ ପ୍ରମାଦକୁ ଆଲୋଚକ ସ୍ପଷ୍ଟ କରିଦେଇଛନ୍ତି ।

ସେହିପରି **ଦେଶ କାଳ ପାତ୍ର**ର ଦେଶ ଓ କାଳ (୨୦୦୪) ପ୍ରବନ୍ଧରେ ଯେ ଦେଶ ବା ସ୍ଥାନ ଆଦିକୁ ଜଗନ୍ନାଥ ପ୍ରସାଦ ଠିକ୍ ଭାବରେ ଉପସ୍ଥାପନ କରିପାରିନାହାନ୍ତି ବା ଉପସ୍ଥାପନରେ ଭାରସାମ୍ୟ ରଖିନାହାନ୍ତି ବୋଲି ଏକଥା ଗଗନେନ୍ଦ୍ର ପୁନଶ୍ଚ ଦାବି କରିଛନ୍ତି । ଦେଶ ବା ସ୍ଥାନ ନିର୍ବାଚନରେ ବହିରେ ୨୧ଟି ସ୍ଥାନକୁ ଗୁରୁତ୍ୱ ଦିଆଯାଇଥିବା ବେଳେ କଟକ, ପୁରୀ ଓ ଏହାର ନିକଟବର୍ତ୍ତୀ ସ୍ଥାନଗୁଡ଼ିକୁ କେନ୍ଦ୍ରକରି ଘଟଣା ବର୍ଣ୍ଣିତ ହୋଇଥିଲେ ମଧ୍ୟ ପଶ୍ଚିମ ଓ ଦକ୍ଷିଣ ଉପାନ୍ତର ବହୁ ସ୍ଥାନକୁ ଉପେକ୍ଷା କରାଯାଇଛି । ବହିଟିର କଥାଭାଗ ୧୮୫୯ ଓ ୧୯୦୭ ମସିହା ମଧ୍ୟରେ ସୀମିତ । ମାତ୍ର ସମକାଳୀନ ଓଡ଼ିଶାରେ ସେପରି କିଛି ଉଲ୍ଲେଖନୀୟ ଘଟଣା ଘଟିନାହିଁ ବୋଲି ସେ ଦର୍ଶାଇଛନ୍ତି । ପୁଣି ଏହି ୪୯ ବର୍ଷର ଘଟଣା ଭିତରେ ୧୧ ବର୍ଷ ବାଦ୍ ପଡ଼ିଛି । ଏଥିସହିତ ୧୮୮୦ରେ ମଧୁବାବୁ ପ୍ରବାସରୁ କଟକ ଫେରିବା, ୧୯୦୩ର 'ଗଞ୍ଜାମ ଜାତୀୟ ସମିତି'ର ଅଧିବେଶନ ଓଡ଼ିଆ ଜାତିଗଠନରେ ଏକ ସ୍ମରଣୀୟ ବର୍ଷ ହୋଇଥିବାରୁ ତାହାକୁ ବାଦ୍ ଦେବା ଓ ୧୯୦୫ରେ ଓଡ଼ିଶା ସହ ସମ୍ବଲପୁର ମିଶ୍ରଣ ବର୍ଷ ଏ ବହିରେ କୌଣସି ଗୁରୁତ୍ୱ ରଖିନାହିଁ । ଏହିସବୁ କାରଣ ଯୋଗୁଁ ବହି ଖଣ୍ଡିକ ଓଡ଼ିଆ ଜାତି ନିର୍ମାଣରେ ଆପାତତଃ ଅସଂପୂର୍ଣ୍ଣ ପ୍ରତିଲିପି ।

ଯତୀନ୍ଦ୍ରମୋହନ ମହାନ୍ତିଙ୍କଦ୍ୱାରା ଇଂରେଜୀରେ ଲିଖିତ ଓଡ଼ିଆ ସାହିତ୍ୟର ଇତିହାସ, ଏକ ସମାଲୋଚନାମୂଳକ ବହି ହୋଇଥିବାରୁ ତାହାକୁ ଏହି ଆଲୋଚନା ପରିସରଭୁକ୍ତ କରାଯାଇପାରେ । ଶ୍ରୀଯୁକ୍ତ ଦାଶ 'ଓଡ଼ିଆ ସାହିତ୍ୟର ଇଂରାଜୀ ଇତିହାସ'(୨୦୦୭) ପ୍ରବନ୍ଧରେ ଏହି ଗ୍ରନ୍ଥକୁ ମୂଲ୍ୟ ଓ ମାନରେ ଏକ ଅସଫଳ କୃତି ବୋଲି ଅତ୍ୟନ୍ତ ସ୍ପଷ୍ଟ ଭାବରେ ଉଲ୍ଲେଖ କରିଛନ୍ତି । ବହିରେ ଥିବା ଅନେକ ତଥ୍ୟଗତ ପ୍ରମାଦ, ଭିତ୍ତିହୀନ ମନ୍ତବ୍ୟ ଓ ସାହିତ୍ୟର ନିର୍ଦ୍ଦିଷ୍ଟ କାଳକୁ ଉଲ୍ଲେଖ କରିବାରେ ଆନୁପାତଜ୍ଞାନର ଅଭାବ—ଏପରିକି

ସାହିତ୍ୟର ଧାରାକୁ ଗୁରୁତ୍ୱ ନ ଦେଇ ନିର୍ଦ୍ଦିଷ୍ଟ ସ୍ରଷ୍ଟା ବା କୃତିକୁ ଅତ୍ୟଧିକ ଗୁରୁତ୍ୱ ଦିଆଯିବା କଥା ଲେଖକ ଯାହା ଉଲ୍ଲେଖ କରିଛନ୍ତି, ତାହା ଯଥାର୍ଥ ମନେହୁଏ। ଏ ବହି ଅଣଓଡ଼ିଆ ପାଠକମାନଙ୍କୁ ଓଡ଼ିଆ ସାହିତ୍ୟ ସଂପର୍କରେ ଏକ ମୋଟାମୋଟି ବିଜ୍ଞାନସମ୍ମତ ଧାରଣା ଦେବାରେ ଅସମର୍ଥ।

ସାହିତ୍ୟ-ସମାଲୋଚନାକୁ ସର୍ଜନାତ୍ମକ ସାହିତ୍ୟ କୁହାଯିବ କି ନାହିଁ, ତତ୍‌ସଂପର୍କରେ ଶ୍ରୀଯୁକ୍ତ ଦାଶଙ୍କର ବ୍ୟକ୍ତିଗତ ମତ ରହିଛି; ଯାହା ଗୁରୁତ୍ୱପୂର୍ଣ୍ଣ। କେବଳ ଗଳ୍ପ, ଉପନ୍ୟାସ, ନାଟକ ବା କାବ୍ୟକବିତା ଆଦି ମନୋରଂଜନଧର୍ମୀ ତଥା ଲୋକପ୍ରିୟ ସାହିତ୍ୟକୁ ହିଁ ସର୍ଜନାତ୍ମକ ସାହିତ୍ୟ କୁହାଯିବା ଏକ ମିଥ୍ୟା-ପ୍ରବଂଚନା(ନବଦିଗନ୍ତର ସନ୍ଧାନରେ, ୨୦୧୬, ଉପୋଦ୍‌ଘାତ, ପୃ.୧୫,୧୬)। ମାନବବିଦ୍ୟା ଓ ସମାଜବିଜ୍ଞାନ କ୍ଷେତ୍ରରେ ଗବେଷଣା ଓ ସାହିତ୍ୟ-ସମାଲୋଚନା ମଧ୍ୟ ସର୍ଜନାତ୍ମକ ବୋଲି ଶ୍ରୀଯୁକ୍ତ ଦାଶ ଯାହା ଉଲ୍ଲେଖ କରିଛନ୍ତି (ତତ୍ରୈବ, ପୃ.୧୬) ତାହା ଆଲୋଚନାର ଅପେକ୍ଷା ରଖେ। ତେବେ ସମାଲୋଚନା-ସାହିତ୍ୟକୁ ସର୍ଜନାତ୍ମକ ବୋଲି ସ୍ୱୀକାର କରିବାରେ ସମସ୍ୟା ରହିଛି କି?- ଏହା ଅବଶ୍ୟ ବିଚାର୍ଯ୍ୟ।

**ସମାଲୋଚନା ପଦ୍ଧତି**

ଗଗନେନ୍ଦ୍ର ଆପଣା ଆଲୋଚନାଗୁଡ଼ିକରେ ପୃଷ୍ଠଭୂମି ଓ ପରିବେଶକୁ ସର୍ବାଧିକ ଗୁରୁତ୍ୱ ଦେଇଛନ୍ତି। ଏହି ପଦ୍ଧତିରେ ଇତିହାସ, ନୃତତ୍ତ୍ୱ, ଅର୍ଥଶାସ୍ତ୍ର ଓ ଭାଷାବିଜ୍ଞାନ ପ୍ରାଧାନ୍ୟ ପାଇଥାଏ। ତେବେ ଅନୁଶୀଳନରେ ଇତିହାସର ଅଧିକ ଗୁରୁତ୍ୱ ରହିଛି। ଗଗନେନ୍ଦ୍ରଙ୍କର ହାର୍ଭାଡ-ଭୁବନେଶ୍ୱର ପ୍ରକଳ୍ପ ସହିତ ସମ୍ପର୍କ ଏହାର ପ୍ରଧାନ କାରଣ। ଏ କ୍ଷେତ୍ରରେ ସେ ପଣ୍ଡିତ ନୀଳକଣ୍ଠ, ସୁରେନ୍ଦ୍ର ମହାନ୍ତି, ଚିତ୍ତରଂଜନ ଦାସ ଓ ନଟବର ସାମନ୍ତରାୟଙ୍କ ଯଥାର୍ଥ ଦାୟାଦ। ପଣ୍ଡିତ ନୀଳକଣ୍ଠଙ୍କ ବିଚାରରେ ପୃଷ୍ଠଭୂମି-ପରିବେଶ-କୈନ୍ଦ୍ରିକ ଆଲୋଚନାର ଅନ୍ୟ ପରିଭାଷା- 'ଚାହାଣି, ଚଳଣି, ଚମକ', ଯାହାକୁ ପରମ୍ପରା, ପରିସ୍ଥିତି ଓ ପୁରୋଦୃଷ୍ଟି' ଭାବରେ ଚିହ୍ନିତ କରାଯାଇପାରିବ। ଶ୍ରୀଯୁକ୍ତ ଦାଶ ନଟବର ସାମନ୍ତରାୟ, ପଣ୍ଡିତ ନୀଳକଣ୍ଠଙ୍କ ପ୍ରସ୍ତାବିତ ସାହିତ୍ୟ-ସମାଲୋଚନା ପଦ୍ଧତିର ବ୍ୟାବହାରିକ ଉପଯୋଗିତାକୁ ଆଖିରେ ରଖି ଏହାକୁ ବିଜ୍ଞାନ-ଦୃଷ୍ଟି ଦେଇଛନ୍ତି। ତେଣୁ ଗଗନେନ୍ଦ୍ର ଦାସଙ୍କ ବିଚାର ବହୁ ଭାବରେ ଆନ୍ତର୍ବିଦ୍ୟାଭିତ୍ତିକ। ତାଙ୍କ ମତରେ- "ସମୟ-ସ୍ରୋତର ପରିବର୍ତ୍ତନ ସଙ୍ଗେ ସାହିତ୍ୟର ରଙ୍ଗ କିପରି ବଦଳିଯାଏ, ତାହା ଜାଣିବାପାଇଁ 'ସମୟ' ଓ 'ସାହିତ୍ୟ-ସୃଷ୍ଟି' ଏ ଉଭୟକୁ ଏକସଙ୍ଗେ ଅଧ୍ୟୟନ କରିବା ଉଚିତ।" ତେବେ ଗଗନେନ୍ଦ୍ରନାଥ ଏହାକୁ 'ପୃଷ୍ଠଭୂମି-ପରିବେଶ-କୈନ୍ଦ୍ରିକ' ନାମରେ ଚିହ୍ନାଇଛନ୍ତି। 'ପଣ୍ଡିତ ନୀଳକଣ୍ଠଙ୍କ ସମାଲୋଚନା ବୈଶିଷ୍ଟ୍ୟ' ପ୍ରବନ୍ଧରେ ସେ ଓଡ଼ିଆ ପାଠକମାନଙ୍କୁ ସମାଲୋଚନା ପ୍ରସଙ୍ଗରେ ପ୍ରଥମ କରି ଇଂରେଜୀ ପରିଭାଷା Contextualର ସୂଚନା ଦେଇଛନ୍ତି। ତେବେ ତୁଳନାତ୍ମକ ଭାବରେ ଦେଖିଲେ, ଗଗନେନ୍ଦ୍ରଙ୍କ କନଟେକ୍ସଟର ପରିସୀମା ନଟବର ସାମନ୍ତରାୟଙ୍କ କନଟେକ୍ସଟର ପରିସୀମାଠାରୁ ବହୁ ବ୍ୟାପକ।

ଶ୍ରୀଯୁକ୍ତ ଦାଶ ଏହି ପଦ୍ଧତି ଅବଲମ୍ବନରେ **ସାରଳାମହାଭାରତ, ବୈଦେହୀଶବିଳାସ, ଦେଉଳତୋଳା** ଆଦି କୃତିର ଅନୁଶୀଳନ ଓ ମୂଲ୍ୟାୟନରେ ପାରମ୍ପରିକତା ଓ ପ୍ରଚଳିତ ବିଚାରଧାରାକୁ ପରିହାର କରି ସ୍ୱାତନ୍ତ୍ର୍ୟ ଓ ବୈଶିଷ୍ଟ୍ୟ ଦେଖାଇ ପାରିଛନ୍ତି। ସେହିପରି ଫକୀରମୋହନ, ରାଧାନାଥ, ପଣ୍ଡିତ ନୀଳକଣ୍ଠ, ପଣ୍ଡିତ ଗୋଦାବରୀଶ, ସୁରେନ୍ଦ୍ର ମହାନ୍ତି, ଗୋପାଳ ଛୋଟରାୟ, ଜଗନ୍ନାଥ ପ୍ରସାଦ ଦାସ ଆଦିଙ୍କ ଆକଳନରେ ଗତାନୁଗତିକତା ମୁକ୍ତ ହୋଇ ନୂତନ ଦୃଷ୍ଟିକୋଣର ପରିଚୟ ଦେଇଛନ୍ତି। ଜାତୀୟ ମହାକାବ୍ୟ ଭାବରେ **ସାରଳାମହାଭାରତ** ଓ ଫକୀରମୋହନଙ୍କର ଗଦ୍ୟଶୈଳୀର ଉତ୍ସ ଆବିଷ୍କାରରେ ତାଙ୍କ ଦୃଷ୍ଟିଭଙ୍ଗୀ ସ୍ୱତନ୍ତ୍ର। ଓଡ଼ିଶାର ଇତିହାସ, ଜନ୍ ବୀମ୍ସ, ନୃତତ୍ତ୍ୱବିଦ୍ M.N. Srinivas, D.G. Mandelbaum, James Freeman, Martin Orans ଓ ଅର୍ଥନୀତିବିଦ୍ Gunner ଆଦିଙ୍କ ଆଲୋଚନା ପରିପ୍ରେକ୍ଷୀରେ ସେ ଫକୀରମୋହନଙ୍କ ବ୍ୟକ୍ତିତ୍ୱ ଓ ସାହିତ୍ୟକୁ ନୂତନ ଆଲୋକରେ ଉଦ୍‌ଭାସିତ କରିବା ସହ ରାଧାନାଥଙ୍କ କାବ୍ୟ ପ୍ରେରଣାର ଉତ୍ସ ଆବିଷ୍କାର ପ୍ରଚେଷ୍ଟାରେ ବହୁ ନୂତନ ତଥ୍ୟକୁ ବିଚାରକୁ ନେଇଛନ୍ତି। ପୁଣି ଭାଷାବିଜ୍ଞାନକୁ ସାହିତ୍ୟ-ସମାଲୋଚନାରେ ପ୍ରୟୋଗକରି ରାଧାନାଥଙ୍କ କାବ୍ୟର ନାଟକୀୟତା, **କପଟପାଶାର** ଶୈଳୀ ଓ ଫକୀରମୋହନଙ୍କ ଗଦ୍ୟରୀତିର ଉତ୍ସ ଆବିଷ୍କାରରେ ସଫଳ ହୋଇଛନ୍ତି। ବିଭିନ୍ନ ପ୍ରସଙ୍ଗରେ ସେ ପଣ୍ଡିତ ନୀଳକଣ୍ଠ, ପରମାନନ୍ଦ ଆଚାର୍ଯ୍ୟ, କୃଷ୍ଣଚନ୍ଦ୍ର ପାଣିଗ୍ରାହୀ, ନଟବର ସାମନ୍ତରାୟ, କେଦାରନାଥ ମହାପାତ୍ର, ସୁରେନ୍ଦ୍ର ମହାନ୍ତି, ଜଗନ୍ନାଥ ପ୍ରସାଦ ଦାସ ଓ ଦାଶରଥି ଦାସ ଆଦି ବିଦ୍ୱାନଙ୍କ ଅଭିମତ ଓ ବକ୍ତବ୍ୟ ସଂପର୍କରେ ପ୍ରାମାଣିକ ତଥ୍ୟ ଓ ବଳିଷ୍ଠ ଯୁକ୍ତି ଭିତ୍ତିରେ ପ୍ରଶ୍ନ ଉଠାଇଛନ୍ତି। ଏପରିକି ସ୍ୱକୀୟ ବିକଳ୍ପ ମତ ଉପସ୍ଥାପନରେ ଅଭୂତପୂର୍ବ ସାହସିକତା ଦେଖାଇଛନ୍ତି। ପ୍ରକୃତରେ ଦେଖିଲେ, ସେ ପ୍ରଚଳିତ ଚିନ୍ତା, ବିଚାରଧାରା ତଥା ମତକୁ ବିରୋଧ କରି ନୂତନ ଓ ପ୍ରାମାଣିକ ତଥ୍ୟର ଉପସ୍ଥାପନ ଏବଂ ପୁରାତନ ତଥ୍ୟର ନୂତନ ଭାବରେ ସଜ୍ଜୀକରଣ କରିଛନ୍ତି। ଏହା ତାଙ୍କ ନିର୍ଭୀକତା ଓ ଅନ୍ତର୍ଦୃଷ୍ଟିର ପରିଚୟ।

'ସରସ୍ୱତୀ ଫକୀରମୋହନ: ସାହିତ୍ୟ ଓ ବ୍ୟକ୍ତିତ୍ୱ' ବହିର ଉପୋଦ୍‌ଘାତରେ ଗବେଷଣା-ପ୍ରବିଧି ସମ୍ପର୍କରେ ସେ ଚର୍ଚ୍ଚା କରିଛନ୍ତି। ସେ କୃତିକୈନ୍ଦ୍ରିକ ଓ ପୃଷ୍ଠଭୂମି-ପରିବେଶ-କୈନ୍ଦ୍ରିକ ପଦ୍ଧତି ଅନୁଗାମୀ। ଏହା ଏକ ଜଟିଳ ପଦ୍ଧତି। କୃତିକୈନ୍ଦ୍ରିକ ସମାଲୋଚନା ରଚନାର ଗଠନରୀତି, ଚିତ୍ରକଳ୍ପ, ମିଥ୍ ଓ ପ୍ରତୀକ ଏବଂ ପୃଷ୍ଠଭୂମି-ପରିବେଶକୈନ୍ଦ୍ରିକ ଚର୍ଚ୍ଚା ରଚନାର ଇତିହାସ, ନୃତତ୍ତ୍ୱ, ସମାଜତତ୍ତ୍ୱ ଅନୁଶୀଳନ କରିଥାଏ।

ଏ ପ୍ରସଙ୍ଗରେ ଓଡ଼ିଆ ସାହିତ୍ୟରେ କୃତିକୈନ୍ଦ୍ରିକ ସାହିତ୍ୟ-ସମାଲୋଚନା ବା ନୂତନ ସାହିତ୍ୟାଦର୍ଶର ଅୟମାରମ୍ଭ ସଂପର୍କରେ ସୂଚନା ଦିଆଯାଇପାରେ। ଊନବିଂଶ ଶତକର ଶେଷ ଦଶକରେ "ବିଜୟ ଚନ୍ଦ୍ର ମଜୁମ୍‌ଦାର ଓ ଲାଲା ରାମନାରାୟଣ ଉଦ୍ଦେଶ୍ୟମୂଳକ ଭାବରେ ଏକ ନୂତନ ସାହିତ୍ୟାଦର୍ଶ ଓ ନୂତନ ସାହିତ୍ୟ ସମାଲୋଚନା ପଦ୍ଧତି ପ୍ରବର୍ତ୍ତନ କରିଛନ୍ତି। ଏପରି ଉଦ୍ୟମର ଅନ୍ତରାଳରେ ପ୍ରଚ୍ଛନ୍ନ ଉଦ୍ଦେଶ୍ୟ, ସେତେବେଳର ଜଣେ

କ୍ଷମତାଶୀଳ ଓ ପ୍ରଭାବଶାଳୀ ବ୍ୟକ୍ତି ତଥା କବି ରାଧାନାଥ ରାୟଙ୍କ କାବ୍ୟକୃତିର ଉତ୍କର୍ଷ ଓ ମହତ୍ତ୍ୱ ପ୍ରତିପାଦନ।"(ସରସ୍ୱତୀ ଫକୀରମୋହନ ସାହିତ୍ୟ ଓ ବ୍ୟକ୍ତିତ୍ୱ, ୨୦୦୬, ପୃ.୩)। କୃତିର ବାହାରକୁ ନଯାଇ ବା ପରିବେଶ-ପୃଷ୍ଠଭୂମିକୁ ଅନୁଶୀଳନ ନକରି କେବଳ କୃତିର ଆଲୋଚନାରେ ଜଣକୁ ବଡ଼-ସାନ କରାଯାଇପାରିବ, ମାତ୍ର ସମାଜ ଓ ସାହିତ୍ୟର ସମ୍ପର୍କ ଆବିଷ୍କାର ସମ୍ଭବ ହେବ ନାହିଁ। କାରଣ ସମାଜ, ସାହିତ୍ୟ ଓ ବ୍ୟକ୍ତି ପରସ୍ପର ସହିତ ସୂତ୍ରାୟିତ। ଏଗୁଡ଼ିକ ମଧ୍ୟରୁ କୌଣସି ଗୋଟିଏକୁ ବିଯୁକ୍ତ କରି ସମଗ୍ରର ଚିତ୍ରାୟନ କେବଳ ଅତିକଳ୍ପନା। ଗଗନେନ୍ଦ୍ରଙ୍କ ମେଧା ଏହି ବାସ୍ତବତାକୁ ଅନୁଭବ କରିଛି। ଏବଂ, ତାଙ୍କ ସମାଲୋଚନା ହୋଇଛି ତାହାର ଯଥାର୍ଥ ଉଦ୍‌ଭାସନ।

**ସମାଲୋଚନାର ଭାଷା ଓ ଶୈଳୀ**

ଗଗନେନ୍ଦ୍ରଙ୍କ କେତୋଟି ପ୍ରବନ୍ଧର କଳେବର ପ୍ରାୟ ଚାଳିଶ-ପଚାଶ ପୃଷ୍ଠାବିଶିଷ୍ଟ। ଦୀର୍ଘତା ସାଧାରଣ ପାଠକଙ୍କ ପକ୍ଷରେ ରଚନାକୁ ଏକସମୟରେ ପୂର୍ଣ୍ଣ କରିବାରେ ଧୈର୍ଯ୍ୟଚ୍ୟୁତି ଘଟାଇବାର ବହୁ ସଂଭାବନା ରହିଛି। କିନ୍ତୁ ମୌଳିକ ଗବେଷଣାରେ ବିଶ୍ୱାସୀମାନଙ୍କପାଇଁ ଏଗୁଡ଼ିକ ମୋଦକ ପରି। ପୁଣି ବହୁତଥ୍ୟରେ ଭାରାକ୍ରାନ୍ତ ତାଙ୍କ ଅଧିକାଂଶ ପ୍ରବନ୍ଧ ବେଳେବେଳେ କେତେକ ପାଠକଙ୍କୁ ତଥ୍ୟଜାଲରେ ଛନ୍ଦି ପକାଇବାର ଆଶଙ୍କା ରହିଛି। ସେହିପରି ବେଳେବେଳେ ୫୦ଟି ଶବ୍ଦରେ ଗଠିତ ବାକ୍ୟ(ଦ୍ରଷ୍ଟବ୍ୟ: ସରସ୍ୱତୀ ଫକୀରମୋହନ: ସାହିତ୍ୟ ଓ ବ୍ୟକ୍ତିତ୍ୱ ୨୦୦୬, ପୃ.୧୯, ୩୫ରେ ଯଥାକ୍ରମେ ୫୫ ଓ ୭୯ ଟି ଶବ୍ଦ)କୁ ପାଠକ ଥରକେ ବୁଝିବାରେ ସାମାନ୍ୟ ଅସମର୍ଥ ହୋଇଥାଏ। ସେହି ବାକ୍ୟକୁ ଆଉଥରେ ସତର୍କତାର ସହ ପଢ଼ି ବୁଝିବାକୁ ଚେଷ୍ଟାକରେ। ପୁଣି ଗୋଟିଏ ଗୋଟିଏ ବାକ୍ୟରେ ଏକାଧିକ 'ଓ'ର ବ୍ୟବହାର ପାଠକର କାନକୁ ଅଡୁଆ ଲାଗିବାର ସଂଭାବନାକୁ ମଧ୍ୟ ଏଡାଇ ଦିଆଯାଇ ନ ପାରେ। ଏପରିକି ଗୋଟିଏ ବାକ୍ୟରେ ପାଂଚଟି 'ଓ' ବ୍ୟବହାରର ଦୃଷ୍ଟାନ୍ତ ମିଳେ (ଦେଖନ୍ତୁ- ଓଡ଼ିଆର ସ୍ୱାଭିମାନ ଓ ଅନ୍ୟାନ୍ୟ ପ୍ରସଙ୍ଗ, ୨୦୧୫, ପୃ.୩୧)। ଓଡ଼ିଶାର ସେ ବୋଧହୁଏ ଏକମାତ୍ର ଲେଖକ ଯିଏ ଓବ୍‌ଲିକ୍ ଦେଇ ଏକ ସମୟରେ ଦୁଇଟି ଅବୟକୁ (ଓ / ବା) ଲେଖିଥାଆନ୍ତି। ଯଥା: "... ବିଶେଷ- ପରିଶୋଧନ ଓ /ବା ପରିବର୍ତ୍ତନ ଓ /ବା ପରିବର୍ଦ୍ଧନର ସ୍ପର୍ଶ ଲାଗିଛି"(ନବଦିଗନ୍ତର ଆହ୍ୱାନରେ, ୨୦୧୪, ପୃ.୬)।

ସେ ପ୍ରଥମେ ପ୍ରଥମେ 'ଏବଂ' ଅବ୍ୟୟର କ୍ୱଚିତ ବ୍ୟବହାର କରିଛନ୍ତି। ଏବଂ, ପରବର୍ତ୍ତୀ କାଳରେ ତାହା ପ୍ରାୟତଃ ଦେଖିବାକୁ ମିଳେନାହିଁ। ଓଡ଼ିଆ ଲିଖନ ପରଂପରାରେ ଶବ୍ଦ ସହ ପ୍ରତ୍ୟୟ ଲାଗିକରି ରହିବା କାରଣରୁ ସେ ସର୍ବଦା 'ଦ୍ୱାରା' ଓ 'ପାଇଁ'କୁ ଶବ୍ଦ ସହ ଯୁକ୍ତକରି ଲେଖନ୍ତି। ଏହି ପରମ୍ପରା ଓଡ଼ିଆରେ କମ୍ ଦେଖାଯାଏ। ବାକ୍ୟକୁ 'ଓ', 'ବା', 'ତଥା', 'ଏପରିକି' ଆଦି ଉପାଦାନରେ ବାନ୍ଧି ରଖିଥାନ୍ତି ଯେ, ଗୋଟିକ ଉପରୁ ଆଖି ଖସିଗଲେ ଅର୍ଥ ବିଗିଡ଼ି ଯିବାର ବହୁ ସଂଭାବନା ଥାଏ। ''ଷ୍ଟିମର ବୁଡ଼ିଯିବାର ଆଶଙ୍କାରେ କବିବର ରାଧାନାଥ ଲୁଗା କାନିରେ ଅଫିମ ବାନ୍ଧିବା ପ୍ରସଙ୍ଗ ସହ ଟାଇଟନିକ ଜାହାଜ

ବୁଡ଼ିବାବେଳେ ଲାଇଫ୍ ବୋଟ୍‌ରେ ଆଶ୍ରୟ ନେଉଥିବା କେତେକ ଯାତ୍ରୀ ସାଙ୍ଗରେ ସିଗାରେଟ୍, ମଦପୂର୍ଣ୍ଣ ଫ୍ଲାସ୍କ ଆଦି ନେବାର'' ତୁଳନାତ୍ମକ ଉଦାହରଣରୁ ଜଣେ ଯୁକ୍ତିବାଦୀ ଓକିଲଙ୍କୁ ମାନସପଟରେ ଆବିଷ୍କାର କରିବା ଭଳି ମନେହୁଏ। ପୁଣି ତାଙ୍କ ଆଲୋଚନାକୁ ମନଦେଇ ପଢ଼ିବାବେଳେ ଶବ୍ଦର ଶକ୍ତି ଅଛି; ତାହା ହୃଦୟଙ୍ଗମ କରିହୁଏ। ଆଲୋଚନାରେ ଉପଯୁକ୍ତ ଶବ୍ଦର ବ୍ୟବହାରରୁ ତାଙ୍କ ଉଚ୍ଚାଙ୍ଗ ବ୍ୟକ୍ତିତ୍ୱର ପରିଚୟ ମିଳିଥାଏ।

**ସମାଲୋଚନାମୂଳକ ରଚନାରେ ବ୍ୟକ୍ତିତ୍ୱର ଆଭାସ**

ଗଗନେନ୍ଦ୍ର ଓଡ଼ିଶାର ବୋଧହୁଏ ଏକମାତ୍ର ବ୍ୟକ୍ତିତ୍ୱ; ଯିଏ ସମାଲୋଚନା କ୍ଷେତ୍ରରେ ଅତ୍ୟନ୍ତ ସ୍ପଷ୍ଟ ଓ ନିର୍ଭୀକ। ଏପରିକି ଅପ୍ରିୟ ସତ୍ୟକୁ ବି ଉଭୟ ପାଟି ଓ କଲମରେ ପ୍ରକାଶ କରିପାରନ୍ତି। ସେ ସଭାସମିତି-ପ୍ରିୟ ନୁହନ୍ତି। ତେଣୁ ପାଟି ଅପେକ୍ଷା ତାଙ୍କ କଲମର ତେଜ ଅଧିକ। ପ୍ରଶଂସା, ନିନ୍ଦା, ଖ୍ୟାତି, ଚାପ, ଚୁଗୁଲିକୁ ଖାତିର ନକରି ସେ ଏକୁଟିଆ ଲଢ଼େଇ କରିବାକୁ ଆଗେଇ ଆସନ୍ତି। ଯେମିତି Henrik Ibsenu 'An Enemy off the people ନାଟକର ଚରିତ୍ର ଡକ୍ଟର ସ୍ଟକ୍‌ମାନ୍ନଙ୍କ ... ବକ୍ତବ୍ୟ "... the strongest man in the world stands must alone" ବକ୍ତବ୍ୟ ପରି। ପୁଣି ସ୍ଟକ୍‌ମାନ୍ନଙ୍କ ଆଉ ଏକ ବକ୍ତିବ୍ୟକୁ ଯେମିତି ଜୀବନର ଜପାମାଳି କରିଛନ୍ତି- "But now I am going to sharpen my pen till they feel its point; I shall dip it in venom and gall; I shall hurl my inkpot at their heads!" ଏହି ଇଂରାଜୀ ଉକ୍ତି ଦୁଇଟିକୁ ସେ ଆପଣାର ଏକ ବହିର ପ୍ରମୁଖ ପୃଷ୍ଠାରେ ସ୍ଥାନ ଦେଇଛନ୍ତି।

ତେବେ ଗଗନେନ୍ଦ୍ରନାଥଙ୍କ ଏହି ସାହସ ଓ ସତ୍ୟକଥନ ପ୍ରସଙ୍ଗରେ ଓଡ଼ିଆ ଭାଷା-ସାହିତ୍ୟର୍ ଦୁଇଜଣ ପ୍ରତିଭା ମାୟାଧର ମାନସିଂହ ଓ ଗୋଲୋକ ବିହାରୀ ଧଳଙ୍କ ନାମ ସ୍ମରଣକୁ ଆସେ। ମାନସିଂହଙ୍କ ଓ ଧଳଙ୍କ କଲମ ଅନେକଙ୍କୁ ସାବାଡ଼ କରିଛି। ଧଳ ଆପଣା ଡାଏରୀର ୧୯୫୬ ମସିହା ଅନୁଭୂତିରେ ଉଲ୍ଲେଖ କରିଛନ୍ତି- "ମାନସିଂହ ତ ଭଲ କରନ୍ତି, କଲମରେ ସବୁ ଲେଖି ଦିଅନ୍ତି, ପାଟିରେ ସେ ବକ-ସାଧନା କରନ୍ତି। ମାତ୍ର ମୁଁ ଦରକାର ପଡ଼ିଲେ କାଗଜରେ ଲେଖେ, କିନ୍ତୁ ଅଧିକାଂଶ ସତ୍ୟକୁ ପାଟିରେ କହିଦିଏ। ଯଦିଓ ଜାଣେ ତାହା ଅପ୍ରିୟ। ଅନ୍ୟର କଥା, ଅନ୍ୟର ଭୁଲକୁ କ୍ଷମାଦେବା ମୋ ପକ୍ଷରେ ସହଜ ହୁଏ ନାହିଁ, ମୁହେଁ ମୁହେଁ କହିବ ସେ।" ତେବେ ୧୯୫୭ ମସିହାର ଅନୁଭୂତିରେ ଏହାର ନକରାତ୍ମକ ଦିଗ ସଂପର୍କରେ ସେ ସଚେତନ ହୋଇ ଲେଖିଛନ୍ତି- "ମୋର ସବୁଠୁ ଖରାପ ଗୁଣ ସେହି ବୋଧହୁଏ ମୋର ଅବନତିର କାରଣ ଯେ, ମୁହଁ ସମ୍ଭାଳି କଥାବାର୍ତ୍ତା କରେ ନାହିଁ। ମାତ୍ର ଜୀବନଯାକ ଅନ୍ୟାୟ ବିରୁଦ୍ଧରେ ଲଢ଼ିବାର ଯେଉଁ ବଂଶଗତ ପରମ୍ପରା ରହିଯାଇଛି, ଚାକିରୀ ଜୀବନରେ ସେ ମୋଟେ ସହାୟକ ନୁହେଁ।" କିନ୍ତୁ ଗଗନେନ୍ଦ୍ରନାଥ ସାହିତ୍ୟିକ ଜୀବନରେ ସତ୍ୟ, ଏପରିକି ଅପ୍ରିୟ ସତ୍ୟ କହି, ତାର ପ୍ରଭାବ ବ୍ୟକ୍ତିଗତ ଜୀବନରେ ପଡ଼ିବାର ଆଶଙ୍କାକୁ ଖାତିର ନକରି ଏ ଯାଏ ତାହା ବଜାୟ ରଖିଛନ୍ତି। ଭାବପ୍ରବଣତାର ଉର୍ଦ୍ଧ୍ୱରେ ରହି ଉନ୍ମୁକ୍ତ ମନରେ ସମାଲୋଚନାରେ ସତ୍ୟକୁ ଆବିଷ୍କାର

କରିବା ବା ତାହାର ନିକଟବର୍ତ୍ତୀ ହେବା ତାଙ୍କର ଏକ ମୁଖ୍ୟ ପରିଚୟ। ୨୦୧୩ ମସିହାରେ ତାଙ୍କୁ 'ଅତିବଡ଼ି ଜଗନ୍ନାଥ ପୁରସ୍କାର' ମିଳିବାର ଠିକ୍ ପରେପରେ ଓଡ଼ିଆ ଭାଷା ପ୍ରାୟ ଦୁଇହଜାର ବର୍ଷର ପୁରୁଣା ଓ ଶାସ୍ତ୍ରୀୟ ମାନ୍ୟତା ପାଇବା ନେଇ ଓଡ଼ିଶାରେ ହୁରି ପଡ଼ିଥିବାବେଳେ ଏଥିରେ ସେ ପ୍ରଭାବିତ ନ ହୋଇ ତାଙ୍କର ପୂର୍ବବର୍ତ୍ତୀ ମତକୁ ଦୋହରାଇ, ଏକ ଦୀର୍ଘ ସାକ୍ଷାତକାରରେ (ସୂର୍ଯ୍ୟପ୍ରଭା, ଭୁବନେଶ୍ୱର) "ଓଡ଼ିଆ ଭାଷା ୭ମ/୮ମ ଶତାବ୍ଦୀର" ବୋଲି ମତ ଦେଇଛନ୍ତି।

ତାଙ୍କର ଏହି ସାହସିକତା ଓ ଦାମ୍ଭିକତା ବା ନିର୍ଭୀକତାର ଉତ୍ସ ଖୋଜିବାର ଚେଷ୍ଟା କରାଯାଇପାରେ। ପ୍ରାରମ୍ଭିକ ଭାବେ ଏହା ତାଙ୍କ ପାଖକୁ ଅନେକାଂଶରେ ପାରିବାରିକ ସୂତ୍ରରୁ ଆସିଛି ବୋଲି ତାଙ୍କର ତିନିଟି ବହିର ଉତ୍ସର୍ଗପତ୍ରରୁ ଆଭାସ ମିଳେ। 'ଓଡ଼ିଆ ଭାଷା-ସୁରକ୍ଷା ଆନ୍ଦୋଳନ' ବହିରେ କକାପୁଅ ବଡ଼ଭାଇ ଅବନୀନ୍ଦ୍ରନାଥ ଦାଶଙ୍କୁ ଉତ୍ସର୍ଗ କରି ଲେଖିଛନ୍ତି- ବିତର୍କ ଥିଲା ଯାହାର ଜୀବିକା ନୁହେଁ, ଜୀବନ ଓ ବିତର୍କ କରି ଯେ ସାରା ଜୀବନ ବିତାଇ ଦେଲେ...।" ସେହିପରି 'ପୁନଶ୍ଚ ଜନଶ୍ରୁତି କାଂଚିକାବେରୀ'ରେ ବାପାଙ୍କ ଉଦ୍ଦେଶ୍ୟରେ ଲେଖିଛନ୍ତି- "ଯେ ମତେ ପିଲାଦିନରୁ ନୂଆ ବାଟରେ ଚାଲିବାକୁ ପ୍ରେରଣା ଦେଇଥିଲେ; ସ୍ୱାଧୀନ ଭାବରେ ଚିନ୍ତା କରିବାପାଇଁ ଶିଖାଇଥିଲେ...।" ପୁଣି "ଓଡ଼ିଆର ସ୍ୱାଭିମାନ ଓ ଅନ୍ୟାନ୍ୟ ପ୍ରସଙ୍ଗ'ର ଉତ୍ସର୍ଗରେ ବୋଉ ସୁଲୋଚନା ଦେବୀଙ୍କୁ ମନେପକେଇ ଲେଖିଛନ୍ତି- "ଆମର ରକ୍ଷଣଶୀଳ ସମାଜରେ ଯେ ଦୃପ୍ତ ପ୍ରତିବାଦର ପ୍ରତିମୂର୍ତ୍ତି ସ୍ୱରୂପିଣୀ ଥିଲା ଓ ମୋପାଇଁ ଯେ ଆଧୁନିକତାର ବାର୍ତ୍ତାବହ ଭୂମିକା ବି ହୋଇଥିଲା।" ଏହି ତିନିଟି ଉତ୍ସର୍ଗପତ୍ରରୁ ବୁଝାପଡ଼େ ଯେ, ତାଙ୍କ ପରିବାର ବାପା, ବୋଉ ଓ ବଡ଼ଭାଇଙ୍କ ବ୍ୟକ୍ତିତ୍ୱ ପ୍ରଭାବରେ ସେ ପ୍ରଭାବିତ ଓ ବିକଶିତ।

କେବଳ ପରିବାର ନୁହେଁ, ତାଙ୍କର ସାହସିକତା ଓ ନିର୍ଭୀକତାପାଇଁ ଓଡ଼ିଶାର ପୂର୍ବତନ ମୁଖ୍ୟମନ୍ତ୍ରୀ ହରେକୃଷ୍ଣ ମହତାବ ଅନେକ ପରିମାଣରେ ଦାୟୀ— ଏକଥା ନିଜେ ଏକ ସ୍ମୃତିମୂଳକ ଆଲେଖ୍ୟରେ ଉଲ୍ଲେଖ କରିଛନ୍ତି। 'ଝଙ୍କାର'ର ସଂପାଦକୀୟରେ ଶ୍ରୀଯୁକ୍ତ ମହତାବ ପ୍ରସଙ୍ଗକ୍ରମେ ଗଗନେନ୍ଦ୍ରଙ୍କ ନାମ ଓ ପ୍ରବନ୍ଧ ନାମ ଉଲ୍ଲେଖ କରି ପ୍ରଶଂସା କରିଛନ୍ତି, ଏପରିକି ତାଙ୍କ ଲେଖାଲେଖି ଆଦି ବୌଦ୍ଧିକ ଆଗ୍ରହକୁ ପ୍ରତ୍ୟକ୍ଷ ଭାବରେ ପ୍ରଶଂସା ଓ ଉତ୍ସାହିତ କରିଛନ୍ତି। ଏ ପ୍ରସଙ୍ଗରେ ଶ୍ରୀଯୁକ୍ତ ଦାଶ ତାଙ୍କର **ସ୍ମୃତିରେ ହରେକୃଷ୍ଣ ମହତାବ** ଶୀର୍ଷକ ଆଲେଖ୍ୟରେ ଲେଖିଛନ୍ତି- "... ମୁଁ ନିର୍ଭୀକ ଓ ସ୍ୱାଭିମାନୀ ହୋଇଥିବାରୁ ଓ ବହୁ ସମୟରେ ଅପ୍ରିୟ ସତ୍ୟ କଥା କହୁଥିବାରୁ ମୋର କେତେକ ପୂର୍ବଜ ଓ ସମବୟସ୍କ ବନ୍ଧୁ ମତେ ଅତ୍ୟନ୍ତ ଅହଂକାରୀ ଓ ଉଦ୍ଧତ ବୋଲି ଭାବନ୍ତି- ଅନ୍ତତଃ ତାହାହିଁ ଧାରଣା। ତେବେ ଯଦି ମୁଁ ପ୍ରକୃତରେ ଅହଂକାରୀ ହୋଇଥାଏ, ଡକ୍ଟର ମହତାବ ହିଁ ମୋର ଅହଂକାରକୁ ସ୍ଫୀତ କରିଛନ୍ତି; ମୁଁ ଯଦି ଉଦ୍ଧତ ହୋଇଥାଏ, ତେବେ ଡକ୍ଟର ମହତାବ ହିଁ ମତେ ପ୍ରଶ୍ରୟ ଦେଇ ଉଦ୍ଧତ କରିଛନ୍ତି। ମୋର ସମସ୍ତ ଅହଂକାର, ସ୍ପର୍ଦ୍ଧା, ଔଦ୍ଧତ୍ୟ ଓ ଧୃଷ୍ଟତାକୁ ସେ ହିଁ ଉଦାର ହୃଦୟରେ ସହ୍ୟ କରୁଥିଲେ, କ୍ଷମା କରୁଥିଲେ; ପିତାପୁତ୍ରର ସମସ୍ତ ଅହଂକାର,

ସ୍ପର୍ଦ୍ଧା, ଔଦ୍ଧତ୍ୟ ଓ ଧୃଷ୍ଟତାକୁ ଉଦାରତାର ସହ ସହ୍ୟ କରିବା ପରି, କ୍ଷମା କରିଦେବା ପରି। ତା ମୋର ନିର୍ଭୀକତା ଓ ସ୍ୱାଭିମାନ ହେଉ, ମୋର ଅହଂକାର ଓ ଔଦ୍ଧତ୍ୟ ହେଉ, ତା ପଛରେ ରହିଛି ସ୍ୱୟଂ ମହତାବଙ୍କର ମୋ ପ୍ରତି ସହନଶୀଳତା, କ୍ଷମାଶୀଳତା ଓ ଉଦାରତା।" (ଇସ୍ତାହାର, ୨୦୧୧ ଏପ୍ରିଲ୍)। ତେଣୁ ପରିବାର ପରେ ମହତାବଙ୍କ ଭୂମିକା ନିଶ୍ଚିତ ଭାବେ ଗୁରୁତ୍ୱପୂର୍ଣ୍ଣ।

ଏଠାରେ ଆଉ ଏକ ପ୍ରସଙ୍ଗକୁ ମଧ୍ୟ ବିଚାରକୁ ନିଆଯାଇପାରେ। ଶ୍ରୀଯୁକ୍ତ ଦାଶ ଗବେଷଣା ବା ସମାଲୋଚନା ଦିଗରେ ଉଲ୍ଲେଖନୀୟ କାର୍ଯ୍ୟ କରିଥିଲେ ସୁଦ୍ଧା କୌଣସି କାରଣ ବଶତଃ ଅପେକ୍ଷାକୃତ ଜନପ୍ରିୟ ହୋଇ ପାରିନାହାନ୍ତି, ମାତ୍ର ଆପଣା ବ୍ୟକ୍ତିତ୍ୱକୁ ସେ ବଜାୟ ରଖିଛନ୍ତି ଯଥାସଂଭବ। କୁହାଯାଏ, ବ୍ୟକ୍ତିର ଜନପ୍ରିୟତା ଓ ଲୋକସଂପର୍କ ତାଙ୍କ ସ୍ପଷ୍ଟବାଦିତା ବା ନିର୍ଭୀକତାର ବାଧକ। କାରଣ, ସମସ୍ତଙ୍କୁ ଲେଖା-କଥାରେ ଖୁସିର ଚଣ୍ଟ ଦେଉଦେଉ ଲେଖକ ଯେ ପରୋକ୍ଷରେ କାହା କାହାଦ୍ୱାରା ପ୍ରଭାବିତ ହୋଇସାରିଥିବେ, ତାହା ବୁଝିଲା ବେଳକୁ ବ୍ୟକ୍ତିତ୍ୱ ଭାଗଭାଗ ହୋଇସାରିଥାଏ। ତେଣୁ ଅଧିକ ଲୋକସଂପର୍କର ଅଭାବରୁ ବା ଅନ୍ୟପକ୍ଷରେ କିଛି ପାଇବାର ପ୍ରତ୍ୟାଶାଠାରୁ ଦୂରେଇ ରହି ସେ କାହାର ପ୍ରଶସ୍ତି କରି ଗଗନରେ ରଖିବା, କର ଯୋଡ଼ିବା ବା ନତମସ୍ତକ ହେବାଠାରୁ ଦୂରେଇ ରହିଛନ୍ତି। ଏହା ମଧ୍ୟ ତାଙ୍କ ସ୍ପଷ୍ଟବାଦିତା ଓ ନିର୍ଭୀକତାର ଏକ କାରଣ। ତେଣୁ, ଶ୍ରୀଯୁକ୍ତ ଦାଶଙ୍କଠାରେ ତାଙ୍କ ବାପା, ବୋଉ, ବଡ଼ଭାଇ ଓ ହରେକୃଷ୍ଣ ମହତାବଙ୍କ ପ୍ରଭାବ ଏବଂ ସାହିତ୍ୟ ଜଗତରେ ଲୋକସଂପର୍କ ଅଭାବ ତାଙ୍କ ନିର୍ଭୀକତା ଓ ସାହସିକତାର ଉନ୍ମେଷ ଓ ବିକାଶଲାଭର କାରଣ।

ଗଗନେନ୍ଦ୍ର ଆପଣା ମତକୁ ଅନ୍ୟମାନଙ୍କ ଉପରେ ଲଦି ଦେଇନାହାନ୍ତି, ବରଂ ଭିନ୍ନମତ ବା ବିକଳ୍ପମତକୁ ସମ୍ମାନ ଜଣେଇଛନ୍ତି। ସେ 'ଭାଷାର ଆଂଚଳିକ ଭିନ୍ନତା(ପଶ୍ଚିମାଂଚଳୀୟ ଓଡ଼ିଆ)' ନାମକ ପ୍ରବନ୍ଧରେ ଓଡ଼ିଆ ଓ ସମ୍ବଲପୁରିକୁ ଅଭିନ୍ନ କହୁଥିବା ବେଳେ ଡକ୍ଟର ସନ୍ତୋଷ କୁମାର ରଥ ସମ୍ବଲପୁରୀ/କୋଶଲି ଭାଷା ସାହିତ୍ୟ ସଂସ୍କୃତି ସଂପର୍କିତ 'ଅସ୍ୱୀକୃତ ପରମ୍ପରା'(୨୦୦୭) ବହିରେ ଓଡ଼ିଆ-ସମ୍ବଲପୁରି(ବା କୋଶଳି)କୁ ଭିନ୍ନ ବୋଲି ଯୁକ୍ତି ଓ ଉଦାହରଣ ସହ ଦର୍ଶାଇଛନ୍ତି। ତଥାପି ସେହି ବହି ସଂପର୍କିତ ଆଲୋଚନାରେ ସେ କଠୋର ହୋଇନାହାନ୍ତି। ଡକ୍ଟର ରଥଙ୍କ ମତକୁ ସମ୍ମାନ ଜଣେଇ, ସ୍ୱୀକୃତି ଅପେକ୍ଷାରେ ଅସ୍ୱୀକୃତ ପରମ୍ପରା ପ୍ରବନ୍ଧରେ ସେ ଉଲ୍ଲେଖ କରିଛନ୍ତି- "ଆକାରରେ କ୍ଷୁଦ୍ର ଏ ବହିଟିର ଗୁରୁତ୍ୱ ଯଥେଷ୍ଟ ଅଛି ଓ ଆଗ୍ରହୀ ଗବେଷକ ତଥା ପାଠକଙ୍କ ପକ୍ଷରେ ବହିଟି ଅବଶ୍ୟ ପାଠ୍ୟ" (ଓଡ଼ିଆର ସ୍ୱାଭିମାନ ଓ ଅନ୍ୟାନ୍ୟ ପ୍ରସଙ୍ଗ, ୨୦୧୫, ପୃ. ୮୮)। ସେହିପରି ତାଙ୍କର ଛାତ୍ର ପଂଚାନନ ମହାନ୍ତିଙ୍କ ସହିତ ଏକ ବିତର୍କରେ ସେ ୨୦୦୮ ଅକ୍ଟୋବର ଝଙ୍କାରର **ପୁରୀ ଓ ନିତିଆନି** ପ୍ରବନ୍ଧରେ **କୀଟଦଷ୍ଟ** ଶବ୍ଦକୁ ଭୁଲରେ **କୀଟଦ୍ରଂଷ୍ଟ** ବୋଲି ଲେଖିଥିବାରୁ, ମହାନ୍ତି ଝଙ୍କାରର ୨୦୧୦ର (୬୨/୭) ଏକ ପ୍ରବନ୍ଧରେ ଦର୍ଶାଇଛନ୍ତି। ଦାଶ ତାଙ୍କର ଏହି ତ୍ରୁଟିକୁ ସ୍ୱୀକାର କରି ପରେ ତାଙ୍କ ପୁସ୍ତକରେ ସଂକଳିତ ଉପରୋକ୍ତ ପ୍ରବନ୍ଧର ଶେଷକୁ

ଏକ ସ୍ୱତନ୍ତ୍ର ସୂଚନାରେ ଡକ୍ଟର ମହାନ୍ତିଙ୍କୁ ଏଥିପାଇଁ କୃତଜ୍ଞତା ଜଣାଇଛନ୍ତି (ନବଦିଗନ୍ତର ଆହ୍ୱାନରେ, ୨୦୧୪, ପୃ. ୩୮)। ଏହି ଛୋଟ ଛୋଟ କଥାରୁ ଗଗନେନ୍ଦ୍ରଙ୍କ ଉଦାରତା ଓ ବ୍ୟକ୍ତିତ୍ୱ ସୂଚୀତ।

ଗବେଷଣା ବା ସମାଲୋଚନା ପ୍ରସଙ୍ଗରେ ପୂର୍ବବର୍ତ୍ତୀ ଗବେଷକ/ସମାଲୋଚକ ବା ପୂର୍ବସୂରୀମାନଙ୍କୁ ଯଥାଯଥ ସ୍ୱୀକୃତି ଦେବାରେ ଶ୍ରୀଯୁକ୍ତ ଦାଶ କେବେ ଅବହେଳା କରିନାହାନ୍ତି। ଏହା ତାଙ୍କ ସମାଲୋଚନାର ଏକ ସକାରାତ୍ମକ ଦିଗ। ପୂର୍ବସୂରୀଙ୍କୁ ସ୍ୱୀକୃତି ନ ଦେବା ଅର୍ଥ ସେମାନଙ୍କର ଶ୍ରମ ଓ ସମୟକୁ ତୁଚ୍ଛ ମନେକରିବା ବା "ଅପରର ଗବେଷଣାଲବ୍ଧ ତଥ୍ୟ ଓ ସିଦ୍ଧାନ୍ତକୁ ନିଜର ବୋଲି ଚଳାଇ ନେବାର, ପରସ୍ୱକୁ ଆତ୍ମସାତ୍ କରିବାର ଯେଉଁ ଉଜ୍ଜ୍ୱଳ ପରମ୍ପରା ରହିଛି, ଆଲୋଚନା ଆଧାରରେ କିପରି ଜଣକୁ ସ୍ୱୀକୃତି ଦିଆଯାଏ, ଶ୍ରୀଯୁକ୍ତ ଦାଶଙ୍କ 'ପୂର୍ବବର୍ତ୍ତୀ ଗବେଷକଙ୍କୁ ସ୍ୱୀକୃତି'(୨୦୧୧) ପ୍ରବନ୍ଧ ତାହାର ଏକ ପ୍ରକୃଷ୍ଟ ଉଦାହରଣ।

ଲେଖିବାରେ ଯେତିକି ସାଧନା, ସାବଧାନତା ଆଉ ଅଧ୍ୟବସାୟ— ତାହା ଅଧିକାଂଶ ହୁଏତ ବୁଝନ୍ତି ନାହିଁ। ସେଥିପାଇଁ ସେ ସାଧନାର ଉଦାହରଣ ଦିଅନ୍ତି Mountain Man ଦଶରଥ ମାଝିଙ୍କ କଥା(ନବଦିଗନ୍ତର ସନ୍ଧାନରେ, ୨୦୧୬, ଉପୋଦ୍‌ଘାତ, ପୃ.୧୫)— ଯିଏ ୨୨ ବର୍ଷର ଧାରାବାହିକ ଅକ୍ଳାନ୍ତ ପରିଶ୍ରମ କରି କେବଳ ହାମର-ନିହାଣରେ ଗୋଟିଏ ପାହାଡ଼କୁ ରାସ୍ତା ଆକୃତିରେ ଦୁଇଫାଳ କରିଦେଇ ଗମନାଗମନର ପଥ ପରିଷ୍କାର କରନ୍ତି ଏବଂ ନିଜର ଧୈର୍ଯ୍ୟ, ସାଧନା ଓ ନିଷ୍ଠାପରତାର ପ୍ରମାଣ ଦିଅନ୍ତି। ତାଙ୍କୁ ଏ ଦୁନିଆ ସମ୍ମାନିତ କରେନାହିଁ। ସେହିପରି ଯେଉଁମାନେ ସମାଜର ପଥପ୍ରଦର୍ଶକ ବା ଚିନ୍ତାରାଜ୍ୟରେ ବିପ୍ଳବ କରନ୍ତି, ସେମାନଙ୍କୁ ସମାଜ ତୁଚ୍ଛ ମନେକରେ। ବୋଧହୁଏ ଏହି ଅଭିମାନରେ ଗଗନେନ୍ଦ୍ରନାଥ ନିଜକୁ 'ଚକ୍ଷୁକୁଟାଳି' ବୋଲି କହନ୍ତି। ଆଉ 'ନବଦିଗନ୍ତର ସନ୍ଧାନରେ' ବହିର 'ଉପୋଦ୍‌ଘାତ'ର ଶିରୋନାମା ତଳ ବନ୍ଧନୀରେ "ଜଣେ ଚକ୍ଷୁକୁଟାଳିର ବକ୍ତବ୍ୟ" ଲେଖିବାକୁ ସେ ଉଚିତ ମନେ କରିଛନ୍ତି।

ସାମ୍ବାଦିକମାନେ ଲେଖାଟିଏ ସାରିବାକୁ ତରତର ହୁଅନ୍ତି, କିନ୍ତୁ ସ୍କଲାର୍ ହେବାକୁ ହେଲେ ସ୍ଥିରଚିତ୍ତରେ ଅନୁଶୀଳନ କରି ଲେଖିବାକୁ ପଡ଼େ—ଏ ସଂପର୍କରେ ନରେନ୍ଦ୍ରନାଥ ମିଶ୍ରଙ୍କ ପ୍ରାୟ ଏହିପରି ବକ୍ତବ୍ୟକୁ ସେ ସମ୍ମାନ ଦିଅନ୍ତି। ସେଥିପାଇଁ ଶ୍ରୀଯୁକ୍ତ ଦାଶ ପ୍ରବନ୍ଧଟିଏ ସାରିବାକୁ ଅନେକ ସମୟ ନିଅନ୍ତି। କଥାବାର୍ତ୍ତା ପ୍ରସଙ୍ଗରେ ବହୁଥର କହିଛନ୍ତି 'କିଏ ଏହି ରାମଚନ୍ଦ୍ର ମଙ୍ଗରାଜ ?(୨୦୦୮) ପ୍ରବନ୍ଧ ଲେଖିବାରେ ତାଙ୍କୁ ଲାଗିଛି ପ୍ରାୟ ୩୦ ବର୍ଷ। ବିଶ୍ୱଭାରତୀରେ ଅଧ୍ୟାପକ ଥିବାବେଳେ Gunner Myrdal ଙ୍କ Asian Drama ଦ୍ୱିତୀୟଖଣ୍ଡରୁ ସେ ମହାଜନ ଶ୍ରେଣୀ ଉଦ୍ଭବର ଆଭାସ ପାଆନ୍ତି ଏବଂ ସମୟକ୍ରମେ ଆନୁଷଙ୍ଗିକ ତଥ୍ୟ ଆଧାରରେ ସେ ତାଙ୍କର ପ୍ରବନ୍ଧ ଲେଖା ସାରନ୍ତି ଅବସର ଗ୍ରହଣ କରିବାର ପ୍ରାୟ ଆଠବର୍ଷ ପରେ। ଏହା ପ୍ରବନ୍ଧଟି ହେଉଛି ତାଙ୍କ ଧୈର୍ଯ୍ୟ ଓ ନିଷ୍ଠାର ନମୁନା।

ତଥ୍ୟ ସଚେତନତାର ଅନ୍ୟ ଏକ ଅନନ୍ୟ ଉଦାହରଣ ଗଗନେନ୍ଦ୍ରନାଥ 'ଶାରଳା

ମହାଭାରତରେ ଏକଲବ୍ୟ ଉପାଖ୍ୟାନ'। ପ୍ରବନ୍ଧ ଲେଖୁଥିବା ବେଳେ ନିଜ ପାଖରେ ସଂସ୍କୃତ ମହାଭାରତର ଏକ ଇଂଟରନେଟ୍ ସଂସ୍କରଣ ଥିଲା। ମାତ୍ର ଦୁଇ ତିନି ଧାଡ଼ିର ପାଠ ମିଳେଇବାପାଇଁ ଭି.ଏସ୍. ସୁକ୍‌ଥଙ୍କଦ୍ୱାରା ସଂପାଦିତ ପୁନେସ୍ଥିତ ଭଣ୍ଡାରକର ଅନୁଷ୍ଠାନଦ୍ୱାରା ପ୍ରକାଶିତ ମହାଭାରତର 'ଆଦିପର୍ବ'ରେ ଥିବା ସେଇ ଅଂଶତକ ଦେଖିବାକୁ ସେ ଇଚ୍ଛା କରିଛନ୍ତି। ମୈସୁର ବିଶ୍ୱବିଦ୍ୟାଳୟ ପାଠାଗାରରୁ ତାହା ସେ ସଂଗ୍ରହ କରି ପାଠ ମିଳାପରେ ପ୍ରବନ୍ଧଟିକୁ 'ଝଙ୍କାର' ପତ୍ରିକାକୁ ପଠେଇଛନ୍ତି। ପଣ୍ଡିତ ହରିହରଙ୍କ ସଂପର୍କରେ ଏକ ପ୍ରବନ୍ଧ ଲେଖିବା ପୂର୍ବରୁ ତାଙ୍କ ସଂପର୍କିତ କେତୋଟି ଉପାଦେୟ ଲେଖା ତାଙ୍କ ଆଖିରେ ନ ପଡ଼ିଥିବାରୁ, ଏହା ଗବେଷକ ଭାବରେ ତାଙ୍କର ବିଫଳତା ବୋଲି ସେ ମୁକ୍ତକଣ୍ଠରେ ସ୍ୱୀକାର କରିଛନ୍ତି(ନବଦିଗନ୍ତର ସନ୍ଧାନରେ, ୨୦୧୬, ପୃ. ୧୦୦)।

ବାହାରକୁ ଅତ୍ୟନ୍ତ କଠୋର ମନେ ହେଉଥିବା ଶ୍ରୀଯୁକ୍ତ ଗଗନେନ୍ଦ୍ର ଯେ କେତେ କୌତୁକପ୍ରିୟ, ତାହାର ନମୁନା ମିଳେ ନିଜର ଭାଷା, ସାହିତ୍ୟ ଓ ଇତିହାସ ଆଲୋଚନା ପ୍ରସଙ୍ଗର ଏକ ବକ୍ତବ୍ୟରୁ- ''ଇତିହାସ ତାଙ୍କ ଆଦ୍ୟ ଜୀବନର ପ୍ରେମିକା, ପୁଣି ଓଡ଼ିଆ ସାହିତ୍ୟ ସମାଲୋଚନା ହେଉଛି- ଧର୍ମପତ୍ନୀ ଓ ଭାଷାବିଜ୍ଞାନ ଚର୍ଚ୍ଚା ହେଉଛି ଶାଳିକା'' (ନବଦିଗନ୍ତର ଆହ୍ୱାନରେ, ୨୦୧୪, ପୃ. ୨୬୩)। ତେବେ ଏହି କଳ୍ପିତ ପ୍ରେମିକା-ଶାଳିକା-ଧର୍ମପତ୍ନୀଙ୍କ ସାହାଚର୍ଯ୍ୟରେ ତାଙ୍କ ସମାଲୋଚନାର ଦିଗନ୍ତ ଯେ କେତେ ବିସ୍ତାରିତ ଓ ପରିପୂର୍ଣ୍ଣ, ତାହା କହିବା ନିଷ୍ପ୍ରୟୋଜନ।

**ଉପସଂହାର**

ବହୁମୁଖୀ ପ୍ରଜ୍ଞାର ଅଧିକାରୀ ଡକ୍ଟର ଗଗନେନ୍ଦ୍ରନାଥ ଦାଶ ଗୁଣାତ୍ମକତା ଦୃଷ୍ଟିରୁ ଓଡ଼ିଆ ସମାଲୋଚନା ସାହିତ୍ୟକୁ ଋଦ୍ଧିମନ୍ତ କରିଆସୁଛନ୍ତି। ସମାଲୋଚନା ସାହିତ୍ୟ ବ୍ୟତୀତ ଭାଷା, ଜନଶ୍ରୁତି-ଇତିହାସ, ସଂସ୍କୃତି, ଧର୍ମ ଆଦି ବିଭିନ୍ନ ବିଷୟରେ ସେ ସୁପଠ। ଏହା ତାଙ୍କ ଚର୍ଚ୍ଚାକୁ ମାର୍ଜିତ ଓ ଦୃଷ୍ଟିଭଙ୍ଗୀକୁ ତୀକ୍ଷ୍ଣ କରିଛି। ଗଡ୍‌ଡାଳିକା ପ୍ରବାହରୁ ସେ ମୁକ୍ତ। ନୂଆକଥା କହିବାର ନଥିଲେ ସେ ପ୍ରବନ୍ଧ ଲେଖି ସମୟ ବ୍ୟୟ କରିବାକୁ ଉଚିତ୍ ମନେ କରିନାହାନ୍ତି। ଆଲୋଚନା ବେଳେ ସମସ୍ତ ପ୍ରକାର ଭାବପ୍ରବଣତାର ଊର୍ଦ୍ଧ୍ୱରେ ରହି ସତ୍ୟକୁ ତାଙ୍କର ସମ୍ମୁଖୀନ ହେବାର ଉନ୍ମୁକ୍ତ ମନ, ସାହସ ବା ନିର୍ଭୀକପଣ ବାସ୍ତବତଃ ଅନନ୍ୟ ଓ ବିସ୍ମୟକର। ନୂତନ ତଥ୍ୟ ଓ ବିଶ୍ଳେଷଣର ଆଧାରରେ ପରିବେଶ-ପୃଷ୍ଠଭୂମିକୈନ୍ଦ୍ରିକ ପଦ୍ଧତି ଅବଲମ୍ବନରେ ତାଙ୍କର ସମାଲୋଚନାର ଦିଗନ୍ତ ବିସ୍ତାରିତ। ଓଡ଼ିଶାର ସାଂସ୍କୃତିକ ପରିମଣ୍ଡଳ ଉତ୍କୃଷ୍ଟ ସମାଲୋଚନା ସୃଷ୍ଟିପାଇଁ ଅବଶ୍ୟ ପ୍ରତିବନ୍ଧକ। ମାତ୍ର ଆଶ୍ଚର୍ଯ୍ୟ, ଗଗନେନ୍ଦ୍ରଙ୍କ ବ୍ୟକ୍ତିତ୍ୱ ସକଳ ପ୍ରତିବନ୍ଧକ ଅତିକ୍ରମଣର ଏକ ସ୍ୱର୍ଣ୍ଣାଭ ଅଭିବ୍ୟକ୍ତି।

**ଗଗନେନ୍ଦ୍ର ନାଥ ଦାଶଙ୍କ ଲିଖିତ, ସଂକଳିତ ଓ ସଂପାଦିତ ପୁସ୍ତକ**

**Conversational Oriya**, (March, 1972), Mysore, Sulakshyana Pattanayak. (with D.P. Pattanayak)

ଜନଶ୍ରୁତି କାଂଚିକାବେରୀ, (୧୯୭୯), ବ୍ରହ୍ମପୁର, ପୁସ୍ତକ ଭଣ୍ଡାର।
ORISSA a classified and Comprehensive BIBLIOGRAPHY, (1981), Cuttack, Vidyapuri.(with Hermann Kulke and Two others). ୧୯୮୨ ମସିହାରେ ଏହି ବହି ଜର୍ମାନୀର Wiesbaden ରୁ Franz Steiner Verlag Stuttgart GMBH ପ୍ରକାଶନ ସଂସ୍ଥାଦ୍ୱାରା ମଧ୍ୟ ପ୍ରକାଶିତ।
**Descriptive Morphology of Oriya**, (December, 1982), West Bengal : Visva-Bharati Research Publication Committee.
ଓଡ଼ିଆ ଭାଷାଚର୍ଚ୍ଚାର ପରମ୍ପରା, (୧୯୮୩), କଟକ: ଓଡ଼ିଆ ଗବେଷଣା ପରିଷଦ।
ଖଦ୍ୟୋତର ଦ୍ୟୁତି, (ଶ୍ରୀଗୁଣ୍ଡିଚା, ୧୯୮୪), କଟକ: ଡାଇମଣ୍ଡ ପବ୍ଲିଶର୍ସ।
ନୀଳକଣ୍ଠ ସ୍ମାରକୀ: ତୃତୀୟ ଖଣ୍ଡ,ସଂ (୧୯୮୬), ଭୁବନେଶ୍ୱର: ପଣ୍ଡିତ ନୀଳକଣ୍ଠ ସ୍ମୃତି ସମିତି।
ଶୈଳୀବିଜ୍ଞାନ, ସଂ (୧୯୮୯), କଟକ: ଓଡ଼ିଆ ଗବେଷଣା ପରିଷଦ।(ଡକ୍ଟର ପଂଚାନନ ମହାନ୍ତିଙ୍କ ସହିତ)।
**Bibliography on Lord Jagannath**,iõ (1992), Puri: Sri Jagannath Sanskrit University. (With Dr. Purna Chandra Mishra)
ଓଡ଼ିଆ ଭାଷା-ସୁରକ୍ଷା ଆନ୍ଦୋଳନ, (୧୯୯୩), କଟକ: କଟକ ଷ୍ଟୁଡେଂଟ୍ସ ଷ୍ଟୋର।
ଓଡ଼ିଆ ବ୍ୟାକରଣ, (୧୯୯୫), କଟକ : ଓଡ଼ିଶା ମାଧ୍ୟମିକ ଶିକ୍ଷା ପରିଷଦ। (ପ୍ର. ଶରତଚନ୍ଦ୍ର ପ୍ରଧାନ ଓ ଅନ୍ୟ ତିନିଜଣଙ୍କ ସହିତ, ପରିମାର୍ଜିତ ଓ ପରିବର୍ଦ୍ଧିତ ମୁଦ୍ରଣ ୧୯୯୯)।
**Hindus and Tribals- QUEST FOR CO-EXISTENCE**-(1998), New Delhi, Decent Books.
ଜୈବ ପ୍ରଯୁକ୍ତିବିଦ୍ୟା ପରିଭାଷା (ଇଂରାଜୀ, ଓଡ଼ିଆ), ୨୦୦୩, ଭୁବନେଶ୍ୱର, ଓଡ଼ିଶା ରାଜ୍ୟ ପୁସ୍ତକ ପ୍ରଣୟନ ଓ ପ୍ରକାଶନ ସଂସ୍ଥା (ଭାଷା ବିଶେଷଜ୍ଞ)
ଭାଷାତତ୍ତ୍ୱ ପରିଭାଷା (ଇଂରାଜୀ, ଓଡ଼ିଆ), ୨୦୦୫, ଭୁବନେଶ୍ୱର, ଓଡ଼ିଶା ରାଜ୍ୟ ପୁସ୍ତକ ପ୍ରଣୟନ ଓ ପ୍ରକାଶନ ସଂସ୍ଥା ( ୧୪ ଜଣଙ୍କ ସହିତ)
ନିର୍ବାଚିତ ପ୍ରବନ୍ଧ ସଂକଳନ, (ଡିସେମ୍ବର, ୨୦୦୫), କଟକ: ବିଦ୍ୟାପୁରୀ।
ସରସ୍ୱତୀ ଫକୀରମୋହନ: ସାହିତ୍ୟ ଓ ବ୍ୟକ୍ତିତ୍ୱ: (ଅଗଷ୍ଟ, ୨୦୦୬), କଟକ: ଗ୍ରନ୍ଥମନ୍ଦିର।
**Jagannatha and the Gajapati Kings of Orissa, A Compendium of Late Medieval Texts**, (2010), New Delhi, Manohar. (in collaboration with Ranjan Kumar Das)

**Imaging Odisha**, ସଂ(2 Volumes, 2013), Jagatsingpur, Prafulla. (with Hermann Kulke and 5 others)
**ନବ ଦିଗନ୍ତର ଆହ୍ବାନରେ,** (ମକର ସଂକ୍ରାନ୍ତି, ୨୦୧୪)ଭୁବନେଶ୍ୱର: ରମାଦେବୀ।
**ପୁନଶ୍ଚ ଜନଶ୍ରୁତି କାଂଚିକାବେରୀ,** (ମକର ସଂକ୍ରାନ୍ତି, ୨୦୧୪), ଭୁବନେଶ୍ୱର: ରମାଦେବୀ।
**ଓଡ଼ିଆର ସ୍ୱାଭିମାନ ଓ ଅନ୍ୟାନ୍ୟ ପ୍ରସଙ୍ଗ: କିଂଚିତ୍ ଅପ୍ରିୟକଥନ,** (୨୦୧୫), ଭୁବନେଶ୍ୱର, ରମାଦେବୀ।
**ନବ ଦିଗନ୍ତର ସନ୍ଧାନରେ,** (୧୨ ଫେବ୍ରୁଆରୀ, ୨୦୧୬), ଭୁବନେଶ୍ୱର: ରମାଦେବୀ।
**ଅଜଣା ପଥ ଯେ ଡାକେ,** (୨୦୧୬), ଭୁବନେଶ୍ୱର: ରମାଦେବୀ।



